# ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ

## ପ୍ରଥମ ଭାଗ

ସଂପାଦକ

ଶ୍ରୀ ସୁରେନ୍ଦ୍ର ମହାନ୍ତି

ଶ୍ରୀ ଗୋପୀନାଥ ଦାଶ

ଲକ୍ଷ୍ମୀନାରାୟଣ ସାହୁ ସ୍ମୃତିରକ୍ଷା ସମିତି

ପ୍ରକାଶକ :
ଲକ୍ଷ୍ମୀନାରାୟଣ ସାହୁ ସ୍ମୃତିରକ୍ଷା ସମିତି, କଟକ

ମୁଦ୍ରଣ :
ଅର୍ଚ୍ଚନା ପ୍ରେସ, କଟକ-୧

୧୯୭୧, ଜାନୁୟାରୀ ୧୮



ମୂଲ୍ୟ—କୋଡ଼ିଏ ଟଙ୍କା ମାତ୍ର

ପ୍ରାପ୍ତିସ୍ଥାନ :
ନରସିଂହ ସାହୁ, ଯୁଗ୍ମ-ସମ୍ପାଦକ,
ପୀଠାପୁର, କଟକ-୧
ଓ
କଟକର ସମସ୍ତ ବଡ଼ ବଡ଼ ବହିଦୋକାନ

[ ଏହି ପୁସ୍ତକର ବିକ୍ରୟଲବ୍ଧ ସମସ୍ତ ଅର୍ଥ କଟକରେ ଏକ ଆଦର୍ଶ ଛାତ୍ରାବାସ ନିର୍ମାଣରେ ବ୍ୟୟିତ ହେବ । ]

ଯଦି କାହାର ବ୍ୟକ୍ତିତ୍ୱ ତାଙ୍କ ଲିଖିତ ସାହିତ୍ୟରେ ପୂର୍ଣ୍ଣଭାବରେ ପ୍ରତିଫଳିତ ହୋଇଥାଏ, ତେବେ ତାହା ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କର । କଳାବିତ୍‌ମାନେ ଯେପରି ବ୍ୟକ୍ତିବିଶେଷର ମୁଖମଣ୍ଡଳର ବିଭିନ୍ନ ସୂକ୍ଷ୍ମରେଖାମାନଙ୍କରୁ ତାଙ୍କର ଅନ୍ତର୍ଗତ ଚିନ୍ତାରାଶିର ସୂଚନା ପାଆନ୍ତି, ସେହିପରି ଲକ୍ଷ୍ମୀନାରାୟଣ ବାବୁଙ୍କର ଲେଖା, ପ୍ରବନ୍ଧ, କବିତା, ଗଳ୍ପ ସବୁଥିରୁ, ପ୍ରାୟ ସବୁ ବାକ୍ୟରୁ ତାଙ୍କର ମନର ସମସ୍ତ ପ୍ରକ୍ରିୟା ସ୍ପଷ୍ଟ ପ୍ରତୀତ ହୁଏ । ସେ ଥିଲେ ଜଣେ ସାମାଜିକ ବିପ୍ଳବୀ । ସମାଜର ବିଭିନ୍ନ କ୍ଷେତ୍ରରେ ତାଙ୍କର ସ୍ୱାଧୀନ ବ୍ୟକ୍ତିତ୍ୱ ପ୍ରବଳ ବାଧାର ସମ୍ମୁଖୀନ ହୋଇଥିଲା । ସେ ବାଧାକୁ ସେ ଅତିକ୍ରମ କରିବା ପାଇଁ ଜୀବନବ୍ୟାପୀ ଉଦ୍ୟମ କରିଛନ୍ତି । ଏହି ଉଦ୍ୟମ ତାଙ୍କୁ ଜଣେ ବିଶିଷ୍ଟ ସମାଜ-ସେବକ କରାଇଥିଲା । ଏହି ଉଦ୍ୟମ ତାଙ୍କୁ ଜଣେ ସଂସ୍କାରକ କରାଇଥିଲା । ଏହି ଉଦ୍ୟମ ତାଙ୍କୁ ଜଣେ ଜିଦ୍‌ଖୋର ଲୋକ ମଧ୍ୟ କରାଇଥିଲା । ତାଙ୍କର ହୃଦୟର ସୂକ୍ଷ୍ମ ଶିରାପ୍ରଶିରା ଏହି ଉଦ୍ୟମରେ ଆଉ କୋମଳ ହୋଇ ରହି ପାରି ନ ଥିଲା । ଏଣୁ ତାଙ୍କର ସାହିତ୍ୟରେ ଲାଳିତ୍ୟ ବା ଆବେଗ ସେପରି ପ୍ରକାଶ ପାଇନାହିଁ । କିନ୍ତୁ ସମସ୍ତ ଭାବ ସ୍ପଷ୍ଟଭାବରେ ବ୍ୟକ୍ତ । ସେ ନିରୁଦ୍ଦେଶ୍ୟ ଲେଖକ ନ ଥିଲେ କିମ୍ବା ସାହିତ୍ୟ ତାଙ୍କର ଚିତ୍ତବିନୋଦନ ପାଇଁ ଏକ ବିଳାସସାମଗ୍ରୀ ନ ଥିଲା । ସେ କାର୍ଯ୍ୟରତ ଥିଲେ । ସେହି ଭିତରେ ତାଙ୍କର ଚିନ୍ତା ଯେପରି ଯେଉଁ ଢଙ୍ଗରେ ଗତି କରୁଥିଲା, ତାହାକୁ ହିଁ ସେ କାଗଜକଲମରେ ରଖିଯାଇଛନ୍ତି । ଓଡ଼ିଆ ସାହିତ୍ୟରେ ଏ ପ୍ରକାର ସାହିତ୍ୟ ବିରଳ । ଆଜି ଆଧୁନିକ ସାହିତ୍ୟ ଯେପରି ବିକାଶଲାଭ କରୁଛି, ଲକ୍ଷ୍ମୀନାରାୟଣ ବାବୁ ଆଜି ଜୀବିତ ଥିଲେ, ଆଧୁନିକ ସାହିତ୍ୟର ମଧ୍ୟ ଜଣେ ଧୁରନ୍ଧର ଲେଖକ ହୋଇପାରିଥାନ୍ତେ । ସେ ନାହାନ୍ତି, ମାତ୍ର ରଖି ଦେଇଯାଇଛନ୍ତି ତାଙ୍କର ପୂର୍ଣ୍ଣ ବ୍ୟକ୍ତିତ୍ୱ ସାହିତ୍ୟ ମାଧ୍ୟମରେ ବହୁକାଳ ପାଇଁ ବହୁସଂଖ୍ୟକ ପାଠକ-ପାଠିକାଙ୍କୁ ଉଦ୍‌ବୁଦ୍ଧ କରିବା ପାଇଁ ।

ଶ୍ରୀ ହରେକୃଷ୍ଣ ମହତାବ

# ଆମର କୃତଜ୍ଞତା

ବସନ୍ତ, ମଳୟ ଆଉ ଜୋଛନାର ପରଶ ପାଇଲେ କଳିକାଟି ପାଖୁଡ଼ା ମେଲି ମୁରୁକି ମୁରୁକି ହସେ—ପୁଷ୍ପରେ ପରିଣତ ହୋଇଯାଏ । ଜୋଛନାର ଆଲିଙ୍ଗନ, ମଳୟର ଘନ ଘନ ଚୁମ୍ବନ, ଅଳିଗୁଞ୍ଜନ ଆଉ ସହକାରକୋଳରେ ବନପ୍ରିୟର ଆବାହନ, ପ୍ରେମସମ୍ଭାଷଣ ତାକୁ ପାଗଳ କରେ, ଉନ୍ମାଦ କରେ, ଉଦ୍‌ଭ୍ରାନ୍ତ କରେ । ତା'ର କଅଁଳ ଗାଲ ରଙ୍ଗିମ ହୋଇଯାଏ, ଯୌବନର ଅନନ୍ତ ସମ୍ଭାର ଉଚ୍ଛୁଳିଉଠେ, ତା'ର ବୁକୁ ଭିତରେ...ଫୁଲ ଫୁଟେ ।

ମଳୟ ନ ଛୁଇଁଲେ ହିମ ଚନ୍ଦନ ପାଲଟେ ନାହିଁ; ରାମଚନ୍ଦ୍ର ନ ଛୁଇଁଲେ ପଥର ଅହଲ୍ୟା ହୁଏ ନାହିଁ; ମା'ସ୍ତନର ଅମୃତଧାରା ପାନ ନ କଲେ ଶିଶୁମୁହଁରେ ହସ ଫୁଟେ ନାହିଁ, ଦରୋଟି ବଚନ ସ୍ଫୁରେ ନାହିଁ । ଗୋଟିଏ ଜୀବନ ପାଇଁ କୋଟିଏ ଜୀବନ ଲୋଡ଼ା । ଲୋଡ଼ା ସବୁରି ଆଶିଷ, ସହୃଦ, ପ୍ରୀତି ।

ଏଇ 'ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ'—ଏହାର ପ୍ରଥମ ଖଣ୍ଡ ଯେ ଆଜି ଲୋକଲୋଚନ-ଗୋଚରକୁ ଆସିପାରିଛି, ତା'ମୂଳରେ କେତେ ଲୋକଙ୍କର ଆଶୀର୍ବାଦ, ପ୍ରେରଣା, ପରିଶ୍ରମ ଓ ଅକୁଣ୍ଠିତ ଦାନ ଅଛି, ତା' କେଉଁ ଭାଷାରେ ପ୍ରକାଶ କରିବୁ ? ମାନନୀୟ ଶ୍ରୀଯୁକ୍ତ ରାଧାନାଥ ରଥ, ସମ୍ପାଦକ, 'ସମାଜ', ପ୍ରଥମେ ଶହେଟି ଟଙ୍କା ଦେଇ ଏ କାର୍ଯ୍ୟର ଶୁଭ ଦେଇଥିଲେ । ଶୀତ ପରେ ବସନ୍ତ ଆସିଲା ପରି ଆମକୁ ଲାଗିଥିଲା । ତା'ପରେ ଦକ୍ଷିଣ ଦିଗରୁ ମଳୟ ପବନ ହଠାଳିଆ ହୋଇ ଧାଇଁ ଆସିଲାଭଳି ଆମର ରସିକ, ପ୍ରେମିକ, ଗୁଣଗ୍ରାହୀ ସାଂସ୍କୃତିକ ମନ୍ତ୍ରୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ପାଞ୍ଚହଜାର ଟଙ୍କା ଦାନ କରି କଳିକାଦେହରେ ନବ ଯୌବନ, ନବ ଶିହରଣ ଆଣିଦେଲେ; କିନ୍ତୁ ଖାଲି ବସନ୍ତ ଆଉ ମଳୟର ପରଶ ପାଇଲେ ତ ଫୁଲ ଫୁଟେ ନାହିଁ । ଜୋଛନା ଆଉ ଭ୍ରମର

ହୋଇ ଆସିଲେ ଦୁଇ ଜଣ ଶୁଭ୍ର, ସୁନ୍ଦର, ବୟୋବୃଦ୍ଧ, ବିଦ୍ୟାବୃଦ୍ଧ ସୁପୁରୁଷ, ସାହିତ୍ୟିକ ଶ୍ରୀ ସୁରେନ୍ଦ୍ର ମହାନ୍ତି ଓ ଇଂରେଜୀ ଭାଷାରେ ଧୁରନ୍ଧର ଶ୍ରୀ ଗୋପୀନାଥ ଦାଶ, ଯେଉଁମାନେ ଘନ ଘନ ପରଶ ଦେଇ କଳିକା ଭିତରେ ରସସଂଚାର କଲେ, ପ୍ରାଣସଂଚାର କଲେ। କଅଁଳ କିଶଳୟ କୋଳରେ ଯେଉଁମାନେ କୋକିଳ ହୋଇ ସଙ୍ଗୀତର ସୁଧାନିର୍ଝର ଢାଳିଲେ, ସେମାନେ ହେଲେ ନୟାଗଡ଼ ସବଣ୍ଡଭଞ୍ଜନ ନୂଆଗାଁ ହାଇସ୍କୁଲର ହେଡ଼ମାଷ୍ଟର ଶ୍ରୀ ଭଗୀରଥ ସାହୁ, ଉଦୟପୁର ଗାନ୍ଧୀ ଗବେଷଣାଗାରର ପ୍ରତିଷ୍ଠାତା ଶ୍ରୀଯୁକ୍ତ ଦାଶରଥି ପଟ୍ଟନାୟକ, କର୍ମୀ ଶ୍ରୀମାନ୍ ଦେବରାଜ, ପ୍ରଭାତ, ଟୁନା, ନୂଆଗାଁ ହାଇସ୍କୁଲର କେତେଟି ଟିକି ଟିକି ପିଲା ଆଉ ଜାମ୍‌ସେଦ୍‌ପୁରର ଶ୍ରୀମାନ୍ ରମାକାନ୍ତ ମିଶ୍ର। ଗୁରୁ ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକ, ବନ୍ଧୁ ଶ୍ରୀଯୁକ୍ତ ବିଚିତ୍ରାନନ୍ଦ କର, ଅଧ୍ୟାପକ ଶ୍ରୀଯୁକ୍ତ ବିଜୟ ଚନ୍ଦ୍ର ମହାପାତ୍ର, 'ନବଜୀବନ' ସଂପାଦକ ମାନନୀୟ ଶ୍ରୀଯୁକ୍ତ ଚିନ୍ତାମଣି ମିଶ୍ର ପୁଷ୍ପର ଶୋଭା-ବର୍ଦ୍ଧନ ପାଇଁ କେତେ ଯେ ରୂପ, ରସ, ଗନ୍ଧ ଓ ବର୍ଣ୍ଣ ଆଣି ଦେଇଛନ୍ତି, ତା' କ'ଣ କହିବି! ସବୁର ଉପରେ ସାହିତ୍ୟିକ, ଏ ଯୁଗର ଶ୍ରେଷ୍ଠ ଔପନ୍ୟାସିକ, ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତିଙ୍କର ମଧୁର ହସ୍ତର ସ୍ପର୍ଶ ପାଇ ନ ଥିଲେ ଏ କଳିକା ପ୍ରସ୍ଫୁଟିତ ହୋଇଥାଆନ୍ତା କି ନା, ସୁରଭିତ ମହକିତ ହୋଇ ନ ଥାନ୍ତା।

ସୁରେନ୍ଦ୍ର ବାବୁଙ୍କ ସ୍ୱପ୍ନ, କଳ୍ପନା, ଚିନ୍ତା ଆଉ ଆଶୀର୍ବାଦ ଏ ପୁସ୍ତକର ଆତ୍ମା—ଏ ପୁଷ୍ପର ସୌରଭ।

ମୁଁ ସମସ୍ତଙ୍କୁ ମଥା ନୋଇଁ ଗଭୀର କୃତଜ୍ଞତା ଜଣାଉଛି।

**ନରସିଂହ ସାହୁ**

ତା ୧୮-୧-୭୨ — ଯୁଗ୍ମ-ସଂପାଦକ

ଲକ୍ଷ୍ମୀନାରାୟଣ ସାହୁ ସ୍ମୃତିରକ୍ଷା ସମିତି

# ଭୂମିକା

ଦୀର୍ଘକାୟ, ମୁଣ୍ଡିତ ବୌଦ୍ଧଭିକ୍ଷୁ ପରି ଦୁଇ ଆଖିର ସୁଦୂରପ୍ରସାରୀ ଦୃଷ୍ଟିରେ ଏକ ସ୍ନିଗ୍ଧ ପ୍ରଶାନ୍ତ, ଅନ୍ତତଃ ଅର୍ଦ୍ଧଡଜନ ଏମ୍. ଏ. ଡିଗ୍ରୀ ସତ୍ତ୍ୱେ ନିରଭିମାନ ଶିଶୁସୁଲଭ ଜ୍ଞାନ-ଆହରଣର ଅଦମ୍ୟ କୌତୂହଳରେ ଚିରଚଞ୍ଚଳ, ନିରାଡ଼ମ୍ବର, ନିରଳସ ଓ ଉନ୍ନାସିକତାବର୍ଜିତ ଏକ ଗଣମାନସ ଗ୍ରାମ୍ୟ ମୂର୍ତ୍ତି; ବନ୍ୟା-ପ୍ରପୀଡ଼ିତ ଗ୍ରାମ୍ୟାଞ୍ଚଳର ଆର୍ତ୍ତ ଓ ପୀଡ଼ିତର ରୋଗଶଯ୍ୟା ପାଖରେ, ରାଜନୈତିକ ମଞ୍ଚରେ, ବିଦଗ୍ଧ ସାହିତ୍ୟ-ସମାଜରେ, ସଂଗୀତ ଉତ୍ସବରେ, ମୃତ୍ୟୁ, ମଡ଼କ ଓ ମହାମାରୀରେ, ରାସ୍ତାରେ, ଗଳିରେ, ବସ୍ତିରେ—ଯେଉଁ ଅତି ପରିଚିତ ମଣିଷଟି ଶତନମସ୍କାରର ପ୍ରତିନମସ୍କାର ଜଣାଇ ଜଣାଇ ନାନା କୁଶଳପ୍ରଶ୍ନ ଜିଜ୍ଞାସା କରି କରି ବୁଲୁଥିଲେ, ବୁଲୁଥିଲେ, ସେ ବାର ଯେ ଥିଲେ ଏକ ଜୀବନ୍ତ ବିଗ୍ରହ, ସଂବେଦନଶୀଳ, ସହାନୁଭୂତିର ଯିଏ ଥିଲେ ଏକ ସ୍ନିଗ୍ଧ ପ୍ରତିମା, ଅନନ୍ତ ଜ୍ଞାନପିପାସାର ଯିଏ ଥିଲେ ଏକ ଅଶାନ୍ତ ପ୍ରତିମୂର୍ତ୍ତି, ପୁଣି ସର୍ବୋପରି ଯିଏ ଥିଲେ ଏକ ଅସାଧାରଣ ଭାବରେ ସାଧାରଣ ମଣିଷ, ବ୍ୟର୍ଥତାର ଜ୍ୱାଳା ଯାହାଙ୍କୁ କେବେ ଉତ୍ପୀଡ଼ିତ କରି ନ ଥିଲା କିମ୍ବା ଉତ୍କଟ ରାଜନୈତିକ ଉଚ୍ଚାକାଂକ୍ଷା ଯାହାଙ୍କୁ କେବେ ଜର୍ଜରିତ କରି ନ ଥିଲା, ଏକ ସଂସ୍କୃତିମନ୍ତ ଭାରତୀୟ ଜନତାର ସାର୍ବଜନୀନ ପ୍ରତିନିଧି ଥିଲେ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ । ସମାଜରେ ଯେଉଁ ମୁଷ୍ଟିମେୟ କେତେ ଜଣ ମୃତ୍ୟୁର ଗ୍ରାସରେ ବିଲୀନ ହେବାପରେ ଏକ ଅପୂରଣୀୟ ଶୂନ୍ୟତା ଛାଡ଼ି ଯାଆନ୍ତି, ଲକ୍ଷ୍ମୀନାରାୟଣ ସାହୁ ସେହିପରି ଜଣେ । ମୋ ମତରେ ଏହା ହିଁ ତାଙ୍କ ଜୀବନ ଓ ସାଧନାର ଶ୍ରେଷ୍ଠ ପରିଚୟ ।

ମୁଁ ସେହିମାନଙ୍କ ମଧ୍ୟରୁ ଜଣେ ଯେଉଁମାନଙ୍କର ସ୍ୱଭାବରେ ରାଜନୈତିକ ପ୍ରତିପତ୍ତି, ପାଣ୍ଡିତ୍ୟର ଅଭିମାନ, ଅର୍ଥର ଦର୍ପ ଅଥବା ଏକ ଅସାଧାରଣତାର ଔଜ୍ଜ୍ୱଲ୍ୟ ବ୍ୟକ୍ତିତ୍ୱବଳୟର ନିୟାମକ

ନୁହେଁ । ନିତାନ୍ତ ସାଧାରଣ କଥା ମଧ୍ୟରେ ହିଁ ଯେଉଁମାନଙ୍କର ଅସାଧାରଣତା ଏକ ସ୍ୱତନ୍ତ୍ର ଶ୍ରଦ୍ଧା ଓ ଭକ୍ତିର ଉଦ୍ରେକ କରେ ସେହି ସାଧାରଣ ଅସାଧାରଣତା ହିଁ ବ୍ୟକ୍ତିତ୍ୱ ବିଚାରର ଶ୍ରେଷ୍ଠ ମାନଦଣ୍ଡ ।

ଲକ୍ଷ୍ମୀନାରାୟଣ ସାହୁଙ୍କ ଠାରେ ସେହି ଅସାଧାରଣତା ଯେପରି ମୂର୍ତ୍ତି ହୋଇଥିଲା । ୧୯୪୫ ସାଲ୍ ସାପ୍ତାହିକ "ଜନତା" ପ୍ରକାଶ ପାଉଥିବାବେଳେ ମୁଁ ସେଥିରେ ଗୋଟିଏ ସ୍ତମ୍ଭ ଧାରାବାହିକ ଭାବରେ ପ୍ରକାଶ କରିବାର ପରିକଳ୍ପନା କରିଥିଲି । ତାହା ହେଉଛି, ପ୍ରତ୍ୟେକ ସପ୍ତାହରେ ଜଣେ ଜଣେ ବିଶିଷ୍ଟ ବ୍ୟକ୍ତି ନିଜ ସମ୍ବନ୍ଧରେ ନିଜ ମୃତ୍ୟୁର ଶୋକଲିପି (Obituary) ଲେଖିବେ । ଏକ ଦର୍ପଣ ସମ୍ମୁଖରେ ଠିଆ ହୋଇ ନିଜର ପ୍ରତିମୂର୍ତ୍ତି ନିଜେ ଦେଖିଲା ପରି ଏହି ରଚନାରେ ଅତ୍ୟନ୍ତ ଅକପଟ ଭାବରେ କୌଣସି ଛଦ୍ମବେଶ ନ ରଖି ପ୍ରକାଶ ପାଇବ ନିଜର ପ୍ରତିଚ୍ଛବି । ଯେଉଁ ପଚିଶି ଜଣଙ୍କ ନିକଟକୁ ମୁଁ 'ଅନୁରୋଧପତ୍ର' ଲେଖିଥିଲି, ଲକ୍ଷ୍ମୀନାରାୟଣ ସାହୁ ସେମାନଙ୍କ ମଧ୍ୟରୁ ଥିଲେ ଜଣେ । ଅନେକ ଏହା ଏକ ବିକୃତ ଚିନ୍ତାର ଉଦ୍ଭଟତା ବୋଲି ଗାଳିଦେଇ ପତ୍ର ଲେଖିଲେ । ସ୍ୱଭାବସୁଲଭ ଶାନ୍ତିରେ ଆଉ କେତେକ ଚିଠିର ଜବାବ ସୁଦ୍ଧା ଦେଲେ ନାହିଁ । ଦିନେ ଯାଉଁଳିଆପଟି ବାଟେ ଚାଲି ଚାଲି ଯାଉଛି, ହଠାତ୍ ଦେଖିଲି ରାସ୍ତା ଉପରେ ଛିଡ଼ା ହୋଇ ଲକ୍ଷ୍ମୀନାରାୟଣ ବାବୁ ସାଇକେଲ ସିଟ୍‌କୁ ଗୋଟିଏ ଟେବଲରୂପେ ବ୍ୟବହାର କରି ବଡ଼ାଏ କାଗଜରେ କିଛି ଲେଖୁଛନ୍ତି । ମୁଁ ନମସ୍କାର କରିବା ମାତ୍ରେ ସେ କହିଉଠିଲେ—"ସୁରେନ୍ଦ୍ର, ହଠାତ୍ ମନେପଡ଼ିଲା ଏଇ ସପ୍ତାହରେ ତମକୁ ମୋର ନିଜର ଶୋକଲିପି ଦେବାକଥା । ସେଥିପାଇଁ ମୁଁ ଏଠାରେ ଲେଖୁଛି । ଲେଖାଟା ସରିଆସିଲାଣି, ନେଇଯାଅ ।" କିଛି ସମୟ ପରେ ଲେଖାଟି ଶେଷ ହେଲା ଓ ମୁଁ ଲେଖାଟି ଧରି ଆସିଲି । ଏହିପରି ରାସ୍ତା ଉପରେ ସାଇକେଲ ସିଟ୍ ଉପରେ କେତେ ରାଜନୈତିକ ବିବୃତି, ଖବର-କାଗଜରେ କେତେ ପ୍ରବନ୍ଧ, କେତେ ରମ୍ୟରଚନା ଓ କବିତା ଯେ ଲକ୍ଷ୍ମୀନାରାୟଣ ବାବୁ ସୃଷ୍ଟି କରିଛନ୍ତି, ତାହାର ଇୟତ୍ତା ନାହିଁ । ତାଙ୍କର ଲେଖା ଏକ ଚେତନ ମନର ଆୟାସସିଦ୍ଧ ଶବ୍ଦ-ସଂଯୋଜନା ନୁହେଁ । ତାହା ଅବଚେତନର ଏକ ଉଚ୍ଛ୍ୱାସ—ଜ୍ୟୋତ୍ସ୍ନାର ଗୋଟିଏ ଝଲକ ପରି, ଝଞ୍ଜାର ଏକ ଆଘାତ ପରି ଅଥବା ତଇତାଳିର ଏକ ଶୀତଳ ସ୍ପର୍ଶ ପରି ଯାହା ସ୍ପର୍ଶ କରିଯାଏ—ଯାହାକୁ ଅନୁଭବ କରିହୁଏ, ମାତ୍ର ବର୍ଣ୍ଣନା କରିହୁଏ ନାହିଁ ।

ଲେଖାଟି ଧରି ଫେରିଲି । ଏକମାତ୍ର ତାଙ୍କ ଲେଖା ଛଡ଼ା ବହୁ ପ୍ରତୀକ୍ଷା ପରେ ଆଉ କାହାର ଲେଖା ମିଳିଲା ନାହିଁ । କେବଳ ଗୋଟିଏ ଲେଖା ପ୍ରକାଶ କରି ସ୍ତମ୍ଭଟିକୁ ବନ୍ଦ କରିଦେବା ମୋର ଅଭିପ୍ରାୟ ନ ଥିଲା । ସେଥିପାଇଁ ଲେଖାଟି ସେହିପରି ଭାବରେ ମୋ ଦରାଜରେ ପଡ଼ିଥାଏ ।

ସେଦିନ ସନ୍ଧ୍ୟା ପ୍ରାୟ ୮ଟା । ବାହାରେ ମୁଷଳଧାରରେ ବର୍ଷା ଓ ଅନ୍ଧକାର । ନିମଚୌଡ଼ି ଅଞ୍ଚଳରେ ମୋ ରହିବାଘର ଦରଜାରେ ହଠାତ୍ ଆଘାତ ପଡ଼ିଲା । ବାରମ୍ବାର ଆଘାତ ପରେ କବାଟ ଫିଟାଇ ଦେଖିଲି, ଅଧା ଓଦାବୁଡ଼ ଛିଡ଼ାହୋଇଛନ୍ତି ଲକ୍ଷ୍ମୀନାରାୟଣ ସାହୁ । ମୁଁ ତାଙ୍କୁ କିଛି ପଚାରିବା ଆଗରୁ ସେ ମୋତେ କହିଲେ, "ସୁରେନ୍ଦ୍ର, ମୋ ଲେଖାରେ ଗୋଟିଏ ଭୁଲ ରହିଯାଇଛି । ମୁଁ ସେଥିରେ ଲେଖିଛି ଆଇସ୍‌ବର୍ଗର ୧୧ ଭାଗରୁ ମାତ୍ର ୧୦ ଭାଗ ପାଣି ଭିତରେ ବୁଡ଼ିଥାଏ ଓ ଉପରକୁ ମୋଟେ ଗୋଟିଏ ଭାଗ ଦେଖାଯାଉଥାଏ । କିନ୍ତୁ ତାହା ୮ ଭାଗରୁ ଭାଗେ ହେବ, ସଂଶୋଧନ କରିଦେବ ।

ଲକ୍ଷ୍ମୀନାରାୟଣ ବାବୁ ଯେଉଁ ପ୍ରସଙ୍ଗରେ ଏହା କହିଲେ ତାହା ହେଉଚ, ସେ ଲେଖିଥିଲେ "ଲକ୍ଷ୍ମୀନାରାୟଣ ସାହୁଙ୍କର ପରଲୋକ ଘଟିଲା । ସେ ଆଇସ୍‌ବର୍ଗ ପରି ମଣିଷଟିଏ ଥିଲେ । ତାଙ୍କର ଏଗାର ଭାଗରୁ ଦଶଭାଗ ପାଣି ଭିତରେ ବୁଡ଼ି ରହିଥିଲା; ଯାହା ଉପରକୁ ଦିଶୁଥିଲା ତାହା ଗୋଟିଏ ଭାଗ ମାତ୍ର ।" ସଂଶୋଧନ ପାଇଁ ଏତିକ ସୂଚନା ଦେବା ପରେ କପେ ଚାହାପାଇଁ ସୁଦ୍ଧା ସେ ଅପେକ୍ଷା ନ କରି ଚାଲିଗଲେ । ଯେପରି ଅନାହୂତ ଭାବରେ ଅନ୍ଧାରରେ ଆସିଥିଲେ, ସେହିପରି ଆକସ୍ମିକ ଭାବରେ ସେ ଅନ୍ଧାର ରାସ୍ତାରେ ମିଶିଗଲେ । ଲକ୍ଷ୍ମୀନାରାୟଣ ଏହିପରି ଭାବରେ ରହିଆସିଛନ୍ତି, ଔଜ୍ଜ୍ୱଲ୍ୟର ଅନ୍ତରାଳରେ, ଘୋଷଣାର ନେପଥ୍ୟରେ ଏକ ଅନାବିଷ୍କୃତ ମହାଦେଶ ପରି । ବାସ୍ତବିକ ସେ କଣ ଭାବୁଥିଲେ, କଣ ଚିନ୍ତା କରୁଥିଲେ, କଣ ଅନୁଭବ କରୁଥିଲେ, ତାହା ଆବିଷ୍କାର କରି ଆଜି ଲାଭ ନାହିଁ । ସେ ଓଡ଼ିଶାର ନାମହୀନ ମନ୍ଦିରମାନଙ୍କ ପରି ।

ଆଉ ଗୋଟିଏ ଦିନର ସ୍ମୃତି । ଇଂରାଜୀ ସାପ୍ତାହିକ ଅବ୍‌ଜରଭର୍ ଅଫିସର ଲାଇବ୍ରେରୀ ଘରେ ବସିଛି । ମେ ମାସର ଉଦୁଉଦିଆ ଦ୍ୱିପ୍ରହର । ବାହାରେ ଗରମ ପବନ ଲୁ ପରି ଧୂଳି ଓ ଶୁଖିଲା ପତ୍ର ଧରି ଉଡ଼ୁଛି । ସେହି ଅମାନୁଷିକ ମୁହୂର୍ତ୍ତରେ ମଧ୍ୟ ଲକ୍ଷ୍ମୀନାରାୟଣ ବାବୁ ହାଜର । ମୋର ଶାଶୁଙ୍କ ନାମ ଧରି ସେ ସଙ୍ଗେ ସଙ୍ଗେ ତାଙ୍କୁ ଡାକି ହଠାତ୍ ବରାଦ୍ ଦେଲେ— "ଖାଇବାକୁ ଆଣ । ଭୋକ ଲାଗୁଚି । ପାଦରେ ଚାଲି ଚାଲି ଏଇ ଚୌଦ୍ୱାରରୁ ଆସିଲି ।"

ମୁଁ ବିସ୍ମୟରେ ପଚାରିଲି, "ସାର୍, ଆପଣ ଏପରି ଅବେଳରେ ?" ସେ କହିଲେ, "ମୁଁ ଆଜି ନାଗପୁର ଯିବି ଏମ୍. ଏ. ପରୀକ୍ଷା ଦେବାପାଇଁ । ପରୀକ୍ଷା ଆଉ ଦଶ ଦିନ ରହିଲା, ଇତିହାସରେ ଏମ୍. ଏ. ଦେବି । ତମ ଲାଇବ୍ରେରୀରେ କଣ ବହି ଅଛି ଦିଅ ।"

ତା ପରେ ଲାଇବ୍ରେରୀରୁ ଇତିହାସର ପାଠ୍ୟନିର୍ଦ୍ଧିଷ୍ଟ ସହିତ କୌଣସି ସମ୍ପର୍କ ନ ଥିବା ଅଥଚ ଇତିହାସ ଶ୍ରେଣୀସ୍ଥ କେତେଖଣ୍ଡ ବହି ଧରି ସେ ପରମ ନିଶ୍ଚିନ୍ତରେ ଚାଲିଗଲେ । ମୃତ୍ୟୁର ଦୁଇ ତିନି ବର୍ଷ ପୂର୍ବେ ଥରେ ତାଙ୍କର ଏମ୍. ଏ. ପାଠ ସମ୍ପର୍କରେ କଥା ପଡ଼ିଥିଲାବେଳେ ସେ ଦୁଃଖ କରି କହିଲେ, "ସବୁ ହେଲା, ଦର୍ଶନରେ ଆଉ ଏମ୍. ଏ. ପାସ୍ କରି ପାରିଲି ନାହିଁ ।"

ଏବେ ମୁଁ ବୁଝିଛି ଦର୍ଶନରେ ପାସ୍ କରି କେହି ଦାର୍ଶନିକ ହୁଏ ନାହିଁ । ଦର୍ଶନଶାସ୍ତ୍ରରେ ଡକ୍ଟରେଟ୍ ଡିଗ୍ରୀ ଲାଭ କରି ସୁଦ୍ଧା ନିତାନ୍ତ ପାର୍ଥିବ ଲୋକ ପରି ବାଇଗଣ ଦର ମୂଲେଇବା ଏ ସମାଜରେ ବିରଳ ନୁହେଁ । ପ୍ରାଚ୍ୟ ଦର୍ଶନର ଶ୍ରେଷ୍ଠତ୍ୱ ହେଉଛି ଏହା ବିଦ୍ୟା ବା ବିତର୍କ ନୁହେଁ, ନିଜ ଜୀବନରେ ଏହା ଏକ ଅନୁଶୀଳନ ଓ ଉପଲବ୍ଧି । ଲକ୍ଷ୍ମୀନାରାୟଣ ଥିଲେ ଜଣେ ବ୍ରହ୍ମଦର୍ଶୀ, ତତ୍ତ୍ୱଦର୍ଶୀ ସତ୍ୟଦର୍ଶୀ, ଶ୍ରେଷ୍ଠ ଦାର୍ଶନିକ...ମାଟିର ଦାର୍ଶନିକ, ମୋ ଦୃଷ୍ଟିରେ ଏହା ହିଁ ଲକ୍ଷ୍ମୀନାରାୟଣଙ୍କର ଶ୍ରେଷ୍ଠ ପରିଚୟ । ତାଙ୍କ ଜୀବନ ବର୍ଣ୍ଣନିକ୍ କବିତା ପରି, ଶୂନ୍ୟବାଦ ଦର୍ଶନ ପରି ଓ ମହାଶୂନ୍ୟର ଗଣିତ ପରି ସରଳ ଅଥଚ ଚିରରହସ୍ୟମୟ । ପଥପାର୍ଶ୍ୱର ବୃକ୍ଷ ପରି ସେ କେବଳ ଛାୟା ଦେଇଛନ୍ତି, ମାତ୍ର ଧନ୍ୟବାଦ ପାଇଁ ଅପେକ୍ଷା ରଖି ନାହାନ୍ତି ।

ଆଜି ଲକ୍ଷ୍ମୀନାରାୟଣଙ୍କ ସାହିତ୍ୟକୃତିର ସମ୍ପାଦନା କଲାବେଳେ ମୋ ମନରେ ଉଙ୍କି ମାରୁଛି ସେହି ସନାତନ ଜିଜ୍ଞାସା...ସାହିତ୍ୟର ସଂଜ୍ଞା । ବାକ୍ ଓ ଅର୍ଥର ସମ୍ପୃକ୍ତି ଅଥବା ସମାଜ ସହିତ

ସମବର୍ତ୍ତୀ ସହଚରତା ସାହିତ୍ୟ ନିଶ୍ଚୟ—କିନ୍ତୁ ସାହିତ୍ୟ ମଧ୍ୟ ଜୀବନର ଏକ ବିଶିଷ୍ଟ ଅନୁଭବ । ଏହାର ଅଭିବ୍ୟକ୍ତି ପାଇଁ ଶୈଳୀ, ଆଙ୍ଗିକ ଓ ଶବ୍ଦ ସଂଯୋଜନା ପ୍ରଭୃତି ଶିଳ୍ପକର୍ମର ପ୍ରୟୋଜନ ରହିଛି ନିଶ୍ଚୟ । କିନ୍ତୁ ସାହିତ୍ୟ ତାହାର ସ୍ୱାଭାବିକ, ସ୍ୱତଃସ୍ଫୂର୍ତ୍ତି ସ୍ତରରେ ଏ ସବୁକୁ ମଧ୍ୟ ଅତିକ୍ରମ କରିପାରେ । ଲକ୍ଷ୍ମୀନାରାୟଣଙ୍କ ରଚନାବଳୀକୁ (ପ୍ରବନ୍ଧ ବାଦ୍ ଦେଇ) ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ କରାଯାଇପାରେ । ଆଜିର ସର୍ବାଧୁନିକ **anti-writing** ଗୋଷ୍ଠୀରେ ଏହାଠାରୁ ପୃଥକ୍ ହେଲେ ହେଁ, ମର୍ମରେ କିନ୍ତୁ ସମାନ ।

ଲକ୍ଷ୍ମୀନାରାୟଣଙ୍କ ପ୍ରବନ୍ଧାବଳୀରେ ମନନଶୀଳତା, ଅଧ୍ୟୟନ ଓ ଅଧ୍ୟବସାୟର ସାକ୍ଷର ଯେପରି ସୁସ୍ପଷ୍ଟ, କବିତାରେ ସେହିପରି ଅନ୍ତର୍ନିହିତ ଭାବରାଜିର ରହସ୍ୟବାଦୀ ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟ ଏକାନ୍ତ ଭାବରେ ଲକ୍ଷଣୀୟ । ଲକ୍ଷ୍ମୀନାରାୟଣଙ୍କ ରଚନାରେ ସ୍ୱତଃସ୍ଫୂର୍ତ୍ତି ପ୍ରକାଶଭଙ୍ଗୀର ସଜୀବତା ପରିପ୍ରକାଶରେ ଶିଳ୍ପଗତ ଓ ଆଙ୍ଗିକଗତ ତ୍ରୁଟିର ଅପୂର୍ଣ୍ଣତାକୁ ପୂର୍ଣ୍ଣ କରିଦେଇଛି । ଏହା ହିଁ ମଧ୍ୟ ଥିଲା ଲକ୍ଷ୍ମୀନାରାୟଣଙ୍କ ବ୍ୟକ୍ତିତ୍ୱ । ସେଥିପାଇଁ ଲକ୍ଷ୍ମୀନାରାୟଣଙ୍କ ସାହିତ୍ୟ ଅତି ସାର୍ଥକ ଭାବରେ ତାଙ୍କ ଜୀବନ ଓ ବ୍ୟକ୍ତିତ୍ୱର ପ୍ରତିନିଧିତ୍ୱ କରେ, ଏଥିରେ ସନ୍ଦେହ ନାହିଁ ।

ଶିବାନୀ
କଟକ-୮
ତା ୮-୧-୭୧

ସୁରେନ୍ଦ୍ର ମହାନ୍ତି

# ସୂଚୀ

ବିଷୟ ପୃଷ୍ଠା

**ଉପନ୍ୟାସ ଓ ଗଳ୍ପ**



**କବିତା**

## ଜୀବନ ଓ ଜୀବନୀ



## ରମ୍ୟ ରଚନା ଓ ପ୍ରବନ୍ଧ

## ଧର୍ମ ଓ ସଂସ୍କୃତି



## English Section



## ବାଙ୍ଗଲା-ଭାଗ

# ବୀଣା

ଆଚ୍ଛା ବୀଣା ! କହିଲ, ତୁମର ଜୀବନଟା ସୁଖରେ ଗଲା ନା ଦୁଃଖରେ ଗଲା ?

ଅନେକ ଦିନ ତ ହୋଇଗଲା — ତୁମେ ବଞ୍ଚିଲ ଛପନ ବର୍ଷ, ଆଜ ମୁଁ ବଞ୍ଚିଲି ଅଠାବନ ବର୍ଷ ।

ବାହା ହେଲେ—ତୁମକୁ ଯେତେବେଳେ ଆଠବର୍ଷ, ଆଜି ମୋତେ ସେତେବେଳେ ଦଶ ବର୍ଷ ।

ସେ ବାହାଘର ତ କୁଣ୍ଢେଇଖେଳ । ମୁଁ ମାଇନର ସ୍କୁଲରୁ ଫେରିଲାବେଳେ ମା' ମା' ବୋଲି ଡାକେ, ତୁମେ ଡରରେ କବାଟ ଫିଟାଇବାକୁ ସାହସ କରନାହିଁ । ମା' ଘରେ ନ ଥାଏ । ତୁମେ ଆସି କବାଟ ଫିଟେଇଦେଲେ, ମୁଁ ତୁମକୁ ନ ଚାହିଁ ତମ ତମ ହୋଇ ଘର ଭିତରକୁ ପଶିଯାଏ । ଏହିପରି ଅନେକ ଦିନ ଗଲା ।

ତୁମେ ବାପଘରକୁ ଯାଅ, ପୁଣି ମଝିରେ ମଝିରେ ଆମ ଘରେ ଆସି ରୁହ ।

ମୋ ମା' ତୁମକୁ ଭଲ ପାଏ, କିନ୍ତୁ ଭାତ ପୋଡ଼ି ପକାଇଲେ, ତରକାରୀ ଖରାପ ରାନ୍ଧିଲେ, ତୁମ ଉପରେ ରାଗେ ।

ତୁମେ ଡରି ଡରି ସବୁ ଶିଖ ।

ମୁଁ ସେତେବେଳେ ଛୁଆ । ମୋର ବିଶ୍ୱାସ ସରଳ ।

ଆମ ଘର ପୁରୋହିତ ବୁଢ଼ା ମୋତେ ବି ଭଲ ପାଉଥିଲେ ।

ମୁଁ ଖୁବ୍ ମୋଟା ହେବାପାଇଁ ଇଚ୍ଛା କରୁଥିଲି ।

ପୁରୋହିତ ବୁଢ଼ା କହନ୍ତି, ଲଙ୍କାମରିଚ ଖାଇଲେ ଖୁବ୍ ମୋଟା ହେବ ।

ମୁଁ ସେଥିପାଇଁ ଲୁଚିଲୁଚି ଗରମ ଭାତ ଭିତରେ କଞ୍ଚା ଲଙ୍କାମରିଚ ଦେଇ ଚୋବାଇ ପକାଏ ।

କି ସରଳ ବିଶ୍ୱାସ—ବାସ୍ତବିକ !

ତମ ଉପରେ ମୋର ଗୋଟିଏ ଅସନ୍ତୋଷ ଥାଏ । ତାର କାରଣ ମୁଁ ପିଲାଟିଦିନୁ ମେମ୍‌କୁ ବାହାହେବି ବୋଲି ମନେ କରିଥିଲି — ମା' କହିଥିଲା — ହଁ, ମେମ୍‌କୁ ବାହା ହେବୁ ।

ଯେତେବେଳେ ପାଲିଙ୍କିରେ ଚଢ଼ି ବାହା ହେବାପାଇଁ ଗଲି, ସାହେବ ମେମ୍‌ମାନେ ଯେଉଁଆଡ଼େ ଥାନ୍ତି, ସେହି ବାଟ ଦେଇ ମୋ ପାଲିଙ୍କି ଗଲା । ବାଜା ବାଜୁଥାଏ—ରୋଷଣି ଜଳୁଥାଏ । କେତେ ମେମ୍ ଝିଅମାନେ ପଦାକୁ ବାହାରିଆସି ଦେଖିଲେ—ମୋତେ ବି ଦେଖିଲେ । ମୁଁ ଭାବୁଥାଏ—ଏହି ଝିଅମାନଙ୍କ ମଧ୍ୟରୁ ଗୋଟାକୁ ବିବାହ କରିବି ।

ବିବାହର ଅର୍ଥ ସେତେବେଳେ ଆଉ କିଛି ଜାଣି ନ ଥାଏ । କେବଳ ବିଲେଇ-ଛୁଆକୁ ଯେପରି ପାଖରେ ରଖିବାକୁ ଇଚ୍ଛା ହୁଏ, ହାତରେ ଧରିବାକୁ ଇଚ୍ଛା ହୁଏ, ତାକୁ ଗେହ୍ଲା କରିବାକୁ ଇଚ୍ଛା ହୁଏ, ଚୁମା

ଦେବାକୁ ଇଚ୍ଛା ହୁଏ—ସେହିପରି । ଆଉ କିଛି ନା ।

କିନ୍ତୁ କାହିଁ ? ପାଲିଙ୍କି ତ ବାହାରି ଗଲା । ବାଜାବାଲାମାନେ ବାଜା ବଜାଇ ବଜାଇ ପାଲିଙ୍କି ସାଙ୍ଗରେ ସେହି ମେନ୍‌ପଡ଼ା ପାରି ହୋଇ ଚାଲିଗଲେ । ମୋ ମନରେ ଗୋଟିଏ କ୍ଷୋଭ ଆସିଲା ।

ପାଲିଙ୍କି ଯେତେବେଳେ ଗୋଟିଏ ବାଉଁଶବଣ ଭିତରେ ଦେଇ ଗଲା ଏବଂ ତା'ପରେ ଗୋଟିଏ ଘରର ସାମନାରେ ଓହ୍ଲାଇଲା—ଆଉ ଶଙ୍ଖ ହୁଳହୁଳି ପଡ଼ିଲା, ମୋତେ ପାଲିଙ୍କିରୁ ଉଠାଇ ବେଦିରେ ବସାଇବାକୁ ନେଲେ, ମୁଁ ଆପତ୍ତି କଲି—ନା, ଏଠି ବାହା ହେବି ନାହିଁ ।

କିନ୍ତୁ କିଏ ଶୁଣୁଛି ମୋ କଥା ? ମୋର ବଳ ବା କେତେ ? ସମସ୍ତଙ୍କ ଜୋର୍‌ରେ ମୋ ଜୋର୍‌ ହଟିଗଲା ।

ବାହାଘର ବେଳେ ବେଦିରେ ଆଣି ତୁମକୁ ମୋ ପାଖରେ ଯେତେବେଳେ ବସାଇଦେଲେ ଆଉ ଶଳାମାଡ଼ ଯେତେବେଳେ ମୋ ପିଠି ଉପରେ ପଡ଼ିଲା, ଯେତେବେଳେ ମୁଁ ପ୍ରତିବାଦ କରି ଉଠିଲି, ରାଗି ଉଠିଲି—କିଏ ମାନେ ନା କିଏ କହିଲା, କିନ୍ତୁ ଗୁରୁଜନମାନେ କହିଲେ—ଶଳା ସେପରି ମାରେ ।

ସେହି ଯେ ମନର ବିକଳତା, ବିରୋଧ ରହିଗଲା—ସେ ରହିଗଲା ଅନେକ ଦିନ । ଆଉ ମୁଁ ତୁମକୁ ଭଲ ପାଇ ପାରିଲି ନାହିଁ ।

ଯେତେବେଳେ ଘରେ ଏକାକୀ ରହୁଥିଲ, ଆଉ ମୁଁ ମଧ୍ୟ ରହୁଥିଲି—ସେତେବେଳେ ଆମେ ସ୍ୱରିତକ୍ଷୁ ହୋଇ ପାରିଲେ ନାହିଁ । ସୁତରାଂ ଆମର ଆଉ ବାଲ୍ୟ କୃଷ୍ଣଲୀଳା ବା ରାଧାକୃଷ୍ଣ ଲୀଳା ହୋଇ ପାରିଲା ନାହିଁ ।

ତାପରେ ଯୌବନ । ମୋତେ ସେତେବେଳେ ସତର ବର୍ଷ, ତୁମକୁ ପନ୍ଦର ବର୍ଷ । ତୁମେ ଆସିଲ ଯୁବତୀ ହୋଇ ଆମ ଘରକୁ । କେତେ ଲୋକର କେତେ ଆନନ୍ଦ । ମା', ଭଉଣୀ, ବାପା, ମାମୁଁ ଆଉ ଆଉ ଗାଁର ଲେଖାଯୋଖା ମାଉସୀ, ମାଇଁ ଇତ୍ୟାଦି । କିନ୍ତୁ ମୋର ମନରେ ଆନନ୍ଦ ନାହିଁ ।

ମୁଁ ମନେ ମନେ କ୍ରୋଧରେ ଭରିଛି । ଯେତେ ଭାର ହାଣ୍ଡି ହାଣ୍ଡି ଆସୁଛି, ଯେତେ ଖଇ ଉଖୁଡ଼ା ମିଠେଇ ଆସୁଛି, ଆଉ ଆଉ ସବୁ ଆସୁଛି—ସେ ସବୁ ମୁଁ ଅଇଁଠା କରୁଛି, ଖଣ୍ଡିଆଖାବରା କରୁଛି, ଭାଙ୍ଗି ଦେଉଛି । ପ୍ରତିଜ୍ଞା, ମୁଁ ବାହା ହେବି ନାହିଁ, ବେଦିରେ ବସିବି ନାହିଁ । ଏ ବେଦି ଆମ ଘରେ—ତୁମ ଘରେ ନୁହେଁ ।

ସେଦିନ ରାତିର କଥା ଭୁଲିବି ନାହିଁ । ରାତି ଆଠଟା ନ'ଟା ବେଳେ ମୋତେ ବେଦିକୁ ଟାଣିଲେ । ମୁଁ ଗୋଇଠା ମାରି ବେଦିକୁ ଭାଙ୍ଗିଦେଲି । ସମସ୍ତେ ଛିଛିକାର କଲେ । ତା'ପରେ ପ୍ରବୋଧ ଦେବାପାଇଁ ଚେଷ୍ଟା କଲେ । ସମସ୍ତେ କହିଲେ—ବିଶେଷତଃ ସ୍ତ୍ରୀଲୋକମାନେ—'ମଲା, ଏ କମିଣ୍ଡକା ଟୋକା ମ !'

ଯାହାହେଉ ମନ୍ତ୍ର ପାଠ ହେଲା—ହୋମ ହେଲା । ତା'ପରେ ମୋତେ ସେ ହୋମନଡ଼ଆ ଧରି ଗୋଟିଏ ପୋଖରୀ-କୂଳକୁ ଯିବାକୁ ହେଲା । ସବୁ କଥା ଠିକ୍ ଠିକ୍ ମନେ ନାହିଁ । ସେ ନଡ଼ଆ ପୋଡ଼ା ହୋଇଥିଲା । ସେଥିରୁ କିଛି ଖାଇଲି ବା

କ'ଣ । ତା'ପରେ ମୋତେ ଘରକୁ ଆଣିଲେ ।

ତୁମ ପାଇଁ ବାସର ଘର ସଜା ହୋଇଥାଏ । ମୋତେ ତା' ଭିତରେ ପଶିବାକୁ କହିଲେ । ମୁଁ ନାହିଁ କଲି । କେତେ ଯୁକ୍ତିତର୍କ ହେଲା । ମୋର ବଡ଼ ଭଉଣୀ, ଆହୁରି ଆହୁରି କେତେ ସ୍ତ୍ରୀଲୋକ ମୋତେ ଠେଲି ଦେଲେ ସେ ଘର ଭିତରକୁ ଆଉ ବାହାରୁ କବାଟ ଲଗାଇ ଦେଲେ ।

ସେ ରାତିରେ ତୁମେ ଚୁପ୍—ମୁଁ ଚୁପ୍ । ମୁଁ ଫଁ ଫଁ ହେଉଥାଏ । ତୁମେ ଜଡ଼ିକରି କେଉଁ କୋଣରେ ଥାଅ । ତା'ପରେ କିଛି ସମୟ ପରେ ମୁଁ ଥକା ଯୋଗୁ ଶୋଇ ପଡ଼ିଲି, ଆଉ ତୁମେ କ'ଣ କଲ କେଜାଣି ଜାଣିନାହିଁ ।

ଏବେ କ'ଣ ତୁମର ମନେ ଅଛି ? ମନେ ଅଛି ତ କହିବ ।

ତା'ପରେ ମୋର ଏଣ୍ଟ୍ରାନ୍ସ ପାସ୍ ହେଲା । ମୁଁ ବୃତ୍ତି ପାଇଲି । କଲେଜରେ ପାଠ ପଢ଼ିବାକୁ ଗଲି । କେବେ ଆଉ ଘରକୁ ଫେରିବା ପାଇଁ ମନ କରେ ନାହିଁ । କାରଣ ଘରକୁ ଗଲେ ତୁମେ ଅଛ ।

ଏଣେ ମା' ବାବା ବଡ଼ ଦୁଃଖିତ ହୁଅନ୍ତି । ସମସ୍ତଙ୍କର ପିଲା କଲେଜରୁ ଛୁଟିରେ ଘରକୁ ଫେରନ୍ତି, ମୁଁ ଫେରେ ନାହିଁ ।

ଇତିମଧ୍ୟରେ ମୁଁ ବ୍ରାହ୍ମସମାଜ, ଖ୍ରୀଷ୍ଟିଆନ ସମାଜ ଓ ମୁସଲମାନ୍ ସମାଜ ପ୍ରଭୃତିରେ ମିଶି ଧର୍ମଭାବରେ ଜୀବନ କଟାଇବାକୁ ସବୁବେଳେ ଆଗ୍ରହ କରୁଥିଲି ।

ନାନା ଗଳ୍ପ ଉଠିଲା ଯେ ମୁଁ ମୁସଲମାନ୍ ହୋଇଯାଉଛି, ମୁଁ ଖ୍ରୀଷ୍ଟିଆନ ହୋଇ ଯାଉଛି, ମୁଁ ବ୍ରାହ୍ମ ହୋଇଯାଉଛି । ବାବାମା'ଙ୍କର ଚିନ୍ତାର ସୀମା ନାହିଁ । ତୁମର କି ଚିନ୍ତା ମୁଁ ଆଜି ପର୍ଯ୍ୟନ୍ତ ଜାଣିପାରି ନାହିଁ ।

ତା' ପରେ ଯୌବନ ଭରି ଉଠିଲା— ଉତଲା ହେଲା ।

ତୁମ ସାଙ୍ଗରେ ଦୁଇଏକ ଥରେ ଅଧେ ସେତେବେଳେ ମିଶିଛି । କିନ୍ତୁ ସେ ମିଶାରେ ଆନନ୍ଦ ହୋଇଛି କି ? କେବଳ ଦୁଧ ତାତିଉଠି ଫୁଲି ଉଠିଲେ ଟିକିଏ ତେଲପକାଇ ଦେଲେ ସବୁ କମିଯାଏ ? ସେହିପରି ସାମୟିକ ଉତଲଟା ଟିକିଏ କମିଯାଏ ।

ତା' ନ ହେଲେ ମନଟା କିଛି ଭଲ ନ ଥାଏ । ଏଣେ ଚାକିରି ବାକିରି କରି- ନାହିଁ । ଦନେ ମା'ର ତାଡ଼ନାରେ ଗୋଟିଏ କଥାରେ ଘର ଛାଡ଼ିଲି ।

ତୁମେ ହିଁ ହତଭାଗିନୀ ।

ଆଉ ଦୁଇ ଚାରି ବର୍ଷ ଦେଖା ହେଲା- ନାହିଁ । ତା'ପରେ ମା' ଚେଷ୍ଟା କରିଛି ଅନେକ ଥର ତୁମକୁ ମୋ ପାଖରେ ଛାଡ଼ିବା ପାଇଁ—ମୁଁ ଲେଉଟାଇ ଦେଇଛି ବାରମ୍ବାର । ସେ କି ଦୁଃଖ ତୁମର !

ତା'ପରେ ମା'ର ଅନେକ ଯତ୍ନ ପରେ—(ଆଜି ମା' ମରିଯାଇଛି) ତୁମେ ମୋ ପାଖକୁ ଆସିଲ । ତୁମେ ମୁଁ ଏକାଠି ରହିଲୁ ।

କିନ୍ତୁ ସେଥିରେ ମଧ୍ୟ କେତେଥର ବା ଦେଖା, କେତେଥର ବା ଶୁଆ ?

ମୁଁ ସବୁବେଳେ କାମରେ ବ୍ୟସ୍ତ — ବାହାରେ । ଆଉ ତୁମେ ତ ସବୁବେଳେ ଘରେ ବ୍ୟସ୍ତ କାମରେ । ରାତି ହେଲେ

ତୁମର ମୋର ଦେଖା ନାହିଁ ? ଦୁହେଁଯାକ ନିଦ୍ରାସ୍ୱପ୍ନରେ ।

କୁହ ଝିଅ—ତୁମେ କ'ଣ ଜୀବନରେ କେବେ ସୁଖୀ ହୋଇଛ ?

ତା'ପରେ ତୁମେ ଗର୍ଭବତୀ । ଏହିପରି ଚାରିବର୍ଷ ଚାଲିଗଲା—ତୁମର ମୋର ଦେଖା ନାହିଁ ।

ତା'ପରେ ମା'ର ଅନେକ ଚେଷ୍ଟାରେ ତୁମେ ମୁଁ ପୁଣି ଏକାଠି ହେଲୁ । କିନ୍ତୁ କ'ଣ ପାଇଁ ? ଦୁଇଦିନ ପାଇଁ । ତୁମେ ଗଲ ଅନ୍ୟତ୍ର, ମୁଁ ଗଲି ଅନ୍ୟତ୍ର ।

ଦୁଇବର୍ଷ ଚାଲିଗଲା । ତା'ପରେ ହୁଏତ ଟିକିଏ ମିଶିଲୁ—ସେ ମଧ୍ୟ ଦୁଇଦିନ ପାଇଁ । ତା'ପରେ ମୁଁ ଚାଲିଗଲି, ତୁମେ ଘରେ ରହିଗଲ । ସେ ଗଲା ଆଠବର୍ଷ । ତା'ପରେ ପୁଣି ତୁମେ ମୁଁ ଏକାଠି ରହିଲୁ ।

କିନ୍ତୁ ତୁମର ହେଲା ମେଲେରିଆ ଜ୍ୱର, ପ୍ଲୀହା, ପେଟଫମ୍ପା । ଆଉ ମୁଁ ଏଣେ ତେଣେ ବୁଲାଫିରା । ଯୌବନଟା ଏହିପରି ଏହିପରି ଗଲା । ତା'ପରେ ଆସିଲା ଟିକିଏ ପ୍ରୌଢ଼ପଣ । ସେତେବେଳେ ଯାହା ଟିକିଏ ମିଶିବା, କଳି କରିବା, ଆନନ୍ଦ ପାଇବା, ପୁଣି ଆତ୍ମହତ୍ୟା କାମନା କରିବା; କାରଣ ମୋର ଆଦର୍ଶ ସହିତରେ ତୁମର ଆଦର୍ଶ କେବେ ମିଳିଲା ନାହିଁ ।

ତୁମେ ଚାହିଁଲ କନ୍ୟାର ଅଳ୍ପ ବୟସରେ ବିବାହ । ମୁଁ ଚାହିଁଲି ପାଠ ପଢ଼େଇବି । ଏହିପରି—ଏହିପରି ଚାଲିଲା ।

ତୁମେ କାହାର ଘରୁ ଖାଇବ ନାହିଁ । ମୁଁ ହେଲି ସର୍ବଖିଆ ।

ପୁଣି ମୋର ଆଦର୍ଶରେ ସବୁବେଳେ ଗୋଳମାଳ ଘଟିଛି; କିନ୍ତୁ ତୁମେ ତୁମର ପଥରେ ଅଟଳ, ସ୍ଥିର ହୋଇ ଚାଲିଛ । ମା'ବାବାଙ୍କ ସେବା କରିଛ । ସେମାନେ ଚାଲିଯାଇଛନ୍ତି—ତଥାପି ତୁମେ ସମସ୍ତଙ୍କର ସେବା କରୁଛ । ମୁଁ ଜଗତର ସଂସ୍ପର୍ଶ ଓ ସଂଘାତରେ ଆସି ବଦଳି ବଦଳି ଚାଲିଛି—ମୁଁ ହୁଏତ ତୁମ ଆଦର୍ଶଠାରୁ ବହୁ ନିମ୍ନରେ—ମୁଁ ଏହା ଅନୁଭବ କରୁଛି—କିନ୍ତୁ ଜଗତଟା ସେହି ନିମ୍ନକୁ ଚାଲିଛି ।

ଏତିକି ଆନନ୍ଦ ମୋର ଯେ ତୁମେ ଦିନୁଦିନ ମୋ ଚକ୍ଷୁରେ ଦେବୀ, ସୁନ୍ଦରୀ, ମହାପ୍ରାଣା ଜଣା ଯାଉଛ—ଦେଖା ଯାଉଛ—

ଆଉ ମୁଁ ନିଜ ଠାରେ ଦିନୁଦିନ ଯେପରି ତଳକୁ ଖସିଛି—ବେଶୀ ଉପରକୁ ଉଠିପାରି ନାହିଁ ।

ଆଉରି ଗୋଟିଏ କଥା—ତୁମେ ଅଛ ବୋଲି, ତୁମ ଯୋଗୁ ମୁଁ ଆଜି ଯେଉଁ ସ୍ଥାନରେ ଅଛି, ସେ ସ୍ଥାନରେ ମଧ୍ୟ ରହି ପାରନ୍ତି ନାହିଁ—ଆହୁରି ତଳକୁ ହୁଏତ ଖସିଯାଆନ୍ତି ।

କିନ୍ତୁ ଗୋଟିଏ କଥା କହିବି । ତୁମେ ମୋତେ ଶାନ୍ତ କରିଛ ସତ—କିନ୍ତୁ ମୁଁ ହୁଏତ ତୁମ ବ୍ୟତିରେକେ ଆହୁରି ଅଧମ ହୋଇଥାନ୍ତି, ନୋହିଲେ ଆହୁରି ବହୁ ଉଚ୍ଚକୁ ଉଠିଥାନ୍ତି ।

ଯାହା ହେଉ, ମୁଁ ତୁମକୁ ଆଉ ଦୋଷୀ କରୁନାହିଁ । ତୁମର ଆଶୀର୍ବାଦ ବରାବର ମାଗିଛି—ମନେ ମନେ । ତୁମେ ଆଶୀର୍ବାଦ କରିଛ ମଧ୍ୟ । ମୋର ପାପର କଥା ତୁମେ କାହାକୁ କହିନାହଁ ।

ଯେତେ ଯନ୍ତ୍ରଣା ସହିଛ ସବୁ ଅନ୍ତରରେ । ଏକା ଏକା ବଡ଼ ସହିଛ । ତୁମକୁ ମୁଁ ମାନେ—ମାନିବି । ତୁମ

ସ୍ପର୍ଶରେ ମୁଁ ପବିତ୍ର ହୋଇଛି ବାର ବାର, ପବିତ୍ର ହେବ ଆତୁର । ତୁମର ସେ ନରମ, ଚରଣ, କମନୀୟ ଭାବ—ସେସବୁ ତ ମୋତେ ନରମ କରୁଛି—ମୋ ଚିତ୍ତକୁ ସୁନ୍ଦର କରିଛି—ସେଥିପାଇଁ ତ ମୁଁ ଯାହା ଅନ୍ୟକୁ ଭଲ ପାଇବାକୁ ଶିଖିଛି ।

ତୁମର ଦୁଃଖ କଥା ଏବେ ଶୁଣିଲେ —ମନେ ମନେ ଭାବିଲେ ଆତଙ୍କ ଉପସ୍ଥିତ ହୁଏ ।

( ୨ )

ଯଦୁକୁ ଜାଣିଛ ତ ! ସେ କ'ଣ କଲା ? ପାଠ ଭଲ ପଢ଼ିଲା ନାହିଁ । ତେବେ ଜାପାନ ଗଲା । ସେଠୁ ଆମେରିକା ଗଲା । ବଡ଼ କଷ୍ଟରେ ପାଠ ପଢ଼ିଲା । ବଡ଼ ଦୁଃଖ ଭୋଗ କଲା । ବି ଏ. ପାସ୍ କଲା । ସେଠି ଯେଉଁ ଝିଅମାନେ ତା'ସାଙ୍ଗରେ ପାଠ ପଢ଼ୁଥିଲେ, ତାଙ୍କର ଭିତରୁ ଜଣକୁ ପଟେଇଲା । ଯଦୁକୁ ବାହା ହେବାପାଇଁ ଅନେକ ଲାଗିଥିଲେ; କିନ୍ତୁ ସେଥିମଧ୍ୟରୁ ଜଣକୁ ଯଦୁ ପସନ୍ଦ କରିଥିଲା ଏବଂ ତାକୁ ବାହା ହେବାପାଇଁ ମନ ବଳେଇଲା, ଆଉ ତାକୁ ମଧ୍ୟ ନାନା ଉପାୟରେ ବଳେଇଲା । ଦୁହେଁ ବାହା ହେଲେ । ସେ ବାହାଘର କିପରି ? ଆମ ଛୁଆ ବାହାଘର ନୁହେଁ । ତିରିଶ ବର୍ଷ ପଇଁତିରିଶ ବର୍ଷ ବୟସର ବାହାଘର । ପୁଣି ଏଥି ମଧ୍ୟରେ ଅନେକ ରୋମାଞ୍ଚ ହୋଇ ସାରିଥିବ ।

ଏ ବାହା ତୁମେ ପସନ୍ଦ କରିବ କି ନା; କିନ୍ତୁ ଦୁହେଁ ପାଠ ପଢ଼ିଛନ୍ତି, ଜୀବନ ବୁଝିଛନ୍ତି, ବଡ଼ ବଡ଼ କଥା ଭାବି ପାରୁଛନ୍ତି । କିନ୍ତୁ ଘର କଥା ସେପରି ନାହିଁ । ବଡ଼ ବଡ଼ କଥା ଅନେକ ହେଉଛି ସତ । ସ୍ତ୍ରୀ ଶିକ୍ଷକର—ପୁସ୍ତକ ଲେଖିକା, ପୃଥିବୀ-ପର୍ଯ୍ୟଟିକା । ସ୍ୱାମୀ ମଧ୍ୟ ଦେଶବିଦେଶ ଭ୍ରମଣ କରୁଛି—ଦେଶର ସ୍ୱାଧୀନତା ପାଇଁ ଦୁଃଖଭୋଗ କରୁଛି—ପାଗଳ ହୋଇଛି—ଅଭାବ, ଅନଟନରେ ପଡ଼ୁଛି ।

ଅନେକ ଚେଷ୍ଟା କରୁଛି, ଅନେକ ଥର କୃତକାର୍ଯ୍ୟ ହୋଇଛି, ଅନେକ ଥର ବିଫଳମନୋରଥ ହୋଇଛି । ଏଥି ମଧ୍ୟରେ ସ୍ତ୍ରୀ ସ୍ୱାମୀକୁ ଛାଡ଼ି ବୁଲିପାରୁଛି । ଏମାନଙ୍କର ପିଲାପିଲି ନାହିଁ । ମଝିରେ ମଝିରେ ପୁଣି ହେଉଛି । ଆଉ ପ୍ରେମ କରିବାକୁ ବଳବୟସ ନାହିଁ । ଏକ-ପ୍ରକାର ବୁଢ଼ାବୁଢ଼ୀ ହେଲେଣି । ଷାଠିଏ ପାଖାପାଖି ହେଲେଣି । ଏମାନେ ଘର କଲେ—ସେ ଘର ଭାଙ୍ଗି ଗଲା । ସେ ଘର ଦି' ଦିନର ହେଲା । ଅନେକ ବଡ଼ ବଡ଼ ଚିନ୍ତା କଲେ, ଅନେକ ବଡ଼ ବଡ଼ କାଣ୍ଡ ମଧ୍ୟ କଲେ ।

କିନ୍ତୁ ଗୋଟିଏ ଅଭାବ ରହିଗଲା । ସେ ଦାମ୍ପତ୍ୟ ଜୀବନର ଚିର ମିଳନ ମଧୁରତା ରହିଗଲା ।

"ମାଝେ ମାଝେ ତବ ଦେଖା ପାଇ, ଚିରଦିନ କେନ ପାଇନା" ପରି ରହିଗଲା ।

ତୁମ ନାମ ବୀଣା । ତାର ନାମ ଭାୟୋଲା । ବୀଣା ଆଉ ଭାୟୋଲାର ଜୀବନକ୍ଷେତ୍ର ଅଲଗା, ଚିନ୍ତାକ୍ଷେତ୍ର ଅଲଗା । ଏପରି କି ଚରିତ୍ରକ୍ଷେତ୍ର ମଧ୍ୟ ଅଲଗା ।

ଜଗତରେ ବୀଣାର ନାମ ରହିବ ଅନେକଙ୍କ ହୃଦୟକ୍ଷେତ୍ରରେ । ସେହିପରି ହୁଏତ ଭାୟୋଲାର ନାମ ରହିବ ଅନେକଙ୍କର ଚିନ୍ତାକ୍ଷେତ୍ରରେ । କାରଣ ଭାୟୋଲା ବିଦୁଷୀ—ଚିନ୍ତାଶୀଳା । ତାର

ମର୍ମାନ୍ତିକ ଜୀବନ, ତାର ବୈଚିତ୍ର୍ୟ, ତାର ସ୍ୱାଧୀନ ସ୍ୱଚ୍ଛନ୍ଦମତା । ସେଥିରେ ଯେ କେତେ ପ୍ରଚ୍ଛନ୍ନ ସୁଖିନୀ, ତା ନୁହେଁ ।

ତାର ସ୍ୱାମୀ ମଧ୍ୟ ନୁହେଁ । ପୁଣି ସ୍ୱାମୀ ଅନ୍ୟ କର୍ମିଣୀର ସହଯୋଗରେ ଜୀବନର କର୍ମପଥରେ ଉତ୍ସାହ ପାଇ ଚାଲିଛି ।

ଅନ୍ୟ କର୍ମିଣୀଟି ଯୌବନର ପ୍ରାରମ୍ଭରେ ବସନ୍ତର ମର୍ମରରେ ଯାହାକୁ ପ୍ରାଣ ଅଜାଡ଼ି ଦେଇଥିଲା, ଯାହା ସାହଚର୍ଯ୍ୟରେ ମାତୃତ୍ୱର ମଙ୍ଗଳ ଦର୍ଶନ କରିଥିଲା—ଆଜି ସେ ମଧ୍ୟ ଅଜି ସ୍ୱାମୀର କୋଳରେ ବନ୍ଦିନୀ ହୋଇ ରହିନାହିଁ । ଅନ୍ୟ କର୍ମପଥରେ ସହଚର-ମାନଙ୍କ ସଙ୍ଗରେ ଜୀବନଯାତ୍ରା ନିର୍ବାହରେ ଚାଲିଛି—ତେବେ ସ୍ୱାମୀର ସଙ୍ଗ ଯେ ଏକାବେଳକେ ଚାଲିଯାଇଛି ତାହା ନୁହେଁ ।

ଏ ଅଜି ଏକ ପ୍ରକାର ଜୀବନ । ଜୀବନ ଚାହେଁ ସୁଖ, ପରିପୂର୍ଣ୍ଣତା, ଆକାଙ୍‌କ୍ଷାର ତୃପ୍ତି ।

ମାଦକତା ଆସେ ଯାଏ । ପ୍ରୌଢ଼ତା ଆସେ । ସେତେବେଳେ ଜୀବ ଅନ୍ୟ ଗତି ଧରେ ।

ଅ.ଜି ଏକ ଜୀବନ ତ ଦେଖିଛ, ନନ୍ଦିନୀର କଥା । ତୁମରି ପରି ଗୃହବଧୂ କେହି ତାକୁ ଦେଖିପାରୁ ନ ଥିଲେ । ସେ ସ୍ୱାମୀ ସହ ସହବାସରେ ରହି ଗୃହ-ପ୍ରାଙ୍ଗଣରେ ଜୀବନ କଟାଉଁ କଟାଉଁ ଆସିଲା ସ୍ୱାମୀର ମନରେ ପ୍ରବଳ ଧକ୍କା, ପ୍ରବଳ ଧକ୍କା, ପ୍ରବଳ ଆନ୍ଦୋଳନ । ସେ ହେଲା ସନ୍ନ୍ୟାସୀ, ଆଜି ଏ ହେଲା ସନ୍ନ୍ୟାସିନୀ । ସନ୍ନ୍ୟାସୀ·ହେଲା ସତ; କିନ୍ତୁ ବିରକ୍ତିର ପରିସୀମା ନାହିଁ । କିନ୍ତୁ ନନ୍ଦିନୀଟି ହସ ହସ ବଦନରେ ସହୁଛି ସବୁ କଥା ।

ଅନେକ ସୁଖ ଭୋଗ କରନ୍ତି, ଅନେକ ପ୍ରେମଶଯ୍ୟା ହୋଇଛି; କିନ୍ତୁ ଅଳ୍ପ ସମୟ ଭିତରେ ଯୌବନ ଶେଷ ହେଉଣୁ ନ ହେଉଣୁ ଗୈରିକ ବସନ ଧରିଲେ ଏମାନେ ।

ତଥାପି ସଂସାରର ମାୟା ଅଛି—ପୁତ୍ର, କନ୍ୟା, ବଧୂ, ଜାମାତା ଏସବୁ ସେମାନଙ୍କ ଜୀବନକୁ ସୁଖାପ୍ଳୁତ କରିଛି ।

ଜୀବନ ଚାହେଁ ରସ । ଜୀବନ ଚାହେଁ ମଧୁରତା । କର୍କଶତା ଏଡ଼ିବାକୁ ହେବ । ମାତ୍ର କର୍କଶତା ଆସେ ଆମର ଭୁଲ ଯୋଗୁଁ, ଦେବତାର ଅଭିସମ୍ପାତରୁ ।

ବୀଣା, ମନେ ଅଛି । ମୁଁ ଯେବେ ମହାବ୍ୟାଧିରେ ଆକ୍ରାନ୍ତ ହେଲି, ସେତେ-ବେଳେ ତୁମର କି ତପସ୍ୟା—ସେତେ-ବେଳେ ମୋର ମା'ର କି ଭାବନା— କି କ୍ରନ୍ଦନ—କି ଅନ୍ତରର କୋହ !

ଆଜି ତୁମେ କପରି ସବୁ ସହୁଛ । ଆଚ୍ଛା ଆଚ୍ଛା, ତୁମେ ଦେବୀ, ତୁମେ ମାନବୀ ନୁହଁ । ତୁମେ ସହିଲ, ମୁଁ ସହି ପାରିଲି ନାହିଁ । ମୁଁ ହେଲି ପାଗଳ । ମୁଁ ହେଲି ଭ୍ରଷ୍ଟ । ମାତ୍ର ନଷ୍ଟ ହୋଇ ନ ଥିଲି—ନଷ୍ଟ ହୋଇନାହିଁ ।

ଜୀବନରେ ଆସେ ନାରୀ ବିଦ୍ୟୁତ୍ ପରି । ଚମକାଇ ଦିଏ—ସୁଖ ଦିଏ—ଦୁଃଖ ଦିଏ—ମହା ବିପଦରେ ପକାଏ । ପୁଣି ତୁମେ ବୀଣା ! କେବେହେଲେ ଆପଣାକୁ ସେସବୁ ବିପଦରେ ପକାଇ ନାହଁ—ମୋତେ ସେସବୁ ବିପଦରୁ ରକ୍ଷା କରିବାକୁ ବରାବର ଚେଷ୍ଟା କରିଛ ।

ଅତଏବ ତୁମର ନାମରେ ଏତେ କଥା ଗାଉଛି ।

ଆଜ୍ଞା କହିଲ, ତୁମେ ପାଠ ପଢ଼ିଥିଲେ ଆମେ ଦୁ'ଜଣ ଆହୁରି ସୁଖୀ ହୋଇଥାନ୍ତୁ କି ନାହିଁ ? ଅବା ତୁମେ ପାଠ ପଢ଼ିଥିଲେ ହୁଏତ ମୋ ପରି ବିପଦରେ ମଝିରେ ମଝିରେ ପଡ଼ିଥାନ୍ତ ଏବଂ ହାବୁଡ଼ୁବୁ ଖାଉଥାନ୍ତ ।

ଆଉ ଗୋଟିଏ କଥା—ବିବେକ ଯାହାର ଯେତେ ତୀକ୍ଷ୍ଣ, ସେ ସିନା ସେତେ ବୃଶ୍ଚିକଦଂଶନ ଅନୁଭବ କରେ । ରାଧାନାଥ (କବିବର) ସେଥିପାଇଁ ଜୀବନର ସାମାନ୍ୟ କଥା ପାଇଁ ମହାବୃଶ୍ଚିକଦଂଶନ ଅନୁଭବ କରିଯାଇଛନ୍ତି ।

ଅଥଚ ଏପରି ଅନେକ ଅଛନ୍ତି, ଯେଉଁମାନେ ହୁଏତ ଭ୍ରଷ୍ଟ ଭିତରେ ଗଣ୍ୟ ହେବେ । ସେମାନଙ୍କର ଦିନେ ହେଲେ ଅନ୍ତରରେ ସେ କ୍ଷୋଭ, ସେ ବୃଶ୍ଚିକ-ଦଂଶନ ହୋଇନାହିଁ ।

ବାଣୀ ! ତୁମର ବିବେକ ବଡ଼ ତେଜସ୍ୱୀ । ସେଥିପାଇଁ ତୁମେ ଭାରି ଜଗିଛ—ଜଗି ଚାଲିଛ । ଯାହା ସତ୍ୟ-ବୋଲି ଧରିଛ, ଧ୍ରୁବ ବୋଲି ଧରିଛ, ତାକୁ ଧରିଚାଲିଛ ବଜ୍ରମୁଷ୍ଟିରେ ।

କିନ୍ତୁ ଜଗତ୍ ପରିବର୍ତ୍ତନଶୀଳ । ମୁଁ ଚାଲିଛି ପରିବର୍ତ୍ତନଶୀଳ ଜଗତ୍‌ର ସଙ୍ଗରେ ସେଥିରେ ଯୋଗ ଦେଇ—ସେଥିପାଇଁ ସେ ପ୍ରବଳ ସଂଘାତ ଅନୁଭବ କରିନାହିଁ । କିନ୍ତୁ ତୁମେ ଦୁସ୍ତର ପାଇଛ ଆଗରେ ପରିବର୍ତ୍ତନ ଦେଖି ।

ଏକଥା ଅବଶ୍ୟ ସତ୍ୟ କରି କହିବି । ବାହାରର ପରିବର୍ତ୍ତନରେ ତୁମେ ଦୁଃଖ ପାଇନାହଁ—କୌତୁକ ଅନୁଭବ କରିଛ, କିନ୍ତୁ ; ଯେତେବେଳେ ନୈତିକ ଚରିତ୍ର ଉପରେ ଆଘାତ ଲାଗିଛି, ସେତେବେଳେ ତୁମେ ଆଘାତ ପାଇଛ—ବିଷାଦଗ୍ରସ୍ତ ହୋଇଛ—ପାଗଳପ୍ରାୟ ହୋଇଛ; କିନ୍ତୁ ଏପରି ସ୍ତ୍ରୀଲୋକ ଅଛନ୍ତି ବିବାହିତା, ସେ ଏପରି କାମୁକୀ—ଏପରି ହୀନଚରିତ୍ରା—ଏପରି ଭ୍ରଷ୍ଟା ଯେ କୁହା ନ ଯାଏ । ଅବଶ୍ୟ ଏହା ମୁଁ ପସନ୍ଦ କରିନାହିଁ, ତୁମେ ତ କରିବ ନାହିଁ ।

ଆଉ ଦେଖ, ସେହି କନ୍ୟାଟି ତୁମର ବିଧବା ହେଲା ଯୌବନରେ । ସନ୍ତାନବତୀ ଥିଲେ ମଧ୍ୟ ଯୌବନ ଥିଲା, ସେଥିପାଇଁ ପାରିଲା ନାହିଁ । ପୁନର୍ବାର ବିବାହ କଲା, କିନ୍ତୁ ବିବାହ କରିବା ପୂର୍ବରୁ ଲୁଚି ଲୁଚି ତ ପ୍ରେମ ଅଭିସାର କଲା । ଏହାକୁ ତୁମେ କ୍ଷମା କରିଛ, କ୍ଷମା କରିବା ଅର୍ଥ ସହିବା—ସହିଛ । ଅଭିସମ୍ପାତ ଦେଇ ନାହଁ ।

ଜଗତ୍ ବଡ଼ ବିଚିତ୍ର—ବିଚିତ୍ରତା ହିଁ ଏହାର ପ୍ରକୃତି । ଏହି ବିଚିତ୍ର ସଂସାରରେ କେତେ ବିଚିତ୍ର ଲୋକ—ପୁରୁଷ ସାଧୁ ଅଛନ୍ତି, ସ୍ତ୍ରୀ ସାଧ୍ୱୀ ଅଛନ୍ତି, ପୁରୁଷ ଦୁଷ୍ଟ ଅଛନ୍ତି, ସ୍ତ୍ରୀ ଦୁଷ୍ଟା ଅଛନ୍ତି ।

କିନ୍ତୁ ଏହା ଛଡ଼ା ଜଗତର ଆଦର୍ଶ ବଦଳୁଛି । ଏକ ସମୟରେ ଓଡ଼ିଶା ଝିଅ ଘରେ ରହିବା ମହାସତ୍ତ୍ୱ ବୋଲାଉଥିଲା, ଘରର ମର୍ଯ୍ୟାଦା ରହୁଥିଲା କହୁଥିଲେ । ଆଜି ତାହା ନାହିଁ—ଆଜି ଅନ୍ତତଃ ଆମ ଓଡ଼ିଆ ସମାଜର ଉଚ୍ଚ ସ୍ତରରେ, ମଧ୍ୟବିତ୍ତଲୋକ ସ୍ତରରେ ମଧ୍ୟ ଆଉ ଏତେ ଲୁଚ୍ଛ ଲୁଚ୍ଛ ନାହିଁ । ମୁହଁ ଖୋଲାଖୋଲି ହେଲାଣି, କଥା ମଧ୍ୟ ମୁହଁରୁ ଫୁଟିଲାଣି—ଫିଟିଲାଣି ।

ଏହାକୁ ତୁମେ କଣ କହିବ ? ତୁମେ ମଧ୍ୟ ଏଥିରେ ପରିବର୍ତ୍ତିତ ହୋଇଛ । ଅତଏବ ନା କରି ପାରିବ ନାହିଁ ।

ଆହୁରି ଦେଖ, ଖାଇବା ପିଇବାରେ ଜାତିଭେଦ । ଆଜି ଆମେ ପୁରୁଷମାନେ ସମସ୍ତଙ୍କ ସାଙ୍ଗରେ ବସି ଖାଉଛୁ, ଯେପରି କି ଜଗନ୍ନାଥଙ୍କ ପ୍ରସାଦ ସେବନ କରୁଛୁ; କିନ୍ତୁ ସ୍ତ୍ରୀମାନେ ଏତେଟା ହୋଇ ନାହାନ୍ତି । ତଥାପି କେତେକ ହେଲେଣି ।

ଆଜି ତୁମେ ତ ଦେଖିଛ ନସୁନା ମା' ଆଉ ବାଉରୁଣୀମାନେ ପିକା ଖାଆନ୍ତି — ନଳମା' କେତେ ଧୂଆଁ ଖାଉଥିଲା ।

ସେ ହେଲା ନିମ୍ନ ସ୍ତରର ସ୍ତ୍ରୀଲୋକଙ୍କ କଥା — ତାଙ୍କ ମଧ୍ୟରେ ଯେଉଁମାନେ ପୁରୁଷ ସାଙ୍ଗରେ କାମଦାମ କରନ୍ତି, ଇଟା କାମରେ ଏବଂ ଅନ୍ୟ କାମରେ ଅନେକେ ଟିକିଏ ବିଭ୍ରଷ୍ଟ ହୁଅନ୍ତି । ଆମ ଘର ଝିଅମାନେ, ସ୍ତ୍ରୀମାନେ ସେପରି ହେଲେ ମହା ଗଣ୍ଡଗୋଳ ହେବ ସତ କଥା ।

କିନ୍ତୁ ଆଜି ମୁସଲମାନୀ ପାଠୁଆଣୀ ସିଗାରେଟ ଖାଇଲେଣି । ସେମାନଙ୍କ ଭିତରୁ ଅନେକ ସିଗାରେଟ ଧରିଲେଣି ।

ମଦ ମଧ୍ୟ ଅନେକ ପାଠୁଆ ଯୁବକ ଏବଂ ପାଠୁଆଣୀ ଯୁବତୀଙ୍କ ମଧ୍ୟରେ ଚାଲିଲାଣି । ଆଜି ବିଏର୍ କକ୍‌ଟେଲ ଖାଉଛି କହିବାକୁ ଲାଜ ଲାଗୁନାହିଁ । ଏପରି ଅନେକ ମରଦ ପୁଣି ସ୍ତ୍ରୀ ଅଛନ୍ତି ।

କୁକୁଡ଼ା ତ ଆଜି ହିନ୍ଦୁମାନଙ୍କ ଭିତରେ, ପାଠୁଆଙ୍କ ଭିତରେ, ଅଧିକାଂଶଙ୍କ ଭିତରେ ପ୍ରଧାନ ଖାଦ୍ୟ ହୋଇଛି । ଅତଏବ ଜଗତ୍ ବୁଲୁଛି, ଅବସ୍ଥା ବଦଳୁଛି, ଆଦର୍ଶ ବଦଳୁଛି । ଆଜି ହରିଜନଙ୍କୁ ଛୁଇଁଲେ ପାପ ନାହିଁ । ଆଜି ହରିଜନଙ୍କୁ ନ ଛୁଇଁଲେ ମହାପାପ । ଏଥିପାଇଁ ଆଇନ ମଧ୍ୟ କରାହୋଇଛି ।

ଆଜି ମନ୍ଦିର ମଧ୍ୟରେ ହାଡ଼ିପାଣ ପଶିବେ — ପଶିଲେଣି । ଅତଏବ ଆଦର୍ଶ ବଦଳୁଛି । ସେଥି ଅନୁଯାୟୀ ଆମକୁ ବଦଳିବାକୁ ହେଉଛି ।

ତୁମେ ଜାଣ, ଘରଭିତରେ ରହିଛ । ଜୀବନଟା ଘର ଭିତରେ ବେଶୀ ବିତେଇ ଦେଇଛ, ସୁତରାଂ ତୁମେ ବାହାରର ପରିବର୍ତ୍ତନ ସମ୍ବନ୍ଧରେ ବିଶେଷ ପରିଚିତ ହୋଇନାହଁ । ସୁତରାଂ ଆମ ତୁମ ଭିତରେ ବିଶେଷ ଖଟ୍‌କା ଲାଗୁଛି ।

ଆଜି ବାହାଘର ଦେଖ — ଯିଏ ଯେଉଁଠି ବାହା ହେଲା । ଓଡ଼ିଆ ଖାଲି ଓଡ଼ିଆ ଘରେ ବାହା ହେବ ବା ଏକ ଜାତିରେ ବାହା ହେବ, ଏପରି କଥା ନାହିଁ ।

ଆଜି ଓଡ଼ିଆ, ବଙ୍ଗାଳୀ, ପଞ୍ଜାବୀ, ତେଲେଙ୍ଗା ମିଶାମିଶି ବିବାହ — ପୁଣି ହାଡ଼ିଆଣୀ, ଗୁଡ଼ିଆ, ବ୍ରାହ୍ମଣ, ତେଲି ସବୁ ମିଶାମିଶି ବାହାଘର ଚାଲିବାକୁ ଆରମ୍ଭ କଲେଣି । ଖାଲି ଏତିକି ନୁହେଁ, ଏଣିକି ଜାତି ରହିବ ନାହିଁ ।

ପୁଣି ଦେଖ, ଦିଲ୍ଲୀ, ପଞ୍ଜାବ ପ୍ରଭୃତି ଅଞ୍ଚଳରେ ହଣାକଟାରେ ଶିଖ, ହିନ୍ଦୁ ମୁସଲମାନୀ ସ୍ତ୍ରୀକୁ ନେଇ ଆସିଛି — ମୁସଲମାନ ଅନେକ ହିନ୍ଦୁ ସ୍ତ୍ରୀକୁ ଧରି ନେଇଯାଇଛି । ସେମାନଙ୍କୁ ପୁଣି ଫେରାଇ ଆଣିବାକୁ ଚେଷ୍ଟା କରାଯାଉଛି । ଅନେକ ଫେରିଛନ୍ତି, ଅଥଚ ହିନ୍ଦୁ ସ୍ୱାମୀ ମୁସଲମାନ କର୍ତ୍ତୃକ ଧ୍ୱସ୍ତା ଭୋଗୀକୃତା ନାରୀଙ୍କୁ

ନିଜର ଅଙ୍କଶାୟିନୀ କରିବାକୁ କୁଣ୍ଠିତ ନୁହେଁ ।

ସେଥିରେ ତାର ସମ୍ମାନ ତ ଯାଇନାହିଁ । ଏ ନୂତନ ସତ୍ୟକୁ ନୂତନ ଯୁକ୍ତିକୁ ତୁମେ ଗ୍ରହଣ କରିବ କି ?

ନ କଲେ ହିନ୍ଦୁସଂଖ୍ୟା କମିଯିବ । ହିନ୍ଦୁମାନେ ଦିନୁଦିନ କ୍ଷୟପ୍ରାପ୍ତ ହେବେ । ଏହା କି ତୁମର ଇଚ୍ଛା ? ତାହା କେବେ ନୁହେଁ । ଅତଏବ ଭାବ, ଜଗତ୍ ଏବଂ ଜଗତର ଆଦର୍ଶ କିପରି ବଦଳୁଛି ।

ଆଜି ଆମରି ଦେଶର ସ୍ତ୍ରୀଲୋକ ଯେ କୌଣସି ପୁରୁଷଦ୍ୱାରା ଆପଣାର ହୁଅ। କରୁଛି ଏବଂ ତାକୁ ନିଜର ହୁଅ। ବୋଲି ଆଦର କରି ପାରୁଛି । ପୁରୁଷ ତ ସେଠାରେ ଥାଏ । ମାତୃତ୍ୱ ସେଠାରେ ମୁଖ୍ୟ, ପୁଣି ସନ୍ତାନପାଳନ ସେଠାରେ ମୁଖ୍ୟ ।

ଏହିସବୁ କଥା, ଏହିସବୁ ପ୍ରଶ୍ନ ଆମ ଆଗରେ ସମାଜ ଆଗରେ ଉପସ୍ଥିତ । ଏହାର ସମାଧାନ କରିବାକୁ ହେବ—ଏହି ସମାଧାନ ଉପରେ ଏବଂ ତଦନୁଯାୟୀ ଚଞ୍ଚଳ କାର୍ଯ୍ୟପ୍ରଣାଳୀ ଠିକ୍ କଲେ ସମାଜ ଗଢି କରିବ । ନୋହିଲେ ବର୍ତ୍ତମାନ ସମାଜ ପଙ୍ଗୁ ହୋଇ ଅଥବା ହୋଇ ଅଚଳ ହୋଇ ଶକ୍ତିହୀନ ହୋଇ ପଡ଼ିରହିଛି ।

ଅତଏବ ଦେଖୁଛ ଶାନ୍ତା ! ସହଜ କଥା ନୁହେଁ । ଆଦର୍ଶ ବଦଳୁଛି; ଗତି ବଦଳୁଛି ।

ସାଧାରଣ ଲୋକ ଏହି ଗତି ସଙ୍ଗରେ ତାଳ ପକାଇବାକୁ ଅସମର୍ଥ ହୋଇ କହୁଛି —କଳିକାଳ ଆସିଲା, କଳି ଘୋଟିଗଲା, ମହାପାପ ହେଲା, ବ୍ୟାଧି ଘୋଟିଲା ।

ତଥାପି ଶାନ୍ତା ! ମୋର ମନରେ ସନ୍ଦେହ ଅଛି, ବର୍ତ୍ତମାନ ଜଗତ କେଉଁ ଆଡ଼କୁ ଯାଉଛି ? ସ୍ୱର୍ଗ ଆଡ଼କୁ ନା ରସାତଳକୁ ? ସେ ବିଷୟ ବଡ଼ ସହଜ ନୁହେଁ; ବଡ଼ କଠିନ ଏବଂ ଯୁଗପ୍ରବାହରେ ଲୋକେ, ସାଧାରଣ ଲୋକେ ଭାସି ଚାଲିଛନ୍ତି । ଯଦି ବଦଳାଇବା ମହାପୁରୁଷଙ୍କର କାର୍ଯ୍ୟ, ସେ ଯେଉଁ ବାଟ ଦେଖାଉଛନ୍ତି, ଆମେ ମଣିଷ ମାନିଆ ସେହି ବାଟରେ ଅନୁସରଣ କରି ଚାଲିଛୁ । ସେ କେଉଁଠାରେ ଖରତର, କେଉଁଠାରେ ମନ୍ଥର । ମାତ୍ର 'ମହାଜନୋ ଯେନ ଗତଃ ସ ପନ୍ଥାଃ' ଏହି କଥାନୁସାରେ ଜଗତ ଚାଲିଛି ।

ମୁଁ ଏତେ କଥା କହୁଛି, କାରଣ ତୁମେ କଥା କହି ଜାଣନାହିଁ, ଯୁକ୍ତି କରି ଜାଣନାହିଁ; ମାତ୍ର ବୁଝି ପାରିବ ଅନେକ କଥା । ଅଭିଜ୍ଞତା ତ ହୋଇଛି । ସଂସାର ତ ଅନେକ ଦେଖିଲ, ନିଶ୍ଚେ କଥାଗୁଡ଼ାକ ବୁଝି ପାରିବ । ସବୁ ନ ହେଲେ ମଧ୍ୟ ଅନେକଟା ।

ଦୁର୍ଭିକ୍ଷ ହେଲେ ଦୁର୍ଭିକ୍ଷରେ ତାଡ଼ିତ ହୋଇ କେତେ ସ୍ତ୍ରୀଲୋକ ଆପଣାକୁ ବିକି ଦିଅନ୍ତି । ପୁଣି ଶାନ୍ତା ! କେତେ ପୁରୁଷ ନିଜ ସ୍ତ୍ରୀକୁ ଖୁବ୍ ଭଲ ପାଉ ପାଉ କାହାକୁ ଦେଖି ନିଜ ସ୍ତ୍ରୀକୁ ଅବହେଳା କରିଛନ୍ତି— ଅନ୍ୟ ପାଇଁ ପାଗଳ ହୋଇଛନ୍ତି—ପୁଣି ହୁଏତ ସେ କଥା ତୁଟି ଯାଇଛି—ପୁଣି ବାଟ ସେ ପାଇଛି ।

ଏପରି ଅନେକ କଥା ଦେଖା ଯାଉଛି । ତୁମେ ଏ ସମସ୍ତଙ୍କୁ କ୍ଷମା କରିବ ନା ତୁମର ତୀକ୍ଷ୍ଣ ଅସିଦ୍ୱାରା ଏମାନଙ୍କୁ ବଳି ଦେଇଦେବ ?

ନା ନା, ଏମାନଙ୍କର ମଧ୍ୟ ବଞ୍ଚିବାର ଅଧିକାର ଅଛି—ଏମାନଙ୍କର ମଧ୍ୟ ଏହି ଶରୀର ମନର ସୁଖ ଉପଭୋଗ କରିବାର

ଅଛି । ଠିକ ଶିଖନ୍ତୁ—ଦେଖି ବୁଝନ୍ତୁ । ଅନେକେ ଠିକ୍ ବାଟକୁ ଫେରିଛନ୍ତି, ଅନେକ ଭୁଲ ବାଟରେ ହିଁ ରହି-ଯାଇଛନ୍ତି—କି ସ୍ତ୍ରୀ କି ପୁରୁଷ ।

କିଏ କରିବ ? ଅସହାୟ ମନୁଷ୍ୟ । ବେଷ୍ଟନୀର, ସଙ୍ଗର, ସଙ୍ଗୀର ଅଧୀନ ମାନବ । ଦୁର୍ବଳ ମାନବ । ଦୁର୍ବଳ କୁହ ବା ଯାହା କୁହ—ତାର ପାପକୁ, ତାର ଭୁଲକୁ କ୍ଷମା କରିବା ଛଡ଼ା ଆମର ଆଉ କିଛି ଉପାୟ ନାହିଁ ।

ମୁଁ ତୁମକୁ ଏଠାରେ କେତେଗୁଡ଼ିଏ ସ୍ତ୍ରୀଲୋକର ବର୍ଣ୍ଣନା ଦେବି । ଅବସର ବେଳେ ମୁଁ ସେମାନଙ୍କୁ ଲକ୍ଷ୍ୟ କରି ଯାହା ଭାବିଛି, ଲେଖିଛି । ଏମାନେ ସବୁ ବଡ଼ ବଡ଼ ସ୍ତ୍ରୀଲୋକ—ଯାହାଙ୍କୁ ଆମେ ଆଜି-କାଲି ଭାରି ବଡ଼ ବଡ଼ କହୁଛୁ, ଅର୍ଥାତ୍ ଭାରି ପାଠ ପଢ଼ିଛନ୍ତି, ସେମାନଙ୍କର ସ୍ୱାମୀ ଖୁବ୍ ବଡ଼ ଚାକିରି କରନ୍ତି, ସେମାନଙ୍କର ବେଶୀ ପଇସା ଅଛି, ସେମାନେ ସମାଜର ବଡ଼ ବଡ଼ ସ୍ଥାନରେ ମଧ୍ୟ ଅଛନ୍ତି, ଲେଖାପଢ଼ା ଖୁବ୍ ଜାଣିଛନ୍ତି—କଥା କହି ଜାଣନ୍ତି । କିନ୍ତୁ…

ଆଉ ସେ କିନ୍ତୁର ଅର୍ଥ ଖୋଲି କରି କହିବା ଦରକାର ନାହିଁ ।

ଏହି ଦେଖ, ଜଣେ ଭାରି ବଡ଼ଲୋକର ଝିଅ, ବଡ଼ଲୋକର ବୋହୂ, ଖୁବ୍ ପାଠ ପଢ଼ିଛି, ବିଲାତ ଆମେରିକା ଯାଇଛି, ପୃଥିବୀ ବୁଲିଛି, ଲୋକଙ୍କ ସାଙ୍ଗରେ ମିଶିଛି ।

ତାର ଶାଢ଼ୀ, ତାର ବେଶ ଦେଖିଲେ ମୋତେ କାବା ହେବାକୁ ହୁଏ ।

ସତକୁ ସତ ଆଗେ ଆମ ଅପାଠୁଆଣୀ ସ୍ତ୍ରୀମାନେ ଟିକିଏ ଗହଣା ପିନ୍ଧୁଥିଲେ ବୋଲି ତାଙ୍କୁ କେତେ ନିନ୍ଦା କରାଯାଉଥିଲା । ଏହି ପାଠୁଆଣୀ ସ୍ତ୍ରୀମାନେ ଗହଣା ପିନ୍ଧନ୍ତି ନାହିଁ ବେଶୀ ସତ, ମାତ୍ର ତାଙ୍କ ଲୁଗାପଟାର ଦାମ ହୁଏତ ହଜାର ହଜାର ଟଙ୍କା ।

ଏମାନେ ଆଜିକାଲି ୫୦ ରଙ୍ଗେଇ ସିଗାରେଟ ଖାଇ ମଦ ବି ଖାଆନ୍ତି । ଏହି ଶୁଣ ମୋର କବିତା ତା ପ୍ରତି—

୫୦ ରଙ୍ଗେଇ ସିଗାରେଟ ଖାଇ
ଫିନଫିନିଆ ସିଲ୍କ ଶାଢ଼ୀ ପିନ୍ଧି
ଚଷମାଧାରିଣୀ ଧୀର ସୁଷମ, କାନ୍ତି !
ଆଗୋ ଗୋଷ୍ଠ ଆଗୋ ବସନ୍ତୀ,
ଆସିଛ ସମ୍ମୁଖେ ସଭ୍ୟ ଜଗତର
ତୁମକୁ ମୁଁ କରେ ଦୂରୁଁ ଜୁହାର
ତାସ ପଶା ଖେଳଓ୍ୟାଲ୍ଜମ
ଟେନିସ ବ୍ୟାଟଧାରିଣୀ
ତୁମେ ନୁହଁ ତୁମେ ନୁହଁ
ମୋହର ତାରିଣୀ ।

ଆଉ ଜଣକୁ ଦେଖି—

ସେ ପାଠ ପଢ଼ିଛି, ଓକିଲଆଣୀ ହୋଇଛି, ତାର ଢଙ୍ଗଢାଙ୍ଗ ଖୁବ୍ ଭଲ ନୁହେଁ । ଏ ପୁରୁଷ ସେ ପୁରୁଷଙ୍କ ପାଖରେ ଠେସି ହୋଇ ବସେ—ତାର ଦେହରେ ଏବେ ବି ଲାଳସା ଭର୍ତ୍ତି ହୋଇ ରହିଛି । ତାକୁ ଦେଖି ଏହା ଲେଖିଥିଲି ଦିନେ ।

ଏହି ଶୁଣ—
ଯୌବନର ଜୁଆର ନ ମାନି
ଭୁଲି ମାନିନି,
ଖେଲୁ ଯେଉଁ କେଳି
କଏ ତୋତେ ଧନ୍ୟା କହିବନି ।
ହସ ହସ, ଆଉ ଆଉ,
ଯୌବନ ଯାଉଛି ଭାଙ୍ଗି
ଧୀରତା ଆସିବ ଥଙ୍କି ଥଙ୍କି

ବୁଝିବି ଜୀବନ ବୁଝ୍‌ଟୁ ପରା,
ନମସ୍କାର ମୋହର ।
କାହିଁକି କହିବ ଦେଖିଲୁ ନାହିଁ ବାଳା
କଥା ଗୁରୁଜନର
ମାନିବାର ଯେବେ ଥିଲ ।

ଏହିପରି ଅନେକ ସ୍ତ୍ରୀ ଅଛନ୍ତି । ଅନେକଙ୍କର କିସ୍ସାକଳାପ ଖବରକାଗଜ-ମାନଙ୍କରେ ଉଦ୍ଭଟ ଭାବରେ ବାହାରେ । ସେସବୁ ଏକାଠି କରି ତୁମକୁ ଦେଖାଇଲେ ତୁମେ ଦେଖି ପାରିବ । ଏମାନେ ନାରୀ-ଜାତିର କଳଙ୍କ; ତଥାପି ଏମାନଙ୍କୁ କ୍ଷମା କରିବାକୁ ଇଚ୍ଛା ହୁଏ । ଏମାନଙ୍କ ମଧ୍ୟରୁ କେତେକ ଶାରୀରିକ ବ୍ୟାଧିଗ୍ରସ୍ତ, କେତେକ ମାନସିକ ବ୍ୟାଧିଗ୍ରସ୍ତ । ଏହି ଶାରୀରିକ ବ୍ୟାଧି ମଧ୍ୟ ସେମାନଙ୍କୁ ଭ୍ରଷ୍ଟା, ବ୍ୟଭିଚାରିଣୀ କରାଏ । ମାନସିକ ଭ୍ରଷ୍ଟତା ମଧ୍ୟ ଅଛି । ଯାହା ହେଉ, ତୁମେ ଏମାନଙ୍କୁ ସବୁ କ୍ଷମା କରିବ, ମୁଁ ଜାଣେ ।

ଖାଲି ତୁମେ ଯାହାକୁ ନିଜର କରିଛ, ଆପଣାର କରିଛ, ସେମାନଙ୍କ ଚରିତ୍ରରେ କଳଙ୍କ ଲାଗିଲେ ତୁମର ପ୍ରାଣରେ ବିଷମ ଆଘାତ ଲାଗେ, ମୁଁ ଜାଣେ ।

ଆଚ୍ଛା କହିଲ, ତୁମର ଝିଅ ଯଦି ମୁସଲମାନକୁ ବିବାହ କରିଥାନ୍ତା । ଛି ଛି, ସେକଥା କହିବ ନାହିଁ । ତୁମର ପ୍ରାଣରେ ଭୟଙ୍କର ଆଘାତ ଲାଗିବ । ଆଚ୍ଛା କୁହତ, ମୁଁ ଯଦି ଗୋରୁମାଉଁସ ଖାଏ—ଛି ଛି, ସେ କଥା କହିବ ନାହିଁ, ତୁମର ପ୍ରାଣରେ ମହା ଆଘାତ ଲାଗିବ ।

ଆଚ୍ଛା କୁହଟି, ମୁଁ ଯଦି ମଦୁଆ ହୋଇଥାନ୍ତି, ଗଞ୍ଜେଇଆର ହୋଇଥାନ୍ତି—ଛି ଛି ! ସେକଥା କହିବ ନାହିଁ—ସେ ମୋର ଅପମାନ, ତୁମର ଅପମାନ ।

ଆଚ୍ଛା, ସେ କଥା ଥାଉ । କହିଲ, ଗୋଟିଏ ଝିଅ ଏମ୍. ଏ., ଓକିଲାତି, ବିଲାତ—ଏସବୁ ଜାଗାରେ ପାଠ ପଢ଼ୁଛି । ଏବେ ତାକୁ ବୟସ ହୋଇଗଲାଣି ପଚିଶ, ତିରିଶ, ତଥାପି ସେ ବାହା ହୋଇନାହିଁ ।

ସେ କଣ ଠିକ୍ ଅଛି ? ତୁମେ ପଚାରିବ, ମୁଁ ମଧ୍ୟ ନିଜକୁ ପଚାରୁଛି, ସେ କଣ ଠିକ୍ ଅଛି ?

ଜଣେ ଜଣେ ଲୋକ ଅଠତିରିଶ, ଅଣଚାଳିଶ, ଚାଳିଶ ବର୍ଷ ପର୍ଯ୍ୟନ୍ତ ବାହା ହୋଇନାହାନ୍ତି; ଅନେକ ଡେରିରେ ବାହା ହୋଇଛନ୍ତି—ସେମାନଙ୍କର ଯୌବନ କଣ ଫୁଟିନାହିଁ ? ବସନ୍ତ ସେମାନଙ୍କୁ କଣ ପୁଷ୍ପବାଣ ମାରିନାହିଁ ? ସେମାନେ କଣ ସବୁ କନ୍ଦର୍ପବିଜୟୀ ? ନା ନା, ବାରି ବାର ସେମାନେ ପରାହତ ହୋଇଥିବେ—ତଥାପି ସେହି ଅଭିଜ୍ଞତା ନେଇ ସେମାନେ ଜୀବନ-ପଥରେ ଚାଲିଛନ୍ତି ।

ହିଁ ଆଉ ପଚାରେ—ସେମାନେ କଣ ଭଲ ମଣିଷ ନୁହନ୍ତି ? ସେମାନଙ୍କର କଣ ଦୟା, ମାୟା, ସ୍ନେହ, ମମତା, ପ୍ରୀତି, ସେବା, ଦେଶପ୍ରୀତି ନାହିଁ ? ହୁଏତ ସବୁ ଅଛି, ନୋହିଲେ କିଛି କିଛି ଅଛି । ମୋଟ ଉପରେ ସେମାନେ ଆମରି ପରି ମଣିଷ—ଭଲମନ୍ଦରେ ତିଆରି, ଭଲମନ୍ଦର ଆଞ୍ଚ ତାଙ୍କୁ ଲାଗୁଛି, ଲାଗିଛି । କିନ୍ତୁ ତୁମେ କହିବ—ତୁମେ ଏସବୁ ଭଲପାଅ ନାହିଁ । ସରଳ, ଶାନ୍ତ, ସାଧାରଣ ଜୀବନ ତୁମର ଲକ୍ଷ୍ୟ ଭଗ୍ନପଦରେ, ସ୍ୱାମୀପାଦରେ, ଗୁରୁଜନଙ୍କ ପାଦରେ ରହି ସମସ୍ତଙ୍କର ସେବା କରିବା—ଘର କାମ କରିବା, ଗୋରୁଗାଈର ସେବା କରିବା, ଦୁଃଖୀ-

ଜନର ସେବା ମଧ୍ୟ କରିଛି କରିଛି ଶକ୍ତି ଅନୁଯାୟୀ କରିବା—ବିଳାସ ବ୍ୟସନ ନ କରିବା, ସିନେମା ନ ଦେଖିବା, ଅବା ଦେଖିଲେ ତ ଥରେ ଅଧେ, ଅତି ଉତ୍ତମ୍ନ ନ ହେବା, ପାଗଳ ନ ହେବା, ନିଶାଖୋର ନ ହେବା, ଏହା କି ତୁମେ ଗୁହଁ—ଏହା କି ମୋତେ ତୁମେ କରୁଛ ତୁମର ସମ୍ପର୍କଦ୍ୱାରା; କିନ୍ତୁ ଜନତା ଗ୍ଭଲିଛି କୁଆଡ଼େ, ଶୁଣୁଛ ତ ?

ହିଁ, ତୁମେ କହିବ ସେହି ଦଶଜଣଙ୍କ ସଙ୍ଗରେ ଆମର କି ଭାବ । ଆମର ଭାବ କରିବା ଉଚିତ ନୁହେଁ । ଆମେ ଆମର ବାଟରେ ଗ୍ଭଲିଯିବୁ ।

ସତ କଥା—ସେ ମଧ୍ୟ ଗୋଟିଏ ମାର୍ଗ, ଗୋଟିଏ ଧର୍ମ, ଗୋଟିଏ ମତ । ତାର ମଧୁରତା ଅଛି, ତାର ସୌନ୍ଦର୍ଯ୍ୟ ଅଛି । ଆପଣାର ଆଦର୍ଶ ଠିକ୍ କରି ଆପଣା ବାଟରେ ଗ୍ଭଲିଗଲେ ଏବଂ ଅନ୍ୟକୁ ସେହି ବାଟରେ ଚଳାଇ ପାରିଲେ ଆମର ପୂର୍ଣ୍ଣ ଜୟ । ଆମର ମତବାଦ ପ୍ରତିଷ୍ଠିତ; କିନ୍ତୁ ସେପରି ପ୍ରଧାନ ପୁରୁଷ ବା ସ୍ତ୍ରୀ ଖୁବ୍ କମ୍ ଦେଖାଯାନ୍ତି । ତଥାପି ତୁମେ କହିବ—କେହି ମାନୁ ନ ମାନୁ ଆମ ମନକୁ ଯାହା ମାନିଛି ଆମେ ସେହି ବାଟରେ ଯିବା ।

କିନ୍ତୁ ପୁଣି ତୁମେ ଦେଖ ତ, ତୁମେ ପୂର୍ବ ପୁରୁଷଙ୍କ ମତ ନେଇ ରୀତି ଅନୁସାରେ ଗ୍ଭଲୁଛ କି ନାହିଁ ? ପୁଣି ସମାଜ ଯେଉଁସବୁ ନିୟମ କରୁଛି, ତାକୁ ମାନିବାକୁ ଆସ୍ତେ ଆସ୍ତେ ବାଧ୍ୟ ହେଉଛ କି ନାହିଁ । ବ୍ୟବସ୍ଥାପକ ସଭାରେ ଆସ୍ତେ ଆସ୍ତେ ଯେଉଁ ଆଇନ ହେଉଛି, ତାହାର ଅନୁସାରେ ତୁମର ଆମର ଜୀବନ ଗଠିତ ହେଉଛି କି ନାହିଁ ।

ଏହି ଦେଖ, ତୁମେ ମୁଁ ଆଠ ଦଶ ବର୍ଷରେ ବିବାହ କରିଥିଲୁ । ଏବେ ଆଇନ ଅନୁସାରେ ବାଳିକାର ଚଉଦବର୍ଷ ପୂର୍ଣ୍ଣ ନ ହେଲେ ବାଳକର ଅଠରବର୍ଷ ପୂର୍ଣ୍ଣ ନ ହେଲେ ବିବାହ ଆଇନସଙ୍ଗତ ନୁହେଁ । ଆଜି ସେପରି ବିବାହ କେହି ଧରାଇଦେଲେ ଦଣ୍ଡନୀୟ ହେବେ ବିବାହକର୍ତ୍ତାମାନେ ।

ଅନେକ ବିବାହ ଲୁଚି ଲୁଚି ପ୍ରକାଶ୍ୟରେ ମଧ୍ୟ ଅଳ୍ପ ବୟସରେ ହୋଇଗଲା । ଏବେ କଣ ଦେଖୁଛ ? ଆସ୍ତେ ଆସ୍ତେ ବିବାହର ବୟସ ମନକୁ ବଢ଼ି-ଗଲାଣି ।

ଏବେ ତୁମ ଆମ ପରି ସାନ ସାନ ହୋଇ ବାହା କରିବା ଖୁବ୍ କମିଗଲାଣି—ଦୁଇଚ ଦିନେ ଏକାବେଳକେ କମିଯିବ ।

ଅତଏବ ଯୁବତୀ କନ୍ୟାକୁ ଘରେ ରଖିଲେ ଯେଉଁ କଳଙ୍କ, ଯେଉଁ ଛିଗ୍ଭକର ଥିଲା, ତାହା ଧୀରେ ଧୀରେ ଉଠି ଯାଇଛି ।

ଏହାଦ୍ୱାରା ନୀତିଭ୍ରଷ୍ଟତା ହେଉଛି—ଏହା ମଧ୍ୟ ମାନିବାକୁ ହେବ, କିନ୍ତୁ କେହି କେହି ନୂତନ ଯୁକ୍ତି କରିବେ—ସେଟା ନୀତିଭ୍ରଷ୍ଟତା ନୁହେଁ । ଏପରି ହୋଇଥାଏ ।

ଆଜି କେହି କେହି କହିବାକୁ ବାହାରିଲେଣି, ଏ ତ ଶରୀରର କ୍ଷୁଧା । ଅତଏବ ଏହାକୁ ପାଳନ କରିବାକୁ ହେବ । ଯୌନସଙ୍ଗମ ହୋଇଗଲେ ସେଥିରେ ଏତେ ବ୍ୟସ୍ତ ହେବାର କିଛି ନାହିଁ ।

ବିବାହ ଶିଥିଳ ହୋଇ ଯାଇଛି; କିନ୍ତୁ ତାହାକୁ ସେପରି କେହି ଲକ୍ଷ୍ୟ କରୁଛନ୍ତି କେହି ଅବା ଲକ୍ଷ୍ୟ କରୁନାହିଁ । କିନ୍ତୁ ସାଧାରଣଲୋକ ତାର ଚେଷ୍ଟାମାନଙ୍କୁ

ଦେଖି ବେଶ୍ଯାମାନଙ୍କର ସ୍ୱଳିତ ସଂଯମିତ ହୋଇ ବଢ଼ୁଛି । ସେ କଣ କରିବ ? ଉପାୟ ଅନ୍ୟ ନାହିଁ ତା ପକ୍ଷରେ ।

ଜାତୀୟ ଜୀବନ ମଧ୍ୟରେ ପୁଅ ବିବାହିତ ହୋଇ ଶାଶୁଘରକୁ ଯାଏ । ସେଠାରେ ସେହି ନିୟମ । ଆମେ ସେଠା ପ୍ରଚଳନ କଲେ କପରି ଅସମ୍ଭବ ପରି ଜଣାଯିବ । ଘରଚ ଘରଜ୍ଵାଇଁ ପ୍ରଥାଟା ଆମର ଅଛି, କିନ୍ତୁ ସାଧାରଣ ପ୍ରଥା ସାଧାରଣ ନିୟମ ଏହା ନୁହେଁ । ପୁଣି ମାଲବାରରେ ସମ୍ପତ୍ତି ମା' ଅଂଶରେ ମାମୁଁ ଅଂଶରେ ଚାଲେ । ସନ୍ତାନ ମଧ୍ୟ ସ୍ୱାମୀଘରର ନୁହେଁ—ପିଲାର ମାମୁଁଘରର, ଅର୍ଥାତ୍ ସ୍ତ୍ରୀର ଭାଇଘରର । ସ୍ୱାମୀ ମରିଗଲେ ପିଲାକୁ ମାମୁଁ ନେଇଯାଏ । ଏପରି ନିୟମ ଆମେ ଏଠାରେ ଚଳାଇବୁ କି ? ଚଳାଇ ପାରିବୁ କି ? ଏହାକୁ ଧର୍ମ ଅଧର୍ମ କହିବୁ କି ? କିଛି ବୁଝିହୁଏ ନାହିଁ । କିଛି ବୁଝି ହୁଏ—ପୂରା ବୁଝିହୁଏ ନାହିଁ ।

ଏହିପରି ଜଗତ ଚାଲିଛି । ଏହାରି ଭିତରେ ତୁମେ ମୁଁ ଆସି ସ୍ୱାମୀସ୍ତ୍ରୀ ହୋଇ ପଚିଶ ବର୍ଷ ପ୍ରାୟ କଟାଇଲୁ ।

ମୁଁ ପାପୀଟା, ତୁମେ ପତିବ୍ରତା । ପତିବ୍ରତା ହେବାର ତୁମର ସୁବିଧା ଥିଲା । ମୁଁ ପଥଭ୍ରଷ୍ଟ ହେବି—ତୁମେ ନ ଥିଲେ ସଂସାରର, ଶରୀରର, ମାୟା ମୋହର ଆବହାଓ୍ୱାରେ । ଏହା ସ୍ୱାଭାବିକ ନୁହେଁ କି ? ସ୍ୱାଭାବିକ ହେଲେ ବି ତୁମେ ହୁଏତ କହିବ ଏହା କ୍ଷମଣୀୟ ନୁହେଁ । ମାତ୍ର ମୁଁ କହିବି କି ତୁମେ ନିଷ୍ଠୁର ହେବ ।

ସତ ! ଆଜି ତୁମକୁ ପ୍ରେମର ଚିଠି ଥଳୀରୁ ଉପହାର ଦେବି ନାହିଁ । ଆଜି ଦେବି ଏହି ଜଗତର—ଆମେ ଯେଉଁ ସମୟରେ ବଞ୍ଚିଛୁ, ସେହି ଜଗତର ସବୁ ହାଲଚାଲର ଗୋଟିଏ ସାମାନ୍ୟ ନମୁନା । ଲୋକମାନଙ୍କର ଗତିବିଧି, ଭାବ, ଭାବନା, ଚିନ୍ତା କପରି ଚାଲିଛି ବର୍ତ୍ତମାନ—ତାହାର ନମୁନା ।

ମୁଁ ତ ଅନେକ ଚିଠି ପାଏ, ତୁମେ ଜାଣ । ସବୁ ଚିଠି କଣ, ଗୋଟିଏ ଚିଠି ମଧ୍ୟ ସାଇତି ରଖିପାରେ ନାହିଁ । ସବୁ ଚିରି ପକାଏ ବୋଝ ଖାଲି କରିବା ପାଇଁ । ଆଜି ଯେଉଁ ଚିଠିଗୁଡ଼ାକୁ ଚିରି ପକାଇବି, ଯେଉଁ ବୋଝ ଖାଲି କରିବି, ତାହାର ମର୍ମକଥା ସବୁ ତୁମକୁ ଏଠାରେ ଶୁଣାଇ ଦେଇପାରି ସେସବୁ ଚିରିଦେବି ।

ଏହି ଦେଖ ତୁମର ନାତୁଣୀର ବରକୁ । ସେ ଚିଠି ଲେଖିଛି ଗୋଟିଏ ଫେଲ୍ଟ ହ୍ୟାଟ ପାଇଁ । ଫେଲ୍ଟ ହ୍ୟାଟ କଣ ତୁମେ ଜାଣ ନାହିଁ । ମୁଁ ଦେଖିଛି, ମାତ୍ର ଠିକ୍ ଜାଣେ ନାହିଁ । ମାତ୍ର ନବୀନ ପ୍ରାଣ, ନୂତନ ନୂତନ ମନ ଯୁବକର ଫେଲ୍ଟ ହେଟ ସଉକକୁ ତୁମେ ଅବା ମନା କରିବ କାହିଁକି ? ପୁଣି କି ରଙ୍ଗର ? ପାଉଁଶିଆ ରଙ୍ଗ ହେଲେ ଭଲ, ଦୁଇକଡ଼ ଚେପା ହୋଇ ନ ଥିବ । ଦୈବାତ୍ ଯଦି ପାଉଁଶିଆ ରଙ୍ଗର ନ ମିଳେ, ଖଇରିଆ ରଙ୍ଗର କିଣିବା ପାଇଁ ଅନୁରୋଧ କରିଛି ।

ଦୁଇ କଡ଼ ଚେପା ହୋଇ ନ ଥିବ—ଚେପା ହୋଇଥିଲେ କଣ ହୁଅନ୍ତା ? ବେଶୀ ଫାଜିଲ ବୋଲି କହନ୍ତେ ସିନା । ଏହିପରି କିଛି ମନୋଭାବ ଥିବ ।

ମହାତ୍ମା ଗାନ୍ଧି ଆଣୁଚିକକୁ ଲୁଗା ପିନ୍ଧିନାହାନ୍ତି ଭାରତର ଦାରିଦ୍ର୍ୟର ପ୍ରତୀକ ହୋଇ ରହିବାପାଇଁ, ଆଉ ଏଣେ ଜଣକର ମନ ଫେଲ୍ଟ ହ୍ୟାଟ ପାଇଁ ।

ସେହି ତୁ ଏତେ ଦେଶ ପାଇଁ ପ୍ରାଣ-ଦେବ—ଦେଶପ୍ରୀତିରେ ମୁଗ୍ଧ ହେବ—କଏ କହିପାରେ ? ମହାତ୍ମା ଗାନ୍ଧିଙ୍କର ମଧ୍ୟ ସେଇଆ ହୋଇଥିଲା ।

ଆଉ ଗୋଟିଏ ଶଠି ଦେଖ ! ବହିର ନାମ ( ସେଟା ଇଂରାଜୀ ବହି ) *We Walk Alone*, ଅର୍ଥାତ୍ ଆମେ ଏକାକୀ ଚାଲିଛୁ । ଏ କୁଷ୍ଠରୋଗୀଙ୍କୁ ଲକ୍ଷ୍ୟ କରି ଲେଖା ହୋଇଅଛି ! ବାସ୍ତବିକ ଯେମାନଙ୍କୁ ସହାୟ ହେବା ପାଇଁ, ଯେମାନଙ୍କ ମହତରେ ସୁଖ ଦୁଃଖ ହେବା ପାଇଁ, ଯେମାନଙ୍କ ସହିତରେ ପ୍ରାଣ ମିଳାଇ କଥା କହିବା ପାଇଁ କେତେ ଜଣ ଅଛନ୍ତି ? ଯେମାନେ ଜୀବନରେ କୁଷ୍ଠଗ୍ରସ୍ତ ହେଲେ ପରେ ଏକାକୀ—ହଁ, ଏକାକୀ ହିଁ ଚାଲନ୍ତି ଚାଲି ଆସିଛନ୍ତି—ଚାଲୁଛନ୍ତି ।

କିନ୍ତୁ ଏଣିକି ? ଏଣିକି ଜଣ ଏହା ହେବା ଉଚିତ ? ନା, ଏହା ହେବା ଉଚିତ ନୁହେଁ । ଏହା ହିଁ ବହିର ଲେଖକର ଧ୍ୱନି—ବ୍ୟଞ୍ଜନା ।

ତୁମେ ତ ଜାଣ, ମୋ ପାଇଁ କେତେ ଯନ୍ତ ହୋଇଥିଲ, ମୁଁ ନିଜେ କପଣ ସଙ୍ଗେ ସଙ୍ଗେ ରୋଗର ଆରମ୍ଭରେ ଦେଶ-ତ୍ୟାଗୀ, ଗୃହତ୍ୟାଗୀ, ପରିବାରତ୍ୟାଗୀ ହୋଇ ବାହାରିଗଲି—ହଁ, କୁଷ୍ଠରୋଗୀ-ମାନେ ବାସ୍ତବିକ ଜୀବନପଥରେ ଏକାକୀ, ନିତାନ୍ତ ଏକାକୀ ହୋଇ ଚାଲନ୍ତି । ଯେମାନେ କୁଆଡ଼େ ପାପ କରିଥିଲେ, ବ୍ୟଭିଚାର କରିଥିଲେ, ପୂର୍ବଜନ୍ମର ପାପ ଇତ୍ୟାଦି ଯୋଗୁ ଏ ଦୁଃଖ ଭୋଗ କରୁଛନ୍ତି । ହଁ, ତୁ ଏତେ ଅଜ୍ଞାନତା ଗୋଟିଏ ପାପ ! ଅଜ୍ଞାନତା ଯୋଗୁ ଜଣ କରିଥିବେ ଏବଂ ପ୍ରକୃତ ତାର କାର୍ଯ୍ୟ କରିଛୁ, କୁଷ୍ଠ-ରୋଗୀର ମୁଖରେ ଶରୀରରେ ବ୍ୟାଧିର ଉତ୍କଟ ଚିହ୍ନ ଉଠିଦେଇଛି ।

କିନ୍ତୁ ଶୁଣ ! ଅଜ୍ଞାନତା ତାହାର କାହିଁ ? ଯେପରି ପାପ କଏ ନ କରେ ବା ନ କରିଛି ? ଅତଏବ କୁଷ୍ଠରୋଗୀ ସେହି ପାପୀ; ମହାପାପୀ ଦୃଷ୍ଟିରୁ ଦେଖିବା ଉଚିତ ନୁହେଁ । ଏହା ମହା ଅନ୍ୟାୟ ଏବଂ ମହାପାପ ବୋଲି କହିବ । ଆଉ ଏତିକି ।

ଆଉ ଗୋଟିଏ ଶଠି ଦେଖ । ଜମିଦାରୀ ପ୍ରଥା ଉଠିଯିବା ଆନ୍ଦୋଳନ ଚାଲିଛି । ସମସ୍ତ ଲୋକେ ମୁଠେ କପଣ ଖାଇବେ, ଟିକିଏ ସୁଖରେ ରହିବେ, ଏଥିପାଇଁ ଆନ୍ଦୋଳନ ଚାଲିଛି । ଜମିଦାର-ମାନଙ୍କ ହାତରେ ଅନେକ ଜମି ରହି-ଯାଇଛି । ସେସବୁ ତାଙ୍କଠାରୁ ନେଇ-ନେବାକୁ ହେବ । ବାସ୍ତବିକ ସେସବୁ ଜମି ତାଙ୍କର ନୁହେଁ, ସେସବୁ ଜମି ସରକାରଙ୍କର । ସରକାର ଯେମାନଙ୍କୁ ସେସବୁ ଜମିରୁ ଖଜଣା ଆଦାୟ କରି ସରକାରଙ୍କୁ ଦେବା ପାଇଁ ଭାର ଦେଇ-ଥିଲେ ଏବଂ ସେହି ଜମି ଆଦାୟଭାଗରୁ ଯେମାନେ ପ୍ରାୟ ଅଧେ ପାଇବେ । ପାଉଥିଲେ । ସେଥିରେ ଜମିଦାର ପ୍ରବଳ ହୋଇଗଲେ—ଧନ ସମ୍ପତ୍ତି ତାଙ୍କ ହାତରେ ବେଶୀ ହୋଇଗଲା—ପ୍ରଜାମାନେ ଦୁଃଖରେ ରହିଲେ । ଏଥିପାଇଁ ଜମିଦାରୀ ପ୍ରଥା ଉଠିଯିବାର ଚେଷ୍ଟା ଚାଲିଛି । ଆଉ ଯିଏ ପ୍ରକୃତରେ ଚାଷୀ, ତାରି ହାତରେ ଜମି ରହିଲେ ଜମିର ମର୍ଯ୍ୟାଦା ବଢ଼ିବ, ବେଶୀ ଫସଲ ହେବ, ଭଲ ଚାଷ ହେବ ।

ଗୋଟିଏ କଥା ଅଛି—ଚଷା କ ଜାଣେ ପଶାର କଥା । ସେହିପରି ଗୁଡ଼ଆ କ ଜାଣେ ଚାଷର କଥା; କିନ୍ତୁ ପୁରୋହିତ

କି ଜାଣେ ଗୁଣର କଥା । ଅତଏବ ଗୁଣୀ ହାତରେ—ଗୁଣୀ ହାତରେ କେବଳ ଜମି ରହିବ; ଅନ୍ୟ ହାତରେ ନୁହେଁ ।

ତୁମେ ଜମିର ତତ୍ତ୍ୱ ନେବ ନାହିଁ ଅଥଚ ଜମିର ଫସଲରେ ଭାଗୀଦାର ହେବ । ଏହା ଅନ୍ୟାୟ କଥା ନୁହେଁ କି ? ଅନ୍ୟାୟ—ନିଶ୍ଚେ ଅନ୍ୟାୟ ।

ଆଉ ଗୋଟିଏ ଚିଠି ଦେଖ ଆମ ସୁବଳର । ସୁବଳ ବଧିର । କେଡ଼େ ସୁନ୍ଦର ପିଲା ! ମାତ୍ର ସେ ହରିଜନ । ହରିଜନ ବୋଲି ଆମେ କେତେ ଅନ୍ୟାୟ ଅତ୍ୟାଚାର ଜୁଲମ ତାଙ୍କ ଉପରେ କରିଛୁ । ଜାଣ ସୁବଳର ମନରେ କି କଷ୍ଟ ? କରୁଣା ରାଖି ପୂର୍ଣ୍ଣିମା ଦିନ ସୁବଳକୁ ଗୋଟିଏ ପଇତା ଦେଇଥିଲା । ସେହି ପଇତା ପିନ୍ଧି ସୁବଳ ବଡ଼ ଖୁସି ହୋଇଥିଲା । ମୁଁ ଦେଖିଲି ସେ ଅନେକ ଦିନ ଧରି ସେ ସେ ପଇତା ପିନ୍ଧିଛି । ମୁଁ ଦେଖି ଖୁସି ହେଲି । ତାର ମନର ଭାବ ସୁନ୍ଦର ହୋଇଛି । ସେ ମୁଣ୍ଡରେ ଗୋଟିଏ ଚନ୍ଦନଟୋପା ମଧ୍ୟ ମାରୁଛି । ମୁଁ କହିଲି ଖୁସିରେ, ସୁବଳ ବେଶ୍ ହୋଇଛି । ଏଣିକି ତୁମେ ବ୍ରାହ୍ମଣ । ସୁବଳ ଖୁସି ହେଲା ।

କିଛୁ କିଛି ଦିନ ପରେ ସୁବଳକୁ ଦିଲ୍ଲୀ ଆସିବାକୁ ହେଲା । ଗାଡ଼ିରେ ଅନ୍ୟାନ୍ୟ ବନ୍ଧୁମାନେ ତାକୁ ଦେଖି ମୋତେ ପଚାରିଲେ । ମୁଁ କହିଲି—ସେ ଦିଲ୍ଲୀକୁ ମୋ ସାଙ୍ଗରେ ଯାଉଛି ହରିଜନ ସେବକ-ସଙ୍ଘରେ ରହି ବହିବନ୍ଧା ଆଉ କାଗଜ-ତିଆରି ଶିଖିବ ।

ସୁବଳ ଏହା ଶୁଣି ବ୍ୟଥିତ ହେଲା । ସେ ହୋଇଥିଲା ବ୍ରାହ୍ମଣ, ହେବ ପୁଣି ହରିଜନ !

ହରିଜନ ସେବକ ସଙ୍ଘରେ ପୁଣି ଲୋକମାନେ ଉପସ୍ଥିତ ହେଲେ । ସେ ସେଠି କହିଲା, ସେ ବ୍ରାହ୍ମଣ ।

ମୋ ପାଖକୁ ଚିଠି ଗଲା । ମୁଁ ସବୁ କଥା ବୁଝାଇ ଲେଖିଲି, ଆଉ କହିଲି ବାଳକର ନରମ ପ୍ରାଣରେ ଆଉ ଆଘାତ ଦେବେ ନାହିଁ ।

ସୁପରିଣ୍ଟେଣ୍ଡେଣ୍ଟ ଲେଖି ପଠାଇଲେ—କଥାଟା ବୁଝିଲି, ଆଉ ପଚାରିବୁ ନାହିଁ ।

ବର୍ତ୍ତମାନ ମୁଁ ପଚାରେ, ତୁମେ ହରିଜନ କରି—ସେମାନେ ସମାଜରେ ନୀଚ, ଏ ଭାବ ଜନ୍ମାଇ ସେମାନଙ୍କୁ ରଖିବା ଦ୍ୱାରା ତୁମେ ଆମେ ମହାପାପ ଅର୍ଜନ କରୁନାହୁଁ କି ? ଅତଏବ ଅସ୍ପୃଶ୍ୟତା ମହାପାପ ।

ଆଉ ଏକଥା କହିବାକୁ ଚାହେଁ, ହରିଜନ ହରିଜନ କହି ହରିଜନମାନେ ବେଶୀ ଦାମ୍—ବିନା ପଇସାରେ ଖାଇବୁ, ପଢ଼ିବୁ, ହସିବୁ, ସବୁ କଥାରେ ଜିଦ୍ ଧରିଲେ ସେମାନେ ଚିରକାଳ ପୁଣି ହରିଜନ ହୋଇ ରହିଯିବେ ।

ବର୍ତ୍ତମାନ ସମୟ ଆସିଛି—ସେମାନେ ଏଣିକି ଆଉ ହରିଜନ ବୋଲାଇବେ ନାହିଁ । ସେମାନେ ଚଷା ହୋଇଯାନ୍ତୁ, ଖଣ୍ଡାୟତ ହୋଇଯାନ୍ତୁ—ସେମାନେ ତ ଜମି ଚାଷ ବି କରନ୍ତି । ସେମାନେ କେଉଟ ହୁଅନ୍ତୁ—ସେମାନେ ତ ମାଛ ଧରନ୍ତି । ତାହାହେଲେ ହରିଜନରୁ ରକ୍ଷା ପାଇବେ । କାହିଁକି, ବ୍ରାହ୍ମଣ ହୁଅନ୍ତୁ । ଆର୍ଯ୍ୟ ସମାଜ ତାହା କରିନେବ । ମହାତ୍ମା ଗାନ୍ଧୀ ଯେଉଁ ଉଦ୍ଦେଶ୍ୟରେ ହରିଜନ ଶବ୍ଦ ବ୍ୟବହାର କରିଥିଲେ, ତାହାର ମର୍ମ ଏବେ ହରିଜନମାନେ ମଧ୍ୟ ବୁଝୁନାହାନ୍ତି ।

ହରି ଅର୍ଥାତ୍ ଭଗବାନ୍, ଈଶ୍ୱରଙ୍କର ଜନ ବା ଲୋକ । ଖାସ ହରି ଉପାମୃତ ।

ଅତଏବ ବାଣୀ, ତୁମେ ଏଣିକି ହରିଜନଙ୍କୁ ଆପଣାର କର—ସେମାନଙ୍କୁ ଅଛୁଆଁ ଭାବ ନାହିଁ—ତାଙ୍କ ଘରକୁ ଯିବାକୁ ଭୟ କର ନାହିଁ—ତାଙ୍କ ସ୍ତ୍ରୀ-ଲୋକଙ୍କ ସଙ୍ଗରେ ବସି କଥା କହିବାକୁ ଡର ନାହିଁ—ଏହା ହିଁ ମୋର ଇଚ୍ଛା ।

ତୁମେ ମୋ କଥା କଣ ଶୁଣିବ ? କେବେ ଶୁଣିଛ କି ? ଏହାହିଁ ମୋର ଦୁଃଖ ।

ଯେଉଁମାନେ ଆମ ପଛେ ପଛେ ଆସୁଛନ୍ତି, ସେମାନଙ୍କ ଚିନ୍ତାକୁ ଆମେ ଯେତେ ପାରୁଛୁ ଆମ ଚିନ୍ତାଦ୍ୱାରା ପ୍ରଭାବିତ କରୁଛୁ ।

ଏଣିକି ପାଠପଢ଼ା ବେଶି ବେଶି ହେଲା । ବାବୁଗିରି ମଧ୍ୟ ବଢ଼ିଲା । ସମସ୍ତେ ବଡ଼ ହେବାକୁ ଚେଷ୍ଟା କଲେ; କିନ୍ତୁ ବଡ଼ର ଅର୍ଥ କେବଳ ନିଜର ଭୋଗ । ଆଉ ପରର ସେବା, ନିଜର ତ୍ୟାଗ, ଏସବୁ ଦିଗକୁ ଲକ୍ଷ୍ୟ ଖୁବ୍ କମ୍ ଲୋକଙ୍କର ଅଛି ।

ଯାହା ହେଉ, ଆମ ହାତରେ ଯେଉଁ ପିଲାମାନେ ଅଛନ୍ତି, ସେମାନଙ୍କୁ ଆମେ ଯେତିକି ଆମ ଜୀବନଦ୍ୱାରା ପ୍ରଭାବିତ କରି ପାରିବୁ, ସେତିକି । ଆଉ ଅଧିକ କିଛୁ କରିବାର ଆଶା ରଖିବୁ କାହିଁକି ? ଆଉ ଆମେ ଅବା ଠିକ୍, ପୁଣି ଠିକ୍, ଏପରି ଭାବ ଆମ ମତ କାହାରି ଉପରେ ଜୋର ଜବରଦସ୍ତି କରି ଚପାଇବୁ ଅବା କାହିଁକି ?

ଆଜି ଦେଖୁଛି—ଯେ ପାଠ ପଢ଼ିଲା, ସେ ଚାକିରି ଚାକିରି ହୋଇ ଖୋଜି ମରୁଛି—ଚାକିରି ନ ପାଇଲେ ସେ ମଲା ।

ଅଥଚ ଯେଉଁ ଗୁଣ ଅଛି, ସେହି ଗୁଣ ଦ୍ୱାରା ଯଦି ସେ ସ୍ୱାଧୀନ ଭାବରେ ଚଳି-ପାରେ ଏବଂ ସାମାନ୍ୟରେ ସନ୍ତୁଷ୍ଟ ହୋଇପାରେ, ସେ ହେଉନାହିଁ କାହିଁକି ? ଚାକରି, ଚାକରି, ଚାକିରି—ପୁଣି ବାବୁଗିରି ନବାବ, ଏସବୁ ଦେଖି ଦେଖି ମୋ ମନ ଜଳିଗଲାଣି ।

ଆଜି ଗ୍ରାମମାନଙ୍କରେ ପଲ୍ଲୀମଙ୍ଗଳ ସମ୍ବାଦ ହେଉଛି । ବାବୁମାନେ—ପାଠ-ପଢ଼ୁଆ ବାବୁମାନେ ଏସବୁ କରୁଛନ୍ତି; କିନ୍ତୁ ଏହି ବାବୁମାନେ ଯଦି ଆଉ ଟିକିଏ ନିଜର ବାବୁଗିରି ଛାଡି ପଲ୍ଲୀର ସେବାରେ ଆତ୍ମନିୟୋଗ କରନ୍ତେ—କେଡ଼େ ଭଲ ହୁଅନ୍ତା ! କିନ୍ତୁ କାହିଁ—

ଏ ତ ଗଲା ପଲ୍ଲୀମଙ୍ଗଳ କଥା ।

ଆଉ ଗୋଟିଏ ଦିଗକୁ ତୁମର ମନ ଆକର୍ଷଣ କରୁଛି । ଆମର କୁଟୀର ଶିଳ୍ପ । ଇଂରେଜ ଆସିବା ପରେ, ଦେଶରେ ଶିଳ୍ପ ସବୁ ଧ୍ୱଂସପ୍ରାପ୍ତ ହେଲା ।

ଆଜି ମହାତ୍ମା ଗାନ୍ଧୀ କୁଟୀର ଶିଳ୍ପ ସମ୍ବନ୍ଧରେ ଚିତ୍କାର କରୁଛନ୍ତି । ରାୟ ବାହାଦୁର ଭିକାରୀ ଚରଣ ପଟ୍ଟନାୟକ ଏଥିରେ ଏତେ ବର୍ଷ ଧରି ଲାଗିଛନ୍ତି; କିନ୍ତୁ ପ୍ରକୃତରେ ଏ ପାଗଳ ସରକାରର ସେ ଦିଗରେ ମନ ନାହିଁ । ସେ ଚାହୁଁଛି ଖାଲି ପଶ୍ଚିମର ଅନୁକରଣ କରିବ—ଥୋଇ ଥୋଇ କରି ନାଚିବ—ବଡ଼ ବାବୁଗିରି କରିବ । କେଉଁଆଡ଼ୁ କିଛି ହେଉନାହିଁ ।

ଲୋକେ ବି ଏପରି ଅବସ୍ଥାକୁ ଆସି ନାହାନ୍ତି ଯେ ଏକଜୁଟ ହୋଇ ଗଭର୍ଣ୍ଣମେଣ୍ଟର ଅପେକ୍ଷା ନ ରଖି ଯୌଥ କାରବାର ଆରମ୍ଭ କରନ୍ତେ । ଏଠାରେ ମଧ୍ୟ ଆମର ଚରିତ୍ରର ବଳ ନାହିଁ । ଆମର ସାହସ

ନାହିଁ, ନିଷ୍ଠା ନାହିଁ, ତ୍ୟାଗ ନାହିଁ, ଅଭିନିବେଶ ନାହିଁ । ସୁତରାଂ ଜାତିଟା ନିମ୍ନ ପର ପଡ଼ିଯାଉଛି ।

ଏଣେ ଦେଖ, ଆମର ପ୍ରାଚୀନ ପରମ୍ପରା ସବୁ ଭାଙ୍ଗି ଯାଇଣ—ଗଲାଣି । ପୁଣି ଚେଷ୍ଟା ଚାଲିଛି ପ୍ରାଚୀନକୁ ଚଳାଇବା ପାଇଁ—କିଛି କିଛି ଉଦ୍ଧାର ମଧ୍ୟ ହେଉଛି । ସଂସ୍କୃତ ଚର୍ଚ୍ଚା, ପ୍ରାଚୀନ ପୋଥିର ସନ୍ଧାନ, ଭଙ୍ଗା ଧ୍ୱଂସୀକୃତ ସ୍ଥାନର ଖନନ ଏବଂ ପ୍ରାଚୀନ କୀର୍ତ୍ତିର ସନ୍ଧାନ ଓ ରକ୍ଷଣା-ବେକ୍ଷଣ—ଏ ସବୁ ଚେଷ୍ଟା କିଛି କିଛି ଚାଲିଛି ।

କିନ୍ତୁ ଜାତିର ଲୋକସଂଖ୍ୟା ବର୍ତ୍ତମାନ ସୁଦ୍ଧା ନାନାମୁଖୀ ହୋଇ ନାହାନ୍ତି, ବହୁମୁଖୀ ହୋଇ ନାହାନ୍ତି । କେବଳ ଦୁଇଟା ଚାରିଟା ଦିଗରେ ଦୌଡ଼ୁଛନ୍ତି । ସରକାରୀ ଚାକିରି ତ ଗୋଟିଏ, ଆଉ-କଣ ? ଆଉ ଖୁଚୁରା ଖୁଚୁରା ଟିକିଏ ଏଣୁ ତେଣୁ—ଛାପାଖାନା, ବସ୍ତ୍ର ଦୋକାନ, ଏତିକି । ଆଉ କଣ ? ଆଉ ତ କିଛି ଦିଶୁନାହିଁ ।

ଏଥି ମଧ୍ୟରେ ଆଇନ ହେଉଛି—ସମସ୍ତେ ପାଠ ପଢ଼ିବେ, ସବୁ ବୟସ୍କ ଭୋଟ ଦେବେ, ଆମର ଶାସନତନ୍ତ୍ର ସେମାନଙ୍କ ଦ୍ୱାରା ଏହିପରି ନିୟନ୍ତ୍ରିତ ଓ କେତେକ ପରିମାଣରେ ପରିଲକ୍ଷିତ ମଧ୍ୟ ହେବ ।

ତେଣେ ଭାରତରୁ ଗୋ-ବଧ ଉଠାଇବା ପାଇଁ ଗୋଟିଏ ଜୋର ଉଠିଛି । ଭାରତରୁ ଗୋ-ବଧ ଉଠାଇବାକୁ ହେବ । ଉଠାଇ ହେବ କି ? ଗୋପୂଜା କରିବାକୁ ହେବ । ବୀଣା, ତୁମେ କେତେ ଖୁସି ହୁଅନ୍ତ, ସତ ଯଦି ଭାରତରୁ ସବୁ କଲ୍‌ଖାନା ଉଠିଯାନ୍ତା, ଯାହା ଉପରେ ଅସଂଖ୍ୟ ଶାଗୁଣା ଉଡ଼େ, ଆଉ ଅସଂଖ୍ୟ ଗୋମାତା କଟା ହୁଏ; କିନ୍ତୁ ପାରିବୁ କି ? ଦେଖାଯାଉ, ଏ ଦିଗରେ କିଛି ଚେଷ୍ଟା ଚାଲିଛି ।

ବୀଣା ! ହେଇ ଦେଖ । ଆଦର୍ଶ—ସମାଜ କିପରି ବଦଳୁଛି । ଆମର ନର୍ସ ଦରକାର, ସ୍ତ୍ରୀଲୋକ ନର୍ସ ଦରକାର ସହସ୍ର ସହସ୍ର ଲକ୍ଷ ଲକ୍ଷ ଗର୍ଭବତୀ ସ୍ତ୍ରୀର ରକ୍ଷା ପାଇଁ—ଶିଶୁର ପ୍ରସବ ପାଇଁ । ଧାଈ ବା ଦାଈମାନଙ୍କୁ ଛାଡ଼ି ଏଣିକି ପାଠୁଆଣୀ ସବୁ ବାହାରିବେ । କିନ୍ତୁ ଗୋଟିଏ କଥା—ଏମାନଙ୍କର ଢଙ୍ଗ ରଙ୍ଗ ଲୋକଙ୍କୁ ଆକର୍ଷଣ କରିବ । ପୁଣି ଏମାନେ ବେଶୀ ପଇସା ନିଜ ଜୀବନ ଚଳାଇବା ପାଇଁ ଲୋଡ଼ିବାକୁ ଯାଇ ବିପଦରେ ପଡ଼ିବେ—ଆଦର୍ଶ ବଦଳିବ ।

ଆଜି ଦିଲ୍ଲୀ ସହରରେ ଟେଲିଫୋନରେ, ଷ୍ଟେସନ ଚାକିରିରେ, ଦୋକାନରେ ଝିଅ ଗୁଡ଼ା ଭର୍ତ୍ତି ହେଲେଣି । ତାଙ୍କ ପୋଷାକ, ତାଙ୍କ ବେଶ, ତାଙ୍କ ମୁରୁକି ମୁରୁକି ହସ, କଥାବୁହା ଦେଖିଲେ ପୂର୍ବର ଆଦର୍ଶର କିଛି ପାଇବ ନାହିଁ । ଏମାନେ ଏଣିକି ଆହୁରି ବେଶୀ ବେଶୀ ପଶିବେ ନାନା କ୍ଷେତ୍ରରେ । ତେଣୁ ଘର ଭାଙ୍ଗିଯିବ—ହୋଟେଲ ବେଶୀ ହେବ । ସ୍ୱଭାବ ବଦଳିବ, ରହଣ ସହଣ ବଦଳିବ । ମୋଟରକାର୍, ବାଇସିକଲ, ମୋଟର ବାଇସିକଲରେ ପୁରୁଷସ୍ତ୍ରୀ, ଅପରିଚିତ ପୁରୁଷ ସ୍ତ୍ରୀ ଅବାଧରେ ଯିବା ଆସିବା କରିବେ—କରିବାକୁ ଆରମ୍ଭ କଲେଣି । ହୁଏତ ମଦ ବି ଚାଲିବ—ନରନାରୀ ମଧ୍ୟରେ—ଯାହା ବେଶ୍ୟାଘରେ ଚାଲୁଥିଲା ।

ଏ ଜୁଆରକୁ ତୁମ ଏକାଦଶୀ ଠାକୁର ପୂଜାଦାଗ ବନ୍ଦ କରି ପାରିବ ? ନା— କଦାପି ନା ।

ତେବେ ଏ ପରିବର୍ତ୍ତନକୁ ଦେଖି ଏତେ ବ୍ୟସ୍ତ ହେବ ଅବା କାହିଁକି ? ତୁମର ଆଦର୍ଶରେ ତୁମେ ଚାଲିଛ, ଅନ୍ୟ ଅନ୍ୟ ଆଦର୍ଶରେ ଚାଲିଛି, କଣ କରିବ ?

କଲେଜରେ ପାଠ ପଢ଼ୁ ପଢ଼ୁ ପିଲା ପ୍ରେମ କରିବେ ଝିଅମାନେ ଯାହାଦାରା ହେଉ—ସେକଥା ତୁମର ପଚାରିବାର କି ପ୍ରୟୋଜନ । ହୁଏତ ତାହା ମଧ୍ୟ ଜଣାଯିବ—ଖୋଲାଖୋଲି ଖୋଲା ହୁଏତ ସେ ନରନାରୀ ପରସ୍ପର ସମ୍ପୃକ୍ତ କଥାବାର୍ତ୍ତା ହେବେ—ହୁଏତ ବିବାହିତ ଜୀବନର ଏକଗୁଟିଆ ରହିବ ନାହିଁ—ସେସବୁ ଶୁଣିବାକୁ ତୁମକୁ ଭଲ ଲାଗୁନାହିଁ, ମୁଁ ବୁଝି ପାରୁଛି । ମୁଁ କେବଳ କହୁଥିଲି ପୃଥିବୀଟା ଏହି ଆଡ଼କୁ ଗତି କଲାଣି ।

କିନ୍ତୁ ଯାହାହେଉ ପଛେ—ସ୍ନେହ, ମାୟା, ମମତା, ପ୍ରୀତି, ବନ୍ଧନ ଏସବୁ କଣ ଚାଲିଯିବ ? ଏସବୁ ଯିବ ନାହିଁ । ଏସବୁ ହୁଏତ ଆହୁରି ବେଶୀ କରି ଜନ୍ମିବ ଅପରିଚିତ ସମ୍ପର୍କରେ । ପରକୁ ଆପଣାର କରିବାର ପ୍ରବୃତ୍ତି ଏହାଦ୍ୱାରା ଆହୁରି ବଢ଼ିବ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ ଏମାନଙ୍କ ଭିତରେ ଭ୍ରାତୃତ୍ୱ, ବନ୍ଧୁତ୍ୱ, ପ୍ରେମ ହୁଏତ ଆହୁରି ବଢ଼ିବ । ବର୍ତ୍ତମାନ ଗୋଟିଏ ଗୋଟିଏ ଗଣ୍ଡି ଭିତରେ ରହି ଗୋଟିଏ ଗୋଟିଏ ସାମାଜିକ ବିଧି ବିଧାନରେ ରହି, ଗୋଟିଏ ଗୋଟିଏ ସାମାଜିକ ଓ ନୈତିକ ବନ୍ଧନରେ ରହି ଆମେ ଚିତ୍ତକୁ ସଙ୍କୁଚିତ କରୁଛୁ । ମୁଁ ଅବଶ୍ୟ କହି ପାରୁନାହିଁ—କେଉଁଟା ଠିକ୍, କେଉଁଟା ବେଠିକ୍ ।

କିନ୍ତୁ ମନେ ହୁଏ ଜଗତରେ ସବୁ ଅଛି, ପୁଣି ପରିବର୍ତ୍ତନ ହେଉଛି, ଏହାରି ଭିତରେ ଆମେ ଗତି କରୁଛୁ । ଏହାରି ଭିତରେ ସୂର୍ଯ୍ୟ ଉଦୟ ହେଉଛି, ସୂର୍ଯ୍ୟ ଅସ୍ତ ହେଉଛି । ଏହାରି ଭିତରେ ଚନ୍ଦ୍ର ଉଠୁଛି, ତାରକା ଫୁଟୁଛି, ଆକାଶ ନୀଳ ସୁନ୍ଦର ଦିଶୁଛି । କେତେବେଳେ ଅବା ଘୂରିଆଡ଼େ ଘନଘଟା ଚାଲିଛି, ବିଦ୍ୟୁତ୍ ଚମକୁଛି, ବଜ୍ର ବାଜୁଛି, ଶଙ୍କା ହେଉଛି ଏ ପୃଥିବୀରେ ପ୍ରଳୟ ହେବ ପରା ।

ଆଉ ଗୋଟିଏ କଥା ଦେଖ ସାଣା । ସମସ୍ତେ ନିଜ ଜୀବନରେ ଅସନ୍ତୁଷ୍ଟ । କେହି ନିଜ ଜୀବନରେ ଏକାବେଳକେ ସୁଖୀ ନୁହନ୍ତି । ପ୍ରତ୍ୟେକକୁ ପଚାର—ସେ କହିବ ଯେ ସେ ଜୀବନରେ ଅନେକ ଥର ଭୁଲ କରିଛି । କେହି କହିବ ସେ ଇଞ୍ଜିନିଅର ନ ହୋଇ ମାଷ୍ଟର ହୋଇଥିଲେ ଭଲ ହୋଇଥାନ୍ତା । ଆଉ କେହି କହିବ, ସେ ମାଷ୍ଟର ନ ହୋଇ ଇଞ୍ଜିନିଅର ହୋଇଥିଲେ ଭଲ ହୋଇଥାନ୍ତା । କେହି କହିବ ସେ ସନ୍ନ୍ୟାସୀ ନ ହୋଇ ଗୃହୀ ହୋଇଥିଲେ ଭଲ ହୋଇଥାନ୍ତା । ଆଉ କେହି କହିବ ଯେ ସେ ଗୃହୀ ନ ହୋଇ ସନ୍ନ୍ୟାସୀ ହୋଇଥିଲେ ଭଲ ହୋଇଥାନ୍ତା । କେହି କେହି ଅବା କହିବେ, ସେମାନେ ରାଜନୀତିରେ ନ ପଶି ସମାଜ ବା ଧର୍ମନୀତିରେ ପଶିଥିଲେ ଭଲ କରିଥାନ୍ତେ, କିନ୍ତୁ ଭୁଲରେ ରାଜନୀତିରେ ପଶିଲେ । କେହି କହିବେ ସେ କେବଳ ଗଣିତରେ ଜୀବନ କଟାଇଥିଲେ ସୁଖୀ ହୋଇଥାନ୍ତେ । ଆଉ କେହି କହିବେ ସେ ବ୍ୟବସାୟୀ

ହୋଇଥିଲେ ଭଲ ହୋଇଥାନ୍ତା । ଏସବୁ ଦୁଃଖାତ୍ମକ ଭୁଲ । ଏ ଭୁଲ ସୁଧୁରିବାର ନୁହେଁ, କିନ୍ତୁ ଏ ଭୁଲ କ ନା ତା'ର ସନ୍ଦେହଜନକ । ସିମିତ ହୋଇଥିଲେ ଇମିତ ହୋଇଥାନ୍ତା, ଇମିତ ହୋଇଥିଲେ ସିମିତ ହୋଇଥାନ୍ତା—ଏ ଭାବନାରେ ହୁଏତ ଭେଳକି ଅଛି—ଗୋଳ ଅଛି—ଯାଦୁ ଅଛି । ହୁଏତ ଏହା ସତ୍ୟ ନୁହେଁ, ହୁଏତ ଏହା ଜଣାଉଛି ଯେ ମନୁଷ୍ୟର ସବୁ ହେବାର ଆକାଂକ୍ଷାର ବୀଜ ଅନ୍ତର ଭିତରେ ନିହିତ । ସେଥିପାଇଁ ସେ ଯେଉଁଟା ପାଇ ନ ପାରିଥାଏ, ସେଇଟାକୁ ପାଇବା ପାଇଁ ଲାଳାୟିତ ହୁଏ, ଆଶାପ୍ଲୁତ ହୁଏ, ଆକାଂକ୍ଷିତ ହୁଏ । ଯାହାହେଉ, ଛାଡ଼ ସେ କଥା । ମୋର ନିଜର ଇଚ୍ଛା ଥିଲା ବାବାଜୀ ବା ସାଧୂ ହେବି ବା ସନ୍ନ୍ୟାସୀ ହେବି, ପୁଣି ପାଠ ପଢ଼ି ଜ୍ଞାନୀ ହେବାର ଇଚ୍ଛା ମଧ୍ୟ ଥିଲା । ପୁଣି କୁସ୍ତି, ପହିଁରା, ଫୁଟବଲ୍ ଖେଳ ଖେଳଉଆଡ଼, ଓସ୍ତାଦ, ବୀର ହେବାର ଇଚ୍ଛା ମଧ୍ୟ ଥିଲା ।

କିନ୍ତୁ ମଣିଷ ସବୁ ହୁଏ ଏବଂ କେଉଁଥିରେ କେଉଁଥିରେ ହୁଏତ ଅଧିକ ପାରଙ୍ଗମତା ଦେଖାଏ । ଗୋଟିଏ ବା ବହୁତ—ଏହା ମଧ୍ୟ ମନୁଷ୍ୟର ଅକ୍ତିଆର-ରେ ନ ଥାଏ । ସେ ସମ୍ପର୍ଣ ଓ ସଙ୍ଘାତରେ ବରାବର ବଦଳେ । ଛାଡ଼ ସେ କଥା ।

ଆଜ ଗୋଟିଏ କଥା କହିବ । ଏବେ ଅନେକ ଜାତି ସେମାନଙ୍କ ଦଳ ଗଢ଼ୁଛନ୍ତି । କଥାରେ ଅଛି—ସଂଘ ଶକ୍ତିଃ କଳୌ ଯୁଗେ । କଳିଯୁଗରେ ଏକତ୍ର ହେବାଦ୍ୱାରା ବଳ ହୁଏ । ଏହାକୁ କେହି କେହି ନିନ୍ଦା କରୁଛନ୍ତି, କେହି କେହି ଏହା କରୁଛନ୍ତି ଉତ୍ସାହର ସହିତ ।

ଗୋଟିଏ କଥା କହିବ । ଏହି ସଂଘ କରିବାଦ୍ୱାରା ଜାତି ଭିତରେ, ଭାଇମାନଙ୍କ ଭିତରେ ଗୋଟିଏ ଏକତା, ଗୋଟିଏ ପ୍ରୀତି, ଗୋଟିଏ ନିବିଡ଼ତା, ଗୋଟିଏ ନୈକଟ୍ୟ ଆସୁଛି—ଏହା କେହି ଅସ୍ୱୀକାର କରି ପାରିବେ ନାହିଁ ।

ଏହା ସଂକୀର୍ଣ୍ଣ ଜାତୀୟତା ନୁହେଁ । ଏହାଦ୍ୱାରା ଗୋଟିଏ ବର୍ଗର ସବୁ ଲୋକେ ଦୃଢ଼ ଏବଂ ବଳିଷ୍ଠ ହେଉଛନ୍ତି । ପରସ୍ପରର ଭ୍ରାତୃତ୍ୱ ଅନୁଭବ କରୁଛନ୍ତି—ଯେପରି କି ଇଟାମାନଙ୍କରେ ଚୂନ, ସୁରକି, ସିମେଣ୍ଟ ଲାଗି ଏକ ହେଉଛି, ଦୃଢ଼ ହେଉଛି । ଏହିପରି ସବୁ ଜାତି ଦୃଢ଼ ହୋଇଉଠିଲେ ସମଗ୍ର ଜାତିର ବଳ ବଢ଼ିବ—କମିବ ନାହିଁ । ଅତଏବ ଭୟ କରିବାର, ଆଶଙ୍କା କରିବାର କିଛି କାରଣ ନାହିଁ ।

ଆଜି ଏହାଦ୍ୱାରା ଭିନ୍ନ ଭିନ୍ନ ସ୍ଥାନର କ୍ଷୁଦ୍ର କ୍ଷୁଦ୍ର ଜାତୀୟତା ସମୂହଗୁଡ଼ିକ ଦୂରକୁ ଯାଇ ସବୁ ସ୍ଥାନରେ ଲୋକଙ୍କୁ ଗୋଟିଏ ସମୂହରେ ବାନ୍ଧିବା ପାଇଁ ଚେଷ୍ଟା କରି ଯାଇଛି । ସେ ସୁବିଧା, ସେ ସୁଯୋଗ ଏହି ଜାତି ସଭାଦ୍ୱାରା ସମ୍ଭବପର ହେଉଛି ।

ପୁନଶ୍ଚ ଭିନ୍ନ ଭିନ୍ନ ଜାତି ନିଜ ଜାତି ମଧ୍ୟରେ ଅଧିକରୁ ଅଧିକତର ସଂଖ୍ୟାରେ ଲୋକ ପୂରାଇବାକୁ ଇଚ୍ଛା କରୁଥିବାରୁ, ଏହି ଜାତିସଭାର ଚେଷ୍ଟା ସୁନ୍ଦର ହେଉଛି । ଏହାଦ୍ୱାରା ଯେଉଁମାନେ ଜାତିର ବାହାରେ ପଡ଼ିଥିଲେ, ସେମାନେ ଭିତରକୁ ଆସୁଛନ୍ତି । ଏହିପରି ହେଉ ହେଉ କ୍ଷୁଦ୍ର କ୍ଷୁଦ୍ର ସଂକୀର୍ଣ୍ଣତା ଦୂର ହୋଇଯିବ । ଜାତି ଭିତରେ ଜାତି—ନାନା ସଂକୀର୍ଣ୍ଣ ବିଭାଗ ସବୁ ଦୂର ହୋଇଯିବ । ସମସ୍ତେ ମିଳିଯିବେ । ଏହା ଶୁଭ । ଏହା ଆନନ୍ଦର କଥା ।

ରାଣୀ ! ତୁମକୁ ନେଇ ଜୀବନପଥରେ ଚାଲିଲି ଅନେକ । କିନ୍ତୁ ତୁମେ ମୋ ବାଟରେ ଚାଲିଲ ନାହିଁ । ତଥାପି ତୁମେ ବେଳେ ବେଳେ ମୋ ପାଖରେ ସାଙ୍ଗ ଦେଇଛ—ତୁମକୁ ଧନ୍ୟବାଦ ଦେବି, ତୁମଠାରେ ଚିର କୃତଜ୍ଞ ରହିବି, ତୁମକୁ ସେଥିପାଇଁ ବରାବର ଖୋଜିବି ।

ଆଚ୍ଛା କହିଲ ରାଣୀ, ପାପ ପୁଣ୍ୟ କିପରି ବିଚାର କରାଯାଏ ? ପାପ କି ବାସ୍ତବିକ ଏତେ ଖରାପ ? ମୁସଲମାନ ଜବେଇ ନ ହେଲେ ମାଂସ ଖାଇବେ ନାହିଁ । ଅନ୍ୟ ଲୋକେ ସେକଥା ମାନନ୍ତି । ଜବେଇ ହୋଇଥିବା ମାଂସ ନ ଖାଇଲେ ମୁସଲମାନର ପାପ ହୁଏ, ହିନ୍ଦୁର ପାପ ହୁଏ ନାହିଁ । ଦକ୍ଷିଣ ଭାରତରେ ମାମୁ ଭଣିଜୀକୁ ବିବାହ କଲେ ଭଲ ବିବାହ, ଏଣେ ଆମେ କଲେ ମହା ଶୃଙ୍ଖଳା ଉପସ୍ଥିତ ହେବ, ମହାପାପ ହେବ । ନୁହେଁ କି ? ପୁଣି ମାମୁର ଝିଅ ସହିତରେ ପିଉସୀ ପୁଅର ବାହାଘର ମଧ୍ୟ ଶୁଭ—ଦକ୍ଷିଣରେ, କିନ୍ତୁ ଏଣେ ନୁହେଁ । ଦକ୍ଷିଣରେ ନାୟାର କନ୍ୟାମାନେ ବ୍ରାହ୍ମଣ (ନମ୍ବୁଦ୍ରି ବ୍ରାହ୍ମଣ) ଦ୍ୱାରା ସନ୍ତାନ ଉତ୍ପାଦନ କରାଇଲେ ପାପ ନାହିଁ, ବରଂ ଏହା ସାଧାରଣ ପୁଣ୍ୟର କଥା । ଏବେ ସେ ନିୟମ ବଦଳୁଛି । ଯାହା ହେଉ, ମୋର କହିବାର କଥା— ଦେଶକା ଫାଙ୍କ, ନୀତିକା ବାଙ୍କ ସ୍ୱଭାବରେ ସବୁ କଥା ଚାଲିଛି । ମଲମା' ପିକା ଖାଇଲେ ପାପ । ତୁମେ ପିକା ଖାଇଲେ ମହା ଅନ୍ୟାୟ, ଘୋର ଅନ୍ୟାୟ, ସଂସାର ପ୍ରଳୟ; ମୋର ମନରେ କଷ୍ଟ, ମନରେ ବିଦ୍ରୋହ—ସବୁ ହୋଇଯିବ ।

ଅତଏବ ପାପ ପୁଣ୍ୟର ମାପକାଠି ସବୁ ଦେଶରେ, ସବୁ ସମାଜରେ ଭିନ୍ନ ଭିନ୍ନ ପ୍ରକାରରେ ଭିନ୍ନ ।

ଆଚ୍ଛା, ଆମର ତ ବିଧବା ବିବାହ ଅଛି, ତାହା ସମାଜ ମାନୁଛି । କିନ୍ତୁ ବ୍ରାହ୍ମଣଘରେ ତାହା ନିଷେଧ ଥିଲା— ଏବେ ବି ଅଛି; କିନ୍ତୁ ଆଇନଦ୍ୱାରା ବିଧବା ବିବାହ ପୁଣି ସଙ୍ଗତ କରାଯାଇଛି । ଯୌବନପର ପ୍ରବିଷ୍ଟ ବିବାହ—ଅଥଚ ପୂର୍ବେ ଥିଲା ଯେ ଦଶ ବର୍ଷରୁ ଅଧିକ କନ୍ୟାକୁ ଘରେ ରଖିଲେ ଏବଂ ରଜସ୍ୱଳା ହେଲେ ଉକ୍ତ ରକ୍ତ ତାର ପିତାମାତାମାନେ ପାନ କରିବେ, ଅର୍ଥାତ୍ ଏତେଦୂର ପାପ ହେବ; କିନ୍ତୁ ଆଜି ତାହା ନାହିଁ । ହାଡ଼ିଘରେ, ମୁସଲମାନ ଘରେ, ଖ୍ରୀଷ୍ଟିଆନ ଘରେ ହିନ୍ଦୁ ଖାଇଦେଲେ ମହାପାପ ହେବ, ସେ ସମାଜଚ୍ୟୁତ ହେବ । ଏବେ ବି ହେଉଛି, କିନ୍ତୁ ତଥାପି ସମାଜ ବଦଳାଉଛି —ସେକଥା ପାପଜନକ ନୁହେଁ ବୋଲି ଧରା ଯାଉଛି । ଆଜି ନରନାରୀ ସଭା ସମିତିରେ ଏକାଠି ବସୁଛନ୍ତି—ସେଥିରେ ବାରଣ ନାହିଁ, ବରଂ ନାରୀ ସଭାକୁ ବାହାରୁଛି ବୋଲି ଦେଶର ସାଧାରଣ କାମରେ ସେ ଭାଗ ନେଉଛି ବୋଲି ଅନ୍ୟ ନାରୀଠାରୁ ସେ ଅଧିକ ବାହାବା ପାଉଛି — ପ୍ରଶଂସନୀୟା ହେଉଛି ।

ଆଜି ସମାଜ ପତିତା ବେଶ୍ୟା, ସମାଜଠାରୁ ଏତେ ଦୂରରେ ଆଉ ନାହିଁ । ସେ ଥିଏଟର, ସିନେମାରେ ଭଦ୍ର ସମାଜର ନିକଟବର୍ତ୍ତିନୀ ହୋଇ ତାର ସ୍ଥାନ ସମାଜରେ କେତେକ ପରିମାଣରେ କରିନେଉଛି । ତାକୁ ଆମେ ଗୀତ, ନୃତ୍ୟ ପାଇଁ ପ୍ରଶଂସା କରୁଛୁ । ତେବେ ଉପରେ ପ୍ରଶଂସା ଓ

ଉପଭୋଗ, ଭିତରେ ନିନ୍ଦା ଓ କେତେକ ଘୃଣା ଆଜି ମଧ୍ୟ ରହିଛି । ହୁଏତ ତାହା ମଧ୍ୟ ବଦଳିଯିବ । ସାହେବ ମେମ୍‌ମାନେ ଯେ ଯାହାକୁ ମନ ପାଇଲା ଧରି ନାଚନ୍ତି । ଏଠା ସମାଜ ଅନୁମତି ଦେଇଛି, ଏହା ଘୃଣ୍ୟ ନୁହେଁ । ଏହିପରି ପାପପୁଣ୍ୟର ମାପକାଠି ସମାଜରେ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ । ଅତଏବ ପାପ କଣ, ଏହା ଜଟିଳ, ମୁସ୍କିଲ । ତଥାପି ମନୁଷ୍ୟକୁ ତାର ସମାଜ ଦେଖି ନିଜର ଆଚରଣ ବ୍ୟବହାରକୁ ଠିକ୍ କରିବାକୁ ହେବ ।

ଆଜି ଅନେକ ସ୍ତ୍ରୀଲୋକ ବିବାହ କରୁନାହାନ୍ତି, ସେହିପରି ଏକା ଏକା ରହିଯାଉଛନ୍ତି । ଏହା କିଛି ବର୍ଷ ପୂର୍ବେ ଭାବିବା ମଧ୍ୟ ଏକ ପ୍ରକାର ପାପ ଥିଲା—ଆଜି ତାହା ନାହିଁ । ଆଜି ଅସଂଖ୍ୟ ସ୍ତ୍ରୀଲୋକ ବିବାହ ନ କରି ନର୍ସ ହେଉଛନ୍ତି ଏବଂ ପୀଡ଼ିତ ଲୋକଙ୍କର ସେବା କରୁଛନ୍ତି; କିନ୍ତୁ ସେହି ସେବା କରିବାରେ ସେମାନେ ହୁଏତ ସଂଯମ ରଖି ନ ପାରି ନିଜେ ଯୌନକର୍ମରେ ଲାଗି ଯାଉଛନ୍ତି । ହୁଏତ ଡାକ୍ତର, ହୁଏତ ରୋଗୀ ଭଲ ହୋଇଗଲେ ତାଙ୍କ ସଙ୍ଗରେ ଏହି ଗୋପନ କ୍ରିୟା କେତେ କେତେବେଳେ କରୁଛନ୍ତି ।

ଏହା ପ୍ରକୃତିସିଦ୍ଧ — ଏହାକୁ ସଂଯମିତ କରିବା ପାଇଁ ବିବାହର ନିୟମ । ତଥାପି ବ୍ୟତିକ୍ରମ ଗୁଡ଼ିକ ପୁଣି ସମାଜର ଉପକାରରେ ଆସି ଯାଉଛି । ଅବଶ୍ୟ କେହି କେହି ବ୍ରତ ନେଇକି ପରି ନର୍ସ କାମ କରୁଛନ୍ତି, ଯେପରି ଖାଣ୍ଟି ସନ୍ନ୍ୟାସୀ । କିନ୍ତୁ ଖାଣ୍ଟି ସନ୍ନ୍ୟାସୀ ଓ ଖାଣ୍ଟି ନର୍ସ ମିଳିବା ଦୁଷ୍କର; କିନ୍ତୁ ତାହା କହିବାକୁ ଗଲେ, ଖାଣ୍ଟି ଜିନିଷ ମିଳିବା ମଧ୍ୟ ଦୁଷ୍କର ନୁହେଁ କି ?

ଯାହା ହେଉ ବୀଣା, ମୁଁ ତୁମକୁ କେତୋଟି କଥା କହିବାକୁ ଚାହୁଁଥିଲି, କହିଲି ସମାଜର ଗତି, ସ୍ଥିତି ସମ୍ବନ୍ଧରେ ତୁମର ପରିଚୟ କରାଇଦେବାକୁ । ଏକଥା ଭାବିବ ନାହିଁ ଯେ ମୁଁ ଦୁର୍ବଳର ପକ୍ଷ ନେଇ ଲଢ଼େଇ କରୁଛି—ଆଉ ହୁଏତ ମୁଁ ନିଜେ ଦୁର୍ବଳ ହେବି ବୋଲି ଏବଂ ସେତେବେଳେ ତୁମ ନିକଟରେ ଯୁକ୍ତି ବାଡ଼ି ଉଦ୍ଧାର ପାଇବି ବୋଲି । ତୁମେ ମହା କଠୋର—ତୁମେ ଏସବୁ ଯୁକ୍ତି ଶୁଣିବ ନାହିଁ, ମାନିବ ନାହିଁ । ମୁଁ ତୁମ ବିଚାରରେ ତଳକୁ ପଡ଼ିଲେ ତୁମେ କାନ୍ଦିବ, ଶରୀର କ୍ଷୟ କରିବ, ମନରେ କଷ୍ଟ ପାଇବ—ଏକଥା ମୁଁ ଜାଣେ । ତୁମରି ପାଇଁ—ତୁମରି ପାଇଁ ବୀଣା, ମୁଁ ଠିକ ରହିଛି । ସେଥିପାଇଁ କହୁଥିଲି, ତୁମେ ନ ଥିଲେ ହୁଏତ ମୁଁ ଅନେକ ତଳକୁ ଚାଲିଯାନ୍ତି ।

କିନ୍ତୁ ଅନ୍ୟ କଥାଟି ମଧ୍ୟ ବିଚାର୍ଯ୍ୟ । ମୁଁ ପିଲାଟି ଦିନୁ ଯେପରି ବାବାଜୀ ହେବାକୁ ଇଚ୍ଛା କରିଥିଲି—ଶଙ୍କରାଚାର୍ଯ୍ୟ ହେବାକୁ ଇଚ୍ଛା କରିଥିଲି, ତୁମେ ଓ ମୁଁ ଏକଥ ବିବାହିତ ହୋଇ ନ ଥିଲେ ହୁଏତ ତଳକୁ ନ ଖସି ଯାହାକୁ କହନ୍ତି ଉପରକୁ ଉଠିବା—ସେହି, ସେହି ଉପରକୁ ଆହୁରି ଉଠିଥାନ୍ତି । କିଏ କହିପାରେ ? ତେବେ କାଳ ହସ୍ତରେ ଆମେ ସବୁ କ୍ରୀଡ଼ାପୁତ୍ତଳିକା—ନୁହେଁ କି ? କାଳ ଭୟଙ୍କର—ତାର ନିୟମରେ, ତାର ଇଙ୍ଗିତରେ, ତାର ପ୍ରେରଣାରେ, ତାର ଆସନରେ ଆମେ ସାମାନ୍ୟ ନରନାରୀ ଉଠବସ ହେଉଛୁ—ନୁହେଁ କି ? ଭାବ ।

ବାଣୀ ! ମୁଁ ଯେତେବେଳେ ମୁସଲମାନ ହୋଇଯାଉଥିଲି ବୋଲି ହୋ ଉଠିଥିଲା, ଯେତେବେଳେ ମୁଁ ଖୁବ୍ ମୁସଲମାନ ଧର୍ମ ଆଲୋଚନା କରୁଥିଲି—କୋରାନ ପଢୁଥିଲି, କିନ୍ତୁ ଆଜି ତ ସବୁ ପଢୁଛି । ହିନ୍ଦୁଧର୍ମ, ତନ୍ତ୍ର, ବୌଦ୍ଧଧର୍ମ, ଶୈବଧର୍ମ, ନାସ୍ତିକତା ସବୁ; କିନ୍ତୁ ସତକରେ କଣ ସେଇଆ ହୋଇଯାଉଛି ? ତାହା ନୁହେଁ । ଜୀବନରେ ରସ ସୃଷ୍ଟି ପାଇଁ ସବୁଠାରୁ ଆହାର୍ଯ୍ୟ ସଂଗ୍ରହ କରିବାର ସେଇଁ ବାସନା ବା ମାନସ, ତାହା ମନ୍ଦ ନୁହେଁ । ଅଚ୍ଛା, ଆଜି ମୁସଲମାନ ଧର୍ମ କଣ, କିପରି, ସେ ବିଷୟରେ କିଛି ଆଲୋଚନା କରାଯାଉ ।

କୋରାନର ତ ପ୍ରଧାନ କଥା ଶାନ୍ତି । ସଲାମ୍ ଅର୍ଥ ଶାନ୍ତି । ସଲାମ୍ ଆଲେକମ୍ ଅର୍ଥ ଶାନ୍ତି ତୁମକୁ, ଅର୍ଥାତ୍ ତୁମକୁ ଶାନ୍ତି ହେଉ ।

ଏହି ତ ମୁସଲମାନ ଧର୍ମର ବୀଜ । ତାପରେ ଦେଖାଯାଉ ମହମ୍ମଦ କିପରି ଲୋକ ଥିଲେ । ଦେଖ, ସେ କହିଛନ୍ତି—

ମୁଁ ଜଣେ ମନୁଷ୍ୟ ମାତ୍ର । ମୁଁ ଯେତେବେଳେ ତୁମ ଧର୍ମ ସମ୍ବନ୍ଧରେ କହିବାକୁ ଯାଉଛି ଗ୍ରହଣ କର; କିନ୍ତୁ ମୁଁ ଯେତେବେଳେ ମୋ ମତ ବୋଲି ତୁମକୁ କହୁଛି; ସେତେବେଳେ ମୁଁ ଜଣେ ମନୁଷ୍ୟ ମାତ୍ର—ଏହା ଜାଣିବ ।

ମହମ୍ମଦ ସ୍ପଷ୍ଟ କହିଛନ୍ତି—"ସେ ଆମ ଭିତରୁ ଜଣେ ନୁହେଁ ଯେ ପରର ସ୍ତ୍ରୀକୁ ତା' ସ୍ୱାମୀ ଠାରୁ ଭୁଲାଇ ଆଣେ କିମ୍ବା କୌଣସି ଚାକରାଣୀକୁ ତା ମୁନିବଠାରୁ ଭୁଲାଇ ଆଣେ ।

(ଆବୁ ହୁରାୟା A. B)

× ×

ସତ୍ୟ କଥା; ରାଗ ସୟତାନ ଠାରୁ ଆସେ ।

(ଆବୁ ରସୈଲ A. B.)

× ×

କୌଣସି ଶବକୁ ଦେଖିଲେ, ସେହି ଶବ ଦେହ ସମ୍ବନ୍ଧରେ ଚାଲି ନ ପାରିଲେ ଅନ୍ତତଃ ଭକ୍ତି ଦେଖାଇବା ପାଇଁ, ଶ୍ରଦ୍ଧା ପାଇଁ କ୍ଷଣକ ଛିଡ଼ା ହୋଇଯିବ, ଯେ ଶବ ଚାଲିଯିବା ପର୍ଯ୍ୟନ୍ତ ।

× ×

ନିନ୍ଦୁକର ସ୍ୱର୍ଗବାସ ନାହିଁ ।

× ×

ସବୁ ରକ୍ତପାତ ମନା ।

× ×

ଭିକ୍ଷା ମନ୍ଦ ଚିଜ ।

ମହମ୍ମଦ ଏହା ମଧ୍ୟ କହିଛନ୍ତି—ଏପରି ଏକ ସମୟ ଆସିବ ଯେତେବେଳେ ଇସଲାମ୍ ବୋଲି ସତରେ କିଛି ରହିବ ନାହିଁ—କେବଳ ଜଗତ ରହିବ । କୋରାନ ବୋଲି କିଛି ରହିବ ନାହିଁ—କେବଳ ତାର ବାହ୍ୟ ଆଡ଼ମ୍ବରଟା ରହିବ । ତାର ପଣ୍ଡିତମାନେ ମୂର୍ଖ ଭଳିଆ ଆଚରଣ କରିବେ ଏବଂ ସେମାନେ ସମସ୍ତଙ୍କ ଠାରୁ ଖରାପ ଲୋକ ହେବେ । ମୁଁ ଏହିସବୁ କଥା ଗୋଟିଏ ଇଂରାଜୀ ବହି (Sayings of Muhammad)ରୁ ଦେଖି ଦେଖି ଲେଖୁଅଛି ।

ଇଂରାଜୀଟା ପୁଣି ଏଠାରେ ଦେଇଦେଉଁ । ( ପୃଷ୍ଠା ୨୦୧ । ଲେଖକ—ମିର୍ଜା ଆବୁଲ ଫଜଲ ) ।

"A time will come over men when nothing will remain of Islam except

its name, nor anything of the Quran except its formalities, their places of worship will be well preserved and in use, while they will (really) be ruined because of their guidance, their learned men will be the worst of (all) who are under the harems, from these will come forth mischief-making, and in them will it settle."

Aviy, B. A.

ଯେ ଦେଖାଇ ହେବା ପାଇଁ ପ୍ରାର୍ଥନା କରେ, ସେ ଅନ୍ୟ ଦେବତା ସହିତ ସାମିଲ ହୁଏ । ଯେ ଦେଖାଇ ହେବାପାଇଁ ଉପାସ କରେ, ସେ ଅନ୍ୟ ଦେବତା ସହିତ ସାମିଲ ହୁଏ । ଯେ ଦେଖାଇ ହେବା ପାଇଁ ଦାନ କରେ, ସେ ଅନ୍ୟ ଦେବତା ସହିତରେ ସାମିଲ ହୁଏ । ଭଗବାନ୍ ଠାରୁ ସେ ବହୁ ଦୂରରେ ।

ମୁସଲମାନ ଧର୍ମାବଲମ୍ବୀ ପଚାଶକୋଟି ପୃଥିବୀରେ ।

ମହମ୍ମଦ ଜ୍ଞାନକୁ ବଡ଼ ପ୍ରଧାନ ସ୍ଥାନ ଦେଇଛନ୍ତି । ସେ କହିଛନ୍ତି, ଯେଉଁଠାରେ ଜ୍ଞାନ ଅଛି, ଚୀନରେ ହେଉ ବା ଅନ୍ୟତ୍ର ହେଉ, ତାହା ଆହରଣ କର ।

ଜ୍ଞାନଲାଭ କର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ । ଗୋଟିଏ ଜ୍ଞାନର କଥା ଶତ ପ୍ରାର୍ଥନା ଠାରୁ ଶ୍ରେୟସ୍କର । ସାଧୁ ଲୋକଙ୍କର ଜ୍ଞାନ ଦେଶର ଶହୀଦର ଲହୁ ଠାରୁ ଅଧିକ ମୂଲ୍ୟବାନ୍ ।

ବୀଣା ! ତୁମେ ଘରକୋଣରେ ରହି ଯେଉଁ ଜନସେବା କରୁଛ, ତାହା ବୃହତ୍ତର ଜନସେବା । ମୁଁ କେବଳ ବାହାରେ ବାହାସ୍ଫୋଟରେ ମାତିଛି—ଲୋକେ ତାହାକୁ ବଡ଼ କହୁଛନ୍ତି ନା ସେ ରାଜନୀତିରେ ମାତିଛି ଆଜି ଖବରକାଗଜରେ ଯାହାର ନାମ ନିତି ଛପା ହେଉଛି । କିନ୍ତୁ ବୀଣା, ଶାନ୍ତି ନାହିଁ ସେଠାରେ, ମୁକ୍ତି ନାହିଁ ସେଠାରେ । ସେଠାରେ ଅହମିକା ଅଛି, ତା'ର ତାଣ୍ଡବ ନୃତ୍ୟ ଅଛି, ତାର ବିଷୋଦ୍‌ଗାର ଅଛି । କିନ୍ତୁ ଭାରତ ଏସବୁ ଅନେକ ଦେଖି ସାରିଛି—ସେଥିପାଇଁ ସେ ଏସବୁ ଆସ୍ଫାଳନ ପସନ୍ଦ କରେ ନାହିଁ । ଭାରତର ମୁକ୍ତି ରାଜନୀତିରେ ନାହିଁ—ରାଜନୀତିର ବାହାରେ ଅଛି । ଭାରତର ମୁକ୍ତି ଶାନ୍ତି, ପ୍ରୀତି, ସେବା, ସ୍ୱଧର୍ମରେ ଅଛି । ଭାରତର ମୁକ୍ତି ବର୍ତ୍ତମାନ ଯେଉଁ ଜାତି ବଡ଼ ବୋଲାଉଛନ୍ତି ତାଙ୍କର ଭଳି ହେବାରେ ନାହିଁ, ଭାରତର ମୁକ୍ତି ତା ନିଜକୁ ଚିହ୍ନିବାରେ ଅଛି । ଭାରତ ଜଗତକୁ ବଡ଼ ଆଦର୍ଶ ଦେଖାଇବ ଏବଂ ଅହଙ୍କାରରେ ନୁହେଁ, ଭାରତ ତା'ର ସ୍ୱଧର୍ମ ପାଳନ କରିବ ଏବଂ ସ୍ୱଧର୍ମପଥରେ ପ୍ରତିଷ୍ଠିତ ରହିବ ଏହି ଗୌରବରେ ।

ବୀଣା, ତୁମେ ଜଗତକୁ ଯାହା ଦେଖାଇଛ, ତାହା ଦେଖାଇବା ଉଦ୍ଦେଶ୍ୟରେ ନୁହେଁ । ତୁମର ସେବା ଶୁଶ୍ରୂଷା ତାହା ଦେଖାଇଛି । ଆମେ ସାଧାରଣତଃ ହାମ୍‌ବଡ଼ା, ମାନେ— ଦେଖାଇବା ପାଇଁ ଦେଖାଉ—ଆମର ପାଣ୍ଡିତ୍ୟର ବଡ଼େଇ—ଟିକିଏ ଥିଲେ ଏତେ, କମ୍ ଥିଲେ କମ୍ ପରି ଦେଖାଇବା ପାଇଁ ଚେଷ୍ଟା କରୁ । କ୍ଷୁଦ୍ର ମନୁଷ୍ୟ ଆମେ ।

ତୁମେ ଆଜି ତୁମ ଘର ଦୁଆର ବାଗମାନେ ଆନ ଘର ଫମ୍ପା କୁହନ୍ତି । ଆମେ ଦଶଜଣ ପଡ଼ୋଶୀଲେ ତୁମେ ସେଥେଇ କରି ଖୁଆଇ ପାରିବ ଅଧ ଘଣ୍ଟାରେ । ଆଜି ଆମ ନିକଟରେ ତୁମେ ଦଶଜଣ ପଡ଼ୋଶୀଲେ ଆମେ ମନ୍ଦ—ଚୂଲି ମୁଧା ଜାଳି ପାରିବୁ ନାହିଁ, ଖୁଆଇବୁ ବା କଣ ? ଏହି ଆମର ବଡ଼ କର୍ମମତ !

ଆଜି ପାଶ୍ଚାତ୍ୟର ଅନୁକରଣରେ ଆମେ ବୁଲୁ ବୁଲୁ କରି ବଡ଼ ବଡ଼ କାରଖାନା, ଶିଳ୍ପ, ବିଦ୍ୟୁତ୍ କରିବାକୁ ଯାଉଛୁ—ବଡ଼ ବଡ଼ ସହର ତିଆରି କରୁଛୁ—ଫଳ ହେଉଛି ଆମର ଚରିତ୍ରହୀନତା । ରୋଗ, ଅଶାନ୍ତି, କଳହ—ଆଉ ନୁହେଁ କଣ ? ରେଳଗାଡ଼ିରେ ଭିଡ, ରେଳଗାଡ଼ିରେ ଚୋରି ଜୁଆଚୋରି, ପ୍ରତି ଷ୍ଟେସନରେ ଧକାମଧକା, ଚୋରି, ନାରୀ, ଜୁଆଚୋରି, ଏହିସବୁ ପାଇଁ ଆହୁରି ଲଜ୍ଜାସ୍ପଦ ହେଉଛୁ ।

କି ଅଧର୍ମ ଘୋଟିଛୁ । କି ଧର୍ମ ଛାଡ଼ିଛୁ ଆମକୁ—କୁହା ନ ଯାଏ । ପୁଣି ଜଣେ ଚିତ୍କାର କରୁଛି—ଚିତ୍କାର କରୁଛି ବାରବାର—ବାରମ୍ବାର ଚିତ୍କାର କରୁଛି— ବାଟ ଭୁଲିଛ—ଫେରି, ଫେରି । କିନ୍ତୁ କିଏ ଶୁଣୁଛି—କିଏ ଫେରୁଛି ? ଚୋରି, ନେଶା, ଫେଚ—ଏସବୁ ଆଜି ଆମକୁ ପାଗଳ କରୁଛି । ଘୂର୍ ବନ୍ଧ ମଠରରେ ଯିବୁ—ଚରଖାରେ ସୂତା କାଟିବୁ । ଆଉ—ଥାଉ ! ଛାଡ଼ ସେ କଥା ।

ମହମ୍ମଦ ଥରେ କହିଥିଲେ— ଯେତେବେଳେ କୋରେଇଶମାନେ ମୁସଲମାନମାନଙ୍କ ଉପରେ ଭୟଙ୍କର ଅତ୍ୟାଚାର ଆରମ୍ଭ କଲେ—

ଦେଖ, ଯେଉଁମାନେ ଅନ୍ୟାୟ ସେମାନେ କରିଛନ୍ତି, ସେଉଁକର ପ୍ରତିଶୋଧ ନିଅ— ତାର ବେଶୀ ନା । କିନ୍ତୁ ଏକଥା କହିବି, ଯଦି ସହିଯାଇ ପାର, ତାହାହେଲେ ବୀର ହେବ—ଆହୁରି ବୀର ହେବ ।

ଥରେ ମହମ୍ମଦଙ୍କୁ ପଚାରିଲେ— ଇସଲାମ୍ କଣ ? ସେ କହିଲେ, 'ବାକ୍‌ଶୁଦ୍ଧି ଓ ଅତିଥିପରାୟଣତା ।' ବିଶ୍ୱାସ କଣ ? ସେ କହିଲେ, 'ଧୈର୍ଯ୍ୟ ଓ ପରୋପକାର ।'

ଏହି ସବୁରୁ ମୁସଲମାନ ଧର୍ମ, ମହମ୍ମଦ କଣ, କପରି, ବୁଝିହେବ । ଆଜି କପରି ଏହା ଆଚରିତ ହେଉଛି, ତାହାକୁ ଧରି ମହମ୍ମଦ ଓ ମୁସଲମାନ ଧର୍ମ ( ଇସଲାମ୍ )କୁ ବିଚାର କରିବା ଠିକ ହେବ ନାହିଁ ।

ବାଣା ! ଏତେ କଥା ପରେ ଯଦି ମୁଁ କହେ, ମୁଁ ମହମ୍ମଦୀୟ, ତୁମ ମନରେ ଦୁଃଖ ହେବ କାହିଁକି ? ମୁଁ କି ଅନ୍ୟାୟ ଅଦା କରିବାକୁ ଯାଉଛି ? ମୁଁ ଯେ ପୁଣ୍ୟର ମାର୍ଗରେ ବିଚରଣ କରିବା ପାଇଁ ମହମ୍ମଦଙ୍କୁ ଖୋଜୁଛି ।

ମହମ୍ମଦ ତ ମଦ ଖାଇବାକୁ ମହାପାପ ବୋଲି କହିଛନ୍ତି, ହାରାମ ବୋଲି କହିଛନ୍ତି । ଏତେ ଠାଣୁଆ କଥା କିଏ କହିଛି କୁହ ?

ହଉ—ଆମ ହିନ୍ଦୁଧର୍ମ ଧରାଯାଉ । ଗୀତାର କଥା ଦେଖ ! ମୁଁ ଗୋଟା-ଗୋଟି ଏଠୁସେଠୁ କୃଷ୍ଣ କଥା କହିବି । ଗୀତା ଶ୍ରୀକୃଷ୍ଣଙ୍କର ବାଣୀ ଅର୍ଜୁନଙ୍କୁ, କିନ୍ତୁ ଏହାର ଦ୍ୱାରା ସମଗ୍ର ମାନବଙ୍କୁ ଧର୍ମ ଶିଖାଉଛନ୍ତି । ଗୀତାରେ ବଡ଼ କଥା ହେଉଛି ଭଗବତ୍ ଦର୍ଶନ । ଭଗବାନ୍‌ଙ୍କୁ ଦେଖିବା ପାଇଁ ପାଗଳ

ହୋଇଥିଲେ ଅର୍ଜୁନ । ସେହି ଦର୍ଶନ—ବିଶ୍ୱରୂପ ଦର୍ଶନ ଅର୍ଜୁନ କଲେ—କାହା ଦ୍ୱାରା ? ଭଗବାନଙ୍କ ଆଶୀର୍ବାଦ ଦ୍ୱାରା । ନିଜର ବାହାଦୁରି ଛାଡ଼ିବାକୁ ହେବ । ଈଶ୍ୱରେଚ୍ଛା ବୁଝିବାକୁ ହେବ, ପାଳିବାକୁ ହେବ—ଏହାହିଁ ଗୀତାର ମର୍ମ କଥା ।

ଜ୍ଞାନ, କର୍ମ, ଭକ୍ତି, ତ୍ୟାଗ, ଧ୍ୟାନ, ଏହିସବୁ ଦ୍ୱାରା ଭଗବାନ୍‌ଙ୍କୁ ଦର୍ଶନ କରାଯାଏ । ଅତଏବ ଏହିସବୁ ସାଧନା ଦ୍ୱାରା ନିସ୍ତ୍ରୈଗୁଣ୍ୟ ହୁଅ—ଏହାହିଁ ଗୀତାର ମରମ କଥା । ମୋକ୍ଷ ଏହି ନିସ୍ତ୍ରୈଗୁଣ୍ୟରେ । ଆତ୍ମାର ଆନନ୍ଦ ପରିଶେଷରେ, ଏହି ଚର୍ମ ଶରୀରର ଉପଭୋଗରେ ନୁହେଁ—ଏହାର ବାହାରେ ।

ଏସବୁ ତ ଭଲ କଥା । ମନ୍ଦ କେଉଁଟା ? ଆସୁରୀମାନଙ୍କର କଥା । ଶୁଭାସୁରୀମାନଙ୍କର କଥା ତ ଗମ୍ଭୀର, ଦୃଢ଼, ସୁନ୍ଦର—ମନ୍ଦ ନୁହେଁ ।

ବୀଣା, ତୁମେ ତ ଦେଖୁଛ ଦୁନିଆରେ କେତେ ହଣାକଟା ଲାଗିଛି । ସାମ୍ରାଜ୍ୟ-ପାଇଁ କେତେ ହଣାକଟା । ପୁଣି ଦୁର୍ବଳ ଉପରେ ଅତ୍ୟାଚାର ସବୁବେଳେ । ଆଜି ଯେଉଁମାନେ ଜଙ୍ଗଲି ହୋଇ ରହିଛନ୍ତି, ସେମାନଙ୍କର ଅପରାଧ କଣ ? ସେମାନଙ୍କ ଉପରେ ଏତେ ଜୁଲମ କାହିଁକି ? ସେମାନଙ୍କ ଉପରେ ଏତେ ଅତ୍ୟାଚାର କାହିଁକି ? ସେମାନେ କାହିଁକି ଏତେ ଦୁଃଖରେ ରହିବେ ? ସେମାନେ କଣ ମଣିଷ ନୁହଁନ୍ତି ? ସେମାନଙ୍କର କଣ ରକ୍ତ ମାଂସ ନାହିଁ ? ସେମାନଙ୍କୁ କଣ ଭୋକ-ଶୋଷ ହୁଏ ନାହିଁ ? ତାଙ୍କଠାରୁ ଆମେ ନାନା କୌଶଳ କରି ତାଙ୍କ ଖାଦ୍ୟ ଛଡ଼ାଇ ଆଣୁଛୁ କାହିଁକି ? ତାଙ୍କୁ ମଦୁଆ କରିବାର ଏତେ ଚେଷ୍ଟା କରୁଛୁ କାହିଁକି ? ପୁଣି ସେମାନେ ଟିକିଏ ଆମ କଥା ନ ଶୁଣିଲେ ଆମେ ତାଙ୍କୁ ଏତେ ଗୁଳି କରି ମାରି ପକାଉ କାହିଁକି ?

ଦୁନିଆଁରେ ଆଦି ଅଧିବାସୀ ଉପରେ ସମୁଦ୍ରସ୍ଥ ନାନା ଦ୍ୱୀପପୁଞ୍ଜରେ ଯେଉଁସବୁ ଅତ୍ୟାଚାର ହୋଇଛି, ଆଫ୍ରିକାରେ, ବଙ୍ଗ ଦେଶରେ ଯେଉଁସବୁ ଅତ୍ୟାଚାର ହୋଇଛି—ସେମାନଙ୍କର ହାତ ଗୋଡ଼ କଟା ହୋଇଛି—ଆମର ଦେଶରେ କନ୍ଧମାନଙ୍କୁ ନରବଳି ବନ୍ଦ କରିବା ଅଭିଯାନରେ ଯେଉଁ ଅତ୍ୟାଚାର କରା-ହୋଇଅଛି, ସେସବୁ ଗୋଟି ଗୋଟି କରି ବର୍ଣ୍ଣନା କରିହେବ କି ? ସେସବୁ ଅତି ରୋମାଞ୍ଚକାରୀ କଳଙ୍କପୂର୍ଣ୍ଣ ଘଟଣା । ଆଦିବାସୀ ! ଆଦିବାସୀଙ୍କର କଣ ସୁଖ କାମନା ନାହିଁ ? ସେମାନଙ୍କର କଣ ଆନନ୍ଦ କରିବାର ଅଧିକାର ନାହିଁ ? ସେମାନେ କଣ ସଂସାରରେ ରହିବେ ନାହିଁ ? ଅଥଚ ସେମାନଙ୍କୁ ଗୋଟି ଗୋଟି କରି ଯେତେ ପାରନ୍ତି, ପୃଥିବୀର ଅନେକ ଜାଗାରେ ମାରି ହୋଇଛି—କାରଣ ତଥାକଥିତ ସଭ୍ୟ ଜାତିମାନେ ସେଠାରେ ରାଜତ୍ୱ କରିବେ ।

ହାୟ ! ହାୟ ରେ ! ଏସବୁ କଳଙ୍କ କଥା, ବିଷାଦମୟୀ କାହାଣୀ ! ସେମାନଙ୍କ ଉପରେ ଏତେ ଅତ୍ୟାଚାର ହୋଇଛି ଯେ, ଯେଉଁ କନ୍ଧ ବୀର ସାହସିକ ଥିଲେ, ସେମାନେ ଆଜି ଏକାବେଳକେ ଡରୁଆ ହୋଇ ଯାଇଛନ୍ତି, କାହାରି ନିକଟରେ ଆପତ୍ତି କରିବାକୁ ସାହସ କରନ୍ତି ନାହିଁ । ସେମାନେ ମୂକ, ନିର୍ବାକ୍ ହୋଇ ଯାଇଛନ୍ତି । ଯଦି କେତେବେଳେ ବଣୁଆ-

ମାନେ ଜାଗ୍ରତ ହେଲେ, ଉଠିଲେ; ତାଙ୍କ ଉପରେ ସୈନ୍ୟଚାଳନା କରି ସେମାନଙ୍କୁ ଏକାବେଳକେ ବିଧ୍ୱସ୍ତ କରାହୋଇଛି । କାହିଁକି ? ସେମାନଙ୍କର ଅପରାଧ ? ସେମାନେ ମଣିଷ ନୁହଁନ୍ତି ପରା ! ତୁମ ପରି ସେମାନେ ସୁଖରେ ରହିବାର ଅଧିକାରୀ ନୁହନ୍ତି ପରା ! କି ଖରା, କି ବର୍ଷା, ନିର୍ଧୂମ ଖରାରେ, ନିର୍ଧୂମ ବର୍ଷାରେ ତାଙ୍କୁ ଘରୁ ଓଟାରି ଆଣି, ତାଙ୍କୁ ବିଲରୁ ଟାଣି ଆଣି ସରକାରୀ କର୍ମଚାରୀ, ସାମାନ୍ୟ ପୋଲିସ ସେମାନଙ୍କ ଉପରେ ବୋଝ ଲଦେଇ ଦିଅନ୍ତି ଏବଂ ତାଙ୍କୁ କହନ୍ତି, ଚାଲ୍ । ସେମାନେ ଚାଲନ୍ତି । ଏହା କି ହେଲା ନ୍ୟାୟ । ତାଙ୍କ ସ୍ତ୍ରୀକୁ ବେଇଜ୍ଜତ କରି— ତାଙ୍କର ଚରିତ୍ର ନଷ୍ଟ କରି—ତାଙ୍କୁ ସର୍ବନାଶ କରି ଆମେ ହାକିମାତି କରୁ । ଆମେ ସଭ୍ୟ ।

ଆଦିବାସୀ କଣ ମନୁଷ୍ୟ ନୁହେଁ ? ଆଦିବାସୀର ଜମି ତୁମେ ନାନା କୌଶଳରେ ହଡ଼ାଇ ନେଇ ତୁମେ ହେଲ ବଡ଼ଲୋକ—ଆଉ ସେ ହେଲେ ଅଳସୁଆ ମୂର୍ଖ, ଅପରିଷ୍କୃତ, କଦର୍ଯ୍ୟ, ବର୍ବର ଅସଭ୍ୟ । ବାହା ରେ ସଭ୍ୟ ମାନବ ତୁମେ ! ଚୋରର ସର୍ଦ୍ଦାର—ଜୁଆଚୋରୀରେ ଯାହାର ଜୀବନ ଭରା, ସେ ଅପରକୁ ଯେ ଚୋରୀ ଜୁଆଚୋରୀ ଜାଣେ ନାହିଁ, ତାକୁ କହୁଛି ଚୋର !

ଆଜି ଓଡ଼ିଆ ଜାତି ଉପରେ ମଧ୍ୟ ଅନ୍ୟ ଜାତିର ଆକ୍ରମଣ, ଅତ୍ୟାଚାର ସେହିପରି । ଆଉ ତାହାର ପ୍ରତିବାଦ କଲେ, ପ୍ରତିରୋଧ କଲେ, ଆମେ ହେଲୁ ପ୍ରାଦେଶିକ ଭାବାପନ୍ନ । ଆଉ ସେମାନେ ହେଲେ ବିଶ୍ୱଭାବପୂର୍ଣ୍ଣ--ହାୟ ! ହାୟ ରେ !

ଇତିହାସରେ ଏପରି ପାପ ନାହିଁ, ଏପରି ଅନ୍ୟାୟ ନାହିଁ ଯାହା କି ଆଦି-ବାସୀଙ୍କ ଉପରେ କରା ହୋଇନାହିଁ । ବିଶେଷତଃ ଶ୍ୱେତଦ୍ୱୀପ ବାସୀମାନେ ଜଗତରେ ଆଦିବାସୀମାନଙ୍କ ଉପରେ ମହା ଅତ୍ୟାଚାର କରି ସାରିଛନ୍ତି । ସେମାନଙ୍କୁ ନିର୍ମୂଳ କରିବା ପାଇଁ କଣ ନ କରିଛନ୍ତି ?

ଆଜି ଭାରତ ତାର ଆଦିବାସୀଙ୍କୁ ନିର୍ମୂଳ କରିବାକୁ ଚାହେଁ ନାହିଁ । ସେମାନଙ୍କୁ ଶିକ୍ଷିତ କରିବାକୁ ଚାହେଁ, ସେମାନଙ୍କର ମନୋଭାବ ବୁଝି ସେମାନଙ୍କର ସେବା କରିବାକୁ ଚାହେଁ । ସେମାନଙ୍କର ମଙ୍ଗଳ କରିବାକୁ ଚାହେଁ । ଭାରତ ରାଷ୍ଟ୍ରର ଏହି ଉଦ୍ଦେଶ୍ୟ । ସେମାନଙ୍କୁ ହଠାତ୍ ଜୋର ଜବରଦସ୍ତି ନୂତନ ଆଦର୍ଶରେ ଟାଣିବା ଉଚିତ ନୁହେଁ । ଧୀରେ ସୁସ୍ଥେ, ବୁଝାଇ ସୁଝାଇ ସେମାନଙ୍କୁ ଆପଣାର କରିବାକୁ ହେବ—ନୂତନ ଆଲୋକ ଦେଖାଇବାକୁ ହେବ—ନୂତନ ପଥର ପଥିକ କରାଇବାକୁ ହେବ ।

ବିଦେଶୀୟମାନେ ଆଦିବାସୀମାନଙ୍କ ରାଜ୍ୟକୁ ଯାଇ ଅମାପ ଦୁର୍ନୀତି ବଢ଼ାଇ ଦେଇଛନ୍ତି, ଧାତୁ ରୋଗ ବଢ଼ାଇ ଦେଇଛନ୍ତି, ସେମାନଙ୍କୁ ମେହ, ପ୍ରମେହ, ଉପଦଂଶରେ ସଢ଼ାଇ ଦେଇଛନ୍ତି ।

ଆଜି ଆଦିବାସୀର ଯେତିକି ତେଜ ଅଛି, ଯେତିକି ନିର୍ଭୀକତା ଅଛି, ଯେତିକି ସତ୍ୟ ଅଛି—ତାକୁ ଯେପରି ଆମେ ଆମର ଚତୁରପଣିଆ ଦ୍ୱାରା ଅପଭ୍ରଷ୍ଟ ନ କରୁ ।

ଯାହା ହେଉ, ଏଣିକି ସଂସାର ମିଶାମିଶି ହୋଇ ଚାଲିବ । ସେଥିରେ

ଆଦିବାସୀ, ଖ୍ରୀଷ୍ଟିଆନ, ହିନ୍ଦୁ, ମୁସଲମାନ ସମସ୍ତେ ମିଳିବେ—ବିବାହ କରିବେ ପରସ୍ପର ଭିତରେ । ସେତେବେଳେ ଧର୍ମ ଭିନ୍ନ ଆକାର ଧାରଣ କରିବ—ସେତେବେଳେ ହିନ୍ଦୁ ଧର୍ମ, ମୁସଲମାନ ଧର୍ମ, ଖ୍ରୀଷ୍ଟିଆନ ଧର୍ମ ବା ଆଦିବାସୀ ଧର୍ମ ନେଇ ଏତେ ଟଣାକଟା ହେବ ନାହିଁ । ବାସ୍ତବରେ ରାଷ୍ଟ୍ର ହିନ୍ଦୁଜନ ଧର୍ମସଂସ୍ଥାରୁ ଶାସନ ସଂସ୍ଥାକୁ, ସାଂସାରିକ ନିତ୍ୟ ନୈମିତ୍ତିକ ସଂସ୍ଥାକୁ ଆସୁଛି । ଏହା ହୋଇ ପାରିଲେ ସମଗ୍ର ସଂସାର ଗୋଟିଏ ବିଶାଳ ପରିବାରଭୁକ୍ତ ହୋଇଯିବ । ଏହା ଭଲ ହିଁ ହେବ । କିନ୍ତୁ ଝୀଣା, ତୁମେ ହୁଏତ କହିବ —ଏ ତ ଭ୍ରଷ୍ଟାଚାରର କଥା, ଏ ତ ଅଧର୍ମ କଥା । ନା ଝୀଣା, ତୁମେ ବୁଝ—ଏହାଦ୍ୱାରା ହାଣାକାଟ, ଘୃଣା କମିବ—ଏହାଦ୍ୱାରା ଭ୍ରାତୃତ୍ୱ, ପ୍ରେମ, ପରସ୍ପର ପ୍ରତି ଶ୍ରଦ୍ଧା ବଢ଼ିବ ।

ଅଜ ଆଦିବାସୀଙ୍କୁ ଆମ ସାଙ୍ଗରେ ମିଳାଇବାକୁ ହେବ, ହରିଜନଙ୍କୁ ଆମ ସଙ୍ଗରେ ମିଳାଇବାକୁ ହେବ । ମୁସଲମାନ ଖ୍ରୀଷ୍ଟିଆନ ଓ ଅନ୍ୟମାନଙ୍କୁ ମଧ୍ୟ ମିଳାଇବାକୁ ହେବ । ସେଥିରେ ଅଧର୍ମ ହେବ ନାହିଁ । ଅଧର୍ମ ହେବ, ହେଉଛି ଅନ୍ୟାୟ ବ୍ୟବହାରରେ, ଅସତ୍ ଆଚରଣରେ ।

ଏସବୁ କଥା ଠିକ୍ କରିବା ବଡ଼ କଠିନ—ମୁଁ ବୁଝୁଛି । ଅତଏବ ତୁମକୁ ମଧ୍ୟ ଠିକ୍ କରି ବୁଝାଇ ପାରୁନାହିଁ । ତଥାପି ମୋର ମନେ ହୁଏ, ଗୋଟିଏ ପରିବାରରେ ଦଶଟା ଭାଇ ଭିତରେ ଯଦି ଦଶଟା ବୋହୂ—ଗୋଟିଏ ଚୀନା, ଗୋଟିଏ ଜାପାନୀ, ଗୋଟିଏ ପାରସିକ, ଗୋଟିଏ ଇଟାଲୀୟ, ଗୋଟିଏ ଇଂଲଣ୍ଡୀୟ, ଗୋଟିଏ ତେଲୁଗୁ, ଗୋଟିଏ ଓଡ଼ିଆ ଏହିପରି ହୁଏ ଏବଂ ସମସ୍ତେ ଯଥେଷ୍ଟ ଶିକ୍ଷିତ ହୁଅନ୍ତି, ଯଦ୍ଦ୍ୱାରା ଏକ ସ୍ତରରେ କଥାବାର୍ତ୍ତା କରିପାରିବେ, ତାହାହେଲେ ଭଲ ହିଁ ତ ହେବ, ଆପତ୍ତି କରିବାର କିଛି ରହିବ ନାହିଁ । ହଁ, ତେବେ କେତେଗୁଡ଼ିଏ କଥାରେ ଅସୁବିଧା ହେବ—ମଦ, ମାଂସ ମାଛ ଏହିପରି । ସେସବୁ ନ ହେଲା ବାଦ୍ ଦେବା ।

ନିଜ ଭିତରେ ଗୋଟିଏ ବୁଝାମଣା ହୋଇ ସ୍ଥିର କରିବା । ଏହା କଣ ହୋଇ ପାରିବ ନାହିଁ ?

ପାରିବ, ମୋର ମନେ ହୁଏ । ତେବେ ସେ ସମୟ ଆସିବାକୁ ଆହୁରି ଡେରି ଅଛି, ତୁମେ କହିପାର, ମୁଁ ତାହା ମାନିବି ଯେ ହଁ ଆହୁରି ଡେରି ଅଛି । କିନ୍ତୁ ବସୁଧୈବ କୁଟୁମ୍ବକଂ ତ ଏଇଥିରେ ହେବ ଏହା ତ ଆନନ୍ଦର କଥା ହେବ । ଶୁଭସ୍ୟ ଶୀଘ୍ରଂ କହିବ କି ? ତୁମେ କହିବ ନା, "ମୁଁ ଏହା ସହିପାରିବି ନାହିଁ ।"

ଛି ! ଏପରି କହନ୍ତୁ କି ? ବେଙ୍ଗୁଲି ଲେ ବେଙ୍ଗୁଲି, ମଣ୍ଡି ଷଣ୍ଢଷଣ୍ଢଙ୍କ ଆଦ— ଏକଥା କଣ ତୁମେ ଭୁଲିଗଲ । ଏଟା ପରି ସଂସାର । ଏହାର ପରିବର୍ତ୍ତନ ଯେ ଅବଶ୍ୟମ୍ଭାବୀ । ଅତଏବ ଖିନ୍ନ ହୁଅ ନାହିଁ ଝୀଣା । ତୁମେ ସିନା ଜୋତା ପିନ୍ଧନାହଁ, କିନ୍ତୁ ଦେଖୁଛ ତ କେତେ ଝିଅ ତୁମ ଆଗରେ ଜୋତା ପିନ୍ଧି ଛତା ଧରିଲେଣି । ତୁମେ ତ ନିଜେ ସେମିଜ ପିନ୍ଧିଲ— ଆଜି କାଞ୍ଚୁଲିକୁ ଡରୁଛ କାହିଁକି ? ଏ ତ ବାହାରର କଥା । ତୁମେ ଧାର୍ମିକା ହୁଅ, ସତୀ ହୁଅ, ଏଥିରେ ତୁମକୁ ବାଧା ଦେଉ-

ନାହିଁ ତ କେହି । ତେବେ ତାହା ମଧ୍ୟ ବଦଳିବ—ଏଣିକି ଆଉ କେହି ସତୀ ହେଉ ନାହାନ୍ତି ପୂର୍ବ ଭାବରେ—ସ୍ୱାମୀ ମଲେ ନିଆଁରେ ପୋଡ଼ି ଏଣିକି କିଏ ସତୀ ହେଉଛନ୍ତି ? ଆଉ ମନ ତ । ପୋଡ଼ା ମନକୁ କେତେ ଜଗିବ ? ସେ ତ କେତେବେଳେ ନା କେତେବେଳେ ଏଆଡ଼େ ସେଆଡ଼େ ଧାଇଁଯାଉଛି । ତଥାପି ଜଗିବାକୁ ହେବ । —ସଂଯମ ବଡ଼ କଥା । ଚଞ୍ଚଳ ମନକୁ ନିଜର ଅଞ୍ଚଳରେ ବାନ୍ଧି ରଖିବାକୁ ହେବ । ନୋହିଲେ ଗୃହସଂସାର ଛାରଖାର ହୋଇଯିବ—ଯାଏ—ଯାଉଛି ।

ହଉ; ଅଧିକ କଣ କହିବି ? ତୁମେ ମୋର ସାକ୍ଷୀ, ମୋର ରକ୍ଷୀ, ମୋର ଦେବୀ । ମୁଁ ତୁମର ପୂଜକ, ମୁଁ ତୁମର ଚୁମ୍ବକ, ମୁଁ ତୁମର ଅଗ୍ନିର ସାଥୀ, ମୁଁ ତୁମର ଶାନ୍ତ ଶାନ୍ତର ଅଶାନ୍ତ ପ୍ରେମିକ । ତଥାପି ତୁମେ ଶାନ୍ତ କରୁଛ, ସୁଖ ଦେଉଛ, ସୁଧା ଦାନ କରୁଛ—'ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ' ଡାକ ଶୁଣାଉଛ । ତୁମେ ଧନ୍ୟା, ମୁଁ ଧନ୍ୟ । ଆଜି ତୁମରି ପାଇଁ ଏତେ ଲେଖା । ତୁମର ମୋର ସମ୍ବନ୍ଧରେ ଯୁଗ ଯୁଗର ସମ୍ବନ୍ଧ । ଏ ଜନ୍ମର ନୁହେଁ; ଏ ଯେ ଜନ୍ମ ପାର—ଆତ୍ମା ଆତ୍ମାର ବନ୍ଧନ, ବିବାହ, ସମ୍ପର୍କ, ଦେନାଦେନ ।

ବୀଣା ! ପ୍ରେୟସି ! ଆଦର୍ଶ ବ୍ୟତିରେକେ ଆଶା କାହିଁ ? ଆଉ ଆଶା ନ ଥିଲେ ଆମ ଧର୍ମ କାହିଁ ? ମୋର ଆଦର୍ଶ ଏହି ଦେଶକୁ ଆମ କୁଡ଼ିଆ ଝିଣ୍ଡିକୁ ଆଦର୍ଶମୟ କରିବା—ତୁମର ଆଦର୍ଶ ମଧ୍ୟ ସେଇଥି । ସେଥିପାଇଁ ତୁମେ ଯେତେବେଳେ ଭାବ ମୁଁ ଆଦର୍ଶରୁ ବିଚ୍ୟୁତ ହେଉଛି, ତୁମେ ମର୍ମାହତ ହୁଅ । ଆଉ ମୁଁ ଯେତେବେଳେ ଭାବେ ମୋର ଆଦର୍ଶ ଅନୁଯାୟୀ ତୁମେ ଆମ ସଂସାରଟି ଗଢ଼ୁନାହଁ ସେତେବେଳେ ମନରେ ଦୁଃଖ ଆସେ, ବିଷାଦ ଆସେ, ବିବାଦ ହୁଏ, ବିସମ୍ବାଦ ହୁଏ, ଘରର ସୁଖ ପରଶଟି ଚାଲିଯାଏ । ମୁଁ ବାଉଳା ହୋଇ ଏଣେତେଣେ ଧାଇଁ ବୁଲେ, ଆଉ ତୁମେ ଘରେ ବସି ବସି କାନ୍ଦ । ଏହି ଦୁଇ ଅବସ୍ଥା ସେହି ଆଦର୍ଶକୁ ରକ୍ଷା କରିବା ପାଇଁ ।

ଯାହା ହେଉ, ଆମେ ଆମ ଆଦର୍ଶ ରକ୍ଷା କରିବା ପାଇଁ ଦୁଃଖ ବ୍ୟଥା ବେଦନା ଅନୁଭବ କରୁ । ଏହାହିଁ ତ ତ୍ୟାଗ । ଏହିଠାରେ ତ ସାଧନାର ବୀଜ ରହିଛି । ଅଧିକ କ'ଣ କହିବି ?

ବୀଣା ! ତୁମେ ବିଦେଶରେ ମୋର ଅନ୍ତରରେ ଆସେ ବାଜଉଠ—ଝଙ୍କାର ଦିଅ—ପୁଣି ମୂର୍ଚ୍ଛନା ଦେଇ ଦେଇ ଚାଲିଯାଅ । ତୁମକୁ ସବୁବେଳେ ଭାବିବି, ଯେତେବେଳେ ଅବସର ପାଇବି । ସବୁବେଳେ ଜପିବି, ଯେତେବେଳେ କ୍ଷତ ବିକ୍ଷତ ହୋଇ ଘରକୋଣରେ ଏକାକୀ ହୋଇ ପଡ଼ିରହିଥିବି ।

ସ୍ନେହର ବୀଣା, ଏଥର (ଉଣେଇଶ ସତଚାଳିଶ ଡିସେମ୍ବର) କାଶୀରେ ସର୍ବଭାରତୀୟ ଦର୍ଶନ ସମ୍ମିଳନୀ ଦେଖିଲି । ଦେଖିଲି, କିନ୍ତୁ ଭାବୁଥାଏ ସବୁ ଦର୍ଶନ ଠାରୁ ବଡ଼ ଦର୍ଶନ ତୁମେ । ତୁମକୁ ଭାବିଲେ ଯେତେ ଭାବନା ଆସେ—ଯେତେ ଭାବନା ଯାଏ—ସେ ତ କିଛି କମ୍ ନୁହେଁ ।

ତୁମେ ନାରୀ । ନାରୀ ଭାବରେ ମୋହିନୀ । ପୁଣି ତୁମେ ପ୍ରକୃତିରେ ସୁନ୍ଦରୀ, ମୋହିନୀ, ସ୍ମିତହାସିନୀ, ଚାରୁ ଭାଷିଣୀ—ତେବେ

ମଧ୍ୟ ମଧ୍ୟରେ ବେଳ ପଡ଼ିଲେ ତୁମେ ଉତ୍ଫଣ ତମ୍ପ, ଏକଥା ମଧ୍ୟ ସତ । ସେଥିପାଇଁ କହୁଥିଲି ତୁମକୁ ଭାବିଲେ—ତୁମକୁ ଦେଖିଲେ, ଅସୀମ ଦର୍ଶନର ଭାବ ଆସେ । ତୁମେ ନାରୀ—ମୋର ପ୍ରେମ ଶଯ୍ୟାରେ ଉଲଙ୍ଗିନୀ, ପୁଣି ସମାଜରେ ସଲଜ୍ଜା, ସାଭରଣା, ସାବରଣା ।

ତୁମେ ତ ପିଶାଚୀ ନୁହଁ—ତୁମେ ତ ଦାନବୀ ନୁହଁ—ତୁମେ ମାନବୀ—ଅବଶ୍ୟ ମାନବୀ—ଅତଏବ ଦେବୀ, ସୁନ୍ଦରୀ । ତୁମକୁ ପୂଜା କରିବାର ଇଚ୍ଛା ହୁଏ । ତୁମକୁ ଚରଣୁ ଶିଖର ଯାଏ ଚୁମ୍ବିବାର ଇଚ୍ଛା ଯେପରି ହୁଏ, ତୁମକୁ ଦୂରରେ ଥିଲା-ବେଳେ ପୂଜା କରିବାର ଇଚ୍ଛା ହୁଏ—ଅନ୍ତରରେ ପୂଜା କରେ ।

ତୁମେ ଓ ମୁଁ; ରମା ଓ ଉମାଧବ ପରି । ଏହା କେତେ ଆନନ୍ଦ ଦିଏ ।

ତୁମେ କଣ ବାସ୍ତବ ? ଦାର୍ଶନିକ କହିବ, ହୁଏତ ତୁମେ ବାସ୍ତବ ନୁହଁ । କିନ୍ତୁ ଦଳେ ଦାର୍ଶନିକ ଅଛନ୍ତି—ଯେଉଁ-ମାନେ କହନ୍ତି, ସବୁ ବାସ୍ତବ—କନ୍ୟା, ଜାୟା, ପିତା, ପୁତ୍ର, ସବୁ ବାସ୍ତବ । ଆଉ ଦଳେ ଅଛନ୍ତି, ସେମାନେ କହନ୍ତି—ଏସବୁ ମିଥ୍ୟା, ମାୟା, ସ୍ୱପ୍ନ । କିନ୍ତୁ ଯେତେ ମିଛ ହେଲେ ବି କେତେ ସୁନ୍ଦର, କେତେ ଆନନ୍ଦଦାୟକ !

ପୁଣି ଏ କଥା ସତ୍ୟ ଏହିମାନଙ୍କ ଯୋଗୁ ଆମ ଦୁଃଖ ମଧ୍ୟ ବେଶୀ ।

ଆଜି ଜଗତରେ ଯେଉଁ ହଣାକଟା ମାରପିଟ୍ ଚାଲିଛି—ତାହାର ମୂଳରେ ଆମର ସମାଜର ବିଧି ବ୍ୟବସ୍ଥା, ପିଲାଙ୍କର ଶିକ୍ଷା, ଆମର ବାପମା'ଙ୍କର ଆଚରଣ, ଆମର ପୂର୍ବଜଙ୍କର ବିଧିବିଧାନ, ଏସବୁ ମିଳିତ ଜଡ଼ିତ ଅଛି । ଅତଏବ ଏ ସବୁ ଆଲୋଚନା କରିବାକୁ ହେବ । ଆମର ଜୀବନ—ଆମର ପିଲାଙ୍କର ଜୀବନ ଗଢ଼ିବାକୁ ହେବ ସେହି ଆଲୋଚନା ଧରି । ଯେପରି ସୁନ୍ଦର ହୁଏ, ସଂସାରରେ ଗୋଳମାଳ ନ ହୁଏ, ବିଦ୍ୱେଷ ନ ବଢ଼ି ବରଂ ବିଦ୍ୱେଷ ଯେପରି ମରିଯାଏ, ସେପରି ।

ଦର୍ଶନର ପ୍ରଧାନ କଥା ହେଉଛି ସତ୍ୟକୁ ଅନୁସନ୍ଧାନ କରିବା । ଏଥିରେ ଆମେ ଯାହା ଦେଖୁଛୁ ତାକୁ ଯେନ ସତ୍ୟର ଆବିଷ୍କାର ଗୋଟିଏ ପନ୍ଥା । ତାକୁ ପାର ହେଲେ ଆଦର୍ଶକୁ ଧରି ସତ୍ୟର ଆବିଷ୍କାର । ସେ ହୋଇ ପାରିଲେ ଆହୁରି ଗମ୍ଭୀରକୁ ଯିବାକୁ ହେବ । ସେ ହେଉଛି ଗମ୍ଭୀର ରହସ୍ୟ—ସେ ରହସ୍ୟର କଥା ହେଉଛି ସାକ୍ଷାତ୍ ଭଗବତ୍ ଦର୍ଶନ ।

ବୀଣା, ତୁମ ପକ୍ଷରେ ସାକ୍ଷାତ୍ ଭଗବଦ୍ଦର୍ଶନ ସହଜ ହୋଇଛି । ମୋ ପକ୍ଷରେ ଈଶ୍ୱରର ସରଣୀ ଧରି ଧୀରେ ଧୀରେ ସତ୍ୟକୁ ଧରିବାକୁ ଚେଷ୍ଟା ହେଉଛି ମାତ୍ର । ସେଥିପାଇଁ କହେ—ତୁମେ ଢେର ବଡ଼ ମୋଠାରୁ ।

ଥାନ ଓ ସମୟ ଏହି ଦୁଇଟି ବସ୍ତୁତଃ ଅଛି କି ନାହିଁ, ଏ ବିଷୟରେ ଗଭୀର ମତଭେଦ ଅଛି । ବାସ୍ତବିକ ଦିନ, ଘଣ୍ଟା, ଏଗୁଡ଼ା ତ ଆମର କୃତ୍ରିମ ଜଗତ ସୃଷ୍ଟି । ତା ନ ହେଲେ କାଳ ଅଖଣ୍ଡ, ଏକ ଏବଂ ସେ କୁଆଡ଼େ ମିଳାଇ ଯାଏ ଆମ ଚିନ୍ତାରେ ! ସେ ଆମ ଚିନ୍ତାକୁ ଯେପରି ଆବୋରି ପକାଏ—ପୁଣି କିଛି ଜଣାଯାଏ ନାହିଁ ।

ଆଉ ଥାନ । ଥାନ ତ ସବୁବେଳେ ଆପେକ୍ଷିକ । ଅତଏବ ଥାନ ମଧ୍ୟ ବାସ୍ତବ

ପଦାର୍ଥ କି ନା, ସେ ବିଷୟ ନେଇ ଅନେକ ଆଲୋଚନା ରହିଛି—ଦର୍ଶନ ଶାସ୍ତ୍ରରେ, ଦାର୍ଶନିକମାନଙ୍କ ଭିତରେ ।

କାଳ ଓ ସ୍ଥାନ ପ୍ରକୃତ ବସ୍ତୁ କି ନା, ସେ ବିଷୟରେ ମତଦ୍ୱୈଧ ଅଛି ।

ସେହିପରି ବେଦାନ୍ତର ମାୟାବାଦ ଥୋକେ ମାନନ୍ତି—ଆଉ ଥୋକେ ମାନନ୍ତି ନାହିଁ ।

କିନ୍ତୁ ବସ୍ତୁର ସରଣୀକୁ ଧରି ଉପରକୁ ଉଠି ପ୍ରକୃତ ବା ସହଜ-ଜାତ ଚିନ୍ତାକୁ ଅତିକ୍ରମ କରି ମନୁଷ୍ୟ ଆହୁରି ଉପରକୁ ଉଠିପାରେ—ଉଠେ—ଉଠୁଛି ବୋଲି କେତେକ କହନ୍ତି । ସେ ହେଉଛି ସାଧନା ଦ୍ୱାରା ସାକ୍ଷାତ୍ ଦର୍ଶନ ।

ସେ ଯାହାହେଉ, ଆମେ ଯାହା ଦେଖୁ ବୋଲି କହୁ, ଜାଣୁ ବୋଲି କହୁ, ତାହା ଆମଠାରୁ ଆହୁରି ଦୂରରେ—ଆମ ଇନ୍ଦ୍ରିୟର, ଆମ ଧାରଣାର ସେପାଖରେ ।

ସେଥିପାଇଁ ରାଣୀ, ତୁମକୁ ମୁଁ ଯେତେ ଜାଣିଲେ ମଧ୍ୟ ଅସଲ ତୁମେ କିଏ ମୁଁ ଜାଣେ ନାହିଁ, ଜାଣି ପାରେ ନାହିଁ । ସେହିପରି ତୁମେ ମଧ୍ୟ ମୁଁ ଅସଲରେ କିଏ କେବେ ଜାଣି ପାରନାହିଁ । ତେବେ ତୁମକୁ ମୁଁ ଜାଣିବାର ଆଉ ମୋତେ ତୁମେ ଜାଣିବାର, ପୂର୍ଣ୍ଣ ଭାବରେ—ନିବିଡରୁ ନିବିଡ଼ତର—ନିବିଡ଼ତରରୁ ନିବିଡ଼ତମ ଭାବରେ ଜାଣିବାର ଆକାଂକ୍ଷା ଯୁଗ ଯୁଗ ଜନ୍ମ ଜନ୍ମ ରହିଥିବ । ସେହି ବାସନାଟି ହିଁ ଆମକୁ ସେପାରିକୁ ନେଇ-ଯାଇ ପୁଣି ସାଥୀ କରାଇ ପାରିବ ଏବଂ ସେହି ଲୁଚକାଳି ଖେଳଟା ହିଁ ଆନନ୍ଦ-ଦାୟକ, ଦୁଃଖଦାୟକ ମଧ୍ୟ; କିନ୍ତୁ ଆନନ୍ଦ ଆଉ ଦୁଃଖ ମଧ୍ୟ ଦେଇ ଆମକୁ ଅସୀମ ପଥରେ ଧାବମାନ ହେବାକୁ ହେବ । ଏହା ମଜାର କଥା ନୁହେଁ କି ? ଏହା ଆନନ୍ଦର କଥା—ଯେତେ ଦୁଃଖ ହେଉ ପଛେ । ଏହାହିଁ ରାଧାକୃଷ୍ଣ ଲୀଳା ।

ରାଣୀ ! ତୁମେ ଯେତେବେଳେ ମିଳି ମିଳି ଯିବ—ଯେପରି ବାବା ମା ମିଳେଇ ଯାଇଛନ୍ତି, ତୁମେ ସେତେ ସୂକ୍ଷ୍ମ ହେବ ଯିବା, କିନ୍ତୁ ତୁମେ ଏକାବେଳକେ କେଉଁଆଡ଼େ ଚାଲିଯିବ ନାହିଁ—ତୁମେ ତଥାପି ରହିବ—ମୁଁ ବି ସେହିପରି ରହିବି । ଏ ଶରୀର ଆତ୍ମାର ଘନୀଭୂତ ରୂପ । ଆଉ ଏ ଶରୀର ଯେତେବେଳେ ମିଳେଇ ମିଳେଇ ଯିବ, ସେତେବେଳେ ସେ ଆତ୍ମାର ସୂକ୍ଷ୍ମରୂପରେ ମିଶିଯିବ । ଉଦାହରଣଟି ଏଇପରି । ଧୂଆଁ—ଆକାଶରେ ସମୁଦ୍ରର ଜଳକଣା ଧୂଆଁ ହୋଇ ବୁଲେ—ପୁଣି ଥଣ୍ଡା ପବନ ସ୍ପର୍ଶରେ ଘନୀଭୂତ ହୁଏ, ପୁଣି ଜଳରୂପରେ ବର୍ଷେ । ପୁଣି ଜଳ ଅତି ଥଣ୍ଡା ହେଲେ ବରଫ ହୁଏ । ତାହାହେଲେ ବରଫ, ପୁଣି ସେହି ବରଫ ତରଳିଲେ ଜଳ, ପୁଣି ସେହି ଜଳ ବାଷ୍ପ ହୋଇ ଆକାଶକୁ ଉଠିଗଲେ ସେହି ଜଳ । ଅତଏବ ଶରୀର ଓ ଆତ୍ମା ମଧ୍ୟରେ ତଫାତ୍ ସେପରି ନାହିଁ ବୋଲି ଆଜିକାଲିକାର ଅନେକ ଦର୍ଶନବିତ୍ କହନ୍ତି । ଯେପରି ଯିଏ ପିତା, ସେହି ପୁଅ—ଯେ ମାତା ସେହି କନ୍ୟା ବା ଯିଏ ମାତା ସେହି ପୁଅ, ସେହିପରି । ପରିବର୍ତ୍ତନ ଅଛି ବାହାରର—ଭିତରରେ ପରିବର୍ତ୍ତନ ନାହିଁ—ତାହା ଅପରିବର୍ତ୍ତନୀୟ । ଅତଏବ ରାଣୀ, ତୁମେ ଓ ମୁଁ ଅସଲରେ ଅପରି-ବର୍ତ୍ତନୀୟ । ଆଉ ତୁମ ପ୍ରତି ମୋ ପ୍ରେମ ସେହିପରି ଆଜି ଅପରିବର୍ତ୍ତନୀୟ । ତୁମେ

ସାଧ୍ୱୀ, ପତିବ୍ରତା, କର୍ମିଷ୍ଠା । ଆଉ ଅଧିକ ତୁମକୁ କଣ କହିବି ? ତୁମକୁ କଣ କହିବି ବା ତୁମ ବିଷୟରେ କଣ ଲେଖୁଛି—ତାହା ତୁମକୁ ଜଣା ନାହିଁ ବା ଜାଣିଲେ ମଧ୍ୟ ତୁମର ସେଥିରେ ବିଶେଷ ଏପାଟି ଦେଖାଣ ନାହିଁ, ଏହା ମୁଁ ଜାଣେ, କିନ୍ତୁ ମୋ ମନ ବୋଧ କରାଇବି ତ ? ସେଥିପାଇଁ ଏତେ ଲେଖୁଛି ।

ଗୀତା ! ଗୀତା ବୋଲି ଭାରତବର୍ଷରେ—ଆମ ଦେଶ ଏଠା, ଗୋଟିଏ ବଡ଼ ପ୍ରସିଦ୍ଧ ଗ୍ରନ୍ଥ ଅଛି । ତାକୁ ଭାରତବାସୀମାନେ ଖୁବ୍ ମାନନ୍ତି । ଏହା କୁରୁକ୍ଷେତ୍ର ଯୁଦ୍ଧବେଳେ ଠିକ୍ ଯୁଦ୍ଧପୂର୍ବରୁ ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବୁଝାଇଥିଲେ—ଅର୍ଜୁନ ଯେତେବେଳେ କୁରୁଙ୍କ ବିରୁଦ୍ଧରେ ଅସ୍ତ୍ର ଧାରଣ କରିବେ କିପରି ଏହି ସନ୍ଦେହରେ ପଡ଼ିଲେ । ଏଥିରେ ଶ୍ରୀକୃଷ୍ଣ ମନୁଷ୍ୟର ମୁକ୍ତି ସାଧନାର ମାର୍ଗ ବତାଇଛନ୍ତି । କର୍ମ, ଜ୍ଞାନ, ଭକ୍ତି ଆଉ ଧ୍ୟାନ । ଏହି ଚାରି ମାର୍ଗରେ ମନୁଷ୍ୟ ସବୁବେଳେ ଗତି କରିଆସିଅଛି ଏବଂ ଗତି କରିବ ।

ଶଙ୍କରାଚାର୍ଯ୍ୟ ଏବଂ ସବୁ ଅଦ୍ୱୈତବାଦୀମାନେ କହନ୍ତି—ଆଉ ସବୁ ମିଛ, କେବଳ ଏକ ବ୍ରହ୍ମ ହିଁ ସତ୍ୟ । ଆମେ ସବୁ ମିଛ ।

ରାମାନୁଜ ବା ବିଶିଷ୍ଟାଦ୍ୱୈତବାଦୀମାନେ କହନ୍ତି—ନା ନା, ଆମେ ସବୁ ତାଙ୍କରି ଠାରୁ ଆସିଛୁ, ତାଙ୍କରି ଭିତରେ ଲୀନ ହେବୁ, ଅତଏବ ଆମେ ସବୁ ମିଛ ନୋହୁ । ବ୍ରହ୍ମ ସତ୍ୟ ତଥା ଆମେ ମଧ୍ୟ ସତ୍ୟ ।

ମାଧ୍ୱାଚାର୍ଯ୍ୟ ଓ ତତ୍ପନ୍ଥୀମାନେ କହନ୍ତି—ହଁ, ଆମେ ବ୍ରହ୍ମଠାରୁ ଆସିଛୁ ଏବଂ ବ୍ରହ୍ମରେ ଲୀନ ହେବୁ । ମାତ୍ର ଏମାନେ ପ୍ରକୃତିକୁ ବା ମାୟାକୁ ସ୍ୱତନ୍ତ୍ର ପଦାର୍ଥ କହନ୍ତି, ତଥାପି କହନ୍ତି ଯେ ପ୍ରକୃତି ବ୍ରହ୍ମର ଅଧୀନ ।

ଏହି ସାଧୁମାନଙ୍କ ଭିତରେ ଭିନ୍ନ ଭିନ୍ନ ଦଳ ଅଛି, ଟିକିଏ ଟିକିଏ ଭିନ୍ନ ଧାରଣା ନେଇ । ସେସବୁ ଏତେ ଟିକିନିଖି ତମ ମୋ ବୁଦ୍ଧିରେ ଏତେ ଧରି ରଖି ହେବ ନାହିଁ—ଗୁଡ଼ ସେ କଥା । ମୋଟରେ ଏମାନେ ସମସ୍ତେ କହନ୍ତି—କୃଷ୍ଣ ବା ବାସୁଦେବ ସାହାଯ୍ୟରେ ସବୁ ମାୟାରୁ ମୁକ୍ତି ମିଳିବ ।

ଆଉ ଦ୍ୱୈତବାଦୀମାନେ କହନ୍ତି—ନା, ଆମେ ବ୍ରହ୍ମଠାରୁ ଭିନ୍ନ—ଆମେ ଭକ୍ତ, ସେ ଭଗବାନ୍ । ତାଙ୍କୁ ଆଲିଙ୍ଗନ କରିବୁ, ତାଙ୍କ ଭିତରେ ମିଳିଯିବୁ, ତଥାପି ଆମେ ସ୍ୱତନ୍ତ୍ର, ଆଉ ବ୍ରହ୍ମ ସ୍ୱତନ୍ତ୍ର ।

ଏସବୁ ଚିନ୍ତା ଭାବନା ବଡ଼ କଠିନ—ମୁଁ ଠିକ୍ ଠିକ୍ କହି ପାରିବି ନାହିଁ—ମୋର ନିଜର ଧାରଣା ତ ଠିକ୍ ନାହିଁ—ତୁମକୁ କହିବି ଠିକ୍ କରି କିପରି ? ସ୍ୱୟଂ ଅସିଦ୍ଧଃ କଥଂ ଅପରାନ୍ ସାଧୟତି ?

କର୍ମଯୋଗ କହେ—ଅତଏବ ଏପରି କର୍ମ କର, ଯଦ୍ଦ୍ୱାରା ମୁକ୍ତି ହେବ ।

ସମଗ୍ର ଗୀତାରେ ଯାହା କୁହା-ହୋଇଛି—ଉଭୟ ପୁରୁଷ ଓ ସ୍ତ୍ରୀଙ୍କୁ କୁହା ଯାଇଅଛି । ସ୍ତ୍ରୀ ଶବ୍ଦ ଅଲଗା ବ୍ୟବହୃତ, କେବଳ ଦୁଇଟି ସ୍ଥାନରେ ବ୍ୟବହୃତ ହୋଇଅଛି ।

ଗୋଟିଏ ଜାଗାରେ (ନବମ ଅଧ୍ୟାୟ ବତିଶ ଶ୍ଳୋକ) ସ୍ତ୍ରୀଲୋକମାନେ delusive ବା ଛଳନାମୟୀ, ଏହି ଭାବରେ ଗୋଟିଏ

ଜାଗାରେ ଉଲ୍ଲେଖ କରାଯାଇଅଛି । ଶ୍ଳୋକଟି ଏହି —

ମାଂ ହି ପାର୍ଥ ବ୍ୟପାଶ୍ରିତ୍ୟ
ଯେଽପି ସ୍ୟୁଃ ପାପଯୋନୟଃ ।
ସ୍ତ୍ରିୟୋ ବୈଶ୍ୟାସ୍ତଥା ଶୂଦ୍ରା ସ୍ତେଽପି
ଯାନ୍ତି ପରାଂ ଗତମ୍ ॥

ଆଜି ଗୋଟିଏ ଜାଗାରେ (ଦଶମ ଅଧ୍ୟାୟ ଚଉତିରିଶ ଶ୍ଳୋକ) ଶ୍ଳୋକଟି ଏହି—

ମୃତ୍ୟୁଃ ସର୍ବହରଶ୍ଚାହମୁଦ୍ଭବଶ୍ଚ
ଭବିଷ୍ୟତାଂ ।
କୀର୍ତ୍ତିଃ ଶ୍ରୀର୍ବାକ୍ଚ ନାରୀଣାଂ
ସ୍ମୃତିର୍ମେଧା ଧୃତିଃ କ୍ଷମା ॥

ଏଠାରେ କୁହାଯାଇଅଛି ନାରୀମାନଙ୍କର ସମ୍ମାନ ମୁଁ, ଭାଗ୍ୟ ମୁଁ, ବାକ୍ ମୁଁ, ସ୍ମୃତି ମୁଁ, ବୁଦ୍ଧି ମୁଁ, ସ୍ଥିରତା ମୁଁ, କ୍ଷମା ମୁଁ ।

ଶୁଣ, ଏହିଠାରେ ଭଗବାନ୍ ତୁମମାନଙ୍କୁ ଦୟା କରିଛନ୍ତି ବିଶେଷ ଭାବରେ ।

ଆମକୁ ପୁରୁଷକୁ ଯେପରି ପଛକୁ ପକାଇ ଦେଇଛନ୍ତି କମ୍ବା ହୋଇପାରେ ତୁମେ ସବୁ ହୁଏତ ଦୁର୍ବଳା—ସେଥିପାଇଁ ଭଗବାନ୍ ଏତେ ଭାବରେ ତୁମର ସହାୟ ହୋଇଛନ୍ତି ।

ଯାହା ହେଉ ପଛେ ତୁମେମାନେ ଭାଗ୍ୟବତୀ । ଅତଏବ ସମଗ୍ର ନାରୀ ଜଗତ୍କୁ ମୋର ଏହିଠାରେ ଗୋଟିଏ ପ୍ରଣାମ ।

* * *

ଗୀତା ଭାବୁଥିଲା—

ହଁ, ତାଙ୍କୁ ଏକ ଦୈବ ଦୁର୍ଘଟଣା କହିଲେ ଭୁଲ ହେବନି । ସେଦିନ ସେ ଥିଲା ଏକ ଅଲୋଡ଼ା କଥା । ଆଜି ଏଇ ମଉଳା ଫୁଲର ବାସ୍ନାସବୁ ଖସି ଆସିଲେ ବି ମନେହୁଏ ତାହାର ସେପରି ଗତ ଜୀବନରେ ପଢ଼ିଥିବା ଏକ ଉପନ୍ୟାସ ।

ଏଇ ଗୀତା ନାଁଟି ତାଙ୍କର ଦତ୍ତ । ଅଜ୍ଞାତର ସୁଲତା ନାଁକୁ ଆଜି ଏଇ ଗୀତା ନାଁଟା ସେପରି ତର୍ଣ୍ଣି ଚପି ମାରିଦେଇଛି । ସେ କହନ୍ତି, ଗୀତା ହିନ୍ଦୁମାନଙ୍କର ଏକ ପବିତ୍ର ଧର୍ମପୁସ୍ତକ, ଆଉ ତୁମର ନାଁଟି ସେହିପରି ସୁନ୍ଦର, ପବିତ୍ର ହେଉ । ସୁବ୍ରତ ଭାଇ ଚିଠିରେ ସମ୍ବୋଧନ କରନ୍ତି ସୁଲତା; କିନ୍ତୁ ତା'ର ଏଇ ପାଗଳା ସ୍ୱାମୀ 'ରୁଦ୍ରପ୍ରତାପ' ବହିବାର ନାଲି ସ୍ୟାହିରେ କାଟି ଲେଖି ଦିଅନ୍ତି 'ଗୀତା' । ଏମିତି ଚିଠି ଉପରେ କଟାକଟି ହେବାରୁ କେତେଥର ସେ ମୁହଁଫୁଲାଫୁଲି ହୋଇଛି, ଆଜି ସେ ସବୁ ତା ନିକଟରେ ଗୋଟିଏ ଗୋଟିଏ ଅଭୁଲା ସ୍ମୃତି । 'ରୁଦ୍ରପ୍ରତାପ' ବଡ଼ ଆଦର୍ଶବାଦୀ ଥିଲାବେଳେ ଆଦର୍ଶକୁ ତାଙ୍କ ପଛରେ ବାନ୍ଧି ରଖି ଥାଆନ୍ତି । ଖୁବ୍ କ୍ୱଚିତ୍ କଥା କହନ୍ତି । ସବୁବେଳେ ବହି ଉପରେ ମୁହଁ ରଖି ସେ ବସିଥାଆନ୍ତି । କେବେ ଯଦି ଗୀତା ଧରେଇ କଥାରେ ସାହାଯ୍ୟ କରି ତାଙ୍କ ସହିତ କଥାବାର୍ତ୍ତା ଆରମ୍ଭ କରେ, ବହି ଉପରେ ସେମିତି ଦୃଷ୍ଟି ରଖି କହନ୍ତି "ଦେଖ ଗୀତା, ବର୍ତ୍ତମାନ ମୁଁ ଟିକିଏ ବିଜି ଅଛି, ତୁମେ ପରେ ଆସ ।" କଷ୍ଟବୋଧ କରେ ଗୀତା । ମନେ ମନେ ପ୍ରତିଜ୍ଞା କରେ ଆଉ ସେପରି ଭୁଲ କେବେ କରିବ ନାହିଁ । ଯଦି ସିନେମା କି ଥିଏଟର୍ ଟିକିଏ ଯିବାକୁ ସେ ଅନୁରୋଧ କରେ, ରୁଦ୍ରପ୍ରତାପ ସେଇ ଜିଦ୍ ରଖି କହନ୍ତି "ଦେଖ ଗୀତା, ଗୋଟିଏ ଅର୍ଜେଣ୍ଟ ···କେତେ କଥା । ମୁଁ ତୁମ ସଙ୍ଗରେ ଯାଇପାରୁ ନାହିଁ, ତୁମେ ଆଜି ଟୁଟୁ କି ବାବୁକୁ ଧରି ଚାଲିଯାଅ, ଆଉ ମୋତେ ଅପେକ୍ଷା କରନାହିଁ ।" ସେ କେବେ ତାଙ୍କୁ ଟୁଟୁ କି ବାବୁ ସହିତ ଯିବାକୁ କହୁଥିଲା, ଏଇଆ ସେ ବୁଝିଲେ ? ଗୀତା ଅଭିମାନ କରେ । ଅଭିମାନର କିଛି ମୂଲ୍ୟ ନ ଥାଏ । ଅଭିମାନ କରି ସେ ବେଡ଼ସାଇଡରେ ରାତି କଟାଏ । ରୁଦ୍ରପ୍ରତାପ ଏଣେ ବହିଟି ଧରି ଅଫିସ୍ ଘରେ ଘୁଙ୍ଗୁଡ଼ି ମାରନ୍ତି । ଏଇମିତି ଖାପଛଡ଼ା ଲୋକ ସେ । ସବୁବେଳେ ପଥର-ମୂର୍ତ୍ତି ପରି ବହିଟିଏ ଧରି ନିଶ୍ଚଳ ହୋଇ ବସିରହି ସେ କ'ଣ ଯେ ପାଆନ୍ତି, ତାହା ତାଙ୍କୁ ହିଁ ଜଣା । ଗୀତା ମନେ ମନେ ଖୁବ୍ ବିରକ୍ତ ହୁଏ । ହାଣ୍ଡିକୁସଡ଼ ଥରେ ବେଳରେ ବସିପାରିଛି—ଆଜି ସେ ବା ଫେରୁଛି କେଉଁଠି ।

ସେ କେଉଁ ଏକ ଅଶୁଭ ମୁହୂର୍ତ୍ତରେ ରୁଦ୍ରପ୍ରତାପ ସହିତ ତାର ଦେଖା ହୋଇ-ଥିଲା, ଆଜି ସେ ଦିନର କଥା, ବାର ମନେ

ନାହିଁ । ଜନ୍ମଦିନ ଉପଲକ୍ଷେ ସେଦିନ ତା'ର ନୂଆବୋଉ ତାଙ୍କୁ ନିଜ ହାତରେ ସଜ କରିଥିଲେ । ଅପରାଜିତା ରଙ୍ଗର ସମ୍ବଲପୁରୀ ଶାଢ଼ୀ ସହିତ ହଳଦିଆ ରଙ୍ଗର ବ୍ଲାଉଜ୍ ବେଶ ମାନୁଥିଲା । ତର ତର ହୋଇ ନିଜକୁ କୌଣସି ପ୍ରକାରେ ପ୍ରସ୍ତୁତ କରି ନେଲି ସେଦିନର ସୁଲତା ଓ ଆଜିର ଗୀତା । ଏକ୍‌ସକରସନ୍‌ରେ ସକାଳୁ ସାଙ୍ଗମାନଙ୍କ ସହିତ ସେ ଯିବ ଖଣ୍ଡଗିରି ।

ଦୁଇଟି କମ୍ପାର୍ଟମେଣ୍ଟରେ ରାଜତ୍ୱ ବିସ୍ତାର କରିଥିଲେ ଗୀତା ଓ ତାହାର ସାଥୀମାନେ । ଗାଡ଼ି କଟକ ଷ୍ଟେସନ୍ ଛାଡ଼ିବାକୁ ଆରମ୍ଭ କଲା । ହଠାତ୍ ଡବା ଭିତରକୁ ଠେଲାଠେଲି ହୋଇ ଦୁଇଜଣ ଗଡ଼ଜାତୀ ସ୍ତ୍ରୀ ଲୋକ ସହିତ ଉଠି ଆସିଲେ ରୁଦ୍ରପ୍ରତାପ । ବସିବାକୁ ସ୍ଥାନ ନ ପାଇ ଛିଡ଼ା ହୋଇଗଲେ । ତା ପରେ ସ୍ୱାଭାବିକ ଭାବରେ ଅତି କ୍ଷୁଦ୍ର ଗତିରେ ଡବାସାରା ଚାଲିଲା ଏଇ ତିନିଜଣ ନୂତନ ଆଗନ୍ତୁକଙ୍କ ବିଷୟରେ ଚର୍ଚ୍ଚା । ଗଡ଼ଜାତର ସେଇ ଦୁଇଜଣ ସ୍ତ୍ରୀଲୋକଙ୍କ ମୁଣ୍ଡରୁ ଯେଉଁ କଡ଼ାତେଲର ବାସ୍ନା ଓ ମୁହଁରୁ ପିକାର ଦୁର୍ଗନ୍ଧ ଭାସି ଆସୁଥିଲା, ତାକୁ ନେଇ ସେଦିନ ସେମାନଙ୍କ ଭିତରେ ଯେଉଁ ଚର୍ଚ୍ଚା ହୋଇଥିଲା, ଆଜି ତ ସେଇ ସ୍ମୃତିଟି ଜନକ ନିରୋଳା ବେଳରେ ମୁଣ୍ଡ ଟେକି କେତେଥର ଗୀତାକୁ ହସାଇଛି । ସେଦିନ ଏମିତି ରୁଦ୍ରପ୍ରତାପ ବହିଟି ଉପରେ ମୁହଁ ଲଗାଇଥିଲେ । ବହିର ମଲାଟ ଉପରେ ଲେଖା ହୋଇଥିଲା "ରୁଦ୍ରପ୍ରତାପ ପଟ୍ଟନାୟକ, ଏମ୍. ଏ., ବି. ଏଲ୍." । ଅତି ସାଧାରଣ ପୋଷାକ ଓ ସରଳ ମୁଖମଣ୍ଡଳରୁ ଜଣା ପଡ଼ୁ ନ ଥିଲା ସେ ଜଣେ ଏଡ଼େ ଉଚ୍ଚ ଶିକ୍ଷିତ ଯୁବକ । ପଟପଟୁ ପଦ୍ମାବତୀ କାନ୍ତାକୁ ଚିମୁଟି ଦେଇ କହିଲା, "ଦେଖିଲୁଣି ସେ ଭଦ୍ରଲୋକଙ୍କ ବହିରେ କଣ ଲେଖା ହୋଇଛି ? ମନେ ହେଉଛି ଭଦ୍ରଲୋକ ଜଣକ ଏଡ଼େ ଶିକ୍ଷିତ ପରି ?" କାନ୍ତା କହିଲା — "ମଲା ଯା, ତୁ ଏଡ଼କି ଓଲି — କାଲେ ବହିଟି ଭଦ୍ରଲୋକଙ୍କର ହୋଇ ନ ପାରିଥାଏ । ସେ କେଉଁ ରୁଦ୍ରପ୍ରତାପ ନାମଧାରୀ ଏମ୍. ଏ., ବି. ଏଲ୍. ଙ୍କ ଠାରୁ ହୁଏତ ବହିଟି ମାଗି ଆଣିଥାଇ ପାରନ୍ତି ।" ଏମିତି କଥାବାର୍ତ୍ତା ଭିତରେ ଗାଡ଼ି ଆସି ପହଞ୍ଚିଲା ଭୁବନେଶ୍ୱରରେ । ଡବାରୁ ଲୋକ ନ ଓହ୍ଲାଇବା ପୂର୍ବରୁ ଆଉ ଦଳେ ଉଠି ଆସିଲେ । ଏତେ ଭିଡ଼ ଦେଇ ଓହ୍ଲାଇବା ଗୋଟିଏ କଷ୍ଟକର ବ୍ୟାପାର । ନିଜକୁ ସମ୍ଭାଳି ନେଇ ଓହ୍ଲାଇବା ଗୀତାପକ୍ଷରେ ବଡ଼ କଷ୍ଟକର ହୋଇଉଠିଲା । ତଥାପି ସେ ପ୍ରାଣପଣେ ଚେଷ୍ଟା କଲା ଓହ୍ଲାଇ ଆସିବାକୁ । ହଠାତ୍ ଗୋଡ଼ଟା ଖସିଗଲା । ଉପରେ ସ୍ଥାନ, କାଳ, ପାତ୍ର ନ ବାଛି ସେ ତା'ର ଅଜାଣତରେ ଜଣେ କାହାକୁ ଜୋରରେ ଧରି ପକାଇଥିଲା । ସେତେବେଳେ ସେ ଭାବିଥିଲା ସାଙ୍ଗମାନଙ୍କ ଭିତରୁ ହୁଏତ କାହାକୁ ଧରିପକାଇଛି । ସେ ସମୟରେ କିଏ ବା କାହାକୁ ଦେଖୁଛି, କୌଣସି ପ୍ରକାରେ ଓହ୍ଲାଇଗଲେ ବାଞ୍ଚି । ହାତଦୁଇଟି ଛାଡ଼ି ଦେଉ ଦେଉ ଚାହିଁଲା — ସେ ତାର କୌଣସି ସାଙ୍ଗ ନୁହନ୍ତି । ଲଜ୍ଜାରେ ସେ ଅନ୍ୟମନସ୍କ ହୋଇଉଠିଲା । ତଳକୁ ଗୋଡ଼ ବଢ଼ାଉ ବଢ଼ାଉ ଆହୁରି ପଞ୍ଚାଏ ଲୋକ ସେହି ଡବାପାଖକୁ ମାଡ଼ି ଆସିଲେ । ନିଜକୁ ରକ୍ଷା କରି ନ ପାରି ସେ ଖସିଗଲା । ଆଖିଆଗରେ ତାର

ଜନତାର ସମୁଦ୍ର । ତାଙ୍କର ଆଗରେ ସେ ପଡ଼ିଯିବ—ସ୍ତ୍ରୀ' ଠାରୁ କଣ୍ଟ ଲଜ୍ଜାର ବିଷୟ ଥାଇପାରେ ? କିନ୍ତୁ ସଙ୍ଗେ ସଙ୍ଗେ ଦୁଇଟି ବଳିଷ୍ଠ ହାତ ତାର ଦୁଇ ବାହୁକୁ ଧରି ଅଟକାଇନେଲା । ଏ ଆଜି କେହି ନୂତନନ୍ତି; ଏ ତ ସେଇ ରୁଦ୍ରପ୍ରତାପ । କୌଣସି ପ୍ରକାରେ ନିଜକୁ ବଞ୍ଚାଇ ନେଇ ଚାଲି ଆସୁ ଆସୁ ପଛଆଡ଼ୁ ସେ ଶୁଣି ପାରିଲା, କିଏ ଡାକୁଛି—"ଆରେ ରୁଦ୍ରପ୍ରତାପ ଯେ, ଆରେ ଭାଇ ତୁ କୁଆଡ଼େ ?"

"ସ୍ତ୍ରୀଙ୍କର ନାଁ ତାହାହେଲେ ପ୍ରକୃତରେ ରୁଦ୍ରପ୍ରତାପ – କୁହେଁ ସୁଲତା ?" ପଛଆଡ଼ୁ ମାଳା ଗୀତାକୁ ହଲାଇ ଦେଇ ପଚାରିଲା । ଗୀତା ମୁହଁ ଟେକି ଚାହିଁଲା ସେହି ଧୋତି ପଞ୍ଜାବି ପିନ୍ଧା ଯୁବକଟି ବନ୍ଧୁଟି ଧରି ଆଗେଇ ଯାଉଛି ।

ଖଣ୍ଡଗିରିରେ ଆସି ପହଞ୍ଚିଲାବେଳକୁ ଦିନ ଏଗାର । ବେଶ୍ ଖୋଲା ଜାଗାଟିଏ । ପାହାଡ଼ ଉପରେ ମାଳା ଓ ସୁଲତା ହାତ ଧରାଧରି ହୋଇ ବୁଲୁ ବୁଲୁ ଆକସ୍ମିକ ଭାବରେ ଆସି ଗୁମ୍ଫା ଭିତରେ ଥିବା ଗୋଟିଏ ନୀଳରଙ୍ଗର ପାଣିଭର୍ତ୍ତି କୁଣ୍ଡ ପାଖରେ ପହଞ୍ଚିଲେ । ଆଗପଛ ହୋଇ ମାଳା ଓ ଗୀତା ଗୁମ୍ଫାଭିତରକୁ ପଶିଗଲେ । ଦୁଇ ଚାରିଟା ମଶା ତାଙ୍କ କାନ ପାଖରେ ଗୁଣୁ ଗୁଣୁ ଶବ୍ଦ କରି ଚାଲିଗଲେ । ଭିତରକୁ ପଶି ଯାଉଁ ଯାଉଁ ଦୁହେଁଯାକ ହାତ ଗୁଡ଼ି ଠିଆ ହୋଇପଡ଼ି ଦେଖିଲେ ଆଗରେ ତାଙ୍କର ସେଇ ଯୁବକ 'ରୁଦ୍ରପ୍ରତାପ' । ଅପ୍ରସ୍ତୁତ ହୋଇ ବାହାରି ଆସିଲେ । ମାଳା ସୁଲତା କାନରେ କହିଲା, "ଆଜି ଏ କଣ ଆମକୁ ଅନୁସରଣ କରୁଛନ୍ତି କି ?" କିନ୍ତୁ ସେମାନେ ଦେଖିବାକୁ ପାଇଲେ ତାଙ୍କର ଆଗରେ ରୁଦ୍ରପ୍ରତାପ ବାବୁ ମୁହଁଟି ପୋତି ଚାଲି ଯାଉଛନ୍ତି । ଦୁହେଁଯାକ ନିର୍ଭୟରେ ଗୁମ୍ଫା ଭିତରକୁ ଗଲେ । କିନ୍ତୁ ସମସ୍ତ ଯାଇଛି କି ନାହିଁ ପୁନର୍ବାର ରୁଦ୍ରପ୍ରତାପ ଆସି ଗୁମ୍ଫା ଭିତରେ ପଶିଲେ, ଏଥର ଛତାଟିଏ ନେଇ ବାହାରିଗଲେ । ଭୁଲରେ ଛତାଟିଏ ଛାଡ଼ି ଯାଇଥିଲେ ବୋଧହୁଏ । କିନ୍ତୁ ସୁଲତା ଓ ମାଳାଙ୍କ ମନରେ ସନ୍ଦେହ ଉଙ୍କି ମାରିଲା, ଲୋକଟା ଏତେଥର ଯା'ଆସ କରୁଛି କାହିଁକି ? ସେମାନେ ସେ ଗୁମ୍ଫା ଛାଡ଼ି ଚାଲିଆସିଲେ ।

ଦିନ ଗଡ଼ି ଚାଲିଲା । ଆକସ୍ମିକ ଭାବରେ ସେଦିନ ସୁଲତା ରୁଦ୍ରପ୍ରତାପକୁ ଆବିଷ୍କାର କଲା ତାର ପିଉସୀଙ୍କ ଘରେ ।

ସେଥର ଗ୍ରୀଷ୍ମଛୁଟିରେ ପିଉସୀ ତାକୁ ଡାକି ନେଇଥିଲେ ତାଙ୍କ ଗାଁକୁ । ବେଶ୍ ହସଖୁସିରେ ସେ ନୂଆ ଭାଉଜଙ୍କ ସହିତ ଦିନଗୁଡ଼ାକ କଟାଇ ନେଉଥିଲା । ପିଉସୀଙ୍କ ଝିଅ ଚନ୍ଦ୍ରସୁଧା ଓ ସେ ସମବୟସ୍କା ଥିଲେ । ତେଣୁ ଦୁହେଁଯାକ ରାତିଦିନ ନୂଆ ଭାଉଜଙ୍କ ସହିତ ଥଟ୍ଟା ଲଗାଉଥିଲେ । ନୂଆଭାଉଜ ବି ସ୍ୱାମୀଙ୍କୁ ଛାଡ଼ୁ ନ ଥିଲେ । ଚନ୍ଦ୍ରସୁଧା ଓ ତାର ଏଇ ନୂଆ ଭାଉଜଙ୍କର ବିବାହ ଏକା ସଙ୍ଗରେ ହୋଇଥିଲା । ଚନ୍ଦ୍ରସୁଧା ବଡ଼ା ହେଲାଦିନ ତାର ଏଇ ନୂଆ ଭାଉଜ ଆସିଥିଲେ । ପରୀକ୍ଷା ବେଳେ ଏଇ ବିବାହ ହୋଇଥିବାରୁ ସୁଲତା ଯୋଗ-ଦେଇ ପାରି ନ ଥିଲା । ତେଣୁ ପିଉସୀ ତାକୁ ଏଇ ଗ୍ରୀଷ୍ମଛୁଟିରେ ଡକାଇ ଆଣିଥିଲେ ।

ସେଦିନ ଖୁବ୍ ଗରମ ହେଉଥାଏ । ସନ୍ଧ୍ୟା ହେବା ସଙ୍ଗେ ସଙ୍ଗେ ଚନ୍ଦ୍ରସୁଧା ଓ

ସୁଲତା ଦୁଆରେ ବିଛଣା ପାରି ଶୋଇ ପଡ଼ିଥିଲା । ତା ପରଦିନ ଅତି ସକାଳୁ ନିଦ ଭାଙ୍ଗିଲାବେଳକୁ ସେ ଦେଖିଲା ଚନ୍ଦ୍ରସୁଧା ତା ପାଖରେ ଶୋଇ ଘୁଙ୍ଗୁଡ଼ି ମାରୁଛି । ସୁଲତା ଚନ୍ଦ୍ରସୁଧାକୁ ହଲାଇ ଦେଇ କହିଲା, "ସୁଧା, କାଲି ନୂଆଭାଉଜ ଆମ ମୁହଁରେ ଚିଣ କରିଥିଲେ, ଆଜି ତାଙ୍କ ମୁହଁରେ ଆମେ କରିଦେଲେ କେମିତି ହୁଅନ୍ତା ?" ଚନ୍ଦ୍ରସୁଧାର ଆଖିରୁ ନିଦ ଛାଡ଼ି ନ ଥାଏ, ସେଇଥିରେ ସେ ଉତ୍ତର ଦେଲା, "ହଁ ଚାଲ ।" ଦାଣ୍ଡଘରୁ ସୁଧା ପ୍ରଦୀପର ଦୁଆତଟି ଧରି ଆସିଲା । ଆଗରେ ସୁଲତା, ପଛେ ପଛେ ଦୁଆତଟି ଧରି ସୁଧା ଚାଲିଲା । ଘର ଭିତରଟା ଏକଦମ ଅନ୍ଧାର ହୋଇଥାଏ । ଅତି ସାବଧାନରେ ଗୀତା ନଇଁପଡ଼ି ଚାହିଁଲା ନୂଆଭାଉଜ ତାର ବୋଧହୁଏ ମଶାଦାଉରୁ ରକ୍ଷା ପାଇବା ପାଇଁ ମୁହଁ ଘୋଡ଼ାଇ ଶୋଇଛନ୍ତି । ଚାଦରଟି ଆସ୍ତେ କାଢ଼ିଦେଇ ଦୁଆତରେ ଟିପ ବୁଡ଼ାଇଲା ଗୀତା । ଖୁବ୍ ସତର୍କତା ଅବଲମ୍ବନ କରି ଗୋଟିଏ ପାଖରେ କାଳିରେ ଚିଣ ଆଙ୍କିଦେଲା । ଅନ୍ୟ ପାଖରେ କରୁଛି, ତାର ହାତଟାକୁ କିଏ ଧରି ପକାଇଲା । ସୁଲତା ଚମକିପଡ଼ି ଦେଖିଲା ଇଏ ତାର ନୂଆଭାଉଜ ନୁହଁନ୍ତି । ଗୋଟାପଣେ ଥରିଉଠିଲା ସେ । ସୁଧା ଦେଖିପାରି ଦୁଆତଟି ଧରି ଦଉଡ଼ି ପଳାଇଗଲା । ସୁଲତା ଖୁବ୍ ନମ୍ର ଭାବରେ କହିଲା, "କ୍ଷମା କରିବେ, ମୁଁ ଭାବିଥିଲି ନୂଆଭାଉଜ । ତେଣୁ..."

ବିନା ବାକ୍ୟବ୍ୟୟରେ ସୁନାପିଲାଟି ପରି ହାତ ତାର ଛାଡ଼ିଦେଲେ । ସୁଲତା ଧୀରେ ଧୀରେ ଚାଲିଆସୁଥିଲା । ଶୁଣିଲା ପଛରୁ ନୂଆଭାଉଜ କହୁଛନ୍ତି, "ହଁ ସୁଲତା ! ଏ ଚିଣଥିଲା ଲୋକଙ୍କର ଚିଣ କରି କି ଲାଭ । ତୁମରି ଚିଣ ନାହିଁ, ଦିପଟା ଚିଣ କରି ସେ ବେଶ୍ ସୁନ୍ଦର ଦିଶିବ । ଭଦ୍ର ଲୋକଙ୍କ ଆଗରେ ଅପମାନ ଦେଉଛନ୍ତି ଜାଣି ସୁଲତା ରାଗରେ ଚାଲି-ଆସିଲା । ନୂଆଭାଉଜ କେତେବେଳୁ ଉଠି ଗାଧୋଇ ସାରିଲେଣି, ସେ କଥା ସେମାନେ ଜାଣି ନ ଥିଲେ ।

ସକାଳ ହେଲା—ପିଉସୀ ଡାକିଲେ, "ଗୀତା, ସୁଧା, ଆରେ ଦେଖିବ ଆସ, ବୋହୂଘରୁ ସାବିତ୍ରୀ ଅମାବାସ୍ୟା ଭାର ଆସିଛି । କାଲି ତାର ଭାଇ ଆଣିଅଛି ।"

ଚନ୍ଦ୍ରସୁଧା ଓ ସୁଲତା ବହୁତ ଚେଷ୍ଟା କଲେ ଲୁଚି ଲୁଚି ନୂଆ ଭାଉଜଙ୍କ ଭାଇଙ୍କୁ ଦେଖିବାକୁ । କିନ୍ତୁ ଦେଖି ପାରୁ ନ ଥିଲେ । କାରଣ ମୁହଁ ସାମ୍ନାରେ ସେ ଗୋଟିଏ ବହି ଧରି ପଢୁଥିଲେ । ଫର୍ଚ୍ଚା ହେବାପରେ ସୁଲତା ଦେଖିଲା ସେ ଆଉ କେହି ନୁହନ୍ତି—ସେଦିନର ସେଇ ରେଲଯାତ୍ରୀ 'ରୁଦ୍ରପ୍ରତାପ' !

ଦିନେ ନୂଆଭାଉଜ କଥାରେ କଥାରେ କହିଲେ, "ବୁଝିଲ ସୁଲତା, ମୁଁ କହିବାକୁ ଭୁଲିଯାଇଥିଲି—ଆମ ରୁଦ୍ର କହୁଛି ତମକୁ କୁଆଡ଼େ ଥରେ ରେଳରେ ଦେଖିଥିଲା । କଣ ଯେ ସେ କୁହେ, ସବୁବେଳେ ତ ବହିଟା ଧରି ବସିଲା । ଏମ୍. ଏ., ବି. ଏଲ୍. ପାସ୍ କରି ବି ତାର ପାଠ ଅଛିଣ୍ଡା ରହିଲା । ତଥାପି ପଢ଼ୁଛି । ସେ କହୁଛି ପାଠ କୁଆଡ଼େ ଅସରା । ତେବେ ତ ସମସ୍ତେ ଜୀବନସାରା ପାଠ ପଢୁଥାଆନ୍ତେ, ଆଉ ରୋଜଗାର କରନ୍ତା କିଏ ? ବାପା ତା ପାଇଁ ଭାରି ବ୍ୟସ୍ତ, କେଉଁଦିନ ତା ପାଠ

ସରିବ କେଜାଣି ?" ଗୀତା ସବୁ ଶୁଣି ନ ଶୁଣିବାର ଅଭିନୟ କରୁଥିଲା । ଏହି ସମୟରେ ରୁଦ୍ରପ୍ରତାପ ସେ ଘରକୁ ପଶି-ଆସିଲେ । ଗୀତା ଉଠି ଚାଲିଗଲା ।

କେତେଦିନ ପରେ ଗୀତା ଶୁଣିଲା ସେଇ ରୁଦ୍ରପ୍ରତାପଙ୍କ ଘରୁ କୁଆଡ଼େ ତାର ବିବାହସମ୍ବନ୍ଧ ଆସିଛି । ସୁବ୍ରତ ଭାଇ ତାର ଏ ପ୍ରସ୍ତାବରେ ରାଜି ନ ଥିଲେ ମଧ୍ୟ ଗୀତା ଭାଉଜଙ୍କ ମାଧ୍ୟମରେ ତାର ମତ ଜଣାଇଦେଲା ଯେ, ସେ ରୁଦ୍ରପ୍ରତାପଙ୍କୁ ବିବାହ କରିବ ।

ଗୀତା ଆଜି ମନେ ମନେ ଭାବେ — କଣ ଭାବି ସେ ଦିନ ସେ ରୁଦ୍ରପ୍ରତାପଙ୍କୁ ଏତେ ନିଜର କରି ପାରିଥିଲା । ରୂପ ବିଭବରେ ସେ ତାର ମନ କିଣି ପାରି ନ ଥିଲେ । ରୁଦ୍ରପ୍ରତାପ ବିଦ୍ୟାପିପାସୁ । ତାଙ୍କର ଜ୍ଞାନ ଓ ସରଳତାରେ ସେ ଯେପରି ମୁଗ୍ଧ ହୋଇଯାଇଥିଲା । କିନ୍ତୁ ବାସ୍ତବ କ୍ଷେତ୍ରରେ ତାର କଳ୍ପନାଟା ଏତେ ତିକ୍ତ ହୋଇ-ଉଠିବ ବୋଲି ସେ ଜାଣି ନ ଥିଲା । ସବୁବେଳେ ରୁଦ୍ରପ୍ରତାପ ବହିଟିଏ ଧରି ବସିଥାଆନ୍ତି । ଗୀତାର ମନ ହୁଏ ବହିଟା ଛଡ଼ାଇ ଆଣି ଚିରିଦେବାକୁ ।

ବେଳେ ବେଳେ ମାଳା ଆସେ ତାର ସ୍ୱାମୀ ବିଶ୍ୱଜିତବାବୁଙ୍କ ସଙ୍ଗରେ । ହିଂସା ଆସେ ତାର ମାଳାକୁ ଦେଖିଲେ । ତାର ସାତ ପଛରେ ମାଳାର ବିଭାଘର ହୋଇଥିଲା । ମାଳାର ସ୍ୱାମୀ ରୁଦ୍ରପ୍ରତାପଙ୍କ ଠାରୁ ବେଶୀ କିଛି ପଢ଼ିନାହାନ୍ତି । କିନ୍ତୁ ସେ ବର୍ତ୍ତମାନ ଅଣ୍ଡର ସେକ୍ରେଟାରୀ । ମାଳାର ପୁଅଟି ବେଶ୍ ସୁନ୍ଦର ହୋଇଛି । ହାତ ବଢ଼ାଇଲେ ଚାଲିଆସେ । ଘଡ଼ିକ ପାଇଁ ଗୀତାର ମାତୃତ୍ୱ ଜାଗିଉଠେ । କିନ୍ତୁ ସେ ଏଇ ମୂକ ଲୋକଟି ପାଖରେ ପଡ଼ି ମୂକ ହେଲାଣି । ଏଇ ବିଷୟରେ ଥରେ ଦି'ଥର ସେ ରୁଦ୍ରପ୍ରତାପଙ୍କୁ ଶୁଣାଇଛି; କିନ୍ତୁ କିଛି ଉତ୍ତର ପାଇନାହିଁ ।

ଶୁଭ୍ରା ଆସେ । ନିଜକୁ ଖୁବ୍ ସୁନ୍ଦର ସୁନ୍ଦର ସଜାଇଥାଏ ସେ । ତା'ର ସ୍ୱାମୀ ପ୍ରଫେସର, ପଦ୍ମାବତୀର ସ୍ୱାମୀ ଇଞ୍ଜିନିୟର; କିନ୍ତୁ ଏତେ ପାଠ ପଢ଼ି ତାହାର ସ୍ୱାମୀ କ'ଣ ? ନିଜକୁ ଅତି ନ୍ୟୂନ ମନେ କରେ ସେ । ଏତେ ପାଠ ପଢ଼ି ତା'ର ସ୍ୱାମୀ ଘରେ ବସିଛନ୍ତି । ସବୁବେଳେ ଖାଲି ପଢ଼ନ୍ତି । ଏମିତି କଣ ଚୁପ ହୋଇକରି ତାଙ୍କର ଜୀବନଟା କଟିଯିବ ? ଥରେ ଅଧେ ସେ ତାଙ୍କ ପାଖରେ ଏଇ କଥା କୁହେ । ସେ କିନ୍ତୁ କୁହନ୍ତି କାହାର ଗୋଲାମଗିରି କରିବା ତାଙ୍କ ଦ୍ୱାରା ହେବ ନାହିଁ । ନିଜକୁ କେମିତି ଗୋଟାଏ ମଳମୁଣ୍ଡିଆଙ୍କ ପରି ସଜାଇ ଥାଆନ୍ତି ରୁଦ୍ରପ୍ରତାପ । ପ୍ୟାଣ୍ଟ, ସାର୍ଟ ବା କୋଟ କଥା ତ ଦୂରରେ, ଜୋତା ମାଡ଼ିବା ବି କେହି କେବେ ଦେଖି ନ ଥିବ । ଏଇଗୁଡ଼ାକ ତାଙ୍କର ଆଦର୍ଶ ।

ଗୀତା ସବୁ ଦେଖେ ଓ ସହିଯାଏ । ସେ ସ୍ତ୍ରୀ, ସହିବା ତା'ର ଧର୍ମ; ସେ ସବୁ ସହିବ, କହିବ ନାହିଁ । ରୁଦ୍ରପ୍ରତାପଙ୍କର ପଛ ପାଖରେ ଗୋଟିଏ ଗୋଟିଏ ବାଳ ପାଚିବାକୁ ଆରମ୍ଭ କଲାଣି — ତଥାପି ସେ ପଢ଼ିବେ, ଖାଲି ପଢ଼ିବେ ।

× ×

ସେ ଦିନ କ'ଣ ହୋଇଥିଲା କେଜାଣି — ଅନ୍ୟ ଦିନ ଅପେକ୍ଷା ରୁଦ୍ର-

ପ୍ରତାପ ଯେପରି ଭଲ ଦିଶୁଥିଲେ । ସେ ଦିନ ତାଙ୍କର କନ୍ୟାଦାନ । ଷୋଳଶ ବର୍ଷ ପୂରି ଯାଇଥିଲା । ଗୀତା ତାଙ୍କୁ ଚାହିଁଥିଲା । ପନ୍ଦର ବର୍ଷ ତଳେ ସେ ନୂଆଶାଶୁଙ୍କ ଘରେ ତାଙ୍କର ମୁହଁରେ ହସ ଦେଖିଥିଲା, ଆଜି ସେ ହସ ଲିଭି ନାହିଁ । ତଥାପି ସେଦିନ ସେ ଖୁବ୍ ଚଞ୍ଚଳ ଜଣା ପଡୁଥିଲେ । ନୂଆ ଧୋତି, ପଞ୍ଜାବୀ ପିନ୍ଧି ସେ ଡ୍ରେସିଂ ଟେବୁଲ୍‌ର ବଡ଼ ଦର୍ପଣଟା ସାମ୍ନାରେ ଠିଆ ହୋଇ ଡାକିଲେ, "ଗୀତା, ଟିକେ ଏଠିକି ଆସ ତ ।" ବିସ୍ମାରିତ ନେତ୍ରରେ ସେ ରୁଦ୍ରପ୍ରତାପଙ୍କୁ ଥରେ ଚାହିଁଲା ! ଆଜି ପୁଣି ଏ କି ଖେଳ ? ସେ କିଛି ଜାଣି ପାରୁ ନ ଥିଲା । ପଚାରିବାକୁ ବି ତାର ସାହସ ହେଉ ନ ଥିଲା । ପନ୍ଦର ବର୍ଷକାଳ ସେ କେବଳ ଏଇ ଚାହାଁଣି ଓ ହାବଭଙ୍ଗୀ ମାଧ୍ୟମରେ ରୁଦ୍ରପ୍ରତାପଙ୍କ ସାଙ୍ଗେ କଥା କହୁଛି । ଆଜି ବି ସେ ସେମିତି ଚାହିଁଲା । ସେ ଅନୁଭବ କରୁଥିଲା ସତେ ଯେପରି ସେଦିନ ନୂଆ ହୋଇ ବସନ୍ତ ଆସିଛି ଓ ମଳୟ ବହୁଛି । ଧୀରେ ଧୀରେ ସେ ଯାଇ ରୁଦ୍ରପ୍ରତାପଙ୍କ ପାଖରେ ଛିଡ଼ା ହେଲା ।

ସ୍ୱପ୍ନ ଦେଖିଲା ପରି ରୁଦ୍ରପ୍ରତାପ କହିଲେ, "ଚାହଁ ତ ଗୀତା ! ତମେ କେଡ଼େ ବୁଢ଼ୀ ପରି ଦିଶୁଛ । ଦେହରେ ତାର ଚମକ ଲାଗିଲା । କଣେଇ କରି ଦର୍ପଣଟାକୁ ଚାହିଁଲା । ସତେ ତ ! ଆଗରେ ଥୁଆ ହୋଇଛି ସେମାନଙ୍କର ବନ୍ଧା ହୋଇଥିବା ବଡ଼ ଫଟଟି । ସେଥିରେ ସେ ତ ଏତେ ବୁଢ଼ୀ ପରି ଦିଶୁ ନ ଥିଲା । ଆଜି ସେ ଯେପରି ରୁଦ୍ରପ୍ରତାପଙ୍କ ଠାରୁ ଦଶ ପନ୍ଦର ବର୍ଷ ବଡ଼ ପରି ଦିଶୁଛି । ବଡ଼ ଖରାପ ଲାଗିଲା ତାଙ୍କୁ । ଅଳ୍ପ ଘୁଞ୍ଚିଆସି କହିଲା, "ହଁ କ'ଣ ହେଲା— ତୁମର ଆଜି ଏ କଥା କାହିଁକି ମନେ ପଡ଼ିଲା ? କିଛି ବନ୍ଧି ବୋଧହୁଏ ଚଢ଼ିବାକୁ ନାହିଁ ?"

ଦୀର୍ଘ ନିଃଶ୍ୱାସ ଛାଡ଼ି ରୁଦ୍ରପ୍ରତାପ କହିଲେ, "ନା ନା ଗୀତା, ବନ୍ଧି କଥା ନୁହେଁ । ଅଜି ବୋଉ ମତେ ଡାକି ଗୋଟାଏ କଥା କହିଲା । ସେ ଅବଶ୍ୟ ଯାହା କହିଲା ତାହା ତମେ ଅନେକ ଥର ମତେ କହିଛ । ହଁ, ମୁଁ ଆଜି ଭାବୁଛି ଦେଖିବାକୁ ଗଲେ ବିବାହର ଉଦ୍ଦେଶ୍ୟ ଏକରକମ ସେତିକି । ବୋଉ ବୁଢ଼ୀ, କୁଳରକ୍ଷା କରିବାକୁ ହେବ । ଦେଖ ଗୀତା, ମୁଁ ଆଜି ସେଥିପା ଭାବୁଛି ।" ଟିକେ ଇତସ୍ତତଃ ହେଲେ ରୁଦ୍ରପ୍ରତାପ ।

ଗୀତା ଆଶ୍ଚର୍ଯ୍ୟ ହେଲା । କ'ଣ ଆଜି ସେ ଶୁଣୁଛି ? ଦଶ ଥର କହିଲା ପରେ ଯାହାଙ୍କର ପାଟିରୁ କଥା ବାହାରେ ନାହିଁ, ଅଜି ସେ ଏତେ କଥା କହୁଛନ୍ତି କିପରି ?

ଆଉ ଟିକେ ପାଖକୁ ଲାଗିଆସି ରୁଦ୍ରପ୍ରତାପ କହିଲେ, "ତମେ ତ ଜାଣ ଗୀତା, କଥାଗୁଡ଼ାକ କହିବା ପୂର୍ବରୁ କିପରି ଗୁଛେଇ ବଛେଇ କହିବାକୁ ହୁଏ, ମତେ ସେ କଳା ଜଣା ନାହିଁ । ତେବେ ମୁଁ ଏତିକି କହୁଛି, ଆଜିଠାରୁ ମୋର ଗୃହସ୍ଥଜୀବନ ଶେଷ କରି ମୁଁ ସନ୍ୟାସୀ ହେବି ।"

ଏଥର ଗୀତାର ମୁହଁରେ ହସ ଫୁଟି-ଉଠିଲା । ସେ ରୁଦ୍ରପ୍ରତାପଙ୍କୁ ଚାହିଁ କହିଲା, "କଣ ଆଜି ତମର ହୋଇଛି ? ତମେ ଏତେ ଗପି ପାର ? ଆଜି ବୋଧହୁଏ ତୁମର କିଛି ଅର୍ଜେଣ୍ଟ କାମ ନାହିଁ କମ୍ପା ତମେ ଥକି ନାହଁ ।"

ଗୀତାର ହାତଟି ମୁଠାଇ ଧରି ରୁଦ୍ରପ୍ରତାପ କହିଲେ, "ଗୀତା ! ମତେ ଆଜି କଷ୍ଟ ଦିଅ ନାହିଁ । ଅତୀତରେ ମୁଁ ତୁମ ପ୍ରତି ଯେଉଁ ବ୍ୟବହାର ଦେଖାଇଥିଲି ତାକୁ ତୁମେ ଭୁଲିଯାଅ । ଆଦର୍ଶର ପଛରେ ଗୋଡ଼ାଇ ଗୋଡ଼ାଇ ମୁଁ ଆଜି କେଉଁଠି ପଡ଼ିଥିଲି ଗୀତା ?" କଣ୍ଠ ତାଙ୍କର ଥରିଉଠିଲା ।

ତାଙ୍କ ହାତରୁ ନିଜ ହାତଟି ଖସାଇ ଆଣୁ ଆଣୁ ଗୀତା କହିଲା, "ଦେଖ, ତୋଳି ପଦ ଦେଖନ୍ତୁ ନା...।" ରୁଦ୍ରପ୍ରତାପ ହସିଲେ ଏକଦମ୍ ଖାରପ ହସ । କେତେ-ଥର ଦେଖିଛି ଗୀତା, କହି ପଡ଼ି ପଡ଼ି ସେ ହସିଉଠନ୍ତି । କିନ୍ତୁ ଏମିତି ସେ ତ କେବେ ହସନ୍ତି ନାହିଁ । ଡର ଲାଗିଲା ତାକୁ । ମନେହେଲା ରୁଦ୍ରପ୍ରତାପ ଯେପରି ପାଗଳ ହୋଇଯାଇଛନ୍ତି ।

ସେ ଦିନଟାସାରା ରୁଦ୍ରପ୍ରତାପ ଆଉ କିଛି ଧରିନାହାନ୍ତି । ସାଇକେଲଟା ଧରି ସକାଳୁ ବାହାରିଗଲେ କୁଆଡ଼େ । ରାତି ବାର ବାଜିଲା । ଗୀତା ଚାହିଁ ରହିଥିଲା । ସକାଳର କଥା ତା'ର ଘୁରାଇ ଘୁରାଇ ମନେ ପଡୁଥିଲା । ଗୀତା ତାର ଟ୍ରଙ୍କ ପାଖକୁ ଯାଇ ନୀଳ ରଙ୍ଗର ନାଇଲନ୍ ଶାଢ଼ୀଟି କାଢ଼ିଲା । ବେଶ୍ ସଜାଇ କରି ଶାଢ଼ୀଟି ପିନ୍ଧିଲା । ମୁଣ୍ଡ କୁଣ୍ଡେଇଲା । ଭୁହାକୁ ଭୁହା ଦର୍ପଣ ଆଗରେ ଛିଡ଼ା ହେଲା । ଖୁବ୍ ନିଦ ଲାଗିଲାଣି ତାକୁ, ତଥାପି ରୁଦ୍ରପ୍ରତାପଙ୍କର ଦେଖା ନାହିଁ ।

ରାତି ସେତେବେଳକୁ ଗଡ଼ିଯାଇ ଆସି-ଥିଲା । ଝରକାବାଟେ ଅଳ୍ପ ଚନ୍ଦ୍ରକିରଣ ପଡୁଥିଲା । ବାହାରୁ ଝାପ୍‌ସା ଦିଶୁଥିଲା ମସ୍‌ଜିଦ୍‌ଟା — ଧଳା ରଙ୍ଗର ଗୋଟିଏ ବିରାଟ ସଇତାନ ମୂର୍ତ୍ତି ପରି । ରୁଦ୍ରପ୍ରତାପ ଘରେ ଗୋଡ଼ ଦେଲେ । ସେ ଜାଣି ପାରିଲେ ଘର ଭିତରେ କାହା ସେଣ୍ଟର ବାସ୍ନା ଖେଳିବୁଲୁଛି । ସେ ସୁଇଚ୍ ଟିପିଲେ । ଦେଖିଲେ ପଲଙ୍କ ଉପରେ ଗୀତା ଶୋଇ ପଡ଼ିଛି । ଗୋରା ଦେହ ସାଙ୍ଗକୁ ନୀଳ ରଙ୍ଗର ନାଇଲନ୍ ଶାଢ଼ୀଟି ବେଶ୍ ସୁନ୍ଦର ଦିଶୁଛି । ସେ ଘଡ଼ିଏକାଳ ନିସ୍ତବ୍ଧ ହୋଇ ଚାହିଁ ରହିଲେ । ଏଇ ମୋର ସ୍ତ୍ରୀ ଗୀତା, ଯାହାକୁ ସେ ପ୍ରଥମେ ଦେଖିଥିଲେ ଆଜକୁ ଷୋଳ ବର୍ଷ ତଳେ ରେଲଡବାରେ । ଏତେ ଝିଅଙ୍କ ଭିତରେ ଯିଏ ଗୋଟିଏ ପ୍ରସ୍ଫୁଟିତ ସଦ୍ୟ ଗୋଲାପ ଫୁଲ ପରି ଦିଶୁଥିଲା । ମନେହେଲେ ଏ ଗୀତା ତାଙ୍କ ମନରେ ଦୁଃଖ ଦେଲାପରି କିଛି କାମ କରିନାହିଁ । ମନେ ହେଉଥିଲା ଗୀତାର ଗୋଡ଼ ଧରି ସେ କ୍ଷମା ମାଗନ୍ତେ । ଗୀତାର ମୁଣ୍ଡତଳ ତକିଆଟି ରଖିଦେଇ ସେ ତା'ଆଡ଼େ ଚାହିଁ ରହିଲେ । ଆଗରେ ବହିର ସ୍ତୁପ । ସେପଟୁ ସେ ମୁହଁ ବୁଲାଇ ଆଣିଲେ । ଘରଟିକୁ ଅନ୍ଧାର କରି ସେ ଦୁଇ ହାତରେ ନିଜର ମୁହଁଟି ଘୋଡ଼ାଇ ଆଣୁଉପରେ ରଖିଲେ ।

ଅଧ ରାତିରେ ଗୀତାର ନିଦ ଭାଙ୍ଗିଗଲା । ସେ ଦେଖିଲା ଘରଟା ସାରା ଅନ୍ଧାର ପୂରିରହିଛି । ମନେ ମନେ ଭାବିଲା ହୁଏତ ରୁଦ୍ରପ୍ରତାପ ଫେରିନାହାନ୍ତି କିମ୍ବା ଅଫିସ୍ ଘରେ ବସି ବହି ପଢୁଛନ୍ତି । ହଠାତ୍ ଗୋଟିଏ ଶବ୍ଦରେ ସେ ଚମକି ଉଠିଲା । ଲାଇଟ୍ ଜାଳି ସେ ଦେଖିଲା ଘର ମଝିରେ ରୁଦ୍ରପ୍ରତାପ ଛିଡ଼ା ହୋଇଛନ୍ତି । ହାତରୁ ତାଙ୍କ ଦୁହିଁଙ୍କର ବନ୍ଧା ହୋଇ-ଥିବା ବଡ଼ ଫଟଟି ଖସିପଡ଼ି ଭାଙ୍ଗିଯାଇଛି ।

ଗୀତା ତାଙ୍କ କାନ୍ଧ ଉପରେ ହାତ ରଖି କହିଲା, "ଏ କ ରକମ ପାଗଳାମି ! ତମେ କଣ ଶୋଇବ ନାହିଁ ? ଯଦି ନ ଶୋଇବ ତେବେ ବହି କିଛି ପଢ଼ ।" ଟେବୁଲ ଉପରୁ ବହିଟି ଆଣି ଥୋଇଲା ।

ଏଥର କିନ୍ତୁ ରୁଦ୍ର ପ୍ରତାପଙ୍କର ଦୁଃଖ ବଢ଼ିଗଲା । ସେ ଦୁଇ ହାତରେ ନିଜର ମୁହଁ ଢାଙ୍କିଧରି କହିଁ କହିଁ ହୋଇ କାନ୍ଦଉଠି କହିଲେ, "ଗୀତା ! ମୁଁ ମୋର ଗୃହ-ଜୀବନ ସାରା ଆଜ ସଂସାରୀ ହେବାକୁ ଯାଉଛି । ମୋର ଇଚ୍ଛା ବିରୁଦ୍ଧରେ ଏସବୁ ହେଉଛି । କେବଳ ବୋଉକୁ ସନ୍ତୁଷ୍ଟ କରିବାକୁ ମୁଁ ଆଜ ମୋର ଆଦର୍ଶକୁ ଜଳାଞ୍ଜଳି ଦେଉଛୁ । ତମେ ମତେ ଅନୁମତି ଦିଅ, ଗୀତା ।"

ଆଉ କିଛି ଶୁଣିବାକୁ ଗୀତାର ଧୈର୍ଯ୍ୟ ନ ଥିଲା । ସେ ରୁଦ୍ର ପ୍ରତାପଙ୍କ କାନ୍ଧରେ ମୁଣ୍ଡ ରଖି ଲୁହଧାରରେ ତାଙ୍କର ପଞ୍ଜାବୀଟା ତିନ୍ତାଇ ଦେଉଥିଲା । ଲୁହ ଗିଳିପିରଖି ସେ କହିଲା, "ମୁଁ କ'ଣ ତୁମ ଇଚ୍ଛାରେ କେବେ ବାଧା ସୃଷ୍ଟି କରିଛି ? ହଁ, ତମେ ଆଜ ନୂଆ ଜୀବନ ପାଇଛ, ତୁମର ନୂଆ ସଂସାର ଗଢ଼ିବ । ତୁମର ଚଲାପଥ ପୁଷ୍ପିତ ହେଉ—ଆଉ ତମେ—ତମେ ମୋତେ ଭୁଲିଯାଅ । ମତେ ଅତୀତକୁ ଫେରିଯିବାକୁ ଦିଅ । ମୁଁ ଅତୀତର ସେଇ ସୁଲତା ହୋଇ ପଡ଼ିରହି ଚିରଦିନ ତୁମର ମଙ୍ଗଳକାମନା କରିବି ।

ରୁଦ୍ର ପ୍ରତାପଙ୍କ ବଳିଷ୍ଠ ବାହୁବନ୍ଧନ ଭିତରେ ଥାଇ ସୁଲତା ଆଖିରୁ ଲୁହ ଧାର ଧାର ବୋହୁଥିଲା, ଏତେଦିନ ସେ ଗୀତା ନାମ ଧରି ଅଭିନୟ କରୁଥିଲା—ଆଜ ସେ ସେଇ ପୁରୁଣା ସୁଲତା—ଗୀତା ନୁହେଁ ।

* * *

# ଅଥାଳନ

କିଏ ସେ ? ମର୍ମାଣ୍ଡ୍ୟଦ୍ୱୀପ ଅଧିବାସୀ ସେହି ଲୋକଟି ମୁଣ୍ଡ ପୋତି ବସିଛି, କିଛି କଥା କହୁନାହିଁ । ଜାତୀୟ ପତାକା ଉତ୍ତୋଳିତ ହୋଇଛି ସେଠାରେ—ଗୋଆ, ଡାମନ, ଡିଉ, ମର୍ମାଣ୍ଡ୍ୟ ସ୍ୱାଧୀନ ହୋଇଛି ଏ କଥା ତାକୁ ଜଣା ନାହିଁ । ସେ ଲଢ଼େଇ କରି କରି ଥକି ଯାଇଛି—ପଥର ପାଲଟି ଯାଇଛି—ଅନେକ ଆଗରୁ ସେ ଭାରତ ସହିତରେ ମର୍ମାଣ୍ଡ୍ୟୁକୁ ମିଶାଇବା ପାଇଁ ପ୍ରାଣପଣେ ଚେଷ୍ଟା କରିଛି—କେତେ ମାଡ଼ ଖାଇଛି । ମିଛରେ ତାକୁ କେତେ ଜେଲ ଦେଇଛନ୍ତି । ସବୁ ସହିଛି—କାହାକୁ କିଛି କହି ନାହିଁ—ମଥା ପୋତି ସବୁ ସହିଛି, କାମ କରିଛି—ମାତୃଭୂମି ଭାରତ ସହିତରେ ମିଳିବା ପାଇଁ । ଆଜି ଯେତେବେଳେ ଭାରତ ସହିତରେ ଗୋଆ, ଡାମନ, ଡିଉ, ମର୍ମାଣ୍ଡ୍ୟୁ ମିଶିଯାଇଛି—ସେ ଅସମର୍ଥ । ପାଗଳ ହୋଇଛି—ପଥର ପରି ବସି ରହିଛି । ଅଥାଳନ ତାର ନାମ ବୋଲି କହନ୍ତି—ତାକୁ ପଚାରିଲେ ସେ କିଛି କହେ ନାହିଁ—ଅଥାଳନ ଡାକିଲେ ମଧ୍ୟ ସେ ପଥର ପରି ବସି ରହିଥାଏ—ଗୋଟିଏ କୁକୁର ତା ପାଖେ ପାଖେ ସବୁବେଳେ ରହିଛି—ସେ ତାକୁ ଛାଡ଼ି ଯାଉନାହିଁ—କେଉଁଠୁ କେଉଁଠୁ ଭାତ ଦାଣା, ମାଂସ ହାଡ଼ ଖଣ୍ଡିଏ ଖଣ୍ଡିଏ ଆଣି ଦେଉଛି ।

ଅଥାଳନ ଲଢ଼େଇ କରିଥିଲା ଦେଶର ସ୍ୱାଧୀନତା ପାଇଁ । ପ୍ରଥମ—ସର୍ବପ୍ରଥମ—ତାକୁ ଅନେକ ଯନ୍ତ୍ରଣା ସହିବାକୁ ହୋଇଛି । ଦେଖୁ ଦେଖୁ ଗୋଟିଏ ବୁଢ଼ୀ ଆସି ପହଞ୍ଚିଲା । ଅନ୍ଧ ବୁଢ଼ୀ—ପାଟି କରି କହିଲା, "ଅଥାଳନ, ମର୍ମାଣ୍ଡ୍ୟୁ ଭାରତରେ ମିଶିଲା—ବାପା ଶୁଣ, ଆନନ୍ଦ କର ।" ଅଥାଳନ ଟିକିଏ ହସିଲା—ପରେ ମା'କୁ ଧରି ଅନନ୍ତ ଶଯ୍ୟାରେ ଶୋଇପଡ଼ିଲା । ମର୍ମାଣ୍ଡ୍ୟୁ ସ୍ୱାଧୀନ ଏବଂ ଭାରତରେ ମିଶିଲା ସ୍ୱାର୍ଥ ଯୋଗୁଁ । ତାକୁ ଲୋକେ ସାବାସି ଦେଇ ପାରିଲେ ନାହିଁ—ଆଦର, ଯତ୍ନ କରି ପାରିଲେ ନାହିଁ—ବେକରେ ଫୁଲମାଳ ସମ୍ବର୍ଦ୍ଧନା କରି ପାରିଲେ ନାହିଁ । ଅଥାଳନର ଜନନୀକୁ ପୂଜା ସମ୍ବର୍ଦ୍ଧନା କରିପାରିଲେ ନାହିଁ—ସେହି କୁକୁରଟା ଆଜି ଭେଉଁ ଭେଉଁ କରି କାନ୍ଦୁଛି—ଛଟପଟ ହେଉଛି—ଅଥାଳନ ପାଖରେ ପଡ଼ିଛି—ଶୋଇ ପଡ଼ିବ ସେ ଅଥାଳନ ସାଙ୍ଗରେ—ଶୋଇ ପଡ଼ିଲା—ଅଥାଳନର ମାତା ପଥର ପାଲଟି ଯାଇଛି । ଅଥାଳନ, କୁକୁର ମଧ୍ୟ ସେହି ପଥର ପାଲଟି ଯାଇଛନ୍ତି । ଦେଖି ଆସିବ ଯିବ ଆସ । ଦେଶ ପାଇଁ ଜୀବନ ଦେଇ ସେମାନେ ପଥର ପାଲଟି ସେଠି ଏବେ ବି ରହିଛନ୍ତି ।

* * *

# କଣ୍ଟ୍ରୋଲ ରୁମ୍

ମୁଖ୍ୟମନ୍ତ୍ରୀ କଣ୍ଟ୍ରୋଲ ରୁମ୍‌ରେ ପଶିଲେ । ଆଟସେମ୍ବ୍ଲି ଭାଙ୍ଗି ଦିଆଗଲା, ଅର୍ଥାତ୍ ଆପାତତଃ ବନ୍ଦ କରିଦିଆଗଲା । ମହାନଦୀରେ ବଢ଼ି, ବ୍ରାହ୍ମଣୀରେ ବଢ଼ି, ବୈତରଣୀରେ ବଢ଼ି । ସବୁ ଜାଗାରେ ପାଣି ବିପଦସଙ୍କେତ ଟପିବାକୁ ଆରମ୍ଭ କରିସାରିଲାଣି । କେତେ ଜାଗାରେ ବନ୍ଧ ଭାଙ୍ଗିଗଲାଣି, ହଜାର ହଜାର ଲୋକ ବିପନ୍ନ ହୋଇ ସାରିଲେଣି । ଆଜି ରାତି ଭିତରେ କ'ଣ ହେବ କେଜାଣି । ରାତି ଦଶଟା ବାଜି ସାରିଲାଣି । ମୁଖ୍ୟମନ୍ତ୍ରୀ କଣ୍ଟ୍ରୋଲ ରୁମ୍ ଭିତରେ ପଶିଛନ୍ତି । ଚାରିଆଡ଼ୁ ଧମାଧମ୍ ଟେଲିଫୋନ୍, ଟ୍ରଙ୍କ୍ କଲ୍—ନିଦ ନାହିଁ । ଯେପରି କି କାନରେ ଖାଲି ବିପନ୍ନର ହାହାରବ ଶୁଣାଯାଉଛି, ତଥାପି ମୁଖ୍ୟମନ୍ତ୍ରୀ ଲଢ଼ୁଛନ୍ତି, ଇଂଜିନିୟରମାନେ ଲଢ଼ୁଛନ୍ତି । ପରାମର୍ଶ ଚାଲିଛି, ବନ୍ଧରକ୍ଷା କରିବାପାଇଁ କାମ ଚାଲିଛି, ଲୋକ ଅନେକ ଜାଗାରେ ଜାଗତିଆର ହୋଇଛନ୍ତି, ହେଉଛନ୍ତି । ଓଡ଼ିଶାକୁ କି ବିପଦ ଘଟିଲା ? ଚାରିଆଡ଼େ ହାହାକାର, ଅନ୍ଧକାର, କିନ୍ତୁ ମୁଖ୍ୟମନ୍ତ୍ରୀ ଅଟଳ, ଅଜେୟ । ଶତ୍ରୁ ଚିତ୍କାର କରି କହୁଛି, "ହେ ମୁଖ୍ୟମନ୍ତ୍ରି, କଲ କ'ଣ ?" କିନ୍ତୁ ମୁଖ୍ୟମନ୍ତ୍ରୀ ସେ ସବୁ ଶୁଣିବାର ଲୋକ ନୁହଁନ୍ତି । ସେ କଣ୍ଟ୍ରୋଲ୍ ରୁମ୍‌ରେ ରହି ଇଂଜିନିୟରମାନଙ୍କ ସଙ୍ଗରେ କଥାବାର୍ତ୍ତା କରୁଛନ୍ତି ଏବଂ ପରାମର୍ଶ ଅନୁଯାୟୀ ସେମାନଙ୍କୁ କାମ ବରାଦ କରୁଛନ୍ତି ।

ସମସ୍ତେ ଶୋଇପଡ଼ିଲେଣି, ମୁଖ୍ୟମନ୍ତ୍ରୀ ଶୋଇନାହାନ୍ତି, ଇଞ୍ଜିନିୟରମାନେ ଶୋଇନାହାନ୍ତି, ପ୍ରାଣପାତ ଚେଷ୍ଟା କରୁଛନ୍ତି; ପାଣି ନିଷ୍କାସନ କରିବେ, ସହର ରକ୍ଷା କରିବେ, ଗାଁ ରକ୍ଷା କରିବେ, ଦେଶବାସୀଙ୍କୁ ରକ୍ଷା କରିବେ—କମ୍ କଥା ନୁହେଁ ।

ଆଟସେମ୍ବ୍ଲି ଚାଲିଲା ସଞ୍ଜ ୫ଟା ପର୍ଯ୍ୟନ୍ତ । ମୁଖ୍ୟମନ୍ତ୍ରୀ ୫ଟାରୁ ରାତି ୧୨ଟା ହୋଇଗଲାଣି କଣ୍ଟ୍ରୋଲ୍ ରୁମ୍‌ରେ—ଗୋଟିଏ ଗୋଟିଏ ସିଗାରେଟ୍, କପେ ଚା' ଆଉ ଦ'ଖଣ୍ଡ ବିସ୍କୁଟ୍—ଏଇଥିରେ କାମ ଚାଲିଛି ଅନବରତ । ମହାନଦୀରେ ପାଣି ଘୋ ଘୋ କରୁଛି; ବୈତରଣୀରେ ପାଣି ଘୋ ଘୋ କରୁଛି—ବ୍ରାହ୍ମଣୀ···ବାପ ରେ ବାପ୍ । ଗାଁ ଭାସି ଯାଉଛି, ଲୋକେ ଆର୍ତ୍ତନାଦ କରୁଛନ୍ତି—ମୁଖ୍ୟମନ୍ତ୍ରୀ ତାହାରି ଭିତରେ ଅଟଳ, ନିର୍ଭୀକ । ସତେ ଯେପରି ଲଢ଼େଇ, କୁରୁକ୍ଷେତ୍ର, ଖାଣ୍ଡବ କୁରୁକ୍ଷେତ୍ର ।

ଏଣେ ଅନ୍ୟତ୍ର କଣ୍ଟ୍ରୋଲ ରୁମ୍‌ରେ ପରିଶ୍ରାନ୍ତ ଜ୍ୟୁଷ୍ଟେଇ । ଚାଲିଛି ଧମାଧମ କଥାବାର୍ତ୍ତା, ଟେଲିଫୋନ ଚନ୍ଦ୍ରମଣ୍ଡଳରୁ ମର୍ତ୍ତ୍ୟକୁ, ପୁଣି ବୋମା ବିସ୍ଫୋରଣ—ତାର ଫଳାଫଳ ପରୀକ୍ଷା ! ନିର୍ଭୀକ, ନିର୍ଭୟ

ସ୍ନୁଟ୍‌ନିକ—ପୃଥିବୀର କାହାକୁ ସେ ଆଉ ଖାତିର କରୁନାହାନ୍ତି । ଚାଲିଛି ଏହିପରି ଭୀଷଣ ଅଥଚ ଶୀତଳ ଯୁଦ୍ଧ !

ଖାଲି କ ଏତିକି ? ଏହାରି ଭିତରେ ବେଲଗ୍ରାଡ୍‌ରେ ଆଜି ସବୁ ନେତା—ଜବାହର, ଟିଟୋ, ନାସେର, ସୁକର୍ଣ୍ଣ—ପରାମର୍ଶ ଚଳାଇଛନ୍ତି । କପରି କ'ଣ କରିବେ ? ପୃଥିବୀରେ କପରି ଶାନ୍ତି ସ୍ଥାପନ କରିବେ ?

ପଶ୍ଚିମ ବର୍ଲିନ୍, ପୂର୍ବ ବର୍ଲିନ, ଧୂ ଧୂ କରି ଜଳି ଉଠୁଛି—କ ଭୀଷଣ ପୃଥିବୀ ହୋଇଛି ! ଆମେରିକା ଚଳାଇଛି ତା'ର ନିଉକ୍ଲିଅର—ଜର୍ମାନୀ—ପୂର୍ବ, ପଶ୍ଚିମ, ନାଟ୍ୟଭୂମି ହୋଇଛି ।

ଆଜି ପୃଥିବୀର ଚାରିଆଡ଼େ ଏହି ଅଶାନ୍ତି ବେଳେ ଚାରିଆଡ଼େ ରେଳ୍‌ବା, ଗ୍ଲାମ୍‌ଟ୍ୟ ଚାଲିଛି—ପୁଣି ଉଡ଼ାଜାହାଜ, ବୁଡ଼ାଜାହାଜ, ମୋଟର ଟ୍ରକ୍ ପ୍ରଭୃତିର ସାଙ୍ଘାତିକ ସଂଘର୍ଷ—ଚୂର୍ ମାର୍, ବିପଦ ।

ଏଣେ ରେଲ୍ ଥାଇ ଫୁଙ୍କୁଛି—ପୁଣି ଅଷ୍ଟ୍ରଗ୍ରହକୂଟ ଆଗରେ ରହି ବ୍ୟସ୍ତବ୍ୟସ୍ତ କରି ରଖିଛି । ତାହାରି ଭିତରେ ମଣିଷ ନିଜକୁ ଭୁଲାଇବା ପାଇଁ ସିନେମାଦେଖା ଛାଡ଼ୁ ନାହିଁ—ନାଚଗୀତ, କେତେ ପ୍ଲଟ, କେତେ ନୂତନ ସାହିତ୍ୟ ! କଡ଼ାକଡ଼, ଭଙ୍ଗାଚୂରା ସାହିତ୍ୟ !

ସବୁ ବ୍ୟସ୍ତ ଆଜ । ଆଜ ଖାଲି ଭିଡ଼, ଦଉଡ଼, କମ୍ପିତ ପଡ଼, ହାମକୁଡ଼ ପଡ଼ । କେହି କାହାକୁ ଦେଖିବାର ବେଳ ନାହିଁ । ହସ୍‌ପିଟାଲ ରୋଗୀରେ ଭର୍ତ୍ତି ହୋଇ-ଯାଇଛି । ନୂଆ ହସ୍‌ପିଟାଲ୍ ଖୋଲ—ହଜାର ହଜାର ଡାକ୍ତର, ଡକାଆ, ନିଯୁକ୍ତ କର, ଯୋଗାଅ—ନୂଆ ନୂଆ ହସପିଟାଲ ଖୋଲ ! ସ୍ୱସ୍ତି ନାହିଁ ।

ଏଣେ ନାଇଲନ୍ ଶାଢ଼ୀ, ରଙ୍ଗୀନ୍ ଲୁଗା, ବେଣୀ ଛଇଳା କେତେ କେତେ ଛଇଳ ବୋଲି—କ ଆଖିଠାରି ଚଳେଇଛି, ତା'ର ଇୟତ୍ତା ନାହିଁ । ବୁଢ଼ା ମରିଯାଉଛି, ଟୋକା ଛଟପଟ ହେଉଛି, ବିବାହବନ୍ଧନ ଶିଥିଳ ହେଉଛି । ବାହାଘର ପୂର୍ବରୁ କେତେ କ'ଣ ହେଉଛି ।

ଏବେ ହୋ ହୋ କରି ସ୍କୁଲରେ କଲେଜରେ ଟୋକା ଟୋକୀଏ ଭର୍ତ୍ତି ହେଉଛନ୍ତି । ଘରକାମ କରିବ କିଏ ? ଚାଷ କରିବ କିଏ ? ପାଠପଢ଼ା ଚାଲିଛି—ପ୍ରେମର ପାଠପଢ଼ା ତା'ରି ଭିତରେ । ତେଣୁ ବିବାହ ହେଉ ହେଉ ନରନାରୀଙ୍କୁ ୩୦।୪୦।୫୦ ବର୍ଷ ହୋଇଯାଉଛି ।

ଏହା ପ୍ରଗତି, ଚଞ୍ଚଳ ଗତି; ହାମୁଡ଼ ପଡ଼ିବ, ଦଉଡ଼ିବ ପୁଣି, ପୁଣି ଝୁଣ୍ଟିବ—ଏହିପରି ଚାଲିଛି । ପ୍ରେମର ପଥ ଆଜି ବେଶୀ ଖସଡ଼ା, ଅଡ଼ଢ଼ା ବେଶୀ ଖସୁଛି, ହସପିଟାଲ ବଢ଼ୁଛି, ପ୍ରେମ ବଢ଼ୁଛି—ପ୍ରଗତି ! ପ୍ରଗତି !—ଏହା ହିଁ ତ ପ୍ରଗତି ।

ହଜାର ହଜାର ସ୍କୁଲ, ହଜାର ନାଇଲନ, ହଜାର ନାଚଘର, ହଜାର ସଂଖ୍ୟକ ହୋଟେଲ, ହଜାର ହଜାର, ଲକ୍ଷ ଲକ୍ଷ—ପୃଥିବୀ ଭିତରେ ଆଜି ଚଟାପଟ୍, ପଟାପଟ୍, ସଟାସଟ୍, ଖଟାଖଟ୍, ଭଟାଭଟ ନଟ୍‌ଖଟ୍ ଖୁବ୍ ଚାଲିଛି । ଏହା ଇ ତ ପ୍ରଗତି—ହାଯ୍ କ ଗତି ! ମନୁଷ୍ୟ ଆଜି ଯନ୍ତ୍ର ହୋଇଛି । ଦୈତ୍ୟ ଦାନବରେ ଦୁନିଆ ଭର୍ତ୍ତି ହୋଇଛି । ଏହା ଇ ତ ପ୍ରଗତି !

ଏ ଜଗତ ଶାନ୍ତି ଚାହେଁନା—ଏ ଜଗତ ଚାହେଁ ହଲଚଲ, ଚଞ୍ଚଳ, ଅସ୍ଥିରତା—

ମଧୁରତା, ଶତ୍ରୁତା, ତଳାତଳ, କଟାକ୍ଷ, ବକ୍ଷଭେଦୀ ଉଦ୍ଦାମ ପୀଡ଼ନ, ଶୃଙ୍ଗାର, ସଙ୍ଗୀତ, ନୃତ୍ୟ, ଗୀତ, ମଧୁରତ୍ୱ, ରସ, ରସାତଳ, ନରକ ।

କଣ୍ଟ୍ରୋଲ ରୁମ୍ ! କଣ୍ଟ୍ରୋଲ ରୁମ୍ !

କି କଣ୍ଟ୍ରୋଲ୍ କରିବ ? ଚାରିଆଡ଼େ ବନ୍ଧ ଭାଙ୍ଗିଯିବ, ବଢ଼ି ହେବ ମହାନଦୀରେ । ସବୁ ଭସାଇନେବ, କଣ୍ଟ୍ରୋଲ ରୁମ୍‌କୁ ମଧ । କେହି ରହିବେ ନାହିଁ—ଚକ୍ରବର୍ତ୍ତୀ କହି ରହିବ ନାହିଁ—ଶାନ୍ତି, ଟେସୀରତ୍ୱ, ପୂର୍ବ ଗୌରବ ସବୁ ଯିବ । ଖାଲି ମହାନଦୀ ପାଣି ପୂରି ସବୁ ଘୋ ଘା ହେଉଥିବ ।

ତା’ପରେ—ତା’ପରେ ହୁଏତ ଶାନ୍ତି । କିନ୍ତୁ ତାହା ଦଶୁନାହିଁ । ଆଜି ପୃଥିବୀ ପ୍ରମତ୍ତ—ପାଗଳ । ମରଣଦୁଆରେ ଦୁନ୍ଦୁଭି—ଆଉ କିଛି ଶୁଣାଯାଉ ନାହିଁ । ଖାଲି ବ୍ରାହ୍ମଣୀ, ବୈତରଣୀ ମହାନଦୀ, କାଠଯୋଡ଼ୀରେ ବଢ଼ିର ଘୋ ଘା—କାନଅତଡ଼ା ହୋଇଯାଉଛି ।

ମଣିଷ ଏଣିକି କାଳ ହୋଇଯିବ, ମୂଳ ହୋଇଯିବ । ଗୋଟିଏ ଗୋଟିଏ ଇନ୍ଦ୍ରସ୍ୱ ଶକଳ ହୋଇସାରିଲା ପରେ ତ୍ରିଭୁବନସ୍ୱାମୀ ଚକ୍ର, ଗଦା, ପଦ୍ମ ହାତରେ ଧରି ହୁଏତ ପୁଣି ଦେଖାଦେବେ ନୂତନ ସୃଷ୍ଟି ପାଇଁ ।

କଣ୍ଟ୍ରୋଲ ରୁମ୍ ବାଜଉଠ, ସାଧନା କର; ତଥାପି ଦେଖ କ’ଣ କରିପାର—କିପରି ନିଜ ଭିଆରି କୋଠାବାଡ଼, ବନ୍ଧବାଡ଼, ଘରଦ୍ୱାର ରକ୍ଷା କରିହେବ ।

ରାତି ଦୁଇଟା । ମୁଖ୍ୟମନ୍ତ୍ରୀ କଣ୍ଟ୍ରୋଲ୍ ରୁମ୍‌ରେ । ସୁଟ୍ରେସ୍ତୁ କଣ୍ଟ୍ରୋଲ ରୁମ୍‌ରେ । ଏଣେ ସିନେମାଶାଳା ବି ଖୁବ୍ ଜୋରରେ ଚାଲିଛି । ଘୁଙ୍ଗୁର ଧମାଧମ୍ ନାଚୁଣୀର ଗୋଡ଼ରୁ ଛିଣ୍ଡି ପଡ଼ୁଛି, ତବଲା ଧମାଧମ ଚାଲିଛି, ଅନ୍ୟ ବାଜା ବି ।

ଯେପରି ପ୍ରଳୟ, ମହାକାଳ ବାହାରି ଚାରିଆଡ଼ୁ ଯେପରି ଘେରି ଆସିଲା । ଫାୟାର ଏଲାର୍ମ କଣ କରି ପାରିବ ? ଖାଲି ଘଣ୍ଟି ବାଜୁଛି, ଦୌଡ଼ାଦୌଡ଼ି ଚାଲିଛି, କାର୍ ଚଳୁଛି, ଦୁଲ୍‌ଦାଲ୍ ସବୁ ଧରି ପଡ଼ୁଛି । ଉପରେ ଉଡ଼ାଜାହାଜ ଭର୍‌ଭର୍ ହୋଇ ଦୌଡ଼ାଦୌଡ଼ି କରୁଛି ।

ବିଧାନସଭାରେ ତଥାପି ମୁଲତବି ପ୍ରସ୍ତାବର ଉତ୍ଥାପନ ହେଉଛି ବାରମ୍ବାର; କିନ୍ତୁ—କିନ୍ତୁ—

ବାପୁଜୀ ନଗରରେ ମଦଦୋକାନ ଖୋଲୁଛି—ସମସ୍ତଙ୍କୁ ଡାକୁଛି ‘ଆ ଆ—ଏଠି ଝାସ ଦେଇଯା’ । ଚୀନାଂଶୁକ ପତାକା ଛଇଳୀର ମୁଣ୍ଡ ଉପରେ ଫଡ଼୍‌ଫଡ଼୍ ଉଡୁଛି, ଆଉ ନବଯୌବନର କ୍ଷୀଣ ବସନ ମେଘଚୁମ୍ବୀ ବକ୍ଷ ଭେଦ ଚାରିଆଡ଼େ ଘୂରୁଛି ।

ସିନେମା—ଜଙ୍ଗରତ୍ର, ଘୁଙ୍ଗୁର, ବାଈଜୀ, ଖୁବ୍ ଚାଲୁଛି—ସକାଳ ସୋ, ସନ୍ଧ୍ୟା ସୋ, ରାତି ସୋ ।

ଆଜି ଚାରିଆଡ଼େ ଖୁନ୍ ଆଉ ଲାଲପାଣି କାରବାର—ଯେପରି ବିରାଟ କରିବେଲା ଚାରିଆଡ଼େ ଛୁଇପଡୁଛି !

* * *

# ଆରମ୍ଭ

ବସୁନ୍ଧରା ଅତି ସୁନ୍ଦରୀ ଝିଅଟିଏ । କାଶ୍ମୀର ଦେଶର ଝିଅ । ତାକୁ କିଏ ଆଣିଥିଲା ସେଠାରୁ କେଜାଣି । ସେ ବଢ଼ିଲା ଉତ୍କଳରେ । ସୁନ୍ଦର ହୋଇଉଠିଲା । ସାଗର ତେଉପରି ତାର ବେଣୀ । ନୀଳ କମଳ ପରି ତାର ନେତ୍ର । ଫଣୀର ଫଣା ପରି ତାର ଗତି ।

ପୁରୀ ସହର । ଅନେକ ଲୋକ ଆସନ୍ତି ସେଠିକି । ଗୋଟିଏ ଶେଠ ଆସିଲା । ବସୁନ୍ଧରାକୁ ଦେଖିଲା । ତାକୁ କିଣି ନେଇଗଲା କଲିକତାର କଦମତଲାକୁ । ସେଠି ତାକୁ ତା'ର ବଗିଚାଘରେ ରଖିଲା । ମଜଲିସ ଚାଲେ । ମଦ, ବ୍ୟଭିଚାର ସେଇ ବଗିଚାବାଡ଼ିରେ ହୁଏ । ବସୁନ୍ଧରାକୁ ଭଲ ଲାଗିଲା ନାହିଁ ଏଇ ଜୀବନ । ସେ ଚାହୁଁଥାଏ କିଏ ତାକୁ ଉଦ୍ଧାର କରନ୍ତା କି ?

ଖବରକାଗଜରେ ପଢ଼ିଲା ଯେ ବେଶ୍ୟାମାନଙ୍କୁ ଉଦ୍ଧାର କରିବାପାଇଁ ଗୋଟିଏ ସମିତି ହୋଇଛି । ସେ ସମିତିର ସେକ୍ରେଟେରୀ ମଦନଜିତ, ଏମ୍. ଏ., ଏଲ୍.ଏଲ୍. ବି. ପ୍ରଥମ ଶ୍ରେଣୀରେ ପାସ୍; ଏବଂ ବିଶ୍ୱବିଦ୍ୟାଳୟରେ ଉଭୟରେ ପ୍ରଥମ ହୋଇ ପାସ୍ କରିଛି । ଦେଶସେବା ପାଇଁ ମଦନଜିତର ମନ, ସୁତରାଂ ସେ ଏଇ ବେଶ୍ୟାଉଦ୍ଧାର ସମିତିରେ ପଶିଲା, ମେମ୍ବର ହେଲା, ମେମ୍ବର ହେଉ ହେଉ ସେକ୍ରେଟେରୀ ହେଲା ।

ମଦନଜିତ ବେଶ୍ ଭଲ ସ୍ୱଭାବର ଯୁବକ । ଇନା ତା ସାଙ୍ଗରେ ପଢ଼ୁଥିଲା କଲେଜରେ । ସେ ମଧ୍ୟ ଏମ୍. ଏ., ଏଲ୍.ଏଲ୍. ବି. ପାସ୍ କରିଛି । ଇନାର ବାପାଙ୍କ ଯଥେଷ୍ଟ ପଇସା ଅଛି । ଗୋଟିଏ ବୋଲି ଝିଅ । ସୁଶିକ୍ଷିତା । ରମେନ୍ଦ୍ର ବାବୁଙ୍କ ଇଚ୍ଛା ଇନାକୁ ମଦନଜିତ ସଙ୍ଗରେ ବିବାହ ଦେବା । କିନ୍ତୁ ମଦନଜିତ ବେଶ୍ୟା ଉଦ୍ଧାର କାମରେ ଏତେ ବ୍ୟସ୍ତ ଯେ ସେ ବିବାହ କରିବାକୁ ବେଳ ପାଇନାହିଁ ।

ବସୁନ୍ଧରାକୁ ଉଦ୍ଧାର କରିବାକୁ ଯାଇ ମଦନଜିତ ବିପଦରେ ପଡ଼ିଲା । ମରୁ ମରୁ ବଞ୍ଚିଗଲା । ଯାହା ହେଉ, ସେ ଦିନେ ରାତିରେ ବସୁନ୍ଧରାକୁ ସେ ଶେଠର ସେଇ ବଗିଚାଘରୁ ନେଇଆସିଲା ।

କିନ୍ତୁ ରଖିବ କେଉଁଠି ? ଯେଉଁ ବେଶ୍ୟା ଉଦ୍ଧାର ଅନୁଷ୍ଠାନ ଘର ଥିଲା ସେଠି ରଖିଲେ ଶେଠ ଜାଣି ପାରିବ । ତେଣୁ ତାକୁ ଅନ୍ୟତ୍ର ଆଉ ଗୋଟିଏ ଜାଗାରେ ରଖାଗଲା । ଇନା ସେ ଖବର ଜାଣେ । ମଦନଜିତ ଇନାକୁ ସବୁ କଥା କହେ । କିନ୍ତୁ ଇନାର ମନରେ ସନ୍ଦେହ ଏବଂ ଆଶଙ୍କା ହେଲା ଯେ ମଦନଜିତ ହୁଏତ ବସୁନ୍ଧରାର ମୋହରେ ପଡ଼ିଯିବ ।

ରମେନ୍ଦ୍ରବାବୁ ଇନାର ବିବାହରେ ବ୍ୟସ୍ତ ଥାନ୍ତି । ମଦନଜିତ ତାଙ୍କର ଭାବୀ ଜାମାତା ଏହା ସେ ଠିକ୍ କରିନେଇଥାନ୍ତି ।

ଏଣେ ବସୁନ୍ଧରା ମଦନଜିତକୁ ଜାଣା

ଉପାୟରେ ଆକର୍ଷଣ କଲ୍ଣି । ଶେଷରେ ବସୁନ୍ଧରା କହିଲା, "ମୋର ମଙ୍ଗଳ ତୁମେ ଏତେ ପାଂଛୁଛ, ମୁଁ କିନ୍ତୁ ଆଉ କାହାକୁ ବିବାହ କରିବି ନାହିଁ । ତୁମେ ଯଦି ମୋତେ ବରଣ କରିବ ଭଲ, ନୋହିଲେ ଆଉ କାହାକୁ ବିବାହ କରିବି ନାହିଁ ।"

ମଦନଜିତ ବଡ଼ ପାଠୁଆ, ଲେଖା-ଲେଖି କରେ, ମନୁଷ୍ୟର ମନୋଭାବ ବେଶ୍ ବୁଝିପାରେ । କିପରି ସେ ବସୁନ୍ଧରାକୁ ବିବାହ କରିବ ? ଇଳା କ'ଣ କରିବ ?

ଇଳାଠାରୁ ବିଦାୟ ନେଲା ଗୋଟିଏ ଚିଳକା କରି । ଦୂରରେ କଲିକତାରେ ରହିଲା ବସୁନ୍ଧରାକୁ ନେଇ । ବସୁନ୍ଧରା ଆଉ ମଦନଜିତର ଖୁବ୍ ନାମ । ଇତିମଧ୍ୟରେ ଦେଖୁ ଦେଖୁ ଧନ ବଢ଼ିଯାଉଛି । ଇଳାକୁ ଚିଠି ଲେଖେ ମଦନଜିତ । ଫଳରେ ଦିନେ ଚିଠି ଆସିଲା ଯେ ସେ ଗୋପାଳପୁର ଆସୁଛି, ଇଳାକୁ କହିଲା ତୁମେ ଆସ । ଇଳା ଆସିଲା । ଗୋପାଳପୁରରେ ଦୁହେଁ ରହିଲେ । ମଦନଜିତର ଇତିହାସ ହେଉଛି ଯେ ବସୁନ୍ଧରା ଗୋଟିଏ ସର୍ଜେଣ୍ଟ ସାଙ୍ଗରେ ଭାବ କରି ପଳାଇଯାଇଛି ।

ଚନ୍ଦ୍ର ଉଠିଛି, ସାଗରର ଊର୍ମି ବଢ଼ି-ବଢ଼ି ଚାଲୁଛି, ମଦନଜିତ ଓ ଇଳା ସାଗର କୂଳରେ ବସିଛନ୍ତି । ମଦନଜିତ ତା'ର ଜୀବନର ଇତିହାସ କହି କାନ୍ଦୁଛି । ଇଳା ଆଶ୍ୱାସନା ଦେଉଛି । ମଦନଜିତ କହୁଛି, "ଇଳା, ମୋତେ ବିବାହ କର ।"

କିନ୍ତୁ ଇଳାର ଆଉ ଇଚ୍ଛା ନାହିଁ । ବୟସ ହୋଇଗଲାଣି । ବର୍ତ୍ତମାନ ଲୋକେ ଯା' ନିନ୍ଦା କରିବାର କଲେଣି, ଆଉ ଅଧିକ ନିନ୍ଦାର ପ୍ରୟୋଜନ ନାହିଁ ।

କିନ୍ତୁ ମଦନଜିତ ଅନେକ ବୁଝାଇଲା । ଇଳା ଆଉ ମଦନଜିତ ମଇମନସିଂହର ଗୋଟିଏ ଚର୍ଚ୍ଚରେ ଯାଇ ରହିଲେ, ସମେନ୍ଦ୍ର-ବାବୁ ବିରକ୍ତ । ସମ୍ପତ୍ତି ପାଇବାର ଆଶା ନାହିଁ । ଇଳା ଆଉ ମଦନଜିତ ଏତେ ପାଠ ପଢ଼ିଥିଲେ ମଧ୍ୟ ଆଜି ଜୀବନ ସମସ୍ୟାରେ ପଡ଼ି ସେମାନେ ଲୋକଲୋଚନରୁ ଅନ୍ତର୍ହିତ । ସମାଜର ଚକ୍ରଚକ୍ୟ ଠାରୁ ଦୂରରେ ।

ଶେଷରେ ବହୁଦିନ ପରେ ସେମାନେ ସେଠି କମଳାଲେମ୍ବୁ ବଗିଚା କରି ଦିନଯାପନ କଲେ । ସେହି ସଇସାରେ ଗୋପାଳପୁରରେ ଗୋଟିଏ ପୁରୁଣା କୋଠାଘର ବଗିଚା ସହ କିଣିଲେ । ସେ କୋଠାଘର ଆଉ ବଗିଚା ଗୋଟିଏ ବଡ଼ ହୋଟେଲ ଥିଲା । ସାହେବ ମେମ୍ କେତେ ଯେ ଏଠି କେତେ ଲୀଳା କରି ଯାଇଛନ୍ତି, ତା'ର ସୀମା ନାହିଁ ।

ସେହି କୋଠାଘର ତିଆରି ହୋଇ-ଥିଲା ଜଣେ ଟିନ୍ ଟିନ୍ ସାହେବ ଦ୍ୱାରା, ଟିନ୍ ଟିନ୍ ସାହେବ ଜଣେ ଗୁଡ଼ିଆଣୀକୁ ଭଲ ପାଉଥିଲେ ଏବଂ ସେହିଠି ରହୁଥିଲେ ।

ଟିନ୍ ଟିନ୍ ସାହେବ ଗଲେଣି । ତାଙ୍କର ଦୁଇ ଝିଅ ଥିଲେ । ସେମାନେ ମଧ୍ୟ ପ୍ରେମରେ ପଡ଼ି ଦୁଇ ସାହେବଙ୍କୁ ନେଇ ରହିଲେ । ସେମାନେ ବି ମଲେଣି ।

ଏବେ ଇଳା ଆଉ ମଦନଜିତ । ସେହି ସାଗରଢେଉ ଖେଳ ଚାଲିଛି । ସାଗର-ବେଳାରେ ଇଳା ଆଉ ମଦନଜିତ ତାଙ୍କର ଗୋଟିଏ ଛୋଟ ଝିଅକୁ ନେଇ ବୁଲୁଛନ୍ତି । ଇଳା ମଦନଜିତ ବି ଲୁଚିଯିବେ । ଝିଅ — ସାଗରିକା — ଆଉ କାହାକୁ ଘେନି ସଂସାର କରିବ । ସାଗରିକାର ଅପର ନାମ ଆରତି ।

ସଂସାର ଏହିପରି ଚାଲିଥିବ, ବ୍ରହ୍ମପୁର ଠାରେ ବେଶ୍ୟା ଆଉ ଅନାଥିନୀ ଉଦ୍ଧାରର ଗୋଟିଏ ସମିତି ଆଜି ଚାଲିଛି । * *

# ମୁହୂର୍ତ୍ତ

ବାସବଦତ୍ତା ମଥୁରାର ପ୍ରଧାନ ନର୍ତ୍ତକୀ । ରୂପରେ ଅତି ସୁନ୍ଦରୀ, ଅତ୍ୟଦ୍ଭୁତ ସୁନ୍ଦରୀ ।

ରାଜପ୍ରାସାଦ ପରି ପ୍ରାସାଦ ତାର । ସେ ଝିଡ଼କି ବାଟେ ସଡ଼କ ଉପରକୁ ତେତାଲାରୁ ଦେଖୁଛି । ବାସବଦତ୍ତା ନର୍ତ୍ତକୀ । ସୁନ୍ଦରୀ, ଯୌବନରେ ଭରା । ରୂପବତୀ — ଅତ୍ୟଦ୍ଭୁତ ରୂପବତୀ । ପଦ୍ମନେତ୍ରରେ ସେ ଚାହିଁଛି । ତଳେ ଜଣେ ଭିକ୍ଷୁ । ରାଜପୁତ୍ର ପରି ଚେହେରା ତା'ର । ସେ ବୌଦ୍ଧ-ଭିକ୍ଷୁ । ଯୁବକ । ସଂସାର ତ୍ୟାଗ କରିଛି ।

ନଜର ପଡ଼ିଲା ତାରି ଉପରେ ବାସବଦତ୍ତାର । ଭିକ୍ଷୁ ଭିକ୍ଷା ପାଇଁ ଦଣ୍ଡାୟମାନ ।

ବାସବଦତ୍ତା ଉପରୁ ଦଉଡ଼ି ଆସିଲା ତଳକୁ । ମୁଗ୍ଧା ସେ — ଆଲିଙ୍ଗନ କରିବ ସେ ସେହି ଭିକ୍ଷୁକୁ । ଯୌବନ ତାର ଉଚ୍ଛୁଳି ପଡ଼ୁଛି । ଯମୁନା ଭରପୂର । କୂଳ ପ୍ଲାବିତ । ତେଣୁ ସେ ବାସବଦତ୍ତା — ନର୍ତ୍ତକୀ । ଉଲଙ୍ଗିନୀ ପରି ପୋଷାକ ତାର । ବକ୍ଷ, କଟୀ ପ୍ରଭୃତିରେ ଜରିର ଲୁଗା ଅତି ଅଳ୍ପ ଅଛି । ଉଚ୍ଚ କୁଚର ଆହ୍ୱାନ ଯୁବକଙ୍କୁ । ସେହି ଆଶାରେ, ସେହି ଭରସାରେ ବାସବଦତ୍ତା ତେତାଲାରୁ ଦଉଡ଼ି ଆସିଲା ଭିକ୍ଷୁକୁ ଭିକ୍ଷା ଦେବ ବୋଲି । ଆପଣାର ଯୌବନଭିକ୍ଷା, ବାସବଦତ୍ତାର ପ୍ରାସାଦ ଦ୍ୱାରଆଡ଼େ କେତେ ବୁଭୁକ୍ଷୁ ଧନୀ ସନ୍ତାନ ବୁଲୁଛନ୍ତି । ବାସବଦତ୍ତାର ବକ୍ଷର ଆଲିଙ୍ଗନ କପରି ପାଇବେ —

ବାସବଦତ୍ତା ଭାବିଲା । ଏଇ ସୁନ୍ଦର ସୁଶ୍ରୀ ସୁଠାମ ଯୁବକକୁ ସେ ବଶ କରି-ପାରିବ । ଧାଇଁ ଆସିଲା ବାସବଦତ୍ତା । ସୌଜନ୍ୟପୂର୍ଣ୍ଣା ହୋଇ ଭିକ୍ଷୁକୁ ଭିକ୍ଷା ପ୍ରଦାନ କରିବ ବୋଲି ଘର ଭିତରକୁ ଆହ୍ୱାନ କଲା । କିନ୍ତୁ ଭିକ୍ଷୁ ଉପଗୁପ୍ତ ଘର ଭିତରକୁ ନ ଯାଇ ଖାଲି କହିଦେଇ ଚାଲିଗଲା--ଏତିକି କଥା--'ମୁଁ ଯଥା-ସମୟରେ ଆସିବି ।'

ବାସବଦତ୍ତାର ମସ୍ତକ ବିଘୂର୍ଣ୍ଣିତ ହୋଇଗଲା । ଉପଗୁପ୍ତ ଚାଲିଗଲା !

ଏତେ ଅହଂକାର ! ମୋତେ ଅନା-ଦୃତ କରି ଚାଲିଗଲା ! ଅଥଚ ମୋର ବକ୍ଷ ସ୍ପର୍ଶ କରିବା ପାଇଁ, ମୋର ଅଧରସୁଧା ପାନ କରିବା ପାଇଁ ଅସଂଖ୍ୟ ଯୁବକ ପାଗଳ ।

ମୋତେ ଉପେକ୍ଷା କରି ଚାଲିଗଲା ! କହିଗଲା—'ଅପେକ୍ଷା କର; ଠିକ୍ ମୁହୂର୍ତ୍ତରେ ଆସିବି ।'

ବାସବଦତ୍ତା ମୁହୂର୍ତ୍ତକ ପାଇଁ ମୂକବତ୍ ହୋଇଗଲା । ଉପଗୁପ୍ତ ବିଜୁଳି ପରି ଚାଲିଗଲା ସେ ସ୍ଥାନରୁ । ବାସବଦତ୍ତା ନିରାଶ ହୋଇ ଉପରକୁ ଧୀରେ ଧୀରେ ଉଠି ଆସିଲା ।

ଯେ ଦିନ ଗଡ଼ିଗଲେ ବାସବଦତ୍ତାର ଆଖିରେ ନିଦ ନାହିଁ । ସମସ୍ତ ରାତି ବର୍ଷା ବର୍ଷୁଛି । କେତେ ଯୁବକ ଆସି ଧକ୍କା ମାରୁଛନ୍ତି; କିନ୍ତୁ ପରିଚାରିକା ମେଦିନୀ କହୁଛି—ଆଜି ବାସବଦତ୍ତାଙ୍କର ଦେହ ଭଲ ନାହିଁ ।

ରାତି ପାହିଗଲା, ବାସବଦତ୍ତାର ଆଖି ଫୁଲିଛି ।

ମେଦିନୀ ଅନେକ ବୁଝାଇଲା । ତା'ପରେ ବାସବଦତ୍ତା ରାଜସମାଜ'ନା କଲା ।

ପରଦିନ ମଧ୍ୟ ବିଷାଦରେ କଟିଗଲା ।

ଏହାପରେ ଅନେକ ଦିନ ହୋଇଗଲା । ବାସବଦତ୍ତା ରାଜପ୍ରାସାଦକୁ ଯାଇନାହିଁ, ନୃତ୍ୟ କରିନାହିଁ ।

ପ୍ରାୟ ଏକ ବର୍ଷ ପରେ ବାସବଦତ୍ତା ତା'ର ପାଦରେ ଘୁଙ୍ଗୁର ପିନ୍ଧିଛି, ତା'ର କଟିତଟରେ କଙ୍କିଣୀ ବାନ୍ଧିଛି, ତା'ର ଭ୍ରୂତଟ ପର୍ଯ୍ୟନ୍ତ କଜ୍ଜଳ ରେଖା ଟାଣିଛି—ତାର ବକ୍ଷଉରସ ଉଚ୍ଚ ସ୍ଫୀତ ପର୍ବତକୁ ଉତ୍‌ଥାନ ପତନରେ ଦେଖାଉଛି, ଘୁଙ୍ଗୁର ବାଜୁଛି, ଅନାୟାସ ନୃତ୍ୟ ହେଉଛି, ଆବର୍ତ୍ତନ, ବିବର୍ତ୍ତନ, କଟିଭଙ୍ଗୀ, ଗ୍ରୀବାଭଙ୍ଗୀ, ସ୍ଫୀତଭଙ୍ଗୀ, ସବୁ ଦେଖା ଯାଉଛି । ଅସଂଖ୍ୟ ଦର୍ଶକ ବାହାବା କରୁଛନ୍ତି, ଚଞ୍ଚଳ ହେଉଛନ୍ତି, ଚପଳ ହେଉଛନ୍ତି । ଯେପରି ବାସବଦତ୍ତାକୁ ସେମାନେ ପ୍ରତ୍ୟେକ ଘରକୁ ନେଇଯାଇ ପାରନ୍ତେ କି, ଲୁଚାନ୍ତେ କି !

ଆରତିଘଣ୍ଟା ବାଜୁଛି, ଦେବଦାସୀ ନୃତ୍ୟ କରୁଛି । ସମସ୍ତେ ମୁଗ୍ଧ ।

ତା'ପରେ ବାସବଦତ୍ତା ଘରକୁ ଫେରିଲା—କ୍ଳାନ୍ତ, ଶ୍ରାନ୍ତ ।

ଏହିପରି କେତେ ଦିନ, କେତେ ମାସ କେତେ ବର୍ଷ ଚାଲିଗଲା । ମଥୁରାର ଯୁବକମାନେ ବାସବଦତ୍ତାକୁ ନେଇ ଖୁବ୍ ମଉଜ ମଜଲିସ୍ କଲେ ।

ବାସବଦତ୍ତାର ଭୋଗବିଳାସର ଆଜି ପରିସମାପ୍ତି ନାହିଁ ।

ଅନେକ ବର୍ଷ ବିତିଗଲା । ବାସବଦତ୍ତାର ଶରୀରରେ କ୍ଷତ ଦେଖାଗଲା । ଆଖିଟା ଫୁଲିଉଠିଲା । ଗାଲରେ ନାଲି ଦାଗ ଦେଖାଗଲା । ଅଣ୍ଟାରେ ବ୍ୟଥା । ଶିରଦୂର୍ଣ୍ଣନ ହେଉଛି । ଆଉ କେହି ଯୁବକ ତା'ପାଖକୁ ଆସିଲେ ନାହିଁ । ଶେଷରେ ଚାକରବାକର ସବୁ ଛାଡ଼ି ଚାଲିଗଲେ ।

ବାସବଦତ୍ତାର ସର୍ବାଙ୍ଗ କ୍ଷତରେ ପୂର୍ଣ୍ଣ । ସେ ଯେଉଁଠାରେ ରହିଥିଲା ସେ ବାଟ ଦେଇ ଗଲେ ବାଟୋଇ ନାକରେ ଲୁଗା ଦିଏ—ଏତେ ଦୁର୍ଗନ୍ଧ !

ବାସବଦତ୍ତାର ମଥୁରାର ସେହି ପ୍ରାସାଦ ଆଜି ଚାଲିଗଲାଣି । ବାସବଦତ୍ତା ଆଜି ପଥପ୍ରାନ୍ତରେ ଭିକାରୁଣୀ ପରିପଡ଼ିଛି । କେହି ଆଉ ପଚାରୁନାହାନ୍ତି ।

ଦିନେ ନିର୍ଶୀଥରେ ହଠାତ୍ ସେଠି ଉପଗୁପ୍ତ ଉପସ୍ଥିତ ।

"ତୁମେ କିଏ ?"—ବାସବଦତ୍ତା ପଚାରିଲା ।

"ମୁଁ ଉପଗୁପ୍ତ ।"

"ଏଁ, ତୁମେ ସେହି ଉପଗୁପ୍ତ, ଯେ ମୋର ପ୍ରେମକୁ ଉପେକ୍ଷା କରିଥିଲ ? ଆଜି କାହିଁକି ଏଠିକି ଆସିଛ ? ମୋ ପାଖରେ ଆଉ କଣ ଅଛି ? ସବୁ ତ ଯାଇଛି ।"

ସେ ସ୍ଫୀତ ବକ୍ଷ କାହିଁ ? ସେହି ସ୍ତନ ଯୁଗ୍ମ କାହିଁ ? ସେହି ସିଂହକଟିତଟବିଶିଷ୍ଟା ନାରୀର ସବୁ ନଷ୍ଟଭ୍ରଷ୍ଟ ହୋଇଯାଇଛି ।

ଯମୁନା ନଦୀର କୂଳରେ ଗୋଟିଏ କ୍ଷୁଦ୍ର କୁଟୀରରେ ଆଜି ରୋଗଗ୍ରସ୍ତା କ୍ଷତ ବିକ୍ଷତ ବାସବଦତ୍ତା ।

"ତୁମେ କାହିଁକି ଆସିଲ ?"

ଉପଗୁପ୍ତ କହିଲେ—"ମୁଁ କହିଥିଲି ଠିକ୍ ସମୟରେ ଆସିବି ବାସବଦତ୍ତା ।"

"ଏଁ ମୋତେ ତୁମେ ଡାକୁଛ ? ମୋ ପାଖକୁ ଆସିଛ ! ବାସବଦତ୍ତା ମୁଁ । ତୁମେ ଆସିଥିଲ ମୋ ପାଖକୁ ଭିକ୍ଷା ମାଗିବାକୁ । ମୁଁ ମାଗିଥିଲି ତୁମକୁ ଭିକ୍ଷା । ତୁମେ ଦେଇ ନ ଥିଲ, ନେଇ ବି ନ ଥିଲ ସେ ଭିକ୍ଷା ।··· ଆଜି କାହିଁକି ? ଯେତେବେଳେ କିଛି ନାହିଁ —ସବୁ ନିଃଶେଷ !"

ଉପଗୁପ୍ତ କହିଲେ, "ନା, ବାସବଦତ୍ତା ! କିଛି ଭୟ କର ନାହିଁ । ମୁଁ ତୁମର ସେବା କରିବି । ତୁମେ ରୋଗମୁକ୍ତ ହେବ ।"

ଉପଗୁପ୍ତ ସେଇଠାରେ ରହିଲେ ଏବଂ ବାସବଦତ୍ତାର ଶୁଶ୍ରୂଷା କଲେ ।

ତା ପରେ ବାସବଦତ୍ତାକୁ ବୁଦ୍ଧଙ୍କର ବଚନ ଶୁଣାଇଲେ । ବାସବଦତ୍ତାକୁ ବୌଦ୍ଧ-ଭିକ୍ଷୁଣୀ କଲେ ।

ଏଣେ ଅନେକ ଦିନ ଧରି କଳିଙ୍ଗରେ ଯୁଦ୍ଧ ଚାଲିଥିଲା । ସମ୍ରାଟ ଅଶୋକ କଳିଙ୍ଗକୁ ଆସି ଘୋର ରଣ କରି ଅନେକଙ୍କୁ କ୍ଷତ ବିକ୍ଷତ କଲେ । ଯୁଦ୍ଧକ୍ଷେତ୍ରରେ ଅନେକ ଭୂଶାୟୀ ହେଲେ ।

କିନ୍ତୁ କେହି କଳିଙ୍ଗଯୋଦ୍ଧା ପଛଘୁଞ୍ଚା ଦେଲେ ନାହିଁ । ଅଶୋକ ବିଷଣ୍ଣ । ଏହି ସମୟରେ ବନପଥ ଦେଇ ଉପଗୁପ୍ତ ଯାଉଛନ୍ତି—ବୌଦ୍ଧଭିକ୍ଷୁ ଉପଗୁପ୍ତ ।

ଅଶୋକଙ୍କର ନଜର ପଡ଼ିଲା । ସେ ତାଙ୍କୁ ପାଖକୁ ଡକାଇଲେ । ଉପଗୁପ୍ତ ଅଶୋକଙ୍କୁ କହିଲେ, ତୁମେ ଚିତ୍ତରେ ଅଶାନ୍ତ ହୋଇଛ । ଶାନ୍ତି ପାଇବା ପାଇଁ ବୁଦ୍ଧଙ୍କର ଶରଣ ନିଅ । ଅଶୋକ ବୌଦ୍ଧ ଧର୍ମରେ ଦୀକ୍ଷିତ ହେଲେ ଉପଗୁପ୍ତଙ୍କ ଦ୍ୱାରା —ଏହି କଳିଙ୍ଗରେ ।

ବୁଦ୍ଧଂ ଶରଣଂ ଗଚ୍ଛାମି ।
ସଙ୍ଘଂ ଶରଣଂ ଗଚ୍ଛାମି ।
ଧମ୍ମଂ ଶରଣଂ ଗଚ୍ଛାମି ।
ସୁରାମେରୟ ମଜ୍ଜସ୍ୟା ନ ପ୍ରଜୟାମି ।
ବୁଦ୍ଧଂ ଶରଣଂ ଗଚ୍ଛାମି ।
ଶିକ୍ଷାପଦଂ ସମାଜସ୍ୟାମି ।

ଏହି ଉପଗୁପ୍ତ ଓଡ଼ିଶାର ଜଙ୍ଗଲରେ ବହୁବର୍ଷ ବୁଲି ବୁଲି କାଳ କଟାଇଥିଲେ । ସେହିଦିନର କଥା ଆଉ କିଛି ଜାଣେ ନାହିଁ ।

* * *

# ଏକାକୀ

ଏକାକୀ ।

ସାଥୀ ଜୁଟିଲା ଗୋଟିଏ ବୁଲା କୁକୁର ।

କୋଠାଘର—ଉପରଟା କାଠଘର । ଆସ୍ତେ ଆସ୍ତେ ପାଖ ଭିଡ଼ିଲା । ବ୍ରହ୍ମପୁତ୍ର ନଦୀ । ମିକିର ଦେଶର ଜାଗା । ଆସାମ । ସେଇଠାରେ ନଦୀକୂଳରେ—ସେଇଁଠାରେ ବ୍ରହ୍ମପୁତ୍ର ଖର ବେଗରେ ପ୍ରଧାବିତ ।

ରାମଚନ୍ଦ୍ର ତେଲ ଲଗାଇ ନଈକୂଳରେ ଝରା ପୁଇଁଛି । ଦେହ ଟିକିଏ ଗରମ ହେଲେ ବ୍ରହ୍ମପୁତ୍ରର ଗଭୀର ଶୀତଳ ଜଳରେ ପ୍ରବେଶ କରିବ । ଆଜି ସାଙ୍ଗ କେହି ନାହିଁ—ଏକାକୀ ।

ବୁଲା କୁକୁରଟି ଆସିଗଲା । ଆଜକୁ ଦଶ କୋଡ଼ିଏ ଦିନ ହେଲା ତା'ସାଙ୍ଗରେ ଭାବ ହୋଇଛି । କିଛି କିଛି ଖାଇବାକୁ ଦିଏ ।

ବେଇମାନ ନୁହନ୍ତି ଏମାନେ । କୁକୁର ଜାତି ଅତି ବିଶ୍ୱସ୍ତ । ଆଜି ସେହି ବୁଲା କୁକୁର । ରାମଚନ୍ଦ୍ର ମଧ ନାମ ଦେଇଛି ମଦନ । ସେ ଆସି ରାମଚନ୍ଦ୍ର ପାଖରେ ହାଜର । ଗୋଡ଼, ଲାଙ୍ଗୁଡ଼ ଗେହ୍ଲାରେ ତା'ପାଖରେ ଖେଳଉଛି । ରାମଚନ୍ଦ୍ର ତା'କୁ ଟାଣିଆଣିଲା ପାଖକୁ ।

ତା' ପୂର୍ବରୁ—

ସେ ବହୁଦିନର କଥା । ରାମଚନ୍ଦ୍ର ବଣଜଙ୍ଗଲରେ ବୁଲୁଛି । ଅନେକ ଦିନ ତଳେ ହିମାଳୟ ପାହାଡ଼ରେ ପଉଡ଼ରେ ଗୋଟିଏ ବଲେଇକୁ ନେଇ ସେ ସେହିପରି ମାୟାମମତା କରିଥିଲା ।

କିନ୍ତୁ ତା'ର ଗଳା ଚିପି ତାକୁ ମାରିଥିଲା । ସେ ପାପ—ସେ ଭୟ ତାକୁ ଲାଗି ରହିଛି ।

କିନ୍ତୁ କୁକୁର ବଡ଼ ବିଶ୍ୱସ୍ତ । ସେ ବଡ଼ ଶୀଘ୍ର ଆପଣାର ସବୁ ଅର୍ପଣ କରିଦିଏ ତା' ମୁନିବ ବା ତା' ପ୍ରେମିକ ପାଖରେ ।

"ଯଥା ନିଯୁକ୍ତୋସ୍ମି ତଥା କରୋମି"—ଏହି ଥିଲା କୁକୁରର ଜୀବନ ।

ଦିନେ ନୁହେଁ—ଏହିପରି ଅନେକ ଦିନ, ଅନେକ ଥର ଏହି କୁକୁର ଆଉ ରାମଚନ୍ଦ୍ର ମଧ୍ୟରେ ମାୟାମମତା ବଢ଼ିଛି ।

ଇତିମଧ୍ୟରେ ଆଉ ଏକ କୁକୁର ଆସିଛି । ମଦନ ତାକୁ ଖେଦୁଛି, କୌଣସି ଉପାୟରେ ତାକୁ ଆସିବାକୁ ଦେବନାହିଁ । ସେ ଏକପତି ବ୍ରତ ଧରିଛି, ସେଠି ଆଉ କିଏ ଆସିବ ? କାହାକୁ ଆସିବାକୁ ଦେବ ନାହିଁ ।

ରାମଚନ୍ଦ୍ର ମଧ ଏ କଥା ବୁଝିଲା । ଆଉ ସେ କୁକୁରକୁ ଆସିବାକୁ ଦେବାକୁ ଚାହେଁ ନାହିଁ ।

ଏହିପରି ଦିନ ଯାଉଥାଏ । ଦିନେ ବଣ ଜଙ୍ଗଲରୁ ଗୋଟିଏ ସୁନ୍ଦର ଚଢ଼େଇ କାହୁଁ ଉଡ଼ି ଆସିଲା । ବେଶ୍ ବଡ଼ ଚଢ଼େଇଟି । ବିଚିତ୍ର, ସୁନ୍ଦର, ସ୍ନିଗ୍ଧ ବର୍ଣ୍ଣ ।

କୁକୁରଟି ତାକୁ ଖେଦିଲା । ଧାଉ ଧାଉ ହେଲା । ରାମଚନ୍ଦ୍ର ବିରକ୍ତ ହେଲା । କୁକୁରଟିକୁ ଟିକିଏ ମାରିଦେଲା । କୁକୁରଟି ସାମାନ୍ୟ ପ୍ରତିବାଦ ସ୍ୱରୂପ ତାକୁ ଟିକିଏ କାମୁଡ଼ିଦେଲା ।

ରାମଚନ୍ଦ୍ର ହଠାତ୍ ଗୋଟିଏ ଛତା

ଉଠାଇ ତାକୁ ଜୋରରେ ମାରିଦେଲା । ଓଃ ! ସେ କି ଚିତ୍କାର ! କି ଦୁର୍ଘଟଣା !

ଅନେକ ରକ୍ତ ପଡ଼ିଗଲା । ଅନେକ ଛଟପଟ ସେ ହେଲା । ତା'ପରେ କୁକୁରଟି ମରିଗଲା । ମଦନ ମଲା ।

ଏଣେ ସେ ଅଶାନ୍ତ ସୁନ୍ଦର ଚଡ଼େଇଟି ଦୂରକୁ ଉଡ଼ିଗଲା । ସେଦିନ ମେଘ ଘୋଟିଗଲା । ବର୍ଷା ଆସିଲା । ସନ୍ଧ୍ୟା ହେଲା । ରାତି ହେଲା । ରାମଚନ୍ଦ୍ରକୁ ନିଦ ନାହିଁ—ସେ ଛଟପଟ୍ । ମଦନ ପାଖରେ ନାହିଁ !

ଏହିପରି କେତେ ଦିନ ଗଲା । ରାମଚନ୍ଦ୍ର ଅନ୍ୟମନସ୍କ । ମାୟା ମମତା ନାହିଁ । କେବଳ ଅବସାଦ, ଅବସନ୍ନତା ।

ଏଣେ କେତେ ମିତ୍ର ମିତ୍ରାମାନେ ଆସୁଛନ୍ତି—ହସଖେଳ ହେଉଛନ୍ତି; କିନ୍ତୁ ସେମାନଙ୍କର ସେ ହସଖେଳ ରାମଚନ୍ଦ୍ରକୁ ସ୍ପର୍ଶ କରିପାରୁନାହିଁ ।

ଶୁଣିଛି ହିମାଳୟ ପାହାଡ଼ରେ ଶୀତରେ ଉଷ୍ମ ପାଇବା ପାଇଁ ସାପ ଗଡ଼ ଗଡ଼ ଆସନ୍ତି ପାହାଡ଼ର ଗୁମ୍ଫାକୁ, ଆଉ ସେଠି ସନ୍ନ୍ୟାସୀ ମାନଙ୍କରେ ଲେପଟି ହୋଇ ଶୁଅନ୍ତି ।

ବିଚିତ୍ର ଏ ଜୀବନ । ମାୟାମୋହର, ସପନର ସଂସାର ।

ରାମଚନ୍ଦ୍ର ନିଜ ଦେଶକୁ ଫେରିଲା, ଯେଉଁଠାରେ ମୟୂର ତା'ର ପୁଚ୍ଛ ମେଲା-କରିଛି ଆନନ୍ଦରେ ଆଉ ବଗବଗଲା ଶୋଭମାୟ ହୋଇଛି । ରାମଚନ୍ଦ୍ର ସେଠି ମୃତ୍ୟୁମାନ ହୋଇ ଛିଡ଼ା ହୋଇଛି । ଜଙ୍ଗମର କ୍ରୀଡ଼ା—ମଧୁର, ସୁମଧୁର । କେତେବେଳେ ସମସ୍ତ ଅଙ୍ଗକୁ ମୃତ୍ୟୁମାନ କରିଦିଏ ।

କେତେବେଳେ ଅବା ସୁନ୍ଦର ଦୃଶ୍ୟର ଅଭାବରେ ମଳିନ ଦୃଶ୍ୟ ଆକର୍ଷଣ କରିଛି ରାମଚନ୍ଦ୍ରକୁ ।

ରାଣ୍ଡୀଖଣ୍ଡୀ ମଧ୍ୟରେ ସନ୍ତାପ ଅସନ୍ତାପର ଛାୟାଲୋକ ପରି ରାମଚନ୍ଦ୍ରର ଜୀବନ ମଧ୍ୟ ଚାଲିଛି ।

ଏ ରାମଚନ୍ଦ୍ର ଯେପରି, ପୁରାଣପ୍ରସିଦ୍ଧ ରାମଚନ୍ଦ୍ର ମଧ୍ୟ ସେହିପରି । ଜୀବନ ଜୀବନ । ଏଥିରେ ଆତୁରତା ଅଛି, କାତରତା ଅଛି । ମହତ୍ତ୍ୱ ଅଛି । ସୌନ୍ଦର୍ଯ୍ୟ ଅଛି । ବିଶ୍ୱାସିକା ଅଛି । କମନୀୟତା ଅଛି ।

ମଦନ ମରିଛି—ଚଡ଼େଇ ଉଡ଼ି-ଯାଇଛି । ମିତ୍ରଜୀଆସୀ ରାତ ବା ସୁବର୍ଣ୍ଣ-ହିଂସ ଆଖି ଝୁଲସି ଯାଇଛି—ବ୍ରହ୍ମପୁତ୍ରର ଶୀତଳ ପାଣି କୂଳ ଭାଙ୍ଗି ଭାଙ୍ଗି ହିମାଳୟରୁ ବରଫ ବୋହି ଆଣି ଚାଲିଛି । ହିମାଳୟରେ କେତେ ଋଷି ବିଶ୍ୱାମିତ୍ର ପରି ମେନକାଭ୍ରଷ୍ଟ ହୋଇଛନ୍ତି ।

ରାମଚନ୍ଦ୍ର ମଦନକୁ ମାରିଛି; କିନ୍ତୁ ମଦନକୁ ମାରି ପାରିନାହିଁ । ସେ ନିତ୍ୟ ଉଦ୍ଭାସିତ ହେଉଛି । ସେଥିରେ ରାମଚନ୍ଦ୍ର କେତେବେଳେ ଆକୃଷ୍ଟ, କେତେବେଳେ ବିକୃଷ୍ଟ ।

କିନ୍ତୁ ବିଷାଦର ଧାରା ଭିତରେ ମାୟାର ଛାୟାଲୋକ ଖେଳ ରାମଚନ୍ଦ୍ରର ଜୀବନରେ ଅଦ୍ୟାପି ଚାଲିଛି—ଚାଲିଥିବ ।

ଏକାକୀ – ତଥାପି ଏକାକୀ; କିନ୍ତୁ ସଙ୍ଗୀ ଲୋଡ଼େ । ଯୋଗୀ ନିଃସଙ୍ଗ ଜୀବନରେ ମଧ୍ୟ ଯୋଗ ଲୋଡ଼େ ।

ପ୍ରେମ କୁହ କାମ କୁହ—କାମଭିତରେ ପ୍ରେମ ଲୁକ୍କାୟିତ; ନା ନା, ସ୍ପଷ୍ଟ ମଧ୍ୟ ।

* * *

# ସନ୍ଦେହ

ପ୍ରତାପ ମରିଗଲେଣି । ବହୁ ବର୍ଷ ହେଲଣି । ଆଜକୁ ତିରିଶ ବର୍ଷ ହେବ । ଭଲ ମଣିଷ । ଜୀବନରେ ବଡ଼ ସଂଗ୍ରାମ କରି ମରିଛନ୍ତି । ବଡ଼ ଲୋକର ପିଲା ଥିଲେ । କିନ୍ତୁ ବାପର ମୃତ୍ୟୁ ପରେ ବଡ଼ ଗରିବ ହୋଇଗଲେ । ବିଧବା ମା ଅତି ଦୁଃଖକଷ୍ଟରେ ପିଲାମାନଙ୍କୁ ପାଳିଆଣିଲା ପିଲାଦିନେ ।

ପ୍ରତାପ । ରମା, ଉମା, ନଳିନୀ, କୈଳାସ, ସାବି—ଏମାନେ ତାର ପିଲା । ଉମା, ସାବି ଏମାନେ ତାର ଝିଅ । ବିଭା ହୋଇ ଯାଇଥିଲେ । ରମା ବାମନ, ସୁତରାଂ ତାର ବିବାହ ହୋଇ ନ ଥିଲା । ସେ ବାଳିକା ବିଦ୍ୟାଳୟରେ ମେଟ୍ରିକ୍ ପର୍ଯ୍ୟନ୍ତ ପାଠ ପଢ଼ିଲା । ବାଙ୍ଗରି ବାମନ ହେଲା ବୋଲି କଣ ତାର ଶରୀରର ଆଶା ଆକାଙ୍କ୍ଷା ନାହିଁ ? ସେ ସବୁ ଥିଲା, କିନ୍ତୁ ଗୋପ୍ୟ ଭାବରେ । ସେ ବାଳିକା ସ୍କୁଲର ମିଷ୍ଟ୍ରାଣୀ ହେଲା । ମଲା । ନଳିନୀ ପୁଅ । ସେ ମଲା ଅଳ୍ପ ବୟସରେ । ବାକି ରହିଲା କୈଳାସ । ସେ ଏକା ବଞ୍ଚିଛି । ହିଁ, ପ୍ରତାପର ଭାରି ଗୁଣ ଥିଲା । ପରିଶ୍ରମ, ନିୟମାନୁବର୍ତ୍ତିତା ତାଙ୍କର ପ୍ରଧାନ ଗୁଣ । ସନ୍ଦେହ ରଖିବା ଆଉ ଏକ ଗୁଣ । ଖୁବ୍ ସ୍ନେହୀ, ପୁଣି ଖୁବ୍ କ୍ରୋଧୀ ।

ତାଙ୍କର ବିବାହ ହୋଇଥିଲା ତେଇଶରେ । ଦୁଇ ପୁଅ, ତାପରେ ତାଙ୍କ ସ୍ତ୍ରୀ ସାଣୀଙ୍କର ହଠାତ୍ ମୃତ୍ୟୁ ହୁଏ । ତେଣୁ ସେ ଦ୍ୱିତୀୟ ବିବାହ କଲେ । ଯୌବନ ଶେଷ ନ ହେଉଣୁ ପ୍ରତାପର ହେଲା ପଠାଘେଗ । ସେଥିରେ ପ୍ରତାପର ମୃତ୍ୟୁ ।

ପ୍ରତାପର ପୁଅ ଦୁଇଟି ଏଣେତେଣେ ହୋଇ ଏବେ ଜୀବନସଂଗ୍ରାମରେ ଏକ ପ୍ରକାର ଚାଲିଛନ୍ତି । ଜଣେ ରେଲବାଇରେ ଟିକଟ ମାଷ୍ଟର । ଆଉ ଜଣେ ଏଣେତେଣେ ହେଉଛି । ପ୍ରତାପର ଦ୍ୱିତୀୟ ସ୍ତ୍ରୀ ସୁବର୍ଣ୍ଣ ଥିଲା । ପ୍ରତାପର ମୃତ୍ୟୁ ପରେ ସେ ବାପଘରକୁ ଚାଲିଗଲା । ଦ୍ୱିତୀୟ ବିବାହ କରି ପିଲପିଲ ହୋଇ ଏକ ପ୍ରକାର ଅଛି । ଏଥି ମଧ୍ୟରେ କେବେ କେବେ ଛ' ମାସ ବର୍ଷ ନୁହେଁ ଛ' ବର୍ଷ, ଆଠ ବର୍ଷରେ ଏହିମାନଙ୍କ ସହିତ ଦେଖାହୁଏ, ଯେହିଁଠି ଏମାନେ ଅଛନ୍ତି । ମହେନ୍ଦ୍ର ଉବଦୁରିଆ । ସେ ସବୁଆଡ଼େ ଘୂରେ । ମନୁଷ୍ୟ ଜୀବନରେ ଯୌନ ଜୀବନ ଗୋଟିଏ ପ୍ରଧାନ ଜୀବନ । ସେ କେତେବେଳେ ଫଲ୍‌ଗୁନଦୀ ପରି, କେତେବେଳେ ମହାନଦୀ ବଢ଼ି ପରି ନାନା ଉତ୍ପାତ କରି ଚାଲିଥାଏ । ଏହି ଗୋଟିଏ ଜୀବନ ଯେପରି ସବୁ ଜୀବନ ସେହିପରି । ଯୌନ କାରବାରକୁ ବନ୍ଦ କରିବ କିଏ ? ଯେତେ ଅଛନ୍ତି କହନ୍ତି ସନ୍ନ୍ୟାସୀ । ସେ ଆଉ ଗୃହସ୍ଥ ବହୁ ଦୂରରେ, ବହୁ ତଫାତରେ । ଆଉ ସନ୍ନ୍ୟାସୀ ସଂଖ୍ୟା କମ୍ । ଆଉ ସେମାନଙ୍କ ଜୀବନରେ ମଧ୍ୟ ଅନେକ ବିଫଳତା ଅଛି । ବିଫଳତା ପରେ ହୁଏତ

ସନ୍ନ୍ୟାସ ଆସିଛି; କିନ୍ତୁ ସେଥିରେ ମଧ୍ୟ କେତେଜଣ ସିଦ୍ଧ ହୁଅନ୍ତି ?

ପ୍ରତାପ ପାଠ ପଢ଼ି ନ ଥିଲେ, ଅପର ପ୍ରାଇମେରୀ ପଢ଼ୁ ପଢ଼ୁ ତାଙ୍କ ପିତାଙ୍କର ମୃତ୍ୟୁ ହୋଇଥିଲା ।

ସୁତରାଂ ପ୍ରତାପଙ୍କର ପାଠପଢ଼ାରେ ଡୋରି ବନ୍ଧାହୋଇଥିଲା । କିନ୍ତୁ ଜୀବନ-ସଂଗ୍ରାମରେ ପଡ଼ି କିଛି ଶିଖିବାକୁ ହୋଇଥିଲା । ମହେନ୍ଦ୍ର ବି. ଏ. ପାସ୍-କଲେ । ପ୍ରତାପ, ମହେନ୍ଦ୍ର ଖୁବ୍ ସାଙ୍ଗ । ଦିନେ ପ୍ରତାପ କହିଲେ, "ମହେନ୍ଦ୍ର ବାବୁ ଆପଣ ବି. ଏ. ପାସ୍ କଲେ, ଆପଣଙ୍କର ଗୋଟିଏ ଉପାଧି ହେଲା । ମୋର ତ କିଛି ନାହିଁ ।" ବିଶ୍ରାସ୍ଦିନ ସେ ଖଣ୍ଡିଏ ଟାଇପ୍-କାଗଜରେ ଆଣି ଦେଖାନ୍ତି ଭିଜିଟିଂ କାର୍ଡ଼, ସେଥିରେ ଟାଇପ୍ ହୋଇଛି—ଲାଲ ପ୍ରତାପନାରାୟଣ ରାୟ ରାମାନୁଜ ଦାସ ! ମହେନ୍ଦ୍ର ପଚାରିଲେ—ରାମାନୁଜ ଦାସଟା କିଏ ? ସେ କହିଲେ, ସେଇଟା ମୋର ଉପାଧି । କଟକରେ ଭୁକଣ୍ଟୀପୁର ମଠ ଅଛି । ସେହି ମଠମହନ୍ତ ହେଉଛନ୍ତି ରାମାନନ୍ଦ, ପ୍ରତାପ ତାଙ୍କର ଚେଲା, ଦୀକ୍ଷା ନେଇଛନ୍ତି, ସୁତରାଂ ସେ ରାମାନୁଜ ଦାସ ।

ମହେନ୍ଦ୍ର ଭାବିଲେ ପ୍ରତାପଙ୍କର ଗୋଟିଏ ଉପାଧି ନାହିଁ ବୋଲି, ସେ ଏତେ ବ୍ୟସ୍ତ । ତେଣୁ ତାଙ୍କୁ ଗୋଟିଏ ଉପାଧି ଦେବାକୁ ହେବ । ତେଣୁ ସେ ପରାମର୍ଶ ଦେଲେ ଥିଓସଫିକେଲ୍ ସୋସାଇଟିର ମେମ୍ବର ହେବାକୁ । ହେଲେ ବାର୍ଷିକ ଗୁଡ଼ିଏ ଟଙ୍କା ଦେବାକୁ ହେବ । ତାହେଲେ ସେ ଏଫ. ଟି. ଏସ୍ ତାଙ୍କ ନାମ ସଙ୍ଗରେ ଯୋଡ଼ି ପାରିବେ ।

ଏଥିରେ ପ୍ରତାପଙ୍କର ଭିଜିଟିଂ କାର୍ଡ଼ ହେଲା—ଲାଲ ପ୍ରତାପନାରାୟଣ ରାୟ ରାମାନୁଜ ଦାସ, ଏଫ୍. ଟି. ଏସ୍ । ଯାହାଙ୍କ ଘରକୁ ଯାଆନ୍ତି ଏହି କାର୍ଡ଼ ଦିଅନ୍ତି । ଏତଦ୍ଦ୍ୱାରା ପ୍ରତାପଙ୍କର ଟିକିଏ ମର୍ଯ୍ୟାଦା ବଢ଼ିଲା—ମନଟା ଭଲ ହେଲା ।

ପ୍ରତାପଙ୍କର ବନ୍ଧୁ ଏଣେ ଏମ୍. ଏ. ପାସ୍ କଲେ । ପ୍ରତାପ କହିଲେ, ଆପଣ ତ ଏମ୍. ଏ., ଏଫ. ଟି. ଏସ୍.; ମୁଁ ଖାଲି ଏଫ. ଟି. ଏସ୍.; ଆଉ କିଛି ଉପାଧି ମିଳିବ ନାହିଁ ମୋତେ ? ମହେନ୍ଦ୍ର କହିଲେ, ହଁ ମିଳିପାରେ ! ପ୍ରତାପ ପଚାରିଲେ, ଆଚ୍ଛା ଏହି ଏମ୍. ଆର୍. ଏ. ଏସ୍. (ଲଣ୍ଡ.) କିପରି ହୁଅନ୍ତି ? ମହେନ୍ଦ୍ର କହିଲେ, "ଆପଣ ହେବେ ? ଷୋଳଟଙ୍କା ଯୋଗାଡ଼ କରନ୍ତୁ । ହୋଇଯିବ ।"

ସତକୁ ସତ ଷୋଳଟଙ୍କା ଯୋଗାଡ଼-କରି ସେ ଏମ୍. ଆର୍. ଏ. ଏସ୍ (ଲଣ୍ଡ.) ହେଲେ ଅର୍ଥାତ୍ ମେମ୍ବର ରୟେଲ୍ ଏସିଆଟିକ୍ ସୋସାଇଟି (ଲଣ୍ଡନ) ।

ଦିନେ ମହେନ୍ଦ୍ର ପୁରୀ ଯାଇଛନ୍ତି । ସେଠି ପ୍ରତାପବାବୁଙ୍କ ଘରକୁ ଯାଇଛନ୍ତି । ପ୍ରତାପବାବୁ ସେତେବେଳେ ପୁରୀ ଜିଲ୍ଲା ସ୍କୁଲର ଲାଇବ୍ରେରିଆନ୍ । ସେଠି ଯାଇ ଦେଖନ୍ତି ପ୍ରତାପବାବୁଙ୍କ ଭଙ୍ଗା କୁଡ଼ିଆ ଆଗରେ ମସ୍ତବଡ଼ ସାଇନବୋର୍ଡ଼ ମରା-ହୋଇଛି—ଲାଲ ପ୍ରତାପନାରାୟଣ ରାୟ ରାମାନୁଜ ଦାସ, ଏଫ. ଟି. ଏସ୍., ଏମ୍. ଆର୍. ଏ. ଏସ୍. (ଲଣ୍ଡନ), ପି. ସି. ଟି. । ମହେନ୍ଦ୍ର ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ଏ ପୁଣି ନୂଆ ଉପାଧି କଣ—ପି. ସି. ଟି. ! ପଚାରିବାରେ ପ୍ରତାପ କହିଲେ ପିଟସ୍-ମ୍ୟାନସ୍ ସାର୍ଟିଫାଇଡ୍ ଟ୍ରେନିଂ ଅର୍ଥାତ୍ ସେ

ଟାଇପ୍‌ରାଇଟିଂ ପାସ୍ କରିଛନ୍ତି, ଆଉ କିଛି ସର୍ଟହାଣ୍ଡ ଶିଖିଛନ୍ତି ।

ଆଉ ବର୍ଷେ ଗଲା । ପ୍ରତାପବାବୁଙ୍କ ସାଇନ୍‌ବୋର୍ଡ଼ ଆହୁରି ବଢ଼ିଛି । ଏଥର ହେଉଛି—ଲାଲା ପ୍ରତାପନାରାୟଣ ରାୟ ରାମାନୁଜ ଦାସ, ଏଫ୍. ଟି. ଏସ୍., ଏମ୍. ଆର୍. ଏ. ଏସ୍ (ଲଣ୍ଡନ), ପି. ସି. ଟି., ଏମ୍. ବି. ଡି. ଏମ୍., ଏମ୍. ଏଲ୍. ଓ. ଏନ୍. ଇଉ. ।

ମହେନ୍ଦ୍ର ପଚାରିଲେ, ଏ କଣ ? ପ୍ରତାପ କହିଲେ ଦୁଇଟଙ୍କା ଦେଇ କାଶୀର ଭାରତ ଧର୍ମ ମହାମଣ୍ଡଳର ମେମ୍ବର ହୋଇଛି, ଗୋଟିଏ ପତ୍ରିକା ପାଏ । ଆଉ ଏମ୍. ଏଲ୍. ଓ. ଏନ୍. ଇଉ.ଟା କଣ ? ପ୍ରତାପ କହିଲେ, ସେଟା ହେଉଛି ମେମ୍ବର, ଲିଗ୍ ଅଫ ନେସନ୍‌ସ ଇଉନିଅନ୍, ଅର୍ଥାତ୍ ଗୁଟାଏ ଟଙ୍କା ଦେଇ ଲିଗ୍ ଅଫ ନେସନ୍‌ସ ଇଉନିଅନର ପତ୍ରିକା ପାଏ ।

ମହେନ୍ଦ୍ର ଚମକିଉଠି କହିଲେ, ଲିଗ୍ ଅଫ ନେସନ୍‌ସ ମେମ୍ବର ? ସେ କହିଲେ, ଚମକିବେ ନାହିଁ । ଲିଗ୍ ଅଫ ନେସନ୍‌ସର ଇଉନିଅନ୍ ମେମ୍ବର । ଏହାପରେ ମହେନ୍ଦ୍ର ଦେଖିଲେ ଯେ ପ୍ରତାପଙ୍କ ଘରେ ଗୋଟିଏ ଟେବୁଲ ଉପରେ ଗଦାଏ ଚିଠି । ବିଲାତ, ଆମେରିକା ପ୍ରଭୃତି ସ୍ଥାନରୁ ଆସିଅଛି । ସେ ହିସାବ କରିଛନ୍ତି ଯେ ଚାରିହଜାର ଟଙ୍କା ପାଇଲେ ସେ ସବୁ ଉପାଧି କିଣି ପକାଇବେ । ଏଫ୍. ଜି. ଏସ୍ ଅର୍ଥାତ୍— ଫେଲୋ ଅଫ୍ ରୟେଲ ଜିଓଗ୍ରାଫିକେଲ୍ ସୋସାଇଟି, ଏମ୍. ଆର୍. ଏଚ୍. ଏସ୍... ଅର୍ଥାତ୍ ମେମ୍ବର ରୟେଲ ହିଷ୍ଟୋରିକାଲ ସୋସାଇଟି, ଏଫ୍. ଆର୍. ହର୍ଟ. ଏସ୍. ଅର୍ଥାତ୍ ଫେଲୋ ରୟେଲ ହର୍ଟିକଲ-ଚରାଲ ସୋସାଇଟି, ଇତ୍ୟାଦି ଆହୁରି କେତେ ।

ଚାରିହଜାର ଟଙ୍କା ନ ହେଲା । ପ୍ରତାପ ମରିଗଲେ । କିନ୍ତୁ ସେ କହୁଥିଲେ, ମହେନ୍ଦ୍ରବାବୁ, ଦୁନିଆଟା ଏତେକ ଫାଙ୍କି । ଚାରିହଜାର ଟଙ୍କା ଦେଲେ ଦୁଇଶହ ଖଣ୍ଡି ଟାଇଟଲ୍ କିଣି ଗୋଟିଏ ପ୍ରକାଣ୍ଡ ସାଇନ୍‌ବୋର୍ଡ଼ ମୋ ଘର ସାମନାରେ ଲଗାନ୍ତି ।

କିନ୍ତୁ ତାହା ହୋଇ ପାରିଲା ନାହିଁ । ପ୍ରତାପ ମରିଗଲେ, ଦୁନିଆଟା ମସ୍ତବଡ଼ ଫାଙ୍କି ଏହିକଥା ବୁଝିଲେ । କିନ୍ତୁ ଅନ୍ୟକୁ ବୁଝାଇବା ପୂର୍ବରୁ ମରିଗଲେ ।

* * *

# ବିବାହିତା...କଳଙ୍କିନୀ

ମୁଁ ଏକାକୀ । ବର୍ତ୍ତମାନ ବିପଦରେ ମୁଁ କରେ କଣ ? ପୋଲିସ ଆସିଛି । ମୋତେ ସହସ୍ର ସହସ୍ର ନରନାରୀ ସମ୍ମୁଖରେ ନାନା କଥା ପଚାରୁଛି, ମୋତେ ଜବାବ ଦେବାକୁ ହେଉଛି । କେତେ ନରନାରୀ କେତେ କଥା ମୋ ବିରୁଦ୍ଧରେ କହିଛନ୍ତି । ପୋଲିସ ସବୁ ଶୁଣିଛି । କେତେ ଲେଖିଛି । ପୁଣି ମୋତେ ଥାନାକୁ ଯିବାକୁ ହେବ ।

ମୋର ସ୍ୱାମୀ ଆତ୍ମହତ୍ୟା କରିଛି । ମୋତେ କୈଫିୟତ ଦେବାକୁ ହେବ । ସେ ଯେ ଜୀବନରେ ଅନେକ କାହାଣୀ, ଅନେକ ଘଟଣା । ଗୋଟି ଗୋଟି କରି ମୁଁ କହିବି ଅବା କିପରି ? ତାକୁ ଶୁଣିବ ଅବା କିଏ ? ଶୁଣାଇବି ବା କିପରି ? ଆମ ଦୁଇଜଣଙ୍କର ଅନ୍ତରର କେତେ କଥା, ନଗ୍ନ କଥା ଆଜି ତ ପୋଲିସର ଧମକରେ ସବୁ ବାହାରକୁ ନଗ୍ନମୂର୍ତ୍ତି ଧରି ବାହାରିଆସିବ । ଏହା କି ସମ୍ଭବପର ? କେତେ ବିରହ ରାତିର ବେଦନା, କେତେ ସମ୍ଭୋଗ ରାତିର ପରିତୃପ୍ତି, କେତେ ମନୋମାଳିନ୍ୟ, ପୁଣି କେତେ ଶରଧା ସୋହାଗ, ଏସବୁ କି ଗୋଟି ଗୋଟି ବର୍ଣ୍ଣନା କରିହୁଏ ? କେଉଁ ନିର୍ଲଜ୍ଜୀ ଏହା କରିପାରିବ ? କିଏ ବା ଏତେ କଥା ଶୁଣିପାରିବ ?

× ×

କାଲିଠାରୁ ଆଜି—ଏଥିରେ ମୋର ଅନ୍ତରର କେତେ ଝଡ଼ତୋଫାନ, କେତେ ମହାଭାବନା ପଶି ମନକୁ ଯେ କଣ କରୁଛି ତାହା କହିବି କଣ ? ଦରଦୀ ଯେ କେହି ଥିବେ ସେ ବୁଝିପାରିବେ ।

× ×

ମୋର ଜୀବନ ଏଣିକି ଶୂନ୍ୟ ହେଲା । କିନ୍ତୁ ଶୂନ୍ୟ ହେବା ପୂର୍ବରୁ ଏ ଜୀବନଟା କେତେ ଦହଗଞ୍ଜ ହେବ । ହାୟ, ହାୟ ! କହିବି କଣ ? କହିବି କାହାକୁ ? ଯାହାକୁ ତାହାକୁ ଧରୁଚି ମୁଁ କହି--ରକ୍ଷା କର, ଉଦ୍ଧାର କର, ମୋର ସ୍ୱାମୀ ମରିଛି—ଆତ୍ମହତ୍ୟା କରିଛି । ଏତେ ବର୍ଷ ପରେ ବିବାହିତ ଜୀବନର ଝଡ଼ଝଞ୍ଜା ପରେ ତାର ଜୀବନର ଅବସାନ ହୋଇଛି, ଆତ୍ମହତ୍ୟାଦ୍ୱାରା । ଆଜିଠୁ ମୋର ଜୀବନ ଦହଗଞ୍ଜ ହେବାକୁ ଆରମ୍ଭ ହେଲା—ପୋଲିସ ତାଡ଼ନାରେ । ମୁଁ ସତୀ ନୁହେଁ--କୁଆଡ଼େ ଏହି ରଟନା ମଧ୍ୟ କରିଗଲାଣି । ଏତେ ଦିନ ଯାହା ରଟନା ଥିଲା—ମୋର ସ୍ୱାମୀ ଥିଲା—ଆଜି ସ୍ୱାମୀର ଆତ୍ମହତ୍ୟା—ସୁତରାଂ ମୋର ଅସତୀ ହେବାର ପ୍ରମାଣ ହୋଇଗଲା । ହାୟ ରେ ଦୁନିଆ !

× ×

ଗୋରୁଗାଈ ଅଛି—ଘରଦ୍ୱାର ଅଛି । ମାତ୍ର ସେ ନାହିଁ, ଆଉ ଆଜ ମୁଁ ପୋଲିସ ଅନୁସନ୍ଧାନରେ ଦୋଳାୟମାନ । ଏହି ମୋର ଜୀବନ । ମୁଁ ଉଜୁଆ ହୋଇଛି । ସମୟେ ସମୟେ ମନ ହେଉଛି ମୁଁ ମଧ୍ୟ ଆତ୍ମହତ୍ୟା କରନ୍ତି କି ? ହେବ କି ? କରିବି କି ? କିଏ ସେ ମୋତେ ପୁଣି ସାହସ ଦେଉଛି—ନା, ଦମ୍ଭ ଧର । ଷଠଦ ଦୁଇ ଦିନରେ ଗୁଳିପିବ । ଥାନାକୁ ଯିବାକୁ ହେବ । କଚେରୀକୁ ଯିବାକୁ ହେବ ।

ହୁଏତ ତାହା ଅବଶ୍ୟମ୍ଭାବୀ—କିନ୍ତୁ ସେଥିରେ ବିଚଳିତ, ବିପର୍ଯ୍ୟସ୍ତ ହେବାର ଉଚିତ ନୁହେଁ ।

ସୂର୍ଯ୍ୟ ତୁଷାର ଗର୍ଭରେ ଆକାଶରେ ଚଢ଼ୁଛନ୍ତି । ମୋର ଅନ୍ତର ଅନ୍ଧକାରରେ ଭରିଯାଉଛି । ଏହି ମୋର ବର୍ତ୍ତମାନର ଜୀବନ, ଏ ଯେ ମରଣ—ସ୍ପନ୍ଦନଯୁକ୍ତ ମରଣ । ଯିବି କୁଆଡ଼େ ? ଅରେ ଅରେ ଯାହାକୁ ଦେଖୁଛି ତାହାକୁ କହୁଛି । କଣ କହୁଛି ଠିକ୍ ରହୁନାହିଁ । ତାର ବାଗ ରହୁ ନାହିଁ ।

କଳଙ୍କିନୀ ମୁଁ—ହୋଇଥିବି—ହଁ, ଆଉ କି କେହି କଳଙ୍କିନୀ ନାହିଁ ? ମୁହିଁ କି ଏକା ? ତୁମେ ପାଠକ ! ତୁମେ କି କଳଙ୍କ-ବିହୀନ ଶୁଭ୍ର ସୁନ୍ଦର ପୂର୍ଣ୍ଣଚନ୍ଦ୍ର ? କଳଙ୍କହୀନ ? ମନର ଭାବନା ପ୍ରକାଶ କରିବାର ବେଳ ନାହିଁ, ସବୁ ଗୋଳେଇ ହୋଇଯାଉଛି । ଜଗତ୍ ଚକ୍ଷୁରେ ମୁଁ ଯେପରି ମହାଅପରାଧିନୀ—ତର ଅପରାଧିନୀ !

× ×

ମୋର ମୁକ୍ତି ଅଛି ? ଅଛି ? କୁଆଡ଼େ ଅଛି ? କେବେ ? କାଲି ? ହେଉ । ଆଃ !

* * *

# ପ୍ରଭାବ

ମଦନମୋହନ ଭଲ ପିଲା । ସେ ମାଟ୍ରିକୁଲେସନ୍ କ୍ଲାସରେ ପ୍ରଥମ ହୋଇ ଉଠିଛି । ସଂସ୍କୃତରେ ତାର ବଡ଼ ଶ୍ରଦ୍ଧା । ସୁତରାଂ ଶବ୍ଦର ଠିକ୍ ଠିକ୍ ଅର୍ଥ ସେ ବୁଝିବାକୁ ଛାଡ଼େ ନାହିଁ । ପ୍ରଭାବ ଶବ୍ଦର ବ୍ୟୁତ୍ପତ୍ତି ଭାବବାଚ୍ୟରେ ପ୍ରଭବନ୍ତି ଇତି ପ୍ରଭବଃ ଅର୍ଥାତ୍ ଜନ୍ମ ଅର୍ଥ; ଏବଂ ଅପାଦାନରେ ପ୍ରଭବନ୍ତି ଅସ୍ମାତ୍ ଇତି ପ୍ରଭବଃ ଅର୍ଥାତ୍ ମୂଳ—ଏସବୁ ଚିକିନିଖି କରି ପଢ଼େ । ସେଥିରେ ଶ୍ରଦ୍ଧା ଥାଏ ।

କିନ୍ତୁ ହଠାତ୍ ସିନେମା ଛବି ବହି ଦିନେ ରାସ୍ତାରେ ହାତରେ ପଡ଼ିଗଲା । ଆନୁଆଲ ନମ୍ବର ଅର୍ଥାତ୍ ବାର୍ଷିକ ସଂଖ୍ୟା । ସେତେବେଳକୁ ରାତି ଏଗାରଟା, ବହିପଢ଼ା ଘରେ କବାଟ ଲଗେଇ ଦେଇ, ଘଣ୍ଟି ଟିକ୍ ଟିକ୍ କରି ଚାଲିଛି, ସେ ଆଲୁଅ ପାଖରେ ଛବି ଓଲଟାଉଛି । କେତେ ଭାବ, କେତେ ଠାଣି, ଭଙ୍ଗୀ ! ସିନେମାରେ ତ ସେ ଚୁମ୍ବନ ମଧ୍ୟ ଦେଖିଛି । ଏଣୁ ସେ ଗୋଟିଏ ଗୋଟିଏ ଛବି ଯେଉଁଠାରେ ଗୋଟିକିଆ କେବଳ ନାରୀ ଛିଡ଼ା କିମ୍ବା ଏକାଧାରରେ ଦୁଇ ଚାରିଟା ନାରୀଛିଡ଼ା ମଧ୍ୟରୁ ବାଛି ବାଛି ଚୁମ୍ବନ ମଧ୍ୟ ଦେଉଅଛି । ଏହା କାଗଜ ଉପରେ, ପୁଣି ଘର ଭିତରେ । ସେଥିରେ ଲୀଳା ଚିଟନିସ୍ ହେଉ ବା ମେନକା ହେଉ ଡିଫାମେସନ୍ ହେବ ନାହିଁ । କିନ୍ତୁ ତଥାପି ମଦନମୋହନର ମନରେ ଟିକିଏ ଭାବ ଖେଳୁଛି—ପାପ ହେଲା କି ? ସତେ, ମନରେ ତ ପାପ !

ମଦନମୋହନ ମାଟ୍ରିକ୍ ପାସ୍ କରିବ । ତା ପାଇଁ ତାର ବାପମାଆ କନ୍ୟା ଠିକ୍ କଲେଣି । ମଦନମୋହନ ମଧ୍ୟ ଯୌବନରେ ପଦାର୍ପଣ କରୁଛି । କିନ୍ତୁ ମଦନମୋହନର ମନ ଆଜି ସଂସ୍କୃତରେ ଗଲା ନାହିଁ । ସେ ସେକ୍ସ ପ୍ରୋବ୍ଲେମ୍ ଯୌନ ସମ୍ବନ୍ଧୀୟ ବହିରେ ଲୁଚି ଲୁଚି ଆଗ୍ରହ ପ୍ରକାଶ କଲାଣି, ଯେଉଁ ଆଗ୍ରହ କି ଅନେକ ବିବାହିତ ତରୁଣ ନୁହେଁ, ବୟସ୍କ ପିତାଙ୍କର ମଧ୍ୟ ଯାଇ ନ ଥାଏ । ତୁଙ୍ଗ, ଉନ୍ମୁକ୍ତ, ଅର୍ଦ୍ଧମୁକ୍ତ, ସ୍ଫୀତ, ସଂତ କୁଚମଣ୍ଡଳକରେ ଲଖିଥାଏ—ଏହି ପୁସ୍ତକସାର କବିବୃନ୍ଦଙ୍କୁ ଦେଖିଲେ ମଦନମୋହନକୁ ବେଶି ଦୋଷୀ କରିବାକୁ ହେବ ନାହିଁ ।

କିନ୍ତୁ କେତେ ଦିନ କାଗଜର ଚିତ୍ର ତା'ର ତରଙ୍ଗାୟିତ ମାନସ ବୁଭୁକ୍ଷାକୁ ପୂ ତୃପ୍ତାର୍ଥ ଦାନ କରିପାରେ ? ଏଣୁକରି ସେ ଯୋଗ ଦେଲା ଦେଶର କାମରେ, ଯେଉଁଠାରେ ନାରୀକର୍ମୀମାନଙ୍କ ସାହଚର୍ଯ୍ୟ ଲାଭ କରିପାରିବ । ବାପା ବିରକ୍ତ ହେଲେ, ସଂସ୍କୃତ ପଣ୍ଡିତ ହତାଶ ହେଲେ, ହେଡ଼ମାଷ୍ଟର ଦୁଃଖ କଲେ । ଗୋଟିଏ ଭଲ ପିଲା ପାଠପଢ଼ା ଛାଡ଼ିଲା ? ଖରାପ ହୋଇଗଲା । ମଦନମୋହନ କିନ୍ତୁ ଦେଶସେବାରେ ଖୁବ୍ ଉତ୍ସାହ ଦେଖାଇଲା । ନାରୀମାନଙ୍କର ସେବା କଲା । ସେଥିରେ ସେ Knight errantry ବା ସ୍ତ୍ରୀଜାତିକୁ ରକ୍ଷା କରିବାରେ ମହାବୀରତ୍ୱ ଦେଖାଇଲା—ଜେଲ୍ ଗଲା, ଦୁଃଖ ଭୋଗ

କଲା, କାହାକୁ କାହାକୁ ମନେ ମନେ ଜେଲରେ ବସି ଝୁରିଲା । ଜେଲରୁ ବାହାରି ଆସି ମେଘ କଟିଗଲା, ମୋହ କଟିଗଲା— ଟିକିଏ ସବୁ ସହଜ ସରଳ ବୋଧ ହେଲା । ପୁଣି ସେ ଦେଶକାମରେ ମନ ଦେଇ କାମ କଲା । ସେ ଏବେ କବି ନୁହେଁ ଯେ ଗୋଟିଏ ଦୁଃଖ ବିଷୟ ଘେନି କବିତା ଲେଖିବ । ତଥାପି ହୃଦୟ ତଳେ ତଳେ ଗଭୀର ଦୁଃଖ ଲେଖାଥାଏ ।

ଏଣେ ହରାହ କଲା ନାହିଁ—ବାପ ମାଆଙ୍କ କଥାରେ ଆଉ ଟିକିଏ ସବୁର କରିଥିଲେ ସେ ଏକ ପ୍ରକାର ହୋଇଥାନ୍ତା । ତାହା ମଧ୍ୟ ହେଲା ନାହିଁ । ଏହାପରେ ସବୁ ପଣ୍ଡ ହୋଇଗଲା । ଜୀବନଟା ସାଧାରଣ ହୋଇଆସିଲା । ନ ହେଲା ମଦନମୋହନର ସ୍କୁଲର ବା ପଣ୍ଡିତ ହେବା, ନ ହେଲା ରମଣୀବଲ୍ଲଭ ହେବା—ନ ହେଲା ନୌକରୀ —ଶେଷରେ ଜେଲରେ ଚଡ଼ ପଶାପେଲା । କିନ୍ତୁ ତାହାର ଭିତରେ ଦୁଲ୍ ଦୁଲ୍ କରି ନାଚଉଠିଲା ତାର ଅନ୍ତର, ଭୂମିକମ୍ପ ହେଲା । ଯୁଦ୍ଧ ବାଧିଲା । ଦେଶ ପରାଧୀନ, ତାକୁ ନିଶ୍ଚେ ସ୍ୱାଧୀନ କରିବାକୁ ହେବ ।

ସିନେମାରୁହିଁ ଚୁମ୍ବନ ଚୁଲିକ ଗଳ୍ପ— ସଂସ୍କୃତ ପଢ଼ା ଚୁଲିକ ଗଳ୍ପ—ତଥାପି ରହିଲା ଜୀବନ—ପ୍ରଚୁର ଜୀବନ ଏବଂ ସେହି ଜୀବନର ରସ ଢାଳି ଦେବ ସେ ମାତୃଭୂମିର ମୁକ୍ତିପାଇଁ । ସେ ଆଜି କୃଷ୍ଣ, ବିଷ୍ଣୁ । ତାର ସ୍ପୃହା ଆଜି ଅନନ୍ତ । ସେ ପ୍ରିୟଂବଦ, ମାତ୍ର ତଥାପି ବଜ୍ରଦୃଢ଼ । ସେ ସଞ୍ଜୀବନୀ ସୁଧା ପାନ କରି ଆଜି ବଳିଷ୍ଠ; ମାତ୍ର ତାହା ସିନେମା ଛବିର ଓଷ୍ଠସ୍ପର୍ଶରୁ ନୁହେଁ, ମାତୃଭୂମିଉପରେ ପଡ଼ି ଅନବରତ ମନପ୍ରାଣ ନେଇ ଚୁମ୍ବନ କରିପାରେ ।

ତାର ଶରୀରରେ ଆଜି ସାତ୍ତ୍ୱିକ ବେପଥୁ, ତାର ବାକ୍ୟରେ ଆଜି ଯୁଯୁତ୍ସା । ତାର ବୁଦ୍ଧି ଆଜି ବଳଲାଭ କରିଛି—ତାହାର ସଂସ୍କୃତ ସାର୍ଥକତା ପାଇଛି--ତାର ହାଇସ୍କୁଲର୍ ଶିକ୍ଷା ଯଥାର୍ଥ ହୋଇଛି । ମହାତ୍ମା ଗାନ୍ଧୀ ତାର ଗୁରୁ,ତାପରେ ଅନ୍ୟ କାର୍ଯ୍ୟ । ତାର ପଞ୍ଚତନ୍ତ୍ର ପାଠ ଆଜି କାର୍ଯ୍ୟରେ ଲାଗିଛି ।

ମଦନମୋହନ ଭଲ ଛାତ୍ର ଥିଲା । ସେ ଖବରକାଗଜ ପଢ଼େ, କଂଗ୍ରେସ ବହିମାନ ପଢ଼େ । ନୂଆ ନୂଆ ବହି, ସୋସିଏଲିଷ୍ଟ ଲୁସିଆ, ଦେଶବିଦେଶର ସଂଗ୍ରାମ, ଉତ୍ଥାନ, ହବର୍ଦ୍ଧନ ସବୁ ତନ୍ନ ତନ୍ନ କରି ଜାଣିବାକୁ ଆଗ୍ରହ ପ୍ରକାଶ କରେ । ସେ ନାଗପୁ ସଂଗ୍ରାମରେ ଜଣେ ଉଦୀୟମାନ ଯୁବକ । ସୁଧୀ, ସାହସୀ, ସହିଷ୍ଣୁ, ସର୍ବଜନପ୍ରିୟ, ସ୍ୱଳ୍ପଭାଷୀ । ତାର ହୃଦୟାକାଶରେ ବହୁଦୂର ପର୍ଯ୍ୟନ୍ତ ଉଜ୍ଜ୍ୱଳତା ଛଡ଼ା ଆଉ କାହାରି ଛାଇ ଦିଶେନାହିଁ—କେବଳ ଝଲସିଉଠେ ସମୟେ ସମୟରେ ମହାତ୍ମାଗାନ୍ଧୀଙ୍କ ସ୍ଥିର ଦୃଢ଼ ଗୋଟିଏ ପ୍ରାଜ୍ଞ ମୂର୍ତ୍ତି—ତାକୁହିଁ ସେ ଅଭିବାଦନ କରେ, ସେହିଠାରେ ନତମସ୍ତକ, ପ୍ରଣତ । ଏପରି ଯୁବକ ବିରଳ ଦେଖାଯାଏ—କ୍ୱଚିତ୍ କଦବା । ଏହାପରି ଯୁବକ ଦେବପୁଜ । ଏମାନଙ୍କ ଜୀବନରେ ପ୍ରସାଦ, ପ୍ରସାଦ ନ ମିଳିଲେ ମୃତ୍ୟୁ ଜାଣିରି ମୁକ୍ତିଦାତା ଏମାନେ । ଶର ଫକୀର । ଧର୍ମଯୁଦ୍ଧ ଏହିମାନଙ୍କର—ଏହିମାନେ ସ୍ୱର୍ଗଗାମୀ । ନେପଥ୍ୟ ହକାରରେ ଯେଉଁ- ମାନଙ୍କର ମନୋଭାବ ସ୍ପଷ୍ଟ, ସେହି ଯୁବକ- ମାନେ ଦେଶର ଗୌରବ । କେବଳ ପ୍ରଭବଃ ଅପାଦାନବାଚ୍ୟ, କେତେବେଳେ ଭାବବାଚ୍ୟ । ଏତିକ ମୁଖସ୍ଥ କଲେ ବଡ଼ ମଣିଷ ହୁଅନ୍ତ ନାହିଁ । * * *

# ପରଶ

— ୧ —

କ ପିଲ ତୁମେ ?
ପାଣ ପିଲ ଆମେ ।
ଏହି କଥା ଶୁଣି ମନ
ହୋଇଗଲା ମୋର ଦୁଃଖ
କେତେଦିନ ଧରି ମା'ଙ୍କେଉଣ୍ଡ ପରି
ରହିଥିବ ଯୁଗଯାକ !
କେହି କି ତାଙ୍କର ପାଇଁ
ଏତକ ଭାବନ୍ତି ନାହିଁ,
କପାଁ ସେ ଜନମ ହୋଇ
ରହିବେ ଦୂରେ – ଦୂରେ ଅଛୁଆଁ ହୋଇ ?
ଲାଗଇ ପ୍ରାଣେ ଆଘାତ
ମରମ ହୁଏ ପୀଡ଼ିତ ।
ଭୃଇଆଡ଼େ ସାକ୍ଷୀ ଦଶଦ୍ୱାରପାଳ
ପାଣପିଲ କି ରହିବ ପାଣ ଚରକାଳ ?

— ୨ —

ପାଦର ଧୂଳି ଆଣରେ ବୋହି
ଅଛ ସେ ପଡ଼ି
ଲଭିବି ମୁଁ ପରମ ଶାନ୍ତି
ସେ ଧୂଳି ଶିରେ ବୋହି ।
ବାହୁଡ଼ନ୍ତି ଗୋଧନେ ଶତ ଶତ କରେ
ତାଙ୍କର ଗୋଧୂଳି କରଇ
ପବିତ୍ର ମୋ ଦେହରେ !
ଗୋଧୂଳିରେ ହୋଇ ରଞ୍ଜିତ
ରହିଛି ମୁଁ ଉଚ୍ଚେ ଗାଉଛି ସଙ୍ଗୀତ ।
ଝାଡ଼ଇ ଧୂଳି କଏ ସେ ନାସି
ଗୀର୍ଜାଘର କରଇ ପରିଷ୍କାର ଆନ୍ତର !
ତାହାରି ସଙ୍ଗତେ ମୁଁ ରହିଛି ଉଚ୍ଚ
ମୋର ଚିତ୍ତ କରିବାକୁ ପୂର୍ଣ୍ଣ ବିମଳ ଆଜ୍ଞା ।
ଜନ୍ମିଥିଲେ ଯୀଶୁ ମରନେ
ଯେଣି ଜଗତ ବେଦନା
ଯାଇଛନ୍ତି ଭୂଲି କ୍ରୁଶେ ଚଢ଼ି
ଆସୁଛନ୍ତି ନିତ ଦେବାକୁ ଆଶ୍ୱାସନା ।

— ୩ —

ଯାନ୍ତ ଥିଲା ସେତେବେଳେ
ସୂର୍ଯ୍ୟର ମୟୂଖମାଳା
ଊଷାର କପୋଳତଳ
ରଞ୍ଜିତ ହୋଇଥିଲା କେଉଁକାଳ,
ସେ କଳିଙ୍ଗ ଖାରବେଳ ଯୁଗର
କଥା ମନେ ପଡ଼ଇ ଯେବେ ।
ଆଜି ଦ୍ୱିପ୍ରହରେ ପକ୍ଷୀର କୂଜନ
କାକଳି ରହି ରହି
ଭୁବନେଶ୍ୱରର ଲତା ଗୁଳ୍ମେ ଯେବେ
ଚହ୍ଲକାରେ ଦହି ଦହି ।
ସେ ସ୍ନିଗ୍ଧ ନୀରବତା ମଧ୍ୟରେ ପାଏଁ
ସେ ଯୁଗର ଚିର ସନ୍ଧାନ
ଗୁମ୍ଫାଲେଖ ପାଙ୍କଙ୍କେ ଅନୁଭବ
ଆସେ ସେ ଯୁଗର ବଖାଣ ।
ଶ୍ୟାମାସୁମାନ ଚତୁର୍ଦ୍ଦଶୀ ଭଗ୍ନ
ଶୀର୍ଷୋତ୍ତୋଳନ କରି ମନ୍ଦିର,

ଉତ୍କଳ ଅଙ୍ଗନ ପ୍ରକୃତି ଗାମ୍ଭୀର୍ଯ୍ୟେ
ମିଶି ମାନବ ଓ ବିଶ୍ୱ,
ରହିଛି ରହିଛି ତହିଁ ଯେତେକ କଳଙ୍କ
ଉତ୍କଳ ଓଡ୍ର ଗୋପନ ଲୀଳା ଯେତେ ।
ଏହି ମହାତୀର୍ଥର କୃପାସ୍ନିତ
ଗୋପନ ଲୀଳା ଭାବୁକେ ବୁଝଇ ଧନ୍ୟ
କହେ ଯେତେକ ସେ ରହି ରହି
କ୍ଷାନ୍ତ ହୁଅ ଧୀରେ କଥା କୁହ ।
ଆରେ ମନ ନତ କର ନତ କର
ଭକ୍ତିଭରେ ଆପଣାର ଶିର,
ନାହିଁ ଏଠି ଧୂମାକୀର୍ଣ୍ଣ ଧୂଳି
ଧୂସରିତ ପାପ କୋଳାହଳ,
ଅଛି ଏଥି ନିସ୍ତବ୍ଧ ତପୋବନ-
ସ୍ରଷ୍ଟା ଶାନ୍ତ ନିକେତନ ।
ଅଚିନ୍ତା କୁଟିରେ ପଶି
ବ୍ରହ୍ମଚର୍ଯ୍ୟ କର ଆଶ୍ରୟ,
ଲଭିବ ଜୀବନର ଚରମ ଶାନ୍ତି
କାନ୍ତ ପ୍ରୀତି ଅଭୟ ।
ତୂଳିକାର ସ୍ଵଚ୍ଛ ଚିତ୍ରଶାଳା ନାହିଁ ଏଥି
ଏଥି ଅଛି ପ୍ରସ୍ତରର ସୂକ୍ଷ୍ମ ଧୈର୍ଯ୍ୟ ପୂର୍ଣ୍ଣ
ନିର୍ମାଣ ବିଧାନ ।
ଭୁବନେଶ୍ୱର ଭୁବନେଶ୍ୱର ରାଜଛି ସୁନ୍ଦର,
କଳସପୂର୍ଣ୍ଣ ଶୀର୍ଷ କରି ଆକାଶ ଉଦ୍‌ଭିନ୍ନ ।
ସେ ଶିଳ୍ପକଳା ସେ ଶିଳ୍ପ ପଦ୍ଧତି
ଉତ୍କଳୀୟର ସ୍ୱତନ୍ତ୍ର
ଆସ ଦେଖିଯାଅ ଚକ୍ଷୁ କରି ସାର୍ଥକ
ମନ କରି ତୃପ୍ତ
ଦେଖି ସେ ସୂକ୍ଷ୍ମ ନିର୍ମାଣ କୌଶଳ
ଜଗତ କରିଛି ଧନ୍ୟ ।
କବି ଆଜ ସ୍ୱପ୍ନ ବିଜଡ଼ିତ
ଚକ୍ଷୁରେ ଦେଖୁଛି କି ଏହା ।
ସ୍ୱପ୍ନ ନୁହେଁ ଏବେ ଏ ସତ୍ୟ
ଏବେ ଏ ବାସ୍ତବ ଦେଖ ଏହା ।

ସତ୍ୟ କହିଛି କବି ଚଳଚ୍ଚିତ୍ରଂ
ଚଳଦ୍ବିତ୍ତଂ ଜୀବନଯୌବନଂ,
ସତ୍ୟରେ ସତ୍ୟ ଚଳାଚଳମିଦଂ
ସର୍ବଂ କୀର୍ତ୍ତି ଯସ୍ୟ ସ ଜୀବତି
ରହିଛି ରହିଛି ଜୀବିତ ହୋଇ
ରହିଛି ଏବେ ବି ଯେତେ ଓଡ଼ିଆ ଜାତି ।
ହର୍ଷବିହ୍ୱଳ ଆନନ ଆଜ ନାହିଁ
ଉତ୍କଳେ ସତରେ ସତ
ପ୍ରକୃତିର ଦୟା, ମାନବର କୃତି,
ଅପୂର୍ବସୁନ୍ଦର କରି ଲେଖିଛି ଏବେ ବି
ଉତ୍କଳ ବକ୍ଷ ।
ଶାରଦ ରଜନୀର ସ୍ନିଗ୍ଧ ସୁଧାକର
ଏ ଜାତିର ଜୀବନେ ଫେରିବ କେବେ
ଅପେକ୍ଷି ତାହାକୁ କାଟଇ ସେ
ହେମନ୍ତ ଶୀତର ମର୍ମନ୍ତୁଦ ଦୁଃଖ ଏବେ ।
ହୁଏତ ଆସିବ ସହସା ବସନ୍ତର ନବ
କିଶଳୟ,
ଓଡ଼ିଆ ଜାତି କରିବ ଧନ୍ୟ
ପୁଣ୍ୟ ଭୂମି ପୁଣ୍ୟ କାନନ
ପୁଣ୍ୟ ଶିଳା ଶୈଳ ଉତ୍କଳର ।
ଉଠିବ ମନ୍ଦ୍ରିତ ହୋଇ କଲ୍ଲୋଳିବ ପୁଣି
ମହାମାନବର ସାଗରତୀର ।
ବ୍ରହ୍ମଚର୍ଯ୍ୟ ଉଦବ ଭାତି
ଉତ୍କଳ ଗୌରବରବି ବଢ଼ିବ ତହିଁ,
ଧନ୍ୟ ହେବେ ଉତ୍କଳର ନରନାରୀ
ସର୍ବେ ଉତ୍କଳେ ରହି ।
ଖେଦକ୍ଷୁଣ୍ଣ ବେଦନାଦୀର୍ଣ୍ଣ
ଉତ୍କଳଜନ ଲଭିବେ ଧନ୍ୟ କହି ।

—୪—

ଭୁବନେଶ୍ୱର ଅଞ୍ଚଳ ଯେନ ମୋର
ହୃଦୟମନ୍ଦିର ଆଜ ଦେଇଛି ଖୋଲି,
ପ୍ରେମ ଶତଦଳ ଫୁଟିଛି ସୁନ୍ଦର
ପରଶ ତୋହର ଲଭିଛି ଭାରି ।

ହୃଦୟ ନିଭୃତ କାନନରେ
ପାଷାଣ ମୂରତିରେ ଲବଣୀ ଗଳେ ।
ଅମୃତର ଝର ଆଜ ଫୁଟିଛି
କା ଆଘାତ ବାଜ
ଧନ୍ୟ ମୁଁ ସେ ପରଶ ଲଭିଲି ।
ଆସ ବନଗ୍ରାମ ଶ୍ରୀକର ଧରଣ
ଦେଖିବା ଅଭିରାମ ସେ ଛବି ରୂପେ ରୂପେ,
ଯଶୋଗୀତି ଗାଇ ନାଚିବା ଉଲ୍ଲସି
କରେ କର ଧରି ମୋହିଣ ମହାନ ଭୂପେ !
କଲ୍ଲୋଳମୟୀ ଆଜ ଧାଉଁଛି ଗରଜି
ଯାହାର ଚରଣ ଲଭିବା ପାଇଁ,
ତାଙ୍କର ପାଶରେ ରହିଣ ସାଦରେ
ପୁଲକିବା ପ୍ରେମେ ବାନ୍ଧିଲି !

—୫—

ଫାଗୁନ ପରି ଉଭାଇଁ ହୋଇ
ବହୁଛି ଦକ୍ଷିଣା ପବନ
ବୈଶାଖର ତାତିରେ ପାଚୁଛି ଆମ୍ବ
ଡାଳେ ଡାଳେ କୋକିଳ ଗାଉଛି
କାକଳେ ।
ଶୀତଳ ଗନ୍ଧବହ ଅବନୀ ଆମୋଦି
ଝୁଲୁଛି ଚୁମ୍ବି ଲତାସୁନ୍ଦରୀ
ମଧୁକର ମୁଦେ ଗୁଞ୍ଜରେ
ବସି ପୁଷ୍ପ ଉପର ।
ଲଜ୍ଜା ମୁଗ୍‌ଧା ଲତା କମ୍ପୁଛି
ଯେବେ ସ୍ପର୍ଶରେ
ସତେ କି ସେ ନବୋଢ଼ା
ନବ ଯୁବତୀରେ !

ଜୟନାଦ ଘୋଷ କାହାର ହେଉଛି
କହ ବିଶ୍ୱବାସୀର
ବସି ବସି ମୁହିଁ ଶୋଇ ଶୋଇ ରହି
ଦେଖା ନ ହେଲା ତାହାର ।
ବିଫଳ ଜୀବନେ ଆଉ କି ଆଶା !
ଆଜ ରହିଛି ବସି
ଆସିବ ଫେରି ଫେରି ମୋ ଦଶା ।

—୬—

ଜୟ ଭାରତ ଜୟ ଭାରତ !
ମୁକ୍ତଜନବନ୍ଦିତ ଭାରତ ହେ !
ଦୀର୍ଘ ରାତି ସୁପ୍ତ ସେ ଯେ ଆଜ ଉଜାଗର
ତପସ୍ୟା ତାହାର ପୂର୍ଣ୍ଣ ହେବ ହେ ଅପାର,
ଉଜ୍ଜ୍ୱଳ ଚକ୍ଷିରେ ଦେଖ ଜାଗିଛି ସୁନ୍ଦର
ହୋଇ ଏବେ ନବକୁସୁମିତ ହେ । ୧ ।

କଳଙ୍କଦାଗ୍ଧାଦ ଉଠ ଏବେ ମାତ ଯେତେ
ଶୋଭୁ ପୁଣି ତୋ ଜନନୀ ଅମୃତର ସ୍ରୋତେ,
ଯୁଗଯୁଗାନ୍ତରୁ ଆସି ରହିଛନ୍ତି ଏଥେ
ସକଳେ ହୁଅନ୍ତୁ ସେ ପ୍ରାଣମିତ ହେ । ୨ ।

ପରସ୍ପର ସ୍ନେହ ଯୋଗ ଦିନ ନିଅ ସୁଖେ
ଭରିଦେବ ପ୍ରେମ ତୋର ଦେଖି ଆଖି ମୁଖେ
ଦିବସ ରଜନୀ ମାତି ସର୍ବେ ସୁଖେ ଦେଖେଁ
ଜୀବନେ ଆଜ ମୁହିଁ ଉଲ୍ଲସିତ ହେ । ୩ ।

ଜଗତରେ ସର୍ବେ ସୁଖେ ରହନ୍ତୁ ଉଜ୍ଜ୍ୱଳେ
ପବିତ୍ର ଏ ଦେଶ କରୁ ପବିତ୍ର ସକଳେ,
ଝଙ୍କାରି ଉଠନ୍ତୁ ମନ୍ତ୍ରେ ଆନନ୍ଦ ବନ୍ଧନେ
ସର୍ବେ ହୁଅନ୍ତୁ ଆଜ ପୁଲକିତ ହେ । ୪ ।

* * *

# ଛିନ୍ନପତ୍ର

—୧—

ମୁକ୍ତ କର ବନ୍ଧନ
ଲୁପ୍ତ କର କ୍ରନ୍ଦନ
ଜାଗ୍ରତ କର ଚିତ୍ତ
କର ହେ ଧର୍ମବିତ୍ତ !
ସ୍ୱାଧୀନତା ଦାଅ ଚିତ୍ତେ
ଅଧୀନ ନ କର ଚିତ୍ତେ,
ଛିନ୍ନ କର ସ୍ୱତନ୍ତ୍ର୍ୟ
ନୃତ୍ୟ କରୁଅ ମହାରଣ୍ୟ ।
ଜୀବନ ତୁଟିବ ତେବେ
ଧାଇଁବ ତୋ'ପଛେ ଯେବେ,
ଜୀବନ ଜଣ ଅଚଳ
ଲଭିବ କି କେବେ ବଳ ?
ଧର୍ମେ କର୍ମେ ସ୍ୱାଧୀନତା
ପୁଣ୍ୟକୃତ ପବିତ୍ରତା,
ନୋହିଲେ, ମୋର କେମନେ
ଆଲୋକ ହେବ ଜୀବନେ ?

—୨—

ଶ୍ରାବଣେ ଭରା ବାଦର
ବାଜେ ଝରେ ଝର ଝର,
ଅମିୟ ଉଦାସୀ ରହିଛୁ ବସି
ଦରଶ ନହି ତୋହର ଲାଗି । ୧ ।
ଆଜ ବଧୂଜନୁ ଆସିଅଛୁ
ଅମର୍ତ୍ତ୍ୟ ଭୂମି ତାପୋଷଛି,
ମର୍ତ୍ତ୍ୟେ ମର ମଣ ହେଲଣି ଏତେ ସହ ।
ହେ ନାଥ,
ରଖ ଚରଣେ ଏବେ ସ୍ଥାନ ଦେଇ । ୨ ।

—୩—

ପବନ ସମ ଜୀବନ ମମ
ବହି ଯାଉଅଛି ବହନ,
କାହିଁକି ବସି ହୋଇ ଉଦାସୀ
ଝୁରୁଛି, ହେଲ ଅକାରଣ ?
ଲିଭି ଯାଇଥିଲେ ଯାଉ
ଧୂପ ଜଳିବ ନାହିଁ କି ଆଉ ?
ଧସ୍କା ବତାସେ ଧୂପ ଲିଭେ ଯେ
ପୁଣି ଜାଳୁନାହିଁ କି ଆଉ ?
ତେବେ ଧର ହୃଦେ ସାହସ
ଧୀର ଅଚଳ ହୋଇ ବସ,
ସ୍ଥିରବୁଦ୍ଧିରେ କର ଗମନ
ହେବ ସକଳ ପୁଣି ପୂରଣ ।

—୪—

ଆଜି ଚିତ୍ତ ତପନ ଉଇଁଛି,
ମନ ମୋର ପରଶ ହୋଇଛି ।
ଶୁଖ ଅପାପବିଦ୍ଧ ଆସ ଏବେ
କରୁଣା କରବ ଅଧମକୁ ଯେବେ ।
ପ୍ରଭାତଆ ପକ୍ଷୀ ଡାକୁଛି
ସୁଗନ୍ଧିବ ଦଶଦିଗନ୍ତ ପୂରିଛି ।
ଯେତେ ଯେଉଁ ଆଡ଼େ ବନ୍ଧୁ ମୋର
କୋଳାଗ୍ରତ କରୁଛି ଏବେ ଜୋର ।
ଏକ୍ଷଣରେ ପବନ ଶରୀର ପେନ
ଯେଉଁ ବନମାନ ବାହୁଛି ରଜନୀ ।
ହୋଇଛି ମୋର ଜୟ ଜୟକାର
ଦୁଃଖ ଆଉ କିଛି ନା, ଏହା ସ୍ୱହିଁ ମାତର ।

ପୁଷ୍ପେ ପୁଷ୍ପେ ଗନ୍ଧଭରା, ମୋ ଜୀବନ କର
ସେହିପରି ବାସନ୍ତୀର, ହେ ବିଶ୍ୱମ୍ଭର !
ନମୁଛି ପଦ୍ମରେ ତବ !
ଏହିପରି ଶୁଭ୍ର ମନ ଦିଅ ମୋତେ,
ନିତ ନିତ ହେଉ ମୋ ଉନ୍ନୟନ ।

—୫—

ଆସ ଶାନ୍ତ, ଅଶାନ୍ତ ହୃଦୟ କର ଶାନ୍ତ
ପ୍ରାଚୀ-ପୂତ ମୁହୂର୍ତ୍ତ ହେଉଅଛି ଭ୍ରାନ୍ତ ।
ଆସ ଶାନ୍ତ, ଆସ କାନ୍ତ, ଦୂର କର ଧ୍ୱାନ୍ତ
ଅଶ୍ରାନ୍ତ ଚିନ୍ତା, ଅଶ୍ରାନ୍ତ ବାସନା, କ୍ଲାନ୍ତ ।
ଅନ୍ତ ହେଉ ବାସନା, ଶ୍ରାନ୍ତ ହେଉ ଚିନ୍ତା ।

—୬—

ଆଜ ଭୁବନ ଭରି ନଗାନ କରୁ
ସଂସାର କଣ୍ଟକ ଆସ ହରି !
ଆଜି ଚିତ୍ତ ମୋର ଶିଶୁବତ ହେବ
ମିଶିବାକୁ ବାଳକ ସଙ୍ଗ ମୋହର—
ହୃଦ ହୁଏ ଆକୁଳ ବ୍ୟାକୁଳ
ଆଜି ଜୀବନ ହୁଏ ପାକୁଳ ।
ଆସ ଭାଇ ଖେଳିବା ପାଇ
ହରିନାମ ଗାଇ ଦିଗନ୍ତ କମ୍ପାଇ,
ହରି ହରି ହରି ବୋଲି କରତାଳି ମାରି
ପୁଣ୍ୟ ତେଜେ ସାଗର ଗଗନ ଭେଦରି
ଗାଇବା ହରି ହରି ହରି ହରି ହରି ହରି ।

—୭—

ଜଗତେ ମୂର୍ଚ୍ଛିତ ପ୍ରକୃତି ସହିତ
ଉଠିଲ ଜାଗି
ନିର୍ମଳ ବିଶ୍ୱାସୀ ଉଦାର ଉଦାସୀ
ଭବମାୟା ତ୍ୟାଗି । ୧ ।

ପ୍ରଭାତରେ ଏହିଭାବ କ୍ଷଣେ ଉଦ୍ଭବ
ହୃଦୟେ ଲାଗି
ପ୍ରଭାତ ଯିବ, ସୂର୍ଯ୍ୟ ଉଠିବ,
କୋଳାହଳ ହେବ
ବୈରାଗ୍ୟ ଯିବ ଭାଙ୍ଗି । ୨ ।
ଭୁଲିବ ଜଳରବେ କୋଳାହଳେ ଯେବେ
ଆତ୍ମବିସ୍ମୃତ ହେବ ରାଗି ରାଗି
ଜୀବନର ଗୋପନ କଥା ନ ଜାଣି
ପାଇବ ବ୍ୟଥା
ଦିବସ ଶେଷେ ବନ୍ଧୁଦୋଷେ ହେବ ଜାଗି । ୩ ।
ଏହି ଚିନ୍ତା, ଏହି ଦୁଃଖ ନିବାରି ରଖ
ହେ ମୋ ଜୀବନର ଭାଗି !
ଡାକୁଛି ହେ ନାଥ ବସ ମୋ ପାଖେ
ସକଳ ସମୟ ଜାଗି । ୪ ।

—୮—

## ପ୍ରଭୋ

ପ୍ରଭୋ ! ଯଦି ଅନ୍ଧ ଚକ୍ଷୁହୀନ ହୁଏଁ
ତୁମର ସେବାରେ ଯେମନ୍ତେ ଅଧିକେ ରହେଁ ।
ପ୍ରଭୋ ! ପଙ୍ଗୁ କୁଷ୍ଠଯୁକ୍ତ ଯଦି ହୁଏଁ
ତୁମର ସେବାରେ ରତ
ଯେମନ୍ତେ ଅଧିକେ ରହେଁ ।
ଆସ ତେବେ ଅନ୍ଧକାର
ଗାଢ଼ ଘୋର ତମିସ୍ରାର
ଲୁଚିଯାଉ ତୁଚ୍ଛ ପାର୍ଥିବ
ଦୃଶ୍ୟ ବ୍ୟବହାର ।
ହେଉ ମୋର ଅଙ୍ଗ ପଙ୍ଗୁ,
ଲଭୁ ଘଟେ ଅସୀମ ତାପ
ନ ଭୁଲିବ ପ୍ରଭୁଙ୍କୁ,
ଅଧିକୁଁ ଅଧିକ ହେଲେ ମଧ୍ୟ ମୋ ପାପ ।

—୯—

## ନମସ୍କାର

ନମସ୍କାର ପ୍ରଭୁ ନମସ୍କାର
ନମସ୍କାର ନମସ୍କାର ନମସ୍କାର
ବିଚିତ୍ର ବିତାନ ନକ୍ଷତ୍ର ଖଚିତ
ଧୀର ସ୍ଥିର ଜ୍ୟୋତିଧାର ।
ଅନ୍ତରେ ରହିଛ ସମସ୍ତ ସୃଷ୍ଟି
ନକ୍ଷତ୍ର ଶଶୀ ସୂର୍ଯ୍ୟ ଭର,
ରହିଛନ୍ତି ସବୁ ସୃଷ୍ଟିରେ
ଉଚ୍ଚ ହୋଇ ତୁମର ସାକ୍ଷ୍ୟ ଧର ।
ମୃତ୍ୟୁଭୟ ଅତିକ୍ରମି ଅତୀତ
ଅନନ୍ତ ବର୍ତ୍ତମାନ ଭବିଷ୍ୟତ
ସକଳ ଆବୋରି ରହିଛ ପ୍ରଭୁ
ମୋର କିଛି ଭୟ ଆଉ ନାହିଁ ତ ।
ବିପିନ ବିଜନେ ବୁଲୁଥାଏ ଯେବେ
ତୁମର ସତ୍ତା କରେ ଉପଲବ୍ଧି
ସଜନ ଗହନ ସଂସାର ଭିତରେ ଭୁଲିଯାଏଁ
ବୁଡ଼େ ବେଳା, ମଧ୍ୟେ ଅବ୍ଧି ।
କି ସ୍ୱର ବାଜଇ ସୃଷ୍ଟିସାରା
ସେ ସ୍ୱରେ ତୁମର ସନ୍ଧାନ ମିଳଇ ସ୍ପଷ୍ଟ ।
କଣ୍ଠସ୍ୱ ପରିଚିତ ବନ୍ଦୁଁ ବନ ହେ ପ୍ରଭୋ !
ସେହି ସ୍ୱର ସଙ୍ଗେ ମୋ ମନନସ୍ପନ୍ଦନକାରୀ !
ବନ୍ଧୁ ବାନ୍ଧବ ବିଚିତ୍ର ସ୍ୱର ଶବଦ
ଭିତରେ ତୁମେ ଅଛ ହିଁ ରହି
ଅତି ପରିଚିତ ଅତି ସନ୍ନିକଟ
ଅତି ଦୂରସ୍ଥ ସେ ତ କହି ନୁହଇ ।
ରହିଛି ତୁମର କୋଳେ ତୁମର ଭିତରେ
ଭେଦ ବର୍ତ୍ତମାନ ଯିବ
ଅନନ୍ତେ, ବୁଲି ଅନନ୍ତେ, ଅନନ୍ତ ମଧ୍ୟରେ
ସଦା ମୁଁ ବିହରିବ ।
ଅତୀତ ଭବିଷ୍ୟତ ବର୍ତ୍ତମାନ ଯେଣ
ଅନନ୍ତ ଭିତରେ ରହି
ମହା ଆଶ୍ଳେଷେ ପ୍ରଭୁ ତବ
ଆଜ୍ଞା ପାଳନ କରନ୍ତୁ ସେହି ।

—୧୦—

ମୁଞ୍ଜରି ଉଠିଲ କାହାର ନିଦେଶେ
ହେ ଉଦ୍ଭିଦ ! ଧବଳବକ୍ଷେ
ନବଶ୍ୟାମ ବର୍ଣ୍ଣେ ?
ଆଷାଢ଼ର ଆକାଶେ ମେଘ ବରଷିଲା କିଏ
ପୁଲକ ଉଠିଲ ଶୁଣି
କାହାର ଆହ୍ୱାନ କର୍ଣ୍ଣେ ?
ମୋର ହୃଦୟ କରେ ଦୁରୁ ଦୁରୁ,
ମେଘ ଯେବେ ବାଜେ ଗୁରୁ ଗୁରୁ,
ତୁମେ କି ମୋତେ ଦେଖାଇବ
ସେ ମୋହନ ଛବି ?
ଅବା ସେ କେବଳ ତୁମର,
ମୋର ନାହିଁ ସେଥିରେ ଦାବି ।

* * *

# ଅରୁଣା

—୧—

ତରୁଣ ଅରୁଣ ଆସ
ଆଜ ଭାରତ ପଦେ
ଆସ ନବୀନ ଯୌବନ-
ଅଭିଳାଷୀ ମୁଗ୍ଧ ହୃଦେ ।
ନବ ଯୌବନ ସାର୍ଥୀ ତୁମେ ହେ ଆସ
ହରଷ ତାପ ଜାଳି
ମଦନ ଉତ୍ସବେ ଉଭି ରତିପତି ସମ
ଫୁଲକୋଦଣ୍ଡ ଧରି ।
ଆସ ବୃଦ୍ଧ ହର୍ଷିତ ହୃଦେ
ଆନନ୍ଦ ମୋଦେ ଆସିଛି ହୋରି
ପକ୍ୱ କେଶ ରଞ୍ଜିତ କରି
ଯୌବନ ଆସୁ ଫେରି ।
ବସନ୍ତ ମଳୟେ ମଲ୍ଲୀହାର ସୁବାସେ ଭରି
ଆସ ଆଜି କଏ ଆସିବ ଆଉ
ନବ ନାଗରୀ ରୋଷି,
ଖେଳିବ ହୋରି ।
ଆସିଛି ବସନ୍ତ ନବକିଶଳୟ
ସବୁ ତ ମୁଞ୍ଜରି ।

—୨—

ଆକାଶେ ବତାସେ ଝାଙ୍କଣ କୂଜନ ଯେବେ
ସବୁଥିରେ ରହିବି ମୁଁ
ଜୀବନ ମୋର ଭରାଇଣ ଅମୃତେ ।
ନୀଳ ଗଗନ ସାଥେ ଚିତ୍ତ ମୋର
ଭ୍ରମିବ ଯେବେ
ଚନ୍ଦ୍ର ସାଥେ, ତପନ ସାଥେ,
କରିବ ପ୍ରୀତି ଧନ ସତେ ।

ସେତିକି ଦିନ ଉଜ୍ଜ୍ୱଳ ହେବ,
ପ୍ରୋଜ୍ଜ୍ୱଳ ହେବ,
ଜାଣିବେ ତେଣୁ ଜଗତ ସାରା ଯେପରି
ଦେଖିବ ମୋତେ ।

ସିନ୍ଧୁ ସାଥେ ତରଙ୍ଗ ତୋଳି ନାଚିବ କେତେ
ମୁହୂର୍ତ୍ତେ ମୁହୂର୍ତ୍ତେ ।
ଏହି ଜୀବନେ ମରଣ ଜାଣି,
ଯେ ଯେ ନୃତ୍ୟ କରେ ନିତ୍ୟ ଅନ୍ତରର
ଜୀବନ ସାଥେ ।

* * *

# ଆଶୀର୍ବାଦ

—୧—

କ୍ଷଣେ ରୁହ ମଦାଳସ
ସୌରଭନ୍ଧ ମୃଗମଦାକାଙ୍‌କ୍ଷିନ !
କ୍ଷଣେ ରୁହ ଜୀବନର ଯୌବନର
ଆଖି ଛଳ ଥିର କର
କ୍ଷଣେ ରୁହ ।
ପୂରି ଆସୁଥିଲା ଯୌବନ,
ପୂରି ଆସୁଥିଲା ତବ ସ୍ତନ
ପୂର୍ଣ୍ଣକୁମ୍ଭ ପୀୟୁଷ କରୁଥିଲା ଦାନ,
ଆଜି ଯାଉଛୁ ଚାଲି କାହିଁକି ?
କ୍ଷଣେ ରୁହ ।
ନ ରହିଲ ନାହିଁ, ନ ଦେଇ ତାହା,
ଆଜି ଅଛି ଯାହା,
ସେଥିରେ ହେଉ ମୋର ତୃପ୍ତି ।
ହସଟିଏ ମୁଖରେ, କରୁଥିବ ସୁଖରେ,
ସେତିକରେ ମୁହିଁ, ରହିଥିବ ଚାହିଁ,
ଯୌବନ ଦେଖୁଥିବ, ଭରି ଆସୁଥିବ,
ଆସୁଥିବ ଭଲି ।
ସପନର ଚାଇଜୁ, ନା, ନା,
ସତ ସତ୍ୟର ଚାଇଜୁ,
ଫୁଲ ସବୁ ଉଠିବେ ଭରି ସୁଗନ୍ଧେ,
ମଳୟ ବହୁଥିବ ମନ୍ଦେ ମନ୍ଦେ,
ଅନ୍ଧାରର ଆଲୁଅର ସବୁ ସ୍ମୃତିସାଜ
ଆଖି ଛଳ ଛଳ କରି ଚାହିଁଥିବେ ଦେଖ
ତୁମେ ମୋର ପ୍ରେୟସୀ ଚିର ରୂପସୀ,
ନବୀନ ବସନ୍ତର ସଖୀ,
ତୁମରି ରୂପକୁ ଦେଖି,
ବାର୍ଦ୍ଧକ୍ୟର ଶେଷ ଆଖି,
ବୁଜିଯିବ ପ୍ରେମେ, ଜଡ଼ ରହିଥିବ
ସ୍ପନ୍ଦିତଟାଙ୍କମେ,
ତୁମେ ମୋର ଶ୍ରାବଣର ଉଚ୍ଛଳ ବାରିଧାର
ରୂପସୀ ଉର୍ବଶୀ ପ୍ରେୟସୀ ସବ ।

—୨—

ବନର ବରଷା ଘେରିଆସେ ଯେବେ
ଘରିଆଡ଼େ
ବାରିଧାର ବରଷି କରେ ଅନ୍ଧକାର,
ପ୍ରିୟାର ଗ୍ଣ୍ଡ ଉଠେ ପଡ଼େ
ଉଠେ ପଡ଼େ ଚାହିଁପରେ ପ୍ରିୟର ।

ସକାଳ ସୂରଯର ଅରୁଣ ଆଭାଟି
ବାହାରି ଆସୁଥାଏ ପ୍ରାଚୀର ନଭରୁ,
ସୁନ୍ଦର ଦିଶଇଟି ।
ତାହାରି ରଙ୍ଗରେ ପୁଲକିତ କେତେ ଫୁଲ
ଜାଗିଉଠେ ସପନୁ
ଫୁଟିଯାଏ କଳିକା ନବଯଉବନେ
ଖେଳଯାଏ ସେଥି
ଦେଖାଇଦିଏ ସେ ରୂପର ସାଗର
ମେଲାଇଦିଏ ସେ ରୂପର ଭଣ୍ଡାର ।

ଭଙ୍ଗା ହୋଇଥାଏ ମାଟିର କୁଡ଼ିଆ
ବରଷାରେ ଏ କୋଣ ସେ କୋଣ ଜାକି
ବସିଥାନ୍ତି ଘର ଭିତରେ ପ୍ରିୟାପ୍ରିୟ
ଯେବେ ପୁଲକ,
ଅବା ଦୈନ୍ୟର ବେଦନା ଭରିଥାଏ
ଯେବେ ଅଙ୍ଗେ
ଛିଡ଼ା ଲୁଗାରେ ଓଦା ଲୁଗାରେ ଯେବେ
ଦୁଃଖରେ ଥରଙ୍ଗେ ।
କିଏ କହିବ ସେ କଥା
ଦେଖିଲେ ହୃଦୟ ଫାଟିଯିବ ଘୂରିଯିବ ମଥା ।
ବରଷା ଝଙ୍କାରେ ବିଦ୍ୟୁତ୍ ଚମକେ,
ଘଡଘଡ଼ି ମାରଇ ଯେବେ,
ଗ୍ଣ୍ଡ ପରେ ରଖି ହାତ କୁଆଁଟି
ଯୁବତୀ ମାଆଟି
କି ଦୁଃଖ କରେ !

ନାହିଁଟି ଧନଧାନ୍ୟ,
ଦୁଃଖରେ କୁଟୀର ଅନ୍ଧାର
ଫୁଲ ସହସ୍ର ଫୁଟଇ ଗୃହଆଡ଼େ
କମଳ ହସଇ ବାହାର,
ଦରିଦ୍ର ଜନ ଯେ ଅଭାବେ ହାହାକାର,
ସେ କି ଲଭିବ
ବରଷାର ଗୁଛ ଗୁଛ ମୃଦୁ ମୃଦୁ
ସମ୍ଭାଷ ଅଜସ୍ର ।

—୩—

ମୃତ ? କିଏ କହେ ରାଧାନାଥ, ଉପେନ୍ଦ୍ରଭଞ୍ଜ
ଆଜି ଆଜି କବିକୁଳ ଯେତେ, ମୃତ ?
ପାପର ପୁଣ୍ୟର କେତେ କଥା, ପ୍ରେମର
ଅମୃତର, ହରଷର ଯେତେ ବ୍ୟଥା,
ସବୁ ଲେଖିଗଲେ ଗୀତଛନ୍ଦ ବସି,
କେତେ ଗ୍ଲାନି, କେତେ ରସି,
କହୁଛ ତୁମେ ସେମାନେ ମୃତ !
ଇତିହାସର ଅଙ୍କେ ଜନ୍ମିଥିଲେ ସେମାନେ
ରଖିଗଲେ ମାନବର ହୃଦପଟେ
କେତେ ସ୍ମୃତି,
କେତେ ଅନାଗତ ଯୁଗର ମାନବ
ସେ ସବୁ କଥା
ପଢ଼ି ପଢ଼ି ମୁଗ୍‌ଧ ହେବେ
କେବେ କୋହିବ ଅନ୍ୟଥା ।
ଯୁବକ ଯୁବତୀର ଯୌବନର ରସକଥା
ଲେଖିଯାଇଅଛନ୍ତି ଯେଉଁମାନେ ଭୁଲିବେ
ସେମାନଙ୍କୁ ଯୁବକଯୁବତୀ ?
ଅସମ୍ଭବ ।
ମାନବର ବୁକୁରେ ଯେତେ ଉଚ୍ଛ୍ୱାସ,
ପ୍ରେମ, ଶୋକ, କ୍ରନ୍ଦନ, ବିଶ୍ୱାସ
ସବୁ ସବୁ ଯେଉଁମାନେ ଧରିଯାଇଛନ୍ତି,
ରଖିଯାଇଛନ୍ତି,
ଭୁଲିବ କିଏ ତାଙ୍କୁ ?
କେଉଁ ନାହିଁ ଆଖିରେ ପ୍ରେମିକର ପ୍ରେମିକାର
କେଉଁ ନାହିଁ ଆଖିରେ ପାପୀର ପ୍ରଣୟୀର,
କେଉଁ ନାହିଁ ଆଖିରେ ସାଧୁର ସୁଭଦ୍ରାର,
କବି ଯେତେ ଲେଖିଛନ୍ତି ଉଦାସୀ ପ୍ରେୟସୀ
ଭକତଜନଙ୍କ ପାଇଁର,
କିଏ ଭୁଲିବ ତାଙ୍କୁ ? ହୋଇଅଛନ୍ତି
କାଳବକ୍ଷ ଚିରି ସେମାନେ ଅମର !
ଲୁହ ଲୁହ ଲୁହରି ଉଠେ ତାଙ୍କର
ସେହି କଥା
ପଢ଼ିଲେ ଶୁଣିଲେ ଜାଗଇ ପ୍ରାଣରେ
ସମପ୍ରେମ ସମବ୍ୟଥା ।
ସେହି ତ କବି କାଳିଦାସ
ଲେଖିଥିଲେ ଶକୁନ୍ତଳା,
ବର୍ଣ୍ଣିଥିଲେ ଦୁଷ୍ମନ୍ତର ମନୋଭାବ,
ରହିଅଛି ଆଜି ସୁଦ୍ଧା ।
କବି ରାଧାନାଥ ଲେଖିଥିଲେ ଚିଲିକା,
କେତେ କଥା, କେତେ କଳ୍ପନା !
ମଧୁ ସ୍ମୃତିରେଖା ରହିଅଛି ଆଜଯାଏ ।
ସେହିପରି କୋଟିବ୍ରହ୍ମାଣ୍ଡର କଳ୍ପନା
କରିଥିଲେ ସେଉଁ କବିସମ୍ରାଟ
କଳ୍ପିଥିଲେ ଚଉଁ କୋଟିବ୍ରହ୍ମାଣ୍ଡସୁନ୍ଦରୀ
ହୋଇ କବି ସମ୍ରାଟ
କିଏ ସେ ଭୁଲିବ ତାଙ୍କୁ କହିବ କୋଟି-
ବ୍ରହ୍ମାଣ୍ଡରେ କହ ତ କହ ତ ମୋତେ !
ଜୀବନ ତାଙ୍କର ଧନ୍ୟ
ଜୀବନ ତାଙ୍କର ଅନନ୍ତ ଜୀବନ,
ନାହିଁ ତାଙ୍କର ମରଣ,
ସୂର୍ଯ୍ୟ ଚନ୍ଦ୍ର ତାରକା ସଙ୍ଗରେ
ରହିଛନ୍ତି ସେମାନେ ହୋଇ ଅମର
ଅମୃତ ସମାନ !
କବି ! ବରଣୀୟ ତୁମେ, ଅର୍ଘ୍ୟ ମୋର
ଆଜ ପ୍ରାତେଃ ଘେନ
ହେଲେହେଁ ହେଲେହେଁ ଏହା ଅତି
ଅତି ସାମାନ୍ୟ । * * *

# ମଧୁରେଖା

—୧—

ପରାଣର ବ୍ୟଥା ଯେ ଜାଣେ
ସେ ପରମ ଆତ୍ମୀୟ
ତାହାରେ ଲଭି ଜୀବନ ହବେ
ଶାନ୍ତିର ନିଳୟ ।
ଦେଖା ତ ସେ ଦିନ ମାତର
ମନେ ହୁଏ ଯେହ୍ନେ ବହୁ ଜନମର
ସାଥୀ ପରା ସେ ମୋହର ।
ମେଘ ଛାଇଯାଏ ଯେବେ ଆକାଶେ
ଗଗନର ଦୀପ ଲୁଚିଯାଏ କେଉଁ ଦିଶେ,
ଧରଣୀ ବଦନେ ବିଷାଦଚ୍ଛାୟା
ଦେଖିବୁଲେ ଯେହ୍ନେ ଏ କି ମାୟା ।
ଫିଟିଯାଏ ପୁଣି ସୂର୍ଯ୍ୟ ଆଲୋକ ଆସେ
ମନ ମୋହର ତହିଁ ସୁଖେ ଦୁଃଖେ ଭାସେ ।
ଏହିପରି ବୁଲି ବୁଲି ମଣି
ଯାଉଥାଏଁ ଯେବେ ଅଜଣାପଥେ
ଉଦେ ହୁଅନ୍ତି ଯେହ୍ନେ ଅରୁଣ ରଥେ ।
ନମସ୍କାର ନମସ୍କାର ନମସ୍କାର ତାହାରେ
କିଛି ନୋହୁ ପଛେ ସେ ଅଛନ୍ତି ରେ ।

—୨—

ନିଜର ରୂପ ନିଜେ କେବେ
ଦେଖିପାରିଲି ନାହିଁ
ଦର୍ପଣେ ଯାହା ଦେଖିଲି ମୁହିଁ ।
ସେ ତ ନିଜର ରୂପ ଅନୁରୂପ
ନୁହେଁ ତାହା ପୁଣି ଅବିକଳ ଅନୁରୂପ ।
ଡାହାଣ ହାତଟି ମୋର ହୋଇଯାଏ
ଦର୍ପଣେ ବାମହାତ ପରି
ଡାହାଣ ଚକ୍ଷୁଟି ମୋହର ସେହିପରି
ହୁଏ ଦକ୍ଷିଣେତର ।
ସବୁ ଏହିପରି ବିପରୀତ କେହି
ନ ଦିଅଇ ଧରି
ମୁଁ ନିଜକୁ ନ ଦେଖିଲି
କେବେହେଲେ ପୁରି ।
ଆଉ ଚିହ୍ନିବି କାହାକୁ ଜଗତେ କିପରି
ମୋହରେ ମୁହିଁ ଚିହ୍ନି ଯେବେ ନ ପାରି ।
ତଥାପି ଅଛଇ ଏତିକି ବିଶ୍ୱାସ,
ପ୍ରିୟତମ ମୋର ପକାଏ ଯେବେ
ମୋ ଉପରେ ପ୍ରେମର ନିଃଶ୍ୱାସ ।
ସବୁ ଦେଖିନିଏ ସେ ମୋହର
ସେ କହେ ଯାହା ପୂର୍ଣ୍ଣ ସତ୍ୟ
ତାହା ମୋଠାର ।
ସେହିପରି ପ୍ରିୟତମର ରୂପ ମୁଁ
ଦେଖେ ଭରି
ପ୍ରିୟତମ ଜାଣେ ମୋଠାରୁ
ତାଠାରୁ ସତ୍ୟ କିପରି ।
ପ୍ରିୟ ପରସ୍ପରେ ଦିଅନ୍ତି ପରସ୍ପରେ ଧରି
ମୋହନ୍ତି ପରସ୍ପରେ କହନ୍ତି କଥା ଅପାରି ।
ଦିବସ ଯାମିନୀ ତେଣୁ ପ୍ରିୟତମ
ମୋର ପାଶେ ଥାଉ
ଏହି ପ୍ରାର୍ଥନା କରଇ ମୁହିଁ ସକଳଠାରେ
ଯେ ଯାହାର ପ୍ରିୟତମ ସେ ତାହାଠାରେ
ଚିରଦିନ ରହୁ ।

—୩—

କାହିଁ ବସନ୍ତ କାହିଁ କୋକିଳ,
ଆଜ ସକାଳ ସନ୍ଧ୍ୟା ବସି ମୁଁ ବ୍ୟାକୁଳ ।
ସାରା ନିଶି ଜୀବନ ଯାଏ ଭାସି
ଅନର୍ଦ୍ଦେଶେ କେଉଁ ଆଡ଼େ,

ସକାଳ ହେଲେ ଶାରସ ଅଳସଭୋରେ
ଜୀବନ ଯାଏ ଏଆଡ଼େ ସେଆଡ଼େ ।
ଏପରି ଜୀବନେ କି ସୁଖ ଅଛି କହ
ସଙ୍ଗୀତ କର ସଙ୍ଗୀତ କର
କେ ଅଛ ଦସ୍ୟୁ ବନ୍ଧ ।
ମୋହର ପଣ୍ଟାରେ ଅଛ କି ସତେ
ମୋହର ଭିତରେ ଅବା
ପ୍ରଭୁ ବୋଲି କଏ କହନ୍ତି ଏତେ
ତାଙ୍କର ମୁଖକୁ ଚୁମ୍ବିବି ଅବା ।

—୪—

ରୂପନଗରେ ବୁଲି ବୁଲି ମୁହିଁ
ଅରୂପର ସନ୍ଧାନ ପାଇଲି ନାହିଁ ।
ଏବେ ରୂପରେ ନ ମାତି
ଅରୂପରେ ଯିବି ଭାସି
ସଂସାରର ମୋହ ଏବେ ଯାଉ
ମୋଠାରୁ ଅପସରି ।
ତାରକା ରଶ୍ମିଛନ୍ଦ ଅନାଇ
ଯିବେ ସେ ଧୀରେ ଧୀରେ ଉଭାଇ ।
କେହି ରହିବେ ନାହିଁ
ସବୁ ଲୁଚିଯିବେ ନାହିଁ,
ରହିବେ ଅବା ସବୁ ଭାଇ
ରୂପର ସାଗର ପାରି ହୋଇ
ଅରୂପ ନଗରେ ରହିବେ ଯାଇଁ ।

—୫—

ଆଗରେ ରହିଛି ସ୍ୱେକର ମଣିଷ
ମାଟିର ମଣିଷ
ତୃଷା ତାର ମେଣ୍ଟିବାର ପାଇଁ
କରଇ ସେ କେତେ ଆଶ ।
ପଛରେ ରହିଛି ଅମ୍ବର ମଣିଷ
କହୁଛି କେତେବେଳେ
କେତେବେଳେ ରହୁଛି ନୀରବେ ନିର୍ବିଶେଷ ।
ଦୁଇ ମଣିଷ ଭିତରେ ଲାଗିଛି ଲୀଳା
ମାଟିର ମଣିଷ ପୂରାଇ ଆଶ
ଉଠଇ ଅବଲୀଳା ।

କେବେ ଅବା ଘଡ଼ିଏ ସେ ମାଟି ଭାଣ୍ଡ
ଉଠିବାକୁ ତାକୁ ଲାଗଇ ଅନେକ ବରଷ
କରଇ ଅନେକ ରଡ଼ି ।
ଯାହା ହେଉ ପଛେ ଆପଣା ହାତେ
ଆପଣା ତୋରି ରଖିଛୁ ଆମ୍ଭେ
ଦିନେ ହେଲେ ଡୋରି ହେଲେ ଯେତେ
ଉଠିବୁ ଉଜ୍ଜ୍ୱଳ ଯେମନ୍ତେ ସକଳ ସୂର୍ଯ୍ୟ
ପୃଥ୍ୱୀ ଦମ୍ଭେ ।
ସେଦିନ ପାଇଁ କରେଣ ପ୍ରତୀକ୍ଷା
ମାଟିର ମଣିଷ ଗୁଲ ରେ ଭାଇ,
ମାଟିର ଭେକ ଶେଷ କରି
ଉଠ ଆହେ ଅମର ପୁରେ ଯାଇଁ ।
ତଥାପି ମାଟିର ମଣିଷ ମାଟିରେ ଆଶ
ଦୁଃଖ ସୁଖେ ହୁଏ ସେ ଜଡ଼
ମାଟିର ଭିତରେ ରସର ସାର
ପାଇଣ ସେ ଅମୃତେ ଯାଏ ବୁଡ଼ି ।

—୬—

କହୁଥିଲେ ମୋତେ ଆସିବ ସଞ୍ଜ ସାଥେ
ବକୁଳମୂଳ ତଳେ
ଅନ୍ଧାର ବେଳେ ଛୁଇଁବ ମୋତେ
ସତେ ସତେ ସତେ ।
ଆସିଲା ସଞ୍ଜ ଗୋଧୂଳି ଗଲା ବୁଜି
ସକଳେ ଗଲେ ଭୁଲି
ମୋହର ସକଳ ଆଶା ଗଲା ଭାଜି ।
କହୁଥିଲ ମୋତେ କୋକିଳ କୁହୁ ସାଥେ
କରିଥିବ ମୋତେ ଅପେକ୍ଷା
ଚୁମ୍ବିଲି ମୁହିଁ ଦୀର୍ଘ ଦିବସ ମାସ
କରି ସେହି ପ୍ରତୀକ୍ଷା ।
ଆସିଲା କୋକିଳ ଧ୍ୱନିଲା ବସନ୍ତ
ନୋହିଲା ତୁମର ଦେଖା
ଆଜି ମନେ ମୁହିଁ ପାଗଳ ହୋଇ,
ବୁଲେ ସାଙ୍ଗ ବଣି
ଭାବି ପାଇବି ତୁମର ଦେଖା ।

କହିଥିଲ ମୋତେ, ସରତ ସାଥେ,
ରଜନୀ ଗତେ ଚନ୍ଦ୍ରମା ଯେବେ ହସିବ
ମଧୁରେ ମଧୁରେ ମଧୁମାଳତୀ ହାତରେ ଯେଣ
ମୋହର ଗଳାରେ ପିନ୍ଧାଇବ !
ସବୁ ତ ଆସିଲେ ସବୁ ତ ଗଲେ
ତୁମେ ଗଲ କାହିଁ
ମୋହର ଜୀବନ ବୃଥା ମାନ
ରହିଛି ତୁମକୁ ଶୂନ୍ୟରେ ଖୋଜି ।
ସଖି ! କାହାକୁ କରେଣି ଜୀବନ ନେହ କହ
ତୋହର ପାଇଁ ଜୀବନ ମୋର ଅଥିର ହୁଅଇ
ଉପାୟ ତୁହି ମୋତେ କହ ।
ରଜନୀରାଣୀ ଭରି ପରାଣେ ଗୀତ ଯେବେ
ଲୁହାଟେ,
ଯେହ୍ନେ ସ୍ୱନେ ତୋର ସନ୍ଧାନ ମିଳେ ପିନା
ମୋର ହୃଦୟ ହାଟେ ।
ଜୀବନପଥେ ରଜନୀ ରାତ ସାରା ନିଶୀଥେ
ସକଳେ କରେ ଯେବେ ଖାଁ ଖାଁ
ତୋହର ପାଇଁ ଆଖି ନ ପଡ଼େ ଭାବୁଥାଏ ବସି
ଡାକୁଥାଏ ଖାଲି ଆ' ଆ' ।
କେହି କାହିଁ ଯେବେ କେଉଁ ଆଡ଼େ
ରଜନୀରାଣୀ ଡାକ ଶୁଣେ
ଯେହ୍ନେ ଡାକରେ ଝିଲ୍ଲୀଝଙ୍କାରେ ବସିଥାଏ
ମୁହିଁ ଏକେ !
ମଲ୍ଲୀର ହାର କେତେ ଦୂରେ ଥିଲେ
ବକପୁ ହାତୁଁ ଆସେ ଗନ୍ଧ ବହି
ମାନସ ଫୁଲକେ ବସି ରହିଥାଏଁ
ରଜନୀ ଯାଏ ପାହି ।
ହୃଦୟ ଭିତରେ ତୁମକୁ ପାଇ ମୁହିଁ ଭରେ
ଜୀବନ ମଧ୍ୟରେ ଆଉ କିଛି କାହିଁ
ତୁମର ଚନ୍ଦ୍ରାରେ ମରେ ।

—୭—

ଜୀବନ ହାଟର ସଉଦା ସବୁ
ଏଥର ଓହ୍ଲାଇ ଦିଅ
ନିଃଶ୍ୱାସ ମାରି ସୁଖରେ ଭରି
ଏଥର ସ୍ୱରଗେ ରହ ।
ସଧାର ମୁଖେ ତାରଟି ଫୁଟେ
ହସଟି କି ତୁମର ନ ଫୁଟିବ ଗୋଟେ,
ଜୀବନଟି ସାରା ଖଟିଛି ଅତି ସାରା
ଏଥର ମୁକ୍ତ ହୋଇ ସକଳ ଛାଡ଼ିଦେଇ
ଆସ ଭରା ।
ଜୀବନ ବୋଝ ରଖିଦିଅ ଆଉ
ଭୁଲ ମରୁଭୂମି ପଥେ,
ଖୋଜିବା ଯହିଁ ଅଛି ଜଳ
ଜଳ ଦିଅନ୍ତୁ ଯେତ୍କୁ ।

—୮—

ଅଶୋକବନେ ବନ୍ଦିନୀ ସୀତା ଆପଣା ମନେ
ଗୁଣୁଛନ୍ତି ଯେହ୍ନେ କେତେ କି କଥା
କିଏ ଜାଣେ !
ଅଶୋକ ତାଙ୍କର ଶୋକ ପାସୋରି ଦିଏ
ହାୟ ରେ ଅଶୋକସ୍ତବକ
ତୁମର ତାଙ୍କର ପରେ ଝରେ ।
ତେବେ ତ ତୁମେ ମହା ଅନୁଭୂତିଭରା
ଜଗତପାଳ କେହ୍ନେ ନ ପାରୁଛ,
ସୀତା ରହିବେ ଅଶୋକ ବୃକ୍ଷ ସାଥେ
ଶରକାଳ ଯେତେ ପଡ଼େ ହୃଦୟ ଥରୁ ।
ହନୁମାନ ଯେବେ ଆସିବ ସନ୍ଦେଶ ବହି
ମୁକ୍ତି ଯେବେ ଦେବ ରାମ ଆସିବେ
ପତି ଯେହ୍ନେ ।

## ଫେର୍ଦୋସୀ

କୁପିତ କବି ଫେର୍ଦୋସୀ
ଜୀବନସନ୍ଧ୍ୟାରେ ବସି
ମଧ୍ୟାହ୍ନ ଗୌରବର କଥା ଭାବୁଥିଲେ ଆସି ।
କେତେ କେତେ କବିତା
ଲେଖା ଅଛି ଶାହନାମାରେ 'ଅଛି' ତା ।
ସ୍ୱର୍ଣ୍ଣମୁଦ୍ରା କବିତା ଗୋଟିକ
ଥିଲା ଏହି ଅଙ୍ଗୀକାର
'ସୁଲତାନ' ମାହାମୁଦ ଗଜନୀର ।
ସ୍ୱର୍ଣ୍ଣ ପରିବର୍ତ୍ତେ ରୌପ୍ୟ ଉପଢୌକନ
କବିର କୋମଳ ପ୍ରାଣ କଲା ଦଂଶନ
ଛାଡ଼ି ଆଇଲେ ସେ ସକଳ ସମ୍ପତ୍ତି
ରହିଲେ ଆପଣା ଘରେ ସିରାଜ ନଗରେ
ଲୁଣ୍ଠିତ ଅତି ।
ଜୀବନସନ୍ଧ୍ୟାରେ କେଉଁ ଶେଷ ଦିବସେ
ବସି ଭାବୁଥିଲେ ପୂର୍ବର କଥା ସେ,
ସହସା ବାଳକର କଣ୍ଠୁ ଉଠିଲା ଧ୍ୱନିତ ହୋଇ
"ଆଗର୍ ସାହସ ଶହ୍‌ବୁଦେ ବୋଦର୍"
ସେହି ।
ଚମକି ପଡ଼ିଲେ ବୃଦ୍ଧ
ଏ କି ହେଲା ମୋହ ଗୀତ ଗାଉଛି
କଏ ବାଳକ ଶୁଦ୍ଧ !
ମନେ ପଡ଼ିଲା ଗୋଟି ଗୋଟି
ପୂର୍ବର କଥା ଯେତ ।
ବିଷଣ୍ଣ ମନେ ଚଳିଲେ ସେହି ପଶ୍ଚିମେ ଯତ ।

ଶେଷ ହେଲା ଜୀବନ ତାଙ୍କର
ଲଭିଗଲା ହାସ ଧର୍‌କର ଶୀଘ୍ର ।
କନ୍ୟାମାତ୍ର ଏକ ଥିଲା ତାଙ୍କର
ସୁଲତାନ ପଠାଇଲେ ସ୍ୱର୍ଣ୍ଣମୁଦ୍ରା ଏଥର,
ଦେନଲେ ନାହିଁ ରୂପସୀ କନ୍ୟା ଏହା
ନିର୍ମିତ ହେଲା ସିରାଜନଗରେ ପୋଲ
ପାନ୍ଥଶାଳା ଆହା !
ସେହି ସ୍ୱର୍ଣ୍ଣମୁଦ୍ରା ରେ
ଯାଇଛି ଲଭି କାଳଗ୍ରାସରେ
ନଅଣ ବରଷର କଥା ଏହି
କଥା ରହିଛି ଆଉ ସବୁ ଯାଇଛି ବୋହି ।

—୨—

ସେ ତ ଶରଦିନର ପିଆସୀ
ସୃଷ୍ଟି ଯେ ଦିନୁଁ ପ୍ରଥମ
ଅମୃତ କଲା ବିତରଣ,
ଜଗତ ଯେ ଦିନୁ ପ୍ରଥମ
ଅମୃତ କଲା ଆହରଣ ।
ସେଣୁ ଦିନୁଁ ସେ ଅମୃତ ବିନ୍ଦୁ
ଝରେ ନଦୀ ଦିବସ ଧରି
ଆହା, ଏହି ଅମୃତମୟ ସଂସାରେ
କଏ ଅଭାଗା ନ ପାଏ ଅମୃତ ଭରି ।
ଦିବସ ସନ୍ଧ୍ୟା ଶର୍ବରୀ ଉଷା
କଏ ରହିଛି ବନ୍ଧ୍ୟା
ସକଳ ମୁଖେ ଫୁଟେ ଭାଷା ।

ସଜଳ ସ୍ନେହ ପୂର୍ଣ୍ଣ ନୟନ
ତୃଷ୍ଣା ସହିତ କହୁଛନ୍ତି ତାହା ଆସନ,
ଆସ ଆସ ଭାଇ ଭଉଣୀ ହୋଇ ବନ୍ଧୁଜନ
ଆସ ଆସ ଭାରତ ମଧ୍ୟରେ ପାତ ବସନ ।
କୋକିଳ ଡାକୁଛି ଶୁଣ
କାକ କୁକ୍କୁଟ ସ୍ୱନ,
ଆତୁର ଯେତେକ ବିହଙ୍ଗମମାନ
ଆସ ଆସ ଅମୃତ କର ପାନ ।

— ୩ —

ଚଞ୍ଚଳ ଚଞ୍ଚଳ ମଧୁ ଅଞ୍ଚଳ
ଉଡ଼ାଇ ଦେଇ ଆସ ଗୋ ସ୍ୱଳ,
ଚଞ୍ଚଳ ଚଞ୍ଚଳ ଜୀବନ ଅଞ୍ଚଳ
ଉଡ଼ିଯା ଏ କେସନେ ନ ରୁହ ଗାନ ।
ଜୀବନ ଯୌବନ କର୍ମ ସମାପନ
କରିବାର ପାଇଁ
ଆସ ସଖା ଆସ ସଖୀ ଆସ ଆସ
ଯିବା ଧାଇଁ ।
ଏପାରି କାମ ସାରି ଦେଇ
ଯିବା ସବୁ ସେପାରି ଭାଇ ।
ସକଳେ ରହିଥିବେ ଚକିତେ ଅନାଇ
ଆକାଶେ ରହିଥିବେ ତାରକା ଗୁନ୍ଥି ।
ଦୁଃଖ ଘରେ ଦୁଃଖ ଦୁଆରେ
ବସି କି ଖେଳୁ ତୁ ଭାଇ
ଉଠ ଉଠ ପ୍ରଭାତ ସୁନ୍ଦର ଅରୁଣ ସୁନ୍ଦର
ଦେଖ ଅଛେ ତୁହି ।

— ୪ —

ଯମେ ବଢ଼ନ୍ତି ସୁଷମା ତରଙ୍ଗ
ଆଶ୍ରୟ କଲେ ଆସି ନାନା ରଙ୍ଗ,
ଲକ୍ଷଣ ଚମ୍ପକେ ଦଣେ କୁରଙ୍ଗ
ମଦ ଝଙ୍କୃତି ଅଳସ ରଙ୍ଗ ଯେ,
ଲଳିତ ଭଙ୍ଗିମା ତରଙ୍ଗେ ନାଚଇ
ଗର୍ଜିବା ପାଇଁ ପାରଙ୍ଗ ଯେ ଅଭିମନ୍ୟୁ ।

ଯେତେ ଲେଖିଲେହେଁ ମନ ତ ମାନଇ ନାହିଁ
କି ଲେଖା ଲେଖୁଛି ମୁହିଁ,
ଦିବସ ରଜନୀ ପଢ଼ୁଛି ସଜନୀ
ମନ ତୋଷ କାହିଁ ନ ପାଇ ।
କି ଲେଖା ଅଛି କହ ତୋହର ଦେହେ
ସେହି ଲେଖା ଦେଖିବାର ଆଖି ଦିଅ ମୋହେ;
ଯଦି ନ ଦେବ ସେ ଲେଖା
ଯଦି ନ ଦେବ ସେ ଦେଖା,
ଏ ଜୀବନେ ମୋହର କି ପ୍ରୟୋଜନ କାହାର
ବୃଥା ପିଡା ଦେଉଛ ଆହେ ସଖା !
ଗତ ଶୈଶବ, ଗତ ଯୌବନ, ଗତ ସବୁ
ଆଗତ ଯାହା ମରଣ ହେ ଆସ
ଆଲିଙ୍ଗନ ଦିଅ ବାବୁ ।
ତୁମେ ତ ମୋର ଅନ୍ତିମ ସତ୍ୟ
ତୁମରି ସାଙ୍ଗରେ ହେଉ ମୋର
ପ୍ରୀତି ଯଥାର୍ଥ ।

— ୫ —

ଆସିଛ ସଖା ଆସିଛ
ପ୍ରାତର ପ୍ରଥମ ବାରତା ତୁମରି କଣ୍ଠେ,
ଆସିଛ ସଖା ଆସିଛ,
ଝଡ଼ୁଛି ତାରକା ଆକାଶ ମେଲାଇ,
ଆସିଛ ତୁମେ ଆସିଛ ।
ଅନ୍ତରର କେଉଁ ଗୋପନେ
ଦିନ ଦିନ କରି ରହିଥିଲ ଯତନେ ।
ବସନ୍ତ ଆସିଲା ଆସିଲ ତୁମେ
ଆଣିଲ ସୁଖର ବାରତା ତୁମର
ଝଣାଝଣା ସ୍ୱନେ,
ରକ୍ତ ମନ୍ଦାର ଚକ୍ଷୁ ତୁମରି ଜଣାଇଲା
ପ୍ରେମର ପୀୟୂଷ ଜାଣେ ।
ଏତେ ମଧୁର ଶବଦ କାହାର କଣ୍ଠ ତୁମର
ବାଜେ ହେ ବାଜେ,
ବାଜେ ଯେ ବାଜେ

ଆସିଲା କାକ, ଜଣାଇଲା ଦେଖ ଦେଖ,
ପ୍ରକାଶିଲା ବଉଳବାସ ଉଠ ଉଠ ସୁନ୍ଦରୀ
କା କା କରି ଗଲା ଚାଲି ।
କାକ କୋକିଳ ରୂପ ସମତୁଲ
ତୁମେ ଦେଲ ମୋହି
ହେ ମୋର ସଙ୍ଗୀତ,
ତୁମରି ସରି ବରଦେ ପ୍ରେମେ
ମୋ ଅନ୍ତର ଧ୍ୱନିତ ।
କା କା କରି କାଳଟିସାକ
ଯାଉଅଛି କହି ବେଳ ଗଲା ବହି କାକ,
କର ହେ କରତବ୍ୟ ଉଠ ହେ ମାନବ
ଲାଗ ଲାଗ ଶରୀ ସୁଖୀ କର ସରବ ।

— ୭ —

ଆଜ ଫୁଲ ଉପବନେ
ଏକାକୀ ବସି ମାଳା ଗନ୍ଥନେ
ଗୁନ୍ଥନ୍ତି କାହାପାଇଁ, କେ ଆସିବ ଧାଇଁ ।
ଆଜ ଫୁଲ ଗୋଟି ଗୋଟି ତୋଳି
ବଗିଚାର ବେଳାରେ ସଜାଇ ଡାଲି
ବସିଛି ଏକାକୀ
ଭ୍ରମର ଆସେ ପ୍ରେମ ବଳା କି ?
ଝାଙ୍କିଲ ପଡ଼ିଛନ୍ତି ଫୁଲରାଣୀ ଯେତେ
ଖରାରେ ଆଜ ଶତେ ଶତେ ସତେ,
ଖରାଟିଆ କୂଜନ ଆସଇ ଭାସି
ମରମ ବନ୍ଧେ କାନରେ ପଶି
ପ୍ରିୟ ମୋର କେହି ପାଶରେ ନାହିଁ
ଏକାକୀ ରହିବି ବିବାଶୟନ
ହାଇ ହାଇ ହାଇ !
ଖରାରେ ଯାଉଛି ସକଳ ତାତି
ଖରାରେ ମୋର ଉଠୁଛି ପଡ଼ୁଛି ଚିତ୍ତ ।
ଏହି କି ଜୀବନଖେଳା
ଏହି କି ମୋର ଆଶା ଦୋଳଲୀଳା !

ହାୟ ରେ କପାଳ ହାୟ ରେ ହାୟ
ଧନ ମୋର ବନ୍ଧୁ ବିନା ତୋ ପାୟ ।
ଥିଲି ମୋର ଏତେ ଶରଧା ମିତ
ବାସି ହେଲା ଫୁଲ ପକାଇ ଦେଲି ତ,
ଏତିକି ମୂଲ୍ୟ ମାତର ଥିଲା କି ମୋହର
ଧନକ ପାଇଁ ମୋ ପାଥେ ହେବାକୁ
ପ୍ରେମଦଂଶୀର ।
ହେଉ ତେବେ ହେଉ ଯାହା ହେବାର ହେଲା,
ଦେଖିବି ଯେବେ କରିଥିବ ଚିତ୍ତ
ଖାଲିବି ଖାଲି
ଏ କି ହେଲା ଏ କି ହେଲା !

— ୭ —

ବିରତ ହୁଅ ବିରତ ହୁଅ ମାରନା ମାରନା
ଏହି ସଂଧାରେ ଜୀବନକୁ କର ସାଧନା ।
ଅହଂକାର ଅଭିମାନ ଦମ୍ଭପଣ
ହିଂସ୍ରକ ସ୍ୱଭାବ
ଏ ସବୁ ନୁହେଁ ଭାଇ ଭଲ
ଏସବୁ ଅନିଷ୍ଟ କରଇ ଠାବ ।
ମାରିଲ ଯାହାକୁ ଅନ୍ୟାୟ କଲ
ତୁମେ ତାହାକୁ
ଯଦି ବା ମାରିଲ ଏତେ ଘୃଣ
ଚଢ଼ାଇବା ନ ଥିଲା ଉଚିତକୁ ।
ସୁନ୍ଦର ମାନବ ଭାଇ ଅସୁନ୍ଦର ହୁଅ ନାହିଁ,
ଦୁଇ ଦିନ ପାଇଁ ଦମ୍ଭ ଅଭିମାନ
କ୍ରୋଧ ଅହଂକାର ଛାଡ଼ ଭାଇ,
ସୂର୍ଯ୍ୟସମ ଦୀପ୍ତ ହୁଅ ଶଶୀ ସମ ଶାନ୍ତ
ସ୍ନେହ ଦିଅ ବିତରି ଜଗତଜନେ କର ଦାନ୍ତ
ଆପଣାରେ କର ସ୍ୱଚ୍ଛ
ଆପଣାରେ କର ଶାନ୍ତ
ମୁନି ଋଷି ସାଧନାରେ ଆପଣାରେ
କରଅଛି ପ୍ରଶାନ୍ତ ।

ଯାଉ ଜୀବନ ରହୁ ସମ୍ମାନ ଏହି ଭାବନା
ଅନେକ ସମୟେ ବୃଥା,
ରଖ ଜୀବନ ରଖ ସମ୍ମାନ
କ୍ରୋଧ ଅଭିମାନକୁ ଭାବନା ଯଥା ।
ତୁ ରମଣୀ ସେହି ଠାରୁ ମୋତେ ରହି
ଦିବା ଦ୍ୱିପ୍ରହରର ତନ୍ଦ୍ରା ଝାଙ୍କି
ଶରୀର କରୁଛି ଅବସନ୍ନ
ସୁପ୍ତ ମାନବ ଜନ,
ସୁପ୍ତ ଚେତନା ଜାଗ୍ରତ ମନ ।
କିଏ ସେ ତୁମେ ରମଣୀ
ପୁଷ୍ପ ଆଣି ରଖିଦେଲ ସ୍ୱପ୍ନେ
ମନ ମୋହର ହରିନେଲ ଘନେ,
ରମଣୀ ତୁମେ କିଏସେ କେଉଁ ଯୁଗରେ
କାହାର ସାଥେ ହାତଗଣ୍ଠି ତୋର
ପଡ଼ିଥିଲା ରେ ।
ଅବା ଅଭାଗା କେହି ଗୁଡ଼ଣ ଦେଇ
ତୋତେ ଗଲା ଚାଲି କେଉଁ ଦେଶରେ
କଟାକ୍ଷେ କାହାର ପଡ଼ିଲୁ ତୁହି
ଅବା କଟାକ୍ଷେ କାହାକୁ ହାଣିଲୁ ଯାଇଁ ।
ଅବା ପ୍ରକୃତିର ପ୍ରକୃତିରେ
ହେଲେ ତୁମେ ବନ୍ଧା
ପଡ଼ିଲ ସ୍ୱରଗୁ ପାତାଳପୁରେ
ହେଲ ରନ୍ଧା ।
ସେହି ଦିନର ସେହି ପତନ ସେହି ମୋହନ
ଦିନ ଦିନ କରି ପୁଣି ଅନେକ ଦିନ
କଲା ସମ୍ମୋହନ ।
ସେହି ଦିନ ପତନ ଆତୁରି ଦେଲା ତଳକୁ
ଟାଣି କଲା ପତନ ।
ହାୟ ରେ ସେଦିନ ଯାଇଛି ଚାଲି
ଯାଇଛ ତୁମେ ରହି
କାଳଗର୍ଭେ କେଉଁ ଦୂରଦେଶେ ହରି ।
ଆଜ ମଣ୍ଡନେ ବସି ସେହି ତନ୍ଦ୍ରା
ଦାରୁଣ ଦ୍ୱିପ୍ରହର ଆସି
ଜଗାଏ ସେ ଚେତନା ମୁମୂର୍ଷୁର ବେଦନା ।
ଆଜ ପୁଣି ଚାହେଁ ସେହି ଦିନର
ସେହି କ୍ଷଣିକ ସୁଖ
ଛି ଛି ମାନବ ଛି ଛି ତୁହି
ଏତେ ଦୁର୍ବଳ ଏତେ ମୂର୍ଖ ।

—୮—

ନୀରବତା ! ନିର୍ଜନତା ! ବିଜନତା
ଆସିଛି ତୁମରି ପାଖକୁ,
ଶାନ୍ତି ଦିଅ ଦେବତା ।
ଆସିଛି ଏଥି ସଂସାରର
କୋଳାହଳୁଁ ଦୂର ହୋଇ,
ଆସିଛି ତୁମରି ସାଥେ ବସିବି
ଦିନରାତି ବସିନ ବିଜନେ ଅସ୍ଥିର ନୋହି ।
ନାହିଁ ଅହଂକାର, ନାହିଁ ଦମ୍ଭ, ଅଭିମାନ,
ନାହିଁ ନାହିଁ ଏଠି ସଂସାରର ରଣତାଣ୍ଡବ
ନାହିଁ ସ୍ତାବକ ନାହିଁ ଏଠି କେହି ଦାମ୍ଭିକ ।
ଉପରେ ଚାହିଁ ଅନନ୍ତ ଆକାଶ
ଚାରିଆଡ଼େ ମଧୁର ବତାସ,
ଦୂରେ ସାଗରର ଗର୍ଜନ ଅନ୍ତରେ
କି ହର୍ଷ କି ମୋହନ ।
ବିଜନତା ! ନିର୍ଜନତା ! ତୁମରି
କୋଟକ ତଳପଡ଼େ ମୁହିଁ,
ନ ରହୁ ନାମ ମୋର ସଂସାରର ଖାତା
ପତର ନ ଜାଣୁ ମୋର ସନ୍ଧି ।
ମୁଁ ହୋଇଛି ଦାମ୍ଭିକ,
ଯାଉ ମୋର ଦମ୍ଭ
ମୁଁ ହୋଇଛି ଅଭିମାନୀ
ଯାଉ ମୋର ଅଭିମାନ ।
ସଂସାର ଛାଡ଼ି ନୀରବେ ଏକାକୀ
ତୁମରି ସାଙ୍ଗରେ ବସିବି
ମୁହିଁ ଆଜ ଅଛି ବାକୀ ମୋର
ସେତେ ଦିନ ।

—୯—

## ପଦଚିହ୍ନ

ପାଦ ପାଦ କରି ପଡ଼ିଛି କାହାର
 ଚରଣଚିହ୍ନ
କେହି ଉଠିନାହାଁ ବାଟୋଇ
 କେହି ଚାଲିଗଲେ ଚରଣ ।
ଝିପି ଝିପି ବରଷା ଆଜିର ଆସିନାହିଁ ଯେ
ଟିପି ଟିପି ପାଣିବୁନ୍ଦା ସରଗୁଁ ଖସଇ ସେ
ବାହାରିଥିଲି ପଥେ ମୁଁ କେଉଁ
 ଉନ୍ମାଦନା ଘେନି
ଏକରେ ମିଥ୍ୟାପଣକୁ ସତ୍ୟ କରିବା ପାଇଁ ।
ଦେଖିଲି ପଥେ ପଥେ ସତ୍ୟ ସେ
 ଚାଲିଛନ୍ତି କେତେ ସତ୍ୟବାନ
ସତ୍ୟବନ୍ତି ଅତି ଚାଲନ୍ତି ସଙ୍ଗ ତାଙ୍କ ସମାନ ।
ଯୁଗେ ଯୁଗେ ଏହିପରି ଚରଣଚିହ୍ନ
 କେତେ ସବାଳେ ପଡ଼ି
 ବେଳକୁ ଯାଉଛି ଲଭି,
ତୋହର ମୋହର ଜୀବନ ଲଭି ଚାଲିଯିବ
 ତେସନେ କାମ ଶେଷ ହେଲେ ଜଭି ।
କଥା ରହିଯିବ ଗୋଟିଏ ଗୋଟିଏ
ଚରଣଚିହ୍ନ ରହିଯିବ ଗୋଟିଏ ଅଧେ ଅବା
ସତ୍ୟ ସେ ସତ୍ୟପଥେ ଚାଲିଇ ଯେ ସକଳ
 ପାଦଚିହ୍ନ ସତ୍ୟ ହୁଏ ବା ।
ମିଥ୍ୟା ଯେହି ଜନ ଚରଣଚିହ୍ନ ଯାର
 ନ ରହେ କାଳବକ୍ଷେ
ଚପୁଖ ଯାହାର କାଳ ଭେଦ ନ ହଏ
 କାରଣ ସକଳ ମାନବ ଚକ୍ଷେ ।

—୧୦—

ଦୂରେ ଦୂରେ ନୀଳ ଅଭ୍ର ନୀଳ ଗଗନ
 ଦୂରେ ନୀଳ ଅଚଳ ଯେ
ପର୍ବତ ମାଳ ମାଳ ଯେଉଁଠି
 ତମାଳ ମାଳ ମାଳ,
କୃଷ୍ଣ ଯେଉଁଠି ସବୁ ଗିରିଚୂଡ଼ାରେ
ବଂଶୀ ବଜାଉଛି ରହି ଅହରହ ଆଦ୍ୟ ସ୍ୱରେ
କାନ୍ତ କାହାର ଦୂରପଥେ ରହି
 ଅନାଇ ଚାଲେ ତାଙ୍କୁ
କେବେ ପହଞ୍ଚିବ ଯେଉଁ କାନ୍ତାପାଶେ
 ଭେଦ ଗିରିବନାନୀକୁ ।
ଗିରିଚୂଡ଼ା ମୋହନ ଅଭ୍ର ବିମୋହନ,
 ପ୍ରାତେଃ ପ୍ରଦୋଷେ ମେଘ ଆବରଣ
ଲୁହେଳକା ପରି ସବୁ ଦିଶଇ ମୋତେ
 ସୁନ୍ଦର ସେ ତ ସତେ ।
ମିଥ୍ୟା ତେବେ କହିବ କାହିଁକି ?
 ସତ୍ୟ ସେ ଯେ ମୋର ପରମ ପ୍ରୀତିକ ।
ଲଗାଇବ ପ୍ରତି ଗିରି ବନ କାନ୍ତାର
 ମୋର ପୁଲକ ପୁଲକ ।
ଏତକ ପରଶେ ଜାଗିଲେ ବାସନା
 ପୂରାଇବ ତାହା କିଏ କହନା,
ପର୍ବତ ଉପରେ କରିବି ଘର,
 ମେଘ ସଙ୍ଗେ କରିବି କାରବାର ।
ମଧୁର ରାତେ ମଧୁର ପ୍ରାତେ
 ଭଜନ ଭଣିବେ ଏକାନ୍ତ ସତେ
ରହିବ ମୁହିଁ ପ୍ରିୟା ପ୍ରୀତି
 କେହି ନ ଥିବେ ସାଥେ ।

—୧୧—

## ମନ୍ଦିରଚୂଡ଼ା

ଦୂରୁଁ ଶୁଭ୍ର ସୁନ୍ଦର ଦିଶଇ
 ସେ ମନ୍ଦିରଚୂଡ଼ା
ନମସ୍କାର କରେ ତାକୁ ସେ ମୋର
 ପରାଣ କଣ୍ଟ ।
ଚାଲି ଯାଇଥାଏଁ ଦୂରେ ଆସେଁ
 ଯେବେ ସ୍ୱପୁରେ
ଆକର୍ଷଣ କରେ ମୋତେ ସେ
 ଆସେ ମୋ ଅନ୍ତରେ

ଟାଣେ ମୋତେ ଯେମନ୍ତେ ସେ ତାର
ନିଜ ଅନ୍ତରେ ।
ଗିରିଚୂଡ଼ା ଦେଖି ଉପୁଜଇ ସେହି ଭାବ
କୃଷ୍ଣ ଯେମନ୍ତେ ରହିଛନ୍ତି ମୁରଲୀ ସ୍ୱଭାବ ।
ରାଧା ରାଧା କରି ଏକାନ୍ତ ମନେ
ବାଜୁଛନ୍ତି ଯେମନ୍ତେ ଦୂରେ ସ୍ୱପ୍ନରେ
ଭକତ ରାଧା ବାଟବଣା ହୋଇ ଗୁଲୁଛି
କ୍ଲାନ୍ତ ପାଦେ
କଣ୍ଟକ ପାଦେ ଶୁଣି ସେହି ଗମ୍ଭୀର
ଦୂର ସ୍ୱରେ ।
ଫୁଟିଛି ଆଜ ମନ୍ଦିର ଚୂଡ଼ା ମୋତେ
ଟାଣିଲା ତାର ଆକର୍ଷଣେ
ନମିଲି ଦୁହିଁ କହିଲି ପାଇନ ପଳାଇ
ଆସୁଅଛି ସଘନେ ।

—୧୨—

ଦୁଆରେ ଆଜ କୁଣ୍ଡୀ ଜଳି
କାହିଁକି ହେବ ଉଦୟ
ଆଜ ଅପ୍ରାକୃତର୍ସ୍ୟ କାହିଁକି
ଉଠିଲା ଉଦୟାଚଳ୍ପ ଉଦୟ ।
କାହିଁକି କାହିଁକି ତୁମର ସ୍ଫୂର୍ତ୍ତି
ଆଜ କାହିଁକି ସକଳ ପକ୍ଷୀ
ରହିଛନ୍ତି ଯେମନ୍ତେ ମଣ୍ଡଳୀ,
ଆଜ କାହିଁକି ଧରଣୀ ରାଣୀ
ମୁହିଁ ଶିଖାଇଛି କହ ତ ସଜନ ।
ଆମେ ଯାଉ ପୂଜିବା ଦେବତା ଶୀଘ୍ର ଶୀଘ୍ର
ଆସୁନାହିଁ ଅରୁଣ ରଥେ ତପନ ମୋର
କାହିଁକି ସେ ଏତେ ବିଷଣ୍ଣ
ହୋଇଛନ୍ତି କି ଆମର ଅପରାଧ ।
ପାଇଛନ୍ତି କି ଆମର ଅପରାଧ ଶଙ୍କା,
କ୍ଷମା କର ଦେବ କ୍ଷମା କର ଯେନ ଯେନ
ଆମର ପ୍ରେମସମ୍ଭାର ଯେନ ଯେନ
ଆମେ ସକଳ ସଜଣି ଶ୍ରଦ୍ଧ ଯାଣି
ଉଠିଛୁଁ ଆଜ ବନ୍ଦନ ।
ପୂଜିବୁ ଆଜ ମନ ଭରି ସେହି ରଙ୍ଗାଚରଣ
ଉଠ ଉଠ ଦୟା କରି ହେ ତପନ
ସ୍ୱାମୀ ତୁମେ ଆମ୍ଭର ଜଗତର ସକଳର
ଚିର ମୋହନ ।

—୧୩—

## ଗରିବ

ଏଇ ଦେଶ ତ ତାର ବଦନେ ନାହିଁ ସୁଖ
ତାର ଶରୀରେ ନାହିଁ ସଫାଲୁଗା ଟିକକ
କିଏ ସେ ନେଇଛି ଛଡ଼ାଇ
ଦିନ ରାତ୍ର ତାର ନାହିଁ ।
ପରିଶ୍ରମ ତ ସେ ଅଧିକ କରେ ଭାଇ
କିଏ ସେ ନେଇଛି ତାର ଅଧରୁ
ଅଧାର ଛଡ଼ାଇ,
ଦେଖ ତ ଦେଖ ତ କିଏ ଯେ ସେହି
ନେଇଛି ତାର ଅଧରୁ ଆଧାର ଛଡ଼ାଇ ।
ରୋଗ ଶୋକ ତାପ ପରମ ତାପେ
ତାର ଜୀବନ ହୋଇ ଦୀର୍ଣ୍ଣ
ମୁଖ ତାର ଶୀର୍ଣ୍ଣ କାହିଁକି ହେଲା
ସେ ଜଗତେ ଅବତୀର୍ଣ୍ଣ ।
ଘରେ ତାର ଛୁଆଟିମାନ ଭୋକରେ
କରନ୍ତି କୁଆଁ କୁଆଁ ଜାଣ
ଘରେ ନାହିଁ ଅନ୍ନ ହା ଅନ୍ନ ହା ଅନ୍ନ
କରି ରୋଦୁଛି ରମଣୀ ତାର କି ଦୁଃଖ ଜାଣ ।
ଲୁଗା ନାହିଁ ତାର ଭାତ ନାହିଁ ତାର କ'ଣ ?
ନାହିଁ ନାହିଁକି ଏହାର କିଛି ପ୍ରତିବିଧାନ ?
ଏହି ଆକାଶେ ଏହି ସ୍ୱଦେଶେ
ଏହି ଭାରତରେ ଆପଣା ମାନବର ଦେଶେ
ତାହାର ଲୋକ ଧିକାରନ୍ତି ଗରିବେ
କେତେ ବଞ୍ଚନ୍ତି ଦୁଃଖ ଅବଶେଷେ ।
ଆଜ ଅପରେ କହିବ କିସ
ତଥାପି ଭାଇ ସହିବାକୁ ହେବ ଅଶେଷ
ଧ୍ୱଂସ କରିବାକୁ ହେବ ଅନ୍ୟାୟ ଅତ୍ୟାଚାର ।

ଧର୍ମ ପତାକା ହାତରେ ଧରି ଜଗତେ
ଦେବାକୁ ହେବ ବାହାର ।
ଆଜି କିଏ ଆସିବ ଆସ
କୋଳ କୋଳ ଏହି ପୂର୍ଣ୍ଣ କରିବା ପୁଣି
ସୁନ୍ଦର ଏ ଦେଶ ।
ସୁନ୍ଦର ଆମର ଆପଣାର ଭାଇ
ଜଗତେ ଯେବେ ସମସ୍ତେ ହୁଅନ୍ତୁ ସୁନ୍ଦର ରଙ୍ଗ
କିଏ ତାଙ୍କ ଦୁଃଖ ଦେବ କାହାକୁ ।
ଜଗତସାରା ସବୁ ମାନବର ସବୁ ମାନବ
ପରସ୍ପର ଭାଇ,
ଆସ ଆସ ସୁଖୀ ଦୁଃଖୀ ଦରିଦ୍ର
ଅସହାୟ ଭାଇ
ଆସ ଆସ ତୁମେ ସବୁ ଆମେ ସବୁ
ଏକାଠି ହୁଣ୍ଡ ହୋଇ
ଏହି ଅନ୍ୟାୟ ଅବାଧ ସବୁ କରିବା ଚୂର୍ଣ୍ଣ
ସକଳ ମାନବ ଉଦର କରିବା ପୂର୍ଣ୍ଣ ।
ସକଳ ସୁଖ ବାସନା କରିବା ପୂର୍ଣ୍ଣ
ସକଳ ସୁଖ କଳ୍ପନା ସତେ କରିବା ପୂର୍ଣ୍ଣ ।
ଉଠାଇବା ସବୁ ଅନ୍ୟାୟ ଅତ୍ୟାଚାର
ବସ୍ତ୍ର ଦେବା ଅନ୍ନ ଦେବା
ସକଳ ମୁଖ କରିବା ପ୍ରସନ୍ନ ।

ଏହି ଜନମ ଆମର ସାର୍ଥକ କରିବା
ପ୍ରକୃତ ଧର୍ମ ପାଇଁ କରିଣ ରଣ
ଅଧର୍ମ ସବୁ କରିବା ନାଶ
ଅତ୍ୟାଚାର ସବୁ କରିବା ଧ୍ୱଂସ,
ଦୂର କରିବା ସକଳ ବାଧା ଦେଶ ବିଦେଶ
ସକଳେ ଡାକିବା ସଂସାର ଭାଇ,
ତୁମେ ସବୁ ଆସ ଆସ ।

ଦଶ ଦଶ ଆଶ୍ଳେଷ
ରାଜାକୁ କର ପ୍ରଜା ବିଶେଷ
ପ୍ରଜାକୁ କରୁ କର ରାଜା ଶେଷ ।

ସମସ୍ତେ ବୁଝନ୍ତୁ ଭାଇ
ପ୍ରଜାଏ ଏବେ ରହନ୍ତି ନାହିଁ,
ସୁଖରେ, ଦୁଃଖ ତାଙ୍କର ଅଶେଷ
ସକଳେ ପରି କରରେ,
ଉଠନ୍ତି କାଳ ସାଗରେ ତେଉ
କେତେ ଦେଶ କରୁଛନ୍ତି ହାହାକାର
କେତେ ରାଷ୍ଟ୍ର କରନ୍ତି ଚିତ୍କାର,
ସବୁ ରାଷ୍ଟ୍ରେ କରିବା ଜୟ
ନାଶିବା ସବୁ ଅଶାନ୍ତ ଶବ୍ଦ ।

* * *

# ମୋହନ

—୧—

ମୋତେ ଦେଇଛ ପ୍ରଭୁ
ମୁଁ ବାରେ ବାରେ କନ୍ଦେ କାହିଁକ
ମୁଁ ଯେ ଅଜ୍ଞାନ ଜନ୍ତୁ,
ମୋର ମୂର୍ଖତା ତୁମେ ଜାଣିନାହଁ କି ?
ମୁଁ ଯେ ତର ଚାଉଥାଏ ତୁମ ଅନୁଗ୍ରହ
କନ୍ଦେ ପୁଣି ଟିକିଏ ନ ପାଇଲେ
ହେ ଦୟାମୟ,
ଆଜି ସକଳ ଅପରାଧ ଛୁଟାଇବ କି
ପ୍ରଭାତେ ବସି ମୁଁ ଗରବ ଦେଖ ତକ ।
ଆଜି କାହାର ଚରଣ ପୁଲକେ
ଶରୀର ମନ ଏତେ ମହକେ ।
ଯେ ଯେ ବାସ ତୁମର ହେ ଭଗବାନ
ନିତି ବସି କରେ ତୁମଙ୍କୁ ଧ୍ୟାନ ।
ଅପୂର୍ବ ସ୍ନେହ ତୁମର,
ଅପୂର୍ବ ତୁମର ସମ୍ଭାର
ଯୋଗୀ ଯେତେ ଭୋଗୀ ଯେତେ
କର୍ମୀ ଯେତେ ନାନା ଜାତି
ମନୁଷ୍ୟ ଜଗତେ,
ସମସ୍ତଙ୍କର ତୁମେ ଭଳିଛ ଆକାଙ୍କ୍ଷା
ଯାହାର ଯେତେ ।
ମୁଁ ବସି ଧିଆନେ ପାଇନାହିଁ ଯାହା ପୁଣେ
ଆନମନେ ଯେବେ ବସି ରହୁଥାଏଁ
ପୂରାଇ ଦିଅ ସକଳ ଆଶା,
ସକଳ ବାସନା ମନସ୍ଥ ବାଏ ।
ଝିଲ୍ଲିର ଝଙ୍କାର ଟାଳିଛି ଏମି,
ହୁଲାତ ହେଲଣି ପୁଣି

ନାଚଏ ହଟି ଅନ୍ଧାର ମୁଖେ
ଗଲେଣି ଚନ୍ଦ ଚଟିମବକ୍ଷେ
ସାଗଣ ଶୌଚ ସ୍ନାନ ଅବଗାହନ
ଆସିବେ ଘରକୁ ଏବେ ବହନ ।
ଯେଣ୍ଠା କର୍ମରେ କର୍ତ୍ତବ୍ୟ କର୍ମରେ
ଯିବେ ଯେ ମାତି
ମୁଁ ବସିଥିବି ଖାଲି ତୁମକୁ ପଠାଇ ସ୍ତୁତି ।
ଅନ୍ତରେ ପଶିଲେ ଅନ୍ତରେ ପାଇବି
ଅନ୍ତରେ ପାଇଲେ ମନେ ମୁଗ୍ଧ ହେବି ।
ତାହାର ପାଇଁ ସଜଳ ସକଳ କାର୍ଯ୍ୟ
ସେ ନ ଆସିଲେ ସବୁ ଯିବା
ହେବ ଅକାର୍ଯ୍ୟ,
ମଙ୍ଗଳ ଘଟ ଭରିଛି ଆଜି ପୁଣ୍ୟ ସଲିଳେ
ଆମ୍ରଡାଳ ତହିଁ ରହିଲଣି ଅବଲୀଳେ ।
ଶଙ୍ଖ କାହାର ବାଜିଲଣି ଦୂରେ
ପ୍ରଭାତ ନାଗର ମୁଖେ ପୂର୍ଣ୍ଣସ୍ୱରରେ ।
ଦେଲେଣି ହୁଳହୁଳି
ଆସିବେ ସଖା, ସେ ଆସିବେ ଭକ୍ତ
ତବାହର ବେଦ ରହିଛି ଅନାଇ
ହାତରଣ୍ଡି ପଡିବ ମୋହର ସାଥେ
ତାହାର ସ୍ଥଳ ।
ସାଥୀ ମୁହିଁ କୃଷ୍ଣ ଯେ ସେହି
ହୋଇନାହିଁ ମିଳନ
ଖାଲି ଶୁଣି ଶୁଣି ବଂଶୀସ୍ୱନ
ହୋଇଛି ଯିବା ଏପନ ।
ଅପମାନ ଭରେ ହୋଇଛି ଅବନତ ମୁହିଁ
ଆଜି ଆସନ୍ତୁ ସେ କହିବ ତାଙ୍କୁ
ବାସକ ଶଯ୍ୟନ ପରେ ରହି ।

କଳଙ୍କ କାଳିମା ଯାହାର ପାଇଁ
ତାହାର ମନ ପାଇଲେ ସଇ,
ଜଗତକୁ କରିବ ହେୟ
ଜଗତକୁ ମୋର ନ ହେବ ଭୟ ।
ଆସ ଆସ ସହଙ୍ଗ
ହୃଦୟରେ ଆଜ ମୋର ସବାହଘର
ଆସୁଛନ୍ତି ସେ ପରା ମୁରଲୀ ବଜାଇ
ନେଇଯିବେ ମୋ ହାତ ଧରି ତାଙ୍କ ଘର ।

ମୁଁ ନୂଆବୋହୂ, ନୁହେ ଭୁଆସୁଣୀ ନୁହେ,
ଲଗିଛି ମୋ ପରେ କଳଙ୍କିଣୀ ଟିକା,
ସେ ଆସିଛନ୍ତି ଏବେ ସଙ୍ଗେ ନେଇଯିବେ
ମୁଁ ଯେ ହୋଇଛି ତାଙ୍କ ପ୍ରେମେ ବିକା ।
ଆସ ବରଷା ହୋଇ ସରସା
ପରାଣି ଦଅ ପୁଲକ
ଆଜ ଯାମିନୀ ଅନ୍ଧାରେ ଉଗ୍ର ବଜ୍ର ହାଣୁ
ନାହିଁ ମୋର ଆତଙ୍କ ।
ଶତ୍ରୁ ସବୁ ଯିବେ ପଳାଇ ରେ
ମୁଁ ରହିବ ଖାଲି ତାଙ୍କ ସାଙ୍ଗରେ,
ସେ ଯେ ମୋର ପରମ ପ୍ରିୟ
ଚିର କାଳର ଜନ୍ମ ଜନ୍ମାନ୍ତରର,
ସଦା ସ୍ନେହମୟ
ତାଙ୍କୁ ନ ପାଇଲେ ଯିନା,
ମନ ହୁଏ ଆନ ମନା,
ତାହାଙ୍କୁ ପାଇଲେ ପରାଣ ପୁଲକେ
ଭଗପାଏଁ ନ ଥାଏ କାମନା ।
ମୁଁ ପୁଲକ ପୁଲକ ଫୁଲକ ଫୁଲକ
ଯିବ ଛଳକ ଛଳକ ବିଦ୍ୟୁତ୍ ସଙ୍ଗେ
ଝଲକ ଝଲକ,
ମୁଁ ଯେ ପାଇଛି ମୋର ଚିର
ଜୀବନର ସାଥୀ
ସପନେ ଶୟନେ ଲୁଚି ଲୁଚି ଛପି ଛପି
ସେ ମୋ ସଙ୍ଗେ ସଦା ରହିଛନ୍ତି ।

ତାହାଙ୍କ ସାଥେ ରହିବ ତାହାଙ୍କ
ତାହାଙ୍କ ବକ୍ଷେ
ପରମ ସେ ମୋର ନ ପାଇଲେ ଚକ୍ଷେ,
ଅନ୍ଧାରେ ଭରେ ଜଗତ ମୋର
ପାଇଲେ ପୁଣି ପୁଲକେ ଭରେ,
ଅମିୟ ଝରେ ଚନ୍ଦ୍ର ବକ୍ଷେ
ସାଗର ବକ୍ଷ ପୁଲକେ,
ଚକୋର ଚନ୍ଦ୍ରିକା ପାନ କରେ ସୁଖେ ।
ନୀଳ ଅଭ୍ରଖଣ୍ଡ ଦେଖାଦେଲାଣି ଆକାଶେ
ନୀଳମଣି ମୋର ସେ କି ଆସେ,
ବସିଛି ମୁଁ ଲାଜ ଭୟ ତେଜି ତାହାରି ଆଶେ
ବସିଛି ବୋଲି ମାନାପମାନ ତେଜି
ତାହାରି ପାଶେ ।
ବିହଗ ଯେତେ କୃଷ୍ଣର ନାମ ଡାକେ
ଶସ୍ୟ ତରୁଣିମା ଭରେ ମୋହରି ଚକ୍ଷେ
ନୀଳ ଆସ୍ତରଣ ଭରେ ସଂସାରବକ୍ଷେ ।
ନୀଳ ଶ୍ୟାମଳ, ଶ୍ୟାମଳ ନୀଳ, ଯହିଁ ଦେଖେଁ
ପାଇଲେ ତାଙ୍କରି ଜନ ଆଦରେ
ସ୍ନେହରେ ରଖେଁ ।
ଆସ ନୀଳମଣି ତୋ ନାମ ଶୁଣି
ବସିଛନ୍ତି ରାଧିକା
ବସିଛନ୍ତି ସକଳ ସଖୀ,
ବସିଛନ୍ତି ଜଗତ ଯାକେ,
ମୁରଲୀ ଫାଙ୍କେ ଯେ ଡାକଇ କେ,
ରାଧା ରାଧା ନାମ ବୋଲୁଛି କେ ।
ମୁଁ ଯେ ସାରା ନିଶି ବସିଛି
ଆସିବେ ପରା ସେ
ଆସୁଛନ୍ତି ପରା ସେ ମୋ ପରାଣ ହରଷେ
କିଏ ମୋର ପରାଣ ଧନ ସେ ।
ସାଜ ସାଜ ମାଳ ମାଳ ରଖିଛି ତନୁ
ଦେବ ତାଙ୍କ ପାଶେ ।
ମୋର ପ୍ରିୟ ଯେ ସେ,
ନାହିଁ ଆନ ପ୍ରିୟ କେ ।।

—୨—

ଶରତ ଆକାଶେ ନୀଳ ସ୍ଥିର ଆକାଶେ
ଶୁଭ୍ର ଶାନ୍ତ ଶଯ୍ୟାନ ବଉଦ ସେ,
ରହିଛି ତହିଁ ଅନାଇଁ ଉଜ୍ଜ୍ୱଳେ
ମୋ ପାହାନ୍ତିଆ ତରା ସେ,
ଅଛନ୍ତି ଆକାଶ ଭରିକ ଆଉ
ଗୋଟେ ଦୁଇଟି ଅପର ତାରା ସେ ।
ମୋ ଉଜ୍ଜ୍ୱଳ ନିର୍ମଳ ପାହାନ୍ତିଆ ତାରା
ଫୁଟା ଫୁଲ ପରି
ସଜଫୁଟା ଫୁଲ ପରି ଭଦ୍ୱସି, ରହିଛି
ସ୍ଥିର ଭଦାପୁସି,
ମୁଁ ସେ ତାଙ୍କୁ ରଜନୀ ଶେଷରେ,
ନିତ ଦେଖେଁ ରେ
ସେ ଯେ ମୋତେ କି ପ୍ରେମେ ଚାହେଁ ରେ ।
କି ସଙ୍ଗତରେ ଉଦ୍ଦାମ ଭାଷା କହେ ରେ
ଅବା ନୟନକୋଣେ ସେ ଭାଷା ରହେ
ସକଳ ଅନ୍ତର ଦେଇ ସେ ଯାହା କହେ ।
ସ୍ତବ୍ଧ ମୌନ ସ୍ୱରଆଡ଼,
ଅନେକ ପଡ଼ିଛି ସାମାନ୍ୟ,
ଭୋର ପାହାନ୍ତିଆ ପ୍ରଭାତ ତାରା ମୋର
ଅନ୍ତର ମୋର କରେ ମୋତେ ଆହ୍ୱାନ
ଆସ ଆସ ହୁଅ ବାହାର ।
ଦେଖ ଶିଖ ସ୍ତିମିତ ସ୍ତବ୍ଧ ଚରାଚର
ସ୍ତିମିତ ସ୍ତବ୍ଧ ଗହନ କାନନ, ଗିରି ନିର୍ଝର
ଆସ ଆସ ହୁଅ ବାହାର
ସେ କି ମୋତେ ନ ଲୋଡ଼େ ?
ମୋ ଶରୀର ଲୋଡ଼େ,
ମୋ ଚରଣ ଲୋଡ଼େ, ଧାଇଁଯାଏ ସ୍ୱର ଆଡ଼େ
ଝୋଳପଡ଼ିଆରେ ଖୋଜେ ମୋତେ
ନଈର ତଟେ ନିରଜନ ବାଟେ
ରାତ ହେଲେ ନିଶୀଥେ ଆକାଶେ ଅନ୍ତରେ
ମୋ ନାମ ରଟେ ।
ତାରକା ସାଥେ, ସେ ଛାଡ଼ୁନାହିଁ ମୋତେ
ଛାଡ଼ି ନ ପାରେ ମୋତେ,
ସେ ଖୋଜୁଛି ଯେତେ,
ପାଉନାହିଁ ମୋତେ, ତାର ପ୍ରାଣର
ମନର କଷ୍ଟ କେତେ,
ଯିବ କି ସତେ, ଲୋକ ଅଛନ୍ତି ଏତେ
ପଶୁପକ୍ଷୀ ଏତେ, କେହି ଯାହା ଦେଇ
ନାହାନ୍ତି ତା ସଙ୍ଗତେ,
ଚଳାଇ ଆସିବ କା ସାଥେ
ଖୋଜି ଖୋଜି ମୋତେ ।
ଆଜି ପ୍ରଭାତେ, ସେ ଆସିବ ସତେ,
ମୁହିଁ ଯେବେ ନ ଥିବି, ମନର ଭକକେ
ତାକୁ ସିନା ଫେରାଇବି ।
ପ୍ରଭୁ ନ କରନ୍ତୁ ଏସନ,
ସେ ମୋର ଜୀବ ଜୀବନ
ରହୁ ଦିନ ଦିନ, ଆନନ୍ଦ ମନ
ମୁଁ ପଛେ କଷ୍ଟ ଲଭେଁ,
ସେ ନ ଲଭୁଁ ଆନ ।

—୩—

ଉଷା ଆସୁଛି ଉଇଁ,
ସମସ୍ତ ରାତି ଯାଉଛି ଖୁହିଁ
ପୂର୍ଣ୍ଣିମା ଚନ୍ଦ୍ର ଚଳି ଯାଉଛନ୍ତି ପଶ୍ଚିମେ
ମ୍ରିୟମାଣ ଆଲୋ ଅସ୍ତମିତ ଏବେ ।
ପୂର୍ବ ଗଗନେ ଉଦିଛି ନୀଳ ନଭେ
ନୀଳ ତାରା,
ଅପୂର୍ବ ସେ ମୋ ମନନନ୍ଦନହାର
ପାହାନ୍ତିଆ ତାରା
ଅଖଣ୍ଡ ରାଜତ୍ୱ କରୁଛି ସେ
ଅଛନ୍ତି ଆହୁରି ତାରକା ହଟଶଟେ ।
ପରମାୟୁ କାହାର ଯାଉଛି ଲିଭି
ତଥା ଜ୍ୱଳି ଜ୍ୱଳି ଯାଉଛି ଲିଭି

ମଶାଣି ପାଶେ ମୁଁ ପଡ଼ିଛି
ନିଃଶ୍ୱାସେ ସାଥି ନାହିଁ ଯେ
ପାଶେ ଅଛି ମୋର ଶ୍ୱାନ ସେ
ଦେଖିଛି ସ୍ୱପ୍ନ ନିଶୀଥ ଶେଷ ଆସିଛି କି ସେ ।
ପରିଚିତ ସେ ନୁହେଁ ନୂତନ ଯେ ସେ
ଶୁଣିଲି ଅବଶେଷେ ଭୀଷଣ ଶ୍ୱାସ ସେ
କାଳସର୍ପର ଶ୍ୱାସ ଯେ ସେ ।
ଆମ ଘରର ଆର ପାରି ସେ
ଜଣାଇଲା ନିଦ୍ରା ଭାଙ୍ଗିଲା ମୋହର ଯେ ।
ସମସ୍ତ ସରି ଯାଇଛି ବନ୍ଧୁ
ମହାନଦୀ ବିରୂପା ପଦ୍ମିତ ଧୋ ଧୋ କରି
ଯାଉଛନ୍ତି ଯାତ୍ରୀ ଅସଂଖ୍ୟ ମହାନଦୀ
ସେତୁ ହୋଇ ପାରି ।
ଝପଣେ ଯାଉଛି ରେଳ ଶବ୍ଦ କରି
ମୁଁ ପଡ଼ିଛି ଏକାକୀ ଆକାଶ ତଳେ,
ବାସନା କି ମୋର ନାହିଁ ?
ରହିବି, ରହି, ରହିବି,
ମୁଁ କାହାରେ ଖୋଜେ ଯାଇଁ ?
ଅଛି ଆକାଶ ଅବନୀଭରି,
କେତେ ଜୀବଜନ୍ତୁ ପରି,
ତଥାପି କାହାକୁ ନ ପାଇ
ମନ ହୁଏ କେମନ ଭାଇ
ସେ କି ଆସିବ କାହିଁ ?
ମୋ ଜୀବନ ଯିବ ବନ୍ଧୁ ?
କୃଥାରେ ତା ମୁଖ ଚାହିଁ,
ପରସ୍ପରେ ଆଲିଙ୍ଗିତ ନ ହୋଇ,
ବୃକ୍ଷ ସମାଜ ପର୍ବତଶ୍ରେଣୀ ସମ ଆଜ
ଅବା ଦେବତା ସମ ବିରାଜ
ଯାହାନ୍ତିଆରେ ରହିଛନ୍ତି ଧୀର
ଦେଖି ଦେଖି ଅଧୀର,
ରହିଯାଅ ରହିଯାଅ ରହିଯାଅ ତେସନେ
ଅନନ୍ତ କାଳ ଧରି ରହିବ ଯେ
ସେ ତୋ ସନେ ।

—୪—

ସାନ୍ତ ସସୀମ ମୋହର ଜୀବନ ହେ ପ୍ରଭୁ !
କରି ଅସୀମ ଅସାନ୍ତ
ଜୀବନେ ଆଣାଅ ନବ ବସନ୍ତ । ୧ ।
ହେ ପ୍ରଭୁ !
ବାରିଦମାଳା ଆବୋରି ରଖିଛି
ଗଗନେ ଭୁବନ
ଜୀବନ ମୋହର ଆବୃତ କରିନାହିଁ ଗମନ
ଦିନ ଦ୍ୱିପ୍ରହରେ କଠୋର ସଂସାରେ
ମହା ଊର୍ମି ପରେ
ହେ ଦୟାମୟ ! ଦେଖାଯାଅ
ମୋତେ ସୁନ୍ଦରେ ଭୁବନରେ ।

—୫—

ବିରହ ବେଦନା ବାଜେ
ଦିନ ମଳୟ ପବନ ବହେ
ଝିରି ଝିରି ସ୍ୱନେ ମାନସ
ମୋହର ଏକାକୀ ।
କାହାର ପରଶ ପାଇ ପୁଲକେ ଭରେ ଚିତ୍ତ
ପ୍ରାଣ ଏବେ ବ୍ୟଥିତ
ବ୍ୟଥା ସେ ବିଶ୍ୱରେ ।
ସୁଦୂର ପ୍ରବାସେ ଅଛି ଜନ ପାଶେ
ହୋଇଲି ବିଦେଶର ଏବେ ସବୁ ଦକା ।
ବିଅର୍ଥ କଲି ପ୍ରାଣ ଖରାପ ହେଲି ଜାଣ
ଭାବୁଛି ଏବେ ମନ କି ଦୁଃଖ ବିଶ୍ୱର !
ମାତା ମୋର କାନ୍ଦେ
ପ୍ରେମ ମୋତେ ବାନ୍ଧେ
ଦେଖି ନରନାରୀ ହେଲି ଦକା ଦକା ।

—୬—

ଫାଟି ପଡ଼ିବାର କରମ ଆମ୍ଭର
ଜାତି ପରି ଲକ୍ଷ୍ମୀବର
ଫିଟାଇଲ ଏହି ଦିନେ ଦୟା ବହି
କୃପା-କଟାକ୍ଷ ଦୁଆର ହେ
ଲକ୍ଷ୍ମୀଧର

ଫେଡ଼ ଅଜ୍ଞାନ ଅନ୍ଧାର
ଫୁଟାଇ ଦେଇଛ    ଦେଶସେବା ପୁଷ୍ପ
ବାହୁଡା ଶିରେ ଆନ୍ତର । ୧ ।
ଫକୀରମାନଙ୍କ    କୁଟୀରରେ ତବ
ପଡ଼ିଛି ଚରଣରଜ
ଫୁଲ୍ଲର ଉଠିଛି    ଶୁଷ୍କ ତରୁ ଫଳ
ନବ୍ୟତେଜ ହେଲା ସତେଜ ହେ
କଣ୍ଟବର
ଫୁରୁସତ ନାହିଁ ଦଣ୍ଡେ
ଫଭୁଙ୍ଗ ସମାନ    ବୁଲିଲ ଆପଣ
ନୂଆପଡ଼ା ଧୂଳିଦାଣ୍ଡେ । ୨ ।

ଫାଟି ଫୁଟି ଯାଏ    ତବ କ୍ଷୀଣ ଅଙ୍ଗ
ଶୁଣିଲେ ଦରିଦ୍ର ଡାକ
ଫଜିତ କରିଛ    ସକଳ ଉଦ୍‌ବେଗ
ହୋଇ ଭାରତସେବକ ହେ
ସେବକବର
ଫରକ ନାହିଁ ତ ମନେ
ଫନ୍ଦ ଫିକର ନ    କଲ ହେ ଦେବତା
ବସାଇଲ ହୃଦାସନେ । ୩ ।

ଫୁଲି ମହାନଦୀ    କାଠଯୋଡ଼ି ଆଦ
ଭସାଇଲା ଘର ଦ୍ୱାର
ଫୁତ୍କାର ସର୍ବସ୍ୱ    ହୋଇଲା ଜଳସ୍ଥ
ଭାସିଲେ ଅସଂଖ୍ୟ ନର ହେ
ଦୟାବର
ଫୌଜକୁ ନ କଲେ ଭୟ
ଫଟା ଡଙ୍ଗିଆରେ    ଅଗାଧ ଜଳରେ
ଉତରି ଦେଲ ଅଧାର । ୪ ।
ଫାଟିଲା ମେଦନୀ    ଭୂମିକମ୍ପେ ପୁଣି
ଲୀନ ହେଲେ କୋଟି ନର
ଫଭୁର ସମାନ    ବୁଲି ନାନା ସ୍ଥାନ
ଭିକ୍ଷା କଲ ନାନା ସ୍ଥାନ ହେ
ଫକୀର

ଫେରିଲା ଭାଗ୍ୟସମ୍ପଦ
ଫଳ ପୂର୍ଣ୍ଣ ହେଲା    ମୁଜାଫରପୁର
ବରଜ ଘୋର ବିଷାଦ । ୫ ।
ଫୁର୍ତ୍ତି ନାହିଁ ମନେ    ଶ୍ରୀମୁଖ ବହନେ
ବହୁଛି ଲୋତକଧାର
ଫରମାସ କର    କେବେ ଗୁମ୍ଫୁଙ୍କର
ପୂଜିବୁଁ ପଦ୍ମପଦୂର ହେ
ଜ୍ଞାନବର
ଫିକା ହୋନ୍ତୁ ତୁମ୍ଭ ମନ
ଫନ୍ଦାଧନ ପ୍ରଭୁ    ଫଭୁଆ ଜନଙ୍କ
ଏଣୁ ଆମ୍ଭ ନିବେଦନ । ୬ ।
ଫିଟା ଛୁଟା ପ୍ରାଣ    ଯୋଡ଼ା ପ୍ରତିଭା ସେ
ତବ ଶ୍ରୀଚଲଖମା ଝରେ
ଫିଟାଇ ପଡ଼ିଲୁଁ    ତବ ସ୍ନେହପଦ
ଅଫିସ ଗୃହମଧ୍ୟରେ ହେ
ସ୍ନେହିବର
ସ୍ଥଳକୁ ଗଲା ପରାଣ
ଫୁଟାଇ ନ ପାରେ    ଏ କ୍ଷୁଦ୍ର ପଦରେ
ଲଙ୍ଗା ଲୋକଙ୍କ କ୍ରନ୍ଦନ । ୭ ।
ଫରମାସ ହେଲା    କୃଷ୍ଣମୂର୍ତ୍ତିଙ୍କର
ଲେଖିବାକୁ ସ୍ନେହୋତ୍ତର
ଫ ଅନୁପ୍ରାସରେ    ଲେଖିଲି ଡରିଷେ
କ୍ଷମା ହେଉ ଦୋଷ ମୋର ହେ
କ୍ଷମାସାର
ଫରିଆଦ ପିଲାଙ୍କର
ଫେର୍ ଆଉ କେବେ    ସାହାସ ଦେଖିବେ
ଏଣୁ ଭିକ୍ଷା ଦାସଙ୍କର । ୮ ।

—୭—

ଏଣୁ ସବୁ ତୋର ରାଜନୀତି ନିୟମ ରେ
ବୁଝି ବ୍ୟବହାର    ଅପୂର୍ବ ସୁନ୍ଦର
ତୋହର ଈଶ୍ୱର ସେ ରେ । ପଦ ।

ଧିକ ଧିକ ତୋତେ ଜନମ ଲଭିଲୁ
ଏଥିପାଇଁ କରେ
ଝରୁ ଝରୁ ବଢ଼ି ପଡ଼ି ପଡ଼ି ପଡ଼ି
ହେଲୁ ପଶୁ ଏବେ ତୁ ରେ । ୧ ।
ଗଜମୋତି ଦନ୍ତ ଲୁଚି ପଶୁ ବକ୍ଷ
ଦେଲୁ ପଶୁ ଚତୁରରେ
ନୁହେଁ ନୁହେଁ ନୁହେଁ ଏହା ତୋ ଜୀବନ
ଜାଣିଥା ତୁହି ଏଥିରେ । ୨ ।
ଅଛି ତୋ ମରଣ ଧିଆନ କରଣ
ବନ୍ଧୁଙ୍କୁ ଥାଆ ଅନ୍ତରେ
ଘାସ ଅଧ କରି ନିଜ ଚିନ୍ତା ଭରି
ଖାଇବୁ ତୁ ଜାହାକୁ ରେ । ୩ ।
ତୋତେ ଖାଇବ ଯେ ନିଜ ଚିନ୍ତା ସରି
ପିବ ପଶୁ ମହତ ରେ
ବେକ ଥାଉଁ ଥାଉଁ ଭୁଲନା ରେ ଆଉ
ଜୀବନ କର ଉଚ୍ଚରେ । ୪ ।

—୮—

ମୁଁ କ୍ଲାନ୍ତ ପଥଶ୍ରାନ୍ତ
ପାଶେ ନାହିଁ ମୋର କାନ୍ତ ।
ସନ୍ଧ୍ୟା ଆହୁରି ବଧୂ ପରି
ଧରଣୀର ମୁଖ ଅନ୍ଧାରେ
ଦେଇ ନାହିଁ ଆବୋରି ।
ମୁଁ ବିଜନେ ବସି ମନେ ହୁଏ ଆନମନ
ଜାହାକୁ ପାଇଲେ ପରାଣ ପୁଲକିବ
ହେବ କି ତାହାର ଆଗମନ ।
ସୁଖର କି ଏହି ଗୀତ
ଚଞ୍ଚଳ ଗତି ଚହଟି, ପଶୁ ସେ ରେ ।
ଦୁଃଖର କି ଏହି ଗତି
ଝରି ଝରି ହେବସ ହେବସ ବସି ବସି ଯାଏ ରେ
ସବୁ ଅଛି ଲୋକ, ମାନ, ସମ୍ପତ୍ତି, ସମ୍ମାନ
କିନ୍ତୁ ନାହିଁକି ମୋ ମନ ହୁଏ ରେ ଏପନ ।

ବନ୍ଧୋ ! ସଖେ ! ତୁମେ କି ନିରେଖ
ଚିତ୍ତରେ ମୋର ସୁଖ ?
ସେତିକି ହେଲେ ବସିବ ସ୍ୱର୍ଗେ
ଆସିବ ଯେବେ ଧାଇଁ ।
ସୁଖେ ମୋର ସୁନାର ସଖା
ବ୍ୟଥା ନ ପାଇ ରହିଥାଉ
ପୁଲକୁ ଶତ୍ରୁ, ତାହାର ଚିନ୍ତା
ମୋତେ ଅମିୟ ଦେଉ ।

—୯—

ଜାହାର ପରଶ ଲାଗିଛି ମୋ ହୃଦୟେ
ଜାହାର ପାଇଁ ବାରିଝର ନିରମଳ ଚନ୍ଦ୍ରରେ
ଦେଖି ହେଲା ଉଦାସ ମନ
ଅନୁଭବିଲ ସେ କି ଶୂନ୍ୟ ।
ଭୁଲି ଭୁଲି ଗଲ ଜାହାର ଆଣେ
ସାଙ୍ଗେ ଦେଇ ମୋର ବନ୍ଧୁ ସେ ।
ସେ ତ ହରଷେ ବିଲୋକିଲ
ମଧୁସ୍ମିତେ ନ ପୁଲକିଲ ।
ସେ ତ କହିଲ କଥା
ସକଳ ସାଥେ ପ୍ରେମେ କେତେ
ନାହିଁକି ନ କହିଲ କଥା ମୋହର ସାଥେ ।
କେତେ ପ୍ରେମେ ଧରେ ଅପର ହାତ
ଛୁଇଁଦେଇ ମୋ ହାତ ହେଷ କି ସେ ପତ ।
ସେ କି ମୋହର ପାଇଁ
ସକଳ ଠାରୁ ମୋତେ ଉଚ୍ଚେ ରଖିବା ପାଇଁ,
ପ୍ରେମେ ରସାଣେ ହରହେ ଧସେ
ପରଖିଛି ତ ମୋତେ ଆଜି ପରଖିବ କେତେ
ହୋଇନାହିଁ କି ଆହୁରି ପ୍ରତେ ?
ପରର ସାଥେ ତାହାର ଯେତେ ସରସ କଥା
ନାହିଁ ମୋହର ସାଥେ
ହେଲା ନାହିଁ ତ ଲାଗିଲା ବ୍ୟଥା ।

ମୁଁ କର୍ମହୀନ ଅବା ଭାଗ୍ୟବାନ
କହି ନ ପାରେ ମୁଁ ବର୍ତ୍ତମାନ,
ହୁଏତ ସ୍ୱର୍ଗେ ରଖିବା ପାଇଁ ମୋତେ
ନିର୍ମଳ ଚନ୍ଦ୍ରମା ହାତଥି ।
କଳଙ୍କଟିକା ମୋ ନାମେ ନ ଲାଗୁ
ତା ନାମେ ଲାଗୁ ପଛେ ଯେତେ ।
ଜାଣେ ନାହିଁ କାହିଁ ପାଇଁ ଏପରି ଭାବେ
କରମ ମୋହର
ପରୀକ୍ଷା କଲ ଅନେକ ଭାବେ ।
ଅବା ସେହି ସେ ମୋର
ତା' ବୁଦ୍ଧି ବ୍ୟବହାର
ବୁଝି ନ ପାରି ହୁଏଁ ବ୍ୟଥିତ
ମୁହିଁ ହେବି ଯେଉଁ ସୁନ୍ଦର ଭବେ
(ସେଥିପାଇଁ) ଦୂରେ ରଖେ କି
ମୋତେ ବାହାର ଅନୁଭବେ ।
ଧଇରଯ ଧରି ବୁଝିବି ଯେପରି
ବୁଝାଇବ ସେହି ମୋତେ,
ଏତିକି ସେହି ଦାରୁଣ ବେଦନା
ମୋର ହେବ ଅପଗତେ ।
ବୁଝିବାର ଭୁଲ ହେଲେ
ବ୍ୟଥା ହେବ ବଡ଼େ
ମୋହର ତାହାର ପୁଣ
ହୁଏତ ସେ ଅଜ୍ଞାନ କ୍ଷମାଯୋଗ୍ୟ ପୁଣ
ମୁଁ ତ ନୁହେଁ ନୁହେଁ ରେ ।
ବୁଝି ବିଗୁରି ତେବେ କାର୍ଯ୍ୟ କରେଁ ।
ଥିବ ତେବେ ସୁଖେ ଦୁଃଖେ ତାହାର ହୋଇ
ମନେ ପ୍ରାଣେ ବରହେ ଦହନେ ରହି,
ନେଇଛି ଯେ ପରାଣ, ତାଠାରେ ଅଛି
ମୁଁ ବସି ବସି କେବଳ ସେହି କଥା ଭାବୁଛି,
ମୋର ପରାଣକୁ ନେଇଛି ସେ ଯେବେ
ଅନ୍ତରେ ପ୍ରେମରେ ଅବଶ୍ୟ ରଖିବ ତେବେ
ତେବେ ମୁଁ ମୂରଖ, ହେବ ପାପଭାଗ
ଭୋଗି ମୁହିଁ ତାହା ପାଇଁ ଏ ହପାଢ ।
ଜାଣିବ ଯେ ଯେବେ ବିରହେ ଦହି
ମିଳନେ ତେବେ ଅପରୂପେ ମିଳିବା ପାଇଁ,
ଯେ ଆଜ ମୁହିଁ ରହିଥିବେ ସକଳେ ରୁହି ।
ଦୋଷିବି ନାହିଁ କେବେ ତାହାରେ
ମୋତେ ଯେ ଦେଇଛି ନୂତନ ଜନମ ରେ ।
ଏତେ କୃତଘ୍ନ ହେବି କାହିଁ ପାଇଁ
ଧୈର୍ଯ୍ୟ ଧରି ରହେ ମୁହିଁ ରହି ।
ମୁଁ ହି ସ୍ୱାର୍ଥରେ ଜଡ଼
ଦୁଃଖରେ ଯାଏ ଭରି,
ହେବି ସ୍ୱାର୍ଥଶୂନ୍ୟ
ଜୀବନ ହେବ ପୂର୍ଣ୍ଣ,
ଆଲୋକିତ ହେବ ସବୁ ଭୁବନ ।
କିନ୍ତୁ ସ୍ୱାର୍ଥ ନାହିଁ ?
ମୁଁ ତ ତା ସ୍ୱାର୍ଥେ ରହି
ଧାଏଁ ତା ପାଶେ
ବଳିବାକୁ ମୋ ଚିତ୍ତ ହେ ।
ସେ କି ଏ କଥା ଭାବେ
ଆପେ କି ଏହା ଅନୁଭବେ ?
ନିଶ୍ଚେ ନିଶ୍ଚେ ସେ କରୁଣାମୟୀ
ଏତିକି ମୋର ଜଗତ ସମ୍ପଦ
ତୋ ଆଖି ରହୁ ଲାଗି
ମୋ ଆଖିରେ ସେ ଯେ ଚିରପ୍ରିୟ ।

—୧୦—

ମୁହିଁ ପାଗଳ ମୁହିଁ ପାଗଳ
ଜଗତ ବ୍ୟବହାର କରିଛି ମୋତେ ପାଗଳ,
ହୀନ ଦୁଷ୍ଟ ଠକ ବ୍ୟବହାର ଲୋକଙ୍କର
କରିଛି ମୋତେ ପାଗଳ ।
ମୁଁ ତ ରହେଁ ସ୍ୱଚ୍ଛ ନିର୍ମଳ ହେବାପାଇଁ
କାହିଁକି ମୋତେ ଏପରି ଲୋକ ଜୁଟିଛନ୍ତି ଭାଇ,
ମୁଁ ବାଧା ପାଇ ପାଇ ଗଲିଣି ସଡ଼ି
ମୋର କରମ ବନ୍ଧନ କେସନ ଯିବ ଏଡ଼ି ।

—୧୧—

ମୁଁ ଶରୀରର ପୁଲକ ଖୁଟେଦନା
ମନର ପୁଲକ ଖୁଟେଁ,
ମାତ୍ର ଶରୀର ନଗିଡ଼
ମନ ପୁଲକେ କି ହେ ?
ଅଛି କି ଆଉ ଅମିୟ ରସେ ?
ସେ ରସେ ରସିଲେ
ମନ ଆନନ୍ଦେ ଭାସେ
ଯେଉଁ ରସେ ପିଉ ମଜ୍ଜି
ଦିବସ ରାତି ରହିବ ମଜ୍ଜି,
ପାପ ଲାଗେ ତାର ଶରୀର ସୁଖେ
ତେବେ କିମ୍ପା ସେ ପାପେ ମରେ ଝୁରେଁ ।
ଯାଉ ତେବେ ଶରୀର
ଠିଆ ହେଉ ହୋଇ ଦୂର
ମୁଁ ପିଇ ଅନ୍ତର ସେଜ ଦଉଡ଼ି,
ଯୁଆଡ଼େ ପିଇ ପାପ ହେବ ଘଉଡ଼ି !
ଶରୀର କି ପାପ ବଢ଼ାଏ
ମନରେ ଯଦି ପାପ ଥାଏ ।
ତେବେ କିମ୍ପା ଶରୀରେ ହୋଏ ?
କିଛି ବୁଝି ନ ପାରେ ।
କାହିଁ ପାଇଁ ହେଉଛି ରୋଷ
ଶରୀର ସହ ମନ ସୁଖ ପୁଣ୍ୟେ
ଦୁଇ ରହିଥାଉ ସେ ।

—୧୨—

ଧାତା ରଚିବାକୁ ନାରୀ,
ଦେଖିଲେ ନର ରଚନାରେ
ସବୁ ଦେଇଛନ୍ତି ସାରି;
ଭାବିଲେ ତେଣୁ ସଂଗ୍ରହ କରି
ରଚିବେ ସେ ନାରୀ ।
ସଂହାରିଲେ ତେଣୁ ଚନ୍ଦ୍ରର
ବର୍ତ୍ତୁଳ ଆକାର,
ଲତାର ଲହକ ସୂକ୍ଷ୍ମ ସୂହ ପତର,
ଘାସର କମ୍ପନ ଶରର ଯେ ସରୁପଣ
ପୁଷ୍ପର ପ୍ରସ୍ଫୁଟନ; ପତର ନର୍ତ୍ତନ,
ହସ୍ତୀର ଗମନରୁ ଶୁଣ୍ଢଧାରା
ଭ୍ରମରର ପୃଷ୍ଠଧାରା,
ଅରୁଣ କିରଣର ମଧୁ ଉଜ୍ଜ୍ୱଳତା
ବାହ୍ୟର ସ୍ପନ୍ଦନ ପବନର ଚଞ୍ଚଳତା,
ଠେକୁଆର ଭୀତି ମୟୂରର ଅହଂକାର
ଶୁକର ବକ୍ଷ-କୋମଳତା
କାଠିନ୍ୟ ପଥରର ।
ମଧୁର ମିଷ୍ଟତା ବ୍ୟାଘ୍ରର ନିର୍ଦ୍ଦୟତା
ଅଗ୍ନିର ଦୀପ୍ତ ତେଜ ତୁଷାରର ଶୈତ୍ୟ,
କାକର କା' କା' କୋକିଳର କୁହୁ କୁହୁ
ସାରସର ଅସାରଲ୍ୟ
ଚକ୍ରବାକର ବିଶ୍ୱସ୍ତତା ।

ରଚିଲେ ନାରୀ ବିଧାତା ମିଶାଇ ଏତେ
ଉପହାର ଦେଲେ ନାରୀ ନର ହାତେ ।
ନାରୀ ସେନ ନର ରହିଲେ ସାତ ଦିନ
ତହିଁପରେ ଆସି ବିଧାତା ପାଶେ
କଲେ ବଖାଣ ।

ନାହିଁ ଲୋଡ଼ା ମୋର ଏହି ନାରୀରେ
ଦିନ ରାତି ମୋତେ କରୁ
ହରବର କରେ ।
କଏ ତାହାପାଇଁ ଦିନ ରାତି ନାହିଁ
ଜଗି ବସିବ
କଅ କଅ ବ୍ରହ୍ମ ଫେରାଇ ଦେଇଥିଲ
ଯେଉଁ ବିଭବ ।
ଧାତା ନେଲେ ଫେରାଇ,
ନର ଏବେ ଆପଣା ଘରେ ଚଳଇ ।
ସାତଦିନେ ପୁଣି ନର ଆସିଲେ ଫେରି
କହିଲେ, ବିଧାତଃ,
ନାରୀ ଅଭାବେ ନିର୍ଜନ ଲାଗୁଛି ଘର ।

ଜାଣୁଥିଲି ସେ କେତେ
ଚାହୁଁଥିଲା ଯେତେ
ଆଖିକୋଣେ ପୁଣି ସେ
ଖୋଜୁଁଥିଲା ମୋତେ ।
ଖେଳୁଥିଲା ମୋ ସାଥେ,
ଭିଡ଼ୁଥିଲା ମୋତେ ଯେତେ
ହସୁଥିଲା ତାର ସଙ୍ଗୀରେ, ରୂପ ତା'ର
କରୁଥିଲା ପ୍ରୀତ ମୋତେ ।
ପରଶେ ତାହାର ହରଷ
ହେଉଥିଲା ମୋହର
ବଣନ୍ତୁ ମୋତେ ଫେରାଇ
ନାଶ ବିନା ରହି ନ ପାରଇ ।
ଇଷ୍ଟା କହିଲେ ଭଲ କଥା
ନଅ ତେବେ ତାକୁ ଫେରାଇ
ଭଲ କଥା ଶୁଣି ଖୁସି ହେଲ ମୁହିଁ
ରହ ନୀଷ ସହ ଲୁହି ।
ମାତ୍ର ପୁଣି ତନବନ ପରେ,
ନର ଆସି ଆପତ୍ତି କରେ
ବଧୀରଃ, ଜାଣେ ନାହିଁ
ମୁହିଁ ଏ କପଟ ତ ।

ଚଉଶେଷେ ମୁହିଁ
ସ୍ଥିର କଲି ରହି
ନାଶ ସୁଖଠାରୁ ଦୁଃଖ ବଏ
ଅଧିକେ ତହିଁ,
ଏଣୁ କରୁଛି ମିନତି ନଅ ପୁଣି
ତାକୁ ଫେରାଇ ।

ଇଷ୍ଟା ଏଥର ହୋଇ ରୁଷ୍ଟ କହିଲେ,
ଦୁଷ୍ଟ ଯାଅ ଦୂର ହୋଇ
ବାରମ୍ବାର ମୋତେ ବିରକ୍ତ କର
ଯାହା ପାର ତାହା କର ନାଶକୁ ନେଇ ।

ତୁମେ ନର,
ନାଶ ସାଥେ ରହି ନ ପାର ?
ତାହା ଅଭାବେ ପୁଣି ତାହାକୁ ଧ୍ୟାନ କର ।

କ କଶବ ନର,
ଯେବେ ନାଶ ଗଲା ସେଠି
କହିଲା ବଡ଼ ହରବର ନାଶ ସାଥେ
ପୁଣି ନାଶ ବିନେ ରହି ନ ପାରଇ ।

* * *

# ଯାଚଯାରା

## ପ୍ରଥମ ସ୍ପର୍ଶ

କେଉଁ ଦେଶୁଁ ପକ୍ଷୀ   ଆସିଅଛୁ ଉଡ଼ି
କେଉଁ ଦେଶେ ଯିବ କହ ।
ଦେଶେ ଦେଶେ ବୁଲି   ଦେଖିଲ ଅନେକ
ନିଜ ଘରକଥା କହ ॥

ନିଜ ଘର ଛାଡ଼ି   ଘରେ ଘରେ ମୁହିଁ
ବୁଲିଲି ଦିନା ଅନେକ ।
ନ ଜାଣିରେ ମାଡ଼ି   ଅନ୍ଧକାରେ ଅନ୍ତ
ଥାପିଲି ନିଜର ବୁକ ॥
ଦେବ-ଦୁର୍ଲଭ   କିଛି କି ମୋହର
ଅଛି ପାଶେ ? ନାହିଁ, ନାହିଁ ।
ଦେଖ ଅବା କିଣ   ବୁଝି ନ ପାରଇ
ହୁଏ ତେଣୁ ହାଇଁପାଇଁ ॥

ସୁଦୂର ବାଲ୍ୟତେ   ବାଳକ ମନରେ
ଥିଲି ଯେବେ ସଦା ମାତି ।
ମୋ ଅଙ୍ଗେ ମାଆ   ସ୍ୱବାନ୍ଧ ବନ୍ଧନେ
ଛନ୍ଦିଦେଲା ମତେ ଶାନ୍ତ !
ଜୀବନ ମୋହର   ଧାଏଁ ଖରତର
ଶଇଳ ଶିଖର ଦେଶେ ।
ସୁନୀଳ ସାଗର   ଅଭିମୁଖେ ମୋର
ଧାଇଁଛି ଶତ୍ର ବିବଶେ ॥
ମନେ ପଡ଼େ ଆଜି   ବାଲ୍ୟ ସଖାସଖୀ
"ସର୍ଦ୍ଦା", "ବୁଢ଼ୀ", "ନେହମଣି"
ଗଲେଣି ସକଳେ—   'ବୁଢ଼ୀ' ଖାଲି ଅଛି
ନିଜ ଦୁଃଖ ଗଣି ଗଣି ॥

ସବେ କେତେ ଥର ଯେବେ ବାଲେଶ୍ୱର
ଯାଏଁ ମୁଁ ମଝି ମଝିରେ ।
ନେହମଣି ମୋର   ଥାଆନ୍ତା କି ଆଜି
ଭେଟନ୍ତା କି ପ୍ରୀତିଭରେ ॥
ସରଦା ସଙ୍ଗରେ   ଖେଳୁଥିଲୁଁ କେତେ
ଘର ଖେଳୁଥିଲୁ ସେଠି ।
ଅଣ୍ଡିରଚଣ୍ଡୀ ସେ   କହୁଥିଲେ କେତେ
ଆହା ! ଆନ୍ତା ପଣ ରହି ॥
ବଡ଼ ଦୁଷ୍ଟ ମୁହିଁ   ଦୌଡୁଥିଲି ପାଇଁ
ଘରୁ ଯେ କେତେ ଚଉପା ।
ଜାଣୁଥିଲି ମାଆ,   ବାବା କିଛି ନାହିଁ
ଶତ୍ରୁ ତାଙ୍କ କି ସରସା ॥
ପାଣିରେ ବୁଡ଼ିବ   ଗଛରେ ଚଢ଼ିବ
ଗୁଡ଼ି ପାର ଉଡ଼ାଇବ ।
ଠାକୁରଙ୍କ ଫୁଲ   ତୋଳଣ ଆଣିବ
ସୂତରେ ଏକା ଶୋଭିବ ॥
କାଳେ ଯେ ଗଣେଶ   ସ୍ୱପ୍ନରେ ଆସିଣ
ଦେବେ ମୋତେ ବିଦ୍ୟା ଭରି ।
ଏଇଥିପାଇଁ ମୁଁ   ଉନ୍ନିଦ୍ର ଯାମିନୀ
ସୁହିଁଥାଏଁ ରତ୍ନ ଭରି ॥
ଶ୍ରଦ୍ଧା ଥିଲା ମୋର   ସାଧୁ ହେବା ଲାଗି
କାହା ଘରେ ଖାଏ ନାହିଁ ।
ଶିରେ ଚୂଟି ଆଉ   ଗଳେ ମାଳ ମତେ
ଭକତ ବନାଏ ସେଠି ॥
ତୋଳୁଅଛି ଏକା   କେତେ ଫୁଲ ମୁହିଁ
ନିକୁଞ୍ଜ କାନନ ଭରି ।
ମାଳତୀ ସୌରଭେ   ଆପଣାରେ ମୋହି
ସକଳ ଦେଉଛି ସାରି ॥

ବଉଳ ସୌରଭ ଧୀର ସମୀରଣ
ଯାଏ ମୋତେ ଦେବେ ଛୁଇଁ ।
ଘାତକ ସଖା ସବୁ ଏଣୁ ଏକା ମୋର
କେହୁ ତ ଆଉ ନାହିଁ ।।
ମାଳତୀ ଲତାର କୋମଳ ବୁକୁରେ
ଲୁଚି ରହିବ ମୁଁ ଏକା !
ପାପ ପୁଣ୍ୟ ଭୟ କିଛି ନାହିଁ ମୋର
ମେଣ୍ଟ'ଇବ ଏଥି ଥକା ।।
ପ୍ରେମର ଗୋପନ ମଧୁମୟ ସୁଖ
ଅଛି ସିନା ଏହିଠାରେ ।
ସ୍ୱପନ ବିଜନେ ବିହଙ୍ଗମ ଏଥି
ପୁଲକିତ କଳସ୍ୱରେ ।।
ପୁଣ୍ୟ ପାତକର ଗ୍ଲାନିଲୋକ ଶୋକା
ନ ଥିଲା କିଛି ତ ଜଣା ।
ସେଥିପାଇଁ ମୁଁ ଯେ ଜୀବନରେ କେତେ
ହୋଇଅଛି ବାଟବଣା ।।
ଲଭୁ ସନ୍ନିଧିକା ନାହିଁ ସିନା ମୋର
ନିର୍ଲିପ୍ତ ମୁଁ ଭବମୋହେ;
ବୁଲି ବୁଲି ମାତ୍ର ସଂସାର ଗହନେ
କାନ୍ଦୁଅ ଲଗିଛି ଦେହେ ।।

ଶାନ୍ତି, ତୁହି କନ୍ୟା, ମୁହିଁ ତୋର ପିତା
ଜାଣୁ ଜଗତର କଥା ।
ଶ୍ରଦ୍ଧା, ଭକ୍ତି, ଦୟା ନୁହେଁ ମୋର ଅଳ୍ପ
ପୂର୍ଣ୍ଣ ତେଣୁ ମନୋବ୍ୟଥା ।।
ମାଆ ତୋର ସିନା ସତୀ ଅପସରି
ମୋ ପଥେ ଚଳିଲା ନାହିଁ ।
ଦଂଶଣା ସୁଅରେ ପଡ଼ ତରଙ୍ଗୀ
ନ ହେଲା କାହାର ସେହ୍ୱ ।।
ମାଆଟି ମୋହର ଜାଣୁ ଶାନ୍ତି ! ତୁହି
ଦୃଢ଼ତା ତାର ଅସୀମ ।
ଯାହା କରିବାକୁ ଚାହିଁବ ସେ, ବାବା,
ରୋଧିବାକୁ କିଏ କ୍ଷମ ।।

ଜୀବନ ମୋହର ଭାଙ୍ଗିଗଲା ସିନା
ଆଦର୍ଶ ପଥେ ନ ଚଳି ।
କିଏ ସେଥିପାଇଁ ଦାୟୀ—କହିବାକୁ
ଧନ ଗଲାଣି ମୋ ସରି ।।
ନନ୍ଦନ କାନନ ବିହାର ପ୍ରୟାସୀ
ଥିଲା ତୋର ପିତା ଶାନ୍ତି ।
ମାୟା କାନନରେ ବୁଲି ବୁଲି ଆଜ
ଖାଲି ଭରିଛି ସେ ଗାନ୍ତ ।।

ତଥାପି ନୁହେ ମୁଁ ଏତିକି ପାମର
ଭୁଲେ ମୁଁ ମୋର ମାତରେ ।
କହିବ କାହିଁକି ସେ କଥା ସକଳ
ଜାଣୁ ତୁ ବୁଦ୍ଧିମତୀ ରେ ।।
ନିଃସ୍ୱାର୍ଥ ଜୀବନ ମୋହର, ଦଧୀଚି
ପରି ଦେଇପାରେ ଅସ୍ଥି ।
କାମନାର ସୁଖ ନାହିଁ ମୋର ଏତେ
ନୁହେଁ କେବେ ମାତ ସୁଖୀ ।।
ନୟନେ କାହାର ଦେଖିଲେ ଲୁହ ମୁଁ
ସତେ, ମାଆ ପରି ତୋର,
କାନ୍ଦ ଯେ ଭରଇ, ଜାଣିବାକୁ ଚାହେଁ
କାହିଁକି ଏ ଦୁଃଖ ତାର ।।
ନାହିଁ ସୁଖ ଶଯ୍ୟା ମୋର ତୋ'ମାଆର
ଦୁହେଁ ଆମେ ଦୁଃଖୀଯାକ
କିଛି ପାରିଲି କି ସେବା କରି ମୁହିଁ
ଚିତ୍ତେ ଅନୁଭବେ ଯାକ ।।
ତୁହି ଯେ ଆସିଲୁ ପ୍ରେମଶଯ୍ୟା ଫଳ
ବିଶ୍ୱର ମଙ୍ଗଳ ହେଲୁ ।
ଜାଣୁ କରେ ଶାନ୍ତି ! ଶାନ୍ତ ବୁଦ୍ଧଦେବ
ପାଇଅଛି ତୋତେ ସେତୁ ।।
ପୁଣ୍ୟର ଫଳ ତୁ ମହା ତପସ୍ୟାର
ବରହଣୀ ପରି ତୋ ମା !
ଆଚରନ୍ତି କେତେ ପାବନ ତପସ୍ୟା
କଳନା କରିବ କେ ବା ?

ଏକଇ ସନ୍ତାନ ଭୁଞ୍ଜ ଶୋଗ ଫଳ
ଆମ ଦୁହିଁଙ୍କର ପ୍ରାଣ ।
ପାଖେ ପାଖେ ତୋତେ ରଖିବାକୁ ମାଆ
ଖୁଣ୍ଟେ ତୋର ଗଣି ଦିନ ॥
ମୁହିଁ ତ ତୋତେ ରେ କରିବାକୁ ଯୋଗ୍ୟ
କରିଥିଲି କେତେ ପଣ ।
ଅଯୋଗ୍ୟ ପଥରେ ନ ପାରି ତା ଆଜି
ଲଭେ ଦୁଃଖ ଅଗଣନ ॥
ଭାଙ୍ଗିଗଲା ସ୍ୱପ୍ନ ମାୟାର ଫସାରେ
ପ୍ରେମର ମୂରତି କାହିଁ ।
ଖୋଜିଲି କେତେ କି କହିବି ତୋତେ ମୁଁ
କାହିଁ ତ ପାଇଲି ନାହିଁ ॥
ଝଡ଼ ଝଞ୍ଜା ପରି ଧାଇଁ ଯହିଁ ତହିଁ
କରିଛି ଜନର ସେବା ।
ତେଜି ନିଜ ସ୍ୱାର୍ଥ ନିଃସ୍ୱାର୍ଥ କାରଣେ
ଭୁଲିଛି ନିଜକୁ ଅବା ॥

ଯୌବନ ପଥରେ ଧାଇଁ ସ୍ୱମାଳୟେ
ଧାଇଁ ପୁଣି ଏଣେତେଣେ ।
ସେବିଛି ଆସାମେ ବଙ୍ଗ ଉତ୍କଳେ
ଶତ ନର ନାରୀଗଣେ ॥
ସ୍ୱେଚ୍ଛା କରି ନାହିଁ କାହିଁ ମୁଠେ ଧନ
ଖାଲି ହାୟ ହାୟ କରି ।
ଗାଇଛି ଅନ୍ତରେ ଖେଦଗୀତି କେତେ
କାରାବନ୍ଧ ପକ୍ଷୀ ପରି ॥
କଲ୍ୟାଣ ପଥରେ ବିଚରନ୍ତ ବିଚରୁ
କାହିଁ କେବେ ଅବା ମାରି ।
ମାରିବାକୁ ମୋତେ କରିଛି ପ୍ରୟୋଗ
ତୀକ୍ଷଣ ବାଣ ଆପଣାର ॥
କାହିଁ ପରାଜୟ ପରି ଦେବା ବେଳେ
ଜିଣିଛି ମୁଁ ଆପଣାରେ ।
ଭାଙ୍ଗି ଦେଇଅଛି ହୃଦୟ ଯେବେ ମୁଁ
ଇଚ୍ଛା କରି ସେ ଭାବରେ ॥

କହୁଅଛି ଶାନ୍ତ ! ତୋତେ ମୁଁ ଏ କଥା
ଜୀବନ ମରୁ-ଉଦ୍ୟାନେ ।
ବୁଲି ବୁଲି "ସଖି ! କାହିଁ ରଖିବ ମୁଁ
ଏ ନେତ୍ର" ଯେବେ ଶୁଣେ ॥
ପରଶେ ତାହାର ଅମିୟ ସଞ୍ଚାରି
ଜୀବନେ ମୋହର ଦେଲା ।
ଭାବିଲି ଆପଣା ମନେ ମନେ ଅବା
ସଙ୍ଗୀତେ ପାଇଲି ଭେଳା ॥
ସେ ଦିନୁଁ ଲଳିତ ମଧୁର ସଙ୍ଗୀତ
ଶୁଣେ ଯାର କଣ୍ଠେ ମୁହିଁ ।
ଅନ୍ତରର ଧାର ସାଥୀ ବୋଲି ମୁଁ ସେ
ଭଜେ ତାରେ ରହି ରହି ॥

ଶ୍ରାନ୍ତ ପଥିକର ଆଉ କିସ ଅଛି
ସୁରଭିଏ ତାର ଲୋଡ଼ା ।
ନେଇଯିବା ପାଇଁ ଦୂର ଦୂର ପଥେ
ନାହିଁ କେହି ତାହା ଛଡ଼ା ॥
ଲକ୍ଷ୍ୟ ସ୍ଥାନ ମୋର, ଶ୍ରାନ୍ତ ପାନ୍ଥ ମୁହିଁ
ସେହି ଏକା ସେହି ଏକା ।
ସେଥିରେ ବିବାଦ ନ କର ନ କର
କେହି, କର ମୋତେ ରକ୍ଷା ॥
ଆସ, ବୀଣା ! ବସି ଶୁଣିବା ସଙ୍ଗୀତ
ସୁରପୁରେ ଯିବା ପାଇଁ ।
ପ୍ରତିଧ୍ୱନି ଆସେ ଶୂନ୍ୟ କଣ୍ଠ ଭେଦି
ସୁଦୂର ନଭରୁ ଧାଇଁ ॥
ପ୍ରେମନଗରୀର ପାଟରାଣୀ ତୁମେ
ମିଛ ନାହିଁ ତଳେ ବୀଣା ।
ଭୁଲ ବୁଝି ମୁହିଁ ଅନ୍ୟାୟେ ତୁମକୁ
ହୋଇଅଛି କେତେ ଘୃଣା ॥
ମା'କୁ ବୁଝି ଶାନ୍ତ କହିବୁ ଏ କଥା
ବୁଝେ ନାହିଁ ମାଆ ଏତେ ।
ଶୁଦ୍ଧପୂତା ସେ ଯେ ରଜୁ ବିଶ୍ୱାସିଣୀ
ଥିଲେ ଶୁଦ୍ଧରେ ଜଗତେ ॥

ନମସ୍ୟା ମେ ଆମ ସଭଙ୍କର ଆହା
କେତେ ଖଟେ ଆମପାଇଁ
ତା ମୁଖ ହସଟି ଦେଖିବାକୁ ମୁଁ ଯେ
ଆସେ ଦୂର ଦେଶୁଁ ଧାଇଁ ॥
କାହିଁ ଚାଏ ନାହିଁ ସେ ହସ ଟିକ ତ
କେବେ ମୁଁ ତାର ମୁଖରୁ ।
ମନ ମରିଯାଏ ଜ ଯେ ହୋଇଯାଏ,
ଜହ୍ନ ମା'କୁ ଛୁଇଁ ପାରୁ ॥

ଭକ୍ତ ଏ ସଂସାରେ ନ ରୁଚଇ ମନ,
କେବଳ ଗୋଟିଏ ସ୍ପୃହେଁ—
ଢୋଲ ଦେବାପାଇଁ ଜଗତ ଜଞ୍ଜାଳୁଁ
ଗୀତ ତାନଟିକ ଧାଏଁ ।
ବୀଣାର ଝଙ୍କାର ମୁରଲୀ ନିସ୍ୱନ
ତାହା ସାଥେ ରହି ରହି ।
ବାଳକ କଣ୍ଠର ମଧୁର ରାଗିଣୀ
ଆସିଥିବ ମନେ ବହି ॥
ନିରାଶାର ଆଶା କଟାକ୍ଷ ସୁହାଣୀ
ମାରେ ମୁହିଁ ବାର ବାର—
ପ୍ରେମର କଟାକ୍ଷ ସେହ୍ନ ଯେତ୍ନେ ହୁଏ
ନୂହେଁ ନୂହେଁ ନରକର ॥
ସ୍ପୃହେଁ ମୁଁ ଅମୃତ ଦେବ କିଏ ଦିଅ
ସରଗ-ଅମୃତ-ବିନ୍ଦୁ ।
ଆଣ ଆଣ ସଖା କିଏ ଅଛ ମୋର
ସ୍ୱରଗୁଁ ବିମଳ ଇନ୍ଦୁ ॥

## ଦ୍ୱିତୀୟ ସ୍ୱର୍ଗ

କଳ କଳ ସ୍ୱନେ ସରଗ ସଙ୍ଗୀତ
ଗାଇଣି ଉଠିଣ ଧାଏଁ ।
ଶରତ ବସନ୍ତ, କୋଇଳା ମଳୟ
ନାଚେ ସବୁ ତା ହୃଦୟେ ॥

ଲାସ୍ୟ ଲୋକ ତାର ଆସ୍ୟ ମନୋହର
ଉର୍ମି-ବିମୋହନ ବେଶ ।
ଅମର ବିଭବେ ପୂରି ମର ଭବେ
ହସଇ ପ୍ରେମେ ଅଶେଷ ॥
ସଜୀବନ ମନ୍ତ୍ର ଚଞ୍ଚଳା ଆଜି ଯେ
କାଲି ସେ ପୁଣି ମନ୍ଥରା ।
ସ୍ନେହ ସୋହାଗିନୀ ଶାଇନ ନନ୍ଦନୀ
ଦିନ ଗତ ଆତ୍ମହରା ॥
କୁସୁମ କାନନେ ତରୁ ଲତା ବିଧି
ଶରତ ସୁଷମା ଧରି ।
ଶୋଭଇ କେସନେ ମୋ ହୃଦ-ତରୁଟି
ଯାଉଛି ଯେସନେ ମରି ॥
ଶୁଷ୍କ ମଳନ ସେ ମୋ କୁଞ୍ଜ କୁଟୀରେ
କାହାର ଚରଣଧୂଳି ।
ପଡ଼ ନାହିଁ ତହିଁ କେତେ ଦିନ ମୋର
ହାୟ ! ହାୟ ! ଗଲା ଚାଲି ॥

ଧୀର ସମୀରଣେ ନାଚଇ ବିହଗ
ସୁଖେ ତରୁଡାଳେ ବସି ।
ପାଶେ ତା ବିହଗୀ ହତଭାଗ୍ୟ ମୁହିଁ
ମୋପାଇଁ ଦେବ କି ହସି ?
ଅନ୍ଧାର ରାତରେ ପଥ ଯେ ଚାଲିଛି
ଅନ୍ଧମୂକ ସମ ଜାଣ ।
ସେଠି ବି ଚନ୍ଦ୍ରୀ ମୋ ନାହିଁ ହାତ ଧରି
ଚାଲିଛି ଏକା ଜୀବନ ॥
କହୁ ଗାଡ ନାହିଁ କାନ୍ଦୁଛି ଟାଲି ସେ
ବୁକୁ ପାଶେ ଶିଶୁ ଯେବେ ।
ପାଇଛି ଗୋ ମୁହିଁ ମଣିଛି ସେ ପ୍ରିୟ
ସେହ୍ନ ମୋର ସବୁ ଏବେ ॥
କମଳ କୁହୁକେ ମତ୍ତ ମଧୁକରେ
ଧାଉଁଥାଏ ଅତି ବ୍ୟଗ୍ରେ ।
ଧାଇଁ ନାହିଁ ମୁଁ ତ କାମିନୀ ପଶ୍ଚାତେ
କାହିଁ ପାଷାଣପ୍ରେ ଅଗ୍ରେ ॥

ମୃଦୁଳ ମୃଦୁଳ ମୋ ଜୀବନ-ବଂଶୀ
ବଜାଇ ବଜାଇ ମୁହିଁ ।
ଚାଲିଛି ଏକାକୀ ଆପଣାର ପଥେ
ବାଟ ମୋତେ ଦିଶୁନାହିଁ ॥
ଶଙ୍କର ନାଦକ ରହିଲେଣି ସବୁ
ଏବେ ଉନ୍ମାଦନା କାହିଁ ।
ମଣିଷ କି ପଶୁ ଚିହ୍ନୁ ମୁହିଁ ଏବେ
ସତେ ବୁଝି ପାରୁ ନାହିଁ ॥
ଚାଲିଛି ମୋ ପଥେ ଯେସନ୍ତେ ଚଳାଉଛି
ମୋତେ କିଏ ସେହି ଜନେ ।
ତାହାର ହାତରେ ଛାଡ଼ି ଆପଣାକୁ
ଚାଲିଛି ମୁହିଁ ଅବ୍ୟାଜେ ॥

ପରମ ଦୁର୍ଲଭ ଭୂମି ଏ ଜୀବନେ
ଆଣି ଦେ ସୁଜ୍ଞାନ ତୋର ।
ପାଇଅଛୁ ଯାହା ଦେଖିଅଛୁ ଯାହା,
ମୁଁ ଆଜ କାଠ ପଥର ॥
ଅରୁଣ ଉଷାର ମୂର୍ଚ୍ଛନା ଦେଖି
ଟିକିଏ ହସ ମୋ ନାହିଁ ।
ସଞ୍ଜର ସୋହାଗ ସ୍ନେହ ଅନୁରାଗ
କାହିଁ ନାହିଁ ମୋ ପାଇଁ ॥
ପାଷାଣେ ପିଣ୍ଡିତ ମୋ ଜୀବନ ମନ
ତଥାପି ନାହିଁ ମୋ ଶଙ୍କା ।
ନାହିଁ ରଙ୍ଗ ବାସ ଆଉ ସେ ତାହାର,
ନିର୍ଗନ୍ଧାଇବ କିଂଶୁକା ॥
ନିଭୃତ ନିକୁଞ୍ଜେ ବସି ବସି ମୁହିଁ
ଶୁଣେ ଯେବେ ମୋହ କଥା ।
ଜ୍ୟୋତି ମୁକ୍ତି କାହିଁ କିଛି ଦିଶେ ନାହିଁ
କିଏ ତନ୍ଦ୍ରୀ କିଏ ତଥା ॥
ପିଲାଟି ଦିନରେ କଳଙ୍ଗ ଘାଟରେ
ବସି ବସି କେତେ ଥର ।
ଭାବୁଥିଲି ମୁହିଁ ଭାସିଯିବ ପଗ
କାହିଁ ସେ ଅନନ୍ତ ପୁର ॥

ବଡ଼ ଆଶା ଥିଲା ବୁଝିବି ସଂସାର,
ବୁଝାଇବି ମୁହିଁ ଲୋକେ ।
ଦେବ ଲୋକଗୁରୁ ମହାଜ୍ଞାନୀ ସାଧୁ
ରହିଲେ ଗୋ ଏବେ ଏକେ ॥
ଅନ୍ତର ଭିତର ଓଁ କାର ଝଙ୍କାର
ତୋଳିବ ବୋଲି ଆକାଶେ ।
କରିଥିଲି ଚେଷ୍ଟା ପାଇଥିଲି ଶସ୍ତା
ଆଜ ସେ ରାସ୍ତା ନ ଦିଶେ ॥
ଦିନ ଦିପହରେ ସଉଦା ହାଟରେ
ଉଦାସୀ ପର ନୟନ ।
ଭାବଅଛି କେତେ ଅନ୍ତରର କଥା
ପାଇବାକୁ କେଉଁ ଜନ ॥
ବରଷାର ଜୋରେ ଘୋର ଅନ୍ଧକାରେ
ବିଜୁଳି ଚମକ ନାହିଁ ।
ଭାବ ଆପଣାରେ ବୁଝିବ କାହାକୁ
ଆଜ ସେ ଖିଆଲ ନାହିଁ ॥
ଦୁଃଖର କଥା ଗୋ କହିବ ମୁଁ କେତେ
ଆଜ 'ଶାନ୍ତି'! ଶାନ୍ତି କାହିଁ ।
ସୁଖ ଦୁଃଖ ଏଡ଼ି ଜ୍ୟୋତି ହାତେ ଯେନ
କାହା ସାଥେ କେହି ନାହିଁ ॥

କହିବୁ ମାଆକୁ ବୁଝାଇ ତୁହି ଗୋ
ତୁ ଦେବୁ ଶାନ୍ତି ମୋ ମାଆ ।
ତାପିତ ପରାଣେ ସ୍ନେହ ତୁ ସିଞ୍ଚିବୁ
ବସିବ ଏ ଦିନ ପାହା ॥
ମଳିନ ଦେହଟା ପାଣିରେ ଧୋଇବ
ଅନ୍ତର ଧୋଇବ କାହିଁ ?
କେଉଁ ଘାଟ ବାଟ କହିଦେବ କିଏ
ଆସ ହେ କରୁଣା ବନ୍ଧୁ ॥
ଶ୍ୟାମଳ ତରୁର ଶୀତଳ ଛାୟାରେ
ବସି ଦିନ ଏ ପହରେ ।
ବାଟୋଇଟା କାନ୍ଦେ ବାଟହରା ହୋଇ
କହିଦିଅ ବାଟ ଥରେ ॥

ଶ୍ରାନ୍ତ କ୍ଲାନ୍ତ ଅଙ୍ଗ    ପଥପ୍ରାନ୍ତେ ମୁହିଁ
ହୃଦୟ ଶାନ୍ତି ନାହିଁ ।
ବଟଗଛ ମୂଳ    ଖୋଜୁଅଛୁ ମୁହିଁ
ଆପ 'ବୀଣା' ବାରେ ଧାଇଁ ॥
ଲଳିତ ଲୟରେ    ମୂର୍ଚ୍ଛିତ ସ୍ୱରରେ
ଗାଅ 'ନାଥ' କ୍ଷଣ ଗାନ ।
ସ୍ନେହ ଇଙ୍ଗିତରେ    ସଙ୍ଗୀତ ଲହରେ
ହେବ ମୁହିଁ ମୁହ୍ୟମାନ ॥

ମାନସ ପୁଷ ତୁ    ନାଥଟି ମୋହର
ରହିବୁ ବା ଝଡ଼ିଯିବୁ ।
କହିପାରୁ ନାହିଁ    ଅନ୍ତମେ ମାତର
ତୁ ଏକା ଅମୃତ ଦେବୁ ॥
ପୂର୍ଣ୍ଣିମା ଜୋଛନା    ତୋହର ଗୀତରୁ
ଝରିଆସେ ପ୍ରାଣ ପଟରେ ।
ବାଟର ବାଟୋଇ    ତା ବାଟୁ ଅଟକି
ଚମକି ଥମକେ ଶ୍ରୋତେ ॥

'ଶାନ୍ତ' ! ପ୍ରୀତି ମୋର,   ପ୍ରାଣର ପିତୁଳା
ତୋ ଦୁଃଖେ ଯାଏ ମୁଁ ଦ୍ରବ ।
କଅଁଳତା ମୋର    ଶୁଷ୍କ ମଳିନତା
ଦେଖି ତୋ ସବଳ ଛବ ॥

ମୋହର ଆଗରେ    ଶଷର ତୋର ମା !
ଶୁଖି ଶୁଖି ଯାଏ ଆହା ।
ଡାକ ପରମେଶ    ଡାଙ୍କ ବନ୍ଧୁ ଆଜ
କେ ଅଛି ହେବାକୁ ସାହା ?
ଶରତ ଆସିଛି,    ଆସିବ ବସନ୍ତ
ହୃଷ୍ଟ ସାଜବ ଭେଟେ ।
ସଜ୍ଜବନ ଧନେ    ଫୁଲ ଉଠିଲେ ତୁ
ମୋ ମନ ଫୁଲିବ ସତେ ॥
କେତେ କଳଧ୍ୱନ    କେତେ ହାସ୍ୟରେଖା
ଉଠିବ ଫୁଟି ଗୋ ପୁଣି ।

ଅନ୍ତରେ ଅନ୍ତରେ    ବହିବ ପୁଲକେ
ନବ ସୁରେ ସୁରଧୁନୀ ॥

ଉଠ ଉଠ ସବେ    ଦୁଃଖ ଛାଡ଼ି ଏବେ
ନୂତନ ଜଗତ ଗଢ଼ି ।
ଆଉ କେତେ ଦିନ    ରହି ଧରାଧାମେ
ସକଳେ ଗୋ ଶୁଣିକରି—
ଭୁଲିଯିବା ଯହିଁ    ଅରୁଣ ତପନ
ଥିବ ଆମ ସାଥେ ସାଥେ ।
ସନ୍ଧ୍ୟାର ମାଧୁରୀ    ଆକାଶରେ ଭରି
ତାରା ହସୁଥିବେ ରାତେ ॥

ଆମେ ଏ କେତୋଟି    ଏକ ଘରେ ଥାଇ
ଏହିପରି ଆଦରଶ ।
ଏହିପରି ସୁଖ    ସବୁରି ଯିବାକୁ
ମାଗୁଅଛୁ ପରମେଶ !
'ମେନା' 'ଟୁକୁ' ତହିଁ    ଆସି ପଢ଼ିଛନ୍ତି
ମଧୁକଣ୍ଠେ ତାହାଙ୍କର ।
ବାଜ ଉଠୁ 'ବୀଣା'    ଜୀବନର ବୀଣା
ତୋଳି ମଧୁର ଝଙ୍କାର ॥
ଶାନ୍ତିର ପ୍ରବାସ    ବନ୍ଧୁ ଘରେ ଘରେ
ଘର ଯେ ସ୍ୱର୍ଗ ଆମର ।
ହିମବିନ୍ଦୁ ପଡ଼    ମଲ୍ଲୀ ମାଳତୀରେ
ବାଢ଼ ମହକୁ ଅପାର ॥

ଭାଙ୍ଗିଯିବ ଯେବେ    ସୁଖର ସପନ
ଭୁଲିଯିବ ଯେଝା ଘର ।
ଦ ଦିନରେ ଏହି    ଅଜଣା ରାଇଜେ
ନାହିଁ କେହି ପରାପର ॥
ଏହି କଥା ବୁଝି    ସଂସାର ପଥରେ
ଭୁଲିବା ଏଣିକି 'ବୀଣା' ।
କାହିଁକି କନ୍ଦାଉ    କନ୍ଦାଉ ମୋତେ ଯେ
ପୋଛିଦିଅ ଅଶ୍ରୁକଣା ॥

## ତୃତୀୟ ସ୍ପର୍ଶ

କାହିଁ ଗଲା ମୋର    ସୁନାର ଚଢ଼େଇ
କାହିଁ ଗଲା ମୋର ସୁଖ ।
କାଢ କାଢ ଖାଲ    ବୁଲଇ ଦୁନିଆ
ପୂର୍ବାଳି ବନ୍ଧଲି ଦେଖ ।।

ହେବ ଝଡ଼ ବର୍ଷା    କେତେ ଅଛି ଆଶା
ସବୁ ହେବ ଏବେ ଭଙ୍ଗ ।
ନା, ନା, ହେବ ଇଚ୍ଛା 'ଶାନ୍ତି' ! କେ କହିବ
ହେବ ପଣ ସୁନା ରଙ୍ଗ ।।

ବୁଲିଅଛି ଡଙ୍ଗା    ଭସଟିଆ ନଇ
ବସିବାକୁ ଥାନ ନାହିଁ—
ମାଲଭରା ସବୁ;    ନାଡ଼ ଆସେ ମେଘ
ଦୂର ପରବତ ଛାଇ ।।
ଆକାଶ ଆଲୁଅ    ଲୁଚିବ ଏଥର
ସମୁଦର ଘର ଦଇ ।
ବୁଡ଼ିବ ଅନ୍ଧାରେ,    ତୀର ତରୁଲତା
କେହି ନ ଦିଶିବେ କାହିଁ ।।

ପବନ ପିଟୁଛି    ଅତି ଖରତରେ
ବୁଲୁଛି ଧାଇଁ ତରଣୀ ।
ପହଁଞ୍ଚିବ ବୋଲି    ସେ ପାରିରେ ବେଗେ
ପାଲ ତା ଦେଇଛି ଟାଣି ।।
ତୁହି ଅଛୁ ଦୂରେ    ମୁହିଁ ଏହିଠାରେ
ଭେଟ ବିନା ଭାବ ଘରେ ।
କପଳ ରହିଛି    ମାଆ ବା କପଳ
ମେନା, ଟ୍କି, ବା ସେଠାରେ ।
ମନେ କରୁ ତୁହି    ମୁହିଁ ଭାବେ ନାହିଁ
ଭୂଲି ରହିଥାଏ ସବୁ ।
ନା ନା, ଶାନ୍ତି ଭାବେ ତୋତେ ମାଲୁ ଆଉ
ଆଉ ଯେତେ ଦୂର ହବୁଁ ।।

ବୁଦ୍ଧବୃନ୍ଦ ନଖ    ଜଗତ ଶୋଷଣ
ଏଡ଼ି ଦବୁ ଗଢ଼ ପାରେ ।
ଭାଗ୍ୟର ପରୀକ୍ଷା    ହୋଇଅଛି ଏଥି
କେତେ ଯୁ ଯୁଗ କାଳରେ ।।
ଦୂରେ ଅଚଳକେ    ଝୁଡ଼ି ବର୍ବରକନ୍ୟା
ଭେଟିଅଛି ପୃଥ୍ୱୀ ନଭ ।
ଯାଇ ଯାଏଁ ଯେବେ    ମନର ଦୁଆରେ
ଭେଟେ ନାହିଁ ଏ କ ଭାବ ।।
ଦୂରକୁ ଦୂରକୁ    ପଳାଏ ପରିଧି
ମରୀଚିକା ସମ ସେହି ।
ଘଟାରେ ଆସିଣ    ଠାବ ପାଇଅଛି
ତୋହର ସେନେହ ପାଇ ।।
ମାଆକୁ କହିବୁ    ଭାବୁଛି ଅଧମ
ତାକୁ ଦିନ ରାତି ଧରି ।
ପାପୀ ହେଲେ ଅବା    ସ୍ନେହ ମୋର ଭରା
ଜଣେ ତାଙ୍କର ଶ୍ରୀହରି ।।
ମୁଁଅ ବନ୍ଧୁଅଛି    ସୋ ସୋ ଯୋ ପ୍ରବଳ
ମନେ କରୁଅଛି ସଖା ।
ମୋହର ପାଇଁ ତୁ    କ ଦୁଃଖ ସହିଛୁ
କହ କ୍ଷମା କରିବୁଟି ।।

ଦାଗ ରଖି ଦେଲେ    ମନେ ତୁ ମାନିବ !
ଦାଗ ରହିଯିବ ମୋର ।
ବିଷାଦର ଛାୟା    ଘେରି ମନ କାୟା
ଘାରିବ ସେ ନିରନ୍ତର ।।
ଯାତା କରିଅଛି    ଦୋଷ ମୁଁ ପୂର୍ବରେ
ମାଗୁଅଛି ଆଜ ଭିକ୍ଷା ।
ନୟନ ଲୋତକେ    ଧୋଇ ପାପ ମସୀ
କରିବୁ ତୁ ସତ୍ତ ରକ୍ଷା ।।
ଦିବସ ଯେ ଅଛି    ଆହୁରି କେତେ ଗୋ
ରହିବାକୁ ଦେହ ଧରି ।
ପରସ୍ପର ବିନା    ନଷ୍ଟ ହେବା ପାଇ
ଡାକିବା ଦୁହେଁ ଶ୍ରୀହରି ।।

ପୂଜା କରିବାର      ଏକ ସାଙ୍ଗେ କେବେ
କିଛି କଥା ହୋଇନାହିଁ ।
ଆତୁର ହେବେ ଗୋ  ଦୁଃଖ ପାଶରେ ମୋ
ମୃତ୍ୟୁରେ କାନ୍ଦିବ ତହିଁ ।।
ଏବେ ଜଣାଶୁଣା      ଏବେ ପ୍ରେମ ସୂତ୍ର
ଯାପିଲୁ ସଖି ଏକାଠି ।
ଅଯୋଗ୍ୟ ମୁହିଁ ଯେ      ତୁମର ଏ କଥା
ବାର ବାର ଚିତ୍ତେ ଚିନ୍ତା ।।
ମରିବାକୁ ମନ      ଝଡ଼ ଖା'ଇ କେତେ
ପୁଣି ଭାବେ ରଖ ସଖି ।
ତୁମ୍ଭେ ମୋର ହୁଅ      ଜାଣିଅଛ ପୂର୍ଣ୍ଣ
ଧନ୍ୟ ମୁହିଁ ତହିଁ ଅଛି ।।

ଶ୍ୟାମଳ ବନାନ୍ତ      ଦୂରେ-ଦୂରେ-ଦୂରେ
କି ଆହ୍ୱାନ କରେ ମୋତେ ।
ମିଶିଯାଏ ତହିଁ      ଭାବନାରେ ମୁହିଁ
ପାଇବି କି ତା'କୁ ଏବେ ?
ଭବ ମାୟା ଘୋର      ଭୁଲିଯିବ ତହିଁ
ଭଜନ ବନେ ଗୋ ତୁମ୍ଭ ।
ଥିବୁ ଯେବେ ସାଥେ      ସୀତା ରାମଚନ୍ଦ୍ର
ଥିଲେ ରାମଗିରି ଯହିଁ ।।
ପାପୀକୁ ଏଥର      କରିବୁ ଉଦ୍ଧାର
ଗାଧୋଇ ଦେବୁ ସ୍ୱହସ୍ତେ ।
ଚନ୍ଦନ ଚର୍ଚ୍ଚିତ      ନିଜ ପ୍ରେମାମୃତ
ଦେବୁ ତୁମ୍ଭ ଯେତେ ଯେତେ ।।

ସୌରଭ ଗୌରବ      ମୁଁ ତାର ତୁମର
ଏହି କଥା ଭାବ ତୁମେ ।
କଳଙ୍କ ନ ଲାଗେ    ଏ ଦେହରେ ଯେମନ୍ତେ
ଜଗିଥାଅ ସଦା ଧ୍ୟାନେ ।
ଦୂରେ ଦୂରେ ଦେଖ    ଘରି ଗଲେ ଚଷି
ଦୂରକୁ ଘୁଞ୍ଚେ ବଳୟ ।
ଆକାଶ ପୃଥିବୀ      ଭେଟ କେବେ କହ
ଏ କି ଖାଲି ମାୟା ମୋହ ?
ଜଡ଼ ରହିଅଛି      ସୂତ୍ରଧାର ଜାଣି
କରି ନବ ଆଚ୍ଛାଦନ ।
ଧରଣୀର ବକ୍ଷ      ପୂର୍ଣ୍ଣ କରି ସ୍ନେହ
ଆହା ସେ କେତେ ଯତନ ।।
ପୃଥ୍ୱୀ ନବ ଭରି      ହୋଇ ସେଣ୍ଟେଦେର
ରହିବ ପୁରି ଏଥର ।
ପାପ ବ୍ୟଭିଚାର      ଦୂରେ ଯିବ ଚାଲି
ତୁମେ ଗୋ ମମ ଅନ୍ତର ।।
ହର ପାପଭାର      ପ୍ରେମ ଘନ ପରି
ଥାଅ ମୋର ସଙ୍ଗେ ସଙ୍ଗେ ।
ଅନଙ୍ଗର ବାଣ      ଆଉ ହେବ ନାହିଁ
ପ୍ରୟୋଜନ ମମ ଅଙ୍ଗେ ।।

ନଈବଢ଼ି ସୁଅ      ବହିଯାଏ ଘୋ ଘୋ
ଆଉ କିଛି ନାହିଁ ନାହିଁ ।
ମନ ମୋର ଧାଏଁ      ତୁମରି ପାଶକୁ
ଦୂର ଦେଶେ ଅଛି ରହି ।।
ସୁଖ ସପନରେ      ଆଜି ସନ୍ଧ୍ୟା ସଖି
ଆସି ଅନ୍ତରେ ଓହ୍ଲାଇ ।
ଛାଡ଼ିବୁ ଅନ୍ତର      କରି ପ୍ରେମାକୁଳ
ବୁଝିବ କ୍ଷମିଛୁ ଭୁଡ଼ି ।।
ମନ ମୋର ଚଞ୍ଚଳ ଶତ୍ରୁ ମୋର ଦୋଳେ
ତୋତେ ପୁରି ବୃନ୍ଦାପୁଟେ ।
ତମସା ବର୍ଣ୍ଣୀର      ହାତ ଭିଡ଼ି ଧରି
ଆସିବୁ ଭଜନ ଘରେ ।।
ଦେଖାଇ ଦେଉଛି      ଏତେ କଥା ସଖି
ତୁ ଯେ ଅଭିମାନବତୀ ।
ପାଷଣ୍ଡ ମୁଁ ଅତି      କି କରିବ ଆଉ
ମାଗୁଛି କରି ମିନତି ।।
କେଉଁ ନାହିଁ ସାହା      ବୃନ୍ଦପୁଟ ଜଳ
ବଢ଼ାଇ କରୁଣ ହୋ ହା ।
କେଉଁ ନାହିଁ ସାହା    ଦୂର ଦେଶ ବାଡ଼ି
ସପନେ ଆଜି ଆ ଆ ଆ ।

ଗୋଟିଏ ସ୍ୱର ଶୁଣା    ବାଜଉଠୁ ହୃଦେ
ଗୋଟିଏ ତାର ଆସୁ ଗୋ ।
ଛୁଇ ଥର ଥର    ବିଷାଦରେ ଭରି
କାହିଁର ହାତେ ଛୁଆଁ ଗୋ ॥
ବୁଡ଼ିଯିବ ପଦ    ଆଜି ନୟନକେ
ସାଙ୍ଗ ହେବ ସବୁ ମୋର ।
କନ୍ଦାଇବ କସ    ବେଶୀ ଗୋ ଯେଣୁ ମୁଁ
କନ୍ଦାଇଛି ଚିର କାଳ ॥

ପାପୀ ମୁହିଁ ମୋର    ଅପଘାତ ମୃତ୍ୟୁ
ହେବାର ମଣ୍ଡ ! ଉଚିତ ।
ମରଣଯୋଗ୍ୟ ମୁଁ    ନିଶ୍ଚିତ ଏ କଥା
କହୁଅଛି ସତ ସତ ॥
ବରଷା ପଥର    କାତର ହୃଦୟ
ତହିଁ ଯେତେରେ ଯେତେ ମେଘ ।
ସହିପାରେ ସେ କି    ବଳୟ ଖସଇ
ଶୁଖି ଶୁଖି ଯାଏ ଅଙ୍ଗ ॥
ମୋହର ଜୀବନେ    ଆଜି ସେହି ମେଘ
ଆଜି ଯେଉଁ କାତରତା ।
ଦୂର ଦେଶେ ଥିବ    ବାଟ ବଣେ ନାହିଁ
କ୍ଷମିବ କି ଗୋ କହ ତା ॥

## ଚତୁର୍ଥ ସ୍ୱପ୍ନ

ବନ୍ଧୁ ଆଶା ଶାନ୍ତି !    ଦେଖିବ ସକଳେ
ଦୂରେ ଥାଇଁ ଅବା ପାଶେ ।
ପ୍ରିୟବନ୍ଧୁ ଜନ    ଆପଣା ରତନ
ଜନ୍ମ ଜନ୍ମ ପ୍ରୀତ ଆଶେ ॥
କୁହ୍‌କୁହର ରବ    ଶୁଣିଲିଣି ମୁହିଁ
ପାହାନ୍ତିଆ ସପନରେ ।
ଆସିଥିଲେ ଆଜି    ସ୍ୱଜନ ଅନେକ
ସୁଖେ ଦିନ ଯିବ କରେ ?

ନାଥ ! ଦେଖିଲି ସେ    ତତେ ମୁଁ ସପନେ
ମଳିନ ବଦନ ଶୀର୍ଣ୍ଣ ।
କି ହୋଇଛି ବାବା    କହ କହ ଶୁଣି
ପ୍ରାଣାଧିକ ତୁ ମୋ ଜାଣ ॥
ସପନରେ ଆଜି    ଆସିଥିଲେ ଯେତେ
ସମସ୍ତେ ମୋହର ପ୍ରିୟ ।
ମୋହପାଇଁ ସେ ଯେ    ଭାବନ୍ତି ଗୋ ସତେ
ମିଳାଛି ସବୁ ହୃଦୟ ॥
ବ୍ରହ୍ମପୁତ୍ର ନଦୀ    ବହି ଯାଉଅଛି
ବାହାରେ ସ୍ୱଚ୍ଛ ଶୀତଳ ।
ପବନ ବହୁଛି    ହେବ ଏବେ ଦିନ
କରିବ ପ୍ରାଣ ଚଞ୍ଚଳ ॥
ଦୂରୁ ଆସେ ନାଦ    କରନ୍ତି ଆମୋଦ
ବସି ମୁଁ ଜୀବନ କଥା ।
ଲେଖୁଛି ପିତା ଗୋ    ଜଳରେ ବୁଝାଇ
ଯିବ ପତ୍ର ମୋର ବ୍ୟଥା ॥
ଟିକ୍ ଟିକ୍ କରି    ବାଜେ ଅନ୍ତରରେ
ଘଡ଼ିକଣ୍ଟା ଶବ୍ଦସାର ।
ଟିକ ଟିକ କରି    ମୋ ଜୀବନ କଣ୍ଟା
ପରଶିଛି ଆସି ଜରା ॥

ଗଲା ଏତେ କାଳ    ଶୋଇ ତ ରହିଲି
ଆପଣା କର୍ତ୍ତବ୍ୟ ଭୁଲି ।
ସଂସାର ପଥରେ    କେବଳ ପାରେ ମୁଁ
ଦିନ କ୍ଷଣ ବୃଥା ବୁଲି ॥
ବୁଝିଲି ତ ନାହିଁ    ଜୀବନର ସାର
ଖାଇ ପିଇ ଶୋଇ ଖାଲି ।
ଜୀବନେ ରହିବ    ଦିନ ଦିନ କି ମୁଁ
ଖୁଣ୍ଟି ଖୁଣ୍ଟି ଦୂର ବାଲି ॥
ଗନ୍ଧ-ମୂର୍ଚ୍ଛା ପରି    ଜୀବନେ ମୋର କି
ଅନ୍ଧ ହୋଇ ଦିନ ଗତ ।
ବୁଲଥିବ ଶୁଦ୍ଧି    ଶୁଦ୍ଧି ସବୁ ଦ୍ରବ୍ୟ ?
ସକଳେ କହିବେ ଛି ଛି !

ବୁଝାଇ ଦେଏ ତୁ 'ଶାନ୍ତ' ବୁଝିଛୁ କି ?
ବୁଝି ମୁଁ ପାରିଲି ନାହିଁ ।
ଅନ୍ଧ ଭ୍ରମରଟା ଗୁଣୁ ଗୁଣୁ ହୁଏ,
କହୁ କି ବୁଝାଇ ସେହୁ ॥
ଆସି ପଡ଼େ ଜୋରେ କାନ୍ଦି କାନ୍ଦି କାନ୍ଦି
ଟିକିଏ ତ ବୁଝି ନାହିଁ ।
ସେହିପରି ପିନା ଜୀବନଟା ଗଲା
ବୁଝିଲି ତ କିଛି ନାହିଁ ॥
ଅନ୍ଧା ମୋର ନେତ୍ରା ଭଟସ୍ୟାଗୀ ବଜନ
ପଥପ୍ରାନ୍ତେ ଅଛୁ ପଡ଼ି ।
ଅଶ୍ରୁପୂ ଦଅ କେ ଚକ୍କାରଇ ମୁହିଁ
ଝନ ଘନ୍ତ ପଡ଼ି ପଡ଼ି ॥

ପ୍ରାଣର ପିଆସୀ ଚନ୍ଦ୍ରିକନ୍ୟା ପରି
ଝଶୁ ସଦା ମୋ ଆଖିରେ ।
ତୁ ଯଦ ପାଖକୁ ଲଭିବୁ ଶୀତଳ
ଏ ହୃଦ ଦଗ୍ଧା ବକ୍ଷ ରେ ॥
ଶରତ ଗୀତିକା ହୋଇଅଛୁ ସାର
ଫୁଲଗୁଚ୍ଛା ମୋର ନାହିଁ ।
ଦେବତା ପୂଜିବ ଅଶ୍ରୁ କି ଜୀବନ
ବାନ୍ଧିରେ କେତେ ଯେ ମୁହିଁ ॥
ଅନ୍ଧ ସେ ଭ୍ରମର ଆସେ ବାଇ ବାଇ
ମୋହର ଆଡ଼କୁ ଧାଇଁ
ଆପଣାର କଥା ନିଜ ଗୁଞ୍ଜରଣେ
ଏ ଅନ୍ଧ ପାଶେ କହଇ ॥
ମୁଁ କିବା ବୁଝିବ କହ ତା'ର କଥା
ଅଛି ଦେଖି ମୋର ଘରେ ।
ବୁଝିଲି ତ ନାହିଁ ଯେ କିଏ ମୋହର
ମାନସ ପ୍ରତିମା ହୃଦ୍ରେ ॥
ଅପ୍‌ସରା ଦୁହିତା ଦୁଃଖେ ଶୋକେ ପଡ଼ି
ମର୍ତ୍ତ୍ୟରେ ଜୀବନ ନେଲି ।
ପତିପ୍ରାଣା ସତୀ ଶାପ ବିମୋଚନେ
ହୁଡ଼ ଉଡ଼ିଯିବ ପକ୍ଷ ॥

ଜୀବନର ପରତେ ଶରଣ ମାଗିଛି
ଥରେ ଥରେ ତାହାପାରେ ।
ଅପ୍ସରାମାନଙ୍କ ସେ ମାନ କରିଅଛି
କାନ୍ଦଅଛି ବାରେ ବାରେ ॥
ଯେଉଁଦିନ ପ୍ରଥମ ପାଇଥିଲି ମୁହିଁ
ପ୍ରଣୟର ପ୍ରତିଦାନ ।
ଦେଇଥିଲି ମୋତେ କେତେ କଥା କୋହ
ସଲଜ୍ଜ ସୁଆଗୀ ମାନ ॥
ହୃଦୟ ଦେଇଛି ସେହୁ ମୋତେ 'ଶାନ୍ତି'
ବୁଝି ପାରୁନାହିଁ ଏବେ ।
ପ୍ରେୟସୀ ମୋହର ମାଗୁଛି ତୋହର
କାନ୍ଦଅଛି ଯେତେ ଯେତେ ॥
ସତ୍ୟ ଅଭିଶାପ ଫଳିବ ନିଶ୍ଚୟ
ଏ ହତଭାଗ୍ୟ କପାଳେ ।
ଏହି ଭୟ ହୁଏ ଭାବିବ କିପ ମୁଁ
ଭ୍ରମିବ ସେ କର୍ମଫଳେ ॥
"ନଳ ଦମୟନ୍ତୀ" କଥା ଭାବ ଭାବ
ମୋହ ହୋଇଯାଏ ମୁହିଁ ।
"ହରିଶ୍ଚନ୍ଦ୍ର ଶୈବ୍ୟା" ସେ ଦୁଃଖ ସହିଲେ
ସେ ଆଦର୍ଶ କାହିଁ ନାହିଁ ॥
ଜନମଧ୍ୟେ ସେହି ଲାବଣ୍ୟନିଧିକି
ହୃଦୟ ନିକଟେ ପିନା ।
ପାଇଲେ ଶେଷରେ ଚରଣ ଭଜିଲେ
ପତିତପାବନ ତାନା ॥

ସଙ୍ଗସୁଖ ଲଭି ପ୍ରିୟା ଦରଶନ
କୋମଳ କଣ୍ଠର ବାଣୀ ।
ଶୁଣିବାର ପାଇଁ ମୋହର କପାଳେ
ବିଧେ ଲେଖାନାହିଁ ଜାଣି ॥
ଝରଣା ପଥର ହୃଦୟ ଯେଣ ମୁଁ
ବୁଲୁଥାଏ ଝବା ଝଣି ।
ଝଣି ଝଣି ଆଜି ଝଣିଯାଏ ମନେ
"ଶାନ୍ତା" ! ତୁମେ ସୁର ବପି ॥

ଶରତ ସମ୍ଭାରେ ଦେଖ ଧରଣୀଟେ
କେତେ ସୁଷମା ଭରସେ !
ଶଇଳେ ଶଇଳେ ଶ୍ୟାମଳତା ହସ
ଫୁଲ୍ଲ ବସୁନ୍ଧରା ସାଜେ ॥
ନିର୍ବାସିତ ଯକ୍ଷ- ଠାରୁ ମୁହିଁ ହୀନ
ସ୍ୱ-ନିର୍ବାସିତ ମୁଁ ଆଜ ।
ସକଳ ଦୁଆର ଖୋଲି, ଡାକେ ପ୍ରେମେ
ବନ୍ଦୀ ନିଜେ ମୁଁ ନିର୍ଲଜ ॥

ଆଶାର ଲହରୀ ତୋଳିଥିଲି ଯେତେ
ସବୁ ହୋଇଅଛି ଶାନ୍ତ ।
ନିରସ୍ତ ଶଯ୍ୟନ ତଥାପି ଆଉ କି
ଜୀବନ ହୋଇବ କ୍ଳାନ୍ତ ?
କାଟିଲି ଅନେକ "ଶାନ୍ତ" ମା'ଟା ମୋର
ଧରି ତୋତେ ଆଜ ଏତେ
ସନ୍ତାପ ମୋହର ଦୂର ହୋଇଯିବ
ସତ କରି କହ ମୋତେ ॥
ପ୍ରେମ ବନ୍ଧନରେ ହୋଇଥିଲି ଜାଣେ
ଯକ୍ଷ ବଧୂ ଜର୍ଜରିତ ।
ସେ ହେଲା ଅନ୍ଧା ଜନମ ତୋହର
ବଡ଼ ସେ ଦୁଃଖିନୀ ସତ ॥
କି କରିବ "ଆଶା" ତୁମ୍ଭ ବନ ଗଲି
ତୁମ ପ୍ରୀତି ଦୟା ଛଡ଼ା ।
ନାହିଁ ଗତି ଆଉ ଜାଣିଥାଅ ସତ !
ମୁଁ ଯେ ଅତି ଲକ୍ଷ୍ମୀଛଡ଼ା ॥
ଋଷିର ଆଶ୍ରମ କରି କଳୁଷିତ
ଦେଇଅଛି ପରା ଦୁଃଖ ।
ଭୁଲିଯାଅ ସତ ! ସବୁ ପାପ ମୋର
ମୁଁ ଭୁଲିଯିବି ଶୋକ ॥
"ଶାନ୍ତ" ! ଗୁରୁଦେବ ଏଥର ଏ ଗୀତ
ତୋତେ ବା ମନ୍ଦିରେ ଟାଣି ।
କାହିଁକି ଗାଇଲି ଏ ବିରହ ଦୁଃଖ
ଗାଇବ ଉଦାତ୍ତେ ଜାଣି ॥

ଅଟନ୍ଧା ଅଜଣା ଆମେ ସବୁ ଜାଣ
ପରସ୍ପର ଆଜ ସିନା ।
ସେ ଯାହାର "ଶାନ୍ତ" କର୍ମପଥେ ବୁଲେ
ନିଜଠାରେ ନିଜ ମନା ॥
ସନ୍ଧ୍ୟାବଧୂ ଯେବେ ତାରା ଶାଢ଼ୀ ପିନ୍ଧ
ହସ ଝୁଏ ମାଳ ନହେ ।
ସ୍ୱର୍ଣ୍ଣ ଦିଏ ମୁହିଁ ବୁଡ଼ିଯାଏ କାହିଁ
ଉଡ଼ିଯାଏ ଗୁଡ଼ ଉବେ ॥
ପ୍ରଶ୍ମିତ ଧୂସର ଆସେ ଯେବେ ଯେନ୍ଧ
ସବୁଗ କୂଜନ ନେଇ ।
ମେଲିଦିଏ ଆଖି ଶୁଣେ ତାହା ଭରି
ଚିତ୍ତ ମନ ପ୍ରାଣ ଦେଇ ॥
ଭୁବନମୋହନ ଇନ୍ଦ୍ରଧନୁ ଶୋଭା
ଯେବେ ଅଳ୍ପକ୍ଷଣ ପାଇଁ !
ଚିତ୍ତ ପ୍ରସାରି ମୁଁ ଦେଖେ ଯେବେ ସଖି
ମନା କରୁ କି ଗୋ ତୁମ୍ଭେ ?
ଭୁବନେ ଭୁବନେ ନିଖିଳ ଜୀବନେ
ଅଛି ଯେତେ ଯେତେ ସୁଧା ।
ପିଇବାକୁ ଦିଏ ଘୃଣେଁ ନାହିଁ କହ
ହଟାଇ ସକଳ ବାଧା ॥

ବିଜୁଳି ଚମକି କହେ ସେ ଏତକି
ଚିତ୍ତ ମଳ କର ଦୂର ।
ପ୍ରସାରି ପ୍ରସାରି ନୟନ ଓ ମନ
ଶୁଣ ଦୂର ଦୂର ସ୍ୱର ॥
ମ'ୟୂରମୁଗ ଶୋଭା ଦେଖି ଯେବେ ଭୁଲି
ପାଇବନି ବଡ଼ ଦୁଃଖ ।
ଏଇ ଯେ ମୋହର ଦୁଇପଦ କଥା
ମନେ ସଦା ଲୁହି ରଖ ॥
ମଧୁ ଆହରନ୍ତି ମତ୍ତ ମଧୁକରେ
ଉଡ଼ି ଫୁଲୁ ଆନ ଫୁଲେ ।
ମଧୁ ଝରୁଅଛି ଶର ବସୁନ୍ଧରା
ମନ ପ୍ରାଣ ଡହିଁ ଭୁଲେ ॥

ବଣ ବନୁଆନ୍ତ ଗୁଳ୍ମ ଲୁ ଝୁଲନ୍ତି
ଲୁଣ୍ଠାଇ ହେବ ଶରୀର ।
ବଣର ଜ୍ୱାଳାରେ ଧନମାନ ଭୁଲି
ହେବୁ ଖାଲି ସେ ଅସ୍ଥିର ॥
"ବୀଣା" ତୋର ଏହି କଥା ପାଳିବାକୁ
ମାରୁଥା' ସଦା ଚାବୁକ ।
ଆଜି ଯେତେଦିନ ଏ ଭବ ସଂସାରେ
ଖାଏଁ ଅବା ମୁଁ ଚାବୁକ ॥
ଚିତ୍ତ ଶୁଦ୍ଧ ହେବ ମରଣ ସେପାରେ
ପାଇବ ମୁହିଁ ଭୂମକୁ ।
ଜଡ଼ ଧରିଥିବ ଗୁଡ଼ିବ ବାନ୍ଧି ଗୋ
ପୂତ କର ଏ ପାପକୁ ॥
ଦାମ୍ପତ୍ୟ ପ୍ରେମର ପ୍ରେମସୁଧା ଭୁଲି
ଶିଖା ମୋତେ ବାର ବାର ।
ପ୍ରେମର ପୂଜାରେ ଦୁଇଟି ଜୀବନ
ଗୁ ନ୍ଥାହେଉ ଅନିବାର ॥

ମିଳନ ବିରହ ଛନ୍ଦ ଦେଖେ ମୁହିଁ
ଖଗ ବର୍ଷା ମଧ୍ୟେ ମଧ୍ୟେ ।
ଏହି ଝର ଝର ବରଷା ଯେ ଝରେ
ଏହି ଦେଖ ଖଗ ବାଧେ ॥
ଜାଗରିତ ଆଜ ବାଲ୍ୟ ସ୍ମୃତି ମୋର
କୈଶୋର ଯୌବନ କଥା ।
ପ୍ରୌଢ଼େ ଅବା ଯେତେ ସବୁ ତ କହିଲି
ନତ ହେବ ଏବେ ମଥା ॥
ଇନ୍ଦୀବରେ ସେହି ସନ୍ତ ବସନ୍ତଙ୍କ
ମୁହିଁ ଫୁଲର ପାଖୁଡ଼ା ।
ସାଗର ଗର୍ଭରେ ତେଜି ସିନା ମୁହିଁ
ସେ ଯେ ମୁକୁତାର ସୁଡ଼ା ॥
ଗୃହାଙ୍ଗଣେ ସେ ବା ମୂର୍ତ୍ତିମନ୍ତ ଦେବୀ
ମୁଁ ଆସେ ଯାଏଁ ବରଣ୍ୱା ।
ମଥାର ଗୌରବ ପ୍ରେମ ମନ୍ଦାକିନୀ
ଅନ୍ତରେ ଅନ୍ତରେ ରହି ॥
ନଣନ୍ଦା ନାସ୍ତିକା ଜୀର୍ଣ୍ଣ ଶୀର୍ଣ୍ଣ ମୁହିଁ
ଏକୋଇ ହୀନ ବାଟୋଇ ।
ଶାନ୍ତିର ସୁଧା ସେ ଘଟେ ଅଛି ରହି
ଅଗତେ ମରଇ ମୁହିଁ ॥

## ପଞ୍ଚମ ସ୍ପର୍ଶ

ବ୍ରହ୍ମପୁତ୍ର କୂଳେ ବସି ଏ ସକାଳେ
ଶୁଣି ନାନା ପକ୍ଷିରବ ।
ଭୁଲିଗଲି ଆଜ ଏକନ୍ଧି ଆକାଶ
ବସ୍ତାର ତାହାର ସବ ॥
ଯେଉଁ ଆକାଶରେ ସୂର୍ଯ୍ୟ ଉଠେ ଏଠି
ସେହି ଆକାଶରେ ସତେ ।
'ମେନା','ଟୁକୁ','ଶାନ୍ତ' ଆଜି ଯେ ଅଛନ୍ତି
କେତେ ଖୁଣ୍ଟିଥିବେ ମୋତେ ॥
ଯେଉଁ ଆକାଶରେ ଖେଳେ ଚନ୍ଦ୍ର ତାରା
ସେହି ଆକାଶରେ ଏବେ ।
ଖୁଣ୍ଟି ରହିଅଛି ମୁହିଁ ଏକମନେ
କେହି ଅବା ଦେଖା ଦେବେ ॥

ଗୋରୁ ପାଳେ ଯେତେ ଗୋପାଙ୍ଗନା ସେହି
ପ୍ରେମ ଭକ୍ତି ରକ୍ତ ଦେଇ ।
ଦେବା ଯେ ସଜନେ କରେ ଧନ ସ୍ୱତ୍ତ
କେତେ ମୁଁ କହିବି ଫେଇ ॥
ଅଯୋଗ୍ୟ ପୂଜାରୀ ମୁହିଁ ଆଜ ପୂଜା
କରିବାପାଇଁ ଅସିଣ ।
ଭୁଲିଛି ବାଉଳ ହୋଇ ଘଣ୍ଟା, ଫୁଲ,
ଆଳତି କରେଁ କେମନ ॥
ମୁଗ୍ଧ ଶିଶୁ କାନେ କେତେ ଚୁମ୍ବ ଦେଇ
ବସ୍ତ୍ରଭସ୍ମ ଗଳା ବୋଳେ ।
କେତେ ସ୍ନେହ ଅଛି ଜଗତେ ଜଗରେ
ପଶୁ ପକ୍ଷୀ ଆଦ ଲୋକେ ॥

ନରନାରୀ ଖେଳ  କିଏ କହିପାରେ
ଅନ୍ତ ଆନନ୍ଦର ମେଳ ।
ଚରିତ ବିବାଦ  ରହିଅଛି ପୁଣି
ବାକ୍ୟ ହୁଏ ସନ୍ଧି ଶେଷ ।।
ହୃଦୟ ପଟରେ  ଜାଗରିତ ଯେତେ
ଛବି ମୁଛିଯାଏ କେତେ ।
ନିତି ନବ ନବ  ପୁଣି କେତେ ସୃଷ୍ଟି
ଚାଲିଯାଏ ସ୍ରୋତ ସାଥେ ।।
ଧରି ରଖିଥିଲ  ଯେତକ ହୃଦରେ
ବାଡ଼ିଲ ଶକତିମତେ ।
ଯୁଗ ବସ୍ତରୀ  ଶିଶୁ ଯେ ଆତୁର
ତାହିଁ ଜଡ଼େଁ ଶୁଦ୍ଧ ସତ୍ତ୍ୱେ ।।
ରହିଯାଏ କାଜ  କହିଯାଏ କଥା
ଚିରକାଳ ସେ କି କଥା ।
ମାନବ ଅନ୍ତର  କର ପରିଷ୍କାର
ଲେଖି ତୁ ଜୀବନଗାଥା ।।
ସତ୍ୟ ଶାନ୍ତ ପ୍ରୀତି  ଭବ ଘୋର ଏକା
ରକ୍ଷା କରିବ ମାନବେ ।
ଚିର ଏ ସାଧନା  କର ଭାଇ ତୁହି
କରିବାକୁ କହ ସର୍ବେ ।।

ପହଞ୍ଚିଲ ଆଜ  ଘୂରି ଏତେଦିନେ
ଆପଣାର କର୍ମକେନ୍ଦ୍ରେ ।
ଶେଷ କରିବାକୁ  ଏହି ଗୀତ ଏବେ
ନୀରବ ଜଳଦ ମନ୍ଦ୍ରେ ।।
ବଳଅଛି ମନ  ହେବ ଘନ ଘନ
ରାତିରେ ଆଜି ବରଷା ।
ବଡେ ବ୍ରହ୍ମପୁର  ହୁ ହୁ କରି ଦେଖ
ହେଲ ଗୋ ଏ କି ଦୁର୍ଦ୍ଦଶା !
କେତେ ସେ ଭାବନା  ମନରେ ପଡ଼ିବ
କେହି ନାହିଁ ମୋ ଭରସା ।
ବଢ଼ିଲ ଗରମ  ଦିନରେ ସେ ଆଜି
ରାତିରେ ହେବ ବରଷା ।।

ସମସ୍ତଙ୍କ ପାଇଁ  ଗାଇଲ ଏ ଗୀତ
“ମେନା” ପାଇଁ କିଛି ନାହିଁ ?
ନା ନା, ଏକଥା କି ହୋଇପାରେ କେବେ
ଗାଏଁ ଏବେ ମେନା ପାଇଁ ।।
‘ମେନା !’‘ନର’,‘ବର’,‘ଖଟ’,‘ପଟ’,‘କର’
କତ ପଢ଼ିଅଛୁ ତୁହି ।
ସତେ ସେ କଥା  ଭାବେ ମୁହିଁ ବଡ଼
ଅଳପେ ସନ୍ତୁଷ୍ଟ ନୋହି ।।
ବେଶୀ ପଢ଼ିବୁ ମା  ବୁଝିବୁ ସଂସାର
କରିବୁ କର୍ମ ମହତ ।
କି ଲାଭ ନୋହିଲେ  ପଢ଼ି ପଢ଼ି ଖାଲି
‘ହତ’ ‘ସତ’ ‘ଗତ’ ‘ଖତ’ !
‘ସମ’,‘ଦମ’,‘କମ’,  ‘ଚରଣ’ ‘ଶରଣ’
ଏହି ସବୁ କଥା ବୁଝ ।
ଅସଲ ଅରଥ  ବୁଝିବାର ପାଇଁ
ବେଶୀ ବିଦ୍ୟା ତୁହି ଭଜ ।।

“ଶାନ୍ତ !” ଦିଅ ତଦା ମା’କୁ ମୋର କଥା
ବୁଝାଇ ଦେବୁଟି ତୁହି ।
ଆଉ କେହି ନାହିଁ  କରୁଅଛୁ ଶେଷ
ଏହିଠାରେ ରହେ ମୁହିଁ ।।
ରହିଥିଲ “ଶାନ୍ତ”  ବାକି ଆଉ ଯାହା
ପୂର୍ଣ୍ଣ କରିବାକୁ ମୁହିଁ ।
ଯାଇଥିଲ ରଖି  ଦେଇ “ଲକ୍ଷ୍ମୀପୁର”
ଫେରି ଆଜ ଆସିଲଇଁ ।।
ମନ ଆଉ କିଛି  ଭଲ ହେଉ ନାହିଁ
ଚୁଲି ବାଲି ହୁଏ ।
ଧର୍ମପଥେ ପରା  ଚାଲିବାକୁ ହେଲେ
ଆପଣାର ଜନ ଥାଏ ।।
ସ୍ନେହହୀନ ମୋର  କଠୋର ଜୀବନ
ତହିଁ ହୁଏ କେନ୍ଦ୍ର ଛିନ୍ନ ।
ଫଳ ଯାହା ତା’ ମା  ବୁଝି ପାରିଥିବୁ
“ଶାନ୍ତ !” ବଡ଼ ଅବସନ୍ନ ।।

ଦେଖିଲି ଆଜ ଯେ    ମହା ସନ୍ଧ୍ୟାତାରା
ଆକାଶେ ଅଛି ଉଜ୍ଜ୍ୱଳ ।
ଭାବିଦେଲି ମୁହିଁ    ଅଜ୍ଞାତର କଥା
'ବଳସ୍ମମ' ଆପେ ବଳ ॥
ଗୋଧୂଳି ଗଗନ    ମଧୁର ଲଗନ
ଡଙ୍ଗାଟି ଆସିଲା କୂଳେ ।
ଲୁହିଁ ଦେଲି ସେହି    ସୁଦୂର ନଭସେ
ସନ୍ଧ୍ୟାତାରା ତହିଁ ଜ୍ୱଳେ ॥
ଭାବି ଭାବି ଶେଷେ    ହତବୁଦ୍ଧି ହେଲି
ଜନ୍ମଜନ୍ମାନ୍ତର କଥା ।
'ଶାନ୍ତି' ତୁହି ମୋର    ଜୀବନର ସ୍ୱପ୍ନ
ଜନ୍ମେ ଜନ୍ମେ ମୋ ସଙ୍ଗେ ଥା ॥

କଆଁବଣ ବାଟେ    ବୁଲିଲି ମୁଁ ଯେବେ
ପାଇଲି ତ ତା'କୁ ନାହିଁ ।
ପଦଚିହ୍ନ ତାର    ପଡ଼ିଥିଲା ପର
ଦିଶିଲା ତ, ଗଲି ଧାଇଁ ॥
କେତକୀ ସୌରଭ    ଛୁଟିଲା ସଗର୍ବେ
ଆଣିଲା ତ ଟାଣି ଯାଇଁ ।
କଣ୍ଟା ଡାଳ ଡାଳ    ଭକତରେ ଭରି
ଗଲି, ଦେଖା ତା'ର ନାହିଁ ॥
କାହା କାହା ଫୁଲ    ଗଲଣି ନସୂନ
ଆଉ କହିବାର ନାହିଁ ।
ଶେଷ କଲି ଗୀତ    ଏହିଠାରେ 'ଶାନ୍ତି'
ମହାଶ୍ୱେତା କନ୍ୟା ତୁହି ॥

* * *

# କର୍ମବୀର ଗୋଖଲେ

## ପ୍ରଥମ ପ୍ରକାଶ

ନରପତିହିତକର୍ତ୍ତା ଦ୍ୱେଷ୍ୟତାଂ
ଯାତି ଲୋକେ ।
ଜନପଦହିତକର୍ତ୍ତା ତ୍ୟଜ୍ୟତେ
ପାର୍ଥିବେନ ॥
ଇତି ମହତି ବିରୋଧେ ବିଦ୍ୟମାନେ
ସମାନେ ।
ନୃପତିଜନପଦାନାଂ ଦୁର୍ଲଭଃ
କାର୍ଯ୍ୟକର୍ତ୍ତା ॥

ଯେଉଁ ସବୁ ମହାପୁରୁଷ ମାତୃଭୂମି ଭାରତକୁ ବିଦେଶୀ ଶାସନର ହାତରୁ ରକ୍ଷା କରିବାକୁ ଯାଇ ଜୀବନକୁ ପଣ କରି ଶେଷ-ନିଃଶ୍ୱାସ ଥିବା ପର୍ଯ୍ୟନ୍ତ ଅକ୍ଳାନ୍ତ-ପରିଶ୍ରମ କରି କରି ଶେଷରେ ନଶ୍ୱର ଜୀବନ ଦାନ କରି ଅନନ୍ତ ଧାମକୁ ଚାଲି ଯାଇଅଛନ୍ତି, ସେମାନଙ୍କର ପବିତ୍ର ସ୍ମୃତି ମାନସ-ପଟରେ ଉଦିତ ହେଲାକ୍ଷଣି ଭାରତବାସିଗଣ ଯେ ମନରେ କି ଏକ ଅଭାବନୀୟ ପୁଲକ ଅନୁଭବ କରନ୍ତି, ତାହା ପରମ-ଅନ୍ତର୍ଯ୍ୟାମୀ ଭଗବାନଙ୍କ ଭିନ୍ନ ଅନ୍ୟ କେହି ବୁଝି ପାରିବେ ନାହିଁ । ଦିନ ଥିଲା, ଯେତେବେଳେ ଏହି ସ୍ୱର୍ଣ୍ଣପ୍ରସୂ ଭାରତଭୂମି କି ଜ୍ଞାନ, କି ବିଜ୍ଞାନ, କି ଶିଳ୍ପ, କି ବାଣିଜ୍ୟ—ସକଳ ବିଷୟରେ ବିଶ୍ୱ-ସଂସାରକୁ ଚକିତ କରି ଦେଇଥିଲା; ଦିନ ଥିଲା, ଯେତେବେଳେ ଏହି ଧନ ଧାନ୍ୟ-ଭରା ଭାରତଭୂମିରେ ସ୍ୱାଧୀନତା-ମାର୍ତ୍ତଣ୍ଡ ତୁଷାର ଜନକ ମେଘ ଚକ୍ର ପ୍ରଭାତର ଆଲୋକ ବିକୀରଣ କରୁଥିଲେ; ଦିନ ଥିଲା, ଯେତେବେଳେ ଉତ୍ତୁଙ୍ଗ-ହିମାଳୟର ଶୁଭ୍ର-ତୁଷାର, କଳ-ନିନାଦିନୀ ମହାନଦୀମାନଙ୍କର ବିମଳ-ଜଳଧାର ଭାରତୀୟ ପ୍ରାଣରେ ଅନାବିଳ ସୁଖଶାନ୍ତି ଢାଳି ଦେଉଥିଲା । କିନ୍ତୁ ଆଜି ସେ ସମସ୍ତ ଅତୀତରେ ମିଶି ଯାଇଅଛି । ଇତିହାସର ବିରାଟ ଉଦରରେ ସେ ସମସ୍ତ ନାହିଁ, ନୀଳ ଆକାଶର ଅସୀମତା ସେ ସମସ୍ତ ଧାରଣ କରି ପାରୁନାହିଁ, ଅନନ୍ତ ସାଗରର ବିଶାଳ ବକ୍ଷ ସେ ସମସ୍ତ ନିକଟରେ ହାର ମାନିଛି । ଅତୀତର ଅନ୍ଧ-ତାମସ ମଧ୍ୟରେ ଭାରତର ସକଳ ସୁଖ ସୌଭାଗ୍ୟ ଆଜି ଆତ୍ମସତ୍ତା ଗୋପନ କରିଛି । ଉନ୍ନତିର ଉଚ୍ଚ ହିମାଳୟ ଆଜି ଭାରତକୁ ତଳେ ପକାଇ ଦେଇଛି । ଭାରତର ସେହି ସ୍ୱାଧୀନ-ପ୍ରାଣ ଆଜି ପର ପଦରେ ଦାସତ୍ୱ-ଶୃଙ୍ଖଳରେ ଆବଦ୍ଧ ହୋଇ ଶତ ଅପମାନ, ଶତ ଲାଞ୍ଛନା ଓ ଗଞ୍ଜଣା ସହ୍ୟ କରୁଛି ।

ଆଜି ଭାରତୀୟମାନେ ଦାସ-ଜାତି-ରୂପେ ପୃଥିବୀପୃଷ୍ଠରେ ପରିଚିତ । କେତେ ବସନ୍ତ, କେତେ ଗ୍ରୀଷ୍ମ ଚାଲିଗଲାଣି, କେତେ ପିକ, କେତେ ଶୁକ ତାଙ୍କର କୁହୁ-କାକଳି ଢାଳି ଦେଇ ଚାଲିଗଲେଣି,

କେତେ ଦିନ, କେତେ ମାସ ଓ କେତେ ବର୍ଷ ମଧ୍ୟ ଚାଲିଗଲାଣି; କିନ୍ତୁ ଭାରତର ସେହି ଦାସତ୍ୱ-ଶୃଙ୍ଖଳ ଶିଥିଳ ହେଉନାହିଁ, ବରଂ ଦିନକୁ ଦିନ ଦୃଢ଼ରୁ ଦୃଢ଼ତର ହେଉଅଛି । ଶତାବ୍ଦୀ ପରେ ଶତାବ୍ଦୀ ନିଜ କାମ ସାରି ଚାଲି ଯାଉଅଛି, କିନ୍ତୁ ଭାରତ ଦାସତ୍ୱର ଲୌହ ଶୃଙ୍ଖଳ ପଦରେ ପରିଧାନ କରି କ୍ରମଶଃ ଧ୍ୱଂସର ରୌରବ ଆଡ଼କୁ ଅଗ୍ରସର ହେଉଅଛି । ଯେଉଁମାନେ ତାହାକୁ ସ୍ୱାଧୀନତା-ସୂର୍ଯ୍ୟର ମୁଖ ଦେଖାଇବା ପାଇଁ ଅନନ୍ୟକର୍ମା ହୋଇ ପ୍ରାଣପଣ ଚେଷ୍ଟା କରିଅଛନ୍ତି, ସେମାନଙ୍କ ପ୍ରତି ଅନ୍ତରର ଅଚଳା ଭକ୍ତି ଶତଧାରରେ—ସହସ୍ରଧାରରେ ସ୍ୱତଃ ଉଚ୍ଛ୍ୱସିତ ହୋଇଉଠେ, ସେମାନଙ୍କର ଚରଣ ଉଦ୍ଦେଶ୍ୟରେ ମସ୍ତକ ସ୍ୱତଃ ନତ ହୋଇଯାଏ । ମହାମାନ୍ୟ ଗୋପାଳକୃଷ୍ଣ ଗୋଖଲେ ସେମାନଙ୍କ ମଧ୍ୟରୁ ଜଣେ । ସେ ତାଙ୍କର କ୍ଷୁଦ୍ର ଜୀବନକାଳ ମଧ୍ୟରେ ଯେଉଁ ମହାମୂଲ୍ୟ ଦାନ ଭାରତକୁ ଦେଇ ଯାଇଅଛନ୍ତି, ଯେଉଁ ବଜ୍ରମୟୀ ଶକ୍ତି ଭାରତପ୍ରାଣରେ ଢାଳି ଦେଇଅଛନ୍ତି, ଆଜି ଭାରତର ଆବାଳବୃଦ୍ଧବନିତା ସେହି ମହାଦାନର ସଦ୍‌ବ୍ୟବହାର କରିବାକୁ ଯାଉଅଛନ୍ତି—ସେହି ବିରାଟ ଶକ୍ତି ସେମାନଙ୍କ ଦେହରେ ଓ ମନରେ ଅପରିସୀମ ସାହସ, ବଳ ଏବଂ ଧୈର୍ଯ୍ୟ-ପ୍ରଦାନ କରୁଛି । ଭାରତୀୟ ଜାତୀୟ ଜୀବନର ପ୍ରଥମ ପ୍ରଭାତରେ ସେ ଯେଉଁ ପ୍ରଣବ ମନ୍ତ୍ର ଉଚ୍ଚାରଣ କରିଥିଲେ, ଆଜି ଭାରତର ବନ ବନ ପ୍ରାନ୍ତରରେ ସେହି ମନ୍ତ୍ରର ସୁପ୍ତ ପ୍ରତିଧ୍ୱନି ଖେଳି ବୁଲୁଛି—କି ଚେତନ କି ଅଚେତନ, ସବୁଠି ସେହି ମନ୍ତ୍ରର ପବିତ୍ର ପ୍ରଭାବ ଜାଗରଣ ଆନୟନ କରୁଛି ।

ଆୟର୍ଲାଣ୍ଡର ସୁବିଖ୍ୟାତ ଦେଶନେତା ଗ୍ରାଟନ୍‌ଙ୍କ ସମ୍ବନ୍ଧରେ ଜଣେ ଇଂରେଜ ଲେଖକ ନିମ୍ନଲିଖିତରୂପେ ଲେଖିଥିଲେ—

"Great men hallow a whole people and lift up all who live in their time. What Irish man does not feel proud that he has lived in the days of Gratton? Who has not turned to him for comfort from the false friends and open enemies of Ireland? Who did not remember him in the days of its burnings and wastings and murders? No government ever dismayed him. The world could not bribe him. He thought only of Ireland, lived for no object, dedicated to her his beautiful fancy, his elegant wit, his manly courage and the splendour of his astonishing eloquence. He was so born and so gifted that poetry, forensic skill, elegant literature and all the highest attainments of buman genius were within his reach; but he thought the noblest occupation of a man was to make otber men

happy and free, and in that straight line he went on for fifty years without one side-look, without one yielding thought, without one motive in his heart, which he might not have made open to the view of God and man.

ଏହି ଉକ୍ତିକୁ ନିଃସନ୍ଦେହ ଗୋଖଲେଙ୍କ ପ୍ରତି ପ୍ରୟୋଗ କରାଯାଇ ପାରେ । ପୃଥିବୀରେ କ୍ଷଣଜନ୍ମା ମହାପୁରୁଷଗଣ ଦେଶ ସମକ୍ଷରେ ଗୋଟାଏ ଉଦାର ଆଦର୍ଶ ଉପସ୍ଥାପିତ କରିବାକୁ ବିଶ୍ୱସ୍ରଷ୍ଟାଙ୍କର ବିଶିଷ୍ଟ ଶକ୍ତି ନେଇ ଆସିଥାନ୍ତି । ନିଜର ବିରାଟ ଉନ୍ନତ ଜୀବନର ପବିତ୍ର ସ୍ପର୍ଶ-ପାତରେ ଦେଶର ସମସାମୟିକ ଜନସାଧାରଣଙ୍କୁ ଗୋଟାଏ ସ୍ୱର୍ଗୀୟ ପ୍ରେରଣାର ଅନୁଧାବନ କରିବାକୁ ନବୀନ ଇଙ୍ଗିତ କରନ୍ତି । ସତ୍ୟପାଇଁ ନ୍ୟାୟପାଇଁ ଅନ୍ୟାୟ ଏବଂ ଅତ୍ୟାଚାର ବିରୁଦ୍ଧରେ ଆଜୀବନ ସଂଗ୍ରାମ ଯୁଦ୍ଧ କରି ନିଜର ଶେଷ ଶୋଣିତ ଏବଂ ଶେଷ ନିଃଶ୍ୱାସ ଦ୍ୱାରା ଗଗନ ପବନକୁ ସୌରଭମୟ କରିଦିଅନ୍ତି । ଯେତେବେଳେ ସେମାନଙ୍କ ଜୀବନର ଶେଷ ମଧୁ ବିନ୍ଦୁ ଆସ୍ୱାଦନ କରି ଜଗତ୍ ବକ୍ଷରୁ ସକଳ ଦୁର୍ନୀତି, ସକଳ ଅତ୍ୟାଚାର ଅପସାରିତ ହୋଇଯାଏ, ସେତେବେଳେ ସେହି ମୃତ ବ୍ୟକ୍ତି କୋଳାଗାରର ଜ୍ୟୋତିସମ ବିଶ୍ୱଚରାଚର ଦହାଇଦିଏ, ଦେଶର ରାଜଶକ୍ତି, ଅତ୍ୟାଚାରୀର ଅତ୍ୟାଚାର, ପାଶବିକ ବଳ ଦୁର୍ଜାଗତ ସମ ପ୍ରକାର ସେହି ଜ୍ୱଳନ୍ତ ଜୀବନ୍ତ ବିଶ୍ୱତୋମୁଖୀନ ପ୍ରତିଭାକୁ ମଳିନ କରିପାରେ ନାହିଁ । ଜଗତର ସକଳ ପ୍ରକାର ପ୍ରଲୋଭନ ଓ ଆକର୍ଷଣ ସେ ଅମାନୁଷୀ ପ୍ରତିଭାକୁ ପଥଚ୍ୟୁତ କରିପାରେ ନାହିଁ ।

ଯେଉଁ ତ୍ୟାଗର ବିରାଟ ମହାନ୍ ଆଦର୍ଶରେ ଭାରତର ଇତିହାସ ଗୌରବାନ୍ୱିତ, ଯେଉଁ ଦାନର ଉଦାର ପ୍ରଶାନ୍ତ ଆଦର୍ଶରେ ଭାରତ ଇତିହାସର ପ୍ରତି ପୃଷ୍ଠା ଝଲସିତ, ମହାମତି ଗୋଖଲେଙ୍କ ଜୀବନ ସେହି ତ୍ୟାଗରେ ମୁକୁଳିତ—ସେହି ଦାନରେ ପ୍ରତିଷ୍ଠିତ । ସେ ତ୍ୟାଗରେ, ସେ ଦାନରେ ଅନୁତାପ ନାହିଁ, ଜ୍ୱାଳା ନାହିଁ; ସେ ତ୍ୟାଗର ଆଲୋକରେ ଚକ୍ଷୁ ଝଲସି ଯାଏନା; ତାର ସ୍ନିଗ୍ଧୋଜ୍ଜ୍ୱଳ ରଶ୍ମି ରେଖା ପ୍ରାଣରେ କେବଳ ପ୍ରେରଣା ଆଣେ, ଜାଗରଣ ଆଣେ ।

ସେହି କର୍ମମୟ ତ୍ୟାଗମୟ ଜୀବନର ଆଲୋଚନା କଲେ, ସେହି ବିରାଟ ଉଦାର ମହାନ୍ ଆଦର୍ଶର ଅନୁଧାବନ କଲେ, ଭାରତବାସୀ ଅତୀତର ଗୌରବମୟ ସ୍ୱପ୍ନ-ପାତରେ ନିଜକୁ ଏବଂ ନିଜର ଅଧଃପତିତ ମାତୃଭୂମିକୁ ଗୌରବାନ୍ୱିତ କରି ପାରିବେ ବୋଲି ମନେହୁଏ । ସେହି ଜ୍ୱଳନ୍ତ ଜୀବନ୍ତ ଜୀବନର ସ୍ୱର୍ଗୀୟ ଇଙ୍ଗିତରେ ଭାରତ ଜାଗ୍ରତ ହେଉ, ଅତ୍ୟାଚାର ଆଉ ଦୁର୍ନୀତିର କଳଙ୍କରେଖା ଅପସାରିତ ହେଉ, ଏହାହିଁ ଭଗବାନଙ୍କ ନିକଟରେ ପ୍ରାର୍ଥନା ।

ଈଶ୍ୱରଙ୍କର ଶୁଭାଶିଷରେ ସେ ଦିନ ଆସିବ—ନିକଟ ଭବିଷ୍ୟତରେ ତାର ସୁମଧୁର ଚରଣ ଶିଞ୍ଜନ ଶୁଣାଗଲାଣି;

ସେତେବେଳେ ଭାରତୀୟ ପ୍ରାଣରେ ତଦୀୟ ପୂତ ମହତ୍ ଜୀବନର ମନ୍ଦ ମଧୁର ପରିମଳ ସ୍ୱର୍ଗୀୟ ପାରିଜାତ କୁଞ୍ଜରୁ ଝରି ପଡ଼ିବ । ଅଧଃପତିତ ଭାରତ, ମୃତ ଅବସାଦଗ୍ରସ୍ତ ଭାରତ ସେତେବେଳେ ପୁଣି ଥରେ ସିଂହବିକ୍ରମରେ କେଶର ସଂଚାଳନ କରି ଜାଗ୍ରତ ହୋଇ ଉଠିବ ।

## ଦ୍ୱିତୀୟ ବିକାଶ

ମହାମତି ଗୋପାଳକୃଷ୍ଣ ଗୋଖଲେ ଖ୍ରୀଷ୍ଟୀୟ ୧୮୬୬ ଶତାବ୍ଦୀରେ ବୋମ୍ବାଇ ପ୍ରେସିଡେନ୍ସିର କୋହ୍ଲାପୁର ନାମକ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଜାତିରେ ମହାରାଷ୍ଟ୍ରୀୟ ବ୍ରାହ୍ମଣ ଥିଲେ । ତାଙ୍କର ଆର୍ଥିକ ଅବସ୍ଥା ସେତେ ଭଲ ନ ଥିବାରୁ ସେ ବଡ଼ କଷ୍ଟରେ ସାଂସାରିକ ଜୀବନ ଯାପନ କରୁଥିଲେ । ତେଣୁ ପୁତ୍ରର ପ୍ରାଥମିକ ଶିକ୍ଷା ଦୀକ୍ଷା ସ୍ଥାନୀୟ ବିଦ୍ୟାଳୟରେ ସମାହିତ ହୋଇ-ଥିଲା ।

ପ୍ରାଥମିକ ଶିକ୍ଷା ସମାପ୍ତିପରେ ସ୍ଥାନୀୟ କଲେଜରେ କିଛି କାଳ ଅଧ୍ୟୟନ କରି ସେଠାରେ ସେ ଇଣ୍ଟରମିଡିଏଟ୍ ପରୀକ୍ଷାରେ ପାସ୍ କରିଥିଲେ । ତଦନନ୍ତର ବୋମ୍ବାଇର ଏଲଫିନ୍‌ଷ୍ଟୋନ୍ କଲେଜ ଏବଂ ପୁନାର ଡେକାନ କଲେଜରେ କିଛି କାଳ ଅଧ୍ୟୟନ କରି ୧୮୮୪ ରେ ବି. ଏ. ପରୀକ୍ଷାରେ ପାସ୍ କଲେ । ସେତେବେଳକୁ ତାଙ୍କର ବୟସ ୧୮ ବର୍ଷ ମାତ୍ର । ଏହି ଅଠର ବର୍ଷ ବେଳକୁ ତାଙ୍କର ମଧ୍ୟମସ୍ତ ଛାତ୍ରଜୀବନ ସାଙ୍ଗ ହେଲା । ଆଜକାଲି ଆମ୍ଭମାନଙ୍କ ଉତ୍କଳ-ଖଣ୍ଡର ବିଦ୍ୟାର୍ଥିବର୍ଗ ଅଷ୍ଟାଦଶ ବର୍ଷ ବୟସରେ ମାଟ୍ରିକୁ୍ୟଲେସନ୍ ଶ୍ରେଣୀ ଅତିକ୍ରମ କରିଥାନ୍ତି କି ନା ସନ୍ଦେହ । ଏଥିରୁ ଛାତ୍ର ହିସାବରେ ଗୋଖଲେଙ୍କର ମେଧା ଏବଂ ପ୍ରଗାଢ଼ ଅଧ୍ୟବସାୟ ସୂଚିତ ହେଉଅଛି । ବିଦ୍ୟାଳୟରେ ଅଧ୍ୟୟନ କରୁଥିଲାବେଳେ ଯେ ସେ ଶ୍ରେଣୀର ସର୍ବୋତ୍କୃଷ୍ଟ ଛାତ୍ର ଥିଲେ, ଏହା ମଧ୍ୟ ନୁହେଁ । ଗୋଟିଏ ଦରିଦ୍ର ଗୃହସ୍ଥର ସନ୍ତାନ ସେ । ଆମ୍ଭମାନଙ୍କ ଦେଶର ଦରିଦ୍ର ଛାତ୍ରଗଣ ଅଧିକାଂଶ ସମୟରେ ଅର୍ଥାଭାବ-ବଶତଃ ପାଠ୍ୟ ପୁସ୍ତକ ଏବଂ ଅନ୍ୟାନ୍ୟ ପ୍ରୟୋଜନୀୟ ଉପକରଣାଦି କ୍ରୟ କରି ପାରନ୍ତି ନାହିଁ । ଗୋଖଲେଙ୍କ ଭାଗ୍ୟରେ ତାହାହିଁ ଘଟିଥିଲା । ସେ ବିଦ୍ୟାଳୟର ଗୋଟିଏ ସାଧାରଣ ଛାତ୍ର ଥିଲେ । କେବଳ ଅଲୌକିକ ବୁଦ୍ଧି-ବିଚକ୍ଷଣତା, ପ୍ରଖର ମେଧା ଏବଂ ପ୍ରଗାଢ଼ ଅଧ୍ୟବସାୟ ତାଙ୍କୁ ଅସାଧାରଣ କରି ପାରିଥିଲା । କେବଳ ତାହାର ବଳରେ ସେ ଅଷ୍ଟାଦଶ ବର୍ଷ ବୟସରେ ବି. ଏ. ଉପାଧି ଧାରଣ କରିବାକୁ ସମର୍ଥ ହୋଇଥିଲେ ।

ଅଷ୍ଟାଦଶ ବର୍ଷ ବୟସ୍କ ଗୋଟିଏ ତରଳ ମସ୍ତିଷ୍କ ତରୁଣ ଜୀବନର ପ୍ରଥମ ସୋପାନ ଉପରେ ଦଣ୍ଡାୟମାନ ହୋଇ ଯେତେବେଳେ ଜଗତ ଆଡ଼କୁ ପ୍ରଥମ ଦୃଷ୍ଟି ନିକ୍ଷେପ କରେ, ସେତେବେଳେ ଆଶାର ମରୀଚିକା ତାର ଦୃଷ୍ଟିପଥରେ ମାୟାର ଶତ ନନ୍ଦନ ସୃଷ୍ଟି କରେ—ଯଶଃ ସମ୍ମାନର କ୍ଷଣିକ ଉନ୍ମାଦନା ତାର ପ୍ରାଣକୁ ଅଧୀର କରିପକାଏ ଏବଂ ସ୍ୱାର୍ଥ ତାର ଚତୁର୍ଦ୍ଦିଗ ରୁଦ୍ଧ କରି ସଙ୍କୀର୍ଣ୍ଣତାର ଅନ୍ଧକାରମୟ

କୂପଗର୍ଭରେ ତାକୁ ନିକ୍ଷେପ କରେ । ଗୋଖଲେ ବର୍ତ୍ତମାନ ସେହିପରି ଅବସ୍ଥାରେ ପତିତ ହେଲେ ।

ପ୍ରଭାତର ପ୍ରଥମ ପ୍ରଭା-ପାତରେ ଦର-ବିକଶିତ କମଳ-କଳିକା ଯେପରି ତାର ଭାବୀ ସୌରଭର ସୂଚନା ଦେଇଥାଏ, ଗୋଖଲେ ସେହିପରି ତାଙ୍କ ଜୀବନର ଊଷାକାଳରେ ଭାବୀ କର୍ମଠତା ଏବଂ ସ୍ୱଦେଶାନୁପ୍ରାଣତାର ପରିଚୟ ଦେଇ-ଥିଲେ । ଯେଉଁ ମହାରାଷ୍ଟ୍ରରେ ଦିନେ ଶିବାଜୀ ସଦୃଶ ମହାପୁରୁଷ ଗୋଟିଏ ମାତ୍ର କଟାକ୍ଷରେ ବିଶାଳ ମୋଗଲ ସାମ୍ରାଜ୍ୟକୁ ଛାରଖାର କରି ନିଜର ବିଜୟ-ବୈଜୟନ୍ତୀ ଉଡ଼ାଇଦେଇଥିଲେ, ଯେଉଁ ମହାରାଷ୍ଟ୍ରର ଗିରିଗୁହା କନ୍ଦରରେ ଦେଶପ୍ରୀତିର ଅମୃତମୟୀ ରାଗିଣୀ, ସ୍ୱଦେଶବତ୍ସଳତାର ଅପୂର୍ବ କାହାଣୀ ପୁଞ୍ଜୀଭୂତ, ଗୋଖଲେ ସେହି ମହାରାଷ୍ଟ୍ରର ସନ୍ତାନ । ବ୍ରିଟିଶ ଶାସନର କବଳରେ ପଡ଼ ସେତେବେଳକୁ ମହାରାଷ୍ଟ୍ରର ସମସ୍ତ ଶକ୍ତି ସାମର୍ଥ୍ୟ, ସକଳ ବଳ ବୀର୍ଯ୍ୟ ଧୂଳିରେ ମିଶି ଯାଇଥିଲା ସତ୍ୟ; କିନ୍ତୁ ତାର ପ୍ରାଣରୁ ସେହି ପୂର୍ବ ଜାତୀୟତାର ମୃଦୁ ସ୍ପନ୍ଦନ ଏକାବେଳକେ ଲୋପ ପାଇ ନ ଥିଲା । ପୂର୍ବ ମହତ୍ତ୍ୱର କ୍ଷୀଣ ସ୍ପନ୍ଦନ ତାର ଶିରା ପ୍ରଶିରାରେ ଅନ୍ତଃସଲିଳା ଫଲ୍‌ଗୁ ପରି ନବ ଜାଗରଣର ସୂଚନା ଦେଉଥିଲା । ସେତେବେଳକୁ ଭାରତଭୂମି ଉନ୍ନତିର ଉଚ୍ଚ ହିମାଳୟରୁ କକ୍ଷଚ୍ୟୁତ ତାରକାପରି ଅବନତିର ଗଭୀର ଗହ୍ୱରରେ ପତିତ ହୋଇ ନାନା କୁସଂସ୍କାରର ଆକର ହୋଇଯାଇଥିଲା । ତେଣୁ ତାର ପୁନରୁତ୍ଥାନ ପାଇଁ ବୀର-ପ୍ରସବିନୀ ମହାରାଷ୍ଟ୍ରର ପ୍ରାଣ କାନ୍ଦଉଠିଥିଲା । କି ଶାସନ, କି ରାଜନୀତି, କି ସମାଜ-ନୀତି—ସବୁ ଦିଗରେ ଆଶୁ ସଂସ୍କାରର ଆବଶ୍ୟକତା ଅନୁଭୂତ ହେଉଥିଲା ।

ଗୋଖଲେ ଯେତେବେଳେ ଅଷ୍ଟାଦଶ ବର୍ଷ ବୟସ୍କ ଯୁବକ, ସେତେବେଳେ ସମଗ୍ର ଭାରତ ଭୂମିର ଅବସ୍ଥା ଏହିପରି । ଏକେତ, ଭାରତ ଧର୍ମର ଦେଶ; ଦ୍ୱିତୀୟତଃ, ହିନ୍ଦୁର ଧର୍ମବିଶ୍ୱାସ ଅତି ପ୍ରବଳ । ଭାରତର ପୁରାଣ ମନ୍ତ୍ରମାନେ ଯେତେବେଳେ ଏହି ସବୁ କାରଣରୁ କଳଙ୍କ କାଳିମାର ସମାବେଶ ହୁଏ, ଯେତେବେଳେ ଭାରତୀୟ ଧର୍ମ ବିଜ୍ଞାନରେ ବିଜାତୀୟ ଜଡ଼ବାଦ ପ୍ରବେଶ କରି ତାକୁ ନାନା କୁସଂସ୍କାରର ଆଧାର କରିଦିଏ, ଯେତେବେଳେ ଧର୍ମ ଏବଂ ପୁଣ୍ୟର ସିଂହାସନରେ ଅଧର୍ମ, ଅନ୍ୟାୟ ଏବଂ ପାପର ଲେଲିହାନ ଶିଖା ଖାଣ୍ଡବ ପ୍ରଭାବ ବିସ୍ତାର କରେ, ସେତେବେଳେ ହିନ୍ଦୁ ଖାଣ୍ଡବଦହନ ଚିତ୍ତରେ ଧର୍ମର ଅଭ୍ୟୁତ୍ଥାନ ପାଇଁ, ଅଧର୍ମର ଉଚ୍ଛେଦ ପାଇଁ ଐଶୀ ଶକ୍ତି ପ୍ରେରଣାର ଐଶୀ ସାହାଯ୍ୟ ସହାନୁଭୂତି ପ୍ରାର୍ଥନା କରେ । କାରଣ ଭଗବାନ୍ ଶ୍ରୀକୃଷ୍ଣଙ୍କର ଉକ୍ତି ହିନ୍ଦୁର ବେଶ୍ ମନେ ଅଛି—

ଯଦା ଯଦା ହି ଧର୍ମସ୍ୟ
ଗ୍ଲାନିର୍ଭବତି ଭାରତ !
ଅଭ୍ୟୁତ୍ଥାନମଧର୍ମସ୍ୟ
ତଦାତ୍ମାନଂ ସୃଜାମ୍ୟହମ୍ ॥
ପରିତ୍ରାଣାୟ ସାଧୂନାଂ
ବିନାଶାୟ ଚ ଦୁଷ୍କୃତାଂ ।
ଧର୍ମସଂସ୍ଥାପନାର୍ଥାୟ
ସମ୍ଭବାମି ଯୁଗେ ଯୁଗେ ॥

ପ୍ରକୃତରେ ଯେତେବେଳେ ଧର୍ମର ଗ୍ଲାନି ହୁଏ ଏବଂ ଅଧର୍ମର ଅଭ୍ୟୁତ୍ଥାନ ହୁଏ, ସେତେବେଳେ ଭଗବାନ ଆପେ ଆପଣାକୁ ସୃଷ୍ଟି କରନ୍ତି । ସବୁ ଯୁଗରେ ସେ ସାଧୁମାନଙ୍କ ପରିତ୍ରାଣ ପାଇଁ ଦୁଷ୍ଟମାନଙ୍କର ବିନାଶ ପାଇଁ ଏବଂ ଧର୍ମର ସଂସ୍ଥାପନ ପାଇଁ ଧରଣୀରେ ଅବତୀର୍ଣ୍ଣ ହୁଅନ୍ତି ।

ଯେତେବେଳେ ମହାରାଷ୍ଟ୍ର ପ୍ରାନ୍ତରେ ଭାରତର ପୁନରୁତ୍ଥାନ ପାଇଁ କି ସମାଜ, କି ଶାସନ, କି ରାଜନୀତି ସବୁ କ୍ଷେତ୍ରରେ ଆଶୁ ସଂସ୍କାରର ଆବଶ୍ୟକତା ଅନୁଭୂତ ହେଲା, ସେତେବେଳେ ଦେଶବାସୀଙ୍କୁ ସଂସ୍କାରଗ୍ରହଣର ଉପଯୋଗୀ କରାଇବା ପାଇଁ ସେମାନେ ନାନାବିଧ ସଦନୁଷ୍ଠାନର ସୂତ୍ରପାତ କଲେ । ଆତ୍ମତ୍ୟାଗ, ପରପାଇଁ ହସି ହସି ପ୍ରାଣଦେବା ଭାରତ ମହାଜାତିର ପିତୃପିତାମହପ୍ରଦତ୍ତ ଦାନ । ଯେ ଯେତେ ଅଧିକ ତ୍ୟାଗ ସ୍ୱୀକାର କଲା, ଭାରତ ଚକ୍ଷୁରେ ସେ ସେତେ ମହୀୟାନ୍ ଓ ସେତେ ପୂଜ୍ୟ । ତେଣୁ ସେହି ସମସ୍ତ ସଦନୁଷ୍ଠାନର ମୂଳରେ ତ୍ୟାଗ, ଜାତୀୟତା, ଧର୍ମ ଏବଂ ସହନଶୀଳତା ପ୍ରଭୃତି ସାଧିକଜନୋଚିତ ବିଶ୍ୱତୋମୁଖୀ ଉଦ୍ଦେଶ୍ୟମାନ ନିହିତ ହେଲା ।

ସେହି ସମସ୍ତ ସଦନୁଷ୍ଠାନମାନଙ୍କ ମଧ୍ୟରେ ଦାକ୍ଷିଣାତ୍ୟ ଶିକ୍ଷା ସମିତି (The Deccan Education Society of Poona) ପ୍ରଭୃତି କେତୋଟି ଅନୁଷ୍ଠାନ ପ୍ରଧାନ କହିଲେ ଚଳେ । ବୃଦ୍ଧର ଉପଦେଶ ପରାମର୍ଶରେ ତ୍ୟାଗ ଓ ଜାତୀୟତାର ଦୃଢ଼ ଭିତ୍ତି ଉପରେ ସ୍ଥାପିତ ହୋଇ ଏବଂ ଯୁବକର ଅଦମ୍ୟ ଶକ୍ତି ଓ ଉଦ୍ଦାମ ଉତ୍ସାହରେ ପରିଚାଳିତ ହୋଇ ପ୍ରୋକ୍ତ ଅନୁଷ୍ଠାନ ଗୁଡ଼ିକ ପ୍ରକୃତରେ ଭାରତରେ ନବଯୁଗର ସୂଚନା ଦେଲା । ସବୁ ଦେଶରେ ସବୁ ଯୁଗରେ ଯୁବକ ହିଁ ଦେଶର ପ୍ରାଣ, ଯୁବକର ଶକ୍ତି ଏବଂ ଉତ୍ସାହ ହିଁ ଦେଶକୁ ସପ୍ତସ୍ୱର୍ଗକୁ ଉଠାଇ ଥାଏ ବା ସପ୍ତପାତାଳ ତଳେ ପକାଇଥାଏ । ଆଉ ବୃଦ୍ଧ, ସେ ତ ଜୀବନପଥରେ ଶେଷ ପଥିକ । ତାର ଜୀବନରେ ଥାଏ କେବଳ ଅତୀତର ସୁଖଦୁଃଖ, ଅତୀତର ଅଭିଜ୍ଞତା । କିନ୍ତୁ ଏହି ଅଭିଜ୍ଞତା ଯୁବକର ଶକ୍ତି ସାମର୍ଥ୍ୟ ସହିତ ମିଳିତ ହେଲେ ସୁଫଳର ଆଶା ଅଧିକ । ୧୮୭୯ ଖ୍ରୀଷ୍ଟାବ୍ଦରେ ପୁନାରେ ଠିକ୍ ଏହିପରି ଯୁବକ ଶକ୍ତି ସହିତ ବୃଦ୍ଧର ଅଭିଜ୍ଞତା ମିଳିତ ହୋଇ ନବଉନ୍ମାଦନାର ସୂଚନା ଦେଇଥିଲା । ସେତେବେଳେ ପ୍ରଧାନ ଦେଶନେତା ଥିଲେ ଶ୍ରୀଯୁକ୍ତ ମଣ୍ଡଲିକ୍ ଏବଂ ଶ୍ରୀଯୁକ୍ତ ରାଣାଡ଼େ । ସେମାନଙ୍କ ଉପଦେଶ ପରାମର୍ଶ ଅନୁସାରେ ପରିଚାଳିତ ହୋଇ ଶ୍ରୀଯୁକ୍ତ ଭି. କେ. ଚିପ୍‌ଲୁଙ୍କର, ଶ୍ରୀଯୁକ୍ତ ଏମ୍. ବି. ନାମ୍‌ଜୁଷି, ଶ୍ରୀଯୁକ୍ତ ଜି. ଜି. ଆଗରକର ଏବଂ ଶ୍ରୀଯୁକ୍ତ ବାଳଗଙ୍ଗାଧର ତିଳକ ପ୍ରଭୃତି କେତୋଟି ଉତ୍ସାହୀ ଯୁବକ ସରକାରଙ୍କ ଠାରୁ କୌଣସି ସାହାଯ୍ୟ ଗ୍ରହଣ ନ କରି ଗୋଟିଏ ନୂତନ ଇଂରାଜୀ ସ୍କୁଲ ସ୍ଥାପନ କଲେ । ଏହି ଅନୁଷ୍ଠାନର ଉଦ୍ଦେଶ୍ୟ ହେଲା—ଧନିଦରିଦ୍ରନିର୍ବିଶେଷରେ ସକଳ ଶ୍ରେଣୀର ଲୋକମାନଙ୍କୁ ଉପଯୁକ୍ତ ଶିକ୍ଷା ପାଇଁ ସୁଯୋଗ ଦେବା ଏବଂ ସେଥିପାଇଁ ବିଭିନ୍ନ ସ୍ଥାନରେ ସ୍କୁଲ ଓ କଲେଜମାନ ସ୍ଥାପନ କରିବା ! କି ମହତ୍ ଉଦ୍ଦେଶ୍ୟ ! କି ବିରାଟ ଉଦାର ଉନ୍ନତ ପ୍ରେରଣା !!

ଏହି ଯେଉଁ କ୍ଷୁଦ୍ର ବୀଜଟି ୧୮୭୯ରେ ଭାରତର ଗୋଟିଏ କୋଣରେ—ପୁନାରେ ପ୍ରୋଥିତ ହୋଇଥିଲା, ଆଜ ତାହା ଏକ ମହାତରୁରେ ପରିଣତ ହୋଇଅଛି ଏବଂ ଧନଦରିଦ୍ରନିର୍ବିଶେଷରେ ସହସ୍ର ସହସ୍ର ଯୁବକ ଆଜ ତାର ସୁଶୀତଳ ଛାୟାତଳେ ସୁଖରେ ଉପବେଶନ କରି ଯଥାର୍ଥ ଶିକ୍ଷା ପାଉଛନ୍ତି । ସେ ଶିକ୍ଷାରେ ଅଛି ଦେଶପ୍ରୀତି, ଅଛି ଆତ୍ମତ୍ୟାଗ, ଅଛି ବିଶ୍ୱବନ୍ଧୁତା । ଯେଉଁ ତ୍ୟାଗର ଉଜ୍ଜ୍ୱଳ ଆଲୋକରେ ଭାରତ ଇତିହାସ ଚିରକାଳ ପାଇଁ ମହନୀୟ ହୋଇଅଛି, ସେହି ତ୍ୟାଗ, ସେହି ସମବ୍ୟଥା, ସେହି ଜାତୀୟତା ଭାରତର ଯୁବକ ସେଠାରୁ ପାଇପାରୁଛି ।

ପ୍ରୋକ୍ତ ଅନୁଷ୍ଠାନଗୁଡ଼ିକର ସୁଶୃଙ୍ଖଳା ଏବଂ ସୁପରିଚାଳନାପାଇଁ ୧୮୮୪ ରେ Deccan Education Society ସ୍ଥାପିତ ହୋଇଥିଲା । ବର୍ତ୍ତମାନ ଆମ୍ଭମାନଙ୍କର ଏହି ଭାରତଭୂମିରେ ଏହାର ସମକକ୍ଷ ଅନ୍ୟ କୌଣସି ସଦନୁଷ୍ଠାନ ଅଛି କି ନା ସନ୍ଦେହ । ଏହାର ତତ୍ତ୍ୱାବଧାନରେ ଫର୍ଗୁସନ କଲେଜ ଏବଂ ଆଉ କେତୋଟି ଶ୍ରେଷ୍ଠ ବଡ଼ ଶିକ୍ଷାବିଷୟକ ଅନୁଷ୍ଠାନ ପରିଚାଳିତ ହେବାକୁ ଲାଗିଲା । ଦେଶର ତ୍ୟାଗୀ ଏବଂ ଉତ୍ସାହୀ ଯୁବକମାନଙ୍କର ଅଲୌକିକ ତ୍ୟାଗ ଏବଂ ଅଦମ୍ୟ ଉତ୍ସାହ ଏହି ଅନୁଷ୍ଠାନଗୁଡ଼ିକର ପ୍ରାଣକୁ ଦୃଢ଼ ଓ ସବଳ କରି ପାରିଥିଲା । ସେମାନେ ସାମାନ୍ୟ କେତୋଟି ମାତ୍ର ଟଙ୍କା ଭତ୍ତା ସ୍ୱରୂପ ଗ୍ରହଣ କରି ୨୦ ବର୍ଷ ପର୍ଯ୍ୟନ୍ତ ସେହି ସମସ୍ତ ଅନୁଷ୍ଠାନର ସଭ୍ୟ ଶ୍ରେଣୀଭୁକ୍ତ ହୋଇ ଭାରତର ଆଖି ଫିଟାଇ ଦେଇଅଛନ୍ତି । Deccan Education Society ର କଲେଜ ଏବଂ ଅନ୍ୟାନ୍ୟ ବିଦ୍ୟାଳୟମାନଙ୍କରେ ଆଜ ପ୍ରାୟ ୩୭୦୦ ଛାତ୍ର ଶିକ୍ଷାପ୍ରାପ୍ତ ହେଉଛନ୍ତି । ସେହି ଶିକ୍ଷା ସମିତିର ସମସ୍ତ ପ୍ରକାର ପରିଚାଳନା ଭାର ଏହି ଭାରତୀୟମାନଙ୍କ ହସ୍ତରେ ରହି ଏକା ପୁନା କାହିଁକି ସମସ୍ତ ଭାରତ ପ୍ରାଣରେ ନବ ବଳ ଏବଂ ଆଶାର ସଞ୍ଚାର କରୁଅଛି ।

ଦେଶର ସାମୟିକ ଅବସ୍ଥିତି ଏବଂ ପାରିପାର୍ଶ୍ୱିକ ଅବସ୍ଥାନ ଯୁବକ ମନରେ ପ୍ରେରଣା ଆଣି ଅନେକ ସମୟରେ ତାର ଗତିପଥକୁ ପରିବର୍ତ୍ତିତ କରିଦିଏ । ଗୋଖଲେ ଯେତେବେଳେ ବି. ଏ. ଉପାଧି ଧାରଣ କରି ଯୌବନର ଅମିତ ପ୍ରେରଣା ପ୍ରାଣରେ ବହନପୂର୍ବକ କର୍ମକ୍ଷେତ୍ର ଆଡ଼କୁ ଦୃଷ୍ଟିନିକ୍ଷେପ କରନ୍ତି, ସେତେବେଳେ ସେ ଦେଖନ୍ତି—କି ସମାଜ, କି ଶାସନ, କି ନୈତିକତା ସବୁ ଦିଗରେ ଭାରତର ପ୍ରାଣ ବଡ଼ ଦୁର୍ବଳ ହୋଇପଡ଼ିଛି । ତାର ପୁନରୁତ୍ଥାନ ପାଇଁ କେତେ ନୂତନ ଅନୁଷ୍ଠାନ ଆତ୍ମପ୍ରକାଶ କରୁଅଛି । ଏ ସବୁ ଦେଖି ତାଙ୍କର ଯୌବନ-ପୂତ ପ୍ରାଣରେ କି ଏକ କରୁଣ ସ୍ପନ୍ଦନ ବାଜିଉଠିଲା । ସେ ଧନ ସମ୍ମାନର ସମସ୍ତ ମାୟା ମମତା ତ୍ୟାଗ କରି ଜାତୀୟ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ନିଜର କର୍ମକ୍ଷେତ୍ର ଠିକ୍ କରିନେଲେ । କି ଶୁଭକ୍ଷଣରେ, କି ମାହେନ୍ଦ୍ର ମୁହୂର୍ତ୍ତରେ ସେ ତାଙ୍କର ଜୀବନକୁ ସାଧନାର ଧାରାରେ ନିୟନ୍ତ୍ରିତ କରିଥିଲେ, ସେ କଥା ମନେ କଲେ ଆଜ ପ୍ରାଣ ପୁଲକରେ ପୂରିଉଠେ । ଗୋଟିଏ ବି. ଏ. ଉପାଧିଧାରୀ ଯୁବକର

ତରଳ ସରଳ ପ୍ରାଣରେ ଏତେ ମହାନୁଭବତା, ଏତେ ସ୍ୱଦେଶାନୁପ୍ରାଣତାର ସମାବେଶ ଦର୍ଶନରେ ଭାରତଭୂମି ନିଜକୁ ସୌଭାଗ୍ୟବତୀ ମନେ କରେ ।

୧୮୮୪ରେ ଗୋଖଲେ Deccan Education Societyରେ ଯୋଗଦାନ କଲେ । ୧୮୮୫ ଖ୍ରୀଷ୍ଟାବ୍ଦ ଜାନୁଆରୀ ୨ ତାରିଖରେ ଫାର୍ଗୁସନ କଲେଜ ସ୍ଥାପିତ ହେଲା ଏବଂ ସେଠାରେ ଇଂରେଜୀ ସାହିତ୍ୟ ଓ ଗଣିତ ବିଷୟକ ଅଧ୍ୟାପନା ଭାର ଗୋଖଲେଙ୍କ ଉପରେ ଅର୍ପିତ ହେଲା । ୧୮ ବର୍ଷର ଯୁବକ ଗୋଟିଏ କଲେଜର ଲେକ୍‌ଚରର୍ ପଦରେ ଅଧିଷ୍ଠିତ ହୋଇ ଯେପରି ଭାବରେ କୃତକାର୍ଯ୍ୟ ହୋଇଥିଲେ; ତାହା ଆଜି ଚିନ୍ତା କଲେ ବିସ୍ମିତ ହେବାକୁ ହୁଏ । ଶିକ୍ଷା କାର୍ଯ୍ୟରେ ସେଠାରେ ସେ ଯେଉଁ ପାରଦର୍ଶିତା ଦେଖାଇଥିଲେ, ସେଥିପାଇଁ ତାଙ୍କର କଠିନ ପରିଶ୍ରମ, ପ୍ରଗାଢ଼ ଅଧ୍ୟବସାୟ ଏବଂ ଅସାଧାରଣ ଧୀଶକ୍ତିକୁ ପ୍ରଶଂସା ନ କରି ରହିହୁଏ ନାହିଁ । ଇତିହାସ ଏବଂ ଅର୍ଥନୀତିଜ୍ଞାନ ଅଧ୍ୟାପନାରେ ସେ ଏତେ ସୁନ୍ଦର ଏବଂ ସରଳ ଭାବରେ ଛାତ୍ରମାନଙ୍କୁ ମୁଗ୍‌ଧ କରି ଦେଉଥିଲେ, ତାହା ଏକା ତାଙ୍କରି ପକ୍ଷରେ ସମ୍ଭବ ! ଇଂରେଜୀ ଭାଷାରେ ତାଙ୍କର ଯେଉଁ ଅଗାଧ ପାଣ୍ଡିତ୍ୟ ଥିଲା ତାହା କ୍ୱଚିତ୍ ଅନ୍ୟାନ୍ୟ ମନୀଷୀମାନଙ୍କ ଠାରେ ଦେଖାଯାଏ । ସେ ଯେଉଁ ପ୍ରଣାଳୀରେ ଗୋଟିଏ ନୂତନ ବିଷୟ ବା ନୂତନ ଜ୍ଞାନ ଛାତ୍ରମାନଙ୍କ ମାନସମୁକୁରରେ ପ୍ରତିଫଳିତ କରାଇ ପାରୁଥିଲେ, ତାହା ବଡ଼ ଚିତ୍ତାକର୍ଷକ । କେକାର ଉଦ୍‌ବୋଳା ବୋଲରେ ସାପ ଯେପରି ମୁଗ୍‌ଧ ହୋଇ ଧୀର ସ୍ଥିର ଚିତ୍ତରେ ତାହା ଶୁଣେ, ସେହିପରି ଗୋଖଲେ ଯେତେବେଳେ ଶ୍ରେଣୀରେ ଉପସ୍ଥିତ ହୋଇ ଅଧ୍ୟାପନା ଆରମ୍ଭ କରନ୍ତି, ସେତେବେଳେ ଛାତ୍ରମାନେ ମୁଗ୍‌ଧ ହୋଇ ପ୍ରଗାଢ଼ ମନୋଯୋଗ ସହିତ ତାଙ୍କର ପ୍ରତ୍ୟେକ ଶବ୍ଦ ତାହିଁର ପ୍ରତ୍ୟେକ ଅକ୍ଷରକୁ ଶୁଣନ୍ତି । ପ୍ରକୃତରେ ଛାତ୍ରମାନଙ୍କର ପବିତ୍ର ହୃଦୟରେ ଯଦି ଉଚ୍ଚତମ ଆସନ ଥାଏ, ତେବେ ସେ ଆସନଟି ଗୋଖଲେଙ୍କର । ଛାତ୍ରହୃଦୟର ସମସ୍ତ ଶ୍ରଦ୍ଧା ଭକ୍ତି ସେ ଗୋଟିଏ ମାତ୍ର କଟାକ୍ଷରେ, ପଦେ ମାତ୍ର କଥାରେ ପାଇ ପାରୁଥିଲେ । ବର୍ତ୍ତମାନ କେତେକ ସ୍ଥାନରେ ଦେଖାଯାଏ ଯେ, ଗୁରୁଶିଷ୍ୟଙ୍କ ମଧ୍ୟରେ ଖାଦ୍ୟ-ଖାଦକ ସମ୍ପର୍କ । ଶିକ୍ଷକ ଶିକ୍ଷାର ଆସନରେ ବସି ନିଜର ଦାୟିତ୍ୱ ଏବଂ ପଦମର୍ଯ୍ୟାଦା ଭୁଲିଯାଇ ମନେ କରନ୍ତି, ଯତେ ସେପରି ସେ ସପ୍ତସ୍ୱର୍ଗ ଉପରେ । ଆହୁରି ମଧ୍ୟ ଏକ ଶ୍ରେଣୀର ଶିକ୍ଷକ ଅଛନ୍ତି, ସେମାନେ ଛାତ୍ରର କୋମଳ ଅନ୍ତଃକରଣରେ ଯେଉଁ କେତେକ ଉଦାର ଏବଂ ଉଚ୍ଚ ବୃତ୍ତି ଅଛି, ତାହାର ମୂଳରେ କୁଠାରାଘାତ କରିବାରେ ବେଶ୍ ପାରଦର୍ଶୀ । କିନ୍ତୁ ଏ ଧରଣର ଶିକ୍ଷକତା ଏବଂ ଗୋଖଲେଙ୍କ ଶିକ୍ଷକତା ମଧ୍ୟରେ ଆକାଶପାତାଳ ପ୍ରଭେଦ । ପୂର୍ଣ୍ଣଚନ୍ଦ୍ର ଯେତେବେଳେ ହସି ହସି ଆକାଶରେ ମୂର୍ତ୍ତିଟି ଦେଖାଇଦିଏ, ସେତେବେଳେ ଏ ବିଶ୍ୱଚରାଚର ହସିଉଠେ । କି ଜଳ, କି ବନ, କି ପ୍ରାନ୍ତର ସବୁ ହିଁ ଆଲୋକରେ ସ୍ପଷ୍ଟ ହୋଇଯାଏ । ସମସ୍ତେ ହୃଦୟ ଖୋଲି ପୂର୍ଣ୍ଣଚନ୍ଦ୍ର ଆଡ଼କୁ ଗୌରବରେ ଅନାଇ ରହନ୍ତି ସିନା ! ! କିନ୍ତୁ

ଅମା ଅନ୍ଧକାର କିଏ କରେ ? ସମସ୍ତଙ୍କୁ ଗୋଟିଏ ମୋହ ନିଦ୍ରାରେ ଅଭିଭୂତ କରିଦିଏ, ସମସ୍ତଙ୍କୁ ନିରନ୍ତର ଗୋଟାଏ ଭୀଷଣ ଅନ୍ଧକାରରେ ଘୋଡ଼ାଇ ରଖେ, ଭଲ ମନ୍ଦ ସବୁ ଏକାକାର କରିଦିଏ ।

ପ୍ରକୃତରେ ଗୋଖଲେ ଗୋଟିଏମାତ୍ର କଟାକ୍ଷରେ ଛାତ୍ରଟିକୁ ଆପଣାର କରି ପାରୁଥିଲେ । ତାର ହୃଦୟର କେଉଁ କୋଣରେ କେଉଁ ପାପ ରହିଅଛି, ତାହା ସେ ସ୍ପଷ୍ଟରୂପେ ଦେଖି ପାରୁଥିଲେ । ସ୍ନେହ ଏବଂ ଭ୍ରାତୃତ୍ୱର ବନ୍ଧନରେ ଛାତ୍ରକୁ ନିଜ ପ୍ରାଣ ସହିତ କିପରି ଦୃଢ଼ ନିଗଡ଼ରେ ବାନ୍ଧି ରଖିବାକୁ ହୁଏ, ସେ ପ୍ରଣାଳୀ ସେ ଭଲରୂପେ ଜାଣିଥିଲେ । ତାଙ୍କ ଉପରେ ଛାତ୍ରସମାଜର ବିଶ୍ୱାସ ଖୁବ୍ ବେଶୀ ଥିଲା । ଏହି ସୁଯୋଗ, ଏହି ଅସାଧାରଣ ବ୍ୟକ୍ତିତ୍ୱ ଭବିଷ୍ୟତରେ ଗୋଟାଏ ମହାଜାତି ଗଠନ କରି ପାରିଛି । ବାସ୍ତବିକ ଶିକ୍ଷକ ଉପରେ ଦେଶର ଭବିଷ୍ୟତ୍ ଜାତି, ସମାଜ, ଚରିତ୍ର, ଉନ୍ନତି ଏବଂ ପ୍ରେରଣା ଏ ସମସ୍ତ ନିର୍ଭର କରେ । ଗୋଖଲେ ଶିକ୍ଷକତାର ପ୍ରକୃତ ମୂଲ୍ୟ ବୁଝିଥିଲେ । ତେଣୁ ସେ ନିଜର ଗନ୍ତବ୍ୟ ମାର୍ଗରେ ନିର୍ବିଘ୍ନରେ ଗତି କରି ପାରିଥିଲେ । ଗୁରୁ-ଜଗତରେ ସେ ଆଜି ଆଦର୍ଶ । ଆଜି ଯେଉଁମାନେ ଶିକ୍ଷାଦାନ ରୂପ ଦୁରୂହ କାର୍ଯ୍ୟ ହାତରେ ନେଇ-ଅଛନ୍ତି ବା ନେବାକୁ ଯାଉଅଛନ୍ତି, ଯେଉଁମାନଙ୍କର ବ୍ୟକ୍ତିଗତ ପ୍ରଭାବ ଆମ୍ଭମାନଙ୍କ ସାମାଜିକ ଜୀବନ ଏବଂ ଜାତୀୟ ଚରିତ୍ରକୁ ଭବିଷ୍ୟତରେ ସୁପଥରେ ବା କୁପଥରେ ପରିଚାଳିତ କରିବ, ସେମାନଙ୍କର ଥରେ ଭାବି ଦେଖିବା ଉଚିତ ଯେ କେଉଁ ଆଦର୍ଶ ରଖି ସେମାନେ ଶିକ୍ଷାଦାନ କାର୍ଯ୍ୟରେ ବ୍ରତୀ ହୋଇ-ଅଛନ୍ତି । ମହାମତି ଗୋଖଲେଙ୍କ ଶିକ୍ଷକ-ଜୀବନ ସେମାନଙ୍କର ଆଦର୍ଶ ହେଉ, ଏହା ହିଁ ଈଶ୍ୱରଙ୍କ ନିକଟରେ ବିନୀତ ପ୍ରାର୍ଥନା ।

ଫାର୍ଗୁସନ କଲେଜରେ ଯେତେଦିନ ପର୍ଯ୍ୟନ୍ତ ଗୋଖଲେ ଥିଲେ, ସେତେଦିନ ପର୍ଯ୍ୟନ୍ତ ଅନୁଷ୍ଠାନଟିର ସର୍ବବିଧ ଉନ୍ନତି ପାଇଁ ମନପ୍ରାଣ ଢାଳି ଦେଇଥିଲେ । ସେଠାରେ ଶିକ୍ଷକ ରୂପେ ସେ ଯେଉଁ କୃତିତ୍ୱ ଲାଭ କରିଥିଲେ, ତଦ୍ଦ୍ୱାରା ତାଙ୍କର ସୁଖ୍ୟାତି ଚାରିଆଡ଼େ ଛାତ୍ରମୁଖରେ ପ୍ରଚାରିତ ହେଲା । ତାଙ୍କ ନାମରେ ଆକୃଷ୍ଟ ହୋଇ ପ୍ରତିବର୍ଷ ଅନେକାନେକ ଛାତ୍ର ଉକ୍ତ କଲେଜରେ ବିଦ୍ୟାର୍ଥୀ ରୂପେ ପ୍ରବେଶ କଲେ । ଏହା କିଛି କମ୍ କଥା ନୁହେଁ । କାରଣ ଛାତ୍ରମାନେହିଁ ଶିକ୍ଷକଙ୍କର ଉତ୍କୃଷ୍ଟ ସମାଲୋଚକ । ଶିକ୍ଷକଙ୍କର ତାବତୀୟ ଦୋଷଗୁଣ ଛାତ୍ରଆଖିରେ ଲୁଚି ରହିପାରେ ନାହିଁ । ଯେଉଁ ଶିକ୍ଷକଙ୍କ ଗୁଣଗାଥା ଛାତ୍ରମୁଖରେ ପରୋକ୍ଷରେ ପ୍ରଶଂସିତ ହୁଏ, ସେ ଶିକ୍ଷକର ଶିକ୍ଷକତା ବାସ୍ତବରେ ଅନୁକରଣୀୟ ।

ଲୋକେ ମନେ କରି ପାରନ୍ତି ଯେ "ମହାରାଷ୍ଟ୍ର ଶିକ୍ଷା ସମିତି"ର ଆଜୀବନ ସଭ୍ୟମାନେ କେବଳ ସମିତି-ପରିଚାଳିତ ସ୍କୁଲ ଓ କଲେଜର ଶିକ୍ଷକ ଥିଲେ, କିନ୍ତୁ ପ୍ରକୃତରେ ତାହା ନୁହେ । ଶିକ୍ଷକତା ବ୍ୟତୀତ ନବ ସ୍ଥାପିତ କ୍ଷୁଦ୍ର କ୍ଷୁଦ୍ର ଅନୁଷ୍ଠାନ-ଗୁଡ଼ିକର ସଂଗଠନ, ପରିବର୍ଦ୍ଧନ ଏବଂ ସୁପରିଚାଳନ ପ୍ରଭୃତିର ଗୁରୁ ଭାର ସେମାନଙ୍କ ଉପରେ ନ୍ୟସ୍ତ ଥିଲା । ଗୋଖଲେ ସଦା ସଂଘର ଉଦ୍ଦେଶ୍ୟରେ

ନିଜେ ଗ୍ରାମେ ଗ୍ରାମେ, ଘରେ ଘରେ ବୁଲୁଥିଲେ ଏବଂ କଲେଜ ଓ ସ୍କୁଲ-ମାନଙ୍କରେ ସୁଶୃଙ୍ଖଳା ଓ ସୁଶାସନ ପାଇଁ ଅନେକାଂଶରେ ଦାୟୀ ରହୁଥିଲେ ।

ସମଗ୍ର ଦାକ୍ଷିଣାତ୍ୟ ଖଣ୍ଡରେ କେବଳ ପୁନାରେ ଏହି ସବୁ ଉଦାର ଅନୁଷ୍ଠାନର ସୂତ୍ରପାତ କଥା ଆଲୋଚନା କଲେ ଜଣକର କଥା ଭୁଲିହୁଏ ନାହିଁ । ସେ ଜଣକ ହେଉଅଛନ୍ତି ମହାରାଷ୍ଟ୍ର ଜାତୀୟ ଜୀବନର ପ୍ରାଣପ୍ରତିଷ୍ଠାତା — ମହାମତି ଗୋବିନ୍ଦ ରାଣାଡେ । ସେ ତାଙ୍କ ଜୀବନ-କାଳ ମଧ୍ୟରେ ମହାରାଷ୍ଟ୍ର ପ୍ରାଣରେ ଯେଉଁ ଜାଗରଣ, ଯେଉଁ ଚେତନା ଢାଳି ଦେଇ ଗଲେ, ତାହା ଦ୍ୱାରା ଭାରତର ଭାଗ୍ୟ ଆଜି ଅନେକାଂଶରେ ପରିବର୍ତ୍ତିତ ହୋଇ ଯାଉଛି । ପୁନାର ସାର୍ବଜନୀନ ସଭା ପ୍ରୋକ୍ତ ଉଦାର ଅନୁଷ୍ଠାନମାନଙ୍କ ମଧ୍ୟରୁ ଗୋଟିଏ ଏବଂ ରାଣାଡେଙ୍କର ପ୍ରଭାବ ଓ ଉପଦେଶ ପରାମର୍ଶରେ ଏହା ପରିଚାଳିତ ହୋଇ ଦେଶର ଅନେକ ମଙ୍ଗଳ ସାଧନ କରିପାରିଥିଲା । ଦେଶର ନାନା ହୃଦୟର ଏବଂ ନାନା ଧରଣର ଯୁବକ ରାଣାଡେଙ୍କର ସମ୍ପର୍କରେ ଆସି ନିଜର ଯୌବନ ସୁଲଭ ଉତ୍ସାହ ଏବଂ ଶକ୍ତିର ପ୍ରକୃତ ସଦ୍-ବ୍ୟବହାର କରି ପାରିଥିଲେ । ମହାମତି ଗୋଖଲେ ଅତି ଶୁଭକ୍ଷଣରେ ତାଙ୍କର ପ୍ରଭାବରେ ଆସିଥିଲେ । ତାଙ୍କଠାରୁ ସେ ଦେଶପ୍ରୀତି ଏବଂ ରାଜନୀତି ସମ୍ବନ୍ଧରେ ଅନେକ କଥା ଶିକ୍ଷା କରି ପାରିଥିଲେ । ଋଷିପ୍ରତିମ ରାଣାଡେଙ୍କର ପଦପ୍ରାନ୍ତରେ ୧୪ ବର୍ଷକାଳ ବସି ଗୋଖଲେ ଭାରତ ମହାଜାତିର ଉତ୍‌ଥାନ ପତନ, ଦେଶର ଭାବୀ ଶୋଚନୀୟତା, ରାଜନୀତିର ଗୂଢ଼ ରହସ୍ୟ, ସ୍ୱାର୍ଥତ୍ୟାଗର ପୂତ ମାଧୁର୍ଯ୍ୟ, ପ୍ରେମର ଅମିତ ମହିମା ଇତ୍ୟାଦି ବିଷୟରେ ଯେଉଁ ସାରବାନ୍ ଗମ୍ଭୀର ଉପଦେଶାବଳି ଲାଭ କରିଥିଲେ, ତାହାର ବଳରେ ତାଙ୍କର ଭବିଷ୍ୟତ ଜୀବନ ମଧୁମୟ ହୋଇ ଥିଲା, ତାହାର ପ୍ରେରଣାରେ ତାଙ୍କର ଭବିଷ୍ୟତ କର୍ମ-ଉତ୍ସ ସ୍ୱାର୍ଥସ୍ତୂପକୁ ଫଟାଇ ଦେଇ ଭାରତର ଚତୁର୍ଦ୍ଦିଗରେ ଖେଳି ଯାଇଥିଲା । ବାସ୍ତବରେ କେତେ ଦିବସ ଯାମିନୀ, କେତେ ସୂର୍ଯ୍ୟ ଚନ୍ଦ୍ର ଆକାଶରେ ହସି ହସି ଦିନ ଦିନକର କର୍ମ ଶେଷ କରି ବିଶ୍ରାମ ନେଇଅଛନ୍ତି, କିନ୍ତୁ ଗୋଖଲେ ଗୁରୁଙ୍କ ନିକଟରେ ଅବିଶ୍ରାନ୍ତ ଭାବରେ ବସି ଯେ କେତେ ଉପଦେଶ ଗ୍ରହଣ କରି ଅଛନ୍ତି, ତାହାର ଇୟତ୍ତା ନାହିଁ । ରାଣାଡେ ନିଜର ଜୀବନକାଳ ମଧ୍ୟରେ ବହୁ ଗବେଷଣା କରି ଜାଣିଥିଲେ ଯେ ଅର୍ଥ-ଶାସ୍ତ୍ରର ଆଲୋଚନା ବ୍ୟତିରେକେ ଦେଶର ଏଇ ଶୋଚନୀୟ ମର୍ମନ୍ତୁଦ ଦାରିଦ୍ର୍ୟ ଅପସାରିତ ହେବ ନାହିଁ । ଦେଶବାସୀଙ୍କ ନିକଟରେ ମଧ୍ୟ ସେ ଏ କଥା ଗୁରୁ ଗମ୍ଭୀର ସ୍ୱରରେ ପ୍ରକାଶ କରିଥିଲେ । ଉପଯୁକ୍ତ ଗୁରୁଙ୍କର ଉପଯୁକ୍ତ ଶିଷ୍ୟ ଗୋଖଲେ ତାଙ୍କର ଏହି କଥାର ଗୁରୁତ୍ୱ ଉତ୍ତମରୂପେ ହୃଦୟଙ୍ଗମ କରି ପାରିଥିଲେ ଏବଂ ନିଜର ଜୀବନକାଳ ମଧ୍ୟରେ ଅର୍ଥଶାସ୍ତ୍ରର ଗଭୀର ଗବେଷଣାରେ ଆପଣାକୁ ନିୟୋଜିତ କରିଥିଲେ ।

ଏ ଜଗତରେ ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନେ ଏକ ସମୟରେ ବିଭିନ୍ନ ପ୍ରକୃତିର ଅନେକଗୁଡ଼ିଏ କାର୍ଯ୍ୟ ଏକାବେଳକେ ହାତରେ ନିଅନ୍ତି । ଫଳରେ କୌଣସି ଗୋଟିଏ କାର୍ଯ୍ୟ ସୁଶୃଙ୍ଖଳରୂପେ

ସମ୍ପନ୍ନ କରିବା ସେମାନଙ୍କ ଭାଗ୍ୟରେ ଘଟେ ନାହିଁ । ଜଗତରେ ଅନେକ ବିଷୟ ଆମ୍ଭମାନଙ୍କ ଅଜ୍ଞାତରେ ଅଛି । ସେ ସମସ୍ତ ଜାଣିବା ଅବଶ୍ୟ ଆମ୍ଭମାନଙ୍କ ପକ୍ଷରେ ବାଞ୍ଛନୀୟ । କିନ୍ତୁ ସେ ସମସ୍ତର ସମ୍ୟକ୍ ଅନୁଶୀଳନ ମାନବର କ୍ଷୁଦ୍ର ଜୀବନକାଳ ମଧ୍ୟରେ ଅସମ୍ଭବ । ଜଗତରେ ମାନବର କ୍ଷଣିକ ପରିସ୍ଥିତି ତୁଳନାରେ ଜୀବନରେ ଆଲୋଚନା କରିବାକୁ ହେବ ଗୋଟିଏ ବିଷୟର । ଇଂରେଜୀରେ ଗୋଟିଏ ପ୍ରବଚନ ଅଛି—"One thing at a time is the best." ପ୍ରକୃତରେ ଯେଉଁ ଲୋକ ସମସ୍ତ ଜୀବନକୁ ଗୋଟିଏ ଦିନ ମନେକରି କେବଳ ମାତ୍ର ଗୋଟିଏ ବିଷୟର ଆଲୋଚନାରେ କଟାଇଦିଏ, ସେହି ଏକା ତାର ଜୀବନରେ କିଛି ନା କିଛି ମହତ୍ତ୍ୱକାର୍ଯ୍ୟ କରିବାକୁ ସମର୍ଥ ହୁଏ । ଯାହାର ଯେଉଁ ବିଷୟରେ ଭଲ ପ୍ରବେଶ ଅଛି, ସେ ସେହି ବିଷୟଟିରେ ତାହାର ସକଳ ଆଲୋଚନା, ସକଳ ଗବେଷଣାକୁ କେନ୍ଦ୍ରୀଭୂତ କରୁ । ତାହା ନ କରି ପ୍ରତିଷ୍ଠା-ପ୍ରାପ୍ତି ଆଶାରେ ଯେଉଁ ଲୋକ ଅନଧିଗମ୍ୟ ବିଷୟରେ ହସ୍ତକ୍ଷେପ କରେ, ସେ ଶେଷରେ ଚନ୍ଦ୍ରୀକୂଳର ହୁଏନା କି ଚେଲୀକୂଳର ହୁଏନା । ଦୁଇ ନାବରେ ଗୋଡ଼ ଦେଇ ଗୋଟାଏ ଲକ୍ଷ୍ୟହୀନ ଅନନ୍ତ ବାରିଧି ଗର୍ଭରେ ନିଜର ଜୀବନକୁ ଭସାଇଦିଏ । ଏହି ସମ୍ପର୍କରେ ବିଷ୍ଣୁ-ଶର୍ମାଙ୍କର ମଧୁମୟୀ ଉକ୍ତି ମନେପଡ଼େ—

ଯୋ ଧ୍ରୁବାଣି ପରିତ୍ୟଜ୍ୟ
ହ୍ୟଧ୍ରୁବାଣି ନିଷେବତେ ।
ଧ୍ରୁବାଣି ତସ୍ୟ ନଶ୍ୟନ୍ତି
ଅଧ୍ରୁବଂ ନଷ୍ଟମେବ ହି ॥

କିନ୍ତୁ ଗୋଖଲେ ସାରା ଜୀବନ ଧରି ଗୋଟିଏ ମାତ୍ର ବିଷୟ—ସେହି ଅର୍ଥ-ଶାସ୍ତ୍ରର ଅନୁଶୀଳନ କରିଥିଲେ । ହିନ୍ଦୁ ଉଜାଗର ରହି ଶିବ ଚତୁର୍ଦ୍ଦଶୀ ବ୍ରତ ପାଳନ କରେ ଏବଂ ଆତ୍ମାତ୍ମାର ସଦ୍‌ଗତି ପାଇଁ ବିଶ୍ୱପିତାଙ୍କର କୃପାକଣିକା ଭିକ୍ଷା କରେ । କିନ୍ତୁ ଗୋଖଲେ ତାଙ୍କର ସମସ୍ତ ଜୀବନକୁ ଗୋଟିଏ ଶିବରାତି କରି ପାରି-ଥିଲେ ଏବଂ ସେହି ଦୀର୍ଘକାଳ ରାତିରେ ତାଙ୍କର ଆଲୋଚନାର ବିଷୟ ଥିଲା—ଅର୍ଥଶାସ୍ତ୍ର । ଗୋଖଲେ ଭବିଷ୍ୟତରେ ଯେ ଏତେ ମହତ୍ତ୍ୱ ହୋଇ ପାରିଥିଲେ, ତାହାର ମୂଳରେ ଏହି ଦୃଢ଼ ସାଧନାଟିର ରୋପନ ଇତାସ ଲୁକ୍‌କାୟିତ । ସାହିତ୍ୟ, ଗଣିତ, ଇତିହାସ ପ୍ରଭୃତି ଅନେକ ବିଷୟରେ ତାଙ୍କର ଅବଶ୍ୟ ଅଗାଧ ପାଣ୍ଡିତ୍ୟ ଥିଲା, ଏହା କେହି ଅସ୍ୱୀକାର କରି ପାରିବେ ନାହିଁ । କିନ୍ତୁ ସେଗୁଡ଼ିକ ତାଙ୍କ ଜୀବନରେ ଗୌଣ ଆଧିପତ୍ୟ ବିସ୍ତାର କରିଥିଲା । ଭାରତର ଏହି ଯେ ଶିରନ୍ତନ ଦାରିଦ୍ର୍ୟ ତାର ପ୍ରାଣକୁ ଶୁଖିଆଡ଼ ଶିଥିଳ କରି ପକାଇଛି, ତାହାର ମୂଳ କେଉଁଠାରେ ? କିଣ କଲେ ଏହି ମର୍ମନ୍ତୁଦ ଦାରିଦ୍ର୍ୟ ଭାରତ-ଭବନରୁ ଚିରକାଳ ପାଇଁ ବିଦାୟ ନେବ, ଅର୍ଥଶାସ୍ତ୍ରର ଏହି ଜଟିଳ ସମସ୍ୟା ସମାଧାନ ତାଙ୍କ ଜୀବନର ଥିଲା ମୁଖ୍ୟ ସାଧନା । କାରଣ ଦେଶର ଦୁଃଖ ଦର୍ଶନରେ ତାଙ୍କ ପ୍ରାଣର ନିଭୃତ ତନ୍ତ୍ରୀଟି ବାଜି ଉଠିଥିଲା । ସେ ଦେଶକୁ ଏବଂ ଦେଶର ଲୋକଙ୍କୁ ନିଜର ପ୍ରାଣଠାରୁ ବଳି ଭଲ ପାଉଥିଲେ, ଯେଉଁ ଦେଶର ଯୁବକ ତାର ଯୌବନରେ ଏତେ ଦେଶପ୍ରୀତି —ଏତେ ଦଶପ୍ରୀତି ବହନ କରିପାରେ,

ସେ ଦେଶ ଧନ୍ୟ ! ସେ ଯୌବନ ଧନ୍ୟ ।

ଆଜ ଏହି ବିଂଶ ଶତାବ୍ଦୀର ଭାରତର ଯୁବକର ଯୌବନ ଉପରେ ବୃଦ୍ଧର ବାର୍ଦ୍ଧକ୍ୟର ଜରାଗ୍ରସ୍ତ ସ୍ପର୍ଶ ଯେଉଁ ଶୋଚନୀୟ ଆଧିପତ୍ୟ ବିସ୍ତାର କଲାଣି — ସେ କଥା ଭାବିଲେ ଚକ୍ଷୁରେ ଲୋତକ ଆସେ । ବୃଦ୍ଧର ଚକ୍ଷୁରେ ଆଜ ଯୁବକର ଯୌବନ ସତେ ଯେପରି ଗୋଟାଏ ଭୀଷଣ ଅଭିଶାପ — ବୃଦ୍ଧର ଚକ୍ଷୁରେ ଆଜ ଯୁବକର ଯୌବନ ସତେ ଯେପରି ଗୋଟିଏ ନିର୍ଗନ୍ଧ କିଂଶୁକ — ବୃଦ୍ଧର ଚକ୍ଷୁରେ ଆଜ ଯୁବକର ଯୌବନ ସତେ ଯେପରି ଗୋଟାଏ ଦୀପ୍ତିହୀନ ଶଶୀ । ଅତୀତର ଅନୁଭୂତି, ଅତୀତର ଅଭିଜ୍ଞତା ଠିକଣା ପାଇଁ ବୃଦ୍ଧର ଗର୍ବସ୍ଫୀତ ପଦ-ପ୍ରହାର ଆଜି ଯୁବକର ଯୌବନକୁ ଧୂଳି-ଧୂସରିତ କରିଦେଉଅଛି । ଆଉ ଯୁବକ ଅଭିଜ୍ଞତାର ଅଭାବ ଅନୁଭବ କରି ତାହା ନତଜାନୁ ହୋଇ ସହ୍ୟ କରୁଛି । ଉତ୍କଳର ଯୁବକବୃନ୍ଦ ! ଭାରତର ଯୁବକ-ବୃନ୍ଦ ! ମହାରଥୀ ଖ୍ରୀଷ୍ଟଙ୍କ ଯୌବନ ଦିନେ ଭୂମିର ପୁଣ୍ୟ ମହିମାକୁ ସପ୍ତସ୍ୱର୍ଗ ଉପରେ ଟେକି ଧରିଥିଲା, ଆଉ ଆଜ ମଧ୍ୟ ଟେକିଧରିଛି । ଅତୀତର କେଉଁ ତାମସ ଗହ୍ୱରରେ ଦିନେ ଖ୍ରୀଷ୍ଟ ତାଙ୍କର ଯୌବନକୁ ଭବିଷ୍ୟତ ବଂଶଧରଙ୍କ ପାଇଁ ଆଦର୍ଶ ରୂପେ ଦେଖାଇଥିଲେ । ସେହି ସ୍ମୃତିର ଉଦ୍‌ବୋଧନ ପାଇ ସେହି ଆଦର୍ଶର ଅନୁଧାବନ ପାଇଁ ଊନବିଂଶ ଶତାବ୍ଦୀର ଶେଷ ପାଦରେ ସେହି ବିବେକାନନ୍ଦ ଦୀପ୍ତି-ବିଭାସିତ ଯୌବନ ରୋଷିଲେଙ୍କ ଜୀବନରେ ଥରେ ଦେଖା ଦେଇଥିଲା । ଜାଗ୍ରତ ହୋଇ ଉଠ, ଥରେ ବୀର ବକ୍ଷମଧ୍ୟରେ ଭାରତୀୟ ଆଶ୍ରମ ଯୌବନର ଅନୁସରଣ କରି ଭାରତର ମହାମାନବିକତାକୁ ଉନ୍ନତ ଆଡ଼କୁ ଟାଣି ନିଅ । ଯୌବନରେ ତ୍ୟାଗ, ଯୌବନରେ ଦେଶପ୍ରୀତି, ଯୌବନରେ ମହତ୍ତ୍ୱ ଆକାଙ୍କ୍ଷା, ଯୌବନରେ କଠୋର ବ୍ରହ୍ମଚର୍ଯ୍ୟ, ଯୌବନରେ ଆକାଶଚୁମ୍ବୀ ମହାନ୍ ଆଦର୍ଶ, ହେ ଯୁବକ, ହୃଦୟରେ ପୋଷଣ କରି, ଶିଳ୍ପୀ ସାଧାରଣ ପ୍ରସ୍ତରରୁ ଗୌରବମୟ ଅଶୋକସ୍ତମ୍ଭ, ଧ୍ୟାନସ୍ତିମିତ-ନେତ୍ର ବୁଦ୍ଧ ମୂର୍ତ୍ତି ଗଢ଼ିଲା ପରି, ଆପଣା ଆପଣାକୁ ଗଢ଼ ।

## ତୃତୀୟ ପ୍ରକାଶ

ପ୍ରଜାର ସାର୍ବଜନୀନ ସଭା ବିଷୟରେ ପୂର୍ବରୁ କିଞ୍ଚିତ୍ ଆଭାସ ଦିଆଯାଇଅଛି । ବୋମ୍ବାଇ ପ୍ରେସିଡେନ୍‌ସିର କି ସାମାଜିକ, କି ରାଜନୈତିକ ସକଳ ପ୍ରକାର ଆବର୍ତ୍ତନ ବିବର୍ତ୍ତନର ମୂଳରେ ଏହି ସମିତିର କର୍ମତତ୍ପରତା ବିଦ୍ୟମାନ । ମହାଦେବ ଗୋବିନ୍ଦ ରାନାଡେ ଏହାର ଜନ୍ମଦାତା । ତାଙ୍କର ବିଚକ୍ଷଣ ନୀତି ପାରଗତାରେ ଏହି ସମିତି ମହାରାଷ୍ଟ୍ରର ପ୍ରାଣରେ ଯେଉଁ ଜାଗରଣ, ଯେଉଁ ଚେତନା ଦେଇଛି, ତାହାରି ଫଳରେ ଦେଶବାସୀ ସମସ୍ତେ ସେ ସମିତି ଉପରେ ଆଜ ପ୍ରଗାଢ଼ ଆସ୍ଥା ଦେଖାଉଅଛନ୍ତି ।

ଯେଉଁ ସମୟର କଥା କୁହାଯାଉଅଛି ସେ ସମୟରେ ଏହି ସମିତି ପକ୍ଷରୁ ଖଣ୍ଡିଏ ତ୍ରୈମାସିକ ପତ୍ରିକା ପ୍ରକାଶିତ ହେଉଥିଲା । ସେଥିରେ ଭାରତର ରାଜନୀତି ଓ ଅର୍ଥନୀତି

ପ୍ରଭୃତି ସୂକ୍ଷ୍ମ ଏବଂ ଜଟିଳ ସମସ୍ୟାମାନଙ୍କର ସମାଲୋଚନା ହେଉଥିଲା । ରାଣାଡେ ସେତେବେଳେ ଏହି ପତ୍ରିକାର ପ୍ରଧାନ ଅବଲମ୍ବନ, ଏପରି କି ପ୍ରାଣ ସ୍ୱରୂପ ଥିଲେ ବୋଲି କହିଲେ ଚଳେ । ଭାରତୀୟ ମାନବିକତାର ଯେଉଁ ବିଶିଷ୍ଟ ଶକ୍ତି—ଯେଉଁ ବିଶିଷ୍ଟ ଦାନ ସେ ବିଶ୍ୱସ୍ରଷ୍ଟାଙ୍କ ଠାରୁ ପାଇଥିଲେ, ତାହା ଭାଷାରେ ପ୍ରକାଶ କରାଯାଇ ପାରିବ ନାହିଁ । ଲୋକେ ସମୁଦ୍ରକୁ ରତ୍ନର ଆକର ବୋଲି କହିଥାନ୍ତି । ସେହି ହିସାବରେ ତାଙ୍କୁ ଗୁଣରେ ଆକର ବୋଲି ନିଃସନ୍ଦେହରେ ବୋଲାଯାଇ ପାରିବ । ତାଙ୍କର ସେହି ଗୁଣରାଶି ମଧ୍ୟରେ ଗୋଟିଏ ଗୁଣ ଥିଲା ଏହି ଯେ—ସେ ଲୋକ ଚିହ୍ନି ପାରୁଥିଲେ । କେଉଁ ଲୋକଦ୍ୱାରା କି କାର୍ଯ୍ୟ ସମାଧାନ କରାଯାଇ ପାରିବ, ତାହା ଅବଧାରଣ କରିବା ବିଷୟରେ ସେ ବେଶ୍ ନିପୁଣ ଥିଲେ । ତେଣୁ ଯୁବକ ଗୋଖଲେ ଅଧିକ ଦିନ ସେ ଗୁଣଲୋଲୁପ ଚକ୍ଷୁର ଅନ୍ତରାଳରେ ରହିପାରି ନ ଥିଲେ । ୧୮୮୭ରେ ସେ ତାଙ୍କୁ ଉକ୍ତ ତ୍ରୈମାସିକ ପତ୍ରିକାର ସହକାରୀ ସମ୍ପାଦକ କରିଦେଲେ । ଏହିରୂପେ ଉପଯୁକ୍ତ ଶିଷ୍ୟଙ୍କୁ ପରୀକ୍ଷାର ଉପଯୁକ୍ତ କ୍ଷେତ୍ରରେ ପକାଇ ଦେଇ ରାଣାଡେ ମାଉବରେ ଭୁଷର ଅଭାବନୀୟ କୃତିତ୍ୱ ଦେଖି ପ୍ରାଣରେ ଯେଉଁ ସ୍ୱର୍ଗୀୟ ଆନନ୍ଦ ଅନୁଭବ କରିପାରିଥିଲେ, ତାହା କବିକଳ୍ପନାର ଅତୀତ । ପ୍ରକୃତରେ ଜଣେ ୨୧ ବର୍ଷର ଯୁବକ ସେତେବେଳେ ଯେପରି ଦକ୍ଷତା ଏବଂ ଦୂରଦର୍ଶିତାର ସହିତ ଦେଶର ନାନାବିଧ ଜଟିଳ ସମସ୍ୟାର ଯୁକ୍ତିଯୁକ୍ତ ଅବଧାରଣମାନ ପତ୍ରିକାରେ ଆଲୋଚନା କରୁଥିଲେ, ତାହା ଗୁରୁ ରାଣାଡେଙ୍କ ପକ୍ଷରେ ତଥା ଦେଶର ଯୁବକ ସମ୍ପ୍ରଦାୟଙ୍କ ପକ୍ଷରେ ଅଭାବନୀୟ ଗୌରବର ବିଷୟ କହିଲେ ଚଳେ । ଏହି ସମ୍ପାଦକତ୍ୱ ତାଙ୍କ ଜୀବନର ଏକ ବିଶିଷ୍ଟ ସ୍ମରଣୀୟ ଘଟଣା, କାରଣ ଭାବୀକର୍ମଠତାର ଅଭିନୟ ପ୍ରଦର୍ଶନ ପାଇଁ ତାଙ୍କ ଜୀବନ-ଜବନିକାର ପ୍ରଥମ ଉତ୍ଥାନ ଏହିଠାରେ ସ୍ୱତଃ ସଂଘଟିତ ହୋଇଥିଲା ।

ରାଣାଡେଙ୍କ ଠାବରେ ଗୋଖଲେଙ୍କର ପ୍ରଗାଢ଼ ଭକ୍ତି ଥିଲା । କୌଣସି ସଭା-ସମିତିରେ କିଛି କହିବାକୁ ଗଲେ ସେ ପ୍ରଥମେ ରାଣାଡେଙ୍କର ନାମ ସ୍ମରଣ କରି ପରେ ନିଜର ବକ୍ତବ୍ୟ ପ୍ରକାଶ କରୁଥିଲେ । ଏହାହିଁ ପ୍ରକୃତରେ ଆଶ୍ରମ ଯୁଗର ଗୁରୁଭକ୍ତି । ବିଂଶ ଶତାବ୍ଦୀରେ ତାହାର ପର୍ଯ୍ୟବସାନ ସ୍ୱପ୍ନରାଜ୍ୟରେ ସିନା !! ରାଣାଡେଙ୍କର ଶିଷ୍ୟ ଥିଲେ ବୋଲି ସେ ପ୍ରାଣରେ ଗର୍ବ ଅନୁଭବ କରୁଥିଲେ । ସେ ଯେ କେବଳ ରାଜନୀତି କ୍ଷେତ୍ରରେ ତାଙ୍କର ଗୁରୁ ଥିଲେ ତାହା ନୁହେଁ, ନୈତିକତା, ଆଧ୍ୟାତ୍ମିକତା ପ୍ରଭୃତି ସକଳ ପ୍ରକାର ଶିକ୍ଷା ସେ ତାଙ୍କଠାରୁ ପାଇ ପାରିଥିଲେ । ଅନେକ ରାଜନୀତି ଭିତରେ ନୈତିକତାକୁ ସ୍ଥାନ ଦେବାକୁ କୁଣ୍ଠାବୋଧ କରନ୍ତି । କିନ୍ତୁ ଗୋଖଲେ ସେ ଧରଣର ଲୋକ ନ ଥିଲେ । ନୀତିପରାୟଣତା ତାଙ୍କ ଜୀବନର ମୂଳମନ୍ତ୍ର ଥିଲା ଏବଂ ନୈତିକ ଶିକ୍ଷାକୁ ରାଜନୀତିକ୍ଷେତ୍ରର ପ୍ରଧାନ ଏବଂ ପ୍ରଥମ ଶିକ୍ଷା ବୋଲି ସେ ମନେ କରୁଥିଲେ । ପ୍ରକୃତରେ ଯେ ପର୍ଯ୍ୟନ୍ତ ଆମ୍ଭମାନଙ୍କର ଜାତୀୟ ଚରିତ୍ର ନୈତିକତାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ନ ହୋଇଛି,

ସେ ପର୍ଯ୍ୟନ୍ତ ଆମ୍ଭେମାନେ ଜଗତରେ ଗୋଟାଏ ଉନ୍ନତ ଜାତି ବୋଲି ଗର୍ବ ଅନୁଭବ କରିପାରିବୁ ନାହିଁ । ଜାତୀୟ ଚରିତ୍ର ହିଁ ଜାତୀୟ ଉନ୍ନତିର ମୂଳ ।

ଆମ ଭାରତୀୟମାନେ, ବିଶେଷତଃ ଯୁବକ ସମ୍ପ୍ରଦାୟ ମନେକରନ୍ତି ଯେ, ଦେଶସେବକ ହେବାକୁ ଗଲେ କୌଣସି ଶିକ୍ଷା ଓ ସାଧନାର ଆବଶ୍ୟକତା ନାହିଁ । ଯେଉଁମାନେ ଶିକ୍ଷା ଓ ସାଧନାର ଅଭାବରେ ଦେଶସେବାକୁ ଦୁରୂହ ମନେ କରନ୍ତି, ସେମାନେ ପକ୍ଷାନ୍ତରରେ ବିକାଶୋନ୍ମୁଖିମ ଦେଶପ୍ରୀତିକୁ କଳିକା ଅବସ୍ଥାରେ ବୃନ୍ତଚ୍ୟୁତ କରିଦଅନ୍ତି । ଦେଶସେବାରେ ମନପ୍ରାଣ ଢାଳି ଦେବାକୁ ଯେଉଁ ଯୁବକ ବଦ୍ଧପରିକର ହୋଇ ବାହାରେ, ତାକୁ ଶିକ୍ଷା, ଓ ସାଧନାର ଅଭାବ ଅସୁବିଧା ବୁଝାଇଲେ ତାର ସକଳ ଉତ୍ସାହ ଓ ଉଦ୍ୟମ ଭାଙ୍ଗିଯାଏ ଏବଂ ଦେଶସେବାକୁ ସେ ଗୋଟାଏ ମହାଦୁରୂହ କାର୍ଯ୍ୟ ମନେକରି ଜୀବନର ଗତି ପରିବର୍ତ୍ତନ କରିବାକୁ ବାଧ୍ୟ ହୁଏ । ଏହି କଥା କହି ଯେଉଁମାନେ ଦେଶସେବକର ଶିକ୍ଷା ଓ ସାଧନାକୁ ଉଡ଼ାଇ ଦଅନ୍ତି, ସେମାନେ ଥରେ ଗୋଖଲେଙ୍କର ଶିକ୍ଷା ଓ ସାଧନା ବିଷୟ ଚିନ୍ତା କରନ୍ତୁ ।

ଗୋଖଲେ ଗଭୀର ଗବେଷଣା କରି ଜାଣିଥିଲେ ଯେ ଯଦି ଭାରତକୁ ଜାଗ୍ରତ କରିବାକୁ ହେବ, ଯଦି ଆଶ୍ରମର ପୂତ ହୋମ ଗନ୍ଧରେ ଭାରତୀୟ ବାୟୁକୁ ପୁନର୍ବାର ସୌରଭମୟ କରିବାକୁ ହେବ, ତେବେ ତାର ଜାତୀୟ ଜୀବନରୁ ସମସ୍ତ ଦୁର୍ବଳତାର ଅପନୋଦନ ସର୍ବାଗ୍ରେ ବାଞ୍ଛନୀୟ । ସାମାଜିକତା, ଜାତୀୟ ଚରିତ୍ର, ରାଜନୀତି ଏବଂ ଅର୍ଥବିଜ୍ଞାନ—ଏହି ସବୁ ଦିଗରୁ ଦୃଢ଼ ପଦବିକ୍ଷେପରେ ଧୀରମନ୍ଥର ଗତିରେ ଭାରତର ପ୍ରାଣକୁ ସବଳ କରିବାକୁ ହେବ, କୁସଂସ୍କାରକୁ ବିଦାୟ ଦେଇ ସୁସଂସ୍କାରକୁ ବରଣ କରିବାକୁ ହେବ । ଏହି ଧାରଣା ଯେ କେବଳ ତାଙ୍କ କଳ୍ପନାରେ ପର୍ଯ୍ୟବସିତ ହୋଇଥିଲା, ତାହା ନୁହେଁ । ସେ ଏହି ଧାରଣାକୁ ତାଙ୍କ ଜୀବନକାଳ ଭିତରେ କାର୍ଯ୍ୟରେ ପରିଣତ କରିଅଛନ୍ତି । ଶଂସିତ ସମୟରେ ପୁନାରୁ "ସୁଧାରକ" ନାମରେ ଗୋଟିଏ ସାପ୍ତାହିକ ସମ୍ବାଦପତ୍ର ପ୍ରକାଶିତ ହେଉଥିଲା । ଏହାର ଅର୍ଦ୍ଧାଂଶ ମରହଟ୍ଟୀ ଭାଷାରେ ଲିଖିତ ହେଉଥିଲା । ଦେଶବାସୀଙ୍କୁ ନୂତନ ସଂସ୍କାର, ନୂତନ ପରିବର୍ତ୍ତନର ପଥ ପ୍ରଦର୍ଶନ କରିବା ଏହାର ଉଦ୍ଦେଶ୍ୟ ଥିଲା । ଗୋଖଲେ ୪ ବର୍ଷ କାଳ ଏହି ପତ୍ରିକାର ସମ୍ପାଦନାଭାର ଗ୍ରହଣ କରି ଦେଶବାସୀଙ୍କ ସମ୍ମୁଖରେ ନିଜର କଳ୍ପିତ ସଂସ୍କାରକୁ ଯେପରି ଭାବରେ ଉପସ୍ଥାପିତ କରିଥିଲେ, ତାହା ତାଙ୍କ ଅଭାବନୀୟ ଦୂରଦୃଷ୍ଟିର ପରିଚାୟକ ।

ଆମମାନଙ୍କ ଉତ୍କଳ ପ୍ରଦେଶରେ ଯେପରି ପ୍ରାଦେଶିକ ସମ୍ମିଳନୀ ଅଛି, ବୋମ୍ବାଇ ପ୍ରେସିଡେନ୍‌ସିରେ ଠିକ୍ ସେହିପରି ଗୋଟିଏ ସମ୍ମିଳନୀ ଅଛି । ପ୍ରତି ବର୍ଷ ଥରେ ଏହି ସମ୍ମିଳନୀର ବୈଠକ ହୁଏ ଏବଂ ସେହି ବୈଠକରେ ଦେଶର ଭୂତ-ଭବିଷ୍ୟ-ବର୍ତ୍ତମାନ ପୁଙ୍ଖାନୁପୁଙ୍ଖରୂପେ ଆଲୋଚିତ ହୁଏ । ଦେଶର ଗଣ୍ୟମାନ୍ୟ ନେତାମାନେ ଏଠାରେ ଏକତ୍ର ହୋଇ ଦେଶର ଭାବୀ ଉତ୍‌ଥାନପତନର ସ୍ୱପ୍ନ ଦେଖନ୍ତି — ପ୍ରହେଳିକା ମଧ୍ୟ ରଚନା କରନ୍ତି, କି ଉପାୟ ଅବଲମ୍ବନ କଲେ ଦେଶର

ଉନ୍ନତି ହେବ, ଅବସ୍ଥାର ପରିବର୍ତ୍ତନ ହେବ, ସେ ବିଷୟରେ ନାନା ଯୁକ୍ତିତର୍କ ଏବଂ ପରାମର୍ଶର ସୂତ୍ରପାତ କରନ୍ତି । ଗୋଖଲେ ସ୍ବଳ୍ପବର୍ଷକାଳ ସେହି ସମ୍ମିଳନୀର ସମ୍ପାଦକ ପଦରେ ଅଧିଷ୍ଠିତ ଥାଇ ସୁସ୍ଥୁରୂପେ କାର୍ଯ୍ୟ ନିର୍ବାହ କରିଥିଲେ ।

୧୮୯୦ ଖ୍ରୀଷ୍ଟାବ୍ଦରେ କଲିକତା ମହାନଗରୀରେ ଭାରତୀୟ କଂଗ୍ରେସର ଯେଉଁ ଅଧିବେଶନ ହୋଇଥିଲା ଏବଂ ସେହି ଅଧିବେଶନରେ ଗୋଖଲେ "ଲୁଣକର" ସମ୍ପର୍କରେ ଯେଉଁ ମୂଲ୍ୟବାନ୍ ବକ୍ତୃତା କରିଥିଲେ, ସେ ବିଷୟ ଆଜି ଶତ୍ରୁ କଲେ ବିସ୍ମିତ ହେବାକୁ ହେବ । ଗୋଟିଏ ୨୪ ବର୍ଷର ଯୁବକଙ୍କଠାରେ ଏପରି ଅସାଧାରଣ ବାଗ୍ମିତା, ଏପରି ଅଲୌକିକ ଦୂରଦୃଷ୍ଟି ସମ୍ଭବପର ହୋଇପାରେ, ତାହା କେବଳ ସେହି ବିଧାତାଙ୍କର—ଯାହାଙ୍କ ଇଙ୍ଗିତରେ ଚନ୍ଦ୍ରଠାରେ କଳଙ୍କ ଏବଂ ମୃଣାଳଠାରେ କଣ୍ଟକର ସମାବେଶ ସମ୍ଭବପର ହୋଇଅଛି —ସୃଷ୍ଟିକୌଶଳ । ତାଙ୍କର ଗୁଣଗାଥା ପ୍ରଚ୍ୟୁତ ହେବା ସଙ୍ଗେ ସଙ୍ଗେ ସୁଖ୍ୟାତି ବଢ଼ିବା ସଙ୍ଗେ ସଙ୍ଗେ କ୍ରମଶଃ ନାନା ଗୁରୁତର ଭାର ତାଙ୍କ ଉପରେ ନ୍ୟସ୍ତ ହେଲା—ବସନ୍ତର ନୂତନ ପରଶରେ ତରୁକୁଞ୍ଜରେ ପ୍ରକୃତିର ଫୁଲ ସମ୍ପଦ ପରି । କ୍ରମେ କ୍ରମେ ସେ କଂଗ୍ରେସର ସଭ୍ୟରୂପେ, ସମ୍ପାଦକରୂପେ ଏବଂ ଶେଷରେ ସଭାପତି-ରୂପେ ନିଜର ଜୀବନକୁ ସାଧନାର ପଥରେ ନିୟନ୍ତ୍ରିତ କରି କଂଗ୍ରେସର ପ୍ରଧାନ ନେତାମାନଙ୍କ ମଧ୍ୟରେ ପରିଗଣିତ ହେଲେ ।

୧୮୯୭ ରେ ଓ୍ୱେଲ୍‌ବି କମିସନ ସମ୍ମୁଖରେ ଭାରତୀୟ ଆୟ ବ୍ୟୟ ସମ୍ପର୍କରେ ସାକ୍ଷ୍ୟ ଦେବାପାଇଁ ତାଙ୍କୁ ବିଲାତ ଯିବାକୁ ହୋଇଥିଲା । ଭାରତୀୟ ଆୟବ୍ୟୟର ପ୍ରକୃତ ସମ୍ବାଦ ଅବଗତ ହେବା ନିମିତ୍ତ ପାର୍ଲିଆମେଣ୍ଟ ଏହି କମିସନ ନିଯୁକ୍ତ କରିଥିଲେ । ଓ୍ୱେଲ୍‌ବି ସାହେବ ଏହାର ସଭାପତି ଥିବାରୁ ଏହାକୁ ଓ୍ୱେଲ୍‌ବି ରୟେଲ କମିସନ ବୋଲି କହନ୍ତି । ଏହି ସମ୍ପର୍କରେ ଦେଶର ଗଣ୍ୟମାନ୍ୟ ନେତା-ମାନଙ୍କଠାରୁ ସାକ୍ଷ୍ୟଗ୍ରହଣ କରିବା ପାଇଁ ସରକାର ସେମାନଙ୍କୁ ଆହ୍ୱାନ କରିଥିଲେ । ଗୋଖଲେଙ୍କୁ ମଧ୍ୟ ଏ ଉଦ୍ଦେଶ୍ୟରେ ଆହ୍ୱାନ କରାଯାଇଥିଲା । ସେତେବେଳେ ତାଙ୍କର ବୟସ ୩୧ ବର୍ଷ । ଓ୍ୱେଲ୍‌ବି କମିସନ ସମ୍ମୁଖରେ ସେ ଯେଉଁ ପ୍ରଣାଳୀରେ ଏବଂ ଯେପରି ଭାବରେ ସାକ୍ଷ୍ୟ ଦେଇଥିଲେ, ତହିଁରୁ ଜଣା ଯାଇଥିଲା ତାଙ୍କର ବୁଦ୍ଧିବିଦ୍ୟା ଏବଂ କ୍ଷମତା କେତେ ବିଶାଳ, କେତେ ଗମ୍ଭୀର ! ତାଙ୍କ ପରି ସୁସ୍ପଷ୍ଟ ସାକ୍ଷ୍ୟ ଆଉ କେହି ଦେଇପାରି ନ ଥିଲେ; କାରଣ ଦେଶର ଅର୍ଥବିଜ୍ଞାନ ଅର୍ଥାତ୍ ଆୟବ୍ୟୟର ହିସାବ ସେ ଯେପରି ଭାବରେ ଆଲୋଚନା କରିଥିଲେ, ଆଉ କେହି ସେପରି କରି ନ ଥିଲେ ।

ରାଜନୀତି କ୍ଷେତ୍ରରେ ଏହା ହିଁ ଗୋଖଲେଙ୍କର ବିଶେଷତ୍ୱ । ଭାରତୀୟ ଅର୍ଥଶାସ୍ତ୍ର ସମ୍ବନ୍ଧରେ ତାଙ୍କର ପ୍ରଗାଢ଼ ପାଣ୍ଡିତ୍ୟ ଥିଲା ଏବଂ ଦେଶର ଅର୍ଥନୀତି ସମ୍ପର୍କୀୟ ଯୁକ୍ତିତର୍କରେ କେହି କେବେ ତାଙ୍କୁ ପରାସ୍ତ କରିବାର ଶୁଣା ଯାଇନାହିଁ । ସେ ଜଣେ ଅଜେୟ ତାର୍କିକ ଥିଲେ, ଏପରି କି ଭାରତର ଭୂତପୂର୍ବ ବଡ଼ଲାଟ ଲର୍ଡ଼କର୍ଜନ ମଧ୍ୟ ତାଙ୍କ ସହିତ ଯୁକ୍ତିତର୍କ କରିବାକୁ ଯାଇଁ ପରାଜୟ ସ୍ୱୀକାର କରି-

ଅଛନ୍ତି । ସେ କହନ୍ତି ଯେ ଗୋଖଲେଙ୍କ ସଙ୍ଗେ ତର୍କଯୁଦ୍ଧ କରିବା ଗୋଟାଏ ଆନନ୍ଦଜନକ କାର୍ଯ୍ୟ । ଯେ ଯେ ଏପରି ଦୁରନ୍ତ ତାର୍କିକ ହୋଇ ପାରିଥିଲେ ତାହାର କାରଣ—କୌଣସି ବିଷୟରେ ତର୍କ କରିବା ପୂର୍ବରୁ ସେ ସେ ବିଷୟର ପୁଙ୍ଖାନୁପୁଙ୍ଖ ଆଲୋଚନା କରୁଥିଲେ । ଅଜ୍ଞାତ ବା ଅର୍ଦ୍ଧଜ୍ଞାତ କୌଣସି ବିଷୟ ସମ୍ପର୍କରେ ଯୁକ୍ତିତର୍କର ଆଶ୍ରୟ ନେବା ତାଙ୍କ ଜୀବନରେ କେବେ ଦେଖାଯାଇ ନାହିଁ । ଏପରି ଅନେକ ବକ୍ତା ଅଛନ୍ତି, ଏପରି ଅନେକ ତାର୍କିକ ଅଛନ୍ତି, ବାହାଦୁରି ନେବା ଅଭିପ୍ରାୟରେ ଯେମାନଙ୍କ ମୁଖରୁ କେବଳ ବାକ୍‌ଚାତୁରୀସମନ୍ୱିତ ଅନ୍ତଃସାର-ଶୂନ୍ୟ ଭାବମୟ ପ୍ରଳାପ ବାହାରେ; କିନ୍ତୁ ଗୋଖଲେ ବାକ୍‌ଚାତୁରୀ ଦେଖାଇ ଶ୍ରୋତା-ମାନଙ୍କୁ ଭୁଲାଇବା ଦୂରରେ ଥାଉ, ତାଙ୍କର ସେ ଚେଷ୍ଟା ମଧ୍ୟ ନ ଥିଲା । ଯେତିକି କହିଲେ ଯଥେଷ୍ଟ ହେବ, ସେ ସେତିକି କହୁଥିଲେ । ତର୍କଯୁଦ୍ଧରେ ପ୍ରବୃତ୍ତ ହେବା ପୂର୍ବରୁ ସେ ଯୁକ୍ତିର ଶାଣିତ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହେଉଥିଲେ । ତାର୍କିକ ହିସାବରେ ଗୋଖଲେଙ୍କର ଅନ୍ତର ଅନ୍ୱେଷଣ କଲେ ଏହି ରହସ୍ୟଟି ସୁସ୍ପଷ୍ଟ ହୁଏ ।

ଓ୍ୱେଲବି କମିସନ୍ ସମକ୍ଷରେ ସାକ୍ଷ୍ୟ ପ୍ରଦର୍ଶନ ପାଇଁ ଗୋଖଲେ ଯେତେବେଳେ ବିଲାତରେ ଅବସ୍ଥାନ କରୁଥାନ୍ତି, ସେତେ-ବେଳେ ଗୋଟିଏ ସାମାନ୍ୟ ଘଟଣା ପାଇଁ ସେ ଟିକିଏ ଇତସ୍ତତଃ ହୋଇଯାଇଥିଲେ । ସେତେବେଳେ ଭାରତରେ ପ୍ଲେଗ ରୋଗର ନୂତନ ଆବିର୍ଭାବ । ଗୋଟାଏ ନୂତନ ରୋଗର ଆକସ୍ମିକ ଆକ୍ରମଣରେ କି ଦେଶବାସୀ କି ସରକାର ସମସ୍ତେ ଅତ୍ୟନ୍ତ ଶଙ୍କିତ ହୋଇଉଠିଲେ । କି ଉପାୟ ଅବଲମ୍ବନ କଲେ ପ୍ଲେଗ ସଂକ୍ରମିତ ନ ହେବ, ସେଥିପାଇଁ ସରକାର ରୋଗ-ପ୍ରତିଷେଧକ ନାନା କୌଶଳ ଉଦ୍‌ଭାବନ କରି ଦେଶବାସୀଙ୍କୁ ସତର୍କ କରାଇଲେ । କୌଣସି ଲୋକଠାରେ ପ୍ଲେଗର ଲକ୍ଷଣ ପ୍ରକାଶ ପାଇଲା କ୍ଷଣି ତାର ଚିକିତ୍ସାର ସୁବ୍ୟବସ୍ଥା ନିମିତ୍ତ ତାହାକୁ ଡାକ୍ତରଖାନାକୁ ପଠାଇ ଦିଆଯାଉଥିଲା । ସରକାରଙ୍କର ଏହି ଉପାୟ ଅବଲମ୍ବନରେ ଦେଶବାସୀ ପ୍ରମାଦ ଗଣିନାକଲେ, କାରଣ ରୋଗାକ୍ରାନ୍ତ ବ୍ୟକ୍ତି ପ୍ରଥମତଃ ନିଜର ପିତାମାତା ପ୍ରଭୃତି ଆତ୍ମୀୟ ସ୍ୱଜନମାନଙ୍କର ସାହ-ଚର୍ଯ୍ୟ ପରିହାର କରିବାକୁ ଅନିଚ୍ଛୁକ । ଦ୍ୱିତୀୟତଃ ରୋଗିର ପିତାମାତା ବନ୍ଧୁବର୍ଗ ପ୍ରଭୃତି ରୋଗୀର ସେବା ଶୁଶ୍ରୂଷା ସୁଖରେ ଜଳାଞ୍ଜଳି ଦେବାକୁ ପଶ୍ଚାତ୍‌ପଦ । ତେଣୁ ଜନସାଧାରଣ ନିଜ ନିଜ ଗୃହରେ ରୋଗକୁ ଗୋପନ କରିବାକୁ ଲାଗିଲେ । ଫଳତଃ, ରୋଗର ଆକ୍ରମଣ କ୍ରମେ ଭୀଷଣରୁ ଭୀଷଣତର ହେଲା ଏବଂ ସରକାରଙ୍କୁ ଏଥିପାଇଁ ଆଉ ଏକ ନୂତନ ଉପାୟ ଅବଲମ୍ବନ କରିବାକୁ ହେଲା । ଘରେ ଘରେ ବୁଲି ପ୍ଲେଗ୍‌ରୋଗୀର ଅନୁସନ୍ଧାନ କରିବାକୁ ସରକାର ଗୋରା ସୈନ୍ୟ ନିଯୁକ୍ତ କଲେ । ସେମାନେ ଯେଉଁଠାରେ ପ୍ଲେଗ୍‌ରୋଗୀ ଦେଖିଲେ, ସେଠାରେ ବଳପୂର୍ବକ ତାହାକୁ ଡାକ୍ତରଖାନାକୁ ପଠାଇଦେବାକୁ ଲାଗିଲେ । ସରକାରଙ୍କ ଏହି ବିଧାନ ଅବଶ୍ୟ ଦେଶବାସୀଙ୍କର ମଙ୍ଗଳ ପାଇଁ ପ୍ରବର୍ତ୍ତିତ ହୋଇଥିଲା । କିନ୍ତୁ ମଙ୍ଗଳ ସବୁ ସମୟରେ ଅମଙ୍ଗଳ ଆଚ୍ଛାଦନରେ ମୁଖଟିକୁ ଆବୃତ କରି

ଆସିଥାଏ । ସତ୍ୟର ଆତ୍ମ-ପ୍ରକାଶ ଅସତ୍ୟ ଓ ଅନ୍ୟାୟର ଅପାର ବିଷମ ଘର୍ଷଣ ସ୍ତୂପ ମଧ୍ୟରୁ ମିଳେ !

ଘଦ୍ଧଁ ଘଦ୍ଧଁ ଦେଶରେ ଅସନ୍ତୋଷର ବହ୍ନି ଜଳି ଉଠିଲା । କିନ୍ତୁ ଏହି ଅସନ୍ତୋଷର ମୂଳରେ ଆହୁରି ଅନେକ ଗୂଢ଼-ଅଭିସନ୍ଧି ଆତ୍ମପ୍ରକାଶ କରି ଘୃତାହୁତି ଯୋଗେ ବହ୍ନି ବତ୍ ତାହାକୁ ଦ୍ୱିଗୁଣିତ-ଚତୁର୍ଗୁଣିତ କଲା । ଗୋରା ସୈନ୍ୟମାନେ ଯେକୌଣସି ଲୋକର ଘରେ ଏପରି କି ଅନ୍ତଃପୁର ମଧ୍ୟରେ ଅବାଧରେ ପ୍ରବେଶ କରି ଅନୁସନ୍ଧାନ କରିବାର ଅଧିକାର ପ୍ରାପ୍ତ ହୋଇଥିଲେ । ସାଧାରଣତଃ ଏହି ସକଳ ସୈନ୍ୟ ମୂର୍ଖ ଓ ଅଶିକ୍ଷିତ ଏବଂ ସେମାନଙ୍କର ଆଚାର ବ୍ୟବହାର ଅନେକାଂଶରେ ପଶୁବତ୍ କହିଲେ ଚଳେ । ସୁତରାଂ ଏହି ଜାତୀୟ ଲୋକ ଯଦି ହିନ୍ଦୁ ଗୃହସ୍ଥର ଅନ୍ତଃପୁର ପ୍ରବେଶାଧିକାର ପ୍ରାପ୍ତ ହୁଅନ୍ତି, ତେବେ ଜନସାଧାରଣ ଭୀତ ଏବଂ ଶଙ୍କିତ ହେବାର କଥା । ବିଶେଷତଃ ସୈନ୍ୟମାନେ ରୋଗୀ ଅନୁସନ୍ଧାନର ଛଳନା କରି ଯଦି କୌଣସି ଅତ୍ୟାଚାର ବ୍ୟଭିଚାର କରନ୍ତି, ତେବେ ତାହାର ପ୍ରତିକାର ପାଇଁ କୌଣସି ପ୍ରକାର ବ୍ୟବସ୍ଥା କରାଯାଇ ନ ଥିଲା । କ୍ରମେ ଜନରବ ଉଠିଲା ଯେ ସୈନ୍ୟଗଣ ଲୋକମାନଙ୍କ ଗୃହରେ ପ୍ରବେଶ କରି ନାନା ଅତ୍ୟାଚାର କରୁଅଛନ୍ତି । ଲୋକମୁଖରେ ଏହି ଜନଶ୍ରୁତି ନାନା ଦେଶରେ ନାନା ଆକାରରେ ଦିନକୁ ଦିନ ଅତିରଞ୍ଜିତ ହେବାକୁ ଲାଗିଲା । ତେବେ ସୈନ୍ୟମାନେ ଯେ ଆଦୌ ଉକ୍ତ ଅତ୍ୟାଚାର କରୁ ନ ଥିଲେ, ଏହା କୁହାଯାଇ ନ ପାରେ । ବିଲାତର ଚଷା ପ୍ରଭୃତି ଇତର ଶ୍ରେଣୀର ଲୋକେ ସାଧାରଣ ସୈନିକ ଶ୍ରେଣୀଭୁକ୍ତ ହୋଇ ଏ ଦେଶକୁ ଆସିଥାନ୍ତି । ପୁଣି ଜୋର ଜବରଦସ୍ତି କରିବାର ସକଳ ସୁବିଧା ସେମାନଙ୍କ ହାତରେ ଦିଆ ହୋଇଥାଏ । ଏପରି ଅବସ୍ଥାରେ ଯେ ସେମାନେ ସେହି ସୁବିଧା ଠିକ କରି ସଦ୍‌ବ୍ୟବହାର କରି ନ ଥିବେ, ଏହା ବିଶ୍ୱାସଯୋଗ୍ୟ ନୁହେଁ ।

ଲୋକଚକ୍ଷୁରେ ଏହି ମଙ୍ଗଳଜନକ ବିଧାନ ଭିତର ଦେଇ ଯେଉଁ ଅମଙ୍ଗଳ, ଅନ୍ୟାୟ ଆତ୍ମପ୍ରକାଶ କଲା, ସେଥିରେ ଦେଶସାରା କାତର କ୍ରନ୍ଦନର କରୁଣ କୋଳାହଳ ଉଠିଲା । "ଛିଦ୍ରେଷ୍ୱନର୍ଥା ବହୁଳୀଭବନ୍ତି" ନୀତି ଅନୁସାରେ ଲୋକେ ଗୋଟିଏ ବିପଦରୁ ଆତ୍ମରକ୍ଷା କରିବାକୁ ଯାଇ ଆଉ ଗୋଟିଏ ବିପଦର ସମ୍ମୁଖୀନ ହେଲେ । ଏକ ଦିଗରୁ ଭଗବାନ୍‌ଙ୍କର ଅତ୍ୟାଚାର, ଅନ୍ୟ ଦିଗରୁ ମାନବର ଅତ୍ୟାଚାର—ଏହି ଉଭୟ ସଙ୍କଟ ମଧ୍ୟରେ ମାନବ ଭଗବାନଙ୍କ ଅତ୍ୟାଚାରରେ ଆତ୍ମସମର୍ପଣ କରିପାରେ, କିନ୍ତୁ ମନୁଷ୍ୟ ପ୍ରତି ମନୁଷ୍ୟର ଯେ ଅତ୍ୟାଚାର, ତାହା ନିତାନ୍ତ ଅସହନୀୟ ! କାରଣ ଭଗବାନଙ୍କ ହାତରୁ ହୁଏତ ମନୁଷ୍ୟ ପ୍ରାଣ ପାଇପାରେ, କିନ୍ତୁ ନରନାରାୟଣଙ୍କ ହାତରୁ ପ୍ରାଣରକ୍ଷାର ଯେ କୌଣସି ଉପାୟ ନାହିଁ ।

ଏହି ସମୟରେ ବିଲାତରେ ଥାଇ ଗୋଖଲେ ବିଶ୍ୱସ୍ତତା ସୂତ୍ରରେ ଜଣେ ବନ୍ଧୁଙ୍କ ପତ୍ରରୁ ଅବଗତ ହେଲେ ଯେ, ପ୍ଲେଗ୍ ପ୍ରତିଷେଧ ବ୍ୟପଦେଶରେ ଜନସାଧାରଣଙ୍କ ଉପରେ ଅମାନୁଷିକ ଅତ୍ୟାଚାର ସଙ୍ଘଟିତ ହେଉଛି ଏବଂ ସ୍ତ୍ରୀକ-

ବିଶେଷରେ ଗୋରା ସୈନ୍ୟମାନଙ୍କ ଦ୍ୱାରା ମହିଳା-ନିଗ୍ରହ ଘଟୁଅଛି । ଜାତୀୟ ଚରିତ୍ର ଉପରେ ଏହି ଯେ ହସ୍ତକ୍ଷେପ, ଜାତୀୟ ସମ୍ମାନ ଉପରେ ଏହି ଯେ ପଦାଘାତ, ଦେଶଭକ୍ତ ଗୋଖଲେଙ୍କ ପ୍ରାଣକୁ ବଡ଼ ତୀବ୍ର ଆନ୍ଦୋଳିତ କରି ପକାଇଲା । ପତ୍ରଟି ପାଠ କରି ତାଙ୍କ ଅନ୍ତରର ନିଭୃତ ତନ୍ତ୍ରୀରେ ଗୋଟିଏ କରୁଣ କମ୍ପନ ଖେଳିଗଲା, ସାରା ଦେହ ବିଦ୍ୟୁତ୍ ବେଗରେ ଉନ୍ମତ୍ତ ହୋଇ ଉଠିଲା । ସେ ଆଉ ସ୍ଥିର ହୋଇ ନ ରହି ଆଶୁ ପ୍ରତିକାରର ଉପାୟ ଉଦ୍ଭାବନରେ ଆପଣାକୁ ନିୟୋଜିତ କଲେ । ସେତେବେଳେ ବୋମ୍ବାଇ ଗଭର୍ଣ୍ଣମେଣ୍ଟଙ୍କର ସେକ୍ରେଟେରୀ ସାର୍ ଉଇଲିୟମ ଓ୍ୱାଡରବର୍ଣ୍ଣ ଅବସର ଗ୍ରହଣ କରି ବିଲାତରେ ଅବସ୍ଥାନ କରୁଥିଲେ । ଏହି ଭାରତଭୂମି ତାଙ୍କର ବଡ଼ ଆଦରର ଦେଶ ଥିଲା ଏବଂ ଭାରତର ମଙ୍ଗଳ ପାଇଁ ସେ ତାଙ୍କର ମନପ୍ରାଣ ଏପରି ଢାଳି ଦେଇ ଥିଲେ ଯେ, ସେଥିପାଇଁ ଲୋକେ ତାଙ୍କୁ "ଭାରତବନ୍ଧୁ ଓ୍ୱାଡରବର୍ଣ୍ଣ" ବୋଲି କହୁଥିଲେ । ବର୍ଣ୍ଣିତ ସମୟରେ ସେ ପାର୍ଲିଆମେଣ୍ଟର ଜନୈକ ସଭ୍ୟ ଥିଲେ । ଗୋଖଲେ ତାଙ୍କ ନିକଟରେ ଭାରତର ଏହି ଦୁଃଖ ଦୁର୍ଦ୍ଦଶାର ସୁବିସ୍ତୃତ ବର୍ଣ୍ଣନା କଲେ । ସେ ଏ ସମ୍ବାଦ ଶ୍ରବଣ କରି ନିରତିଶୟ ଦୁଃଖିତ ହେଲେ ଏବଂ ପାର୍ଲିଆମେଣ୍ଟରେ ବୋମ୍ବାଇ ଗଭର୍ଣ୍ଣମେଣ୍ଟଙ୍କ ବିରୁଦ୍ଧରେ ତୀବ୍ର ପ୍ରତିବାଦ ଉତ୍ଥାପନ କଲେ । ଏଣେ ଗୋଖଲେ ବିଲାତର ସମ୍ବାଦପତ୍ରମାନଙ୍କରେ ବୋମ୍ବାଇ ଗଭର୍ଣ୍ଣମେଣ୍ଟଙ୍କର ଦୁଷଣୀୟ ଗୁଣଗାଥା ଘୋଷଣା କଲେ । ଫଳ ସ୍ୱରୂପ ବିଲାତରେ ଏହି ଘଟଣା ନେଇ ଗୋଟାଏ କ୍ଷଣିକ ଗୃହକଳିର ଢେଉ ଖେଳିଗଲା ଏବଂ ପାର୍ଲିଆମେଣ୍ଟ ବୋମ୍ବାଇ ଗଭର୍ଣ୍ଣମେଣ୍ଟଙ୍କଠାରୁ ଏ ବିଷୟର ଯଥୋଚିତ କୈଫିୟତ ଚାହିଁଲେ । ଉତ୍ତରରେ ବୋମ୍ବାଇ ଗଭର୍ଣ୍ଣମେଣ୍ଟ ଲେଖିଲେ ଯେ, ଏହି ଜନରବର ଆଦ୍ୟ ପର୍ଯ୍ୟନ୍ତ ସମସ୍ତ ଅଭିଯୋଗ ମିଥ୍ୟାରେ ଜଡ଼ିତ । ଏଥିରେ ସତ୍ୟର ସନ୍ଧି ପର୍ଯ୍ୟନ୍ତ ମିଳିବା ଅସମ୍ଭବ । ଯେଉଁମାନେ ଏହା ସତ୍ୟ ବୋଲି ଘୋଷଣା କରିଛନ୍ତି, ସେମାନେ ପ୍ରମାଣ ପ୍ରଦର୍ଶନ କରନ୍ତୁ ।

ତେଣୁ ଉପଯୁକ୍ତ ପ୍ରମାଣ ଉପସ୍ଥାପିତ କରିବା ପାଇଁ ପାର୍ଲିଆମେଣ୍ଟ ତରଫରୁ ଓ୍ୱାଡରବର୍ଣ୍ଣଙ୍କୁ ଆହ୍ୱାନ କରାଗଲା । ପ୍ରମାଣ ସଂଗ୍ରହ ପାଇଁ ଓ୍ୱାଡରବର୍ଣ୍ଣ ଗୋଖଲେଙ୍କୁ ଅନୁରୋଧ କରି ଏକ ପତ୍ର ଲେଖି ପଠାଇଲେ । କିନ୍ତୁ ଗୋଖଲେଙ୍କ ନିକଟରେ ପୂର୍ବବର୍ଣ୍ଣିତ ପତ୍ରଟି ବ୍ୟତୀତ ଅନ୍ୟ କୌଣସି ପ୍ରମାଣ ନ ଥିଲା । ତେଣୁ ପ୍ରମାଣ ସ୍ୱରୂପ ଉକ୍ତ ପତ୍ରଟି ଦାଖଲ କରିବାକୁ ହେବ କିମ୍ବା ପତ୍ରପ୍ରେରକ ବନ୍ଧୁଙ୍କର ନାମଟି ପ୍ରକାଶ କରିବାକୁ ହେବ । କିନ୍ତୁ କେଜାଣି କାହିଁକି ଗୋଖଲେ ପତ୍ର ବା ପତ୍ରପ୍ରେରକଙ୍କର ନାମ ଉପସ୍ଥାପିତ କରିବାକୁ ପଶ୍ଚାତ୍‌ପଦ ହେଲେ । ପତ୍ରପ୍ରେରକଙ୍କର ଅନିଷ୍ଟ ଆଶଙ୍କା ବୋଧହୁଏ ଏହାର କାରଣ ହୋଇପାରେ । ଏଣେ ଯଦି ଓ୍ୱାଡରବର୍ଣ୍ଣ ଉପଯୁକ୍ତ ପ୍ରମାଣ ପ୍ରଦର୍ଶନରେ ଅକ୍ଷମ ହୁଅନ୍ତି, ତେବେ ଅମୂଳକ ପ୍ରତିବାଦ ପାଇଁ ପାର୍ଲିଆମେଣ୍ଟ ମଧ୍ୟରେ ଦଣ୍ଡାୟମାନ ହୋଇ କ୍ଷମାପ୍ରାର୍ଥନା କରିବାକୁ ହେବ । ଏହି

ବିଷମ ସମସ୍ୟାରେ ପଡ଼ି ଗୋଖଲେ ମ୍ରିୟମାଣ ହୋଇଗଲେ । ଏକ ପକ୍ଷରେ କେବଳ ତାଙ୍କର ପାଇଁ ଓ୍ୟାଡରବର୍ଣ୍ଣଙ୍କ ସଦୃଶ ମହାନୁଭବ ବ୍ୟକ୍ତିଙ୍କୁ ଅପଦସ୍ଥ ହେବାକୁ ହେବ—ଏହି ଚିନ୍ତାର ଶତ ବୃଶ୍ଚିକଦଂଶନ—ଅନ୍ୟ ପକ୍ଷରେ ପତ୍ର-ପ୍ରେରକ ବନ୍ଧୁଙ୍କର ନାମ ପ୍ରକାଶରେ ତାଙ୍କର ଜୀବନମରଣର ଆଶଂକା—ଏହି ଉଭୟବିଧ ସମସ୍ୟାର ଯଥାଯଥ ମୀମାଂସା କରିବାକୁ ଯାଇଁ ସେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ଶେଷରେ ବୋମ୍ବାଇ ସରକାରଙ୍କ ବିରୁଦ୍ଧରେ ଭିତ୍ତିଶୂନ୍ୟ ଅମୂଳକ ପ୍ରତିବାଦ ଉତ୍ଥାପନ ପାଇଁ ଓ୍ୟାଡରବର୍ଣ୍ଣଙ୍କୁ ଦୁଃଖପ୍ରକାଶ କରି କ୍ଷମା ମାଗିବାକୁ ହେଲା ।

କେହି କେହି କହନ୍ତି ଯେ, ବୋମ୍ବେଇ ସରକାରଙ୍କ କାର୍ଯ୍ୟ କଳାପ ଉପରେ ଦୋଷାରୋପ କରି ଯେଉଁ ବନ୍ଧୁ ଗୋଖଲେଙ୍କୁ ପତ୍ର ପ୍ରେରଣ କରିଥିଲେ, ସେ ମହାମତି ରାଣାଡେଙ୍କ ଭିନ୍ନ ଅନ୍ୟ କେହି ନୁହନ୍ତି । କାରଣ ତାଙ୍କ ଛଡ଼ା ଏପରି ଆଉ କିଏ ଅଛି ଯେ, ଯାହାର ନାମ ପର୍ଯ୍ୟନ୍ତ ପ୍ରକାଶ ନ କରି ଗୋଖଲେ ଓ୍ୟାଡରବର୍ଣ୍ଣଙ୍କ ସଦୃଶ ଉଦାରଚେତାଙ୍କୁ ଅପମାନିତ କରାଇଲେ । ସେତେବେଳେ ରାଣାଡେ ହାଇକୋର୍ଟର ଜଜ୍ ପଦରେ ଆସୀନ ଥିଲେ । ତେଣୁ ତାଙ୍କର ନାମ-ପ୍ରକାଶରେ ଯେ ଗୋଖଲେ ପଶ୍ଚାତ୍‌ପଦ ହୋଇଥିବେ, ତାହା ନିତାନ୍ତ ସ୍ୱାଭାବିକ । ତେବେ ଯେ ଯାହା ହେଉ, ଗୋଖଲେ ଯେ ଏହି ଘଟଣାଟିରୁ ଗୋଟିଏ ମହତ୍ ଶିକ୍ଷା ପାଇଲେ, ଏଥିରେ ସନ୍ଦେହ ନାହିଁ । ଯାହା ଯୁକ୍ତିଯୁକ୍ତ ନୁହେଁ, ଯାହା ପ୍ରମାଣର ଦୃଢ଼ ଭିତ୍ତି ଉପରେ ଅବସ୍ଥାପିତ ନୁହେଁ, ସେପରି କଥାମୁଖରେ ଉଚ୍ଚାରଣ କରିବା ଯେ କେତେ ଦୂର ନିର୍ବୁଦ୍ଧିତାର ପରି-ଚାୟକ—ଏକଥା ସେ ଉତ୍ତମରୂପେ ହୃଦୟଙ୍ଗମ କରି ପାରିଥିଲେ । ସେହି ଦିନଠାରୁ ସେ ଅଯୌକ୍ତିକ ଏବଂ ପ୍ରମାଣ-ହୀନ କୌଣସି କଥା ମୁଖରେ ଉଚ୍ଚାରଣ କରିବାର କେହି କେବେ ଶୁଣି ନାହାନ୍ତି ।

ଯେତେବେଳେ ଗୋଖଲେ ଇଂଲଣ୍ଡରୁ ସ୍ୱଦେଶାଭିମୁଖରେ ଯାତ୍ରା କରି ବୋମ୍ବାଇର ଉପକୂଳରେ ପଦାର୍ପଣ କଲେ, ସେତେ-ବେଳେ ତତ୍ରତ୍ୟ ପୋଲିସ କମିଶନର୍ ତାଙ୍କ ନିକଟରେ ଉପସ୍ଥିତ ହୋଇ ବିଲାତରେ ବୋମ୍ବାଇ ସରକାରଙ୍କ ନାମରେ ମିଥ୍ୟା ଅପବାଦ ପ୍ରଚାର ପାଇଁ କ୍ଷମାପ୍ରାର୍ଥନା କରିବାକୁ କହିଲେ । ସେତେବେଳକୁ ସେ ନିଜର ଭ୍ରାନ୍ତି ନିଜେ ବେଶ୍ ବୁଝି ପାରିଥିଲେ ଏବଂ ବିନା ଆପତ୍ତିରେ ସରକାରଙ୍କ ନିକଟରେ କ୍ଷମା-ପ୍ରାର୍ଥନା କଲେ । କିନ୍ତୁ ତାଙ୍କର ଏହି କ୍ଷମାପ୍ରାର୍ଥନାରେ ଦେଶବ୍ୟାପୀ ଗୋଟାଏ ବିରାଟ ଆନ୍ଦୋଳନର ସୃଷ୍ଟି ହେଲା । ସମ୍ବାଦପତ୍ରମାନଙ୍କରେ ତାଙ୍କର ନାନା ନିନ୍ଦା ରଟନା କରାଗଲା । କିନ୍ତୁ ଏ ନିନ୍ଦା ରଟନାରେ ଏ କୁତ୍ସା ପ୍ରଚାରରେ ସେ କ୍ଷଣିକ ପାଇଁ ସୁଦ୍ଧା ବିଚଳିତ ହୋଇ ନ ଥିଲେ । ତାଙ୍କର ହୃଦୟ ଯେଉଁ ପରିମାଣରେ କୁସୁମ ସଦୃଶ ପେଲବ ଥିଲା, ସେହି ପରିମାଣରେ ବଜ୍ରାଦପି କଠିନ ମଧ ଥିଲା । ଦେଶର ଚାରିଆଡ଼ୁ ଏହି ପ୍ରକାର ନିନ୍ଦାବାଦ ଶୁଣି ଅବଶ୍ୟ ତାଙ୍କର ମନରେ ଦାରୁଣ ଆଘାତ ଲାଗିଥିଲା; କିନ୍ତୁ ସରକାରଙ୍କ ପାଖରେ ଏତାଦୃଶ କ୍ଷମାଭିକ୍ଷା

ପାଇଁ ସେ କେବେହେଲେ ଜୀବନରେ ଅନୁତାପ କରିନାହାନ୍ତି । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ କହୁଥିଲେ ଯେ, ସରକାରଙ୍କ ବିରୁଦ୍ଧରେ ଅମୂଳକ ଅପବାଦ ପ୍ରଚାର କରି କ୍ଷମା ମାଗିବାଟା ସର୍ବାଦୌ କର୍ତ୍ତବ୍ୟ । କଥିତ ସମୟରେ ସେ ଥରେ ଜଣେକ ବନ୍ଧୁଙ୍କୁ କହିଥିଲେ—"ମୁଁ ଏପରି ଭାବରେ କ୍ଷମା ପ୍ରାର୍ଥନା କରି ଦେଶର ଜାତୀୟ ସମ୍ମାନକୁ ଯଦି ଅବନତ କରିଦେଇଥାଏ, ତେବେ ପ୍ରତିଜ୍ଞା କରୁଛି ଦିନେ ମୁଁ ଏହାର କ୍ଷତିପୂରଣ କରି-ଦେବି ।" ତାଙ୍କର ଏହି ପ୍ରତିଜ୍ଞାକୁ ଯେ ସେ ପାଳନ କରିଅଛନ୍ତି, ଭାରତବାସୀ ମାତ୍ରେ ଏହା ସ୍ୱୀକାର କରିବେ ।

ଯେଉଁ ଯେଉଁ କାରଣମାନଙ୍କରୁ ତେଜସ୍ୱୀ ତିଳକଙ୍କ ସହିତ ଗୋଖଲେଙ୍କର ମତାନ୍ତର ଜାତ ହୋଇଥିଲା—ଏହି କ୍ଷମା-ପ୍ରାର୍ଥନା ସେମାନଙ୍କ ମଧ୍ୟରୁ ଏକତମ । ଫଳତଃ ଏହି କ୍ଷମା ପ୍ରାର୍ଥନା ପରେ ତାଙ୍କର ବ୍ୟକ୍ତିତ୍ୱ ଉପରେ ଦେଶ-ବାସୀଙ୍କର ଆସ୍ଥା ବହୁ ପରିମାଣରେ କମି ଯାଇଥିଲା । ଏପରି କି ୧୮୯୮ରେ ଅମରାବତୀରେ କଂଗ୍ରେସର ଯେଉଁ ଅଧିବେଶନ ହୋଇଥିଲା, ସେଥିରେ ସେ ବକ୍ତୃତା ଦେବାକୁ ଉପକ୍ରମ କରିଥିଲେ; କିନ୍ତୁ ଶ୍ରୋତୃମଣ୍ଡଳୀଙ୍କ ଅଭଦ୍ରୋଚିତ ବ୍ୟବହାରରେ ମୌନବ୍ରତ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ଏହି ଘଟଣାଟି ତାଙ୍କର ହୃଦୟକୁ ଏପରି ଅଭିଭୂତ କରିପକାଇଥିଲା ଯେ, ସେହି-ଦିନ ଠାରୁ ପ୍ରାୟ ଛଅ ବର୍ଷ ପର୍ଯ୍ୟନ୍ତ କଂଗ୍ରେସର କୌଣସି ଅଧିବେଶନରେ ସେ ପାଟି ଫିଟାଇ ନାହାନ୍ତି ।

## ଚତୁର୍ଥ ପ୍ରକାଶ

କଥିତ ସମୟରେ ସ୍ତ୍ରୀବିୟୋଗ ଗୋଖଲେଙ୍କ ଭାଗ୍ୟରେ ଘଟିଥିଲା । ଦ୍ୱିତୀୟ ବାର ଦାର-ପରିଗ୍ରହ କରିବା ନିମିତ୍ତ ତାଙ୍କର ବନ୍ଧୁବାନ୍ଧବଗଣ ସନିର୍ବନ୍ଧ ଅନୁରୋଧ କରିଥିଲେହେଁ ସ୍ଥିତପ୍ରଜ୍ଞ ଗୋଖଲେ ତାହା କରି ନ ଥିଲେ । ସଂସାରର ବନ୍ଧନ ଥରେ ଛିନ୍ନ ହୋଇଗଲେ ସଂସାରର ମାୟା ମମତାରେ ଥରେ ଜଳାଞ୍ଜଳି ଦେଇ ପାରିଲେ, ମୁକ୍ତ ଗଗନ-ବିହାରୀ ସ୍ୱାଧୀନ ବିହଗ ଆଉ କି କେବେ ଜଗତର ବିପନ-ବାଗୁରାରେ ଆତ୍ମ ସମର୍ପଣ କରିବାକୁ ମନ ବଳାଏ ? ସେ ଭଲରୂପେ ହୃଦୟଙ୍ଗମ କରିଥିଲେ ଯେ, ସଂସାରରେ ନିଜର ସତ୍ତାକୁ ଯଦି ଚିରସ୍ଥାୟୀ କରିବାକୁ ହୁଏ, ତେବେ ତାର ଉତ୍କୃଷ୍ଟ ପନ୍ଥା ହେଉଛି ତ୍ୟାଗ । ଆବହମାନକାଳରୁ ଏହି ତ୍ୟାଗ ହିଁ ଭାରତକୁ ପୃଥିବୀପୃଷ୍ଠରେ ଅତୁଳନୀୟ ଆସନ ପ୍ରଦାନ କରିଆସିଛି । ଦୂର ଅତୀତର କେଉଁ ଶାନ୍ତ ପ୍ରୀତିମୟ ତପୋ-ବନରେ ଦିନେ ତାପସ କଣ୍ଠରୁ ଏହି ଅନାହତ ସଙ୍ଗୀତର ଝଙ୍କାର ଝରି-ପଡ଼ିଥିଲା—"ତ୍ୟାଗେନୈକେନ ଅମୃତତ୍ୱ-ମାନଶୁଃ" ଅର୍ଥାତ୍ ଏକମାତ୍ର ତ୍ୟାଗ ଧର୍ମହିଁ ମାନବକୁ ଅମୃତ ଦେବୀ ପ୍ରଦାନ କରିପାରେ । ଜଗତର ଜଟିଳ ଜଞ୍ଜାଳ-ଜାଲ ଛିନ୍ନ କରି ଯେତେ ନିର୍ଲିପ୍ତତା ଅବଲମ୍ବନ କରାଯାଇ ପାରେ, ଦେଶ ପାଇଁ —ଦଶ ପାଇଁ ଜୀବନ-ମନ ସମର୍ପଣ କରିବାକୁ ସେତେ ଅଧିକ ଅବସର ମିଳେ । ସୌଭାଗ୍ୟବଶେ ସଂସାରର ବନ୍ଧନ ଆପେ ଆପେ ତାଙ୍କ ସ୍କନ୍ଧରୁ ଅପସାରିତ ହୋଇ

ଯାଇଥିଲ ଏବଂ ଆଉ ଥରେ ପୁଣି ସେଥିରେ ବନ୍ଦୀ ହେବାକୁ ସେ ଧରା ଦେଇ ନ ଥିଲେ । ସାଂସାରିକ ସୁଖଦୁଃଖ ପ୍ରତି ଭ୍ରୂକ୍ଷେପ ନ କରି ସେ ଦେଶସେବା ଓ ଜନସେବାରେ ଜୀବନକୁ ସନ୍ନିୟୋଗ କରିଦେଇଥିଲେ ।

୧୯୦୦-୧୯୦୧ ଖ୍ରୀଷ୍ଟାବ୍ଦରେ ସେ ବୋମ୍ବାଇ ବ୍ୟବସ୍ଥାପକ ସଭାର ସଭ୍ୟରୂପେ ନିର୍ବାଚିତ ହୋଇଥିଲେ । ଉକ୍ତ ସଭାର ସଭ୍ୟରୂପେ ସେ ସ୍ୱୀୟ ଦାୟିତ୍ୱପୂର୍ଣ୍ଣ ଗୁରୁ କର୍ତ୍ତବ୍ୟ ଉପରେ ଦୃଢ଼ ନିଷ୍ଠାପରତାର ସହିତ ସମାଧାନ କରି ପାରିଥିଲେ, ତାହା ତାଙ୍କର ତତ୍କାଳୀନ ବକ୍ତୃତାମାନ ପାଠ କଲେ ବେଶ୍ ଜଣାଯାଏ । ବୋମ୍ବାଇ ପ୍ରଦେଶର ରାଜସ୍ୱନୀତି ଏବଂ ଦୁର୍ଭିକ୍ଷ ସମାଚାର ବିଷୟରେ ସେ ଉକ୍ତ ସଭାରେ ଯେଉଁ ସବୁ ତର୍କଯୁଦ୍ଧର ସୂତ୍ରପାତ କରିଥିଲେ, ତାହା ଅନୁଧ୍ୟାନ କଲେ ତଦୀୟ ଅନୁସନ୍ଧାନ ତତ୍ପରତାର ଭୂୟସୀ ପ୍ରଶଂସା ନ କରି ରହିହୁଏ ନାହିଁ । ୧୯୦୨ ରେ ସାର୍ ଫିରୋଜସାହ ମେହତା ଭାରତୀୟ ବ୍ୟବସ୍ଥାପକ ସଭାର ସଭ୍ୟପଦ ପରିତ୍ୟାଗ କରିବାରୁ ସର୍ବସମ୍ମତିକ୍ରମେ ଗୋଖଲେ ସେହି ସ୍ଥାନ ପୂର୍ଣ୍ଣ କଲେ । ଏହିଠାରେ ମିଷ୍ଟର ମେହତାଙ୍କର ସାମାନ୍ୟ ପରିଚୟ ପ୍ରଦାନ କଲେ ଅସଙ୍ଗତ ହେବ ନାହିଁ । ରାନାଡେ ଯେପରି ଗୋଖଲେଙ୍କର ଦୀକ୍ଷା-ଗୁରୁ, ମେହତା ସେହିପରି ତାହାଙ୍କ ଶିକ୍ଷାଗୁରୁ ଥିଲେ । ଏହି ଦୁଇଟି ତାପସ-ପ୍ରତିମ ଗୁରୁଙ୍କର ସାହଚର୍ଯ୍ୟ ଏବଂ ପ୍ରଭାବରେ ଆସି ଗୋଖଲେ ନିଜକୁ ଏତେ ବଡ଼ କରି ପାରିଥିଲେ । ମେହତା ବୋମ୍ବାଇର ଏକ ସମ୍ଭ୍ରାନ୍ତ ଧନଶାଳୀ ବଣିକ ଥିଲେ ଏବଂ କଥିତ ସମୟରେ ଦେଶରେ ତାଙ୍କର ଖ୍ୟାତି ଓ ପ୍ରତିପତ୍ତି ଯଥେଷ୍ଟ ଥିଲା । ବୋମ୍ବାଇ ପ୍ରଦେଶର ଲାଟ ଏବଂ ବଡ଼ ଲାଟ ସଭାରେ ସରକାରଙ୍କର ଦୋଷ ତ୍ରୁଟି ଦେଖାଇ ସମାଲୋଚନା ବା ପ୍ରତିବାଦ କରିବା ବିଷୟରେ ଭାରତୀୟ-ମାନଙ୍କ ମଧ୍ୟରେ ସେ ସର୍ବପ୍ରଥମ କହିଲେ ଚଳେ । ସରକାରଙ୍କ କୂଟନୀତିର ତୀବ୍ର ସମାଲୋଚକ ରୂପେ ଗୋଖଲେ ଯେଉଁ ଖ୍ୟାତି, ଯେଉଁ ପ୍ରଶଂସା ଦେଶବାସୀଙ୍କ ଠାରୁ ଭବିଷ୍ୟତରେ ପାଇ ପାରିଥିଲେ, ତାହାର ପ୍ରଥମ ଶିକ୍ଷା ସେ ଏହି ମେହତାଙ୍କ ଠାରୁ ଲାଭ କରିଥିଲେ । ତେଣୁ ସେ ମେହତାଙ୍କୁ ଆନ୍ତରିକ ଭକ୍ତି ଓ ବିଶ୍ୱାସ କରୁଥିଲେ ଏବଂ ଜୀବନର ପ୍ରତିପଦରେ ତାଙ୍କର କଥା ମାନି ଚଳୁଥିଲେ । ଯଦି କୌଣସି ବିଷୟରେ କୌଣସି କାରଣରୁ ସେ ମେହତାଙ୍କ ସଙ୍ଗେ ଏକମତ ହୋଇପାରୁ ନ ଥିଲେ, ତେବେ ସେଠାରେ ସେ କୌଣସି ବାଦାନୁବାଦର ଆଶ୍ରୟ ନ ନେଇ ମୌନ ବା ନୀରବତା ଅବଲମ୍ବନ କରୁଥିଲେ ।

ଉଦ୍ବୃତ୍ତ ରାଜସ୍ୱ, କରର ହ୍ରାସବୃଦ୍ଧି ନିମିତ୍ତ ଆପତ୍ତି ଉପସ୍ଥାପନ ଏବଂ ଭାରତୀୟ ଆର୍ଥିକ ସଙ୍କଟତା ସମ୍ପର୍କରେ ସରକାରଙ୍କର ଅବିବେଚନା ପ୍ରଭୃତି ଜଟିଳ ବିଷୟ ନେଇ ସେ ଲାଟ ସଭାରେ ଯେଉଁ ତୀବ୍ର ଆନ୍ଦୋଳନର ସୂତ୍ରପାତ କରିଥିଲେ, ତା'ର ଫଳରେ ଜନସାଧାରଣଙ୍କର ଶୁଭଦୃଷ୍ଟି ଏବଂ ଶତ ଶତ ଜନଙ୍କ ପୀଡ଼ିତ କଣ୍ଠର ଅନାହତ ଆଶୀର୍ବାଦ ତାଙ୍କ ଉପରେ ସ୍ୱର୍ଗର ପୁଷ୍ପଚନ୍ଦନ ସମବର୍ଷିତ ହେବାକୁ ଲାଗିଲା । କେହି ମନେ କରି ପାରନ୍ତି ଯେ, ସରକାରଙ୍କର ଶାସନ-

ମନ୍ତ୍ରର ସମାଲୋଚନା କରିବାକୁ ଯାଇ ସେ ନିଷ୍ଫଳ ତେଜସ୍ୱିତା ପ୍ରଦର୍ଶନ କରୁଥିଲେ । କିନ୍ତୁ ପ୍ରକୃତରେ ସେ ଅସମ୍ଭବ ପରିବର୍ତ୍ତନ ପ୍ରୟାସୀ ବା ନିଷ୍ଫଳ ସମାଲୋଚକ ନ ଥିଲେ । ସରକାରଙ୍କର ପ୍ରୀତିପାତ୍ର ହେବା ଛଳନାରେ ମଧ୍ୟ ସେ ଅଯଥା ତୋଷାମୋଦ କରୁ ନ ଥିଲେ । କେଉଁ ପ୍ରଣାଳୀରେ କେଉଁ ଉପାୟ ଅବଲମ୍ବନ କଲେ ସରକାରଙ୍କ ମତ ଖଣ୍ଡିତ ହୋଇପାରେ ଏବଂ ଶାସକ ଓ ଶାସିତର ମତଗତ ମଧ୍ୟରେ ଗୋଟାଏ ସାମ୍ୟ ରହିପାରେ, ତାହା ସେ ଭଲରୂପେ ହୃଦୟଙ୍ଗମ କରି ପାରିଥିଲେ । ସେହି ହେତୁରୁ ସେ ଯେତେବେଳେ ଯେଉଁ ଆପତ୍ତି ବା ପ୍ରତିବାଦ ସରକାରଙ୍କ ବିରୁଦ୍ଧରେ ଉତ୍ଥାପନ କରୁଥିଲେ, ତାହା ଏପରି ଯୁକ୍ତିଯୁକ୍ତ ଭାବରେ ଏବଂ ନିର୍ଭୀକଚିତ୍ତରେ ଆଗତ କରୁଥିଲେ ଯେ, ଲର୍ଡ଼ କର୍ଜନଙ୍କ ଭଳିଆ ଦାମ୍ଭିକ ଶାସନକର୍ତ୍ତା ମଧ୍ୟ ଖିନ୍ନ ଏବଂ ସଙ୍କୁଚିତ ହୋଇ ପରାଜୟ ସ୍ୱୀକାର କରୁଥିଲେ । ତାଙ୍କୁ ସି. ଆଇ. ଇ. ଉପାଧି ଦେଲାବେଳେ ଲର୍ଡ଼ କର୍ଜନ କହିଥିଲେ — "ଈଶ୍ୱରଙ୍କ ନିକଟରେ ମୁଁ ପ୍ରାର୍ଥନା କରୁଛି ଯେ, ଭାରତବର୍ଷରେ ଗୋଖଲେଙ୍କ ଭଳିଆ ଅନେକ ଲୋକ ଜନ୍ମଗ୍ରହଣ କରନ୍ତୁ ।" ଯେପରି ଇନ୍ଦ୍ରଙ୍କର ଅନୁପସ୍ଥିତିରେ ସୁଧର୍ମାସଭାର ମର୍ଯ୍ୟାଦାରେ ବାଧା ଘଟେ, ସେହିପରି ଗୋଖଲେ ଅନୁପସ୍ଥିତ ଥିଲେ ଲାଟସଭା ହତଶ୍ରୀ ଦେଖାଯାଏ । ଏକଦା ସେ ଲାଟସଭାରେ ଅନୁପସ୍ଥିତ ଥିବାର ଦେଖି ଜଣେ ସାହେବ କହିଥିଲେ ଯେ, ଆମ୍ଭେମାନେ ଆଜ ଯେପରି ରାମଙ୍କୁ ବାଦ୍ ଦେଇ ରାମାୟଣ ଗାନ କରିବାକୁ ଯାଉଛୁ । ପ୍ରକୃତରେ ଲାଟସଭାରେ ଯେତେବେଳେ କୌଣସି ଯୁକ୍ତିତର୍କର ସୂତ୍ରପାତ ହୁଏ, ସେତେବେଳେ ଗୋଖଲେ କଣ କହିବେ, କି ମତ ପ୍ରକାଶ କରିବେ, ତାହା ଶୁଣିବାକୁ ସମସ୍ତେ ତାଙ୍କର ମୁହଁକୁ ଚାହିଁ ରହିଥାନ୍ତି । ଆଉ ସେ ମଧ୍ୟ ଯା ଇଚ୍ଛା ତାହା କହୁ ନ ଥିଲେ । ଯାହା କିଛି କହୁଥିଲେ ତାହା ନାନା ଯୁକ୍ତି ତର୍କ ଦେଖାଇ ଅକାଟ୍ୟ ଅଖଣ୍ଡନୀୟ ରୂପରେ ଉପସ୍ଥାପିତ କରୁଥିଲେ । ସେହି ହେତୁରୁ ସରକାର ତାଙ୍କୁ ଏପରି ଭୟ କରୁଥିଲେ ।

ଏହି ବର୍ଷ ସେ ଫାର୍ଗୁସନ କଲେଜର ଅଧ୍ୟାପନା କାର୍ଯ୍ୟରୁ ଏବଂ ସଭ୍ୟଶ୍ରେଣୀରୁ ବିଦାୟ ନେଲେ । ଅଷ୍ଟାଦଶ ବର୍ଷ ବୟସରେ ଯୌବନର ସକଳ ସ୍ୱାର୍ଥ-ପିପାସାରେ ଜଳାଞ୍ଜଳି ଦେଇ ଯେଉଁ ଯୁବକ କେବଳ ମାତ୍ର ୭୫ ଟଙ୍କା ବେତନରେ ଭବିଷ୍ୟତ ମହାଜାତିର ଗଠନରେ ମନପ୍ରାଣ ଢାଳି ଦେଇଥିଲେ, ସେ ବର୍ତ୍ତମାନ ୩୦ ଟଙ୍କା ମାତ୍ର ପେନ୍‌ସନ୍ ଗ୍ରହଣ କରି ପରମ ପରିତୋଷ ସହକାରେ ଜୀବନକୁ ସାଧନାର ଯେଉଁ ବିଶାଳ ପଟ୍ଟମରରେ ଉପସ୍ଥାପିତ କଲେ, ତାହା ପ୍ରକୃତରେ ଏ ଦେଶପକ୍ଷରେ, ଏ ଜାତିପକ୍ଷରେ ମହାଗୌରବର ବିଷୟ ! ସୃଷ୍ଟିର ପ୍ରଥମ ଦିବସରେ ସନ୍ଧ୍ୟାର ଲୋହିତ ଛଟା ତଳେ ପ୍ରତିପଦାର ବଙ୍କିମ ଶଶଧର ଯେତେବେଳେ ତାର କ୍ଷୀଣ ରଶ୍ମିକୁ ପୂର୍ଣ୍ଣିମାର କଳିତ କୌମୁଦୀରେ ପରିଣତ କରାଇ ଜଗତ ଜୀବନରେ ଆଲୋକ-ରାଜ୍ୟର ଲଳିତ ଲହରୀ ଢାଳି ଦିଏ, ସେତେବେଳେ ବିଶ୍ୱରାଜ୍ୟର ଗୌରବ

ଗରିମା ଜୀବନର ଅନନ୍ୟ ମାଧୁର୍ଯ୍ୟରେ ହସିଉଠିବା ସ୍ୱାଭାବିକ ନୁହେଁ କି ? ଗୋଖଲେ ଦାକ୍ଷିଣାତ୍ୟ ଶିକ୍ଷା ସମିତିର ବିଦାୟସଭାରେ ତାଙ୍କର କଳ୍ପିତ ସାଧନା, ସୁପ୍ତ ଭାବନାର ଆଭାସ ନିମ୍ନଲିଖିତ ରୂପେ ବ୍ୟକ୍ତ କରିଥିଲେ ।

"...And yet, I am giving up all this to embark on the stormy and uncertain sea of public life. But I hear within me a voice which urges me to take this course, and I can only ask you to believe me when I say that it is purely from a sense of duty to the best interests of our country, that I am seeking this position of greater freedom, but not necessarily of less responsibility. Public life in this country has few rewards and many trials and discouragements...."

ପ୍ରକୃତରେ ବିଶ୍ୱର ସୁଖଦୁଃଖରେ ଜୀବନର ସରସତାଟିକୁ—ପ୍ରାଣର ପୂତ ପରିମଳତାକୁ ନିୟନ୍ତ୍ରିତ କରିବାକୁ ଯାଇଁ ପୁରସ୍କାର ବା ପ୍ରଶଂସାର ପ୍ରତ୍ୟାଶା କରିବା ଗୋଟାଏ ବିଫଳ ପ୍ରୟାସ । ବିଶେଷତଃ ଏ ଦେଶରେ ସେ ଆଶାର ପର୍ଯ୍ୟବସାନ ଆକାଶକୁସୁମରେ । କିନ୍ତୁ ବିପଦର ଆଶଂକା ଏବଂ ନିନ୍ଦା ଓ କୁତ୍ସାରଟନାର ଭୟ ଦେଶସେବକ ପ୍ରାଣକୁ ଅଭିଭୂତ କରିବାକୁ ଯଥେଷ୍ଟ ଅବସର ପାଏ । ଗୋଖଲେ ଏହା ଜାଣିଥିଲେ ମୁଦ୍ଧା ସେଥି ଦିଗକୁ ଅପରିହାର୍ଯ୍ୟ ଭାବରେ ଗତି କରିଥିଲେ । ସେ ଜାଣିଥିଲେ, ଜୀବନର ସରସତା ବା କୋମଳତା ଯାହା କିଛି କହ, ତାହା ଜୀବନର ସଂଗ୍ରାମରେ ଫୁଟିଉଠେ ।

## ସମାଜସଂସ୍କାରକ ଗୋଖଲେ

ଗୋଖଲେଙ୍କ ସମ୍ବନ୍ଧରେ ଅନେକ କଥା ପୂର୍ବରୁ କୁହାହେଲାଣି । ବର୍ତ୍ତମାନ ଅଳ୍ପ ଅଳ୍ପରେ ଗୋଖଲେଙ୍କର ଭିନ୍ନ ଭିନ୍ନ ଦିଗ ସ୍ପର୍ଶ କରିବା ଦରକାର । ଗୋଖଲେ ସମାଜସଂସ୍କାରକ ଥିଲେ । ସେ ଜାତି-ଭେଦର ଅହଂକାର କରୁ ନ ଥିଲେ । ଜାତି ଧ୍ୱଂସ କରି ସମଗ୍ର ଭାରତକୁ ଏକ ମାନବିକତାର ସୂତ୍ରରେ ଆବଦ୍ଧ କରି ପାରିଲେ ଭାରତୀୟ ଜାତିର ପୁନରୁତ୍ଥାନ ହେବ, ଏହା ସେ ସ୍ପଷ୍ଟ ଭାବରେ ଦେଖି ପାରିଥିଲେ । ସେଥିପାଇଁ ସେ ବିଲାତରୁ ଫେରିଆସି ପ୍ରାୟଶ୍ଚିତ୍ତ କରି ନାହାନ୍ତି । ତାଙ୍କର ସ୍ତ୍ରୀଙ୍କ ମୃତ୍ୟୁରେ ବ୍ରାହ୍ମଣାଦିଙ୍କ ପୂଜା ପାର୍ବଣ କରିବା ପାଇଁ ସେ ଆଗ୍ରହାନ୍ୱିତ ହୋଇ ନାହାନ୍ତି । ତାଙ୍କୁ ତାଙ୍କର ବନ୍ଧୁମାନେ ଯେତେବେଳେ କହିଲେ—"ଆପଣଙ୍କ ଅନ୍ତେ ଆପଣଙ୍କ ଝିଅମାନେ (ଗୋଖଲେଙ୍କର ଦୁଇଟି ଝିଅ ଥିଲେ, ଧାନଟି ବର୍ତ୍ତମାନ ମୃତ) କିପରି ସମାଜରେ ବିବାହାଦି କରିବେ ?" ଗୋଖଲେ ସେଥିରେ ଭ୍ରୂକ୍ଷେପ ମଧ୍ୟ କରି ନ ଥିଲେ । ଗୋଖଲେଙ୍କର ପ୍ରଥମ ଝିଅ କାଶୀବାଈ ଧବଲେ କଟକର ଭୂତପୂର୍ବ ଡିଷ୍ଟ୍ରିକ୍ଟ ଏବଂ ସେସନ୍ସ ଜଜ୍ ମିଷ୍ଟର ଧବଲେଙ୍କର ସ୍ତ୍ରୀ ଅଟନ୍ତି । ସେ

"ସୁଧାରକ" ପତ୍ରିକାରେ ସମାଜସଂସ୍କାର ପାଇଁ ପ୍ରାଣପଣ ଲେଖୁଥିଲେ । ଫାର୍ଗୁସନ କଲେଜର ପ୍ରିନ୍‌ସିପାଲ ଆଗର୍‌କାର୍‌ ଏବଂ ଗୋଖଲେ ସମାଜସଂସ୍କାରକ ଓ ତିଳକ ଏହାର ବିରୋଧୀ ଥିବାରୁ ସେମାନଙ୍କ ମଧ୍ୟରେ ଉତ୍କଟ ବିବାଦ ହୋଇଥିଲା । ତିଳକଙ୍କୁ ଫାର୍ଗୁସନ କଲେଜ ଛାଡ଼ିବାକୁ ହୋଇଥିଲା । ଯେଉଁ ତିଳକଙ୍କ ଜେଲ ଯିବା ଶୁଣି ଯେଉଁ ଗୋଖଲେ ଛାତ୍ରାବସ୍ଥାରେ ସ୍ତ୍ରୀ-ବେଶ ଧାରଣ କରି ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହୋଇ ତିଳକଙ୍କୁ ଜେଲରୁ ମୁକ୍ତ କରିବା ପାଇଁ ଅର୍ଥ ସଂଗ୍ରହ କରିଥିଲେ, ସେହି ଦୁଇଙ୍କ ମଧ୍ୟରେ ଭବିଷ୍ୟତ ଜୀବନରେ ଏପରି ଦାରୁଣ ଦୁର୍ବିସହ ବିବାଦ ବିସମ୍ବାଦ ହେବ ବୋଲି କିଏ ଜାଣିଥିଲା ? ତିଳକ ସମାଜସଂସ୍କାରର ଅପକ୍ଷପାତୀ ଥିଲେ, ଏପରି କୁହାଯାଇ ନ ପାରେ । ସେ ସମାଜକୁ କ୍ଷୁବ୍ଧ କରିବାକୁ ଚାହୁଁ ନ ଥିଲେ । ନିଜେ କିନ୍ତୁ ଅସ୍ପୃଶ୍ୟ ଜାତିର ଲୋକଙ୍କ ସଙ୍ଗରେ ବସି ଖାଇଥିଲେ; କିନ୍ତୁ ଅସ୍ପୃଶ୍ୟତା ବର୍ଜନ ଆନ୍ଦୋଳନରେ ଦସ୍ତଖତ ଦେବାକୁ ମଧ୍ୟ କୁଣ୍ଠିତ ହୋଇଥିଲେ । ସେ ଥରେ ହୋଟେଲରୁ ଖାଇଥିଲେ; କିନ୍ତୁ ଏହି କଥା ଅଧ୍ୟକ୍ଷ ଆଗରକାର୍‌ ପ୍ରକାଶ୍ୟରେ ସଭାରେ କହିଲାରୁ ତିଳକ କହିଲେ, "ସେ ପ୍ରମାଣ କରନ୍ତୁ ଯେ ମୁଁ ହୋଟେଲରେ ଖାଇଛି ବୋଲି ।" ତିଳକ ଓ ଗୋଖଲେଙ୍କ ମଧ୍ୟରେ ସରଳତା ଏବଂ କୁଟିଳତା ନେଇ ପାର୍ଥକ୍ୟ ଥିଲା । ତିଳକ "ଶଠେ ଶାଠ୍ୟଂ ସମାଚରେତ୍" କରୁ କରୁ କେତେବେଳେ ମାତ୍ରା ଅତିକ୍ରମ କରୁଥିଲେ; କିନ୍ତୁ ଗୋଖଲେ ସମାଜ ସଂସ୍କାରକ ଭିତରେ ଏବଂ ବାହାରେ । ତିଳକ ବିଲାତରୁ ଫେରିଆସି ତାଙ୍କ ପୁଅ ବାହାଘର ବେଳେ ପ୍ରାୟଶ୍ଚିତ୍ତ କଲେ । ଲୋକେ ପଚାରିବାରୁ ସେ କହିଲେ ମୋ ପାଇଁ ମୁଁ ପ୍ରାୟଶ୍ଚିତ୍ତ କରୁନାହିଁ— ଆଉ ଜଣକ ପାଇଁ, ଅର୍ଥାତ୍ ତାଙ୍କ ପୁଅର ଉପକାର ପାଇଁ ।

## ରାଜନୀତିଜ୍ଞ ଗୋଖଲେ

ଗୋଖଲେଙ୍କୁ ରାଜନୀତି କ୍ଷେତ୍ରରେ ଅନେକ ଦୁଃଖ ସହିବାକୁ ହୋଇଛି । ସେ ମଧ୍ୟପନ୍ଥୀ ବୋଲି ତାଙ୍କର ସ୍ଥାନ ମହା-ରାଷ୍ଟ୍ରରେ ଏକ ପ୍ରକାର ନ ଥିଲା । ସେ ଗାଡ଼ିରେ ଗଲେ ମଧ୍ୟ ସ୍କୁଲିଆ ଟୋକା ତାଙ୍କୁ ଥଟ୍ଟା କରୁଥିଲେ—ଏପରି କି ଢେଲା ପକାଉଥିଲେ । ଏପରି ମଧ୍ୟ ଶୁଣାଯାଏ ଯେ, ଗୋଖଲେଙ୍କୁ ମାରିପକାଇବା ପାଇଁ ଏହି ଛାତ୍ରମାନେ କାହାରି କାହାରି ଦ୍ୱାରା ପ୍ରେରିତ ହୋଇ ଥରେଅଧେ ତାଙ୍କ ଜୀବନ ଉପରେ ଆକ୍ରମଣ ମଧ୍ୟ କରିଥିଲେ । ଗୋଖଲେ ବି ଦୁଃଖରେ କାନ୍ଦି କାନ୍ଦି କହନ୍ତି, ମୁଁ କି ଅପରାଧ କରିଅଛି ଯେ ମୋତେ ସରକାର ଖୋସାମଦିଆ ବୋଲି କହୁ-ଅଛନ୍ତି ? ମୁଁ ତ ସରକାରର ଖୋସାମୋଦ କେବେ ହେଲେ କରିନାହିଁ । ଗୋଖଲେଙ୍କ ବିଶ୍ୱାସ ଥିଲା ଯେ, ଭଗବାନ୍‌ଙ୍କ ଦୟାକ୍ରୁ ବିଧାନରୁ ଇଂରେଜମାନେ ଭାରତବର୍ଷରେ ଆଜି ଶାସନ କରୁଅଛନ୍ତି । ଇଂରେଜ ଏବଂ ଭାରତୀୟଙ୍କ ଏହି ସମ୍ମିଳନ ଈଶ୍ୱର-ବାଞ୍ଛିତ । ଏଥିପାଇଁ କେହି କେହି ସାହେବ ମଧ୍ୟ ଗୋଖଲେଙ୍କୁ ଥଟ୍ଟା କରିଛନ୍ତି; କିନ୍ତୁ ସେ ଏହି ବିଶ୍ୱାସରୁ ତିଳେ ହେଲେ ଟଳି ନାହାନ୍ତି । ରାଜନୀତିରେ ଛାତ୍ରଙ୍କ ସ୍ଥାନ ଆଲୋଚନା କରିବା—ରାଜନୀତିରେ ଯୋଗ

ଦେଇ ସେକଥାଡ଼ କରିବା ନୁହେଁ ବୋଲି ଗୋଖଲେଙ୍କର ବିଶ୍ୱାସ ଥିଲା । ସେ ଛାତ୍ର-ମାନଙ୍କୁ ରାଜନୀତିରେ ଧୂମଧାମ କରିବାକୁ ନ ଦେଇ ସେମାନଙ୍କୁ ରାଜନୀତି ଭଲ କରି ପଢ଼ାପଢ଼ି କରିବାକୁ ଦେବାର ସପକ୍ଷରେ ଥିଲେ । ଏଥିପାଇଁ ଅନେକ ସାଧ ସାଧନାର ପ୍ରୟୋଜନ ବୋଲି ତାଙ୍କର ବିଶ୍ୱାସ ଥିଲା ଏବଂ ଆଜି ଏହି କଥାର ସାରବତ୍ତା ଆମ ଦେଶର ବହୁ ଲୋକେ ମଧ୍ୟ ଉପଲବ୍ଧି କରୁଛନ୍ତି ।

ଲାଲ ଲଜପତ ରାୟ ଗୋଖଲେଙ୍କର ଲୋକ ଥିଲେ । ସୁରତ କଂଗ୍ରେସ ପରେ ସେ ଉଗ୍ର ଦଳକୁ ଆସିଲେ । ତଥାପି ଲଜପତ ଏକାବେଳକେ ନିଆଁ ଗିଳା ନୁହନ୍ତି । ମହାତ୍ମା ଗାନ୍ଧୀ ଗୋଖଲେଙ୍କୁ ରାଜନୀତି ଗୁରୁ ବୋଲି ଜଗତ୍ ସମକ୍ଷରେ ସ୍ୱୀକାର କରିଅଛନ୍ତି—ପ୍ରଚାର କରିଅଛନ୍ତି । ଗୋଖଲେ ଗାନ୍ଧୀଙ୍କର "ଭାରତୀୟ ସ୍ୱରାଜ" ପୁସ୍ତକର କେତେକ ପୃଷ୍ଠା ମାତ୍ର ପଢ଼ି ପିଲାକଥା ବୋଲି କହି ବହିଟି ପକାଇ ଦେଇଥିଲେ । ଗାନ୍ଧୀ ଗୋଖଲେଙ୍କୁ କହି-ଥିଲେ—ମୁଁ ରାଜନୀତି କ୍ଷେତ୍ରରେ ପିଲା, ଆପଣଙ୍କୁ ହୃଦୟର ଆସନରେ ମୋର ରାଜନୀତି ରାଜା କରି ବସାଇଲି ।

## ମାନୁଷିକ ଗୋଖଲେ

ସାଧାରଣତଃ ପ୍ରତ୍ୟେକ ମନୁଷ୍ୟର ଏହି ମାନୁଷିକତା ଦିଗଟା ଦେଖିବା ଦରକାର । ଗୋଖଲେ ମନୁଷ୍ୟ ହିସାବରେ, ଅର୍ଥାତ୍ ବିଦ୍ୟା ବୁଦ୍ଧି ରାଜନୀତି ଏହି ସବୁ ଗୁଣ ଗରିମା ବ୍ୟତୀତରେ ସେ କିପରି ହୃଦୟର ଲୋକ ଥିଲେ କିମ୍ବା ସାଧାରଣ ଚାଲିଚଳଣରେ କିପରି ଥିଲେ, ଏହା ଜାଣିବା ପାଇଁ ସମସ୍ତଙ୍କର ଔତ୍ସୁକ୍ୟ ହେବ, ଏଥିରେ ସନ୍ଦେହ ନାହିଁ । ଗୋଖଲେ ଏବଂ ପରାଞ୍ଜପେ (ଫାର୍ଗୁସନ କଲେଜର ଭୂତପୂର୍ବ ପ୍ରିନ୍‌ସିପାଲ ଏବଂ ବର୍ତ୍ତମାନ ଇଣ୍ଡିଆ କାଉନ୍‌ସିଲର ମେମ୍ବର) ଡେକାନ ସଭାଘରେ ତାସରେ "ବ୍ରିଜ୍" ଖେଳ ଖେଳୁ ଖେଳୁ ଥରେ ଥରେ ସନ୍ଧ୍ୟାରୁ ରାତି ପୁହାଇ ଦେଇଛନ୍ତି । ଏପରି ଝୋଁକ—ଏହି ମନୋନିବେଶ ! ରାନାଡ଼େଙ୍କ ପାଖରେ ବସି ପ୍ରଥମ ବଡ଼ଲାଟ ସଭାରେ ବଜେଟ ବକ୍ତୃତା ପାଇଁ ଏକାଦିକ୍ରମେ ୭୨ ଘଣ୍ଟା ସେ କଟାଇ ଦେଇଥିଲେ । ରାନାଡ଼େଙ୍କ ପାଖରେ ବସି ଲେଖିବା ଏବଂ ତାଙ୍କ ଉପଦେଶ ଅନୁଯାୟୀ ଲେଖାର ପରିବର୍ତ୍ତନାଦି କରିବା, ଏହା କି କମ୍ ପ୍ରଗାଢ଼ ଅଧ୍ୟବସାୟ ଏବଂ ଅନୁରାଗର କଥା !

ଗୋଖଲେ ଯେତେବେଳେ ଦକ୍ଷିଣ ଆଫ୍ରିକାରେ ଥିଲେ, ସେତେବେଳେ ମହାତ୍ମା ଗାନ୍ଧୀଙ୍କର ଅତିଥି ହୋଇ କେତେ ଦିନ ଥିଲେ । ସେହି ସମୟରେ ଗାନ୍ଧି ତାଙ୍କର କମୋଡ୍ ସଫା କରୁଥିଲେ । ଗୋଖଲେ ଏହା ପ୍ରଥମେ ଜାଣି ନ ଥିଲେ । ଯେତେବେଳେ ସେ ଏହା ଜାଣିଲେ, ସେତେବେଳେ ଅତ୍ୟନ୍ତ ବ୍ୟଥିତ ହୋଇ କାନ୍ଦି ପକାଇ କହିଲେ—ଆପଣଙ୍କର ଏପରି ନମ୍ର ସହୃଦୟତା ଏବଂ ଅତି-ଥେୟତା ମୁଁ ସହ୍ୟ କରି ପାରିବି ନାହିଁ । ମହାତ୍ମା ଗାନ୍ଧି କହିଥିଲେ — ଆଜ୍ଞା, ଆପଣଙ୍କ ପାଇଖାନା ପରିଷ୍କାର କରିବାର ସୌଭାଗ୍ୟ ଆଉ ଜଣକୁ ଦେବି କିପରି ? ଗୋଖଲେ କାନ୍ଦି ପକାଇ କହିଥିଲେ—ଗାନ୍ଧି, ତୁମେ ମନୁଷ୍ୟ ନୁହଁ, ତୁମେ ଦେବତା । ଆପଣ

ମୋର ହୃଦୟର ଦେବତା—ଗୁରୁ । ଏହିପରି ଭାବରେ ପରସ୍ପର ମଧ୍ୟରେ ଗୁରୁ ଭାବ ସ୍ଥାପିତ ହୋଇଥିଲା ।

ଗୋଖଲେ ବଡ଼ ବେଶୀ sensitive ଥିଲେ । ହଠାତ୍ କ୍ଷୁବ୍ଧ ହୋଇଯାନ୍ତି । ହଠାତ୍ କାନ୍ଦ ପକାନ୍ତି । ଦିନେ ସେ ବଡ଼ ଅଧୀର ହୋଇ ଭାରତ ସେବକ ସମିତିର ବାରନ୍ଦାରେ ଏ ପାଖ ସେ ପାଖ ହୋଇ ବୁଲୁଥାନ୍ତି । ତାଙ୍କର ମୁଖ ବିଷାଦ ଏବଂ ଦୁଃଖରେ ଭରା । ବନ୍ଧୁଟି ପଚାରିଲେ-ଗୋପାଳ ରାଓ, କାହିଁକି ଏପରି ବିଷଣ୍ଣ ହୋଇଛ ? ସେ କହିଲେ, ଗୋଟାଏ ବିଷୟ ଏକ ଘଣ୍ଟା ଧରି ମନେ କରୁଛି, ମନେ ପଡୁନାହିଁ—ସେଥିପାଇଁ ଏପରି ହୋଇପଡ଼ିଛି । ଗୋଖଲେ ବେଶଭୂଷା ଏବଂ ଆଦବ କାୟଦାରେ ଇଂରେଜ ମାନଙ୍କ ପକ୍ଷପାତୀ ଥିଲେ । କେହି ଦେଖା କରିବାକୁ ଆସିଲେ ଇଂରେଜ କାୟଦା କରୁଥିଲେ । ଖାଲି ଦେହରେ କୌଣସି ସଭ୍ୟଙ୍କୁ ବୁଲିବାକୁ ବା ଘରେ ରହିବାକୁ ଦେଖିଲେ ସେ ରୁଷ୍ଟ ହେଉଥିଲେ । ଯେତେବେଳେ ଭାରତ ସେବକ ସମିତି ପ୍ରଥମେ ଆରମ୍ଭ କରାଗଲା (ସେ ୧୯୦୫।୦୬ ସାଲର କଥା) । ସେତେବେଳେ ବର୍ତ୍ତମାନ ଉପସଭାପତି ଗୋପାଳକୃଷ୍ଣ ଦେବଧର—ସେ କ ଅସାଧାରଣ କର୍ମୀ —ଅରେ ବ୍ୟସ୍ତ ହୋଇ କହିଲେ, ଖାଲି ଏଠାରେ ( ପୁନାରେ ) ବସି ରହି କଣ କରିବା ? ଗୋଖଲେ ଏହା ସହ୍ୟ କରି ନ ପାରି ସେହି ଦିନ ରାତିଗାଡ଼ିରେ ବୋମ୍ବାଇକୁ ଯାଇଁ କିଛି ଟଙ୍କା ଆଣି ଦେବଧରଙ୍କ ହାତରେ ଦେଇ କହିଲେ, "ଏହି ନିଅ ଟଙ୍କା, ଯାଆ ଲୁଆଡେ ଯିବ, କଣ କରିବ, ମୁଁ ଏକବର୍ଷ ପର୍ଯ୍ୟନ୍ତ ତୁମକୁ ଦେଖିବି ନାହିଁ । ଏକବର୍ଷ ପରେ ତୁମେ ଆସି କହିବ କଣ କଲ ।" ଦେବଧର ଏହି ଏକବର୍ଷ ସମସ୍ତ ବଙ୍ଗଦେଶ ଭ୍ରମଣ କରି ନାନା ସ୍ଥାନରେ ଭାରତ ସେବକ ସମିତିପାଇଁ ସଭ୍ୟ ଯୋଗାଡ଼ କରିଥିଲେ ଏବଂ ଦେଶପ୍ରୀତି ଲୋକଙ୍କ ମଧ୍ୟରେ ଜାଗରିତ କରିଥିଲେ ।

## ପଞ୍ଚମ ପ୍ରକାଶ

### ଅନ୍ତିମ କାଳ

ଗୋପାଳକୃଷ୍ଣ ଗୋଖଲେଙ୍କ ଅକାଳ-ମୃତ୍ୟୁରେ ଭାରତବର୍ଷର ରାଜନୈତିକ କ୍ଷେତ୍ରରୁ ଖଣ୍ଡିଏ ହୀରକ ଲୁପ୍ତ ହୋଇଗଲା । ୧୯ ଫେବ୍ରୁଆରୀ ୧୯୧୫ ରେ ଯେତେ-ବେଳେ ଏହି ମହାତ୍ମାଙ୍କର ଦେହାନ୍ତ ହେଲା, ସେତେବେଳେ ଭାରତର ଆକାଶ ଅନ୍ଧକାରମୟ ହୋଇଗଲା, ଗୋଟିଏ ଜ୍ୱଳନ୍ତ ଅଙ୍ଗାର ହଠାତ୍ ଭସ୍ମରେ ପରିଣତ ହୋଇଗଲା, ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର ଅନନ୍ତ ସମୁଦ୍ର ଗର୍ଭରେ ନିମଗ୍ନ ହୋଇଗଲା, ଦିଗ୍‌ଦିଗନ୍ତବ୍ୟାପୀ ଗୋଟିଏ ପ୍ରବଳ କ୍ରନ୍ଦନ ବହିଗଲା, କୋଟିହୃଦୟରୁ ଗୋଟିଏ ଉଷ୍ଣ ହତାଶ ନିଃଶ୍ୱାସ ନିର୍ଗତ ହେଲା, ଶାସକ ସମ୍ପ୍ରଦାୟ ମଧ୍ୟରେ ମଧ୍ୟ ଏହାଙ୍କ ପାଇଁ ଗୋଟିଏ ଦାରୁଣ ଦୁଃଖର ପ୍ରକାଶ ହେଲା; ତାଙ୍କର ଶତ୍ରୁବର୍ଗ ମଧ୍ୟ "ହାୟ ଗୋଖଲେ ଏତେ ଶୀଘ୍ର !" କହି ଶୋକାଶ୍ରୁ ବିସର୍ଜନ କଲେ । ଭାରତ-କୋକିଳ ଶ୍ରୀମତୀ ସରୋଜିନୀ ନାଇଡୁ ତାଙ୍କର 'Gokhale the Man' ନାମକ କ୍ଷୁଦ୍ର ପୁସ୍ତିକାରେ ଯାହା

ଲେଖିଛନ୍ତି ତାହା ମୀଠ କରିବାର ବସ୍ତୁ, ସ୍ମରଣରେ ରଖିବାର ବିଷୟ । ସେ ଲେଖିଛନ୍ତି—"ଗୋଖଲେଙ୍କୁ ଶେଷ ଦର୍ଶନ କରିଥିଲି ଅକ୍ଟୋବର ମାସର ୮ ତାରିଖରେ, ମୋର ଭାରତବର୍ଷରୁ ଯାତ୍ରା କରିବାର ଦୁଇଦିନ ପୂର୍ବରେ'' । ସେ ସମୟରେ ଶରୀରର କ୍ଳାନ୍ତ ଚିନ୍ତ ମଧ୍ୟରେ ଏବଂ ପରିବର୍ତ୍ତମାନ କୁଜ୍‌ଝଟିକା ମଧ୍ୟରେ ଗୋଟିଏ ବିଷାଦର ପ୍ରଭାବ ପଡ଼ିଥିଲା ଏବଂ ସେହି ବିଷାଦ ଗୋଖଲେଙ୍କ ଉପରେ ମଧ୍ୟ ସ୍ୱପ୍ରଭାବ ବିସ୍ତାର କରିଥିଲା, ଅଥବା ହୋଇପାରେ ଯେ ସେ ଆସନ୍ନମୃତ୍ୟୁର ଅନ୍ଧକାର ପକ୍ଷ ବିସ୍ତାରର ପୂର୍ବାନୁଭବ କରିଥିଲେ । ସୁତରାଂ ସେ ମୋତେ ବିଦାୟ ଦେବା ସମୟରେ କହିଥିଲେ, "ପୁଣି ଆମ୍ଭେମାନେ ପରସ୍ପର ସାକ୍ଷାତ କରିବୁ, ଏପରି ଭାବ ପାରୁନାହିଁ । ଯଦି ତୁମେ ଜୀବିତ ରହ, ତାହା ହେଲେ ମନରେ ରଖ ଯେ ତୁମର ଜୀବନ ଦେଶର କାର୍ଯ୍ୟରେ ଉତ୍ସର୍ଗ କର । ମୋର କାର୍ଯ୍ୟ ସମାପ୍ତ-ହେଲା ।'' ଗୋଖଲେ ସେତେବେଳେ ବିଲାତରେ ଥିଲେ—ସେତେବେଳେ ସେ "ଭାରତ ବ୍ୟୟ କମିଶନ'' (ସାଧାରଣତଃ ଇଏଲବି କମିଶନ ନାମରେ ବିଖ୍ୟାତ)ରେ ସାକ୍ଷ୍ୟ ଦେବା ପାଇଁ ବିଲାତ ଯାଇଥିଲେ ।

ଗୋଖଲେ ଉକ୍ତ ବର୍ଷ (୧୯୧୪) ଡିସେମ୍ବର ମାସରେ ଭାରତବର୍ଷକୁ ଫେରି ଆସିଲେ । ପରେ ଏହି ଭାରତବର୍ଷକୁ ଫେରିଆସି ବିଲାତରେ ଅତ୍ୟଧିକ ପରିଶ୍ରମ ଯୋଗୁ କ୍ଳାନ୍ତି, ଅବସାଦ ଏବଂ ଜ୍ୱର ଆରମ୍ଭ ହେଲା । ଦୁଇ ତିନମାସ ମଧ୍ୟରେ ଅର୍ଥାତ୍ ଫେବୃୟାରୀ ମାସ ୧୯ ତାରିଖରେ ତାଙ୍କର ଇହଲୀଳା ସାଙ୍ଗ ହେଲା । ଠିକ୍ ଏହାର ଏକ ସପ୍ତାହ ପୂର୍ବରୁ ଅର୍ଥାତ ଫେବୃୟାରୀ ୧୨, ୧୯୧୫ ରେ ସେ ସରୋଜିନୀଙ୍କୁ ଯେଉଁ ଚିଠି ଲେଖି-ଥିଲେ ତାହା ଏହି । ସରୋଜିନୀ ସେତେ-ବେଳେ କଲିକତାରେ ପିତୃଶ୍ରାଦ୍ଧ ପାଇଁ ଆସିଥିଲେ । ଗୋଖଲେ ଲେଖିଥିଲେ—

Dear Mrs. Naidu,

Your beautiful letter, written in the midst of your sorrow—so beautiful, perhaps, because of your sorrow—reached me yesterday afternoon. I wish I had been anywhere near so that I could have gone to see you personally. * * I do hope your grief will break into songs that will abide. * * * With renewed expressions of affectionate sympathy.

12th February 1915 | Yours Ever G. K. Gokhale

ଭାବାର୍ଥ—ତୁମର ସୁନ୍ଦର ଚିଠିଖଣ୍ଡିକ ପାଇଲି । ଶୋକଦୁଃଖ ମଧ୍ୟରେ ଲିଖିତ ହୋଇଥିବାରୁ ବୋଧହୁଏ ଏତେ ସୁନ୍ଦର ହୋଇଅଛି । ମୋର ଇଚ୍ଛା ହେଉଅଛି ଏହି ସମୟରେ ମୁଁ ତୁମ ନିକଟରେ କେଉଁଠି ଥାଆନ୍ତି ଯେପରି କି ତୁମକୁ ଯାଇଁ ଦେଖି ଆସି ପାରନ୍ତି । ମୁଁ ଆଶା କରେ ତୁମର ଶୋକ, ସଙ୍ଗୀତରେ ବିକଶିତ ହେବ ଯେଉଁ ସଙ୍ଗୀତ କି ଚିରକାଳ ପାଇଁ ରହିଯିବ । ମୋର ସ୍ନେହ ସହାନୁଭୂତି ଜାଣିବ । ଇତି ।

ଶ୍ରୀ ଗୋପାଳକୃଷ୍ଣ ଗୋଖଲେ

ଏହାର ଏକ ସପ୍ତାହ ପରେ ହିଁ ଏହି ମହାପୁରୁଷଙ୍କର ଅନ୍ତିମ ଶୟନର ରଚନା ହେଲା, ମୃଣ୍ମୟ ଶରୀର ମୃତ୍ତିକାରେ ମିଶିଗଲା । ଗୋଟିଏ ଅନ୍ତର୍ଦ୍ଧାନ ହେଲା ଯାହା କି ଯେଉଁମାନଙ୍କ ହୃଦୟରେ ଆଶା, ଉତ୍ସାହ, ଭକ୍ତି ଏବଂ ମାତୃଭୂମି ପାଇଁ ସ୍ୱାର୍ଥାହୁତି ଦେବାର ଶକ୍ତି ପ୍ରେରଣ କରିଥିଲା, ସେହିମାନଙ୍କୁ ବିଶେଷ ଭାବରେ ଅଭିଭୂତ କରି ପକାଇଲା । ରାଜକାର୍ଯ୍ୟ ଧୂରନ୍ଧର ପୁରୁଷମାନଙ୍କର ମନୋମଧ୍ୟରେ ମଧ୍ୟ ଗୋଟିଏ କ୍ଷୋଭ ଜାତ ହେଲା । ଲର୍ଡ଼ କର୍ଜନଙ୍କ ମନରେ ମଧ୍ୟ ଦୁଃଖ ସଂଜାତ ହୋଇଥିଲା । ଗୁଣୀ ଗୁଣୀକୁ ଚିହ୍ନେ ।

ଫେବୃୟାରୀ ମାସ ୧୯ ତାରିଖ ଦିନ ରାତି ୧୧।୧୦ ମିନିଟ ସମୟରେ ଏହାଙ୍କର ପ୍ରାଣବାୟୁ ବହିର୍ଗତ ହେଲା । ଫେବୃୟାରି ୧୨ ତାରିଖ ଦିନ ସରୋଜିନୀଙ୍କୁ ସେହି ରାତି, ସେହି ଦିନ ଗାନ୍ଧିଙ୍କୁ ପୁନାରେ ସ୍ୱାଗତ ଦାନ ଏବଂ ଭାରତ ସେବକ ସମିତିର ଗୃହରେ ତାଙ୍କ ଆଗମନ ଉପଲକ୍ଷେ ଏକ ଫଳଭୋଜିର ଆୟୋଜନ ପରେ ସେ ମୂର୍ଚ୍ଛିତ ହୋଇ ପଡିଗଲେ । ୭ ଦିନ ମଧ୍ୟରେ ଏହି ମହାବିପର୍ଯ୍ୟୟ ଘଟିଲା । ଏହା ଅଚିନ୍ତିତ, ଅଭାବିତ ଏବଂ ଆକସ୍ମିକ ମୃତ୍ୟୁ ଥିଲା । ଅବଶ୍ୟ ବିଲାତରେ ଥିଲାବେଳେ ତାଙ୍କୁ ଡାକ୍ତରମାନେ କହି-ଥିଲେ ଯେ, ଖୁବ୍ ଯତ୍ନର ସହିତ ରହିଲେ ସୁଦ୍ଧା ତାଙ୍କର ଜୀବନକାଳ ଆଉ ତିନି ବର୍ଷରୁ ଅଧିକ ରହିବ ନାହିଁ । ଏକଥା ୧୯୧୪ ସାଲରେ କହିଥିଲେ; ଆଉ ୧୯୧୫ ସାଲ ଫେବୃୟାରୀରେ ଏହା ଘଟିଲା । ଫେବୃୟାରୀ ୧୨ ତାରିଖ ମୂର୍ଚ୍ଛା ପରେ ଗୋଖଲେ ନିୟମିତ ଭାବରେ କାର୍ଯ୍ୟ କରିବାକୁ ଲାଗିଲେ । ବୁଧବାର ରାତିରେ ସେ ଗୋଟିଏ ଖୁବ୍ ମୂଲ୍ୟବାନ ନୋଟ (ଭାରତକୁ ମଣ୍ଟେଗୁ ଚେମ୍ସ୍‌ଫୋର୍ଡ଼ ରିଫର୍ମସ୍‌ରେ ଯାହା ଦିଆଯାଇଛି । ତାହା ଗୋଖଲେଙ୍କ ଏହି ନୋଟ ଉପରେ ବହୁ ଅବଲମ୍ବିତ ) ଲେଖୁଥିଲେ ଏବଂ ବୃହସ୍ପତିବାର ଦିନ କେତେଗୁଡ଼ିଏ ଚିଠିର ଉତ୍ତର ଦେଇଥିଲେ--ଆଉ ଜଣେ ଲେଖୁଥିଲେ । ଶୁକ୍ରବାର ଦିନ ପ୍ରାତଃକାଳରେ ପୁଣି ପୁରାତନ ମିତ୍ର (ରୋଗ) ସହିତରେ ସାକ୍ଷାତ୍ । ସେ ବୁଝି ପାରିଥିଲେ ଯେ, ତାଙ୍କର ଅବସାନ ସନ୍ନିକଟ । ସେ ତାଙ୍କର ସମସ୍ତ ବନ୍ଧୁଙ୍କଠାରୁ ବିଦାୟ ଗ୍ରହଣ କଲେ, ଦୁଇ ଝିଅଙ୍କୁ ଆଶୀର୍ବାଦ କଲେ ଏବଂ ରାତି ୯ଟା ସମୟରେ ତାଙ୍କର ସହକର୍ମୀବୃନ୍ଦମାନଙ୍କୁ ସମସ୍ତ କାଗଜପତ୍ର ଉଠାଇ ନେଇଯିବା ପାଇଁ ଆଜ୍ଞା ଦେଲେ ଏବଂ ତାଙ୍କ ନିକଟରେ ଉପସ୍ଥିତ ସହ-କର୍ମୀବୃନ୍ଦମାନଙ୍କୁ ରାତି ୯ଟା ସମୟରେ କହିଲେ, "ଏତେ ଦିନ ଧରି ମୁଁ ଜୀବନର ଏ ପାଖର ଖେଳ ଦେଖିଲି, ଏଥର ମୋତେ ସେପାଖକୁ ଯିବାକୁ ଦିଅ ଏବଂ କଅଣ ଅଛି ଦେଖିବାକୁ ଦିଅ ।" ଦେଖୁ ଦେଖୁ ରାତି ଘ ୧୧।୧୦ ମିନିଟ ସମୟରେ ତାଙ୍କର ଆତ୍ମା ଧୀରଭାବରେ ସେପାଖକୁ ଚାଲିଗଲା । ହିନ୍ଦୁର ବିଶ୍ୱାସାନୁଯାୟୀ କେତେ ଗିରି ବନ ଲଙ୍ଘି ପୁଣି ଏପାଖକୁ କେବେ ଆସିବ କେ କହିପାରେ । ଚର୍ମଚକ୍ଷୁର ଅନ୍ତରାଳ ହେଲେ, ଦୃଶ୍ୟ ଜଗତରୁ ବହିର୍ଗତ ହେଲେ ଅଦୃଶ୍ୟ ଜଗତର ବାର୍ତ୍ତା ଅଦୃଶ୍ୟ ଭାବରେ ଆମ୍ଭମାନଙ୍କ ନିକଟରେ ଆସି ଉପସ୍ଥିତ ହୁଏ ଏବଂ ସମସ୍ତ ସମୟରେ ଅଦୃଶ୍ୟ ଜଗତର ମହାନ୍ ବିଶାଳତା

ଉପଲବ୍ଧି କରି ଦୃଶ୍ୟ ଜଗତ କେତେ କ୍ଷୁଦ୍ର କେତେ ଖର୍ବ, ବେଶ୍ ହୃଦୟଙ୍ଗମ ହୁଏ । କିନ୍ତୁ ତଥାପି ଏ ଜୀବନ "ସ୍ୱପ୍ନୋ ନୁ ମାୟା ନୁ" ଉପଲବ୍ଧି ହେଲେ । ମଧ୍ୟ ଏହି ଜୀବନହିଁ ବାସ୍ତବ, ମୃତ୍ୟୁ ପରେ ସମସ୍ତ ଅବାସ୍ତବ ଏହିପରି ଭାବ ଜନ୍ମେ । କିନ୍ତୁ ଏହା ସତ୍ୟ କି ? କିଏ କହିବ ? ଏହାର ବାସ୍ତବତା ପ୍ରମାଣ ପାଇଁ, ଗମ୍ଭୀର ଦାର୍ଶନିକ, ମହା ବୈଜ୍ଞାନିକ, ପ୍ରେମିକ, ଭାବୁକ ସମସ୍ତେ ସତତ ବ୍ୟସ୍ତ ଏବଂ ରହସ୍ୟୋଦ୍‌ଘାଟନରେ ନିଯୁକ୍ତ । କିଏ ଜାଣେ ଦିନେ ହୁଏତ ଦ୍ୱାରୋଦ୍‌ଘାଟନ ହେବ ଓ ହୋମର, ପ୍ଲେଟୋ, କପିଳ, ଭରଦ୍ୱାଜ, ନେପୋଲିଅନ, ଓୟେଲିଙ୍ଗଟନ, ପିତା ପୁତ୍ର, ଅତୀତ ଏବଂ ବର୍ତ୍ତମାନ, ବର୍ତ୍ତମାନ ଏବଂ ଭବିଷ୍ୟତ — ସମସ୍ତ ସ୍ପଷ୍ଟ ଭାବରେ ମାନବ ନିକଟରେ, ଜଗତ ସମକ୍ଷରେ ପ୍ରତିଭାତ ହେବ । ସେ ଦିନ ଗୋଖଲେ ମଧ୍ୟ ସ୍ପଷ୍ଟ ଦେଖାଯିବେ—ଆମ୍ଭେମାନେ ଆନନ୍ଦିତ ହେବୁଁ, ସେ ମଧ୍ୟ ହେବେ, ବିରହ ବିଧୁର ହୃଦୟ ଶାନ୍ତ ହେବ ।

ଆହା, କି ଗରିମାମୟ ସେ ଦୃଶ୍ୟ ! ସେଦୃଶ୍ୟ ଯେଉଁଦିନ ଦେଖାଯିବ, ସେଦିନର ଅବସାନରେ ବିଶ୍ୱଲୀଳାର ଯବନିକା-ପତନ ହେବ ଏବଂ ସମସ୍ତ କୁଶୀଲବ ବିଶ୍ରାମ ଲାଭ କରିବେ ଓ ଆନନ୍ଦରେ ଭୋଜନ ପାନ କରି ଶ୍ରାନ୍ତି ଅପନୋଦନ କରି ପୁନଃ ନୂତନ ଲୀଳାର ଆୟୋଜନ କରିବେ । ସେହି ଶେଷ ଦିନ ସମସ୍ତଙ୍କର ସାକ୍ଷାତ ହେବ—ଏହା ପୂର୍ବରୁ ହେବା ସମ୍ଭବପର ବୋଲି କିଏ କହି ପାରିବ ?

## ମହାପୁରୁଷ ଗୋଖଲେଙ୍କ ସମ୍ବନ୍ଧେ ମତ

### ୧ । ସମ୍ରାଟ ପଞ୍ଚମ ଜର୍ଜ୍

ନିମ୍ନୋକ୍ତ ଟେଲିଗ୍ରାମଟି ଗୋଖଲେଙ୍କର ପରିବାରଙ୍କ ନିକଟକୁ ପଠାଯାଇଥିଲା ।

ଭାରତ ସମ୍ରାଟ ପଞ୍ଚମଜର୍ଜ୍ଜ ମହାମାନ୍ୟ ଗୋଖଲେଙ୍କ ମୃତ୍ୟୁରେ ତାଙ୍କର ଶୋକ-ସନ୍ତପ୍ତ ପରିବାରଙ୍କୁ ତାଙ୍କର ଗଭୀର ସମବେଦନା ଦେଖାଉଛନ୍ତି ।

### ୨ । ଲର୍ଡ୍ ସଭାରେ ମହାମାନ୍ୟ ମାରକ୍ୱିସ୍ ଅଫ୍ କ୍ରିଉ

କହନ୍ତି ଯେ ଭାରତର ବର୍ତ୍ତମାନ ଯୁଗର ସଂସ୍କାରକ ପ୍ରସିଦ୍ଧକର୍ମୀ ଗୋଖଲେଙ୍କୁ ଜନସାଧାରଣରେ ମୁଁ ମୋର ସମ୍ମାନ ଦେଖାଉଅଛି । ମହାମତି ଗୋଖଲେ ମତିବାନ୍ ପୁରୁଷ ଥିଲେ ଏବଂ ତାହାଙ୍କର ଚରିତ୍ର ଆଦର୍ଶସ୍ଥାନୀୟ ଥିଲା । ସାଧାରଣ କାର୍ଯ୍ୟରେ ସେ କୌଣସି ଉଚ୍ଚ ଓ ଉଦାର ପ୍ରସ୍ତାବ ଗ୍ରହଣ କରିବାକୁ ତାହାଙ୍କର ସାମର୍ଥ୍ୟ ଥିଲା । ଅବସ୍ଥା ଦେଖି ବ୍ୟବସ୍ଥା କରିବାକୁ ସେ କଦାପି ଭୁଲୁ ନ ଥିଲେ । ଅବଶ୍ୟ ଅନ୍ୟାନ୍ୟ ଅଧିକାଂଶ ଦେଶ-ହିତୈଷୀମାନଙ୍କ ପରି ସୁସ୍ୱପ୍ନ ଦେଖିବାରେ ସେ ଅଭ୍ୟସ୍ତ ଥିଲେ, ତଥାପି ନିଃସନ୍ଦେହ ରୂପେ ବୁଝିଥିଲେ ଯେ, କେବଳ ସୁବିଧାକୁ ପ୍ରଥମେ ହସ୍ତଗତ କରି ସ୍ୱାଧୀନତାର ସୀମା ବଢ଼ାଇବାକୁ ହେବ । ଏହି ଲକ୍ଷ୍ୟର ସହିତ ସେ ରାଜନୀତିକ ଜୀବନ ଗଠନ କରିଥିଲେ ଏବଂ ଭାରତର ଆଲୋକମୟ ଭବିଷ୍ୟତ କଳ୍ପନା କରିଥିଲେ ।

## ୩ । ଦିଲ୍ଲୀର ବ୍ୟବସ୍ଥାପକ ସଭାରେ ଲର୍ଡ଼ ହାର୍ଡିଞ୍ଜ

କହୁଥିଲେ—ସେ ରାଜପରିଷଦରେ ଅସାଧାରଣ ଶକ୍ତି ଓ ବାଗ୍ମିତାସମ୍ପନ୍ନ ବକ୍ତା ଥିଲେ ଏବଂ ତାଙ୍କର ଉତ୍ସାହ ଓ ବିଚାରବତ୍ତା ଗୁଣରେ ସେ ସର୍ବୋପରି ଉଚ୍ଚ ସ୍ଥାନର ଅଧିକାରୀ ଥିଲେ । ସେ ବ୍ରିଟିଶ ଶାସନର ପକ୍ଷପାତୀ ଥିଲେ, ଅଥଚ ଅନେକାନେକ ଦୋଷ ଓ ଭ୍ରମ ଦେଖିଲେ ତାହା ନିର୍ଭୀକ ଭାବରେ ସମାଲୋଚନା କରିବାକୁ ପଶ୍ଚାତ୍ପଦ ହେଉ ନ ଥିଲେ ଏବଂ ଯାହା ଅନ୍ୟାୟ ଓ ଅସଙ୍ଗତ, ଦେଖୁଥିଲେ ତାହା ପ୍ରତି ସେ ସାଧାରଣ ଦୃଷ୍ଟି ଆକର୍ଷଣ କରି ତାହାର ପ୍ରତିକାର ପାଇଁ ଦଣ୍ଡାୟମାନ ହେଉଥିଲେ । ବିଶେଷତଃ ଆୟ ଓ ଶିକ୍ଷା ସମ୍ବନ୍ଧୀୟ ସମସ୍ୟା ନେଇ ତାହାଙ୍କର ଯୁକ୍ତି ସଦା ବଳବତ୍ତର ଥିଲା ଏବଂ ସେ ସମ୍ବନ୍ଧରେ ତାହାଙ୍କର ବିପକ୍ଷଦଳ ତାହାଙ୍କର ଯୁକ୍ତି ଖଣ୍ଡନ କରିବାକୁ ଆଦୌ ସମର୍ଥ ନ ଥିଲେ । ତାହାଙ୍କର ବିପକ୍ଷବାଦୀମାନଙ୍କୁ ସେ ଯଥାର୍ଥ ସମାଲୋଚନା କରୁଥିଲେହେଁ, ବକ୍ତୃତା ବଳରେ ସମ୍ମାନ ଓ ନମ୍ରତା ପ୍ରଦର୍ଶନ କରୁଥିଲେ । ସେ କୃତକାର୍ଯ୍ୟ ନ ହେଲେ ମଧ୍ୟ ତାଙ୍କର ଲକ୍ଷ୍ୟର ଔଚିତ୍ୟ ଦେଖାଇ ଶ୍ରୋତାମାନଙ୍କୁ ଭାବାବିଷ୍ଟ କରି ପାରୁଥିଲେ ଏବଂ ତାଙ୍କ ଲକ୍ଷ୍ୟର ଅନୁଗାମୀ ହେବାକୁ ଉତ୍ତେଜନା ଦେଉଥିଲେ । ସଭାରେ ତାହାଙ୍କ ସମସ୍ତ ସମୟ ମହତ୍ତ୍ୱ କାର୍ଯ୍ୟରେ ବ୍ୟୟିତ ହେଉଥିଲା ଏବଂ ରାଜସ୍ୱ, ଶିକ୍ଷା ଓ ଶାସନ ସମସ୍ୟାରେ ସେ ସର୍ବାଗ୍ରେ ଦଣ୍ଡାୟମାନ ହେଉଥିଲେ । ମୋହର ଶାସନ କାଳରେ ଗୋଖଲେ ନିମ୍ନ ଶିକ୍ଷା ନିମିତ୍ତ ସୁବ୍ୟବସ୍ଥା କରିବା ପାଇଁ ଗୋଟିଏ ଆଇନ ନିର୍ମାଣର ଚେଷ୍ଟା କରୁଥିଲେ । ତାହାଙ୍କର ବିଲ୍ ବା ଆଇନ ଗୃହୀତ ହୋଇ ନ ଥିଲା ସତ୍ୟ, ତଥାପି ସେ ଯେଉଁ ଅସାଧାରଣ ଶକ୍ତି ସହିତ ତାହାଙ୍କର ଯୁକ୍ତି ସ୍ଥାପନ କରିଥିଲେ, ତାହା ଶ୍ରୋତୃ-ବର୍ଗଙ୍କୁ ଚିରକାଳ ଚମତ୍କୃତ କରୁଥିବ । ଏହି ସମୟରେ ସେ ଦକ୍ଷିଣ ଆଫ୍ରିକାରେ ବାସ କରୁଥିବା ଭାରତୀୟମାନଙ୍କ ଦୁର୍ଦ୍ଦଶା ପ୍ରଶ୍ନ ନେଇ ଘୋର ଉଦ୍‌ବିଗ୍ନ ଥିଲେ ଏବଂ ସର୍ବଦା ସେମାନଙ୍କର ସ୍ୱାଚ୍ଛନ୍ଦ୍ୟ ଓ ଉନ୍ନତି ପାଇଁ ବଡ଼ ଚେଷ୍ଟା କରୁଥିଲେ ଏବଂ ମୋର ଯେପରି ମନେହୁଏ, କେବଳ ସେହି ଗୋଖଲେଙ୍କର ଦକ୍ଷିଣ-ଆଫ୍ରିକା ଗମନ ଓ ବିଚକ୍ଷଣ କୌଶଳ ଫଳରେ ସେ ଭୀଷଣ ସମସ୍ୟାର ପରିସମାପ୍ତି ହେଲା ।

ମୋର ବ୍ୟକ୍ତିଗତ ସମ୍ବନ୍ଧ ନେଇ କହିବାକୁ ଗଲେ, ଗୋଖଲେ ସଭାର ପ୍ରଧାନ ସଦସ୍ୟ ଓ ମୋର ବନ୍ଧୁ ସ୍ୱରୂପ ଥିଲେ । ବହୁତ ଥର ସେ ମୋତେ ସୁଚିନ୍ତା-ପ୍ରସୂତ ଆବଶ୍ୟକ ଉପଦେଶ-ମାନ ଦେଇ ବହୁତ ସାହାଯ୍ୟ କରିଅଛନ୍ତି । ଦକ୍ଷିଣ ଆଫ୍ରିକାରେ ଭାରତୀୟ ସମସ୍ୟା ସମ୍ପର୍କରେ ସେ ମୋତେ ଯେଉଁ ସହାୟତା କରିଛନ୍ତି, ତାହାର ଗୁରୁତ୍ୱ ମୁଁ ମନେ କରିଆସୁଛି । ଛ' ମାସ ପୂର୍ବେ ମୁଁ ଗୋଖଲେଙ୍କର ମୂଲ୍ୟବାନ କାର୍ଯ୍ୟସକଳ ଦୃଷ୍ଟିରେ ତାହାଙ୍କର କେ. ସି. ଆଇ. ଇ. ଉପାଧି ନିମିତ୍ତ ସମ୍ରାଟଙ୍କୁ ଜଣାଇଥିଲି; ମାତ୍ର ସରଳ ପ୍ରକୃତ ଗୋଖଲେ କୃତଜ୍ଞତାର ସହ ମୋହର ଅଭିଳାଷ ଖଣ୍ଡନ କରି ଉପାଧିହୀନ ଅବସ୍ଥାରେ

ରହିବାକୁ କହିଥିଲେ । ଆମ୍ଭେମାନେ ଆଜ ତାହାଙ୍କୁ ହରାଇଅଛୁଁ ଏବଂ ତାହାଙ୍କର ସ୍ଥାନ ଯେ ଆଉ ପୂର୍ଣ୍ଣ ହୋଇ ପାରିବ ନାହିଁ, ଏହା ଅନୁଭବ କରିପାରୁଛୁ ।

### ୪ । ଲର୍ଡ଼ ସଭାରେ ଲର୍ଡ଼ କର୍ଜନ

ମୁଁ ମାରକ୍ୱିସ ଅବ କ୍ରିଉଙ୍କ ସହିତ ଭାରତର ମହାମନା ଗୋଖଲେଙ୍କୁ ଆଜ ସମ୍ମାନ ଦେଖାଇ ପାରିଲି । ଏଥିପାଇଁ ନିଜକୁ ଭାଗ୍ୟବାନ୍ ମନେ କରୁଅଛି । ସେ ପାଞ୍ଚ ଛଅ ବର୍ଷ କାଳ ବ୍ୟବସ୍ଥାପକ ସଭାର ସଭ୍ୟପଦ ରୂପେ ଥାଇ ମୋର ଶାସନ ପଦ୍ଧତିରେ ସର୍ବଦା ବାଧା ଦେବାକୁ ପ୍ରସ୍ତୁତ ଥିଲେ । ବସ୍ତୁତଃ ସେ ବିପକ୍ଷ ଦଳର ନେତା ଥାଇ ମୋତେ ବହୁତ ଅସୁବିଧାରେ ପକାଇଥିଲେ । ବିଶେଷତଃ ତାଙ୍କର ଅଖଣ୍ଡନୀୟ ଯୁକ୍ତିତର୍କର ପ୍ରବଳ ଧକ୍କା ମୋତେ ବହୁବାର ବିଚଳିତ କରିଥିଲା । ଶାସନ ପଦ୍ଧତି ସମ୍ବନ୍ଧରେ ତାଙ୍କ ଠାରୁ ଅଧିକତର ବିଜ୍ଞ ବ୍ୟକ୍ତି ମୁଁ ଦେଖିଥିଲି ବୋଲି ମୋର ମନେ ହୁଏ ନାହିଁ । ପୃଥିବୀର ଯେ କୌଣସି ପାର୍ଲିଆମେଣ୍ଟରେ ତାହାଙ୍କର ସ୍ଥାନ ଯେ ଉଚ୍ଚ ହୋଇଥାନ୍ତା, ଏଥିରେ ମୋର ସନ୍ଦେହ ନାହିଁ ।

### ୫ । ଶ୍ରୀ କୃଷ୍ଣ ଗୁପ୍ତ, କେ. ସି. ଆଇ. ଏସ୍.

ଶକ୍ତି, କ୍ଷମତା, ବାଗ୍ମିତା, ସୂକ୍ଷ୍ମଦର୍ଶିତା ଏବଂ ଯୁକ୍ତି-ସମର୍ଥତା ପ୍ରଭୃତି ଗୁଣରେ ଗୋଖଲେ ଅଦ୍ୱିତୀୟ ପୁରୁଷ ଥିଲେ । କିନ୍ତୁ ତାଙ୍କର ନିର୍ମଳ ଆନ୍ତରିକତା, କର୍ମରେ ଐକାନ୍ତିକତା ଏବଂ ତାତ୍ପର୍ଯ୍ୟନିଷ୍ଠ ଚରିତ୍ର ତାଙ୍କର ସର୍ବବିଧ କୃତକାର୍ଯ୍ୟତାର ଭିତ୍ତି ସ୍ୱରୂପ ଥିଲା ।

### ୬ । ମହାମାନ୍ୟ ଇ. ଏସ୍. ମଣ୍ଟାଗୁ

ଆମ୍ଭେମାନେ ଆଧୁନିକ ଭାରତର ସ୍ୱଦେଶଗାମୀ ମହାପୁରୁଷଙ୍କୁ ଏହି ଅସମୟରେ ହରାଇଅଛୁଁ । ସେ ସ୍ୱୀୟ ଶକ୍ତିବଳରେ ସ୍ୱଦେଶରେ ଅବତୀର୍ଣ୍ଣ ହୋଇ ଏବଂ ନିଜର ଦୂରଦର୍ଶିତା ଗୁଣଦ୍ୱାରା ପରିଚାଳିତ ହୋଇ ଆମ୍ଭମାନଙ୍କ ସମ୍ମୁଖରେ ସମସ୍ୟାମାନ ସ୍ଥାପନ କରି ଦେଇ ଯାଇଅଛନ୍ତି । ଆମ୍ଭେମାନେ ସେ ସମସ୍ୟାମାନଙ୍କର ଚୂଡ଼ାନ୍ତ କରି ପାରିନାହୁଁ । ମୋ ବୋଧରେ ସମସ୍ତଙ୍କର ଭାବିବାର ପ୍ରଧାନ ବିଷୟ ଏହି ଯେ, ବିସ୍ତୀର୍ଣ୍ଣ କର୍ମକ୍ଷେତ୍ରରେ ତାଦୃଶ ଅକ୍ଲାନ୍ତ ପରିଶ୍ରମୀ ମହାପୁରୁଷଙ୍କର ଜୀବନର ଗୌରବ ଓ ମୂଲ୍ୟ ଅବଧାରଣ ଶକ୍ତିର ଉପରେ ନିର୍ଭର କରେ ! ସେ ଯେପରି କର୍ମଠତା ଏବଂ ସତ୍ସାହସକୁ ତାଙ୍କ ଜୀବନର ପ୍ରଧାନ ଉପାଦାନ କରି ଥିଲେ, ଏପରି ଅନ୍ୟ କୌଣସିଠାରେ ଦେଖାଯାଏ ନାହିଁ । ସେ ଉପଦେଶ ଗ୍ରହଣ କରିବାକୁ ଯେପରି ପ୍ରସ୍ତୁତ ଥିଲେ, ଉପଦେଶ ଦେବା ପାଇଁ ମଧ୍ୟ ସେପରି ଥିଲେ । ଦେଶହିତୈଷୀ-ସୁଲଭ ସମସ୍ତ ଗୁଣ ତାଙ୍କଠାରେ ବିଦ୍ୟମାନ ଥିଲା । ତାଙ୍କର ତିରୋଭାବରେ ସମସ୍ତ ଜଗତ ମହାକ୍ଷତି ଅନୁଭବ କରିଛି ।

### ୭ । ସର୍ ଫିରୋଜ ସାହ ମେହତା

ଏ ବର୍ଷ ପାଇଁ ସେ କି କି କାର୍ଯ୍ୟ ସ୍ଥିର କରି ରଖିଥିଲେ ଏବଂ ତାଙ୍କର ପରମ ସ୍ନେହାସ୍ପଦ ଜନ୍ମଭୂମି ପାଇଁ କି କାର୍ଯ୍ୟ କରି ନିଜକୁ କୃତାର୍ଥ କରି ପାରିବେ ବୋଲି ସେ କି ଆଶା ପୋଷିଥିଲେ,

ତାହା ସ୍ମରଣ କଲେ ମନରେ ଗଭୀର ଦୁଃଖ ଆସେ ଯେ ତାଙ୍କୁ ଆଜ ଆମ୍ଭେମାନେ ହରାଇଥାଇଁ ଏବଂ ତାଙ୍କର ମୃତ୍ୟୁର ଦିନ ଯେତେ ଯେତେ ପୁରୁଣା ହେବ ଆମ୍ଭ-ମାନଙ୍କର କରୁଣ କ୍ରନ୍ଦନ ସେତେ ଦାରୁଣ ହେବ ।

ଭଦ୍ର ମହାଶୟମାନେ ! ସେ ଚାଲିଯାଇଛନ୍ତି । ଆମ୍ଭମାନଙ୍କ ପରସ୍ପର ଭିତରେ କି ସ୍ନେହ ଓ କି ସମ୍ମାନ ରହିଥିଲା ତାହା ମୁଁ ବର୍ତ୍ତମାନ ଜଣାଇ ପାରୁନାହିଁ । ତାଙ୍କ ସମ୍ବନ୍ଧେ କହିବା କହିବାକୁ ଗଲା-ବେଳକୁ ଅନ୍ତର କାନ୍ଦଉଠୁଛି "ଗୋଖଲେ ଚାଲି ଯାଇଛନ୍ତି" ତାଙ୍କର ସଙ୍ଗ ବ୍ୟତିରେକେ, ସହାୟତା ଭିନ୍ନ ଏବଂ ତାଙ୍କର ନେତୃତ୍ୱ ଛଡା ଯେ ସ୍ଥିରୀକୃତ କାର୍ଯ୍ୟଗୁଡ଼ିକ କିପରି ନିର୍ବାହିତ ହୋଇ ପାରିବ ମୁଁ ଜାଣି ପାରୁନାହିଁ !

## ୮ । ଏଇଚ୍. ଏସ୍. ଏଲ୍. ପୋଲକ

ଏହି ସୁଦୂର ଦକ୍ଷିଣଆଫ୍ରିକାରେ ଆମ୍ଭେମାନେ ଗୋଖଲେଙ୍କର ପବିତ୍ର ସ୍ମୃତିକୁ ସମ୍ମାନ ଦେଖାଉଅଛୁ । ସେ ଯେଉଁ ଅପରିମେୟ ସହାୟତା କରି ଜାଗରଣର ପୃଷ୍ଠପୋଷକ ରୂପେ ଥାଇଁ ବିପଦରୁ ଉଦ୍ଧାର କରିବା ବିଷୟରେ ଗଭୀର କାର୍ଯ୍ୟ କରିଅଛନ୍ତି, ସେଥିପାଇଁ ଆମ୍ଭେମାନେ ତାଙ୍କୁ ଭକ୍ତି କରୁଅଛୁ ।

## ୯ । ଲୋକମାନ୍ୟ ତିଳକ

ଆଜ ଆମ୍ଭମାନଙ୍କର ଆନନ୍ଦ ଦିବସ ନୁହେଁ, ଆଜ ଲୋକକବର୍ଷରେ ଦିନ । ମହାତ୍ମା ଗୋଖଲେଙ୍କର ମୃତ୍ୟୁରେ ଯେ ମହାକ୍ଷତି ସଂଘଟିତ ହେଲା, ସେଥିପାଇଁ ଏହା ଦୁଃଖପ୍ରକାଶ କରିବାର ସମୟ । ଏହି ଭାରତ-ହୀରକ, ଏହି ମହାରାଷ୍ଟ୍ରମଣି, ଏହି ଧୁରୀଣ କର୍ମୀ ଆଜ ଶ୍ମଶାନଭୂମିରେ ଚିରଶାନ୍ତିର ଆଶ୍ରୟ ନେଲେ । ତାଙ୍କୁ ଦେଖି ତାଙ୍କ ସଙ୍ଗେ ସମାନ ହେବାକୁ ଚେଷ୍ଟା କର । ସେ ଜମିଦାର ଜାଗିରଦାର କିମ୍ବା ରାଜା ନ ଥିଲେ । ଆମ୍ଭମାନଙ୍କ ପରି ସେ ଜଣେ ସାମାନ୍ୟ ବ୍ୟକ୍ତି ଥିଲେ । ସେ ପ୍ରତିଭା, ଶକ୍ତି ଏବଂ କର୍ମବଳରେ ଏତେ ଉଚ୍ଚକୁ ଆଜ ଉଠିଅଛନ୍ତି । ଗୋଖଲେ ଆମ ଆଗରୁ ଚାଲିଗଲେ, ମାତ୍ର ପରେ ଆମ୍ଭ-ମାନଙ୍କୁ ଉଚ୍ଚ କରିବା ଭଳି ଉପାଦାନ ଯଥେଷ୍ଟ ଛାଡ଼ି ଯାଇଛନ୍ତି । ତୁମେ ପ୍ରତ୍ୟେକ ତାଙ୍କର ଆଦର୍ଶ ଆଖି ଆଗରେ ରଖି ତାଙ୍କ ତ୍ୟକ୍ତ ସ୍ଥାନରେ ଦଣ୍ଡାୟମାନ ହେବାକୁ ଚେଷ୍ଟା କର । ଏପରି ଯଦି ତୁମ୍ଭେ କର, ସେ ପରଲୋକରେ ଥାଇଁ ସୁଦ୍ଧା ଅଶେଷ ଆନନ୍ଦ ଅନୁଭବ କରିବେ ।

## ୧୦ । ପଣ୍ଡିତ ମୋତିଲାଲ ନେହରୁ

ସେ ତାଙ୍କ ଜୀବନ ସମ୍ମୁଖରେ ଏବଂ ଦେଶବାସୀଙ୍କ ସମ୍ମୁଖରେ ଅତି ଉଚ୍ଚ ଆଦର୍ଶ ଘେନି କାର୍ଯ୍ୟ କରୁଥିଲେ ଏବଂ ସେହି ଆଦର୍ଶ ରଖିଦେଇ ଚାଲିଗଲେ ।

* * *

## ପ୍ରଥମ ଅଧ୍ୟାୟ

# ଉତ୍କଳରେ ଶିଖଧର୍ମର ବୀଜବପନ

### କାଳିଆବୁଦା

କଟକ ଷ୍ଟେସନର ଉତ୍ତରକୁ ରେଳ ଲାଇନର ଟିକିଏ ପୂର୍ବରେ କାଳିଆବୁଦା ଅବସ୍ଥିତ । ଏହାକୁ ଲୋକମୁଖରେ କାଳିଆବୋଦା କୁହାଯାଏ । କିନ୍ତୁ ପ୍ରକୃତରେ ଏହା କାଳିଆବୁଦା । ଏହି କାଳିଆବୁଦା ମହାନଦୀ କୂଳୋପରି ଅବସ୍ଥିତ । ପ୍ରାୟ ତିରିଶ ଏକର ଭୂମି ଉପରେ ଏହା ପ୍ରତିଷ୍ଠିତ । ଏହାର ଜମିଦାର ଶ୍ରୀ ଗଣେଶ ଚନ୍ଦ୍ର ଚନ୍ଦ୍ । ବର୍ତ୍ତମାନ ସେଠାରେ ଏକ ମହନ୍ତ ଅଛନ୍ତି । ତାଙ୍କ ନାମ ମହନ୍ତ ଶ୍ରୀ ମେଘାନନ୍ଦ ଦେଓ । ସେ ଉଦାସୀ, ବ୍ରହ୍ମଚାରୀ । ତାଙ୍କୁ ବର୍ତ୍ତମାନ ବୟସ ସତୁରି ହେବ । ଏହି ତିରିଶ ଏକର ଜମିରୁ ପ୍ରାୟ ପନ୍ଦର ଏକର ମହାନଦୀଗର୍ଭ ଭିତରକୁ ଚାଲିଗଲାଣି । ବର୍ତ୍ତମାନ ସେଠାରୁ କେହି ବାଲି ନେଲେ ଶଗଡ଼ ପିଛା ଦୁଇ ପଇସା ବା ଏକ ଅଣା ଆଦାୟ କରାଯାଏ ।

ବାଓ୍ୱା କର୍ତ୍ତାର ସିଂହ କଟକ ରେଭେନ୍ସା କଲେଜର ରସାୟନ ଅଧ୍ୟାପକ ଥିଲାବେଳେ ଏହି ସ୍ଥାନକୁ ଟିକିଏ ଉନ୍ନତ କରାଇଥିଲେ । ତାଙ୍କର ଯତ୍ନରେ ସେଠାରେ ଗୋଟିଏ ସୁନ୍ଦର କୋଠାଘର ତିଆରି ହୋଇଛି । ସେଠାରେ ଗ୍ରନ୍ଥ ସାହେବଙ୍କର ପୂଜା ହୁଏ । ପ୍ରତି ରବିବାର ଶିଖମାନେ ସେଠାରେ ଏକାଠି ହୁଅନ୍ତି । ସକାଳ ୭ଟାରୁ ୧୧ଟା ପର୍ଯ୍ୟନ୍ତ ସେଠାରେ ରହନ୍ତି । ସେମାନଙ୍କର କଡ଼ା ପ୍ରସାଦ ହୁଏ ।

ଏହି କୋଠାଘର ତିଆରି କରିବାରେ ଏକଶହ ଟଙ୍କା ବା ତଦୂର୍ଦ୍ଧ୍ୱ ଯେଉଁମାନେ ଦେଇଛନ୍ତି ସେମାନଙ୍କର ନାମ ଗୋଟିଏ ଫଳକରେ ଲିଖିତ ଅଛି ।

ଗୁରୁନାନକ ସାହେବ ଗୁରୁଦ୍ୱାର
୧୯୩୫, କାଳିଆବୁଦା,
ଦାତାମାନଙ୍କର ନାମ

୧-ମହାରାଜା ଶ୍ରୀ ରାମଚନ୍ଦ୍ରଦେବ ବର୍ମା
(ଜୟପୁର) ଓଡ଼ିଶା ଟ ୧୦୦୦୲
୨-ବାଓ୍ୱା କର୍ତ୍ତାର ସିଂହ,
ଆଇ. ଇ. ଏସ୍. ଟ ୧୦୦୦୲
୩-ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର
ଗଜପତି (ପାରଳାଖେମୁଣ୍ଡି) ଟ୧୦୦୦୲
୪-ଖାଲସା କଲେଜ, ଅମୃତ-
ସରର ଶିକ୍ଷକମାନେ ଟ ୨୨୫୲
୫-କାପ୍ତାନ ଜଗନ୍ନାଥ,
ପାତିଆଲାର ଶିକ୍ଷାମନ୍ତ୍ରୀ ଏବଂ
ଡକ୍ଟର ଓ୍ୱାଧାଓ୍ୱା ସିଂହ,
ପାତିଆଲାର ରାଜସ୍ୱ ବିଭାଗର
ବଡ଼ ଅଫିସର ଟ୨୦୭୲

୭-ସର୍ଦ୍ଦାର ସେବାରାମ ସିଂହ,
ଲାହୋର ଟ ୨୦୦୧
୭-ସର୍ଦ୍ଦାର ପ୍ରଭୁ ସିଂହ,
ଆଇ. ଇ. ଏସ୍., ଲାହୋର ଟ ୨୦୦୧
୮-ସର୍ ସି. ଭି. ରମଣ, କେ. ଟି.
ଏଫ୍.ଆର୍. ଏସ୍.ଏନ୍.ଏଲ୍. ଟ ୨୦୦୧
୯-ମିଷ୍ଟର ରଘୁ କର୍ଣ୍ଣ, କଟକ ଟ ୧୦୦୧
୧୦-ଡକ୍ଟର ଏସ. ଏସ.
ଭଟନଗର, ଲାହୋର ଟ ୧୦୦୧

ସଂକ୍ରାନ୍ତି ଓ ପୂର୍ଣ୍ଣିମା ଦିନ ସକାଳେ ଭଣ୍ଡା ପ୍ରସାଦ ହୁଏ । ଏବେ ନିତ୍ତ ବେଳା ଭଲ ଚଳୁଚି । କଟକରେ ଶିଖସଂଖ୍ୟା ବର୍ତ୍ତମାନ ପାକିସ୍ତାନ ପରେ ବେଶୀ ହୋଇଯାଇଛି । ଓଡ଼ିଶା ସରକାରଙ୍କ ଅଧୀନରେ ସେମାନେ ସରକାରୀ ଚାକିରୀ କରୁଛନ୍ତି ।

## କାଳିଆବୁଦାର ଇତିହାସ

ସେତେବେଳେ ମରହଟ୍ଟା ରାଜ । ଚୁଡ଼ଙ୍ଗଆଗଡ଼ ଅଞ୍ଚଳରେ ମରହଟ୍ଟା ଅନେକ ରହିଥିଲେ । ବାରବାଟୀ କିଲ୍ଲା'ରେ ମରହଟ୍ଟା ରାଜା ଆସି ବସିଥିଲେ । ସେହି ସମୟରେ ଗୁରୁ ଚୈତନ୍ୟ ଭାରତୀ କଟକ ଆସିଥିଲେ । ସେ ବଡ଼ ଭୈରବ ସାଧନା କରୁଥିଲେ । ସେ ରାଜାଙ୍କର ଗୁରୁ ଥିଲେ ।

ଗୁରୁ ନାନକ ସେହି ସମୟରେ ଓଡ଼ିଶାକୁ ଆସିଥିଲେ । ଭବିଷ୍ୟତ ପୁରାଣର ଆଦ୍ୟ ଶ୍ଳୋକରେ ଏହିପରି ବର୍ଣ୍ଣିତ ଅଛି ଯେ ପଶ୍ଚିମ ଭାରତରୁ ଜଣେ ସାଧୁ ଲୋକ ଓଡ଼ିଶାକୁ ଆସିବେ ଓ ତାଙ୍କର ନୂତନ ଧର୍ମ ପ୍ରଚାର କରିବେ । ଗୁରୁ ନାନକ ମଙ୍ଗଳାଘାଟକୂଳରେ କାଳିଆବୁଦାରେ ଆସି ପହଞ୍ଚିଲେ । ତାଙ୍କ ସଙ୍ଗରେ ତାଙ୍କର ପୁତ୍ର ଶ୍ରୀ ଚନ୍ଦ୍ର ମଧ୍ୟ ଥିଲେ ଏବଂ ପ୍ରସିଦ୍ଧ ଗାୟକ ମର୍ଦ୍ଦାନା ରାଇବାଲା ଏବଂ ଆଉ କେତେଜଣ ଥିଲେ । ଗୁରୁ ନାନକଙ୍କର ଆଗମନ ବାଣୀ ଶୁଣି ସେ ସମୟର ମରହଟ୍ଟା ରାଜା ତାଙ୍କ ସଙ୍ଗରେ ଦେଖା କରିବାକୁ ଗଲେ । ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ସେ ଗୁରୁ ନାନକଙ୍କ ପାଖରେ ରହିଗଲେ । ଏଥିରେ ତାଙ୍କର ଗୁରୁ ଶ୍ରୀଚୈତନ୍ୟ ଭାରତୀ ଅତ୍ୟନ୍ତ କ୍ରୁଦ୍ଧ ହେଲେ । ତନ୍ତ୍ରବଳରେ ତାଙ୍କୁ ଜାଳି ଦେବାପାଇଁ ଭୈରବୀଙ୍କ ଆରାଧନା କଲେ । ଭୈରବୀ ଚୈତନ୍ୟ ଭାରତୀଙ୍କୁ ଦେଖାଦେଇ କହିଲେ ଯେ ଆଜି ଯାହା ବର ମାଗିବ ମାଗ, କିନ୍ତୁ ଗୁରୁ ନାନକଙ୍କୁ ଜାଳି ଦେଇ ପାରିବ ନାହିଁ । ସେ ମୋର ସାଙ୍ଗ । ଏଥିରେ ଚୈତନ୍ୟ ଭାରତୀ ଝଡ଼ ତୋଫାନ ବଜ୍ର ବିଦ୍ୟୁତ୍ ସୃଷ୍ଟି କଲେ । କିନ୍ତୁ ପରିଶେଷରେ ଚୈତନ୍ୟ ଭାରତୀ ଅନ୍ତର୍ହିତ ହୋଇଗଲେ । ଗୁରୁ ନାନକ ରହିଗଲେ । ତା'ପରେ ଗୁରୁ ନାନକ ଏହିଠାରେ ତାଙ୍କର ପୁତ୍ର ଶ୍ରୀ ଚନ୍ଦ୍ରଙ୍କୁ ଦୀକ୍ଷା ଦେଲେ । ଯେଉଁ ଯନ୍ତ୍ରରେ ସେ ଦୀକ୍ଷା ଦେଇଥିଲେ ସେ ପ୍ରସ୍ତର ଯନ୍ତ୍ର ଅଦ୍ୟାପି କାଳିଆବୁଦା ଠାରେ ସୁରକ୍ଷିତ ହୋଇ ରହିଛି । ଚୈତନ୍ୟଭାରତୀ ଯେତେବେଳେ ଅନ୍ତର୍ହିତ ହେଲେ ସେତେବେଳେ ଗୋଟିଏ କାଠ ପଡ଼ିରହିଥିଲା । ଲୋକେ ପଚାରିବାରୁ ନାନକ କହିଲେ, ସେ ଆମପାଇଁ ଦାନ୍ତକାଠି ରଖିଦେଇ ଯାଇଛି । ତାକୁ ପୋତିଦିଅ । ସେଥିରୁ ଗୋଟିଏ ସାହାଡ଼ା ଗଛ ବଢ଼ିଲା । ସେ ସାହାଡ଼ା ଗଛ ପ୍ରାୟ ୫୦୦ ବର୍ଷ ପର୍ଯ୍ୟନ୍ତ ବଞ୍ଚିଥିଲା । ଗଛ

କେତେବର୍ଷ ହେଲା ଝଡ଼ ତୋଫାନରେ ତା' ଭାଙ୍ଗିଗଲା । ତାର କାଠ ରେଭେନସା କଲେଜର ଶଙ୍ଖଶାଳାରେ ବର୍ତ୍ତମାନ ରକ୍ଷିତ ହୋଇଅଛି । ଏହି କାଳିଆବୁଦାର ନାମ ହେଲା ଗୁରୁ-ନାନକ-ଦାନ୍ତନ୍-ସାହେବ୍ ଗୁରୁଦ୍ୱାର । ଗୁରୁ ନାନକ ତାଙ୍କ ପୁତ୍ର ଶ୍ରୀ ଚନ୍ଦ୍ରଙ୍କୁ ଅବଧୂତ ମାର୍ଗରେ ଦୀକ୍ଷିତ କରିଥିଲେ । ଗୁରୁ ନାନକ ଏହି କାଳିଆ-ବୁଦାରେ କେତେଦିନ ରହିଗଲେ । ସ୍ଥାନଟି ସେତେବେଳେ ବଡ଼ ନିର୍ଜନ ଥିଲା । ଚୈତନ୍ୟଭାରତୀ ଯଷ୍ଟିଉପରେ ଆରାଧନା କରୁଥିଲେ । ସେହି ଯଷ୍ଟିଖଣ୍ଡ ପୋତି ହେବାରୁ ସାହାଡ଼ା ଗଛର ଉତ୍ପତ୍ତି ହୋଇଥିଲା ।

ସେହି ସମୟରେ ଆଉ ଜଣେ ବଡ଼ ତାନ୍ତ୍ରିକ ମଧ୍ୟ ଓଡ଼ିଶାରେ ଥିଲେ । ତାଙ୍କର ନାମ କାଳିଆ ନାଥ ପଣ୍ଡିତ । ସେ ନାନକଙ୍କୁ ଭିକ୍ଷା କଲେ ମୋତେ ଶ୍ରୀ ବିଦ୍ୟା ଉପାସନା ଦାନ କରଯାଉ । ଗୁରୁ ଶ୍ରୀ ଚନ୍ଦ୍ର ତାଙ୍କୁ ଉପଦେଶ ଦେଲେ ଏବଂ ପୂର୍ବୋକ୍ତ ଯନ୍ତ୍ର ଉଦ୍ଧାର କଲେ । କଟକରୁ ନାନକ ପୁରୀ ଯାତ୍ରା କଲେ । ପୁରୀର ଇତିହାସ ଅନ୍ୟତ୍ର ଦିଆଯାଇଛି । କାଳିଆ ନାଥ ପଣ୍ଡିତ ତାନ୍ତ୍ରିକଙ୍କ ନାମ ଅନୁସାରେ ବର୍ତ୍ତମାନ ସ୍ଥାନର ନାମ କାଳିଆବୁଦା ହୋଇଅଛି । କାଳିଆ ନାଥ ପଣ୍ଡିତ ମହା-ଗସ୍ତୀୟ ଥିଲେ । ଏହିଠାରେ ମହନ୍ତ ବିଦ୍ୟାନନ୍ଦ ଦେବ ବାହାଗୁରୁ ମଧ୍ୟ ଥିଲେ । ତାଙ୍କର ସମାଧି ବର୍ତ୍ତମାନ ସୁଦ୍ଧା ସେଠାରେ ଅଛି । ସେ ସିଦ୍ଧ ପୁରୁଷ ପଞ୍ଜାବୀ ଲୋକ ଥିଲେ । ୧୯୦୭ ମସିହାରେ ତାଙ୍କର ଦେହାନ୍ତ ହୋଇଅଛି ।

## ଦ୍ୱିତୀୟ ଅଧ୍ୟାୟ

ସାଇମନ୍ କମିସନ୍ କହୁଛନ୍ତି, "ଶିଖଧର୍ମ ଶାନ୍ତିପୂର୍ଣ୍ଣ ଭାବରେ ଚାଲିଥିଲା । କିନ୍ତୁ ମୁସଲମାନଙ୍କ ରାଜନୈତିକ ଅତ୍ୟାଚାର ଏବଂ ହିନ୍ଦୁଙ୍କ ସାମାଜିକ ଅତ୍ୟାଚାର ସେମାନଙ୍କୁ ଏକ ଦୃଢ଼ ସାମରିକ ଶକ୍ତିରେ ପରିଣତ କଲା । ଶିଖଜାତି ନିଜ ଧର୍ମରେ ଅନେକ ସ୍କୁଲ ଏବଂ କଲେଜ କରିଛନ୍ତି । ସେମାନେ ଅନେକ ଗୁରୁଦ୍ୱାର ସ୍ଥାପନ କରିଛନ୍ତି ଏବଂ ସେ ସବୁ ରକ୍ଷଣା-ବେକ୍ଷଣ ସେମାନେ ହିଁ କରନ୍ତି ।

### ଗୁରୁ ଗୋବିନ୍ଦ ସିଂହ

ଡିସେମ୍ବର ମାସ ୨୭ ତାରିଖ ଗୁରୁ ଗୋବିନ୍ଦ ସିଂହଙ୍କର ଜନ୍ମବାର୍ଷିକୀ । ଗୁରୁ ଗୋବିନ୍ଦ ସିଂହଙ୍କର ପିତା ଗୁରୁ ତେଗ୍-ବାହାଦୁର । ଯେତେବେଳେ ଗୁରୁ ତେଗ୍ବାହାଦୁର ଆସାମ ଆଡ଼କୁ ଗମନ କରୁଥିଲେ, ସେତେବେଳେ ବିହାରର ପାଟନାଠାରେ ସେ ତାଙ୍କର ପରିବାରକୁ ଛାଡ଼ିଦେଇ ଗଲେ । ସେହିଠାରେ ଗୁରୁ ଗୋବିନ୍ଦ ସିଂହଙ୍କର ଜନ୍ମ । ଏହି ଖବର ତେଗ୍ବାହାଦୁରଙ୍କୁ ଆସାମର କାମରୂପ-ଠାରେ ଜଣାଇ ଦିଆଗଲା । କାମରୂପ ଓ ପାଟନା ଉଭୟସ୍ଥ ବହୁ ଆନନ୍ଦ ଉତ୍ସବ ହେଲା । ତେଗ୍ବାହାଦୁରଙ୍କ ଶିଷ୍ୟମାନେ ଭାରତର ଚାରିଆଡ଼ୁ ପାଟନାକୁ ତୀର୍ଥଯାତ୍ରା କଲେ । ଏହି ତୀର୍ଥଯାତ୍ରୀମାନଙ୍କ ମଧ୍ୟରୁ ଜଣେ ଧାର୍ମିକ ଓ ଅତି ନାମଜାଦା ମୁସଲମାନ ଫକୀର ମଧ୍ୟ ଥିଲେ । ତାଙ୍କର ନାମ ସୟଦ୍ ପୀର ଭିଖନ୍ ସା । ସେ ଏହି ଏକ ଦିନର ଶିଶୁକୁ ଦେଖି ଘୋଷଣା

କଲେ ଯେ ଏ ଜଣେ ସ୍ୱର୍ଗୀୟ ପୁରୁଷ । ଗୁରୁ ଗୋବିନ୍ଦ ସିଂହ ପାଟନାରେ ପାଞ୍ଚ ବର୍ଷ ବୟସ ହେବା ପର୍ଯ୍ୟନ୍ତ ଥିଲେ । ତାପରେ ତାଙ୍କୁ ଆନନ୍ଦପୁର ନିଆଗଲା । ତାଙ୍କର ପିତା ତେଗ୍‌ବାହାଦୁର ଏହି ଆନନ୍ଦପୁର ନଗରୀ ହିମାଳୟର ପାଦଦେଶରେ ବସାଇଥିଲେ । ଗୁରୁ ଗୋବିନ୍ଦଙ୍କର ଯେତେବେଳେ ସାତବର୍ଷ ବୟସ ହେଲା, ସେତେବେଳେ ତାଙ୍କୁ ସଂସ୍କୃତ, ହିନ୍ଦୀ ଓ ପର୍‌ସିୟାନ ଶିକ୍ଷା ଦିଆଗଲା । ସାହେବ ଚନ୍ଦଗ୍ରନ୍ଥି ନାମକ ଶିକ୍ଷକ ତାଙ୍କୁ ସଂସ୍କୃତ ଓ ହିନ୍ଦୀ ଶିକ୍ଷାଦେଲେ ଏବଂ କ୍ୱାଜିପୀର ମହମ୍ମଦ ତାଙ୍କୁ ପରସିୟାନ୍ ଶିକ୍ଷା ଦେଲେ । ଗୁରୁ ଗୋବିନ୍ଦଙ୍କ ସଙ୍ଗରେ ଯେଉଁମାନେ ପାଠ ପଢ଼ୁଥିଲେ ସେମାନଙ୍କ ମଧ୍ୟରୁ ନନ୍ଦିଆ ଯେ ପରେ ଭାଇ ମଣିସିଂହ ନାମ ଧାରଣ କଲେ, ଅମୃତସର ମନ୍ଦିରର ପ୍ରଥମ ପୁରୋହିତ ହୋଇଥିଲେ ଏବଂ ଗୁରୁ ଗୋବିନ୍ଦ ସିଂହଙ୍କର କଥାମାନ ଗ୍ରନ୍ଥରେ ଲେଖି ପକାଇଥିଲେ । ଗୋବିନ୍ଦ ସିଂହ ଅତି ଶୀଘ୍ର ପାଠରେ ଉନ୍ନତି କଲେ । ସେ ସଂସ୍କୃତ ଓ ପରସିୟାନ୍‌ରେ ଅଗାଧ ଜ୍ଞାନ ଅର୍ଜନ କଲେ ଏବଂ ସମ୍ପ୍ରଦାୟ ଗ୍ରନ୍ଥ ମୁଖସ୍ଥ କରିପକାଇଥିଲେ । ତାଙ୍କର ସମଗ୍ର ଜୀବନରେ ସେ ଜ୍ଞାନପିପାସୁ ଥିଲେ । ସେ ନିଜେ ଯେତେବେଳେ ଗୁରୁପଦବୀରେ ଆସୀନ ହେଲେ, ସେତେବେଳେ ସେ ୫୨ଟି ପଣ୍ଡିତ ତାଙ୍କର କାର୍ଯ୍ୟରେ ନିଯୁକ୍ତ କରିଥିଲେ । ସେମାନେ ସଂସ୍କୃତରୁ ପଞ୍ଜାବୀ ଭାଷାରେ ଅନେକ ସାହିତ୍ୟ ଅନୁବାଦ କରିଥିଲେ । ଗୋବିନ୍ଦ ସିଂହ ନିଜେ କବିତା ଲେଖିଥିଲେ ଓ ତାଙ୍କର କବିତାର ସ୍ୱର ଅତି ଉଚ୍ଚ ଭାବପୂର୍ଣ୍ଣ ଓ ବୀରତ୍ୱବ୍ୟଞ୍ଜକ ଥିଲା । ଖୁବ୍ କମ୍ ଭାଷାରେ ଏପରି ଉତ୍ସାହ ଓ ତେଜସ୍ୱିତା ଦେଖାଯାଏ । "ବିଚିତ୍ର ନାଟକ" ତାଙ୍କର ଆତ୍ମଜୀବନୀ । ଏହା ଛଡ଼ା ସେ 'ଅକାଳ ଉସ୍ତାଦ', 'ଜପ ସାହେବ' ଏବଂ 'ଚଣ୍ଡୀ ଦ ଓ୍ୱାର' ରଚନା କରିଥିଲେ ।

ଗୁରୁ ତେଗ୍‌ବାହାଦୁରଙ୍କୁ ଖ୍ରୀ ୧୬୭୫ ରେ ଦିଲ୍ଲୀଠାରେ ସହୀଦ୍ କରାଗଲା । ଆଉରଙ୍ଗଜେବଙ୍କ ପ୍ରରୋଚନାରେ ତେଗ୍‌ବାହାଦୁରଙ୍କୁ ଗିରଫ କରି ହଣା ହେଲା ଏବଂ ଦିଲ୍ଲୀର ସହର ଦରଜାଠାରେ ତାଙ୍କର ଶିର ଖଣ୍ଡକୁ ଟାଙ୍ଗି ଦିଆଗଲା । ପିତାଙ୍କର ମୃତ୍ୟୁ ପରେ ଗୁରୁ ଗୋବିନ୍ଦ ସିଂହ ଶିଖ୍ ଜାତିର ୧୦ମ ଗୁରୁ ରୂପରେ ଅବତୀର୍ଣ୍ଣ ହେଲେ । ସେ ତାଙ୍କର ପ୍ରାର୍ଥନା ଅର୍ଚ୍ଚନା ଏବଂ ସକାଳ ସନ୍ଧ୍ୟା ସଭା କରି ଶିଖ୍ ଧର୍ମର ବିଶେଷତ୍ୱ ଓ ମହତ୍ତ୍ୱ ସମସ୍ତଙ୍କୁ ବୁଝାଇବାକୁ ଲାଗିଲେ । ସେ ନିଜେ ଅସ୍ତ୍ରଶସ୍ତ୍ର ପ୍ରୟୋଗ କରିବା ପାଇଁ ଶିକ୍ଷା କଲେ ଏବଂ ମୃଗୟା ପାଇଁ ଅରଣ୍ୟକୁ ଗଲେ । ବହୁ ଦୂର ଦୂର ସ୍ଥାନରୁ ତାଙ୍କୁ ଭକ୍ତି ପ୍ରଦର୍ଶନ କରିବା ପାଇଁ ଏବଂ ଶ୍ରଦ୍ଧା ଦେଖାଇବା ପାଇଁ ଲୋକେ ଅସ୍ତ୍ରଶସ୍ତ୍ର ଏବଂ ଭେଟିମାନ ଘେନି ତାଙ୍କ ପାଖକୁ ଆସିଲେ ।

ଆନନ୍ଦପୁର ଶିଖ୍ ଧର୍ମର ପ୍ରଧାନ କେନ୍ଦ୍ର ହେବାକୁ ଲାଗିଲା । ଏହାର ଚାରି-ଆଡ଼େ ହିନ୍ଦୁ ରାଜପୁତମାନଙ୍କର ଛୋଟ ଛୋଟ ରାଜ୍ୟ ଥିଲା । ସେମାନେ ଏହି ନୂତନ ଧର୍ମକୁ ଗ୍ରହଣ କରିବାକୁ ଅସ୍ୱୀକୃତ ଥିଲେ । ବିଶେଷତଃ ବ୍ରାହ୍ମଣ୍ୟ ଧର୍ମର ଚାରି ଜାତିକୁ ଏକାଠି ମିଶାଇ ଦେଇ ଏକ

ସଙ୍ଗରେ ଭୋଜନ କରିବାର ଯେଉଁ ନୂତନ ଲଙ୍ଗର ପ୍ରଥା ଆରମ୍ଭ କରାଗଲା ତାହା ସେମାନେ ପସନ୍ଦ କରିପାରିଲେ ନ । କାରଣ ତାହା ଭାରତୀୟ ସାମାଜିକ ସଂସ୍କୃତିର ଭ୍ରାତୃବାଦ ସ୍ୱରୂପ ଥିଲା । ଆହୁରି ମଧ୍ୟ ଗୁରୁଙ୍କର ରାଜଦରବାରର ଐଶ୍ୱର୍ଯ୍ୟ ଏହି ରାଜାମାନଙ୍କର ପ୍ରାଣରେ ଈର୍ଷା ଜନ୍ମାଇବାକୁ ଲାଗିଲା । ଗୁରୁ ଗୋବିନ୍ଦ ସିଂହ ଏହି ନୂତନ ଶିଖ୍ ଜାତିକୁ ଖାଲସାରେ ପରିଣତ କଲେ ଅର୍ଥାତ୍ ଶୁଦ୍ଧ ଏକ ପରମାତ୍ମା ଛଡ଼ା ଆଉ କାହାକୁ ସେମାନେ ବିଶ୍ୱାସ କରିବେ ନ । ଖ୍ରୀ. ୧୬୯୯ ର ବୈଶାଖ ମାସ, ଭୁହାକୁ ଭୁହା ଶିଖ୍ମାନେ ନାନାଆଡ଼ୁ ଆସି ଆନନ୍ଦପୁରରେ ଏକତ୍ର ହେଲେ । ସେଦିନ ଗୁରୁ ଗୋବିନ୍ଦ ସିଂହ ପ୍ରତିଦିନ ଯେପରି ଉଠନ୍ତି ସେହିପରି ଅତି ପ୍ରତ୍ୟୁଷରୁ ଉଠି ଭଗବତ୍ ଧ୍ୟାନରେ ନିମଗ୍ନ ହେଲେ । ତା'ପରେ ସେ ଗୁରୁର ପୋଷାକ ପିନ୍ଧି ଏବଂ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ସମଗ୍ର ମଣ୍ଡଳୀ ସମ୍ମୁଖରେ ଉପସ୍ଥିତ ହେଲେ ଏବଂ ହଠାତ୍ ତରବାରି ଉନ୍ମୋଚନ କରି ଶିଖମାନଙ୍କୁ କହିଲେ, ଆଜି ମୁଁ ଗୋଟାଏ ମୁଣ୍ଡ ଚାହେଁ, ଯଦି କେହି ସତ୍ ଶୁଦ୍ଧ ଶିଖ୍ ଥାଏ ତାହାହେଲେ ସେ ଆଗେଇ ଆସୁ, ମୋର ତରବାରି ତାର ମୁଣ୍ଡ ଚାହେଁ । ଏହି କଥାରେ ଶ୍ରୋତୃବର୍ଗ ଏକାବେଳକେ ଥକା ହୋଇଗଲେ । ସେମାନେ ବୁଝି-ପାରିଲେନି ଗୁରୁ ଗୋବିନ୍ଦ କଣ ଚାହାଁନ୍ତି । ସୁତରାଂ ସେମାନେ ସ୍ଥିର ଏବଂ ଅବାକ୍ ନୀରବରେ ରହିଁ ରହିଲେ, ଗୁରୁ ଗୋବିନ୍ଦ ଆଉ କଣ କହୁଛନ୍ତି ଶୁଣିବେ ବୋଲି । ସ୍ୱପ୍ନ ବାସ୍ତବତାରେ ପରିଣତ ହେଲା, ଏବଂ ବାସ୍ତବତା ସ୍ୱପ୍ନରେ ପରିଣତ ହେଲା । ତୃତୀୟ ଥର ଗୁରୁ ଗୋବିନ୍ଦ ତାଙ୍କର ଡାକକୁ ଦୋହରାଇଲେ । ଏହି ସମୟରେ ଦୟାରାମ ନାମକ ଲାହୋରର ଜଣେ କ୍ଷତ୍ରୀ ଠିଆହେଲେ ଏବଂ କହିଲେ "ହେ ସତ୍ ପ୍ରଭୁ ! ଆପଣଙ୍କର ସେବାରେ ମୋର ଏହି ମୁଣ୍ଡ ଦାନ କଲି । ଗୁରୁ ଗୋବିନ୍ଦ ତାଙ୍କୁ ନିକଟବର୍ତ୍ତୀ ଗୋଟିଏ ତମ୍ବୁ ଭିତରକୁ ନେଇଗଲେ ଏବଂ ରକ୍ତ-ସ୍ରାବିତ ତରବାରି ସହିତ ସେ ପୁନର୍ବାର ଜନସମ୍ମୁଖରେ ଉଭାହେଲେ । ସେ ପୁଣି ମାଗିଲେ ଆଉ ଗୋଟିଏ ମୁଣ୍ଡ । ସମସ୍ତ ବଦନ ମଳିନ ହୋଇଗଲା । କେତେକଙ୍କର ଏହା ଅସହ୍ୟ ହେଲା । କେତେକ ସ୍ଥାନ ପରିତ୍ୟାଗ କରିବାକୁ ଲାଗିଲେ । ଆଉ କେତେକ ଗୁରୁ ଗୋବିନ୍ଦଙ୍କ ମାତାଙ୍କ ପାଖକୁ ଯାଇ ଆପତ୍ତି କରିବାକୁ ଲାଗିଲେ । କିନ୍ତୁ ଧର୍ମ ଦାସ ନାମକ ଦିଲ୍ଲୀର ଜଣେ ଜାଠ ଠିଆହେଲେ ଏବଂ କର ଯୋଡ଼ି କହିଲେ, "ହେ ମହାପ୍ରଭୁ ! ଏହି ନିଅନ୍ତୁ ମୋର ମୁଣ୍ଡ ।" ଗୁରୁ ଗୋବିନ୍ଦ ଏହିପରି ଆହୁରି ତିନୋଟି ମୁଣ୍ଡ ଡାକ କଲେ । ଦ୍ୱାରକାର ଜଣେ ଲୁଗା ଛାପାବାଲା, ନାମ ମୁଖଚନ୍ଦ୍, ବିଦରର ଜଣେ ବ୍ରାହ୍ମଣ, ନାମ ସାହେବଚନ୍ଦ୍ ଏବଂ ଜଗନ୍ନାଥର ଜଣେ ବାରିକ, ନାମ ହିମ୍ମତ, ଅଗ୍ରସର ହେଲେ ଏବଂ ନିଜ ନିଜର ମୁଣ୍ଡ ନୈବେଦ୍ୟ ରୂପେ ଶ୍ରୀଗୁରୁଚରଣରେ ଅର୍ପଣ କଲେ ।

ଏହି ପାଞ୍ଚଜଣ ଗୁରୁଙ୍କର ପ୍ରଥମ, ପ୍ରଧାନ ଓ ପ୍ରିୟ ଶିଷ୍ୟ ହେଲେ । ବସ୍ତୁତଃ ଏମାନେ ହାଣ ଖାଇ ନ ଥିଲେ । ଗୋଟିଏ ଛେଳିର ରକ୍ତରେ ଗୁରୁଙ୍କର ତରବାରି ରଞ୍ଜିତ ହୋଇଉଠିଥିଲା । ଏହାପରେ

ତିନିଜଣ ଶୂଦ୍ର ଗୋଟିଏ କ୍ଷତ୍ରୀ ଏବଂ ଜଣେ ବ୍ରାହ୍ମଣ ଏହି ସତର୍ଥ ତ୍ୟାଗୀ ନିର୍ଭୀକ ବୀରମଣ୍ଡଳ ସୃଷ୍ଟି କଲେ । ଏହିମାନେ ପ୍ରଥମେ ଖାଲସା ହେଲେ ଅର୍ଥାତ୍ ଶୁଦ୍ଧ ଶିଖ୍ । ତାପରେ ଗୁରୁଗୋବିନ୍ଦ ସିଂହ ଏମାନଙ୍କୁ ଦୀକ୍ଷା ଦେବାକୁ ଲାଗିଲେ । ଗୋଟିଏ ଲୌହ ପାତ୍ରରେ ଶୁଦ୍ଧ ଜଳ ଭରାଗଲା ଏବଂ ଗୁରୁଗୋବିନ୍ଦ ସିଂହ ସେହି ପାତ୍ରସ୍ଥ ଜଳ ଭିତରେ ତାଙ୍କର ଦ୍ୱିଧାର ତରବାରୀ ଅର୍ଥାତ୍ କୃପାଣକୁ ଘୂର୍ଣ୍ଣିତ କଲେ ଏବଂ ପବିତ୍ର ସ୍ତୋତ୍ର ପାଠ କରିବାକୁ ଲାଗିଲେ । ତାଙ୍କର ସ୍ତ୍ରୀ, ମାତା ଜିତୋଜୀ କିଛି ମିଠା ପକାଇଥିଲେ । ବର୍ତ୍ତମାନ ଅମୃତ ତିଆରି ହେଲା । ଏଥିରୁ ସେହି ପଞ୍ଚ ଶିଖ୍ ପାଞ୍ଚ ପାଞ୍ଚ ଢୋକ ଅମୃତ ପାନ କଲେ । ସେମାନଙ୍କର ନାମ ଏହି ସମୟରୁ ହେଲା ସିଂହ । ଏହି ସମୟଠାରୁ ସେମାନେ ଲମ୍ବା ବାଳ ଧାରଣ କଲେ ଏବଂ କେଶ କର୍ତ୍ତନ କଲେ ନାହିଁ, ଆଉ ଏହି କେଶ ପାଇଁ ଗୋଟିଏ କାଙ୍ଗା ମଧ୍ୟ ରଖିଲେ ଏବଂ ହସ୍ତରେ ଗୋଟିଏ ଲୌହ କଡ଼ା ଧାରଣ କଲେ ଏବଂ ଭିତରେ ଗୋଟିଏ କାଚ୍ଛ ପିନ୍ଧିଲେ ଏବଂ ହାତରେ କୃପାଣ ଧରିଲେ । ଶିଖ୍ ଜାତିର ଜୟ ହେଉ, ସିଂହର ବିଜୟ ହେଉ । ଏହି ଶିଖ୍‌ମାନଙ୍କୁ ଆଜ୍ଞା କରାଗଲା ଯେ ସେମାନେ ଦରିଦ୍ରକୁ ସାହାଯ୍ୟ କରିବେ, ଅତ୍ୟାଚାରୀକୁ ଦମନ କରିବେ । ଏହିମାନେ ସାଧୁ ସୈନିକ ହେବେ । ଈଶ୍ୱରଙ୍କୁ ଓ ତରବାରୀକୁ ପୂଜା କରିବେ । ସେହି ବୈଶାଖୀ ଦିନ କୋଡ଼ିଏ ହଜାର ଲୋକ ନୂତନ ଧର୍ମରେ ଦୀକ୍ଷିତ ହେଲେ । ନୂତନ ପ୍ରେରଣା ନେଇ ଏହି ଶିଖ୍‌ମାନେ ନିଜ ନିଜ ଘରକୁ ପ୍ରତ୍ୟାବର୍ତ୍ତନ କଲେ । ଏହି ଖାଲସା ପନ୍ଥାର ପ୍ରତ୍ୟେକ ଲୋକ ଗୋଟିଏ ଗୋଟିଏ ଅଭିଯାନୀ । ଏହି ଅଭିଯାନୀମାନଙ୍କ ମଧ୍ୟରେ ଜଣେ ଜଣେ ମହନ୍ତ ନିଯୁକ୍ତ ହେଲେ । ସେମାନେ ଦେଶର ଚାରିଆଡ଼େ ଶିଖ୍ ଧର୍ମର ପ୍ରଚାର ତୃତୀୟ ଗୁରୁଙ୍କ ସମୟଠାରୁ ଆରମ୍ଭ କରିଥିଲେ । କିନ୍ତୁ କାଳକ୍ରମେ ଏମାନଙ୍କ ମଧ୍ୟରୁ ଅନେକ ବିଳାସୀ ହୋଇଗଲେ ଏବଂ ଶିଖ୍ ଧର୍ମ ସମ୍ବନ୍ଧରେ କିଛି ଜାଣିଲେ ନାହିଁ । ଗୁରୁ ଗୋବିନ୍ଦ ଏହି ସବୁ ମହନ୍ତ ବା ମଠାଧୀଶଙ୍କୁ ଏକାବେଳକେ ବିଦାୟ ଦେଲେ । ସେ ଆନନ୍ଦପୁରକୁ ସମସ୍ତ ମହନ୍ତଙ୍କୁ ଡକାଇଲେ ଏବଂ ସେମାନଙ୍କର ଅନୈତିକତା ଏବଂ ଅଧାର୍ମିକ ଜୀବନ ପାଇଁ ସେମାନଙ୍କୁ ତିରସ୍କାର କଲେ ଏବଂ ପ୍ରତ୍ୟେକଙ୍କୁ ବିଚାର କରି ତାର ଦୋଷର ଗୁରୁତ୍ୱ ଅନୁଯାୟୀ ଦଣ୍ଡବିଧାନ କଲେ ।

ଗୁରୁଗୋବିନ୍ଦଙ୍କୁ ପରାସ୍ତ କରିବାପାଇଁ ପାହାଡ଼ିଆ ଜାଠମାନେ ନାନାପ୍ରକାର ମେଳ କଲେ । ସେମାନେ ସମ୍ମିଳିତ ହୋଇ ଗୁରୁ ଗୋବିନ୍ଦଙ୍କୁ ପଅଣ୍ଟାଠାରେ ଆକ୍ରମଣ କଲେ । ଏହି ପଅଣ୍ଟା ସହର ହିମାଚଳ ପ୍ରଦେଶର ନାହାନ ଜିଲ୍ଲାରେ ଯମୁନା କୂଳରେ ଅବସ୍ଥିତ । ଏହି ପଅଣ୍ଟା ସହର ଗୁରୁ ଗୋବିନ୍ଦ ସ୍ଥାପନ କରିଥିଲେ ଏବଂ ଏହିଠାରେ ସେ ଶିଖମାନଙ୍କୁ ଅସ୍ତ୍ରଶସ୍ତ୍ର ଶିକ୍ଷା ଦେଉଥିଲେ ଏବଂ ଗୀର୍ବାଣ ବାଣୀରେ ନାନା ଯୁକ୍ତିତର୍କ କରାଉଥିଲେ । ପଅଣ୍ଟା ନିକଟବର୍ତ୍ତୀ ଭଙ୍ଗଣୀଠାରେ ଗୁରୁ ଗୋବିନ୍ଦ ଏହି ପାହାଡ଼ିଆ ପ୍ରଧାନମାନଙ୍କର ସୈନ୍ୟଙ୍କୁ ଭେଟିଲେ । ଏହିଠାରେ ଯେଉଁ ଯୁଦ୍ଧ ହୋଇଥିଲା ସେଥିରେ ବୁଦ୍ଧୁସାହା ନାମକ ଜଣେ ମୁସଲମାନ ସାଧୁ ଗୁରୁ ଗୋବିନ୍ଦଙ୍କ

ସମରରେ ଲଢ଼ିଥିଲେ । ଏହି ପାହାଡ଼ିଆ ରାଜାମାନେ ସରହିନ୍ଦ୍‌ର ଶାସନକର୍ତ୍ତାଙ୍କଠାରୁ ଗୁରୁଙ୍କ ବିରୁଦ୍ଧରେ ବାରମ୍ବାର ସାହାଯ୍ୟ ନେଉଥିଲେ, କିନ୍ତୁ ପ୍ରତିଥର ଏମାନେ ଶିଖମାନଙ୍କ ଦ୍ୱାରା ପରାହତ ହୋଇଥିଲେ । ଶେଷରେ ଖ୍ରୀ ୧୭୦୪ ରେ ସରହିନ୍ଦ୍, ଲାହୋର ଏବଂ ମୁଲତାନର ଶାସନକର୍ତ୍ତାମାନେ ଏକତ୍ର ହୋଇ ପାହାଡ଼ିଆ ନରପତିମାନଙ୍କୁ ସାଙ୍ଗରେ ନେଇ ଗୁରୁ ଗୋବିନ୍ଦ ସିଂହଙ୍କ ବିରୁଦ୍ଧରେ ଯୁଦ୍ଧଘୋଷଣା କଲେ । ଏହିଠାରେ ଗୁରୁ ଗୋବିନ୍ଦ ସିଂହଙ୍କର ଜ୍ୟେଷ୍ଠ ପୁତ୍ର ଅଜିତ୍ ସିଂହ ଯୁଦ୍ଧରେ ଖୁବ୍ ଲଢ଼ିଥିଲେ । ସେଦିନର ଯୁଦ୍ଧର ଅବସାନ ପରେ କେବଳ କାହ୍ନାଇଆ ନାମକ ଜଣେ ଶିଖ୍ ଆହତ ଶିଖ୍ ସୈନ୍ୟ ଦୁହେଁ ମୋଗଲ ସୈନ୍ୟଙ୍କୁ ମଧ୍ୟ ଜଳ ଦାନ କରୁଥିଲା ବୋଲି କେତେ ଶିଖ୍ ଆପତ୍ତି କଲେ । ଗୁରୁ ପଚାରିଲେ, କାହ୍ନାଇଆ, ଏହା କଣ ସତ୍ୟ ? କାହ୍ନାଇଆ ଉତ୍ତର ଦେଲା, ପ୍ରଭୁ ଗୋଟିଏ ଭାବରେ ଏକଥା ସତ୍ୟ । ଯୁଦ୍ଧକ୍ଷେତ୍ରରେ ମୁଁ ସମସ୍ତଙ୍କୁ ପାଣି ଦେଉଥିଲି, କିଏ ଶିଖ୍, କିଏ ମୋଗଲ, ଏକଥା ଭାବିବାର ମୋର ଅବସର ନ ଥିଲା । ମୁଁ କେବଳ ଗୁରୁଙ୍କର ମୁଖ ଚତୁର୍ଦ୍ଦିଗରେ ଦେଖୁଥିଲି । ଏହି କଥା ଶୁଣି ଗୁରୁ ଅତ୍ୟନ୍ତ ସନ୍ତୁଷ୍ଟ ହେଲେ ଏବଂ କାହ୍ନାଇଆକୁ ଆଶୀର୍ବାଦ କଲେ ଏବଂ ଅନ୍ୟାନ୍ୟ ସବୁ ଶିଖ୍‌ମାନଙ୍କୁ କହିଲେ, କାହ୍ନାଇଆ ତାର ଜୀବନର ଉଦ୍ଦେଶ୍ୟ ଠିକ୍ ଭାବରେ ବୁଝିଅଛି ।

ପାହାଡ଼ିଆ ନରପତିମାନେ ଅତ୍ୟନ୍ତ କ୍ଷତଗ୍ରସ୍ତ ହେଲେ । କିନ୍ତୁ ଆନନ୍ଦପୁର ଦୁର୍ଗକୁ ଘେରିପକାଇଲେ । ସାତମାସ ଧରି ଅବିଶ୍ରାନ୍ତ ଯୁଦ୍ଧ ଚାଲିଲା । ଦୁର୍ଗ ମଧ୍ୟରେ ଖାଦ୍ୟର ଅଭାବ ପଡ଼ିଗଲା । ଅନେକ ଶିଖ୍ ଦୁର୍ଗ ଛାଡ଼ି ଅନ୍ୟତ୍ର ପ୍ରସ୍ଥାନ ପାଇଁ ପରାମର୍ଶ ଦେଲେ । ଗୁରୁ ଗୋବିନ୍ଦ ପ୍ରସ୍ତାବ ଗ୍ରହଣ କଲେନି । କେତେକ ଶିଖ୍ ତାଙ୍କୁ ଛାଡ଼ି ଚାଲିଗଲେ । ମାଝିଠାରୁ ଚାଳିଶ ଜଣ ଶିଖ୍ ଗୋଟି ଗୋଟି ଚିଠି ଲେଖି ଗୁରୁ ଗୋବିନ୍ଦଙ୍କୁ ଗୁରୁ ବୋଲି ଅସ୍ୱୀକାର କଲେ । ଶେଷରେ ଗୁରୁ ଗୋବିନ୍ଦ ସିଂହ ମୋଗଲ ସୈନ୍ୟଦ୍ୱାରା ବାରମ୍ବାର ଆକ୍ରମିତ ହୋଇ ଆନନ୍ଦପୁର ତ୍ୟାଗ କରିବାକୁ ବାଧ୍ୟ ହେଲେ; କିନ୍ତୁ ଶୀର୍ଷା ନଦୀ ପାର ହୋଇ ସେ ପୁଣି ଚମକୌରରେ ଠାରେ ଗୋଟିଏ କଚ୍ଚା ଦୁର୍ଗ ଅଧିକାର କରି ମୁସଲମାନମାନଙ୍କୁ ଯୁଦ୍ଧ ଦାନ କରିବାକୁ ଲାଗିଲେ । ଗୁରୁ ଗୋବିନ୍ଦ ସିଂହ ଏହିଠାରେ ତାଙ୍କର ଦୁଇ ପୁତ୍ରଙ୍କୁ ଯୁଦ୍ଧରେ ହରାଇଲେ । ଗୋଟିକର ବୟସ ସତର ବର୍ଷ, ଆଉ ଗୋଟିକର ବୟସ ଚଉଦ ବର୍ଷ ଥିଲା । ଆଉ ଦୁଇ ପୁଅଙ୍କର ମୃତ୍ୟୁ ଅତ୍ୟନ୍ତ ଦୁଃଖପ୍ରଦ । ଏହି ଦୁଇଜଣ ମୁସଲମାନ ହେବେ ନାହିଁ, ଏହି ଅପରାଧରେ ତାଙ୍କୁ କାନ୍ଥ ଭିତରେ ପୋତି ଦିଆଗଲା । ଏହି ସମୟରେ ବଡ଼ ଭାଇ ଯାହାର ବୟସ ନଅ ବର୍ଷ ସେ ସେତେବେଳେ ଦେଖୁଥାଏ ତାର ସାନଭାଇ ଇଟା କାନ୍ଥଭିତରେ ଲୁଚିଗଲା, ସେତେବେଳେ ସେ ଚିତ୍କାରକରି ଉଠିଲା ଏବଂ କହିଲା, ଭାଇ, ତୁ ସାନହୋଇ ଆଗ ସଂସାରରୁ ଲୁଚିଗଲୁ, ମୋର ଏପରି ଦୁର୍ଭାଗ୍ୟ ଯେ ମୁଁ ବର୍ତ୍ତମାନ ସୁଦ୍ଧା ବଞ୍ଚି ରହିଛି । କିନ୍ତୁ ତଥାପି ଗୁରୁ ଗୋବିନ୍ଦଙ୍କର ବିଶ୍ୱାସ ଅତୁଟ ରହିଲା । ଏହି ସମୟରେ ସେ ଗୋଟିଏ ଗଛ ଡେଙ୍ଗ ଦେଇ ବସିଥିଲେ

ଏବଂ ତାଙ୍କର ମସ୍ତକ ଉପରେ ଗୋଟାଏ ଭଗ୍ନ ଖାଣ୍ଡ ଥିଲା । ଏହି ସମୟରେ ସେ ଗାଇଲେ ।

"ହେ ପ୍ରିୟବନ୍ଧୁ, ତୁମ ବିନା ନରମ ବିଛଣା ଅତ୍ୟନ୍ତ ଯନ୍ତ୍ରଣାଦାୟକ । ତୁମ ବ୍ୟତିରେକେ ପ୍ରାସାଦରେ ବସବାସ କରିବା ସର୍ପମାନଙ୍କ ମଧ୍ୟରେ ବାସକରିବା ସମାନ । ଆଜି ପାନପାତ୍ର ତ୍ରିଶୂଳପ୍ରାୟ ଏବଂ ଖାନପାନ ଛୁରିକାପ୍ରାୟ । ଏ ସବୁ କଂସେଇର ଛୁରିଦ୍ୱାରା ମୃତ୍ୟୁ ସ୍ୱରୂପ; କିନ୍ତୁ ହେ ପ୍ରିୟତମ, ତୁମେ ଯଦି ପାଖରେ ଅଛ ତାହେଲେ ମୁଁ ରାଜପ୍ରାସାଦକୁ ଧିକ୍‌କାର କରେ ଏବଂ ଏହି କୁଟୀର ବିଛଣାକୁ ମୁଁ ଅଧିକ ପସନ୍ଦ କରେ ।" ଗୁରୁ ଗୋବିନ୍ଦ ସିଂହ ଦକ୍ଷିଣପୂର୍ବ ପଞ୍ଜାବରେ ପ୍ରବାସ କଲେ । ନାଭି ଷ୍ଟେଟର ଦୀନାଗ୍ରାମଠାରୁ ସେ ପାରସ୍ୟ ଭାଷାରେ କବିତା ରଚନା କରିବା ପରେ ନାମା ଅର୍ଥାତ୍ ଯୁଦ୍ଧପତ୍ର ନାମରେ ଆଓରଙ୍ଗଜେବ ପାଖକୁ ପଠାଇଲେ ଓ ନିଜ ଜୀବନର ଉଦ୍ଦେଶ୍ୟ ଜଣାଇଲେ । ସେଥିରେ ସେ ଜଣାଇଥିଲେ ଯେ ନିଜର ଲୋକ ଯେତେ ଶତ୍ରୁ ହେଲେ ମଧ୍ୟ ଯେତେବେଳ ପର୍ଯ୍ୟନ୍ତ ଭଗବାନ ମୋଠାରେ ଅଛନ୍ତି ସେ ପର୍ଯ୍ୟନ୍ତ ମୋର ବିଶ୍ୱାସ ମୋର ମସ୍ତକର ଗୋଟିଏ କେଶ ପର୍ଯ୍ୟନ୍ତ କେହି ଆଘାତ କରି ପାରିବେନି । ଦୀନାଗ୍ରାମଠାରୁ ଗୁରୁଗୋବିନ୍ଦ ସିଂହ କୋଟକପୁର ଆଡ଼କୁ ଅଗ୍ରସର ହେଲେ । ଫରିଦ୍‌କୋଟ ରାଜବଂଶର କପୂର ସିଂହ ଗୁରୁଗୋବିନ୍ଦଙ୍କ ଠାରୁ ଅମୃତ ପାନକଲେ ଓ ଶିଖ୍‌ଧର୍ମ ଗ୍ରହଣ କଲେ । ଉଜୀରର ଖାଁଙ୍କର ସୈନ୍ୟମାନେ ଗୁରୁ ଗୋବିନ୍ଦଙ୍କର ପଶ୍ଚାତରେ ଧାବମାନ ହେଉଥିଲେ ।

ଆନନ୍ଦପୁରଠାରେ ଯେଉଁ ଚାଳିଶ ଜଣ ଶିଖ୍ ଗୁରୁଗୋବିନ୍ଦଙ୍କୁ ପରିତ୍ୟାଗ କରି ଚାଲିଯାଇଥିଲେ, ସେମାନେ ଘରକୁ ଯାଇ ସେମାନଙ୍କ ସ୍ତ୍ରୀଙ୍କଦ୍ୱାରା ତିରସ୍କୃତ ହୋଇ ନିଜର ଭୁଲ ବୁଝି ପାରି ଅନୁତପ୍ତ ହୃଦୟରେ ପୁନର୍ବାର ଗୁରୁ ଗୋବିନ୍ଦଙ୍କ ନିକଟରେ ଉପନୀତ ହେଲେ । ଶୁ ଦୁଣ୍ଡା ଯାଇ ବର୍ତ୍ତମାନ ନାମ ମୁକ୍ତେଶ୍ୱରଠାରେ ମୋଗଲମାନଙ୍କ ସହିତ ଭୟଙ୍କର ଯୁଦ୍ଧ ହେଲା । ଗୁରୁ ଗୋବିନ୍ଦ ଶତ୍ରୁସୈନ୍ୟଙ୍କୁ ଶରବର୍ଷା ଦ୍ୱାରା ଘଉଡ଼ାଇ ଦେଲେ । ଶେଷରେ ଗୁରୁ ଗୋବିନ୍ଦ ସିଂହଙ୍କର ଜୟ ହେଲା । ଏହିଠାରେ ମୋହନ ସିଂହ ମରିବା ଅବସ୍ଥାରେ ଗୁରୁ ଗୋବିନ୍ଦଙ୍କଠାରେ ନିବେଦନ କଲେ ଯେ ଯେଉଁ ଚାଳିଶ ଜଣ ତାଙ୍କୁ ପରିତ୍ୟାଗ କରି ଆସିଥିଲେ ବୋଲି ପତ୍ର ଲେଖିଥିଲେ ସେ ପତ୍ର ଚିରି ପକାନ୍ତୁ । ଏହି ଚାଳିଶ ଜଣ ବାସ୍ତବିକ ଶେଷରେ ଆତ୍ମରକ୍ଷା ଧାରଣ କରିଥିଲେ । ଗୁରୁ ଗୋବିନ୍ଦ ସିଂହ ବର୍ତ୍ତମାନ ଦକ୍ଷିଣକୁ ଯାତ୍ରା କଲେ । ହାଇଦ୍ରାବାଦ ଏବଂ ଗୋଦାବରୀ ତୀରବର୍ତ୍ତୀ ନନ୍ଦେଡ଼ ଗ୍ରାମଠାରେ ସେ ମାଧ ଦାସ ନାମକ ଜଣେ ବୈରାଗୀଙ୍କର କୁଟୀରରେ ଯାଇ ପହଞ୍ଚିଲେ । ଉକ୍ତ ବୈରାଗୀଙ୍କର ମହାଦର୍ପ ଅଦ୍ଭୁତ ଶକ୍ତି ଥିଲା । ତାଙ୍କର ଆସନରେ ଯଦି କେହି ଉପବେଶନ କରିବ, ତାହାହେଲେ ସେ ଜଳପୋଡ଼ି ମରିଯିବ । କିନ୍ତୁ ଗୁରୁ ଗୋବିନ୍ଦ ଉକ୍ତ ବୈରାଗୀ ନ ଥିବାବେଳେ ତାଙ୍କର ଆସନରେ ଯାଇ ବସିଗଲେ । ଉକ୍ତ ବୈରାଗୀ ଯେତେପ୍ରକାର ମନ୍ତ୍ରତନ୍ତ୍ର ଯନ୍ତ୍ର କଲେ, ସେ ଗୁରୁଗୋବିନ୍ଦଙ୍କର କିଛି କରିପାରିଲେ ନାହିଁ । ଏହି ହେଉଛନ୍ତି

ସେହି ବନ୍ଦା, ଯେ ଗୁରୁ ଗୋବିନ୍ଦଙ୍କର ଚିରଭୃତ୍ୟ ବୋଲି ଆପଣାକୁ ଆଖ୍ୟାତ କଲେ। ଦୁଃଖର ବିଷୟ ଏହି ଯେ ଏହା ପରେ ଗୁରୁଗୋବିନ୍ଦ ବେଶି ସମୟ ବଞ୍ଚି ରହିଲେ ନାହିଁ। ଜଣେ ଆଫଗାନ୍ ଯାହାଙ୍କର ପିତାଙ୍କୁ ଗୁରୁ ଗୋବିନ୍ଦ ମାରି ଦେଇଥିଲେ, ସେ ଦିନେ ଗୁରୁଗୋବିନ୍ଦଙ୍କୁ ଛୁରୀ ଭୁସିଦେଲେ। ସମ୍ରାଟ ବାହାଦୁର ଶା ଅନେକ ବିଚକ୍ଷଣ ଅସ୍ତ୍ର ଚିକିତ୍ସକ ପଠାଇଲେ। ତାଙ୍କର କ୍ଷତ ପୂରି ଆସୁଥିଲା; କିନ୍ତୁ ଏହି ସମୟରେ ସେ ଗୋଟିଏ ଅତି ଶକ୍ତିଶାଳୀ ଧନୁରେ ଟଙ୍କାର ଦେବାକୁ ଯାଇ ତାଙ୍କର କ୍ଷତସ୍ଥାନ ଖରାପ କଲେ। ଉକ୍ତ ସ୍ଥାନ ଫାଟିଯାଇ ପ୍ରଚୁର ରକ୍ତ ବହିଲା। ଏହାର ଫଳରେ ୧୭୦୮ ଖ୍ରୀଷ୍ଟାବ୍ଦରେ ଗୁରୁ ଗୋବିନ୍ଦଙ୍କର ମହାପ୍ରୟାଣ ହେଲା। ଗୁରୁ ଗୋବିନ୍ଦ ତାଙ୍କର ବିଚିତ୍ର ନାଟକ (ଯାହା କି ତାଙ୍କର ଆତ୍ମଜୀବନୀ) ରେ କହିଛନ୍ତି "ହେ ଧାର୍ମିକ ଲୋକବୃନ୍ଦ, ଏହିକଥା ବୁଝ, ମୁଁ ଏଥିପାଇଁ ଜନ୍ମଲାଭ କରିଥିଲି, ସବୁବେଳେ ସତ୍ୟତା ରକ୍ଷା କରିବି। ଭଲ ଲୋକଙ୍କୁ ଉପରକୁ ଉଠାଇବି ଏବଂ ଦୁଷ୍ଟ ଲୋକଙ୍କୁ ଶାଖାମୂଳରୁ ତାଡ଼ି ମାରିବି।" ଗୁରୁ ଗୋବିନ୍ଦ ସିଂହ ନିଜର ବ୍ୟକ୍ତିଗତ ଜୀବନରେ ସନ୍ନ୍ୟାସୀର ସରଳତା ଓ କଠୋରତା ବଜାୟ ରଖିଥିଲେ। ଗୁରୁ ନାନକ ଯେଉଁ କାର୍ଯ୍ୟ ଧୀର ଭାବରେ ଆରମ୍ଭ କରିଥିଲେ, ସେହି କାର୍ଯ୍ୟ ଗୁରୁ ଗୋବିନ୍ଦ କଠୋର ଭାବରେ ପାଳନ କରିଥିଲେ। ତା ହେଉଛି—ଅନ୍ୟାୟ, ଅତ୍ୟାଚାର ଓ ଶଠତାକୁ ଏକାବେଳକେ ନିର୍ମୂଳ କରିବା।

## ତୃତୀୟ ଅଧ୍ୟାୟ

ସବା ଲାଖ ସେ ଏକ ଲଡ଼ାଉଁ
ଚିଡ଼ିଆଁ ସେ ମୈ ବାଜ ଲଡ଼ାଉଁ।
ବକ୍ରିୟା ସେ ମୈ ଶେର ମରବାଉଁ
ତବ ଗୋବିନ୍ଦ ସିଂହ ନାମ ଧରାଉଁ।

ଏହି ମହାପ୍ରତିଜ୍ଞା ପାଳନ କରିବା ପାଇଁ ଗୁରୁ ଗୋବିନ୍ଦ ସିଂହଙ୍କୁ ମହାଅଗ୍ନି-ପରୀକ୍ଷା ମଧ୍ୟ ଦେଇ ଜୀବନରେ ଯିବାକୁ ହୋଇଛି।

ସେ ଏକ ସମୟ ଥିଲା ଯେଉଁ ସମୟରେ କି ମୁସଲମାନର ଅତ୍ୟାଚାର ହିନ୍ଦୁ ଉପରେ ପ୍ରବଳ ହୋଇଥିଲା। ବିଶେଷତଃ ଔରଙ୍ଗଜେବ ହିନ୍ଦୁଙ୍କୁ ଜୋର-ଜବରଦସ୍ତି ମୁସଲମାନ୍ କରିବା ପାଇଁ ଯେଉଁ ମହଙ୍ଗ ଚେଷ୍ଟା କରିଥିଲେ, ସେଥିରେ ବିଦ୍ରୋହବହ୍ନି ଭୟଙ୍କର ଭାବରେ ଜଳି ଉଠିଥିଲା।

ଏହି ବହ୍ନିର ଅତ୍ୟନ୍ତ ଅଗ୍ନିମୟୀ ଜ୍ୱଳନ୍ତ ଶିଖା ଗୁରୁ ଗୋବିନ୍ଦ ସିଂହ ଆଉ ତାଙ୍କ ପିତା ତେଗ୍ ବାହାଦୁର ସିଂହଙ୍କ ଜୀବନରେ ଘଟିଥିଲା। ତାଙ୍କ ଭଳି ଆଉ ମଧ୍ୟ ଥିଲେ। ବନ୍ଦାର ଜୀବନକାହାଣୀ—ବୀରତ୍ୱ, ତିତିକ୍ଷା ଏବଂ ସଂଗ୍ରାମ ପୃଥିବୀର ଯେକୌଣସି ଇତିହାସର ପୃଷ୍ଠାକୁ ସୁଶୋଭିତ କରିବ, ଯେକୌଣସି ଜାତିକୁ ଜାଗ୍ରତ କରିବ। ତେଗ୍ ବାହାଦୁରଙ୍କ ଶରୀରକୁ ଖଣ୍ଡଖଣ୍ଡ କରି ଆଉରଙ୍ଗଜେବ ଦିଲ୍ଲୀର ଛକ ଦରଓ୍ୱାଜାରେ ଟଙ୍ଗାଇ ଦେଲେ। ଗୁରୁ ଗୋବିନ୍ଦ ସିଂହଙ୍କର ଦୁଇ ପୁଅ ଯୁଦ୍ଧକ୍ଷେତ୍ରରେ ଲଢ଼େଇ କରି ମଲେ, ଆଉ ଦୁଇ ପୁଅଙ୍କୁ—ସାନ ସାନ ପିଲା ଦୁଇଟିଙ୍କୁ—ସାତ ଆଉ ନ' ବର୍ଷର ପିଲା

ଦଉଡ଼ିକୁ କାନ୍ଧଉପରେ ଝୁଲାଦେଇ ଜୀବନ ସମାଧି କରେଇଦେଲେ, ବନ୍ଦୀଙ୍କୁ ସହସ୍ର ସହସ୍ର ରକ୍ତାକ୍ତ ଶିଖ ମୁଣ୍ଡ ଆଣି ଦେଖାଇଦେଲେ । ନିଜର ସାନ ପୁଅକୁ ନିଜ ହସ୍ତରେ ମାରିବା ପାଇଁ ବାଧ୍ୟ କଲେ, ତଥାପି ମୁସଲମାନ କରାଇ ପାରିଲେ ନାହିଁ—ଏ ସବୁ କଥା ପାଠ କଲେ ହୃଦୟ କମ୍ପି ଉଠେ, ରକ୍ତ ଗରମ ହୋଇଯାଏ । କି ଜିଦ୍ ! କି ଆତ୍ମୋତ୍ସର୍ଗ ! କହନ୍ତି କି ଆଉରଙ୍ଗଜେବ ହିନ୍ଦୁର ଯଜ୍ଞୋପବୀତ ୧ ମହଣ ନ ଉତାରିଲେ ଖାନା ଖାଉ ନ ଥିଲେ । ଆଉରଙ୍ଗଜେବଙ୍କର ସମୟ ଶ୍ରୀ ଗୁରୁ ଗୋବିନ୍ଦ ସିଂହ ଆଉ ଶ୍ରୀ ଶିବାଜୀ ସଙ୍ଗତରେ ହୋଇଥିଲା । ଆଉରଙ୍ଗଜେବ କେତେ ଯେ ହିନ୍ଦୁଙ୍କୁ ମୁସଲମାନ କରିଥିଲେ, ତାର ଇୟତ୍ତା ନାହିଁ । କିନ୍ତୁ ଗୁରୁ ଗୋବିନ୍ଦଙ୍କ ପାଖରେ ଥାକଲେ ଖାଁ, ନିଜାମ ଖାଁ, ହୟାତ ଖାଁ ଆଦି ମୁସଲମାନ ସରଦାର ଆଉ ପାଞ୍ଚଶହ ମୁସଲମାନ ସବାର ନୌକରୀ କରୁଥିଲେ ।

ଶ୍ରୀ ନାନକ ଧାର୍ମିକ, ସାମାଜିକ ତଥା ରାଜନୈତିକ କାର୍ଯ୍ୟ ମଧ୍ୟ ଆରମ୍ଭ କରିଥିଲେ । ଗୁରୁ ଗୋବିନ୍ଦ ସିଂହଙ୍କ ବୁଦ୍ଧିମତ୍ତା, ବନ୍ଦା ବାହାଦୁର ସିଂହଙ୍କ ବୀରତା, ମହାରାଜା ରଣଜିତ୍ ସିଂହଙ୍କ ଉନ୍ନତି—ଏହି ଶ୍ରୀ ଗୁରୁ ନାନକଙ୍କଠାରୁ ହିଁ ମିଳିଛି ।

ଗୁରୁ ଗୋବିନ୍ଦ ସିଂହଙ୍କ ଜନ୍ମ ସେ ସମୟର ହିନ୍ଦୁଙ୍କ ଅବସ୍ଥା ଅଥବା ଭାରତର ଅବସ୍ଥା ଯେନ ହୋଇଛି । ଭାରତଦେଶ ସେତେବେଳେ ନିକୃଷ୍ଟ ଅବସ୍ଥାରେ ଥିଲା । ଭାରତବର୍ଷ ଧନ ଆଉ ବାଣିଜ୍ୟ ବେପାର ପାଇଁ ପ୍ରସିଦ୍ଧ ଥିଲା । ବିଦେଶୀ ଡାକୁମାନେ ଉକ୍ତ ଧନ ଲୁଣ୍ଠନ କରିବା ପାଇଁ ଭାରତକୁ ବାରମ୍ବାର ଆକ୍ରମଣ କରିବାକୁ ଲାଗିଲେ । ହିନ୍ଦୁଙ୍କ ରାଜ୍ୟଶାସନ ଦୁର୍ବଳ ଥିଲା । ସେଥିପାଇଁ ବିଦେଶୀ ଡାକୁମାନେ ଭୁହାକୁ ଭୁହା ଭାରତକୁ ଆସୁଥିଲେ । ପ୍ରତିକ୍ରିୟାର ପ୍ରତିକ୍ରିୟା ଅଛି । ଏହି ପ୍ରତିକ୍ରିୟା ସ୍ୱରୂପ ଶିଖ୍ ଜାତିର ଉଦ୍ଭବ ଏବଂ ଗୁରୁ ଗୋବିନ୍ଦ ସେହି ଶିଖ୍ ଜାତିର ଦଶମ ମହୋଜ୍ଜ୍ୱଳ ଭାସ୍କର ।

ଗୁରୁ ନାନକ ବାଗ୍‌ଦାଦ ଯାଇଁ ଖଲିଫାଙ୍କୁ ଉପଦେଶ ଦେଇଥିଲେ ଏବଂ ଦେଶ ଉପରୁ ଟ୍ୟାକସ୍ ଦୂର କରେଇଥିଲେ । ଶ୍ରୀ ଗୁରୁ ନାନକ ଦିଲ୍ଲୀରେ କୈଦ ଥିଲେ । କୈଦଖାନାରେ କୈଦଙ୍କୁ ଏକ କଲେ ଏବଂ ସମସ୍ତଙ୍କୁ ମୁକ୍ତ କଲେ । ଶ୍ରୀଗୁରୁ ଅଙ୍ଗଦ ଲଙ୍ଗର ଆରମ୍ଭ କଲେ ଏବଂ ତାର ସୁଫଳ ହେଲା । ଶ୍ରୀଗୁରୁ ଅଙ୍ଗଦ ଗୁରୁମୁଖୀ ଅକ୍ଷର ପ୍ରଚଳନ କଲେ । ଗୁରୁ ଅମର ଦାସ ବାଦଶାହର କର୍ମଚାରୀମାନଙ୍କୁ ମାହାସୁଲ ଦେବାକୁ ଅସ୍ୱୀକାର କଲେ ଏବଂ ଉକ୍ତ ମହାସୁଲ ସବୁ ଲୋକ ଉପରୁ ଉଠାଇ ଦେଲେ । ଶ୍ରୀଗୁରୁ ଅମର ଦାସଙ୍କୁ ଆକବର ଜାଗୀରଦାର କରିବା ପାଇଁ ଚେଷ୍ଟା କରିଥିଲେ । ସେ ମନା କଲେ, ଶ୍ରୀ ଗୁରୁ ରାମଦାସଙ୍କୁ ମଧ୍ୟ ସେହିପରି ଜାଗୀରଦାର କରିବା ପାଇଁ ଇଚ୍ଛାପ୍ରକାଶ କଲେ, କିନ୍ତୁ ସେ ମନା କଲେ । ଶ୍ରୀଗୁରୁ ଅର୍ଜୁନ ଦେବ ହରମନ୍ଦିର ସ୍ଥାପନ, ଗୁରୁ ଗ୍ରନ୍ଥସାହେବ ରଚନା, ଘୋଡ଼ା ବ୍ୟାପାର ଆଉ ସ୍ୱରାଜ୍ୟ ସ୍ଥାପନରେ ବ୍ୟସ୍ତ ଥିଲେ । ଶ୍ରୀଗୁରୁ ଅର୍ଜୁନ ଦେବ ଦେଶ ପାଇଁ ପ୍ରଥମ ଆହୁତି ହେଲେ । ଶ୍ରୀଗୁରୁ ହରିଗୋବିନ୍ଦ ଅମୃତସରରେ ତଖ୍ତ ଶ୍ରୀ ଅକାଳ ବୁଙ୍ଗା

ସ୍ଥାପନ କଲେ ଏବଂ ଲୌହଗଡ଼ ନାମକ କିଲ୍ଲା ବନାଇଲେ । ଶ୍ରୀଗୁରୁ ହରିଗୋବିନ୍ଦଙ୍କୁ ଗ୍ୱାଲିଅର କିଲ୍ଲାରେ ଜାହାଙ୍ଗୀର (ଦେଶରୁ ବାହାର) କରିଥିଲେ । ସେ ସେଠାରୁ ବାହାରି ସ୍ୱରାଜ୍ୟ ସ୍ଥାପନ କଲେ । ସାହାଜାହାନ ସମ୍ବନ୍ଧରେ ଗୁରୁ ହରିଗୋବିନ୍ଦଙ୍କ ଯୁଦ୍ଧ ହେଲା । ଦାରାଶିକୋହ ଶ୍ରୀହରି ରାୟଙ୍କୁ ଜାଗୀର ଦେବାକୁ ଚାହିଁଲେ, ମାତ୍ର ସେ ଅସ୍ୱୀକାର କଲେ । ତାଙ୍କ ଉପରେ ରାଜଦ୍ରୋହର କଳଙ୍କଟିକା ଲଗାଗଲା । ଗୁରୁ ହରିକୃଷ୍ଣ ଜୀଙ୍କୁ ବୋଲାଇଲେ । କିନ୍ତୁ ମ୍ଲେଚ୍ଛହସ୍ତ ତାଙ୍କ ଦେହରେ ଲାଗିବା ପୂର୍ବରୁ ନିଜ ପ୍ରାଣ ତ୍ୟାଗ କରିବା ଅଧିକତର ସମୀଚୀନ ଭାବି ତାହାହିଁ କଲେ । ଏ ସମସ୍ତ ଶିଖ୍‌ଗୁରୁଙ୍କ ଇତିହାସ ରୋମାଞ୍ଚବ୍ୟଞ୍ଜକ । କି ଅଦ୍‌ଭୁତ ସାହସ, ତ୍ୟାଗ, ଏବଂ ଅଦମନୀୟତା ! ମନୁଷ୍ୟର ଚରମ ବିକାଶ, ମହୋତ୍‌ଥାନ । ଶ୍ରୀଗୁରୁ ତେଗ୍‌ବାହାଦୁରଙ୍କୁ ରାଜଦ୍ରୋହ କଳଙ୍କ ଲଗାଇ ଓ୍ୱାରିଣ୍ଟଦ୍ୱାରା ତାଙ୍କୁ ଡକା ହେଲା ଏବଂ ଆଉରଙ୍ଗଜେବଙ୍କ ଦ୍ୱାରା ତାଙ୍କର ମୃତ୍ୟୁଦଣ୍ଡ ହେଲା । ତା ପରେ ଗୁରୁ ଗୋବିନ୍ଦ ସିଂହ । ସଂସ୍କୃତ ଭାଷାରେ ତାଙ୍କର ଅଗାଧ ପ୍ରେମ ଥିଲା । ସେଥି ଚର୍ଚ୍ଚା ପ୍ରଚୁର ସେ କଲେ । ସେ ଆପଣାର ଶିଷ୍ୟମାନଙ୍କୁ ସଂସ୍କୃତ ଶିକ୍ଷାର୍ଥେ କାଶୀ ପ୍ରେରଣ କରୁଥିଲେ । ସେମାନଙ୍କ ଦ୍ୱାରା ସେ ଭାଗବତ, ମହାଭାରତ, ଉପନିଷଦ୍ ଆଦି ଗ୍ରନ୍ଥର ଅନୁବାଦ କରୁଥିଲେ ।

ସେ ଲୋହଗଡ଼, ଆନନ୍ଦଗଡ଼, ହୋଁସୁଗଡ଼, ଫତେଗଡ଼, ଇତ୍ୟାଦି ଗଡ଼ ନିର୍ମାଣ କରାଇଥିଲେ । ଶ୍ରୀ ଗୁରୁ ଗୋବିନ୍ଦ ଦେବୀଭକ୍ତ ଥିଲେ ଏବଂ ତାଙ୍କ ଠାରୁ ବର ପାଇଥିଲେ ବୋଲି କେହି କେହି କହନ୍ତି । ଆଉରଙ୍ଗଜେବଙ୍କ ସହିତରେ ଗୁରୁ ଗୋବିନ୍ଦଙ୍କର ଅନେକ ଯୁଦ୍ଧ । ଗୁରୁ ଗୋବିନ୍ଦଙ୍କର ଅନେକ ବିଜୟ । ଶ୍ରୀଗୁରୁ ଗୋବିନ୍ଦ ଦକ୍ଷିଣଦେଶ ମଧ୍ୟ ଯାତ୍ରା କରିଥିଲେ । ଆଉରଙ୍ଗଜେବଙ୍କର ମୃତ୍ୟୁ ହେଲା । ବାହାଦୁର ଶାହା ଗୁରୁ ଗୋବିନ୍ଦଙ୍କୁ ସହାୟତା କରିବା ପାଇଁ ପ୍ରାର୍ଥନା କଲେ । ସେ ତାଙ୍କୁ ସାହାଯ୍ୟ ଦେଲେ । କିନ୍ତୁ ବାହାଦୁର ଶାହା ବିଶ୍ୱାସଘାତକତା କଲେ । ଫଳରେ ଶ୍ରୀଗୁରୁ ତାହା ବାହାଦୁରଙ୍କୁ ଅଣରତ କଲେ ଏବଂ ବାହାଦୁର ଶାହା ହରଦ୍ୱାରରେ ଖୁବ୍ ସଂଗ୍ରାମ ଚାଲିଲା । ଶ୍ରୀ ଗୁରୁ ଗୋବିନ୍ଦଙ୍କ ଉପରେ ଶେଷରେ କଟୁରୀ ଚଳାଇଦେଲା ଗୁଲ୍ ଖାଁ, ସେ ଯେତେବେଳେ ଶୋଇଥିଲେ । (ଭାଦ୍ର ମିତି ଶୁକ୍ଳ ସପ୍ତମୀ ୧୭୬୫) ଗୁରୁଗୋବିନ୍ଦ ଧଡ଼ପଡ଼, ସେଥିରେ ଉଠି ଏକ ହାତରେ ତରବାରି ସନ୍ଧାନ ଅସ୍ତ୍ରକୁ ଯମାଳୟକୁ ପଠାଇଦେଲେ । ଆଉ ଏହା ପରେ ଗୁରୁ ଗୋବିନ୍ଦ କହିଲେ, ଦେଖ କିଛି ଦୁଃଖ କରନାହିଁ । ମୋ ପରେ ଗ୍ରନ୍ଥ ଗ୍ରନ୍ଥହିଁ ତୁମମାନଙ୍କର ଶ୍ରେଷ୍ଠ ଗୁରୁ ହେବେ । ତାଙ୍କୁହିଁ ଶ୍ରଦ୍ଧା କର ।

ଆଜ୍ଞାଭଈ ଅକାଳକୀ,
ତଭୀ ଚଲାଓ ପନ୍ଥ
ସବ୍ ସିଖନ କୋ ହୁକମ୍,
ହୈ ଗୁରୁ ମାନିୟୋ (ଗ୍ରନ୍ଥ) ।

କ୍ୟା କଷ୍ଟା ନ ଅପନେ ଦେଶ ପେ
ଅହସାନ୍ କର ଗୟେ
ଆଖର ଜୋ ଅପନା ଜାନ ଭି
କୁରବାନ୍ କର ଗୟେ ।

ଗୁରୁ ଗୋବିନ୍ଦ ସିଂହଙ୍କ ମହତ୍ତ୍ୱ ଅତ୍ୟନ୍ତ ବେଶୀ । ସେ ମରିବା ବେଳକୁ କହି-ଯାଇଥିଲେ, ଦେଖ, ମୋର ଅସ୍ଥି ବା ଭସ୍ମ କେହି ଉଠାଇବ ନାହିଁ । ମୋ ନାମରେ କେହି କିଛି ନିତ୍ୟକର୍ମାଦି କରିବ ନାହିଁ । ମୋ ପାଇଁ ମୋର କେହି ଶିଷ୍ୟ ସମାଧି ଇତ୍ୟାଦି ନିର୍ମାଣ କରିବ ନାହିଁ । କିନ୍ତୁ ଶିଷ୍ୟ କେହି ବିଚଳିତ ହୋଇ ସେହି ଭସ୍ମକୁ ଘାଣ୍ଟିଲ ଏବଂ ଅସ୍ଥି ଉଠାଇଲ ଏବଂ ସେଠାରେ ଏକ ସମାଧି ତିଆରି କଲ । ଅବିଚଳ ନଗରରେ ଉକ୍ତ ଗୁରୁସ୍ଥାନ ଅଛି । ନ'ମାସ ନ'ଦିନ ଗୋଟିଏ ଜାଗାରେ ବସି ଭାଇମଣି ସିଂହ ଲେଖୁଥିଲେ ଗୁରୁ ଗୋବିନ୍ଦ ଡାକୁଥିଲେ । ଏହିପରି ଆଦ୍ୟ ଗୁରୁଗ୍ରନ୍ଥ ସାହେବ ଗୁରୁ ଗୋବିନ୍ଦଙ୍କ ଦ୍ୱାରା ଲେଖା ହୋଇଥିଲା ।

ଗୁରୁ ଗୋବିନ୍ଦ ସିଂହ ଯେଉଁ ଜଫର୍ ନାମା (ବିଜୟପତ୍ର) ଆଉରଙ୍ଗଜେବଙ୍କୁ ପଠାଇଥିଲେ, ତାହା ଏହି ।

"ତୁ ଅଧର୍ମୀ ଅଟୁ । ମୁଁ ତୋର ଶପଥ ଉପରେ ବିଶ୍ୱାସ କରି ନ ପାରେ । ପରମାତ୍ମା ତୋତେ ରାଜା କରିଛନ୍ତି । କଣ ଏହା ଉଚିତ ନୁହେଁ ଯେ ତୁମେ ଲୋକଙ୍କ ସହିତ ନ୍ୟାୟ ବ୍ୟବହାର କରିବ ?

ମୁଁ ପର୍ବତ ଉପରେ ରହୁଥିଲି । ମୁଁ ତୋର ଇଲାକାକୁ କେବେ ହାତ ମଧ୍ୟ ବଢ଼େଇ ନାହିଁ । ତୁ ମୋ ବାପକୁ କୈଦ କଲୁ ଆଉ ଅତି ନିର୍ଦ୍ଦୟତା ସହ ତାଙ୍କୁ ମାରିଲୁ ।

ତୁ ମୋର ନିରପରାଧ ସାନ ସାନ ଗୁଲି ପିଲାଙ୍କୁ ଆଉ ସମସ୍ତ ଶିଷ୍ୟର ଗଳା କାଟିଲୁ ତ କଣ ହେଲା ? ବର୍ତ୍ତମାନ ସୁଦ୍ଧା ମୁଁ ତୋ ପରେ ବସିଛି । ମୋର ସ୍ତ୍ରୀ-ମାନଙ୍କର ରକ୍ତ ତୋର ଗର୍ଦ୍ଦନ ଉପରେ ଅଛି । ତୁ ମୋର ଗନ୍ତାଘର ଲୁଟିଛୁ । ତୁ ଏସବୁ କାର୍ଯ୍ୟକୁ ତୁଚ୍ଛ ମଣୁଛୁ । କିନ୍ତୁ ପରମାତ୍ମା ଦୃଷ୍ଟିରେ ଏସବୁ ମହାପାପ । ତୁ ଭାବୁଛୁ କୁରାନ୍ ପାଠ ଦ୍ୱାରା ତୋର ସେହି ପାପ ସବୁ ଧୌତ ହେବ ? କୁରାନ୍ ପଢ଼ି ଲାଭ କଣ ? ଯଦି ମଣିଷ ଆଚ୍ଛା କାମ କରି ଆପଣା ହୃଦୟକୁ ପବିତ୍ର ନ କଲା, ତାହା-ହେଲେ ସେ କୁରାନ୍ ପଢ଼ି ନରକରୁ ରକ୍ଷା ପାଇବ ନାହିଁ । ତୁ ହୁଏତ ଭାବୁଛୁ କୁରାନ୍‌ର ସୂତ୍ର ଆବୃତ୍ତି ପଢ଼ି ତୋର ଭକ୍ତି ଜନ୍ମିଛି । ସେ କିଛି ନୁହେଁ । ଇନ୍ଦ୍ରିୟକୁ ଆପଣା ବଶରେ ରଖିବା ହିଁ ପ୍ରକୃତ ଭକ୍ତି । ତୁ ରାଜ୍ୟଶାସନ ନିଶାରେ ମସ୍ତ ହୋଇଛୁ ଆଉ ଓଲୁ କାମ କରୁଛୁ ।

ତୁ ଭାବୁଛୁ ହୁଏତ ମୂର୍ତ୍ତିପୂଜା କମାଇ ତୁ ସ୍ୱର୍ଗର ଅଧିକାରୀ ହୋଇଛୁ । କିନ୍ତୁ ଜାଣିଥା, ତୁ ମୂର୍ତ୍ତି ପୂଜାକୁ ଆହୁରି ବଢ଼ାଇଛୁ । ପରମେଶ୍ୱର ତୋତେ କେବେ ଦୟା କରିବେ ନାହିଁ ।

କରେ ବୁରାଇ ସୁଖ ଚାହେ
କୈସେ ପାବେ କୋୟ
ବୋଏ ପେଡ୍ ବବୁଲ
ଫଲ ଆମ କହାଁସେ ହୋୟ ।

ବର୍ତ୍ତମାନ ସମୟ ଆସିଛି । ଖାଲସା ତୋତେ ଏହାର ଦଣ୍ଡ ଦେବ । ମୁଁ ତୋ ପାଖକୁ କେବେ ଯିବି ନାହିଁ । ତୋର

ଶପଥ ଉପରେ ମୋର ଭରସା ନାହିଁ । ମୁଁ ଏଣିକି ତୋର ବିରୁଦ୍ଧରେ କାର୍ଯ୍ୟ କରିବି । ତୁ ଯଦି ତୋର ସୈନ୍ୟ ଉପରେ ଭରସା ରଖିଥାଉ, ମୁଁ ମୋର ବାହଗୁରୁ ସର୍ବଶକ୍ତିମାନ୍ ପରମାତ୍ମା ଉପରେ ଭରସା ରଖିଛି । ବର୍ତ୍ତମାନ ମନେ ରଖ – ସେହି ଦିନ ଆସିଗଲା, ଯେବେ ମୁଁ ତୋର ପ୍ରତିଶୋଧ ନେବି ।"

ପରେ ଗୁରୁ ଗୋବିନ୍ଦ ସିଂହଙ୍କର ଅବସ୍ଥା ଶୋଚନୀୟ ଦେଖି ତାଙ୍କର ଅନେକ ଶିଷ୍ୟ ଏକତ୍ର ହୋଇ ଗୁରୁଜୀଙ୍କ ପାଖରେ ଠିଆ ହେଲେ ଏବଂ କହିଲେ ଗୁରୁଜୀ, ଆଉ କାହିଁକି ? ଆଖି ଆଗରେ ଚାରିପୁଅ ମଲେ, କେତେ କଷ୍ଟ । କାହିଁକି, ଏଣିକି ଚାଲନ୍ତୁ ଆମେ ସମସ୍ତେ ମିଳି ଆପଣଙ୍କୁ ନେଇ ବାଦଶାହ ପାଖରେ ପହଞ୍ଚିବୁଁ । ଆପଣ ତ ଫକୀର ଲୋକ, କାହିଁକି ଏତେ ଜୁଲୁମ ତାଙ୍କର ?

ଗୁରୁ ଗୋବିନ୍ଦ ସିଂହ କ୍ରୁଦ୍ଧ ହୋଇ ଉଠିଲେ । ତୁମର ବୁଦ୍ଧିରେ ମୁଁ ବାଟ ଚାଲୁନାହିଁ, ମୋ ବୁଦ୍ଧିରେ ବାଟ ଚାଲୁଛି । ତମେ ସମସ୍ତେ ଚାଲିଯାଅ । ମୁଁ ଏକା ପରମାତ୍ମା ସାହାଯ୍ୟରେ ମୋର କାର୍ଯ୍ୟ କରିବି ।

ଏହା ଶୁଣି ଶିଷ୍ୟମାନେ ବଡ଼ ଲଜ୍ଜିତ ହେଲେ । ଏଣିକି ସେମାନେ ସେମାନଙ୍କର ନିଜ ନିଜ ଜୀବନକୁ ପଣ କରିଦେଲେ ଗୁରୁ ଗୋବିନ୍ଦ ସିଂହଙ୍କ ସେବାରେ ।

ଶିଖ୍ ଜାତି ଏହିପରି ବୀରତ୍ୱ ଉପରେ ଗଢ଼ି ଉଠିଲା । କୁସଂସ୍କାରର ଡମ୍ଭ ଫାଟିଗଲା । ମାନବ ମନ ସ୍ୱାଧୀନତା ଅନୁଭବ କରିବାକୁ ଲାଗିଲା । ବନ୍ଦୀମନ ଆଉ ରହିଲା ନାହିଁ ।

ପ୍ରଥମେ ପ୍ରଥମେ ଗୁରୁ ଗ୍ରନ୍ଥସାହେବ ଅନ୍ୟ ଭାଷାରେ ଅନୁବାଦ କରିବେ କି ନାହିଁ ଏହି ବିଷୟରେ ଗୋଟିଏ କୁସଂସ୍କାର ଥିଲା । କିନ୍ତୁ ଗୁରୁ ଅର୍ଜ୍ଜୁନ ସିଂହ କହୁଥିଲେ ଯେ ଗ୍ରନ୍ଥସାହେବ ଭାରତୀୟ ତଥା ବୈଦେଶିକ ନାନା ଭାଷାରେ ଅନୂଦିତ ହେବା ଉଚିତ, ଯେପରି ଏହା ଜଗତର ସର୍ବତ୍ର ପରିବ୍ୟାପ୍ତ ହୋଇପାରିବ ।

ଶିଖ୍ ଯୁଦ୍ଧକ୍ଷେତ୍ରରେ ମୃତ୍ୟୁକୁ ମନୁଷ୍ୟର ମୁକ୍ତିର ଶ୍ରେଷ୍ଠ ଉପାୟ ବୋଲି ମନେ କରେ ।

ଗୁରୁଗୋବିନ୍ଦ ସିଂହଙ୍କ ପିତା ତେଗ୍ ବାହାଦୁର ସିଂହଙ୍କୁ ଆଉରଙ୍ଗଜେବ ଯେତେବେଳେ ତେତାଲି ଘରେ ବନ୍ଦୀ କରି ରଖିଥିଲେ, ସେତେବେଳେ ତେଗ୍ ବାହାଦୁର ତେତାଲି ଉପରୁ ଜନାନା ଆଡ଼କୁ ଚାହୁଁଥିଲେ ବୋଲି ଟିକା ଲଗା-ଗଲା । ତେଗ୍ ବାହାଦୁର ସେତେବେଳେ କହିଥିଲେ, "ମୁଁ ଦେଖୁଥିଲି ସାଗର ପାରିରୁ ଆସୁଛି ଇଂରେଜ ତୁମକୁ ଧ୍ୱଂସ କରିବା ଲାଗି !" କି ସାହସ ! ବୀରତ୍ୱ !

ଏହି ଶିଖ୍ ଗୁରୁମାନେ ସାଧାରଣ ଜନତା ପାଖରେ ଉଚ୍ଚ ନୈତିକ ଆଦର୍ଶ ଦେଖାଇଥିଲେ । ହୀନ ଚାର୍ଯ୍ୟ କରିବାକୁ ସେମାନେ ଅତ୍ୟନ୍ତ ଘୃଣା କରୁଥିଲେ । ମାନବର ମହତ୍ତ୍ୱ ବଜାୟ ରଖିବା ପାଇଁ ପ୍ରାଣକୁ ମଧ୍ୟ ତୁଚ୍ଛ କରି କାର୍ଯ୍ୟ କରୁଥିଲେ । ଶିଶୁହତ୍ୟା ଏମାନେ ବନ୍ଦ କରିଥିଲେ । ବିଧବାକୁ ଏକାବେଳକେ ଅଶୁଦ୍ଧ ବୋଲି ପରିତ୍ୟାଗ କରିବା ଏମାନେ ମନା କରିଥିଲେ । ଏମାନେ ଜାତିଭେଦର ମୂଳରେ କୁଠାରଘାତ କରିଥିଲେ ଏବଂ ମାସିକ ଋତୁ ହେଲେ ସେହିଁ ଲୁଗା ଅଛୁଆଁ

ହୁଏ, ତାହା ଦୂର କରିଥିଲେ । ଏହାପରେ ଆହୁରି ଅନେକ କୁସଂସ୍କାର ଦୂର କରିଥିଲେ । ପିତୃକାପୂଜା ଏମାନେ ବାରଣ କରିଥିଲେ । ବିଧବାର ସହମରଣ ଏମାନେ ବନ୍ଦ କରିଥିଲେ । ମଦ, ଗଞ୍ଜେଇ, ଅଫିମ, ତମାଖୁ ଇତ୍ୟାଦି ନିଶା ଖାଇବାକୁ ଏମାନେ ନିଷେଧ କରିଥିଲେ । ଦୁଃଖର ବିଷୟ ଯେ ଆଜି ଅଧିକାଂଶ ଶିଖ ମିଲିଟେରିରେ ପଶି ସାହେବମାନଙ୍କ ସଂସ୍ପର୍ଶରେ ଆସି ମହା ମଦୁଆ ହୋଇ ପଡ଼ିଛନ୍ତି । ସ୍ତ୍ରୀମାନଙ୍କୁ ପର୍ଦ୍ଦାରେ ରଖିବା ଏମାନେ ଉଠାଇ ଦେଇଥିଲେ । ତୀର୍ଥଯାତ୍ରା ଏମାନେ ବନ୍ଦ କରିଥିଲେ । ଘରଚର ପବିତ୍ର ନଦନଦୀ ଏମାନେ ମାନୁ ନ ଥିଲେ । ଏ ସବୁ ଦେଖିଲେ ମନେ ହୁଏ ଆମର ଅଲେଖ ଧର୍ମ ମଧ୍ୟ ଏକ ପ୍ରକାର ଏହି ଶିଖଧର୍ମ । ଏହି ଧର୍ମରେ ଗୁରୁ ମାନନ୍ତି, ଦେବଦେବତା, ମୂର୍ତ୍ତିପୂଜା ମାନନ୍ତି ନାହିଁ, ଜାତିଭେଦ ନାହିଁ, ନିଶା-ନିବାରଣାଦି ଅଛି ।

ଶିଖମାନଙ୍କର ଗୋଟିଏ ସ୍ୱତନ୍ତ୍ର ଭାଷା ଅଛି । ତାହା ପଞ୍ଜାବୀ ଏବଂ ସେହି ଭାଷା ଲିଖିତ ହୁଏ ଗୁରୁମୁଖୀ ଲିପିରେ । ସେଥିରେ ଛତିଶଟି ଅକ୍ଷର ଅଛି ।

ଶିଖଗୁରୁମାନେ ସାଦାସିଧା ଲୋକ ଥିଲେ ଏବଂ ସେମାନେ ଲୋକଙ୍କର, ଜନତାର ଭାଷାରେ ହିଁ କଥାବାର୍ତ୍ତା କରୁଥିଲେ, ଉପଦେଶ ଦେଉଥିଲେ । ସେମାନେ ବଡ଼ ବଡ଼ ସାଧୁ ସଂସ୍କୃତ ଭାଷା ବ୍ୟବହାର କରୁ ନ ଥିଲେ । ଗୁରୁ ଅମର ଦାସ କହୁଥିଲେ, ସାଧୁଭାଷା କୂଅପାଣି । କୂଅରୁ ଜଳ ନେଇ କେତେ ଜମିରେ ପାଣି ଦେଇ ହେବ ? ଲୋକକଥିତ ଭାଷା ଆକାଶର ବର୍ଷାଧାରା, ତଦ୍ୱାରା ବହୁ ଜମି ଜଳସିଞ୍ଚିତ ହୋଇପାରିବ ।

ଗୁରୁ ଅର୍ଜୁନ ଶିଖ ଗ୍ରନ୍ଥରେ ଅନେକ ପରିବର୍ତ୍ତନ ଆନୟନ କରିଥିଲେ । ସେ ଅନେକ ପଦ୍ୟ ଯାହା କି ପୂର୍ବ ଶିଖ-ଗୁରୁମାନଙ୍କର ଉପଦେଶର ବିରୋଧୀ ତାହା ଚୁଗାଇ ଦେଇଥିଲେ ତାଙ୍କର ଗ୍ରନ୍ଥରେ ।

ଗୁରୁ ତେଗ୍‌ବାହାଦୁର ଗୁରୁ ଗୋବିନ୍ଦ ସିଂହଙ୍କର ପିତା । ତାଙ୍କୁ ଆଉରଙ୍ଗଜେବ ବନ୍ଦୀ କରି ପରେ ସେ ମୁସଲମାନ ନ ହେବାରୁ ତାଙ୍କ ଶରୀରକୁ ଚାରିଗଡ଼ କରି ଦିଲ୍ଲୀର ଚାରି ଦରବାଜାରେ ଟାଙ୍ଗି ଦେଲେ । ଆଜମୀର ଦରବାଜା, ଦିଲ୍ଲୀ ଦରବାଜା, ଲାହୋର ଦରବାଜା, କାଶ୍ମୀର ଦରବାଜା—ଏହି ଚାରି ଦରବାଜାରେ ଚାରିଖଣ୍ଡ ଟାଙ୍ଗି ଦେଲେ ।

ଆଉରଙ୍ଗଜେବ, ଗୁରୁ ତେଗ୍ ବାହାଦୁରଙ୍କ ପୁଅ ଗୁରୁ ଗୋବିନ୍ଦ ସିଂହଙ୍କୁ ପଞ୍ଜାବରୁ ତଡ଼େଇଲେ ଏବଂ ଚାରି ସ୍ୱରଟା ପୁଅଙ୍କୁ ମାରି ପକାଇଲେ । ଗୁରୁ ଗୋବିନ୍ଦ ଅରଣ୍ୟରେ ବାରବର୍ଷ ଅଜ୍ଞାତ ବାସ କଲେ । ଗୁରୁ ଗୋବିନ୍ଦ ସିଂହଙ୍କ ବଂଶ ନିପାତ ହେଲେ । ତଥାପି ଗୁରୁ ଗୋବିନ୍ଦ ସିଂହ ନତଗ୍ରୀବ ନିରସ୍ତବନ୍ଦା ।

ଗୁରୁ ଗୋବିନ୍ଦ ଆପଣାକୁ ମହା ବ୍ରହ୍ମଜ୍ଞ ବା ବଡ଼ ପଣ୍ଡିତ ବୋଲି କେବେ ବୋଲାଉ ନ ଥିଲେ । ପ୍ରକୃତରେ ତାଙ୍କର ବିନୟ ବଡ଼ ବେଶୀ ଥିଲା ।

ଗ୍ରନ୍ଥସାହେବରେ ପ୍ରାୟ ସବୁ ଗୁରୁ-ମାନଙ୍କ ରଚନା ଅଛି । ବିଶେଷତଃ ନାନକ, ଅଙ୍ଗଦ, ଅମର, ରାମଦାସ, ଅର୍ଜୁନ, ତେଗ୍ ବାହାଦୁର, ଗୋବିନ୍ଦ

ସିଂହଙ୍କର । ଗୁରୁ ଗୋବିନ୍ଦ ସିଂହଙ୍କର ଜପଜୀ, ଅକାଳ ଉସ୍ତାତ ବା ସୃଷ୍ଟିକର୍ତ୍ତା, ବଚିତ୍ର ନାଟକ, ଅର୍ଥାତ୍ ଯେଉଁଥିରେ ଗୁରୁ ଗୋବିନ୍ଦ ତାଙ୍କ ଜୀବନର ସବୁ ଇତିହାସ ଲେଖିଅଛନ୍ତି—ଏ ସବୁ ପାଠ କରିବା ଉଚିତ । ଆହୁରି ଅନେକ ଗ୍ରନ୍ଥ ଅଛି ଯଥା ଦେବୀମାହାତ୍ମ୍ୟ ( ମାର୍କେଣ୍ଡେୟ ପୁରାଣର ଦୁର୍ଗାଙ୍କ ସ୍ତବସ୍ତୁରେ ଲେଖା ), ଜ୍ଞାନପ୍ରବୋଧ ( ଏଥିରେ ଚଉବିଶ ଜଣ ଶକ୍ତିଶାଳୀ ଦେବତାଙ୍କ ବର୍ଣ୍ଣନା ଅଛି), ସବୈୟ ଅର୍ଥାତ୍ ଧର୍ମସଙ୍ଗୀତ, ଈଶ୍ୱରଙ୍କ ସ୍ତୁତି ଏବଂ ପିତୃଳପୂଜା ଏବଂ ଠକାମିର ବିରୁଦ୍ଧରେ । ଶସ୍ତ୍ର ନାମମାଳା—ଏଥିରେ ଅସ୍ତ୍ର ଆଉ ଶସ୍ତ୍ରର ଚାଳନା ଆଉ ବର୍ଣ୍ଣନା ଅଛି । ସ୍ତ୍ରୀଚରିତ୍ର ବିଶେଷତଃ ଚତୁରୀ ସ୍ତ୍ରୀଲୋକମାନଙ୍କ ଇତିହାସ । ଜଫରନାମ— ଏଥିରେ ଗୁରୁ ଗୋବିନ୍ଦଙ୍କର ଆଉରଙ୍ଗଜେବଙ୍କୁ ଚିଠି ଏବଂ ପାରସ୍ୟ ଭାଷାରେ କେତେଗୁଡ଼ିଏ ଗଳ୍ପ ପଦ୍ୟରେ ଲିଖିତ ଅଛି । ଏହି ଜଫରନାମାଗ୍ରନ୍ଥ ଗୁରୁ ଗୋବିନ୍ଦଙ୍କ ମୃତ୍ୟୁ ପରେ ଭାଇ ମାନସିଂହ ସଙ୍କଳନ କରିଥିଲେ ।

ଶିଖମାନଙ୍କ ଭିତରେ ଦୁଇଭାଗ ଅଛି । ଯଥା—(୧) ସହଜଧାରୀ, (୨) ସିଂହ । ସିଂହମାନେ ଗୁରୁ ଗୋବିନ୍ଦ ସିଂହଙ୍କ କୃପାଣବୁଡ଼ା ଜଳରେ ଦୀକ୍ଷିତ ।

ସହଜଧାରୀମାନଙ୍କ ଭିତରେ ପୁଣି ତିନି ଦଳ । ଯଥା—

(୧) ଉଦାସୀ, ଏହା ଶ୍ରୀ ଚନ୍ଦ ସ୍ଥାପିତ । ଏ ଗୁରୁ ନାନକଙ୍କ ପୁତ୍ର ।

(୨) ରାମରାୟୀ—ଭକ୍ତ ରାମରାୟ ଗୁରୁ ହରି ରାୟଙ୍କ ପୁତ୍ର ।

(୩) ହଣ୍ଡାଳୀ ।

ଶିଖ ଗୁରୁମାନେ ନିଜେ ଲେଖି-ଯାଇଛନ୍ତି । ଯୀଶୁ, ମହମ୍ମଦ, ବୁଦ୍ଧ ନିଜେ ଲେଖିପାରି ନ ଥିଲେ ।

ଶିଖମାନେ କେବଳ ଈଶ୍ୱରଙ୍କୁ ମାନନ୍ତି—ଅନ୍ୟ କୌଣସି ଦେବତାଙ୍କୁ ନୁହଁନ୍ତି । ଶିଖଗୁରୁ କହନ୍ତି ସଂସାର ତ୍ୟାଗ ନ କରି ମଧ୍ୟ ଚିରନ୍ତନ ସୁଖ ମିଳେ ।

ଗୁରୁ ନାନକ ୧୪୬୯ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ନାନକଙ୍କର ସ୍ମୃତି ଯେଉଁଠାରେ ଅଛି, ତାହା ଆଜି ପାକିସ୍ଥାନରେ । ନାନକାନା ସାହେବ ତାକୁ କହନ୍ତି । ଲାହୋର ନିକଟରେ ଏହା ଅବସ୍ଥିତ ।

ଗୁରୁଗୋବିନ୍ଦଙ୍କ ଜବାଣୀ ଛ' ରାଗ ଏବଂ ଦୁଇ ain, ascending and descending note ରେ ବର୍ଣ୍ଣିତ ହୋଇଛି ।

ଗୁରୁମାନେ ଯେଉଁସବୁ ଗୀତ ଲେଖିଛନ୍ତି, ସେ ସବୁରେ ନିମ୍ନଲିଖିତ ରାଗ ପ୍ରୟୋଗ କରାଯାଇଅଛି । ଯଥା—ଶ୍ରୀ, ମାଝ, ଗୌରୀ, ଆଶା, ଗୁଜରୀ, ଦେବଗାନ୍ଧାରୀ, ବିହାଗ, ଉଆଧନସ୍, ସୋରଂ, ଧନାଶ୍ରୀ, ଜୈତସାରି, ଟୋଡ଼ି, ବୈରାରି, ତିଳଙ୍ଗ, ସୁହି, ବିଲାବଲ, ଗୌଣ୍ଡ, ରାମକାଳୀ, ନଟ, ମାଳୀଗୌଡ଼ା, ମାରୁ, ତୁଖାରି, କେଦାରା, ଭୈରୋବସନ୍ତ, ସାରଙ୍ଗ, ମଲାର, କନାଡ଼ା, କଲ୍ୟାଣ, ପ୍ରଭାତୀ, ଜୈଜୟନ୍ତୀ ।

ଗୁରୁଗୋବିନ୍ଦ ଖାଲ୍‌ସା ସଂପ୍ରଦାୟର ଜନକ ।

ଯେଉଁ ଶିଖ୍‌ଜାତିର ପ୍ରଥମ ଗୁରୁ ଗୁରୁ ନାନକ—ସେହି ନାନକ ପୃଥିବୀରେ ଥିଲାବେଳେ ଜଣେ ବ୍ରାହ୍ମଣ ଆସି ତାଙ୍କ

ବୁଜି ରହିଥିଲା । ସେ କହୁଥାଏ ଯେ ସେ ମନଶ୍ଚକ୍ଷୁରେ ସବୁ ଦେଖିପାରୁଛି । ନାନକ ତାଙ୍କ ପଛରେ ଲୋଟାଟି ଲୁଚାଇ ରଖି ତାଙ୍କୁ ପଚାରିଲେ, ମୋ ଲୋଟାଟି କେଉଁଠି ଅଛି କହିଲ ? ସେ କିଛି କହି ପାରିଲେ ନାହିଁ । ତେଣୁ ନାନକ କହିଲେ, ଏ ଯୁଗ ସେ ଯୁଗ ନୁହେଁ । ଆଜି ଯୋଗୀ ପଦ୍ଧତିରେ ଆମର ପରିଚୟ ନାହିଁ । ଏ ସତ୍ୟର ପଥ ନୁହେଁ । ସତ୍ୟପଥକୁ ଧର । ଜଗତରେ ଧର୍ମସ୍ଥାନଗୁଡ଼ିକ ପତିତ ହୋଇଛି । ଏ ପୃଥିବୀ ଧ୍ୱସ୍ତ ହୋଇ ଯାଇଛି । ଏ କଳିଯୁଗରେ ଭଗବାନଙ୍କ ନାମ ହିଁ ସାର ।

ହରେର୍ନାମୈବ କେବଳମ୍ ।

ତୁମେ ଆଖି ବୁଜି ନାକ ବନ୍ଦ କରି ଲୋକଙ୍କୁ ଠକାଇବାର ଚେଷ୍ଟା ଛାଡ଼ିଦିଅ । ତୁମେ ନାକରେ ଆଙ୍ଗୁଳି ପୂରାଇ ଆଖି ବୁଜି ବସି କହୁଛ, ତୁମେ ତ୍ରିଭୁବନ ଦେଖୁଛ । ଅଥଚ ତୁମ ପଛରେ ମୋ ଲୋଟାଟି ଅଛି ଦେଖି ପାରୁନାହିଁ ।

ଗୋଇଣ୍ଡୱାଲଠାରେ (ଲାହୋରଆଡ଼େ) ଥରେ ନାନକ କେଉଁଠି ଆଶ୍ରୟ ପାଇଲେ ନାହିଁ । ଶେଷରେ ଗୋଟିଏ କୁଷ୍ଠରୋଗୀଠାରେ ଆଶ୍ରୟ ପାଇଲେ । କୁଷ୍ଠରୋଗୀ ଈଶ୍ୱରଙ୍କୁ ଧନ୍ୟବାଦ ଦେଲେ ଏବଂ କହିଲେ ମୁଁ ଆଜି ବଡ଼ ଭାଗ୍ୟବାନ୍, ଏତେଦିନେ ମୁଁ ମାନବ ମୁଖ ଦର୍ଶନ କରିବାର ସୌଭାଗ୍ୟ ପାଇଲି । ମୋଠାରୁ ତ ଅନ୍ୟ ଜୀବଜନ୍ତୁ ମଧ୍ୟ ଦୂରକୁ ପଳେଇ ଯାଇଛନ୍ତି । ନାନକଙ୍କୁ ଦେଖି ସେ କୁଷ୍ଠରୋଗୀ ଆତୁର ବିଚଳିତ ହୋଇ କହିଲେ, ହେ ପ୍ରଭୁ ! ମୁଁ କେଡ଼େ ପାପୀ !

ନାନକ ଗୀତ ଗାଇ ଗାଇ କହିଲେ—

ବିଚଳିତ ମୋର ମନ ହି ବହୁ କଥାରେ
ଯାଉଛି ଏ ଶରୀର ବିଚଳିତ ହୋଇ
ଦିନୁଁ ଦିନୁଁ ଏହା ଝରେ ।
(ମାତ୍ର) ଯେଉଁ ଶରୀର ଭୁଲିଯାଏ
ଭଗବତ୍ ବାଣୀ
ସେହି ସିନା ଏକ ଚତ୍କାରେ
କୁଷ୍ଠରୋଗୀ ପରାଏ ।
ଜାଣନ୍ତି ବିଭୁ ଆମ ମନକଥା
ଫେଡ଼ିବେ ସେ ଆମ ଦୁଃଖ
ଲାଗିବ ଯେବେ ତାଙ୍କୁ ବ୍ୟଥା ।
ସେହି ତ ଦେଇଛନ୍ତି ଏହି ଦେହ,
ଶ୍ରବଣ, ଚକ୍ଷୁ, ଘ୍ରାଣେନ୍ଦ୍ରିୟ
ସେହି ତ ଦେଇଛନ୍ତି ରସନା
ଯାହା ସେନ କହୁଛୁଁ କଥା ।
ସେହି ତ ଆଣିଛନ୍ତି ବାହାରକୁ
ଉଦର ଭିତରୁ ଅଗ୍ନି ପରୀକ୍ଷା ପରେ
କାହିଁକି ତେବେ ଦୁଃଖ ଏତେ
ସେହି ତ ଆମକୁ ଶିଖାଇଛନ୍ତି
ସ୍ନେହ ମାୟା ମମତା ।
ସେହି ତ ଦେଇଛନ୍ତି ଆମକୁ
ସୁସ୍ୱାଦୁ ରସଫଳ
ମାତ୍ର ତାଙ୍କ ବିନେ ଏ ସବୁ
ତୁଚ୍ଛ, କଳା, ହୀନ ।
କଳଙ୍କ ଭରି ମୁଖ ଯଦି ଚାଲିଯାଉଁ
ଏ ସଂସାରଠୁଁ
ଭଗବତ୍ ସମାନେ ବସିବାକୁ
ସ୍ଥାନ ମିଳିବ ଅବା କାହୁଁ ।
ମାତ୍ର ଭଗବତ୍ ନାମ ଉଚ୍ଚାରି ବାରବାର
ଲଭେ ଯେବେ ସେ ଅନୁଗ୍ରହ ତାଙ୍କର
ମରିଗଲେ, ବୁଡ଼ିଗଲେ ହି ପାପପଙ୍କେ
ନିଶ୍ଚେ କରିବେ ସେହି ଉଦ୍ଧାର ।

ଯେଉଁ ଏକା ଜଗତକରତା
ଦୟାମୟ ପ୍ରଭୁ ଭଗବାନ
ନାନକ କହଇ ଆନନ୍ଦମୟ ସେହି
ସକଳ ଭୂପଙ୍କାରେ ନିଗମନ ।

ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ନାନକ ଯେତେବେଳେ ସେ କୁଷ୍ଠରୋଗୀକୁ ଛୁଇଁ ଚାଲଗଲେ, ଉକ୍ତ କୁଷ୍ଠରୋଗୀ ଭଲ ହୋଇଗଲା । ସାଧୁଲୋକମାନଙ୍କର ସଙ୍ଗ ଚନ୍ଦନ ଲେପନ ଅଟେ । ଶୁଣାଯାଏ ମାନସ ସରୋବରରେ ସ୍ନାନ କଲେ କୁଷ୍ଠ-ରୋଗ ଦୂରହୁଏ । ନାନକଙ୍କ ଜନ୍ମ ବାବରଙ୍କ ସମୟରେ ।

ଶିଖଜାତିର ଇତିହାସରେ ଦଶଗୁରୁ ହୋଇଛନ୍ତି । ତା'ପରେ ଗୁରୁ ସମ୍ପ୍ରଦାୟ ବନ୍ଦ ହୋଇଛି । ଗୁରୁ ଗୋବିନ୍ଦଙ୍କ ପରେ ଶ୍ରୀଗୁରୁଗ୍ରନ୍ଥ ହିଁ ହିନ୍ଦୁ ଶିଖଜାତିର ଗୁରୁସ୍ଥାନ ଅଧିକାର କରି ବସିଛି । ଯେଉଁ ଦଶଗୁରୁଙ୍କ କଥା କୁହାଗଲା, ସେମାନଙ୍କର ନାମ ଓ କ୍ରମ ନିମ୍ନରେ ଦିଆଗଲା ।

(୧) ନାନକ, (୨) ଅଙ୍ଗଦ, (୩) ଅମର, (୪) ରାମଦାସ, (୫) ଅର୍ଜୁନ, (୬) ହରିଗୋବିନ୍ଦ, (୭) ହରିରାୟ, (୮) ହରିକୃଷ୍ଣ, (୯) ତେଗ୍‌ବାହାଦୁର ଓ (୧୦) ଗୋବିନ୍ଦ ।

ଶିଖଜାତିର ଶୌଚ କଣ ? ଉତ୍ତର — ଗୁରୁର ଉପଦେଶ ଶୁଣିବା ଏବଂ ମାନିବା ଏବଂ ତଦ୍ୱାରା ମନର ମଳକୁ ଧୌତ କରିଦେବା । ଶିଖର ଶନ୍ଧ୍ୟା କଣ ? ଉତ୍ତର—ଗୁରୁଙ୍କ ବଚନମାଳା କଣ୍ଠରେ ବନ୍ଧନ କରିବା । ଶିଖର ଜୀବନ କଣ ? ଉତ୍ତର— ଜୀବିତ ଅବସ୍ଥାରେ ମୃତ ପରି ରହିବା ଏବଂ ସକଳ ଅହଂକାର ତ୍ୟାଗ କରିବା । ଶିଖର କର୍ତ୍ତବ୍ୟ କଣ ? ଉତ୍ତର—ଗୁରୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରିବା ।

ବାସ୍ତବିକ ପ୍ରକୃତ ଶିଖ ଅନ୍ୟର ନିନ୍ଦା ଶ୍ରବଣ କଲାବେଳେ ନିଜକୁ କହିବେ— ମୋଠାରୁ ଅଧିକ ଖରାପ ଲୋକ କେହି ନାହିଁ ।

ଗୁରୁ ନାନକ ତାଙ୍କର ଧର୍ମସ୍ଥାପକ ଦୁଇଟି ଉଦ୍ଦେଶ୍ୟ ଘେନି ରଚନା କରିଥିଲେ । ଗୋଟିଏ ଧର୍ମକଥା, ଦୁଇ, ସଂଘଗଠନ । ଏହି ସଂଘଗଠନ ବା ଭ୍ରାତୃତ୍ୱ ହିଁ ସଙ୍ଗତ । ଏହି ସଙ୍ଗତ ସାହାଯ୍ୟରେ ସ୍ଥିରଆଡ଼େ ଗୋଟିଏ ଗୋଟିଏ ସ୍ୱାମୀସ୍ଥ ସଭା ଗଢ଼ି ଉଠିଲା ଏବଂ ଏହି ସଭାର ନେତା ଯେ ହେଲେ ତାଙ୍କୁ ମସନ୍ଦ କୁହାଗଲା ।

ଶିଖ୍‌ମାନେ ଝଟକା କରି କାଟି ଛେଳି ବା ପକ୍ଷୀର ମାଂସ ଖାଆନ୍ତି; ଆଉ ମୁସଲମାନ୍‌ମାନେ ହଲାଲ କରି ଜୀବଜନ୍ତୁର ମାଂସ ଖାଆନ୍ତି ।

ଗୁରୁ ଗୋବିନ୍ଦଙ୍କ ଜୀବନକାଳକୁ ପ୍ରଧାନତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ୧୬୭୫ରୁ ୧୬୯୫, ପୁଣି ୧୬୯୫ରୁ ୧୭୦୮ । ପ୍ରଥମ ଭାଗରେ ସେ ଗୋଟିଏ ଶିଖ୍‌ଜାତି ଗଢ଼ିବାରେ ଲାଗିଲେ । ଦ୍ୱିତୀୟଭାଗରେ ସେ ସମସ୍ତ ଯୁଦ୍ଧ ବ୍ୟାପାରରେ ଲାଗିଲେ । ଗୁରୁ ଗୋବିନ୍ଦଙ୍କ ପରେ ୧୭୦୮ରୁ ୧୭୧୭ ପର୍ଯ୍ୟନ୍ତ ବନ୍ଦା ଯୁଦ୍ଧରେ ଲାଗିଲେ । ଆଉ ପରେ ରଣଜିତ୍ ସିଂହ ତ ସମଗ୍ର ପଞ୍ଜାବ, ଉତ୍ତରପଶ୍ଚିମ ପ୍ରାନ୍ତ ପ୍ରଦେଶ ପୁଣି କାଶ୍ମୀର ମଧ୍ୟ ଜୟ କରିଥିଲେ ।

ଗୁରୁ ଗୋବିନ୍ଦ ସିଂହ ଯେତେବେଳେ ୧୭୦୧ ସାଲରେ ଆନନ୍ଦପୁରରେ

ଦେଶଉରେ ପଡ଼ିଗଲେ, ସେତେବେଳେ ଖାଦ୍ୟର ଅଭାବ ହେଲା । ଚାଳିଶ ଜଣ ଶିଖ୍ ତାଙ୍କୁ ଛାଡ଼ି ଚାଲିଗଲେ ଗ୍ରାମକୁ । କିନ୍ତୁ ସେମାନଙ୍କର ସ୍ତ୍ରୀମାନେ ଦୁଃଖକଲେ, ପୁଣି ସେହି ପୁରୁଷମାନେ ଗୁରୁଗୋବିନ୍ଦଙ୍କ ପାଖକୁ ଫେରିଆସିଲେ ।

ମାଣ୍ଡଭାଗୋ ନାମକ ସ୍ତ୍ରୀଲୋକ ଗୁରୁ ଗୋବିନ୍ଦଙ୍କ ଠାରେ ତାଙ୍କର ପାଠକର କାର୍ଯ୍ୟ କରୁଥିଲେ ।

ସୁଖମଣି ନାମକ ଗୀତ ଶିଖ୍‌ମାନେ ତାହାର ମୃତ୍ୟୁସମୟରେ ପଢ଼ନ୍ତି ।

ଶିଖ୍‌ମାନଙ୍କ ବିବାହ ପଦ୍ଧତିରେ ଆନନ୍ଦ ବିବାହ ନାମକ ଗୋଟିଏ ବିବାହ ଅଛି । ସେଥିରେ ଉଭୟ ପକ୍ଷର ଲୋକ ଗୁରୁଗ୍ରନ୍ଥ ସାହେବ ସମ୍ମୁଖରେ ଉପସ୍ଥିତ ହୋଇ ଗୁରୁ ଅମର ଦାସଙ୍କ କୃତ ଛ'ଟି ପଦ୍ୟ ପାଠ କରନ୍ତି ।

ଶିଖ୍ ଜାତିରେ ଚାରୋଟି ତକ୍ତ ବା ସିଂହାସନ ଅଛି ।

୧—ଅକାଲ୍ ତକ୍ତ ଅମୃତସରରେ
୨—ପାଟନା ସାହେବ
୩—କେଶଗଡ଼ ଆନନ୍ଦପୁର ଠାରେ (ପଞ୍ଜାବ)
୪—ହଜୂର୍ ସାହେବ ନନ୍ଦେରଠାରେ (ହାଇଦ୍ରାବାଦ ଦକ୍ଷିଣ)

ଗୁରୁଦ୍ୱାରର ପତାକା ହଳଦିଆ ବା ଗାଢ଼ ନାଲ ରଙ୍ଗର । ସେଥିରେ ଗୋଟିଏ ଉଭୟ ପାଖରେ ଧାରଥିବା ତରବାରି ।

ଶିଖ୍‌ମାନଙ୍କ ଭିତରେ ଯେଉଁମାନେ ତ୍ୟାଗୀ ମିଶନାରୀ, ସେମାନେ ନିମ୍ନ ଶ୍ରେଣୀମାନଙ୍କରେ ବିଭକ୍ତ—

(୧) ଉଦାସୀ ବା ସହଜଧାରୀ ମହନ୍ତ, ନିର୍ମଳା, ବେଦୀ, ଶୋଧି, ସିଂହ, ସଭ୍ୟ, ମିଳା, ଧୀରମାଳିଆ, ରାମରାୟୀ ପ୍ରଭୃତି ।

ଗୁରୁ ଅଙ୍ଗଦ ଗୁରୁମୁଖୀ ଅକ୍ଷର ବାହାର କଲେ ।

ଗୁରୁ ଗୋବିନ୍ଦ ଗୁରୁ ପଦରେ ଅଧିଷ୍ଠିତ ହେଲେ ଫେବୃଆରୀ ମାସରେ ୧୬୭୬ ଖ୍ରୀଷ୍ଟାବ୍ଦରେ । ଏଥିପାଇଁ ଗୋଟିଏ ଅତି ଉଚ୍ଚ ପ୍ରାସାଦ ନିର୍ମିତ ହୋଇଥିଲା ।

ତେଗ୍ ବାହାଦୁରଙ୍କ ଚିତାରେ ଚନ୍ଦନ କାଠ ଦେଇ ଗୁରୁ ଗୋବିନ୍ଦ ଚିତା ଜାଳିଲେ । ଦଶ ଦିନ ପର୍ଯ୍ୟନ୍ତ ଗୁରୁଗ୍ରନ୍ଥ ସାହେବ ପଢ଼ାହେଲା ।

ଗୁରୁ ଗୋବିନ୍ଦ ଲାହୋରରୁ ଶିକ୍ଷ୍ ଗୁରୁ ଅଣାଇ ଅତି ପରିଶ୍ରମ କରି ଶର ଧନୁର୍ବିଦ୍ୟା ଭଲ କରି ଅଭ୍ୟାସ କଲେ ।

ଗୁରୁ ଗୋବିନ୍ଦଙ୍କ ସାତ ଜଣ ଶରୀରରକ୍ଷୀ ଥିଲେ ।

* * *

# ଆନନ୍ଦ

ଆନନ୍ଦ—ଅମୃତୋଦନଙ୍କ ପୁତ୍ର । (ଅମୃତୋଦନ ବୁଦ୍ଧଙ୍କର ପିତାଙ୍କର ଭାଇ)

ବୁଦ୍ଧ—ତାଙ୍କ ମୁଖରେ ବୁଦ୍ଧତ୍ୱର ବତିଶଟା ଲକ୍ଷଣ ସବୁ ଥିଲା ।

ଆନନ୍ଦ—ତାଙ୍କ ମୁଖରେ ବୁଦ୍ଧତ୍ୱର ଏକତିରିଶଟା ଲକ୍ଷଣ ଥିଲା । ଗୋଟିଏ ଲକ୍ଷଣ କମ୍ ଥିଲା । ସେଥିପାଇଁ ସେ ବିପଦରେ ପଡ଼ିଥିଲେ । ସ୍ତ୍ରୀଲୋକମାନେ ବୁଦ୍ଧଙ୍କୁ ମହାମାନବ ରୂପରେ ଦେଖୁଥିଲେ । କିନ୍ତୁ ଆନନ୍ଦଙ୍କର ମୁଖର ନମ୍ରତା ଯୋଗୁଁ ସ୍ତ୍ରୀଲୋକମାନେ ତାଙ୍କ ପ୍ରତି ଆକୃଷ୍ଟ ହେଉଥିଲେ ।

ଏକ ସମୟରେ ଜେତବନରେ ବୁଦ୍ଧ ରହୁଥିଲେ । ସେହି ସମୟରେ ଦିନେ ସକାଳେ ଆନନ୍ଦ ଶ୍ରାବସ୍ତୀ ନଗରକୁ ଭିକ୍ଷା ପାଇଁ ଯାଇଥିଲେ । ଏହି ଶ୍ରାବସ୍ତୀନଗରର ଜେତବନଠାରୁ ଏକ କୋଶ ହେବ । ଆନନ୍ଦ ଭିକ୍ଷା ସଂଗ୍ରହ କରି ଖାଇସାରି ଜେତବନକୁ ଫେରୁଥିଲେ । ବଜାର ପାଖରେ ଗୋଟିଏ ବଡ଼ ପୁଷ୍କରଣୀ ଥିଲା । ସେହିଠାରେ ଅସଂଖ୍ୟ ଲୋକ ଏକତ୍ର ହେଉଥିଲେ ଏବଂ ପଡ଼ିଁସପଡ଼ିଁଶ ଗାଧୁଆ ପାଧୁଆ କରୁଥିଲେ । ବଜାର ମଝିରେ ଗୋଟିଏ କୂଅ ଥିଲା । ଜଣେ ସ୍ତ୍ରୀଲୋକ ସେହି କୂଅରୁ ପାଣି କାଢ଼ୁଥିଲା । ସେହି ସ୍ତ୍ରୀଲୋକଟି ଗୋଟିଏ ଚଣ୍ଡାଳୀ କନ୍ୟା ।

ପାଣି ନେଇ ସେହି ଚଣ୍ଡାଳୀକନ୍ୟା ଯେତେବେଳେ ଫିବାକୁ ଉଦ୍ୟତା, ସେହି ସମୟରେ ଆନନ୍ଦ ତାଙ୍କୁ ଜଳ ମାଗିଲେ—କହିଲେ, ହେ ମୋର ଭଗିନି ! ମୁଁ ବଡ଼ ତୃଷାର୍ତ୍ତ । ମୋତେ ପିଇବାକୁ ଟିକିଏ ଜଳ ଦିଅ ।

ଚଣ୍ଡାଳୀ—ହେ ପୂଜ୍ୟପାଦ (monk), ଜଳ ମୁଁ ମନା କରିବ ନାହିଁ, ମାତ୍ର ମୁଁ ଯେ ଚଣ୍ଡାଳୀକନ୍ୟା । ତେଣୁ ମୁଁ ଜଳ ଦେବାକୁ ଭୟ କରୁଛି । ମୋର ଏହି ଜଳଦାନରେ କୌଣସି ପୁଣ୍ୟ ହେବ ନାହିଁ ।

ଆନନ୍ଦ—ହେ ମୋର ଭଗିନି ! ମୁଁ ଯେ ଜଣେ ଭିକ୍ଷୁ ! ଭିକ୍ଷୁଠାରେ ଜାତିଭେଦ ନାହିଁ । ସେ ସମସ୍ତଙ୍କୁ ସମାନ ଚକ୍ଷୁରେ ଦର୍ଶନ କରେ । ମୁଁ ତୃଷାର୍ତ୍ତ—ମୁଁ କେବଳ ଜଳ ଚାହେଁ । ମନାଏ ଜଳ ଦିଅ ମା ।

ତେଣୁ ମାତଙ୍ଗୀ ନିର୍ମଳ ଜଳ ଆନନ୍ଦଙ୍କୁ ପିଇବାକୁ ଦେଲା । ତହିଁ ଉତ୍ତାରୁ ସେ ଆନନ୍ଦଙ୍କର ପାଦଦ୍ୱୟ ଧୋଇଦେଲା ଏବଂ ନିଜର ମୁଣ୍ଡର ବାଳଦ୍ୱାରା ତାହାକୁ ପୋଛି ଦେଲା ଏବଂ ଏହା ପରେ ସେ ନିଜ ବକ୍ଷ ଭିତରେ ଗୋଟିଏ ପ୍ରେମର ମହା ଆକର୍ଷଣ ଅନୁଭବ କଲା ।

ଆନନ୍ଦ ସେହି କୂଅଠାରୁ ଚାଲିଗଲା ପରେ ଉକ୍ତ ଚଣ୍ଡାଳୀ ଜଳକଳସୀ ଘେନି ଘରକୁ ଫେରିଲା । ସେ ଏହି କଥା ତାର ମା'କୁ କହିଲା ।

ମାତଃ ! ଜନନି !
ସେ କି ଆବେଗ ଉଚ୍ଛ୍ୱାସ ମୋର !
କାହିଁକି ଏପରି ହେଲା, କହ ମା ମୋତେ
ମୁଁ ତ ପାଗଳମ୍ପ,
ଉନ୍ମତ୍ତ କରଣୀ ମନ ଏବେ ।
ଯଦି ତୁ ମା ମୋର ମାଆ ହୋଇଥିବୁ
ନିଟେଶ୍ଚୁ ତୋର ଯାଦୁବିଦ୍ୟାରେ
ଆନନ୍ଦଙ୍କୁ କରିବୁ ବଶ,
ଆଣିବୁ ତାଙ୍କୁ ମୋ ଠାବକୁ,
ମୁଁ ସେ ରହି ନ ପାରେଁ ଏବେ
ଆନନ୍ଦ ବିନା ।
ସୂଚନା କର ମା ସେ ମନ୍ତ୍ର ଯହିଁ ବଳେ
ଆନନ୍ଦଙ୍କୁ ଆଣି ପାରିବୁ ତୁ ଏଠାକୁ
ସେ ସମ୍ମୋହନ ମନ୍ତ୍ର
କର ତୁ ଏବେ ଶୀଘ୍ର ସୂଚନା ।
ଏତେକ କହି ଚହ୍ଲାଇଲା ମାତଙ୍ଗୀ
ଝୁରିଲା ଘନ ଘନ ବର୍ଷିଲା ନୟନୁଁ ଅଶ୍ରୁ
ଯେହ୍ନେ ଶ୍ରାବଣର କାସାର ।

ମାତା ପ୍ରବୋଧିଲା କହି—

ଦେଖ ମା, ଦୁଇପ୍ରକାର ଲୋକଙ୍କ-ଠାରେ ମୋର ସମ୍ମୋହନ ମନ୍ତ୍ର ଖାଟିବ ନାହିଁ ।

—ଏକ ଯେ ସମ୍ପୂର୍ଣ୍ଣ କାମନାଶୂନ୍ୟ ବ୍ୟକ୍ତି, ଦ୍ୱିତୀୟ ଯେ ମୃତ ।

ଆନନ୍ଦ ଭିକ୍ଷୁ, ତାଙ୍କର ଶକ୍ତି ଅସୀମ । ସେ ବୁଦ୍ଧଙ୍କର ପ୍ରଧାନ ଶିଷ୍ୟ ଏବଂ ଶ୍ରାବସ୍ତୀର ରାଜା ତାଙ୍କୁ ଭକ୍ତି କରନ୍ତି ।

ମୁଁ ଯଦି ମୋର ସମ୍ମୋହନ ମନ୍ତ୍ରଦ୍ୱାରା ଆନନ୍ଦଙ୍କୁ ବଶୀଭୂତ କରେଁ, ତାହାହେଲେ ରାଜା ପ୍ରସେନଜିତ ବଡ଼ କ୍ରୁଦ୍ଧ ହେବେ ଏବଂ ଆମର ଚୂଣ୍ଡାଳୀବଂଶ ଧ୍ୱଂସ ହେବ । ଆଉ ମୁଁ ଜାଣେ ଆନନ୍ଦ କାମନାଶୂନ୍ୟ ଓ ନିଷ୍କାମଙ୍କ ହୋଇଛନ୍ତି । ଯେଉଁମାନେ ଜନ୍ମ ମୃତ୍ୟୁ ଉଭୟକୁ ତ୍ୟାଗ କରିଛନ୍ତି, ସେପରି ଲୋକଙ୍କୁ ଆମର ଶ୍ରଦ୍ଧା ଭକ୍ତି କରିବାର କଥା । ଅତଏବ ଏପରି ଲୋକଙ୍କୁ ଆମେ କପରି ଯାଦୁମନ୍ତ୍ରଦ୍ୱାରା ବଶୀଭୂତ କରି ମହାପାପ ଅର୍ଜନ କରିବା ?

ଚୂଣ୍ଡାଳୀ କନ୍ୟା—ମା ! ତୁ ଯଦି ଆନନ୍ଦଙ୍କୁ ମୋ ପାଖକୁ ନ ଆଣିବୁ, ତାହାହେଲେ ମୁଁ ଏ ପ୍ରାଣ ଆଉ ରଖିବି ନାହିଁ । ଏ ଦେହ ତ୍ୟାଗ କରିଦେବି । ବଞ୍ଚିବାର ତେବେ ଆଉ ମୋର ଇଚ୍ଛା ନାହିଁ । ମୁଁ ନଈରେ ବୁଡି ମରିବି, ଆଉ ଆନନ୍ଦ ମଧ୍ୟ ବେଶି ଦିନ ବଞ୍ଚି ପାରିବେ ନାହିଁ । କାରଣ ମୋର ବାସନା ବଳଦ୍ୱାରା ମୁଁ ତାଙ୍କୁ ମୋ ପାଖକୁ ଟାଣି ଆଣିବି; କମ୍ବା ଯଦି ସେ ବଞ୍ଚି ରହିବେ, ତେବେ ବି ତାଙ୍କର ପ୍ରାର୍ଥନା ଶୁଣାଯିବ ନାହିଁ—ସାର୍ଥକତା ଲାଭ କରିବ ନାହିଁ ।

ଏ କଥା ଶୁଣି ମା ଚମକିଲା । କହିଲା, କି କଥା କହୁ ତୁ ଝିଅ ? ଛି ! ଛି ! ଏ କଥା ଯଦି କେହି ଶୁଣିବ, ସେ କହିବ କସ ? ଛି, ଛି ! ଭିକ୍ଷୁର ସମ୍ମାନରେ କଳଙ୍କ ଲଗାନା ମା ! ପାଗଳି ! ତୁ କଣ ହେଲୁ ? ଏହା ଶୁଣିଲାକ୍ଷଣି ମାତଙ୍ଗୀ ନଈ ଆଡ଼କୁ ଦଉଡ଼ିଗଲା । ଆଉ ଚିତ୍କାର କରି କହିବାକୁ ଲାଗିଲା—ହେ ନଦି ! ହେ ସ୍ରୋତସ୍ୱିନି ! ମୋର ମୃତ ଶରୀରକୁ ସେହି ଜେତବନକୁ ନେଇଯାଅ । ଯେପରି ଆନନ୍ଦ ମୋର ଏହି ମୃତ କପାଳ ଉପରେ ତାଙ୍କର ନୟନାଶ୍ରୁ ବର୍ଷଣ କରି ପାରିବ ।

ଏହା କହି ମାତଙ୍ଗୀ ଦଉଡ଼ିବାକୁ ଲାଗିଲା । ତା ପଛେ ଲୋକ ଦଉଡ଼ିଲେ ତାକୁ ଧରିବା ପାଇଁ । ଜଣେ ତାକୁ ଧରିଲା

ଆଉ ଘଟକୁ ଫେରାଇ ଆଣିଲା । ମାତଙ୍ଗୀ ଭୂଇଁରେ ଶୋକାଶ୍ରୁ ବିସର୍ଜନ କରି ଗଡ଼ିବାକୁ ଲାଗିଲା ।

ଏଥିରେ ମାତଙ୍ଗୀର ଜନନୀ ଉଦ୍ବିଗ୍ନା ହୋଇ ଆନନ୍ଦଙ୍କ ଉପରେ ମୋହନ ମନ୍ତ୍ର ପ୍ରେରିବାକୁ ଲାଗିଲେ—

ପ୍ରାଙ୍ଗଣରୁ ଉଠି ମାତଙ୍ଗୀ ମାତା,
ପିନ୍ଧିଣ ଶ୍ୱେତ ବସ୍ତ୍ର
ପୁଞ୍ଜୀକୃତ କଲା ବଳୀବର୍ଦ୍ଦ
ଗୋବର ଭୂମି ଉପରେ ।
ଏକାଠି କଲା ଝାଟି—
ଦେଲା ଲଗାଇ ନିଆଁ ସେଥି
ମଞ୍ଜୁଷକ ପାଖୁଡ଼ା ଅଷ୍ଟୋତ୍ତର ଶତକ
ତହିଁ ନିକ୍ଷେପିଲା ଗୋଟି ଗୋଟି ।
ଘୂରି ଘୂରି ଅଗ୍ନି ଚାରିପାଖେ
ଆଉ ଉଚ୍ଚାରିଲା ମନ୍ତ୍ର ବାରମ୍ବାର,
ଅମଳୀ ବିମଳୀ
କୁକୁପ୍ସ ସମପ୍ସ ହିତମପ୍ସ
ମରଜ ସମଳୀ ହିତମଧୀ ।
ହେ ସ୍ୱର୍ଗର ଦେବତାଗଣ,
ହେ ପାତାଳର ରାକ୍ଷସଗଣ,
ହେ ଗଗନ ଭୂତଗଣ !
ଶୁଣ ମୋର ମନ୍ତ୍ର—ହିଅ ଆଣି
ଶୀଘ୍ର ମୋ ହାତକୁ ଭିକ୍ଷୁ ଆନନ୍ଦ ।

ଆନନ୍ଦ ଭିକ୍ଷାରେ ବାହାରିଥିଲେ—ଭିକ୍ଷା ମାଗୁଁ ମାଗୁଁ ସେ ଚାଣ୍ଡାଳୀ ଘରେ ଉପସ୍ଥିତ ହେଲେ । ସେ ସେଠି ଠିଆ ହେଲେ ଏବଂ ଭିକ୍ଷାପାତ୍ରକୁ ଭିକ୍ଷା ପାଇଁ ବଢ଼ାଇ ଦେଲେ ।

ମାତଙ୍ଗୀର ମାତା ଏହା ଦେଖିଲା ଏବଂ ତାଙ୍କ ଦୁଆରବନ୍ଧ ପାଖରେ ଆନନ୍ଦଙ୍କୁ ଛିଡ଼ା ହେବାର ଦେଖି ତାର ଆନନ୍ଦର ସୀମା ରହିଲା ନାହିଁ; କନ୍ୟା



ସେହି ଆନନ୍ଦଙ୍କୁ ବସ୍ତ୍ର ଭିତରେ ଲୁଚାଇ ରଖି ସେ ଆନନ୍ଦଙ୍କୁ ପୂଜା କରିବାକୁ ଲାଗିଲା ଏବଂ କହିଲା—

ସ୍ୱାଗତ, ସ୍ୱାଗତ ହେ ସାଧୁ ଭିକ୍ଷୁ ଆନନ୍ଦ !
ଦୟା ବହି ଗୃହେ ପ୍ରବେଶି
ମୋର ସାମାନ୍ୟ ଭିକ୍ଷା ଗ୍ରହଣ କର ।

ଆନନ୍ଦ ଯେପରି ସେଠାରେ ଛିଡ଼ା ହେଲେ ମାତଙ୍ଗୀର ଗୃହ ଆନନ୍ଦରେ ଝଲସିବାକୁ ଲାଗିଲା । ତେଣୁ—

ବସ୍ତ୍ର ବାହ୍ୟ ସବୁ ଅଳଙ୍କାରେ ଭରି
ସୁଗନ୍ଧିତ କରି ଆପଣାର କେଶବାସ,
ଓଷ୍ଠପୁଟ ରଞ୍ଜିତ କରି ରକ୍ତବରଣେ
ସଜାଇଲା ଭିକ୍ଷୁଙ୍କୁ ବସିବାକୁ ଆସନ ।
ଜାଳିଲା ଧୂପ ଝୁଣା ଆଉ
ପଦ୍ମର ପାଖୁଡ଼ା ସିଞ୍ଚିଲା
ଗୃହର ଚାରିଆଡ଼େ ।
ତହିଁ ବସିଲା ସେ ଯାଇ ଆପଣା
ଆନନ୍ଦର ପାଖେ ।
ମନେ ହେଲା ଯେପରି ମେଘଟି
ବନ୍ଧା ହେଲା ଆପଣାରେ ଦୀର୍ଘ କାଳେ
ଛଡ଼ାଇ ନ ପାରିଲା ଆପଣାକୁ ଆନନ୍ଦ
ମାତଙ୍ଗୀଠାରୁ ।
ଅନ୍ଧକାର ଘେରିଗଲା ଚାରିଆଡ଼େ—
ଘନାନ୍ଧକାର
ଚନ୍ଦ୍ରସୂର୍ଯ୍ୟ ସବୁ ଯେପରି ଲୁପ୍ତ ହେଲେ
ମେଘାମ୍ବର କାଳେ ।
କି ମୋହିନୀ ଶକ୍ତି ଏହି ତାନ୍ତ୍ରିକ ମନ୍ତ୍ରରେ
ସ୍ୱର୍ଗର ଦେବତାର ହୁଏ କ୍ଷଣକେ ସେଠାରୁ
ମର୍ତ୍ତ୍ୟେ ପତନ,
ଚେଷ୍ଟା କଲେ ଆନନ୍ଦ
ଆପଣାକୁ ଉଦ୍ଧାରିବାକୁ, ମାତ୍ର ବାର୍ଥ
ପରିଣାମ ସେଥିରେ—
କି ଦୁଃଖରେ ସେ କାନ୍ଦିଲେ ଅନ୍ତରେ !

କି ଭାଗ୍ୟ ହେଲା ମୋର ? ଏ ଦୁର୍ଦ୍ଦଶା
କାହିଁକି ମୋର ?
ହେ ଲୋକନାଥ ! ଦୟା ବହି
ରକ୍ଷା କର ମୋତେ

ଏହି ଭୂତପ୍ରେତର ମୋହନ ମନ୍ତ୍ର ବନ୍ଧନରୁ ।
ତେଣିକି ତହୁଁ ତଥାଗତ
ଦେଖିଲେ ନିଜର ଦୃଷ୍ଟି ବଳରୁ
ଆନନ୍ଦର ଦୁର୍ଦ୍ଦଶା ଚଣ୍ଡାଳୀ ହସ୍ତେ
ପଠାଇଲେ ତେଣୁ ସେ ମଞ୍ଜୁଶ୍ରୀ
ମଞ୍ଜୁଶ୍ରୀ ବୁଦ୍ଧଙ୍କର ଜଣେ ପ୍ରଚାରକ
ବୋଧିସତ୍ତ୍ୱ ।

ପେଶିଲେ ବୁଦ୍ଧ ଏହି ଗୁପ୍ତମନ୍ତ୍ର—
ଶାନ୍ତି
ଅଚଳ
ଅନନ୍ତ

ଏହି ମନ୍ତ୍ର ପେଶିଲା ବେଳେ ବୁଦ୍ଧଙ୍କର ଲଲାଟଜ୍ୟୋତି ବିସ୍ଫୁରଣ କଲା—ଆକାଶ ଆଲୋକିତ ହେଲା—ସମଗ୍ର ଧରା ଜ୍ୟୋତିରେ ପରିପୂର୍ଣ୍ଣ ହେଲା ।

ମଞ୍ଜୁଶ୍ରୀ ସନ୍ଧ୍ୟାର ଅନ୍ଧକାର ଭିତର ଦେଇ ଶ୍ରାବସ୍ତୀ ନଗରୀର ପ୍ରେମାସକ୍ତ ରାସ୍ତା ଦେଇ ସିଧା ଚାଲିଲେ ଯେଉଁଠାରେ ଆନନ୍ଦ ଫାଶରେ ପଡ଼ିଛନ୍ତି ।

ଲୋକେ ଭିଡ଼ି ହୋଇଛନ୍ତି ମାତଙ୍ଗୀ ଚଣ୍ଡାଳୀର ଘର ପାଖରେ—

ଆନନ୍ଦକୁ ଗାଳି ବର୍ଷଣ କରୁଛନ୍ତି ।
କାହିଁରେ କଣ—ଛି ! ଛି !

ଦୂର ! ଦୂର ! ପାଜି ! ବଦମାସ ! ଅଧମ । ନରାଧମ । ନରକର କୀଟ । ଇତ୍ୟାଦି—

ଏହି ସମୟରେ ମଞ୍ଜୁଶ୍ରୀର ଉପସ୍ଥିତି ସେଠାରେ—ଦୀର୍ଘ ରଜତ ଶ୍ମଶ୍ରୁ, ଚକ୍ଷୁ ଦୁଇଟି ଯେପରି ଦୁଇଟି ପ୍ରଜ୍ୱଳିତ ସୂର୍ଯ୍ୟ, ଆଉ ତାଙ୍କର ଦୀର୍ଘ ଯଷ୍ଟି ପୃଥିବୀ ଉପରେ ଅବସ୍ଥାପିତ । ସେହିଠାରେ ମଞ୍ଜୁଶ୍ରୀ ଦୀର୍ଘ ଶୀର୍ଣ୍ଣ ଶ୍ୱେତ ବକ ପକ୍ଷୀ ପରି ଛିଡ଼ା ହେଲେ ।

ଲୋକେ ଚିତ୍କାର କଲେ—ଦେଖ ଦେଖ ସାଧୁ ମଞ୍ଜୁଶ୍ରୀ ଏବଂ ସାଙ୍ଗେ ସାଙ୍ଗେ ତାଙ୍କ ପାଇଁ ବାଟ ଖୋଲିଗଲା—ଲୋକେ ଦୁଇ ଆଡ଼କୁ ଉହାଡ଼ ହୋଇଗଲେ ଯେପରି ଜଳବଣରେ ପବନ ବହି ଜଳ-ଗୁଡ଼ିକ ଦୁଇ ପାଖ ହୋଇଯାଏ । ରାସ୍ତା ପରିଷ୍କାର ତାଙ୍କ ପାଇଁ—କେହି ବାଧା ଦେଉ ନାହିଁ—ଆଉ ମଞ୍ଜୁଶ୍ରୀଙ୍କ ପକ୍ଷରେ ଯେମିତି ସବୁ ଖୋଲା—ସବୁ ସ୍ୱଚ୍ଛ ।

ମଞ୍ଜୁଶ୍ରୀଙ୍କୁ ଦେଖି ମାତଙ୍ଗୀର ମାତା ଏକାବେଳକେ ଭୀତ ସନ୍ତ୍ରସ୍ତା, ଆଉ ତାର ଆଣ୍ଠୁ ଯୋଡ଼ି ହୋଇଗଲା ।

ମାତଙ୍ଗୀ ମା ପାଖରେ ବସି ଦେଖିଲା ଯେ ହଠାତ୍ ନିଆଁ ଲିଭି ଆସିଲା—ଆଉ ସମ୍ମୁଖରେ ଦୀର୍ଘକାୟ ଶୁଦ୍ଧ ଶୁଭ୍ର ମଞ୍ଜୁଶ୍ରୀ ।

ମାତଙ୍ଗୀ ଚିତ୍କାର କରିଉଠିଲା—ତୁମେ କାହିଁକି ଏଠିକି ଆସିଛ ? ମୁଁ ଜାଣେ ତୁମେ ଆନନ୍ଦଙ୍କୁ ମୋଠାରୁ ଛଡ଼ାଇ ନେବାକୁ ଆସିଛ । ତୁମେ ଯେ ହୁଅ ସେ ହୁଅ—ଋଷି ହୁଅ ବା ଯାହା ହୁଅ—ଆନନ୍ଦଙ୍କୁ ମୁଁ ଦେବି ନାହିଁ ।

ଆନନ୍ଦ ମନ୍ତ୍ରବଳରେ ଏହି ସମୟ ପର୍ଯ୍ୟନ୍ତ ବନ୍ଦ ହୋଇ ରହିଛନ୍ତି—ମୁଣ୍ଡରାଶିରୁ ଧୂଆଁ ବାହାରୁଛି—ପଦ୍ମପଦରୁ ରହସ୍ୟପୂର୍ଣ୍ଣ ଗନ୍ଧ ବାହାରୁଛି—ଆନନ୍ଦ ବନ୍ଧ, କିନ୍ତୁ ତାଙ୍କର ଅନ୍ତର ଭିତରେ ଗୋଟିଏ ଉଜ୍ଜ୍ୱଳ ତାରକା ଜଳୁଥାଏ—ଯେପରି କି ଦୂର ଆକାଶରେ ସ୍ଥିର ଧ୍ରୁବତାରା ଏବଂ ସେହି ତାରକାର କିରଣ

ଆସ୍ତେ ଆସ୍ତେ ଉଜ୍ଜ୍ୱଳ ଉଜ୍ଜ୍ୱଳତର ହେବାକୁ ଲାଗିଲା—ଏହା ବୁଦ୍ଧଙ୍କର ମନ୍ତ୍ର ପ୍ରଭାବ ଯୋଗୁଁ ।

ଆନନ୍ଦ ଚକ୍ଷୁ ଉନ୍ମୀଳନ କଲେ ଯେପରି କି ସେ ସ୍ୱପ୍ନାବିଷ୍ଟଥିଲେ । ଆନନ୍ଦ ମଞ୍ଜୁଶ୍ରୀଙ୍କୁ ଦେଖିଲେ ଏବଂ ପରସ୍ପରର ଚକ୍ଷୁ ପରସ୍ପରକୁ ଭେଟିଲା—

ମଞ୍ଜୁଶ୍ରୀ ଯେପରି ତାଙ୍କର ଯଷ୍ଟି ଉତ୍ତୋଳନ କଲେ, ସେହିପରି ଆନନ୍ଦ ଠିଆ ହେଲେ, ଉଠିଲେ ।

ମଞ୍ଜୁଶ୍ରୀ ଆଗରେ ଚାଲିବାକୁ ଆରମ୍ଭ କଲେ, ଆଉ ଆନନ୍ଦ ତାଙ୍କ ପଛେ ଚାଲିଲେ । ସେମାନଙ୍କର ପଦଧ୍ୱନି କେହି ଶୁଣି ପାରିଲେ ନାହିଁ ।

ମାତଙ୍ଗୀ ପଛରେ ଗୋଡ଼ାଇବା ପାଇଁ ମନ ବଳାଇଲା, କିନ୍ତୁ ଭୂପୃରେ ତାର ପାଦ ଆଉ ଚଳିଲା ନାହିଁ । ସେ ସ୍ତମ୍ଭୀଭୂତ ହୋଇଗଲା । ଆନନ୍ଦ ବୋଲି ଉଚ୍ଚାରଣ କରିବାକୁ ସେ ଚେଷ୍ଟା କଲା, କିନ୍ତୁ ତାର ଜିହ୍ୱା ତାଳୁ ଉପରେ ଅଟକି ରହିଗଲା । ସେ ଜାଣିପାରିଲା ଯେ ସେ ଏକାକିନୀ, ପରିତ୍ୟକ୍ତା ।

ଅନେକ କ୍ଷଣ ପର୍ଯ୍ୟନ୍ତ ସେ ଏକାକିନୀ ଅନ୍ଧକାର ଭିତରେ ବସି ରହିଲା । ସେହି ଅନ୍ଧକାର ଭିତରେ ସେ ଦେଖିଲା ଯେ ମଞ୍ଜୁଶ୍ରୀ ଆନନ୍ଦଙ୍କୁ ଟାଣି ଟାଣି ନେଇ ଯାଉଛନ୍ତି ଜେତବନର ବିହାର ଆଡ଼କୁ, କିନ୍ତୁ ଆନନ୍ଦଙ୍କର ଆନନ ମାତଙ୍ଗୀ ଆଡ଼କୁ ଫେରି ଫେରି ରହୁଁଛି—ଆନନ୍ଦଙ୍କର ସ୍ୱର ମାତଙ୍ଗୀ ମାତଙ୍ଗୀ ବୋଲି ଡାକୁଛି—ମାତଙ୍ଗୀ ସେହି ତାରକା ଆଲୋକିତ ଘନାନ୍ଧକାର ରାତିରେ ଆନନ୍ଦ ଆଡ଼କୁ ଦଉଡ଼ିଲା; କିନ୍ତୁ ପଥର ବାଜି ସେ ପଡ଼ିଗଲା । ସେହିଠାରେ ସେ ଚିତ୍କାର କଲା—ହେ ଆନନ୍ଦ ! ହେ ଆନନ୍ଦ ! ଆସ, ଆସ, ଆଉ ଥରେ ମୋ ପାଖକୁ । ଆଉ ଥରେ ମୋତେ ତୁମ ଚକ୍ଷୁ ଭିତରକୁ ଚାହିଁବାକୁ ଦିଅ ଆନନ୍ଦ । ଆଉ ଥରେ ତୁମର ସ୍ୱର ଶୁଣେ । ଆଉ ଥରେ ମୋତେ ମାଗ—ମାତଙ୍ଗୀ, ମୁଁ ତୃଷାର୍ତ୍ତ, ମୋତେ ଟିକିଏ ଜଳ ଦିଅ । ଆଉ ଥରେ କୁହ—ମୁଁ ଚଣ୍ଡାଳୀକନ୍ୟା ବୋଲି ତୁମର କିଛି ଘୃଣା ନାହିଁ । ଆନନ୍ଦ, ଆନନ୍ଦ, ଟିକିଏ ଅପେକ୍ଷା କର । ରାତି ବଡ଼ ଅନ୍ଧକାର ହୋଇଛି—ମୁଁ ଝୁଣ୍ଟି ପଡ଼ୁଛି—ରାସ୍ତା ବଡ଼ ବିଷମ—ଅସ୍ପଷ୍ଟ ତାରକାଲୋକରେ ମୁଁ ତୁମର ଛାୟା ପର୍ଯ୍ୟନ୍ତ ଦେଖି ପାରୁ ନାହିଁ । ଆନନ୍ଦ !

ଆନନ୍ଦର ପଛରେ ଏହିପରି ଗୋଡ଼ାଇ ଗୋଡ଼ାଇ ମାତଙ୍ଗୀ ଜେତବନର ବିହାରକୁ ଆସିଲା । ଦୂର ମାଇଲ ବାଟ ଏହିପରି ଅନ୍ଧକାରରେ ଆସିଲା । ଜେତବନରେ ସେତେବେଳେ ବୁଦ୍ଧ ବହୁ ଶିଷ୍ୟ ସହ ଧ୍ୟାନ କରୁଅଛନ୍ତି । ମାତଙ୍ଗୀ ସେମାନଙ୍କ ଭିତରେ ପାଗଳିନୀ ପରି ଆନନ୍ଦଙ୍କୁ ଖୋଜିବାକୁ ଲାଗିଲା ।

ବୁଦ୍ଧ ସେତେବେଳେ ତାଙ୍କ ନୀଳ-ପଦ୍ମପଳାଶଲୋଚନ ଉନ୍ମୁକ୍ତ କଲେ ଏବଂ ଚଣ୍ଡାଳୀକୁ ଅତି ଦୟା ବହି କହିଲେ—କାହାକୁ ଖୋଜୁଛ ତୁମେ ? ଆନନ୍ଦକୁ ଖୋଜୁଛ ? ନୁହେଁ ?

ଚଣ୍ଡାଳୀ ବୁଦ୍ଧଙ୍କ ଆନନକୁ ଚାହିଁ ଦେଖିଲା ଯେ ବୁଦ୍ଧ କରୁଣାରେ ଭରା । ଧୀରେ ସେ ଅଣ୍ଟୁ ମାଡ଼ି ପ୍ରଣିପାତ କଲା ଏବଂ ଗୋଟିଏ ଛୋଟ ଶିଶୁ ପରି ବୁଦ୍ଧଙ୍କୁ

ଚାହିଁଲା ଆଉ କହିଲା, ହିଁ ମୁଁ ଆନନ୍ଦଙ୍କୁ ଖୋଜୁଛି ।

ବୁଦ୍ଧ ଚଣ୍ଡାଳୀର ମୁହଁକୁ ଚାହିଁ ଦେଖିଲେ ଯେ, ଚଣ୍ଡାଳୀର ମୁଖ ଧୂଳିରେ ଆଚ୍ଛନ୍ନ ହୋଇଛି ଏବଂ ଚକ୍ଷୁର ଲୋତକ ଦ୍ୱାରା ତାହା କର୍ଦ୍ଦମାକ୍ତ ହୋଇଛି । ତା’ପରେ ପଚାରିଲେ—ତୁମେ ଆନନ୍ଦଙ୍କୁ କାହିଁକି ଭଲ ପାଅ ? ତୁମେ କଣ ଆନନ୍ଦର ଚକ୍ଷୁକୁ ଭଲ ପାଅ ? ତାଙ୍କର ନାସିକାକୁ ଭଲ ପାଅ ? ତାଙ୍କର ମୁଖକୁ ଭଲ ପାଅ ? ତୁମେ କଣ ତାଙ୍କର କଣ୍ଠର ଶବ୍ଦକୁ ଭଲ ପାଅ ? ବା ତାଙ୍କର ମଧୁର ଚାଲିକୁ ଭଲ ପାଅ ?

ମାତଙ୍ଗୀ କହିଲା—ହିଁ, ମୁଁ ଆନନ୍ଦର ଆଖିକୁ ଭଲ ପାଏଁ, ତାର ନାକକୁ ଭଲ ପାଏଁ, ତାଙ୍କର ମୁଖ, କାନ, ତାଙ୍କର ସ୍ୱର, ତାଙ୍କର ଚାଲି ସବୁ ଭଲ ପାଏଁ ।

ତେଣୁ ବୁଦ୍ଧ କହିଲେ—ଦେଖ ମାତଙ୍ଗୀ, ଆନନ୍ଦର ଆଖିରେ ଲୁହ ଅଛି, ନାକରେ ସିଙ୍ଘାଣି ଅଛି, ମୁଖରେ ଲାଳ ଅଛି, କାନରେ ଗୋଳ ଅଛି, ଦେହଯାକ ମଇଳା । ତୁମେ ଯେବେ ଆନନ୍ଦକୁ ତାହା ଦେହ ପାଇଁ ଭଲ ପାଉଥାଅ, ଯେପରି ତୁମର ନିଜର ଦେହ ଅଛି—ତାହାହେଲେ ତୁମେ ଏହି ମଇଳାହିଁ ପାଇବ—ଆଉ କିଛି ଲାଭ ହେବ ନାହିଁ ।

ମାତଙ୍ଗୀ ବୁଦ୍ଧଙ୍କର ବଚନକୁ ଶୁଣିବାକୁ ଲାଗିଲା ବେଳେ ଧୀରେ ଧୀରେ ପୂତା ପରିଣତା ହେବାକୁ ଲାଗିଲା—ତାର କାମନା ବାସନା ସବୁ ଦୂରୀଭୂତ ହେବାକୁ ଲାଗିଲା ଏବଂ ପରିଶେଷରେ ସେ ଅର୍ହତ ହୋଇ-ଗଲା ।

ବୁଦ୍ଧ ଆନନ୍ଦଙ୍କୁ ଡକାଇ ପଠାଇଲେ । ଚଣ୍ଡାଳୀ ଲଜ୍ଜିତା ହୋଇ ଭୂମିରେ ପଡ଼ି ବୁଦ୍ଧଙ୍କୁ ପୂଜା ଅର୍ଚ୍ଚନା କରିବାକୁ ଲାଗିଲା ଏବଂ କହିଲା—ହେ ତଥାଗତ ! ମୋର ଅଜ୍ଞତା ଯୋଗୁଁ ମୁଁ ଆନନ୍ଦଙ୍କ ପଛେ ଗୋଡ଼ାଇଥିଲି । ଧନ୍ୟ ମୁଁ ଆଜି ଆଲୋକ ପାଇଲି—ଆଜି ମୋର ଅନ୍ତରର ଅନ୍ଧକାର ଆପଣଙ୍କର ଆଲୋକ ଦ୍ୱାରା ଦୂରୀଭୂତ ହେଲା । ଆଜି ଜାହାଜ ଧ୍ୱଂସ ପରେ ସମୁଦ୍ରରେ ଭାସମାନ । କୂଳ ପାଇଲା ପରି ମୁଁ କୂଳ ପାଇଲି ।

ଶିଷ୍ୟମାନେ ସମସ୍ତେ ପଚାରିଲେ—ଗୁରୁ ! ମାତଙ୍ଗୀ ତ ଯାଦୁବିଦ୍ୟାକାରିଣୀ ଚଣ୍ଡାଳକନ୍ୟା—ସେ କିପରି ମୁକ୍ତିଲାଭ କଲା ?

ବୁଦ୍ଧ କହିଲେ—ତୁମେ ସମସ୍ତେ ମୋର ଶିଷ୍ୟ । ତୁମେ କଣ ଜାଣିବାକୁ ଚାହଁ ଏହି ମାତଙ୍ଗୀର ପୂର୍ବଜନ୍ମର ଇତିହାସ ? ତାହାହେଲେ ଶୁଣ—

ପାଞ୍ଚ ଶହ ଜନ୍ମ ଧରି ଏହି ମାତଙ୍ଗୀ ଆଉ ଏହି ଆନନ୍ଦ ସ୍ୱାମୀ-ସ୍ତ୍ରୀ ରୂପରେ ଏହି ଧରାରେ ଜନ୍ମଗ୍ରହଣ କରିଥିଲେ । ସେମାନେ ପରସ୍ପରକୁ ବରାବର ସ୍ନେହ ପ୍ରୀତିରେ ଆକର୍ଷଣ କରିଥିଲେ । ସେଥିପାଇଁ ଏ ଜନ୍ମରେ ମଧ୍ୟ ପରସ୍ପରକୁ ଭେଟିଛନ୍ତି—କିନ୍ତୁ ଏଥର ପ୍ରକୃତ ଆଲୋକ ଭିତରେ ପରସ୍ପରର ମିଳନ ହୋଇଛି ।

ଏହା ଶୁଣି ଶିଷ୍ୟମାନେ ସମସ୍ତେ ଉଠି ବୁଦ୍ଧଙ୍କୁ ପ୍ରଣାମ କଲେ ।

ଆନନ୍ଦ ଆହୁରି ଅନେକ ଦିନ ରହିଲେ । ଥରେ ବୁଦ୍ଧଙ୍କର ତିରୋଧାନ ପରେ ଜଣେ ଶିଷ୍ୟ ବୁଦ୍ଧଙ୍କର ସୂତ୍ରଗୁଡିକ ଭୁଲ ଭାବରେ ପଢୁଛନ୍ତି ଦେଖି ସେ ତାଙ୍କୁ ସଂଶୋଧନ କରିବାକୁ ଗଲେ । କିନ୍ତୁ ଯୁବକଟି ପ୍ରତିବାଦ କରି କହିଲେ, ତୁମର ଏବେ ବାର୍ଦ୍ଧକ୍ୟ ହୋଇଛି, ତୁମର ସ୍ମୃତି-ଭ୍ରମ ହୋଇଛି । ତୁମ କଥା କିଏ ଶୁଣିବ ?

ଆନନ୍ଦ ଏଥିରେ ମର୍ମାହତ ହେଲେ ଏବଂ ଭାବିଲେ ଆଉ ବେଶୀ ଦିନ ବଞ୍ଚିରହି ଲାଭ ନାହିଁ । ତେଣୁ ସେ ମଗଧରୁ ବୈଶାଳୀକୁ ଗୋଟିଏ ନୌକାରେ ଯିବାକୁ ଲାଗିଲେ । ମଗଧରାଜା ଏହା ଶୁଣିପାରି ଆନନ୍ଦଙ୍କୁ ଫେରାଇ ଆଣିବା ପାଇଁ ଚେଷ୍ଟା କଲେ । କିନ୍ତୁ ବୈଶାଳୀ ରାଜା ଏଥିରେ ଆନନ୍ଦିତ ହୋଇ ଆନନ୍ଦଙ୍କୁ ନିଜ ରାଜ୍ୟରେ ରଖିବା ପାଇଁ ଯତ୍ନବାନ୍ ହେଲେ । ଫଳରେ ଉଭୟ ରାଜାଙ୍କ ମଧ୍ୟରେ ଯୁଦ୍ଧ ହେଲା । ଏହା ଦେଖି ନଦୀମଝିରେ ସେ ଊର୍ଦ୍ଧ୍ୱମାର୍ଗକୁ ଉଠିଗଲେ ଏବଂ ନିର୍ବାଣ ଲଭିଲେ । ଊର୍ଦ୍ଧ୍ୱରେ ଅଗ୍ନି ଜଳିଲା ଏବଂ ଆନନ୍ଦଙ୍କ ଶରୀରକୁ ଜାଳିଦେଲା । ସେ ପ୍ରଜ୍ୱଳିତ ଶରୀର ଅଧେ ମଗଧରେ ପଡ଼ିଲା, ଆଉ ଅଧେ ବୈଶାଳୀରେ ପଡ଼ିଲା । ଉଭୟ ରାଜା ତୃପ୍ତ ହେଲେ; କିନ୍ତୁ ନଦୀର ଉଭୟ ପାର୍ଶ୍ୱରେ ଆନନ୍ଦଙ୍କ ନାମରେ ଦୁଇଟି ଉଚ୍ଚ tower ତିଆରି କଲେ ।

* * *

(ଗୋଖଲେ-ତିଳକ ଷ୍ଟାଲିନ୍-ଗାନ୍ଧୀ)

ଗୋଖଲେ ରାଜନୀତିରେ ଜୀବନ କଟେଇଲେ । ପ୍ରଫେସର ଥିଲାବେଳେ ମଧ୍ୟ ସେ ଇତିହାସକୁ ସାଂସ୍କୃତିକ ଦିଗରୁ ଦେଖି ନାହାନ୍ତି । ମନୁଷ୍ୟର ମାନବିକତାକୁ ସେ ପୁଷ୍ଟ କରିବାକୁ ଚାହୁଁଥିଲେ । ଆଧ୍ୟାତ୍ମିକ ଭାବ ତାଙ୍କର ଥିଲା ଅନ୍ତରରେ ଅନ୍ତର୍ନିହିତ ଭାବରେ—କିନ୍ତୁ ତାର ପ୍ରକାଶ, ସେପରି ହୋଇ ନ ଥିଲା ।

କିନ୍ତୁ ତିଳକ ଥିଲେ ଗଭୀର ଅନ୍ତର୍ଦ୍ରଷ୍ଟା ଦେଶର ଆତ୍ମାକୁ ସେ ଦେଖିଥିଲେ । ଭାରତମାତାକୁ ସେ ମୂର୍ତ୍ତ ବୋଲି ଅନୁଭବ କରିଥିଲେ—ଗୋଟିଏ spirit, ଜୀବନ୍ତ ବସ୍ତୁ—ଏପରି ଅନୁଭବ କରିଥିଲେ ।

ଗୋଖଲେ ରହିଗଲେ ଦେଶପ୍ରୀତିରେ ସତ; କିନ୍ତୁ ଦେଶର ଇତିହାସର ପ୍ରାଚୀନ ଭୂମିକା ଉପରେ ଦଣ୍ଡାୟମାନ ହୋଇ ସେ ଭାରତକୁ ଦେଖି ନାହାନ୍ତି ।

ସେଥିପାଇଁ ତିଳକ ରହିବେ ଅନେକ ଦିନ, ବହୁକାଳ । scholar (ବିଦ୍ୱାନ୍) ମାନେ ତାଙ୍କୁ ସ୍ମରଣ କରିବେ ।

କିନ୍ତୁ ଗୋଖଲେଙ୍କ ବସ୍ତୁତଃ, କାର୍ଯ୍ୟ ହେଉଛି ତତ୍‌କାଳୀନତାକୁ ଘେନି । ସେଥିରେ ସେ ତନ୍ମୟ ହେଉଥିଲେ ଆଉ ଭାରତବାସୀ କପରି ଇଂରେଜୀ ଜାତିର ସମକକ୍ଷ ହେବେ—ଏହା ଥିଲା ତାଙ୍କର ଲକ୍ଷ୍ୟ । ସେଥିପାଇଁ ସେ ଉନ୍ନତି କରି ଯାଇଛନ୍ତି—ନିଜକୁ ବିଶ୍ରାମ ଦେଇ ନାହାନ୍ତି—ଅଳ୍ପ ବୟସରେ ସେ ମରିଗଲେ ଅତିରିକ୍ତ ପରିଶ୍ରମ କରି । ଦେଶକୁ ଶୀଘ୍ର ଶୀଘ୍ର ଉଠେଇବା ପାଇଁ ତାଙ୍କର ଆଗ୍ରହ, ଅଦ୍ଭୁତ ସାଧନା ପରିଶ୍ରମ । ଏଥିପାଇଁ ଗୋଖଲେ ଆମର ନମସ୍ୟ ହୋଇ ରହିବେ ।

ଷ୍ଟାଲିନ ମରି ଯାଇଛନ୍ତି ଏବଂ ତାଙ୍କୁ ତାଙ୍କ ଦଳ ଆହୁରି ମାରିଦେଲେ । ଯେପରି Dead as dodo (ଶବ ନିର୍ଜୀବ) । କିନ୍ତୁ ଷ୍ଟାଲିନ୍ ଖୁବ୍ କାମ କରିଯାଇଛନ୍ତି ।

ସେହିପରି ଗୋଖଲେ ଖୁବ୍ କାମ କରିଯାଇଛନ୍ତି । ତାଙ୍କୁ ମାରିଦେଲେ ହୁଏତ extremist ମାନେ । କିନ୍ତୁ ତଥାପି ସେ ମରିନାହାନ୍ତି । ତାଙ୍କର ଶକ୍ତି, ବୁଦ୍ଧି ତାଙ୍କୁ ତାଙ୍କ ଜୀବିତକାଳରେ ଅମର କରି ଯାଇଛି ।

Moderate (ଧୀରପନ୍ଥୀ) ହେଲେ Gradualness (କ୍ରମିକତା) ଆସେ—Extremist (ଚରମପନ୍ଥୀ) ହୁଏ Revolutionary (କ୍ରାନ୍ତିକାରୀ) । ସେ

ଖୁବ୍ ଶୀଘ୍ର ପରିବର୍ତ୍ତନ ଆଣିବ । ଏହି ହେଲା ପାର୍ଥକ୍ୟ । Moderate (ଧୀର-ପନ୍ଥୀ) କେବେ revolutionary (କ୍ରାନ୍ତିକାରୀ) ହୋଇପାରିବ ନାହିଁ । ଗାନ୍ଧୀ moderate (ଧୀରପନ୍ଥୀ) ଥିଲେ ପ୍ରଥମ politics (ରାଜନୀତି)ରେ । କିନ୍ତୁ ତାଙ୍କର ଆଧ୍ୟାତ୍ମିକତା ତାଙ୍କୁ ଏତେ ଅନ୍ତର୍ମୁଖୀ କରିଥିଲା ଯେ ସେ ବାହାର ପରିବର୍ତ୍ତନକୁ ଏତେ ପସନ୍ଦ କରୁ ନ ଥିଲେ--ଆଧ୍ୟାତ୍ମିକତା ଯା'ର ମୂଳ, ସେ କିପରି materialism ବା ଭୌତିକ ଉନ୍ନତିରେ ମସ୍ତ ହେବ ? ସୁତରାଂ ଗାନ୍ଧୀ ପ୍ରଥମେ ଦେଖା ଦେଇଥିଲେ moderate ଭାବରେ, କିନ୍ତୁ spiritualism, ଆଧ୍ୟାତ୍ମିକତା ତାଙ୍କୁ ଯେତେବେଳେ ଅଧିକାର କଲା—ସେତେବେଳେ ସେ ଦେଖିଲେ ଯେ ଭାରତର ଦୁର୍ଦ୍ଦଶା କରାଇଛନ୍ତି ଯେଉଁ ବ୍ରିଟିଶମାନେ—ବ୍ରିଟିଶ ଶାସନ—ତାଙ୍କର ମୂଳୋତ୍ପାଟନ କରିବାକୁ ହେବ । କିନ୍ତୁ ଗୋଖଲେ ଭାରତକୁ ଇଂଲଣ୍ଡର ଡାଞ୍ଚାରେ ଗଢ଼ିବା ପାଇଁ ଧରି ନେଇଥିଲେ । ଅନ୍ୟ ଡାଞ୍ଚା ତାଙ୍କ ଚିନ୍ତା-ରାଜ୍ୟରେ ନ ଥିଲା ।

କିନ୍ତୁ ଉଭୟ ଗାନ୍ଧୀ ଓ ଗୋଖଲେ ନୀତିବାଦୀ ଥିଲେ । ସୁତରାଂ under-hand means (ପ୍ରଚ୍ଛନ୍ନ କୁଉପାୟ) ସେମାନେ କେବେ ପସନ୍ଦ କରିନାହାନ୍ତି ।

ଗୋଖଲେ ଥିଲେ slow revolutionary (ଧୀର କ୍ରାନ୍ତିକାରୀ); କିନ୍ତୁ ଗାନ୍ଧୀ ଥିଲେ ପ୍ରକୃତି ପରି—ସାଧାରଣତଃ ଅଧିକାଂଶ ସମୟରେ ଧୀର ସ୍ଥିର—ସମାନ ଥିବ—କିନ୍ତୁ ଦରକାର ପଡ଼ିଲେ ପ୍ରକୃତିରେ ଯେପରି ଝଡ଼ ତୋଫାନ, ବିଦ୍ୟୁତ୍ ଉତ୍ପାଦନ କରିବା ଦରକାର ପଡ଼େ, ସେହିପରି ଗାନ୍ଧୀ ଝଡ଼ଝଞ୍ଜା, ଉଲ୍କା, ବଜ୍ର, ବିଦ୍ୟୁତ୍ ଉତ୍ପାଦନ କରୁଥିଲେ । ଏହା ଥିଲା ଗାନ୍ଧୀ ଓ ଗୋଖଲେଙ୍କ ମଧ୍ୟରେ ତଫାତ୍ । ତିଳକ କିନ୍ତୁ ବିଦ୍ରୋହୀ—ଗମ୍ଭୀର ବିଦ୍ରୋହୀ; କିନ୍ତୁ ଗାନ୍ଧୀଙ୍କ ପରି କେବଳ ଭାବରେ ନୁହେଁ, ଧୀର ଦୃଢ଼, ମାଝ ବଜ୍ର ପରି । ସେଥିପାଇଁ ତିଳକଙ୍କୁ ଅନେକ କାରାବାସ ସହିବାକୁ ପଡ଼ିଛି—ଗାନ୍ଧୀଙ୍କ ତତୋଽଧିକ - ଗାନ୍ଧୀଙ୍କ କାରାବାସ ଓ ତିଳକଙ୍କ କାରାବାସ ମଧ୍ୟରେ ପାର୍ଥକ୍ୟ ହେଉଛି—ତିଳକ ଚିନ୍ତାମୁଖୀ, କିନ୍ତୁ ଗାନ୍ଧୀ କର୍ମମୁଖୀ; ସୁତରାଂ କାରାବାସରେ ରହି ତିଳକ ଲେଖିଲେ ଗୀତା ରହସ୍ୟ । ଗାନ୍ଧୀ କଲେ ହରିଜନ ପତ୍ରିକାର ସମ୍ପାଦନା ।

ଗୋଖଲେ ସେତେବେଳକୁ ଚାଲି-ଯାଇଛନ୍ତି । ଗୋଖଲେଙ୍କୁ ମାନ୍ଦା କହି ହେବ ନାହିଁ—ସେ ଯେ ଦେଶ ପାଇଁ ଅତିରିକ୍ତ ପରିଶ୍ରମ କରି ଆପଣାକୁ ଅଳ୍ପ ବୟସରେ ବଳି ଦେଇ ଚାଲିଗଲେ—ଯେପରି ଯୀଶୁଖ୍ରୀଷ୍ଟ—ଯେପରି ବିବେକା-ନନ୍ଦ—ଯେପରି ଶଙ୍କର ।

ଗୋଖଲେ କିନ୍ତୁ war (ଯୁଦ୍ଧ) ଆଉ peace (ଶାନ୍ତି) ମଧ୍ୟରୁ peace (ଶାନ୍ତି) ବାଛିଲେ—revolution (କ୍ରାନ୍ତି) ପକ୍ଷରେ ସେ ନୁହନ୍ତି—ସେ evolution (ଉଦ୍‌ବିକାଶ) ପକ୍ଷରେ । କିନ୍ତୁ ତା ବୋଲି ସେ କମ୍ patriot (ଦେଶଭକ୍ତ) ଥିଲେ, ଏପରି ନୁହେଁ । ଦେଶପ୍ରେମବହ୍ନି ତାଙ୍କ ଅନ୍ତରରେ ଦୁ ଦୁ କରି ଜଳୁଥିଲା । କିନ୍ତୁ

ସେହିପରି କେତେ ଭାରତର ସବୁ ଅମ୍ଳା ଭିତରେ ଶୀଘ୍ର ଶୀଘ୍ର ଜଳଲେ ପିନା ହୁଅନ୍ତା । କିନ୍ତୁ ନାନା କାରଣରୁ ତା ଜନ୍ମ ନ ଥିଲା । ତାକୁ ଜଳାଇବା ପାଇଁ revolutionary ( ବୈପ୍ଳବିକ ) anarchist ଅରାଜକତାବାଦୀ ) ଆସିଥିଲେ—ଗୋଖଲେ ଏହାର ପକ୍ଷପାତୀ କେବେ ନ ଥିଲେ । କିନ୍ତୁ ଶୀଘ୍ର ଶୀଘ୍ର ଦେଶକୁ କ୍ଷମତା ଦେବାପାଇଁ ସେ ବ୍ରିଟିଶ ଗଭର୍ଣ୍ଣମେଣ୍ଟକୁ ବାରମ୍ବାର କହୁଥିଲେ । ବ୍ରିଟିଶ ଗୋଖଲେଙ୍କ କଥା ବୁଝୁଥିଲା । ସେଥିରେ ସାହା ଦେଇଥିଲା । କିନ୍ତୁ ଗତ ଯୁଗର ନୁହେଁ । ସେଥିପାଇଁ ଉଗ୍ରପନ୍ଥୀ-ମାନେ ଗୋଖଲେଙ୍କୁ ମାନ ବୋଲି ନିନ୍ଦା କରୁଥିଲେ । ଗୋଖଲେ ଅନ୍ତରରେ ସେ ଅପମାନ ବଡ଼ ପାଉଥିଲେ । କିନ୍ତୁ ସେ ବୁଝୁଥିଲେ ଯେ ଜାତି ଉପଯୁକ୍ତ ହୋଇ ନାହିଁ, ତିଆରି ହୋଇନାହିଁ । ଭାରତର ନର ଆଉ ନାରୀ ବର୍ତ୍ତମାନ ଜଗତର ଅନ୍ୟାନ୍ୟ ଜାତି ତୁଳନାରେ ଜ୍ଞାନ ଓ ଗୁଣରେ ଅନେକ ତଳେ ପଡ଼ି ରହିଛନ୍ତି । ସେମାନଙ୍କୁ ଉଠାଇବାକୁ ହେବ । ସେହି ଉଠାଇବା କାମ ଭିତରରେ ହେବ ନାହିଁ । ଇମାରତ ଗଢ଼ିବାକୁ ହେଲେ ମୂଳଦୁଆ ଦୃଢ଼ କରିବାକୁ ହେବ ।

ଗୋଖଲେ ବୁଝିଥିଲେ ଭାରତର ନରନାରୀଙ୍କ ମୂଳଦୁଆ ମଜବୁତ ନୁହେଁ—ଭାରତୀୟ ଜାତୀୟ ଚରିତ୍ରକୁ ଆହୁରି ଦୃଢ଼ କରିବାକୁ ହେବ । ତାହାହେଲେ ଯାଇଁ ଆମେ ସ୍ୱରାଜଭୋଗର ଯୋଗ୍ୟ ହେବୁ । ଏହିଠାରେ ଉଗ୍ରପନ୍ଥୀ ଓ ଧୀରପନ୍ଥୀ ମଧ୍ୟରେ ଅନୈକ୍ୟ ରହିଥିଲା ।

ଜାତି ପକ୍ଷରେ ଯେପରି ଗୋଟିଏ ଆନ୍ଦୋଳନ ଦେଖାଦିଏ, ସମଗ୍ର ପୃଥିବୀ ପକ୍ଷରେ ମଧ୍ୟ ସେହିପରି ଗୋଟିଏ ଗୋଟିଏ ଆନ୍ଦୋଳନ ଦେଖାଯାଏ । ଭିନ୍ନ ଭିନ୍ନ ଦେଶରେ ଯେତେବେଳେ ଆନ୍ଦୋଳନ ଚାଲିଥାଏ, ସେତେବେଳେ ପୃଥିବୀର ଆନ୍ଦୋଳନକୁ ଲକ୍ଷ୍ୟ କଲେ ବେଶ୍ ବୁଝାଯିବ ଯେ ପ୍ରତି ଦେଶରେ ସେହି ଏକ ସମୟରେ ଗୋଟିଏ ଗୋଟିଏ ଖଣ୍ଡ-ପ୍ରଳୟ ଚାଲିଥାଏ । ୧୯୦୪-୧୯୦୫ରେ ରୁଷ-ଜାପାନ ଯୁଦ୍ଧ । ଠିକ୍ ତାହାର ଭିତରେ ଆମ ଭାରତରେ ବନ୍ଦେ ମାତରଂ ଆନ୍ଦୋଳନ ଏବଂ ତାହା ସମଗ୍ର ଭାରତକୁ ତୋଳପାଡ଼ କରିଥିଲା । ପୃଥିବୀର revulsion (ପ୍ରତିକ୍ରିୟା) ରେ ପୃଥିବୀର ଭିନ୍ନ ଭିନ୍ନ ଅଂଶର revulsion ( ପ୍ରତିକ୍ରିୟା ) ହୁଏ । ଏହାହିଁ ତାର ପ୍ରମାଣ । ପୁଣି ପୃଥିବୀର ଭିନ୍ନ ଭିନ୍ନ ଅଂଶ ଯେ ପରସ୍ପର ସହିତରେ ସମ୍ବନ୍ଧ ଏହା ମଧ୍ୟ ତାର ପ୍ରମାଣ । ପୃଥିବୀ ଇତିହାସକୁ ତଥା ଭିନ୍ନ ଭିନ୍ନ ଦେଶର ଇତିହାସକୁ ଏହି ଢଙ୍ଗରେ ଦୃଷ୍ଟିଦେଲେ, ଏହାର ସତ୍ୟତା ଆମ୍ଭେମାନେ ଉପଲବ୍ଧି କରିପାରିବୁ । ଅତଏବ ମାନବ ଜାତି ଏକ, ଅଭିନ୍ନ; ଭିନ୍ନ ଭିନ୍ନ ନୁହେଁ । ଭିନ୍ନ ଭିନ୍ନ ଦିଶୁଥିଲେ ମଧ୍ୟ, ସେମାନେ ମୂଳତଃ ସମସ୍ତେ ଏକ ଓ ଅଭିନ୍ନ । ସେଥିପାଇଁ—

From star to star the tremble,
Passes also through man to man,
We are all united in one way,
one fashion.

We, humanity at all places
are one and not a jumble,
Thus love also from man to
woman or woman to man.
Thrills, trembles, inspires,
ennobles, or degrades
together
Thus our responsibility is
great;
we must think together
In a larger and larger way
everyday,
We may be blest then.
The whole world and by us
the world will be blest.
Noble man ! Rise ! therefore
above all pettiness and
ascend to crest.

ତାର ତାରରୁ ସ୍ପନ୍ଦନ ଧାଏଁ
ଧୀର ଧୀର କରି
ଧାଏଁ ପୁଣି ସେହି ସ୍ପନ୍ଦନ ମାନବରୁ
ମାନବେ ଆବୋରି,
ଆମେ ଯେ ଏକ—ଯୁକ୍ତ ଆମେ ପରସ୍ପର,
ଏକ ପନ୍ଥା, ଏକ ସୂତ୍ର,
ଆମେ ଯେ ମାନବସମାଜ ସବୁଠି ଏକ,
ନୁହେଁ ଭିନ୍ନ ଭିନ୍ନ, ମିଶିତ ମିଶିତ ।
ତେଣୁ ପ୍ରେମ ଯେ ଆବୋରି ସଞ୍ଚାଏ
ନର ଆଉ ନାରୀକୁ, ନାରୀରୁ ନରକୁ,
ଅନୁକମ୍ପା ସେ, ଥିରି ଥିରି, ଧୀରି ଧୀରି,
ପ୍ରେମ, ବ୍ରହ୍ମାଣ୍ଡ, ନରକ ବା ସ୍ୱର୍ଗକୁ,
ତେଣୁ ଦାୟିତ୍ୱ ଆମର ବଡ଼—
ଏଣୁ ମିଳିମିଶି
ଭାବିବୁଁ ଆମେ ସବୁ କଥାକୁ;
ତା' ହେଲେ ଆମେ ଶତ ପ୍ରତିଦିନ
ପରସ୍ପରେ କରି ଆଶୀର୍ବାଦ
ଲଭିବୁ ଆଶୀର୍ବାଦକୁ ।
ଆମରି ଦେଇ ସାରା ସଂସାର
ହୋଇବ କୃତାର୍ଥ,
ଯଶସ୍ୱୀ, ତୃପ୍ତ, ଲଭିବ ମହତ୍ତ୍ୱ
ଏଣୁ ହେ ମହତ ! ଉଠ, ହୁଅ ଜାଗ୍ରତ,
ଡିଙ୍ଗି ସକଳ କ୍ଷୁଦ୍ରତା, ଲଭ ଶୀର୍ଷକୁ ।

ରୁଷିଆରେ ଗ୍ରେଟ୍ Communist party (ସାମ୍ୟବାଦୀ ଦଳ)ରୁ ଯେପରି ଆଜି ଶାସକ କମ୍ୟୁନିଷ୍ଟ ରାଜତ୍ୱ ରୁଷିଆରେ ହେଲା, ଠିକ୍ ସେହିପରି ଭାରତରେ ଗ୍ରେଟ୍ Indian National Congress (ଭାରତୀୟ ଜାତୀୟ ମହାସଭା)ରୁ ଆଜି ଶାସକ କଂଗ୍ରେସ ହେଲା । କିନ୍ତୁ ପୁଣି କଣ ଦେଖାଯାଉଛି ? ଶାସକ ରୁଷିଆ ପୁଣି ଶାସକ ଭାରତ ଦୁଇ ଏକ ଆଦର୍ଶରେ ମିଶିବାକୁ ଯାଉଛନ୍ତି । ରୁଷିଆ Socialist ହୋଇଛି । ଭାରତ ମଧ୍ୟ ସେହି Socialist pattern କରିବାକୁ ଯାଉଛି । ଏହିପରି ଦୁଇ ଶାସକ ଭୂଖଣ୍ଡର ଲୋକମାନେ ଏକ ଭାବରେ, ଏକ ଆଦର୍ଶରେ ଅନୁପ୍ରାଣିତ ହେଉଛନ୍ତି । ଇଂଲଣ୍ଡର aloofness (ଔଦାସୀନ୍ୟ) ଆଜି ତାକୁ ବଡ଼ କରି ରଖିନାହିଁ, ଦୁର୍ବଳ କରିଛି । ସେ ମଧ୍ୟ ବୁଝୁଁଛି ଏଣିକି ପୃଥିବୀର ଶାସକ ଜାତୀୟ ସ୍ରୋତରେ ବା ମହାଜାତୀୟ ସ୍ରୋତରେ ମିଶିବ; ନୋହିଲେ ଉଦ୍ଧାର ନାହିଁ, ଗତିମୁକ୍ତି ନାହିଁ । ଆଜି ଯେଉଁସବୁ ଦେଶ ପଛରେ ପଡ଼ିଥିଲେ, ସେଠାରେ ମଧ୍ୟ ଯୋଗ୍ୟତା ଫୁଟିଲାଣି, ଗଢ଼ିବଢ଼ି ବଳିଲାଣି, ସେମାନେ ମଧ୍ୟ ଜାଗ୍ରତ ହେଲେଣି । ଉତ୍ତିଷ୍ଠତ ଜାଗ୍ରତ ନବ

ଫୁଙ୍କିଲେଣି ! କେତେ ତୋଳପାଡ଼ କେତେ ପରିବର୍ତ୍ତନ ହେଉଛି ବର୍ତ୍ତମାନ ଏହି ପୃଥିବୀରେ । କେତେ ଚଞ୍ଚଳ ଚଞ୍ଚଳ । ଶୀଘ୍ର ଗୋଟିଏ ନୂତନ ମାନବ ଜାତି ଦେଖାଦେବ—ସେଥିରେ ବିଶାଳତର ଭ୍ରାତୃତ୍ୱର ପରିଚୟ ମିଳିବ—ସେଥିରେ ଲୋକେ ପରସ୍ପର ପ୍ରତି ଅଧିକତର ଘନିଷ୍ଠତାରେ ମିଶିବେ । ସେହି ଯୁଗତୂର୍ଯ୍ୟ ବାଜିଲାଣି । ଭାରତ, ରୁଷିଆ, ଇଂଲଣ୍ଡ, ଆମେରିକା ସବୁ ଏକ ଆଦର୍ଶରେ ଅନୁପ୍ରାଣିତ ହେବେ—ତାହା ହେଉଛି ଯେ, ପୃଥିବୀରେ ଗୋଟିଏ ବୁଭୁକ୍ଷୁ ଲୋକ ଥିଲେ, ତମେ ଶାନ୍ତିରେ ବସବାସ କରିପାରିବ ନାହିଁ । ବୁଦ୍ଧ ଯେପରି ପୃଥିବୀରେ ଗୋଟିଏ ଆର୍ତ୍ତ ଲୋକ ଥିବାଯାଏ ପୃଥିବୀରେ କାର୍ଯ୍ୟ କରୁଥିବେ, ନିଜର ମୁକ୍ତି ବା ନିର୍ବାଣକୁ ଏଡ଼ାଇ ଦେଇ ସମସ୍ତଙ୍କୁ ନେଇ ସେ ନିର୍ବାଣକୁ ଯିବେ ।

କେତେ ବଡ଼ ଆଦର୍ଶ ! ସେହି ଆଦର୍ଶ ଆମ ପ୍ରତ୍ୟେକଙ୍କୁ ଉଦ୍‌ବୁଦ୍ଧ କରୁ, ନିୟନ୍ତ୍ରିତ କରୁ, ଶାନ୍ତ କରୁ, ମୁଗ୍ଧ କରୁ । ଅନ୍ୟାୟ, ଅତ୍ୟାଚାର କେହି କେଉଁଠାରେ ସହିବେ ନାହିଁ—ସମସ୍ତେ ତାର ପ୍ରତିକାର କରିବାରେ ଦୃଢ଼ପରିକର ହେବେ ।

* * *

# ପରିଚୟ ଓ ପ୍ରଣୟ

## ( ଜାନୁଜର ଲକ୍ଷ୍ମୀକାନ୍ତ )

ଲକ୍ଷ୍ମୀକାନ୍ତ ! ଠିଅହେଲ । ଓହୋ ! ଲକ୍ଷ୍ମୀକାନ୍ତକୁ ଦେଖିଛି ଟେନିସ୍ ଖେଳରେ ! ସେ ଏକ ଫିଟ୍‌ଫାଟ୍ ଧଳା ଜୋତା ଗୋଡ଼ରେ ଦେଇ ! ଲକ୍ଷ୍ମୀକାନ୍ତ । ସେ ତ ଲକ୍ଷ୍ମୀକାନ୍ତ ! ଆଉ ସହଜରେ ମୁଁ ତ ଲକ୍ଷ୍ମୀ—ଅବା କୁହ ଲକ୍ଷ୍ମୀନାରାୟଣ ।

କିନ୍ତୁ ଲକ୍ଷ୍ମୀକାନ୍ତ ଯେ ହସଖେଳଖେଳ । ସେ ଯେ ରହସ୍ୟମୟ, କୌତୁକିଆ— ପୁଣି ଜମିଦାରପିଲା । ଆଜ ମୁଁ—ଏକ ସମୟରେ ମୋର ବଂଶ ଧନୀ ଥିଲେ ସତ, କିନ୍ତୁ ମୋ ବେଳକୁ ଆଉ କିଛି ନ ଥିଲା । ସୁତରାଂ ମୋ ମୁହଁରୁ ହସ ଆସିବ କେଉଁଠୁ ? ଲକ୍ଷ୍ମୀକାନ୍ତ ଗୀତ ଗାଏ, କୌତୁକ କରେ; ସ୍ନେହମୟ, ହୃଦୟମୟ ସେ । ଆଉ ମୁଁ ଏକାକୀ, ଭିତରେ ଭିତରେ ଥାଏଁ । ସେମାନେ ହସି ଖେଳ ଉନ୍ମତ୍ତ ସମସ୍ତ— ଲକ୍ଷ୍ମୀକାନ୍ତ, ଆଉ ଲକ୍ଷ୍ମୀକାନ୍ତର ବନ୍ଧୁମାନେ ।

ମୁଁ କିନ୍ତୁ ଦୂରେଇ ଥାଏଁ । ଦୂରେଇ ଦେଖେଁ—ପୁଣି ଲକ୍ଷ୍ମୀକାନ୍ତ ମୋ ଉପରେ —ବୟସରେ ସେ କିଛି ବଡ଼—ମୁଁ ଛୋଟ ।

ତଥାପି ଲକ୍ଷ୍ମୀକାନ୍ତର ହସ ଖେଳ କୌତୁକ ମୁଁ ଦେଖିଛି, ଅନୁଭବ କରିଛି । କିନ୍ତୁ ଦୂରେଇ ମୁଁ ଥାଏ । ମୁଁ 'ସୁଧାନାଥ' । ଆଉ ଲକ୍ଷ୍ମୀକାନ୍ତ ନଟବର । ସଙ୍ଗୀତ, ନୃତ୍ୟ, ଗୀତ, ବାଦ୍ୟ ଲକ୍ଷ୍ମୀକାନ୍ତର ଜୀବନକୁ ମୁଖରିତ କରି-ରଖିଥିଲା ।

ଆଉ ମୋର ଜୀବନ—ସ୍ଥିର ଧୈର୍ଯ୍ୟ ମୋର ପିଣ୍ଡିତ ପାଷାଣେ ।

ଯେତେବେଳେ ଲକ୍ଷ୍ମୀକାନ୍ତ ରେଭେନ୍‌ସା କଲେଜରେ ଆଉ ମୁଁ ମଧ୍ୟ ରେଭେନ୍‌ସା କଲେଜରେ । ଠିକ୍ ମନେ ନାହିଁ, ଯେତେ ଦୂର ମନେ ହୁଏ ଲକ୍ଷ୍ମୀକାନ୍ତ ଇଣ୍ଟରମିଡିଏଟ୍‌ରେ ବର୍ଷେ ରହିଯାଇଥିଲା, ତା ପରେ ମୁଁ ଆସିଲି ।

ତା'ପରେ ଆଉ ଗୋଟିଏ କଥା । ଲକ୍ଷ୍ମୀକାନ୍ତର ଥିଲା ଆର୍ଟସ । ଆଉ ମୋର ଥିଲା ସାଇନ୍‌ସ । କେବଳ ଇଂରେଜୀ, ଓଡ଼ିଆ କ୍ଲାସରେ ଦେଖା । ତାର ଫିଜିକ୍‌ସ ଥିଲା' କି ନାହିଁ କହି ପାରିବ ନାହିଁ । ହଁ ଥିଲା । ଯାହାହେଉ ଲକ୍ଷ୍ମୀକାନ୍ତକୁ ମୁଁ ଦେଖେ ବେଶି ବାହାରେ, କଲେଜର ନାଚ, ଗାନ, ତାମସାରେ । ମୁଁ ସେଠାରେ ଶୂନ୍ କହିଲେ ଚଳେ ।

ଏହି ତ ଗଲା ଆମ କଲେଜ ଜୀବନ, ଆଉ କଲେଜ ଭେଟାଭେଟି । କିନ୍ତୁ ସେ ବାଲେଶ୍ୱରିଆ, ଆଉ ମୁଁ ବାଲେଶ୍ୱରିଆ । ସେଥିପାଇଁ ଗୋଟିଏ ଅଚ୍ଛେଦ୍ୟ ସମ୍ପର୍କ ଥାଏ—ଯେତେ ନିନ୍ଦା କର ଜବାହର ତୁମେ Provincialism କୁ— ତୁମ କାଶ୍ମୀରୀ ରକ୍ତ ତେଇଁ ଉଠିବ ଗୋଟିଏ କାଶ୍ମୀରୀ ବ୍ରାହ୍ମଣକୁ ଦେଖିଲେ ।

ମୋର ମଧ୍ୟ ସେଇଥିପାଇଁ ଥିଲା । ତା'ଛଡ଼ା ଆମେ ବାଲେଶ୍ୱର ଗ୍ରୁପଙ୍କ ଗୋଟିଏ ଏସୋସିଏସନ କରିଥିଲୁ—ଏ sectionalism ପାଇଁ କିଏ ଜବାବଦାର ? ତୁମ କଥା ଶୁଣି ଶୁଣି ଡର ମାଡ଼ିଲାଣି । କାରଣ ତୁମ ହାତରେ ଗୋଳାଗୁଳି—ଆଜି ମୋ ହାତରେ କିଛି ନାହିଁ ।

ଯାହା ହେଉ, ଏହି ବାଲେଶ୍ୱର ଏସୋସିଏସନରେ ଆମ୍ଭେମାନେ ଥରେ ଥରେ ମିଳୁଥିଲୁ ।

ତା'ପରେ—ତା'ପରେ—ତା'ପରେ ଆଉ ମନେନାହିଁ । କିନ୍ତୁ ଲକ୍ଷ୍ମୀକାନ୍ତ ଯେତେବେଳେ ଚେଷ୍ଟା, ଚଳତ୍‌ଶକ୍ତିହୀନ ଏକପ୍ରକାର—ମହାବ୍ୟାଧି ତାଙ୍କୁ ଗ୍ରାସିଲା—ସେତେବେଳେ ସେଥିରେ ଲକ୍ଷ୍ମୀକାନ୍ତ ଆଉ ମୁଁ ଏକାକୀ ଚିନ୍ତା କରିଛୁ କେତେ-କଥା—ମୁଁ ଲକ୍ଷ୍ମୀକାନ୍ତଙ୍କୁ ଅନାଇ କାନ୍ଦିବି କ'ଣ, ସେ ହସାଉଛି—କାନ୍ଦିବାକୁ ଦେଉନାହିଁ ।

ତା'ପରେ ମୁଁ ଥରେ ଭଦ୍ରକ ଯାଇ ଲକ୍ଷ୍ମୀକାନ୍ତଙ୍କୁ—କାନ୍ତକବିଙ୍କୁ ସମ୍ବର୍ଦ୍ଧନା କରିବା ପାଇଁ ଭଦ୍ରକ ହାଇସ୍କୁଲରେ ଜୟନ୍ତୀ ଉତ୍ସବ କରାଇଥିଲି । ସେ କେଉଁ ସାଲର କଥା, ତା' ବି ମୋ ମନେ ଠିକ୍ ନାହିଁ । ବୋଧହୁଏ ୧୯୩୧ । ଆଉ ମଧ୍ୟ ମଧ୍ୟରେ ମଧ୍ୟରେ ଯେତେ ଥର ଭଦ୍ରକ ଯାଇଛି, ସେତେ ଥର ଲକ୍ଷ୍ମୀକାନ୍ତଙ୍କୁ ଦେଖିଛି—ସେତେ ଥର ଆଉ ଜଣଙ୍କୁ—କବିଶ୍ରୀ ଚନ୍ଦ୍ରାମଣି ମହାନ୍ତିଙ୍କୁ ମଧ୍ୟ ଦେଖିଛି ।

ଲକ୍ଷ୍ମୀକାନ୍ତଙ୍କ ଘରେ କେତେ ଥର ରହିଛି । ସେତେବେଳେ ମୋର ଆଉ ଭୟ ନାହିଁ—ଲକ୍ଷ୍ମୀକାନ୍ତ ଠିଆ ହୋଇ ମୋ ଆଡ଼କୁ ଟିକିଏ ଆସି ମୋତେ କୁଣ୍ଢାଇବ ବୋଲି ।

କିନ୍ତୁ ଲକ୍ଷ୍ମୀକାନ୍ତ ସାବଧାନ, ସୁଚତୁର, ମଧୁର, ମାର୍ମିକ । ସେ ବସିଲା ମୋ ପାଖରେ ଖୁବ୍ ସଂଭ୍ରମରେ—ଆଉ ମୁଁ ମନେ ମନେ ଭାବୁଛି ମୋତେ କୁଣ୍ଢାନ୍ତା କି ? କିନ୍ତୁ ମନର କଥା ମନରେ ହିଁ ରହିଯାଇଛି—ଅନ୍ତରରେ ଲକ୍ଷ୍ମୀକାନ୍ତଙ୍କୁ ମୁଁ କୁଣ୍ଢାଇଛି ।

ଲକ୍ଷ୍ମୀକାନ୍ତ ଏହି ବସିଛି—କିନ୍ତୁ ଠିକ୍ କାନ୍ଥ ସେ ପାଖରେ ସେ କିଏ ? ଜାଣ କି ତୁମେ ?

ଲକ୍ଷ୍ମୀକାନ୍ତର ସ୍ତ୍ରୀ—'ଡଗର' ସମ୍ପାଦକ ନିତ୍ୟାନନ୍ଦର ମା'—ମା ଅପେକ୍ଷା ଏଠାରେ ବୋହୂ କହିଲେ ଠିକ୍ ହେବ,—ଠିକ୍ ନବବଧୂଟି ପରି ସେ ସେହି ଅନ୍ତରାଳରେ—ଆଉ ଆମର ଖାଇବା ପିଇବାର ସବୁ ବନ୍ଦୋବସ୍ତ କରୁଛନ୍ତି ।

ସମସ୍ତ ସମୟରେ ଭାବୁଛି, ଲକ୍ଷ୍ମୀ-କାନ୍ତଙ୍କୁ ବେଶୀ ପ୍ରଶଂସା କରିବ ନା ଲକ୍ଷ୍ମୀକାନ୍ତର ଘରଣୀଙ୍କୁ ଯାଙ୍କୁ ଏତେ ଦେଖିନାହିଁ—ଯାଙ୍କ ସହିତରେ ଏତେ ମିଶିନାହିଁ—ଯାଙ୍କ ସହିତରେ ଏତେ କଥାବାର୍ତ୍ତା କରିନାହିଁ—କିନ୍ତୁ ଯେ ଆମର ସବୁ କଥାବାର୍ତ୍ତା ଶୁଣିଛନ୍ତି, ଆମକୁ ସମସ୍ତଙ୍କୁ ଖାଇବାକୁ ପିଇବାକୁ ଦେଇଛନ୍ତି ।

ସେ ଆଜ ସ୍ୱାମୀହୀନା—ଏହି ସମୟରେ ତାଙ୍କୁ ମୁଁ ପ୍ରଣାମ କରିବାର ସୁଯୋଗ ପାଉଛି । ଲକ୍ଷ୍ମୀକାନ୍ତର ସ୍ତ୍ରୀ ମୋର ମା' ଆଜ । ଲକ୍ଷ୍ମୀକାନ୍ତ ବଞ୍ଚିଥିବା ଯାଏ ସେ ଥିଲା ଲକ୍ଷ୍ମୀକାନ୍ତର ସ୍ତ୍ରୀ—

ଲକ୍ଷ୍ମୀକାନ୍ତ ଆଜ ଭୁଲିଯିବା ପରେ ସେ ମୋର ମାତୃସ୍ଥାନୀୟ !

ଲକ୍ଷ୍ମୀକାନ୍ତଙ୍କୁ କ'ଣ ଦେଇଛୁ ? ତାର ଜୟନ୍ତୀରେ ଯେତେବେଳେ ଲକ୍ଷ୍ମୀକାନ୍ତ କଥା କହେ ମୋର ଆଖି ଛଳ ଛଳ, ସେ ଯେତେବେଳେ କୌତୁକମୟ, ସ୍ନେହମୟ, ମଧୁ ସମ୍ଭାଷଣ କରି ସମସ୍ତଙ୍କୁ ଆପ୍ୟାୟିତ କରୁଛି ।

ଏହାଇ ଥିଲା ଲକ୍ଷ୍ମୀକାନ୍ତର ବୈଶିଷ୍ଟ୍ୟ । ସେ ବ୍ୟଙ୍ଗ କରିପାରେ—ବିଦ୍ରୂପ କରିପାରେ, ହସାଏ । ମୁଁ ଏସବୁ କହି ପାରେ ନାହିଁ ।

ତଥାପି ଲକ୍ଷ୍ମୀକାନ୍ତ ଆଜ ମୁଁ ଜୀବନର ଶେଷ ଆଡ଼କୁ ଥିଲୁ ଗୋଟିଏ ମୁକୁରର ଏପିଠି ସେପିଠି—ଯେପରି ଠିକ୍ ଲକ୍ଷ୍ମୀକାନ୍ତ ଆଜ ଲକ୍ଷ୍ମୀକାନ୍ତର ସ୍ତ୍ରୀ ଥିଲେ ଆଜୀବନ ଜୀବନର ଏପିଠି ସେପିଠି—ଏକ, ଏକାତ୍ମକ, ତଥାପି ଭିନ୍ନ ।

କଟକ କଲେଜରେ—ରେଭେନ୍‌ସା କଲେଜରେ ଜୁବୁଲ ଥିଲା—ପଚିଶ ବର୍ଷର ଜୁବୁଲ । ଲକ୍ଷ୍ମୀକାନ୍ତ ଆସିଛି । ତାର "ସାର୍ଦ୍ଧ ଶତାବ୍ଦୀ" ଗୀତ ଲକ୍ଷ୍ମୀଧର ଗାୟକ କଣ୍ଠରୁ ଉଦ୍‌ଗୀରିତ ହେଉଛି—ଯେପରି ଆକାଶ ଓ ମର୍ତ୍ତ୍ୟ ସେ ସଙ୍ଗୀତରେ ଭରି ଯାଉଛି ।

ଲକ୍ଷ୍ମୀକାନ୍ତ ସେଠାରେ—କେତେ କେତେ ବନ୍ଧୁ ଲକ୍ଷ୍ମୀକାନ୍ତ ସଭାରେ ଜାଣି ତା'ପାଖକୁ ଆସିଛନ୍ତି—ଆଉ କେତେ କେତେ ଦୂରେଇ ହୋଇ ଯାଇଛନ୍ତି ।

ଲକ୍ଷ୍ମୀକାନ୍ତଙ୍କୁ 'ସାହିତ୍ୟ ସମାଜ'କୁ ଆଣିବା ପାଇଁ ଯେତେବେଳେ ଚେଷ୍ଟା କରେ, କେତେ ଲୋକ କେତେ ବାଧା ଦେଇଛନ୍ତି । କିନ୍ତୁ ଆଜ ଭଗବାନଙ୍କଠାରେ କୃତଜ୍ଞତାରେ ମସ୍ତକ ଅବନତ କରୁଛି ଯେ ଲକ୍ଷ୍ମୀକାନ୍ତ 'ସାହିତ୍ୟ ସମାଜ' ଭିତରକୁ ଆସି ସଭାପତି ହୋଇ ବକ୍ତୃତା ଦେଇ ପାରିଲା । କଳେବର ଚିନ୍ତାମଣି ମହାନ୍ତିଙ୍କ ସେଥିପରି କେତେ ଆଲୋଡ଼ନ—କିନ୍ତୁ ପରେ ସବୁ ପ୍ରବନ୍ଧ ହୋଇ ଯାଇଥିଲା ।

ଲକ୍ଷ୍ମୀକାନ୍ତଙ୍କୁ ଦେଖିଛି କେତେ ଗାୟକଙ୍କୁ କେତେ ଉପଦେଶ ଦେବାର—କେତେ ତରୁଣ ତାଙ୍କ ପାଖରେ--- ସମସ୍ତଙ୍କୁ ସ୍ନେହର ସହିତ ଆଶୀର୍ବାଦ କରିବା ଏବଂ ସେମାନଙ୍କୁ ଉତ୍ସାହିତ କରିବା ଲକ୍ଷ୍ମୀକାନ୍ତର କାମ । ଲକ୍ଷ୍ମୀକାନ୍ତ ଗୀତ ଗାଇ ଗାଇ ଜୀବନ କଟାଇ ଦେଇଅଛି—ସବୁ ଦୁଃଖ ବେଦନା ସେଇଥିରେ ସେ ଭୁଲିଥିଲା ।

ବିଧାତାଙ୍କର ଉଦ୍ଦେଶ୍ୟ ଆମର ବୁଝିବାର ଶକ୍ତି ନାହିଁ । ଯାହା କରୁଛନ୍ତି, କରାଉଛନ୍ତି, ସେଥିରେ ଆମେ ଜୀବନ ବିତାଉଛୁଁ ।

ଲକ୍ଷ୍ମୀକାନ୍ତର ପୁତ୍ର ନିତ୍ୟାନନ୍ଦ ଆଜ ସୁଦ୍ଧା ଜୀବନରେ କେଉଁ ରାହା ଧରି କେଉଁ ଆଲୋକଦ୍ୱାରା ଚାଳିତ ହେଉଅଛି, କହି ହେଉନାହିଁ । ତଥାପି ନିତ୍ୟାନନ୍ଦ ଭିତରେ ଲକ୍ଷ୍ମୀକାନ୍ତ ଯେ ଛପି ରହିଛି, ଏଥିରେ ସନ୍ଦେହ ନାହିଁ । ସେହି ସାହିତ୍ୟ, ସେହି ବ୍ୟଙ୍ଗ, ସେହି ଜ୍ଞାନପିପାସା । ଲକ୍ଷ୍ମୀକାନ୍ତ ! ନମସ୍କାର । ଦେଖୁଛ ତ ନିତ୍ୟାନନ୍ଦ ବର୍ତ୍ତମାନ ଜେଲ୍‌ରେ ।

* * *

# ବନ୍ଦୀ

( ଅସହଯୋଗ ଆନ୍ଦୋଳନବେଳେ ବନ୍ଦୀ ହୋଇଥିବା ନେତାମାନଙ୍କୁ )

## କର୍ମୀ ଗୋପବନ୍ଧୁ

ଯେଉଁଦିନ ପ୍ରଜା ସଦନରେ ଭାରତ ସେବକ ସମିତି ଗୃହରେ ବସି ପଢ଼ିଲି ଯେ, ପଣ୍ଡିତ ଗୋପବନ୍ଧୁ ଦାସ ଏବଂ ଶ୍ରୀଯୁକ୍ତ ଭଗୀରଥି ମହାପାତ୍ରଙ୍କୁ ଅଣ୍ଟାରେ ଦଉଡ଼ି ଦେଇ ସାଧାରଣ କଏଦୀ ପରି ବାଲେଶ୍ୱର କଚେରୀରୁ ଜେଲଖାନାକୁ ନେଇ ଆସିଲେ ଏବଂ କଟକରେ ସେହିପରି ଭାବରେ ଷ୍ଟେସନରୁ ଥାନାକୁ ନେଇ ଆସିଲେ — ସେ ବେଶୀ ଦିନର କଥା ନୁହେଁ, ସାତ ଆଠ ଦିନର କଥା — ସେହିଦିନ ମୋ ମନରେ ଗୋପବନ୍ଧୁ ବାବୁ ଓ ଶ୍ରୀଯୁକ୍ତ ଭଗୀରଥି ମହାପାତ୍ରଙ୍କ ପ୍ରତି ଭକ୍ତିର ଉଦ୍ରେକ ହୋଇଥିଲା ।

ସେ ଦୃଶ୍ୟ ଦେଖି ବହୁ ଲୋକ ହାୟ ହାୟ, ଛି ଛି କରିଥିବେ ସତ । କିନ୍ତୁ ଏଠାରେ ବସି ଯେ ଦୃଶ୍ୟ ମନଶ୍ଚକ୍ଷୁ ସାହାଯ୍ୟରେ ଦେଖି ସହାନୁଭୂତିସୂଚକ ଅଶ୍ରୁ-ଅନ୍ତ୍ରେଚନ ହୋଇଅଛି ଏବଂ ସେମାନଙ୍କର ମହତ୍ତ୍ୱ ବୃଦ୍ଧି ହୋଇଅଛି । ସେମାନେ ଦେବତା ହୋଇଅଛନ୍ତି ବୋଲି ଅନୁଭବ କରୁଅଛି ।

ଗୋପବନ୍ଧୁ ବାବୁଙ୍କ ସଙ୍ଗତରେ ପୁରୀ ଦୁର୍ଭିକ୍ଷ ସମୟରେ ଏକତ୍ର କାର୍ଯ୍ୟ କରିଛୁ । ମୁଁ ସତ୍ୟ ଗୋପନ କରିବାକୁ ଚାହେଁ ନାହିଁ । ସତ୍ୟ କରି କହୁଅଛି ଗୋପବନ୍ଧୁ ବାବୁଙ୍କ ସଙ୍ଗତରେ କାର୍ଯ୍ୟ କରୁଁ କରୁଁ ସମସ୍ତ ସମୟରେ ନିଜ ମଧ୍ୟରେ ଦୁଃଖିତ ହୋଇଅଛୁ । ଅନେକ ଥର ଗୋପବନ୍ଧୁ ବାବୁଙ୍କୁ ଶ୍ଳେଷ କରିଅଛି; କିନ୍ତୁ ଆଜିକି କେତେଣି ଗୋପବନ୍ଧୁ ବାବୁଙ୍କଠାରେ ପୁଣି ଭକ୍ତିର ଉଦ୍ରେକ ହୋଇଅଛି ଏବଂ ସମୟ ସମୟରେ ତାଙ୍କ ପାଦପାର୍ଶ୍ୱରେ ବସି କଥାବାର୍ତ୍ତା କରିବାକୁ ଜୀବନର ଶ୍ରେଷ୍ଠ ମୁହୂର୍ତ୍ତ ବୋଲି ଭାବିଅଛି ।

ସେହି ଗୋପବନ୍ଧୁ ବାବୁ ଆଜ ଯେତେବେଳେ ଏକ ମାସ ଓ ଏକ ବର୍ଷ ସାଧା ଜେଲବାସ ପାଇଲେଣି, ଆହୁରି ଗୋଟିଏ ଦଫା ଅଛି, ଯେଉଁଥିରେ କ'ଣ ହେବ କେଜାଣି, ସେତେବେଳେ ମୁଁ ଭାବୁଅଛି । ଗୋପବନ୍ଧୁ ବାବୁ ଖୁବ୍ କଲେ । ମନୁଷ୍ୟ ଏତିକି କଲେ ଦେବତା ହେବ ! ଆମ୍ଭେମାନେ ସେତିକିରୁ କେତେ ଦୂର୍ ରହୁଅଛୁଁ, ଭାବିଲେ ଲଜ୍ଜା ହୁଏ, ଆତ୍ମ-ଧିକ୍କାର ଆସେ । ଆଉ କେବେ ଆମେ କଣ କରିବୁଁ ? ମରଣ କଣ ପଛେଇ ଯାଉଛି ନା ନିକଟ ହୋଇ ଆସୁଛି ?

ମୁଁ ଏହି ଦୂର ପ୍ରବାସରେ ଏହି ସନ୍ଧ୍ୟା ସମୟରେ ବସି ଗୋପବନ୍ଧୁ ବାବୁଙ୍କ ଚରଣୋଦ୍ଦେଶ୍ୟରେ ନମସ୍କାର କରୁଅଛି ଏବଂ ନିଜର ଅଯୋଗ୍ୟତା ଉପଲବ୍ଧି କରି ଆତ୍ମଧିକ୍କାର—ଆଉ !

## ଋଷିପ୍ରାଣ ଏକ୍ରାମ

ଡାକ୍ତର ଏକ୍ରାମ ରସୁଲ ଆଜି ଜେଲରେ; କିନ୍ତୁ ଅଜ ଶତ ଶତ ରୋଗୀ, କାଙ୍ଗାଳ, ଜନସ୍ଥାନ ରୋଗୀ, "ହାୟ ଏକ୍ରାମ, ହାୟ ଏକ୍ରାମ, ତୁମେ ଜେଲକୁ 'ଗଲ" କହି ହୃଦୟ ବିଦୀର୍ଣ୍ଣ ଅଶ୍ରୁ ଢାଳୁଅଛନ୍ତି । ଏକ୍ରାମ ରସୁଲଙ୍କ ବ୍ୟବହାର କାହାର ହୃଦୟକୁ ସ୍ନିଗ୍ଧ କରିନାହିଁ କହନ୍ତୁ ? କାହାର ଭକ୍ତ ଏକ୍ରାମଙ୍କୁ ଦର୍ଶନ ମାତ୍ରକେ ଉଦ୍ଦୀପ୍ତ ହୋଇନାହିଁ କହନ୍ତୁ ? ସେହି ଏକ୍ରାମ ରସୁଲ ଆଜି ଆମ୍ଭମାନଙ୍କ ଠାରୁ ଅପସାରିତ ହୋଇଅଛନ୍ତି । ପ୍ରାଣ କାନ୍ଦୁଛି, ଫାଟୁଅଛି, ଜଳୁଅଛି, ମରୁଅଛି । ହାୟ ! ହାୟ ! ବୃଦ୍ଧ ବୟସରେ ଏକ୍ରାମ ଓ ମଜହରୁଲ୍—ଏ ଦୁଇ ଭାଇ, ଏକ ବିହାରରୁ, ଅନ୍ୟ ଓଡ଼ିଶାରୁ, ଆଜି ଜେଲ ମଧ୍ୟକୁ ନୀତ ହୋଇଅଛନ୍ତି । କି ଦୋଷ ଏମାନଙ୍କର ? ଅତ୍ୟଧିକ ଦେଶପ୍ରେମ ! ହିନ୍ଦୁ ଓ ମୁସଲମାନ ଉଭୟ ଜାତିର ସମ୍ମିଳନକର୍ତ୍ତା, ଉଭୟ ହିଁ ଉଭୟ ଜାତିର ପୂଜନୀୟ, ବରଣୀୟ । ଓଡ଼ିଶାରେ ଏକ୍ରାମ ଓ ବିହାରରେ ମଜହରୁଲ ସ୍ୱର୍ଗର ଶିଶୁ । ସେମାନଙ୍କ ହୃଦୟ ସ୍ୱଚ୍ଛ, ନିର୍ମଳ, ସେମାନେ ଋଷିପ୍ରତିମ ଦେଖିବାକୁ, ବାହାରେ ଓ ଭିତରେ । ଯେ ଏକ୍ରାମ ବା ମଜହରୁଲ୍‌ଙ୍କ ସଙ୍ଗରେ କଥାବାର୍ତ୍ତା କରିଅଛି ସେ ଜାଣେ ସେମାନେ କି ଅମୂଲ୍ୟ ନିଧି ଜାଗ୍ରତ ଜୀବନ । ଆଜି ସେମାନଙ୍କର ଜେଲ ଯିବାରେ ଧରଣୀ ଫାଟି ନାହିଁ, ଏହା ହିଁ ଆଶ୍ଚର୍ଯ୍ୟ ଲାଗୁଅଛି । ଅସ୍ୱାଭାବିକ ଲାଗୁଅଛି । ସେମାନଙ୍କର କେଶାଗ୍ର ଆକର୍ଷଣ କରିବା ଅର୍ଥ ଭୂମିକମ୍ପର ସୃଷ୍ଟି କରିବା । କିନ୍ତୁ ଧନ୍ୟ ମହାତ୍ମା ଗାନ୍ଧୀଙ୍କର ଅହିଂସାମୂଳକ ନନ୍‌କୋଅପରେସନ ଦୀକ୍ଷା । ସେଥିରେ ବହୁ ସ୍ଥାନର ଭୂମିକମ୍ପ ଏହିପରି ଭାବରେ ସ୍ଥଗିତ ହୋଇ ଯାଇଅଛି ।

ଏକ୍ରାମ ରସୁଲଙ୍କୁ ମୁଁ ଯେତେ ଥର ଦେଖିଅଛି, ସେତେ ଥର ଆପଣାର ପିତା ବା ପିତୃବ୍ୟ ପରି ଭାବି ପାରିଅଛି । ଅର୍ଥାତ୍ ସେ ଯେପରି ନିତାନ୍ତ ମୋର ନିଜର ଜଣେ କେହି । ସାଧୁଜନମାନଙ୍କର ଲକ୍ଷଣ ଏହିପରି । ସେମାନେ ସମସ୍ତଙ୍କ ହୃଦୟକୁ ଆକର୍ଷଣ କରନ୍ତି ।

ଆଉ ଆଜି ଏକ୍ରାମଙ୍କ ଜେଲ ବରଣରେ ଅସଂଖ୍ୟ ରୋଗିଗଣ ତାଙ୍କୁ ଝୁରୁଅଛନ୍ତି ଏବଂ ଯେ ଧରିନେଇ ତାଙ୍କୁ ଜେଲରେ ପକାଇଅଛି, ସେ କି ପ୍ରକାର ପାଷାଣ ବୁଝି ପାରୁନାହିଁ ।

କିନ୍ତୁ ସେହି ପାଷାଣହୃଦୟ ଫାଟି ଜଳସ୍ରୋତ ଯେତେବେଳେ ବାହାରିବ, ସେତେବେଳେ ସେ ଏକ୍ରାମ ରସୁଲଙ୍କ ପବିତ୍ର ଜୀବନ, ପବିତ୍ର କାର୍ଯ୍ୟ, ପବିତ୍ର ବ୍ୟବହାର ଦେଖି ଲଜ୍ଜାରେ, ଅପମାନରେ ନିଜକୁ ଧିକ୍କାର କରିବାକୁ ଲାଗିବ । ଏକ୍ରାମ ଏ ଯୁଗରେ ଓଡ଼ିଶାର ହିନ୍ଦୁ ମୁସଲମାନ ଉଭୟଙ୍କର ଆଦରର ପାତ୍ର । ତାଙ୍କ ଗୁରୁତ୍ୱ, ମହତ୍ତ୍ୱ ଅତୀବ ପ୍ରଶଂସନୀୟ ।

## ସେବକ ଅଟଳବିହାରୀ

ଅଟଳ ମୋର ବାଲ୍ୟବନ୍ଧୁ । ଅଟଳକୁ ମୁଁ ବରାବର 'ତୁମେ' କହି ଆସିଅଛି । ସେ ମୋତେ ବରାବର 'ତୁ' କହିଆସିଅଛି । ଅଟଳ ଆମ ଘରେ ବାଲେଶ୍ୱରରେ ଯେତେବେଳେ ଠାକୁରପୂଜା କରୁଥିଲା, ସେତେବେଳେ ମୋର ବୟସ ଚଉଦ, ପନ୍ଦର । ସେହି ସମୟରୁ ଅଟଳ ମୋର ଏକପ୍ରକାର ସଙ୍ଗୀ । ଅଟଳ ଓ ମୋର ବୟସ ଆଜି ବତିଶର ଏପାଖ ସେପାଖ । ଅଟଳ ମୋଠାରୁ କିଛି ବଡ଼ ।

ଦୁଃଖୀ ଘରରେ ଅଟଳ ଏବଂ ମୁଁ ସମାନ । ପଢ଼ାରେ ଉଣେଇଶ ବିଶ । ଚଳାଇବାରେ ଅଟଳ ବିଶ, ମୁଁ ଉଣେଇଶ । ପଢ଼ାରେ ମୋ କହିବାଟା ଖାଟିବ ନାହିଁ । ତଥାପି ନ କହି ରହି ନାହିଁ । ଅଟଳ ଉଣେଇଶ, ମୁଁ ବିଶ । ତୁଳନା ଆମ ଦୁହିଁଙ୍କ ଭିତରେ, ଆଉ କାହାରି ଭିତରେ ନୁହେଁ ।

ଗୁଣରେ ହୃଦୟ-ଗୁଣରେ ଅଟଳ ଶହେ, ମୁଁ ଏକ । କଟକ କଲେଜର ଭୂତପୂର୍ବ ଅଧ୍ୟାପକ ଶ୍ରୀଯୁକ୍ତ ହେମଚନ୍ଦ୍ର ସରକାର, ଏମ୍‌. ଏ., ମହୋଦୟ ଥରେ କହିଥିଲେ—ସେତେବେଳେ କଟକରେ କଲେରା ଲାଗିଥିଲା । ଅଟଳ କଲେରା ରୋଗୀ ଦେଖିବାରେ ଖୁବ ବ୍ୟସ୍ତ—ଅଟଳ ସହିତରେ ଦଶ ହଜାର ଗ୍ରାଜୁଏଟ୍ ବି ତୁଳନୀୟ ହୋଇ ପାରିବେ ନାହିଁ । ସେତେବେଳେ ଅଟଳ କଟକ କଲେଜର ଇଣ୍ଟରମିଡିଏଟ୍ କ୍ଲାସରେ ଦୁଇଥର ଫେଲ ହୋଇ ରହିଛି ।

ସେହି ଅଟଳ ଆଜି ଜେଲରେ । ଅଟଳ ସମ୍ବନ୍ଧରେ ମନ୍ଦ କଥା କିଏ କହି ଅଛି ବୋଲି ମୁଁ ଜାଣେ ନାହିଁ କି ଶୁଣି ନାହିଁ । ଅଟଳର ଦୁର୍ବଳତା ନାହିଁ, ନ ଥିବ ଏପରି ନୁହେଁ । ତେବେ ତା'ର ଲୋକହିତୈଷିତା, ଲୋକ ଉପକାରିତା ଏତେ ବେଶୀ ଯେ, ସେହିଠାରେ ହିଁ ସମସ୍ତେ ମୁଗ୍ଧ । ସେହି ଅଟଳ ଆଜି ଜେଲରେ । ଗୌରବ କିରୀଟ ଆଜି ଅଟଳ ମସ୍ତକରେ ନୂତନ ବସିଲା ତାହା ନୁହେଁ । ଯେଉଁ ଦିନ ମୁଁ ଅଟଳକୁ ପ୍ରଥମ ଦେଖିଅଛି, ମୋର ଚଉଦ ବର୍ଷ ବୟସରେ, ବାଲେଶ୍ୱରରେ । ସେହି ଦିନୁ ଅଟଳ ତାହାର ଉଜ୍ଜ୍ୱଳ ମୁକୁଟ ପିନ୍ଧିଅଛି । ଦେଖିବାର ଲୋକ ଦରକାର । ଯେ ଦେଖିବାକୁ ଚାହିଁବ, ସେ ଦେଖି ପାରିବ । ଆଜି ପର୍ଯ୍ୟନ୍ତ ଅବିବାହିତ । ଭଲ ଅଟଳ !

ତୁମକୁ କଣ କହି ସମ୍ବୋଧନ କରିବି । ଲଜ୍ଜା ହେଉଅଛି । ମୁଁ କିଛି କରିନାହିଁ । ତଥାପି ତୁମେ ମୋତେ ସେହି ସ୍ନେହର 'ତୁ' କହି ଡାକୁଥିବ—ମୁଁ ନରକରେ ପଡ଼େ ବା ସ୍ୱର୍ଗକୁ ଯାଏ—ଏହି ମାତ୍ର ଇଚ୍ଛା । ଈଶ୍ୱର ଅଛନ୍ତି ।

## ମହାତପୀ ମହତାପ୍‌

ପୂର୍ଣ୍ଣଚନ୍ଦ୍ର ସମ ବର୍ଦ୍ଧିଷ୍ଣୁ ମହତାପ୍‌ ଧନୀ ସନ୍ତାନ ମହତାବ । ସୁଜନପ୍ରିୟ ମହତାବ । କଟକ କଲେଜର ଉପର ବି. ଏ. କ୍ଲାସରେ ପଢ଼ୁ ପଢ଼ୁ ନନ୍‌-କୋ-ଅପରେସନର ଡାକ ଶୁଣି ଅସ୍ଥିର ହୋଇ ଖୁବ୍ କାର୍ଯ୍ୟ କରୁଅଛନ୍ତି । ମହତାବ

ମୋର ପରିଣତ । ସେ ଉତ୍କଳ ସଙ୍ଗ-ସମିତିର କୋଅପରେଟିଭ୍ ବିଭାଗର ସେକ୍ରେଟେରୀ ସ୍ୱରୂପରେ ରହି ଆମ୍ଭମାନଙ୍କୁ ଅନେକ ଉତ୍ସାହ ଦେଇଥିଲେ । ଆଜି ହରେକୃଷ୍ଣ ମହତାବ ନନ୍‌କୋ-ଅପରେସନରେ ଆପଣାର ଶରୀରକୁ ଏକାବେଳେ ଦୁର୍ବଳ କରିପକାଇଅଛି । ଏହାଠାରୁ ଆଉ କଣ ଅଧିକ ଆଶା କରିପାର ? ଧନ୍ୟଯୁବ । କିଛି ଖାଇବା ପିଇବାର ଅଭାବ ନାହିଁ । ଏପରି ସନ୍ତାନ ହରେକୃଷ୍ଣ ଆଜି ଦୁର୍ବଳ, ଶୀର୍ଣ୍ଣ, କ୍ଷୀଣକାୟ କାହିଁକି ? ଦେଶମାତାର ଚିନ୍ତାରେ ଜର୍ଜରିତ ହେବା ଯୋଗୁଁ ହରେକୃଷ୍ଣ ମହତାବ ମଧ୍ୟ କିଛି କାଳ ଜେଲ ଭୋଗ କରିଅଛି । ମୁଁ ଅଧିକ କିଛି କହିବି ନାହିଁ । ଯୁବକ ହରେକୃଷ୍ଣ ମହତାବର ତ୍ୟାଗ ଯଥେଷ୍ଟ ଆଦର୍ଶ-ସ୍ଥାନୀୟ, ଏତିକି ମାତ୍ର କହିପାରେ । ମହତାବ, ଯେଉଁ କଠୋର ସାଧନା କରୁଁ କରୁଁ ଆଜି ତୁମେ ସ୍ୱରାଜତୀର୍ଥରେ ଉପନୀତ ହୋଇଅଛ, ତାହା ତୁମର ସଙ୍ଗୀ ଓ ବନ୍ଧୁମାନେ ଭାବିଲାବେଳକୁ ଅପାର ବିସ୍ମୟରେ ନିମଗ୍ନ ହୋଉ ଅଛନ୍ତି । ମହତାବ ! ଆଜି ଯେଉଁ ତୀର୍ଥରେ ପ୍ରବେଶ କରିଅଛ, ସେଠାରେ ତୁମ ଦେହରେ ହୋମାଗ୍ନିର ଶ୍ୱାସ ଲାଗି ତୁମର ବଦନ ମଳିନ ହେବ, ଶରୀର ଶୀର୍ଣ୍ଣ ହେବ; କିନ୍ତୁ ହେ ପ୍ରଭୁ ! ତୁମେ ମହତାବଙ୍କ ଅନ୍ତରକୁ ଉଜ୍ଜଳ କରିବ । ଯାଅ, ଯାଇଛ ମହତାବ ତପସ୍ୟାତୀର୍ଥକୁ । ତପସ୍ୟା ପୂର୍ଣ୍ଣ ହେଲେ ବିଜୟଗୌରବରେ ମଣ୍ଡିତ ହୋଇ ଈଶ୍ୱରଙ୍କର ଉପଯୁକ୍ତ ସନ୍ତାନ ହୋଇ, ମାତୃଭୂମିର ସ୍ନେହମୟ, କର୍ମମୟ, ସତ୍ପୁତ୍ର ହୋଇ ଫେରିଆସିବ । ସେ ଦିନ ମୁଁ ତୁମର ତେଜ ଦେଖି ସହ୍ୟ କରି ପାରିବ ନାହିଁ — ମୂର୍ଚ୍ଛିତ ହୋଇପଡ଼ିବ । ତୁମ ସାଙ୍ଗର ବନ୍ଧୁବାନ୍ଧବମାନେ ତୁମର ତ୍ୟାଗର କଥା ଭାବି ତୁମକୁ ମାନ ମୁକୁଟ ପିନ୍ଧାଇବେ, ତୁମର ପାଦସେବା କରିବା ପାଇଁ ଲାଳାୟିତ ହେବେ ।

ପୂର୍ଣ୍ଣଯୌବନର ପ୍ରାରମ୍ଭରେ ଯେଉଁ ତ୍ୟାଗ ସାଧନା କଲ, ତାହା ଆଜୀବନ ତୁମର ସ୍ୱଭାବସିଦ୍ଧ ହୋଇ ରହିଲା । ଭାଗ୍ୟବାନ୍ ତୁମେ ।

* * *

# ଅପର୍ଣ୍ଣା ପାଣିଗ୍ରାହୀ

ଗତ ବର୍ଷ ଅପର୍ଣ୍ଣା ପାଣିଗ୍ରାହୀ କଲିକତାରେ ଗ୍ରାମୋଫୋନ୍ ରେକର୍ଡ଼ରେ ଗୀତ ଦେଇ ପାରଳାଖେମୁଣ୍ଡିକୁ ଫେରୁଥିଲେ । ଗାଡ଼ିରେ ଜ୍ୱର ହେଲା ଏବଂ ଘରେ ପହଞ୍ଚି ତାଙ୍କର ମୃତ୍ୟୁ ହେଲା ।

ଅପର୍ଣ୍ଣା ପାଣିଗ୍ରାହୀ କେବଳ ପାରଳାଖେମୁଣ୍ଡିର ନୁହଁନ୍ତି ସମଗ୍ର ଉତ୍କଳର ମଧ୍ୟ ପ୍ରସିଦ୍ଧ ଗାୟକ ଥିଲେ । ସେ ଉତ୍କଳରେ ସର୍ବଶ୍ରେଷ୍ଠ ବୀଣାକାର ଥିଲେ ବୋଲି କହିଲେ ଚଳେ ।

ମାତ୍ର ଦଶ ବର୍ଷ ବେଳକୁ ଅପର୍ଣ୍ଣାଙ୍କର ଚକ୍ଷୁ ଯିବା ଉପରେ ବସିଲାଣି । ବସନ୍ତ ରୋଗ ଯୋଗୁଁ ତାଙ୍କର ଚକ୍ଷୁ ଫୁଟିଗଲା । ସେ ଅନ୍ଧ ହୋଇଗଲେ । ଉତ୍କଳର ସୁରଦାସ ଥିଲେ ଅପର୍ଣ୍ଣା । ତାଙ୍କର ମଧୁର ଲଳିତ ସୁନ୍ଦର ସରୁ କଣ୍ଠ, ପୁଣି ତହିଁ ସଙ୍ଗରେ ତାଙ୍କର ବୀଣାବାଦନ, ଅଙ୍ଗୁଳି ଚାଳନର ସୂକ୍ଷ୍ମ ଦକ୍ଷତା ବାସ୍ତବରେ ଅପର୍ଣ୍ଣାଙ୍କୁ ବଡ଼ ଉଚ୍ଚକୁ ଉଠାଇଥିଲା ।

ସେ ବିଜୟନଗରର ପ୍ରଖ୍ୟାତନାମସମ୍ପନ୍ନ ଓସ୍ତାଦଙ୍କ (ସେ ପାରଳାଖେମୁଣ୍ଡିରେ ଛ’ ସାତ ବର୍ଷ ରାଜଦରବାରରେ ରହିଥିଲେ) ଠାରୁ ଛ’ ସାତ ବର୍ଷ ଧରି ବୀଣାବାଦନ ଅଧ୍ୟବସ୍ଥ ଚିତ୍ତରେ ଶିକ୍ଷା କରିଥିଲେ ।

ଅପର୍ଣ୍ଣାଙ୍କର ଏପରି ଗୁଣ ଥିଲା ସତ୍ୟ; କିନ୍ତୁ ଓଡ଼ିଶାରେ ଅପର୍ଣ୍ଣାଙ୍କର ଗୁଣଗ୍ରାହୀ ଲୋକ ଖୁବ୍ କମ୍ ଥିଲେ । ସେ ପାରଳାଖେମୁଣ୍ଡିର ରାଜଦରବାରର ସଙ୍ଗୀତଜ୍ଞ, ଗାୟକ ଓ ବାଦକ ।

ଉତ୍କଳ ସଙ୍ଗୀତ ସମାଜ (ଏହା କଟକରେ ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ଚେଷ୍ଟାରେ ହୋଇଛି) ତରଫରୁ ଅପର୍ଣ୍ଣାଙ୍କୁ ନିଖିଳ ଭାରତ ସଙ୍ଗୀତ ସମ୍ମିଳନୀକୁ ତିନି ବର୍ଷ ଆଗରୁ ପଠା ହୋଇଥିଲା ଏବଂ ଅପର୍ଣ୍ଣା ସେଠାରେ ମଧୁର ଲଳିତ କଣ୍ଠରେ ସେହି ଗାନ ଓ ବୀଣା ଉପରେ ସେହି ସୁମଧୁର ଅଙ୍ଗୁଳି ଚାଳନ ଓ ମଧୁର ଆନ୍ଦୋଳନ, ସୂକ୍ଷ୍ମ ଶିଳ୍ପ କମ୍ପନ ପ୍ରକାଶ କରିଥିଲେ, ତାହା ଦେଖି ସମସ୍ତେ ତଟସ୍ଥ ହୋଇଯାଇଥିଲେ ଏବଂ ସହସ୍ରମୁଖରେ ଅପର୍ଣ୍ଣାଙ୍କର ପ୍ରଶଂସା କରିଥିଲେ ।

ଅପର୍ଣ୍ଣା ଆଜି ନାହାନ୍ତି; ଦୂର ଦେଶକୁ ଚାଲି ଯାଇଛନ୍ତି ।

ଅପର୍ଣ୍ଣା ଘରେ ଭୂମିବାଡ଼ି କିଛି କରି ଯାଇନାହାନ୍ତି । ତାଙ୍କର ଘର ପାରଳାର କରଣସାହିରେ । ସେ କରଣ ବୈଷ୍ଣବ ଥିଲେ ଏବଂ ବଡ଼ ନିଷ୍ଠାବାନ୍ ବ୍ୟକ୍ତି ଥିଲେ । ତାଙ୍କର ଦୁଇଟି କନ୍ୟା । ସେଥିରୁ ଗୋଟିକର ବିବାହ ହୋଇ ଯାଇଅଛି । ଅପର୍ଣ୍ଣାଙ୍କର ପୁତ୍ରସନ୍ତାନ ଅଛି କି ନା, ମୁଁ ଠିକ୍ ଜାଣିନାହିଁ । ବୁଢ଼ୀ ମା’ ଓ ସ୍ତ୍ରୀ ଘରେ ଅଛନ୍ତି । ସାମାନ୍ୟ ଅଳଙ୍କାରପତ୍ର ଯାହା ସେମାନଙ୍କ ନିକଟରେ ଅଛି । ତାହା ଛଡ଼ା ଆଉ କିଛି ନାହିଁ ।

ଅପର୍ଣ୍ଣା ଚାଲିଯାଇଛନ୍ତି । ଆଜି ତାଙ୍କ ନାମକୁ ଉଜ୍ଜୀବିତ ରଖିବା ପାଇଁ ଉତ୍କଳରେ ଗୋଟିଏ ବୀଣାବାଦନର ସ୍କୁଲ ସ୍ଥାପିତ ହୋଇପାରିଲେ ତାଙ୍କୁ ଯଥେଷ୍ଟ ସମ୍ମାନ ଦେଇହେବ । * * *

# କବି ଗୋଦାବରୀଶ

ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କ ଲେଖାରେ, କବିତାରେ ପଶ୍ଚିମରୁ ତଥା ପ୍ରାଚ୍ୟ ମୂଳ ବସ୍ତୁରୁ ସଫଳ ଆହରଣ କରିଛନ୍ତି ଏବଂ ଗୋଦାବରୀ ନଦୀ ଜଳଦାନ କଲା ପରି ସେ ତାଙ୍କର ଭାବଧାରା ସମସ୍ତଙ୍କୁ ଦାନ କରି ଯାଇଛନ୍ତି । ତାଙ୍କ ଲେଖାରେ ପ୍ରାଚ୍ୟ ପାଶ୍ଚାତ୍ୟର ଅପୂର୍ବ ସମନ୍ୱୟ ହୋଇଅଛି ।

କବିର ଦୃଷ୍ଟି ଅନ୍ତରମଧ୍ୟକୁ ପଡ଼ିବ —ଗୋଦାବରୀଶ ବାବୁ ଅନ୍ତର୍ଦ୍ଦୃଷ୍ଟିର କବି ଥିଲେ—ସେ ଉପର କବି ନୁହନ୍ତି । ଦରଦ ତାଙ୍କର ଖୁବ୍ ବେଶୀ । ସେ ଯାହାକୁ ବର୍ଣ୍ଣନା କରୁଥାନ୍ତି, ଯାହା ବର୍ଣ୍ଣନା କରୁଥାନ୍ତି ସେଥିରେ ଏକାବେଳକେ ପଶିଯାଆନ୍ତି—ଆଉ ଭିନ୍ନତା ନ ଥାଏ । ଏହି ହେଲା ଅସଲ କବିର ସ୍ୱଭାବ— ଏକାବେଳକେ ତଦ୍‌ଗତ ଚିତ୍ତ, ଅନନ୍ୟ-ମନା ।

ଗୋଦାବରୀଶ Ballad ଲେଖାରେ ଧୂରନ୍ଧର । ଓଡ଼ିଶା ସାହିତ୍ୟରେ ଏଥିପାଇଁ ସେ ଅପ୍ରତିଦ୍ୱନ୍ଦ୍ୱୀ, ଯେପରି ଭକ୍ତାସ୍ତଚରଣ ପଟ୍ଟନାୟକ ସମୟର ସହିତ ଅଣ୍ଟା ଛନ୍ଦ୍ରପରେ ଅପ୍ରତିଦ୍ୱନ୍ଦ୍ୱୀ ଲେଖକ । ମହାରାଷ୍ଟ୍ରରେ ପାହାଡ଼ା, ତେଲୁଗୁରେ ବୁରୁଗ କଥା; ଏହିପରି Ballad, ଓଡ଼ିଶାରେ ପାଲା ।

ଗୋଦାବରୀଶ ବାବୁ କ'ଣ ଖାଲି କବି ଥିଲେ ? ସେ ଆହୁରି ମଧ୍ୟ ଥିଲେ ସ୍ୱପ୍ନଦ୍ର ଐତିହାସିକ । ତେଣୁ ତାଙ୍କର ୧୮୧୭ ଗଳ୍ପ ଆଦି—ଗଳ୍ପ ତ ନୁହେଁ ଇତିହାସ—ଖାଲି ଇତିହାସର ରହସ୍ୟପୂର୍ଣ୍ଣ କାହାଣୀ —ଖାଲି ସେତିକି ନୁହେଁ, ସେ ସବୁ ପଢ଼ିଲେ, ମନୁଷ୍ୟ ଯେଉଁ ସେଉଁ ଯୁଗରେ ସେହି ସେହି ଚରିତ୍ରମାନଙ୍କ ସହିତରେ ରହିଯାଏ ।

'ବାପା ଗାଉଛନ୍ତି', 'ଜଜାର ସିଂହ', 'ଚଟିଘର' ଇତ୍ୟାଦି ଗଳ୍ପ ନା ଇତିହାସ ନା କାଦମ୍ବରୀ ? ମୁଁ ତ ଦେଖୁଛି, ସେଗୁଡ଼ିକ ଏ ତିନିର ସମ୍ମିଶ୍ରଣ :

ପ୍ରୀତିର ଝଟିକା ବୁହାଇଛ ତୁମେ,
ଲୋତକ ଆଣିଛ ଆମ ଆଖିକୋଣେ,
କାନ୍ଦି କାନ୍ଦି ତୁମେ ଲେଖିଯାଇଛ
ଯାହାକୁ ଭାବି ଭାବି ମନେ
ସପନେ, ଜାଗରଣେ ।
ହେ ଗୋଦାବରୀଶ ! ଗୋଦାବରୀ ପରି
ଢାଳିଛ ସ୍ନେହର ପସରା
ଅସରା ଅସରା କରି ଆମରି ହୃଦୟେ ।

ପଣ୍ଡିତ ମିଶ୍ରଙ୍କ ଲେଖାରେ ବ୍ରହ୍ମ-ଚର୍ଯ୍ୟର ଭାବ କିପରି ଫୁଟିଛି, ତା'ର ପ୍ରକାଶ ଚେଷ୍ଟା ଏଠାରେ କରୁଅଛି । ତାଙ୍କର ପୁରୁଷୋତ୍ତମ ଦେବ ନାଟକ ଦେଖାଯାଉ । ସେଥିରେ ସେ ପ୍ରଥମରୁ ଏହି ଶିଶୁଭାବ, ଭ୍ରାତୃତ୍ୱ, ପ୍ରୀତିର ସନ୍ଧାନରେ ଯୁବକ ଦେଶ ପାଇଁ କିପରି ଭାବିତ, ତାହା ପୁରୁଷୋତ୍ତମଦେବଙ୍କ ତୁଣ୍ଡରେ ପ୍ରକାଶ କରୁଅଛନ୍ତି—

"କପିଳେନ୍ଦ୍ର ଦେବ ତାଙ୍କର ବିପୁଳ ସାମ୍ରାଜ୍ୟ ମୋ ହସ୍ତରେ ଅର୍ପଣ କରିଥିଲେ —ମୁଁ ତାହା ସୁଶାସନ କରିବି ବୋଲି । ତା' ହେଲା ନାହିଁ, ଆଜି କି ପ୍ରୟୋଜନ ? ଯୁଦ୍ଧରେ ଆଜି କି ଲାଭ ? ଯୁଦ୍ଧ କରୁଥିଲି ଦେଶର ମଙ୍ଗଳ ପାଇଁ । ଏବେ ଯୁଦ୍ଧ ହେଲା ଦେଶର ଦୁର୍ଭାଗ୍ୟର ଏକମାତ୍ର କାରଣ । ବନ୍ଦ କର ସେନାପତି, ବନ୍ଦ କର ।"

ଏହି ଯେ ବିଶ୍ୱଭ୍ରାତୃତ୍ୱ, ବିପୁଳ ଜନ୍ମଭୂମି ପାଇଁ, ଶାନ୍ତି ପାଇଁ, ମଙ୍ଗଳ ପାଇଁ ଆଗ୍ରହ ଏବଂ ତା'ର ଅଭାବରେ ବେଦନା ଅନୁଭବ, ଏହାହିଁ ତ ବ୍ରହ୍ମଭାବ ଆଡ଼କୁ ରାଜାଙ୍କୁ ନେଇଯାଉଛି ।

(ପୃ ୫) ରାଜା (ପୁରୁଷୋତ୍ତମ ଦେବ) କହୁଛନ୍ତି—

"ଏ ଯୁଦ୍ଧ, ସେନାପତି ! ଶତ୍ରୁ ଶତ୍ରୁରେ ନୁହେଁ । ଏ ଭାଇ ସଙ୍ଗେ ଭାଇର ଯୁଦ୍ଧ । ରକ୍ତ ସଙ୍ଗେ ରକ୍ତର, ମାଂସ ସଙ୍ଗେ ମାଂସର, ନିଜ ସଙ୍ଗେ ନିଜର ଯୁଦ୍ଧ । ବନ୍ଦ କର ସେନାପତି, ବନ୍ଦ କର । ବନ୍ଦ କର ବୃଦ୍ଧ ଅର୍ଜ୍ଜୁନ ସିଂହ ।"

ଏହା ଇ ତ ବ୍ରହ୍ମାନୁଭୂତି, ବ୍ରହ୍ମଭାବ ! କାଞ୍ଚିରାଜା ଓ ତାଙ୍କ କନ୍ୟା ପଦ୍ମାବତୀ ମଧ୍ୟରେ ଯେଉଁ କଥୋପକଥନ ହୋଇଛି, ଦେଖନ୍ତୁ ।

ରାଜା କହୁଛନ୍ତି—"ଦେଖୁଆମାଂସଟା ବି ସରସ ମାଂସ ।"

ପଦ୍ମାବତୀ କନ୍ୟା କହୁଛନ୍ତି— ମନୁଷ୍ୟର ଏ ଜିଘାଂସା ପ୍ରବୃତ୍ତି କି ଜଘନ୍ୟ ! ମନୁଷ୍ୟପ୍ରାଣରେ ଯେଉଁ ଦିବ୍ୟ ଦେବତ୍ୱ ଅଛି, ତାକୁ ବିନାଶ କରି ମନୁଷ୍ୟକୁ କେବଳ ପଶୁତ୍ୱମୟ, ହିଂସ୍ର ଜାନୋୟାରରେ ପରିଣତ କରେ । ଏହି ଜିଘାଂସା କି ଜଘନ୍ୟ, କି କୁତ୍ସିତ ! ପ୍ରେମରେ ପ୍ରତିଷ୍ଠିତ ମାନବ ପ୍ରାଣରେ କି ଘୋର ଶତ୍ରୁତା ।

(ପୃ ୧୫) "ମୃତ୍ୟୁମୁଖରେ ମୃତ୍ୟୁଶଯ୍ୟାର ଯନ୍ତ୍ରଣାରେ ଟିକିଏ ସାହାଯ୍ୟ କରିବା, ଆଶ୍ୱାସନା ଦେବା, ଆହା କି ଦୁଃଖ ! ମୁଁ ଶୁଣିଅଛି, ବିଜୟନଗରର ରାଜକନ୍ୟା କମଳାବତୀ ଯୁଦ୍ଧକ୍ଷେତ୍ରକୁ ଯାଇ ଏହିପରି ସେବା କରୁଥିଲେ । ଆମେ ଯିବା ନନା ।"

ଏହାହିଁ ତ ବ୍ରହ୍ମଭାବ ! ଏହି ଆତ୍ମର ସେବା !

କି ଗୁଣବତୀ ସେ ରାଜକନ୍ୟା । ବାସ୍ତବିକ ପଦ୍ମାବତୀ ବ୍ରହ୍ମ ଭାବାପନ୍ନା !

(ପୃ ୨୭ । ୨୭)

ଏଇଠାରେ ରାଜାଙ୍କ ଉକ୍ତିଟି ଉଦ୍ଧାର କରି ଶେଷ କରିବି । ଗୋଦାବରୀଶ ବାବୁଙ୍କ ଲେଖାରେ ବ୍ରହ୍ମଭାବ ଓତପ୍ରୋତ ହୋଇ ରହିଛି ! କବି ସେ, ଭାବୁକ ସେ, ବ୍ରହ୍ମଦର୍ଶୀ ସେ ।

ରାଜା କହୁଛନ୍ତି—"ସୈନିକବର ! ଯୁଦ୍ଧକୁ ଯିବା—ଦୁହେଁ ଦୁଇଆଡ଼େ । ଦେଖ କି ସୁନ୍ଦର ଏ ପ୍ରଭାତ ! ଉଷାର ମନ୍ଦମୃଦୁ ଧାରା ଝଣିଅରେ ବିଦାୟ ଉପହାର ସେନ ଚତୁର୍ଦ୍ଦିଗରେ ବିତରଣ କରି ବୁଲୁଅଛି । ପ୍ରାଚୀର ଗଗନ କି ମହତ୍ ରକ୍ତିମ ଆଭାରେ ଉଦ୍ୟମାନ । ଆଜି ଦେଖ ଅର୍ଜ୍ଜୁନ ସିଂହ, ଆକାଶର ବିମଳ ନୀଳିମା ଉପରେ ଇନ୍ଦ୍ରଧନୁମାନ, ତଥିରେ ଲୋହିତ ରଶ୍ମିରେଖା କି ମଧୁର ମୋହନରେ ଲେଖା ହୋଇ ହୋଇ ଆସୁଛି । କି ମଧୁର ମୋହନରେ ଏହି ଦୂର ବନମାଳାର ଶ୍ୟାମଳ ଚଞ୍ଚଳ

ଲତାପୁଞ୍ଜ ଉପରର ସୁବର୍ଣ୍ଣ ପରିଧାନ ପିନ୍ଧି ବସିଛନ୍ତି । ଆଜି ପୁଣି କାକ, କୋକିଳଙ୍କର ସୁମଧୁର ସ୍ୱର ଲହରୀ ତରୁଲତା ରାଜିର ଅନ୍ତରାଳରୁ ଅବିରଳ ଭାସି ଆସି ଏ ପ୍ରାନ୍ତରକୁ କିପରି ଯେପରି ବସନ୍ତଗୀତରେ ପୂର୍ଣ୍ଣ ସମ୍ପଦରେ ଜୀବନ୍ତ ରଖିଛି । ଆହା, ନବସହଯାମିନୀର ଏ କି ମଧୁର ମିଳନ ! ଶ୍ୟାମଳ କ୍ଷେତ୍ରରେ କି ପବିତ୍ର ଆଲିଙ୍ଗନ ! ଏ ମିଳନକାଳରେ, ଚତୁର୍ଦ୍ଦିଗରେ ପ୍ରକୃତିର ଏ ପୁଣ୍ୟ ଆଲିଙ୍ଗନ ମଧ୍ୟରେ, ସୈନିକବର, ଆଜି ବିଦାୟ ନେବାକୁ ହେବ, ଆଜି ଏ ଜନ୍ମର ବିଦାୟ । ପଛ ପୁନର୍ବାର ସାକ୍ଷାତ୍ ହୁଏ, ଉତ୍ତମ । ସେତେବେଳେ ହସି ହସି ପୁନର୍ବାର ପରସ୍ପରକୁ ଆଲିଙ୍ଗନ କରିବା, ଜୀବନର ଦୁଃଖ କାହାଣୀ ବିସ୍ମୃତ କରି ସୁଖରେ କାଳଯାପନ କରିବା, ନୋହିଲେ ଏ ଶେଷ ଦେଖା ଯେବାପରି ।” ଏହାହିଁ ତ ପ୍ରେମଭାବ !

ଏହି ବ୍ରହ୍ମଭାବରେ ପୂରିତ ଥିଲେ ଗୋଦାବରୀଶ, ଯେତେବେଳେ ସେ ଏକାକୀ, କିମ୍ବା କୌଣସି ପ୍ରିୟଙ୍କ ଗହଣରେ ବସିରହି ଜୀବନର ସୁଖଦୁଃଖ ହେଉଥାନ୍ତି ।

ଗୋଦାବରୀଶ ବାବୁ ଥିଲେ କବି ଅନ୍ତର୍ଦ୍ରଷ୍ଟା, ଭାବୁକ, ପ୍ରେମିକ, ବିଶ୍ୱ-ଭାବାପନ୍ନ ।

ଗୋଦାବରୀଶ ବାବୁଙ୍କ ଗୀତଗୁଚ୍ଛ ତ ଅନେକ । ଜୀବନଟା ସାରା ସେ ଅନ୍ତର ଭିତରେ ବସି ଗାଇଛନ୍ତି । ଆଜି ସେ ନାହାନ୍ତି । କିନ୍ତୁ ତାଙ୍କର ଗୀତଗୁଚ୍ଛ ଅଛି । ସେଇଥିରୁ ଆମେ ତାଙ୍କୁ ଦେଖିବୁ, ଭାବିବୁ ।

ଗୋଦାବରୀଶ ବାବୁଙ୍କ ଲେଖାରେ ସମବେଦନା, ଦୟା, କରୁଣା, ସହାନୁଭୂତି ଭର୍ତ୍ତି ।

ସେ ନାସ୍ତିକ ଥିଲେ ବୋଲି କୁହା ହୋଇଛି । କିନ୍ତୁ ନାସ୍ତିକ ଆସ୍ତିକ ଭାବ ରହିଛି ଉଭୟଭାବରେ ।

ଗୋଦାବରୀଶ ବାବୁ ଭାବର କବି, ସୁତରାଂ ସେ ଆସ୍ତିକ । ଈଶ୍ୱର କଥା ସ୍ୱତନ୍ତ୍ର । ଜୈନଧର୍ମରେ ତ ଈଶ୍ୱର ନାହିଁ । ତଥାପି ଜୈନଧର୍ମାବଲମ୍ବୀମାନେ ନାସ୍ତିକ ନୁହନ୍ତି । ବାସ୍ତବିକ ପାପପୁଣ୍ୟକୁ ଯେ ମାନେ ସେ ନାସ୍ତିକ କିପରି ହେବ ? ଆଜି ରହିଲା ପରଲୋକ । ସେ ବିଷୟର ଗହନ । ତା'କୁ ନେଇ ଦର୍ଶନ ତର୍କଣା କରିବା କିନ୍ତୁ ଲାଭଜନକ ନୁହେଁ । କବି ପୁନଃ ପୁନଃ ଅବତରଣ ଓ ପୁନର୍ଜନ୍ମ ଉପରେ ଜୋର ଦେଇ ହୋଇଛନ୍ତି; ତାଙ୍କ ଭାବ ଆମ ଚିତ୍ତରେ ସଞ୍ଚରୁଛି । ଅତଏବ ଗୋଦାବରୀଶ ବାବୁ ନାସ୍ତିକ ଥିଲେ ଭାବିବା ଭୁଲ ।

ସେ ତ ଏତେ ପ୍ରେମିକ ଥିଲେ ଯେ, ସେ ଯାହାକୁ ପ୍ରୀତି କରୁଥିଲେ ତାକୁ ଜୀବନ୍ତ ଦେବତା ଭାବୁଥିଲେ । ତାଙ୍କର ଆରାଧ୍ୟ କରୁଥାନ୍ତି, ଯାହା ଦେଶବନ୍ଧୁ ଦାଶଙ୍କୁ ଭାବ ଲେଖା ହୋଇଛି, ଦେଖନ୍ତୁ —

“ପରାଣଦେବତା କରି ପୂଜନ୍ତି ପତିତେ
ନିବାସିଣି ହୃଦପୀଠ ସ୍ନେହ-ସିଂହାସନେ ।
ନଇବେଦ୍ୟ ରୂପେ
ଯାହା ଧରିଛି ମୁଁ ଶିରେ
ପୂଜାଯୋଗ୍ୟ କରି ଯେବେ
ପାରନ୍ତି କିଣିତେ ।”

ଏହି ତ ଆସ୍ତିକ ଭାବ ! ଗୋଦାବରୀଶ ବାବୁ ନାଲିକାଳି ବା କାଳକସ୍ତୁରୀ ଲେଖି

ଏକ ପ୍ରକାର ଜୀବନଜମ୍ମୀ ହୋଇ ଯାଇଛନ୍ତି । କବି ଭାବ ଖୋଜେ ଭାଷାକୁ ସରଳ କରି, ପଣ୍ଡିତ ଭାଷା ଖୋଜେ ଭାବକୁ ଘୋଡ଼ାଇ—

ଏଇ ହେଲା ପାର୍ଥକ୍ୟ । ଗୋଦାବରୀଶ କବି; ପଣ୍ଡିତ ନୁହନ୍ତି । ଅତଏବ ଏଣିକି ପଣ୍ଡିତ ଗୋଦାବରୀଶ ନ ଲେଖି କବି ଗୋଦାବରୀଶ ଲେଖିବା ଉଚିତ ।

ତାଙ୍କର ଅମର ଲେଖାମାନରେ ସେ ଆମକୁ ଯେଉଁକି ବାଣୀ ଦେଇଛନ୍ତି ତାକୁ ଆଲୋଚନା କଲେ ଆମେ ଧନ୍ୟ ହେବା ।

ଗୋଦାବରୀଶ ବାବୁ ପ୍ରେମିକ ଥିଲେ, ଦେଶପ୍ରେମିକ ଯେପରି ଥିଲେ, ମାନବ-ପ୍ରେମିକ ମଧ୍ୟ ସେହିପରି । ଅର୍ଥାତ୍ ତାଙ୍କର ପ୍ରେମ ବିନ୍ଦୁ ରୁ ସିନ୍ଧୁକୁ ଗମନ କରିଥିଲା । ସେ ଖଣ୍ଡ୍‌ଦୃଷ୍ଟି ନ ଥିଲେ । ସେ ଥିଲେ ମହାନ୍, ମହୀୟାନ୍, ବ୍ରହ୍ମବିତ୍ ।

ସେଥିପାଇଁ ତାଙ୍କର '୧୮୧୭' ଗଳ୍ପଗୁଡ଼ିକ ଦେଶର ଚିନ୍ତାରେ ଭରପୂର ।

ଗୋଦାବରୀଶ ବାବୁ ସହଜ, ସରସ ପଦ୍ୟ ଯେପରି ଲେଖିଯାଇଛନ୍ତି, ସେହିପରି ସହଜ ସରସ ଗଦ୍ୟ ମଧ୍ୟ ଲେଖି ଯାଇଛନ୍ତି । ତାଙ୍କର ସବୁ ଲେଖା ହୃଦୟକୁ ସ୍ପର୍ଶ କରେ—ଜ୍ଞାନ ଗରିମା ତାଙ୍କ ଲେଖାରେ ନାହିଁ ।

ତାଙ୍କର ଗଳ୍ପଗୁଡ଼ିକରେ କୌତୁକ ଅଛି, ସରସତା ଅଛି, ବ୍ୟଙ୍ଗ ଅଛି । ଗୋଦାବରୀଶ ବାବୁ ଜଣେ ହାସ୍ୟପ୍ରିୟ ଲୋକ ଥିଲେ । ତାଙ୍କର ହସ ଥିଲା ଖୋଲା ହସ । ସେ ହସରେ ଲୋକ ପଡ଼ୁଥିଲେ, ଫାଟି ପଡ଼ୁଥିଲେ ।

ଏକ ଦିଗରେ ବେଦନାଭରା ହୃଦୟ, ଅନ୍ୟ ଦିଗରେ ହସ—ଅଦ୍ଭୁତ ସମାବେଶ ।

ପ୍ରେମିକ ଯେ, ସେ ସମୟ ସମୟରେ ବାଟବଣା ହୁଏ । ଗୋଦାବରୀଶ ବାବୁ ଯେ ସେହି ବାଟବଣା ସମୟ ସମୟରେ ହୋଇ ନାହାନ୍ତି, କିଏ ବା କହିବ ? ତାଙ୍କର ଦିଆସିଲି କାରଖାନା, ତାଙ୍କର ବାଣପୁର ବ୍ୟାଙ୍କ୍ ପାଇଁ ତାଙ୍କୁ ଜେଲ ଭୋଗିବାକୁ ହୋଇଛି । ଦେଶପ୍ରେମର ଏଇ ଧାରାଟି ହୁଏତ ଲୋକେ ବୁଝିବେ ନାହିଁ । ଦେଶପ୍ରେମରେ ସେ ଯେପରି ଜେଲ ଯାଇଛନ୍ତି—ଏଇ ଦିଆସିଲି କାରଖାନା, କୋ-ଅପରେଟିଭ୍ ବ୍ୟାଙ୍କ୍ ମଧ୍ୟ ସେହିପରି ।

ତେବେ ଭୁଲଭ୍ରାନ୍ତି ନ ଥିବା ଲୋକ କାହିଁ ? ଗୋଦାବରୀଶ ବାବୁ ମଧ୍ୟ ହୁଏତ ଜୀବନରେ ଏହିପରି କେତେକ ଭୁଲଭ୍ରାନ୍ତି କରିଛନ୍ତି । କିନ୍ତୁ ଗୋଟିଏ କଥା ସତ୍ୟ ରୂପରେ ପ୍ରତିଭାସିତ ହୋଇ ରହିଛି ଓ ରହିବ ଯେ ଗୋଦାବରୀଶ ଦରିଦ୍ର କବି, ସଚ୍ଚା ଦେଶଭକ୍ତ ଏବଂ ଉଚ୍ଚ ଆଦର୍ଶବାଦୀ ମନୁଷ୍ୟ ଥିଲେ, ଅର୍ଥାତ୍ ସେ ବ୍ରହ୍ମବାଦୀ ଥିଲେ ।

ବିଶାଳ ହର୍ମ୍ୟ ଅଟ୍ଟାଳିକା ଠାରୁ ତାଙ୍କୁ କୁଟୀର ଓ ଦରିଦ୍ର ଲୋକ ବେଶୀ ଆକର୍ଷଣ କରୁଥିଲା, ଅର୍ଥାତ୍ ସାନ ବଡ଼ ଭେଦ ଭୁଲି ସେ ବିଶାଳ ଭ୍ରାତୃତ୍ୱରେ ମଜ୍ଜି ରହିଥିଲେ ।

* * *

# ପଚ୍ଛଶ ବର୍ଷ ପୂର୍ବର କଥା

ପଚ୍ଛଶ କାର୍ତ୍ତିକ ପଞ୍ଚାଶୋତ୍ତର —

ସେ ଗାଁର ନାମ ଓଲନ୍ଦାସାହି । ସେଇଠି ଥିଲା ଏକ ସମୟରେ ମୋର କ୍ରୀଡ଼ାଭୂମି, ରଙ୍ଗାକପୂ, ଆନନ୍ଦଭବନ, ମଧୂ ସ୍ୱପ୍ନ ।

ଆଜ ପଚ୍ଛଶ ବର୍ଷ ପରେ ସେଇଠାରେ ମୁଁ ଆସି ପଡ଼ଛୁ ।

କାହିଁ ମୋର ଅତଥି ଅଭ୍ୟାଗତ ? କାହିଁ ମୋର ଗୁରୁଜନ ? କାହିଁ ମୋର ସାଙ୍ଗସାଥୀ ? ମନମା' କାହିଁ ? ବନେ ଜନ୍ମଗାଡରେ ସେ ବାକ ମୁକୁଳା କର ତନ୍ତୁଳ ଛଡ଼ାଉଥିଲା — 'ମାଆ ଲୋ' ଚାହିଁ କର ଚମକ ଗଲ ଏବଂ ଊର୍ଦ୍ଧ୍ୱଶ୍ୱାସରେ ଦଉଡ଼ମାଇଲା ।

କସ କସ କରୁ ଯିଏ ମୋତେ ବାଟ ଓଗାଳୁଥିଲା ତାକୁ ତ୍ରୁକେ ତ୍ରୁକେ କାମୁଡ଼ ବାରବାଟୀ ଦାଣ୍ଡରେ ଉପସ୍ଥିତ ହେଲି ।

ସେହି ଓଲନ୍ଦାସାହି, ସେହି ବନାମାର ବଙ୍ଗା — କେତେ ଖ୍ରସ୍ଥୀ ଘୁଇ ନେଇ କେତେ ଭବନା ଖେଳୁଛୁ ।

ଆଜ ପର୍ଯ୍ୟନ୍ତ ଓଲନ୍ଦା ସାହିରେ ଗୋଟିଏ ବଡ଼ କବର ଅଛି । କାହାର କବର ସେ କଥା ମଧ୍ୟ ଲେଖାଅଛି । ମାତ୍ର କେଉଁଠାରେ ସେ ଲେଖା ଛପି ଯାଇଛି । ହୁଏତ ଖୁବ୍ ଗୋଟିଏ ଯୋଦ୍ଧାର ସେ କବର । ଏହି ଓଲନ୍ଦାସାହି ସେତେବେଳେ ସମୃଦ୍ଧ ଥିଲା, ସୁନ୍ଦର ଥିଲା, କଳଙ୍କ ନଥା ତା' କୂଳ ଧୋଉଥିଲା । ଆଜ ମଧ୍ୟ ଧୋଉଛି । କନ୍ତୁ ଆଜ ମଇଳା ପାଣିରେ । ମ୍ୟୁନିସିପାଲିଟି ଯାଇଛି — କନ୍ତୁ ସଫା ନାହିଁ, ସୁରୁଖ ନାହିଁ । ଲୋକେ ସମସ୍ତ ଜାଗାକୁ ଅସଫା କରୁଛନ୍ତି — ଅସୁନ୍ଦର କରୁଛନ୍ତି । ବଡ଼ଲୋକ ସେଠୁ ଗଲେଣି । ସାଧାରଣ ଲୋକଙ୍କୁ ପଚ୍ଚରେ କଏ ।

ବାଲେଶ୍ୱର ମ୍ୟୁନିସିପାଲିଟି ନା ମର୍ଦ୍ଦ ହୋଇ ପଡ଼ିଛି । ସଫାସୁରୁଖ କରିବାର ଶକ୍ତି ତାର ନାହିଁ ।

ହଁ, ପୂର୍ବ କଲେଜ ହୋଇଛି । ଲୋକେ ମରୁଛନ୍ତି । କନ୍ତୁ ଆଜ ନର୍କରେ ସାନ୍ତି ହେବା କଥା । ବଜୁଳ ଆଲୁଅ ତା'ପାଖ ଦେଇ ଗ୍ରଲଯାଇଛି । ଏ ଗାଁରେ ନାହିଁ । ଅାହୁର ବାଳକା ବଦ୍ୟାଳୟ — ଉଚ୍ଚ ବାଳକା ବଦ୍ୟାଳୟ ହୋଇଛି ଅନତଦୂରରେ — କନ୍ତୁ ଓଲନ୍ଦାସାହି ସେହି ମଇଳା ସ୍ଥାନ ହୋଇ ରହିଛି ।

କଏ କରିବ ଏହାର ଉଦ୍ଧାର ? ଲୋକେ କାହାନ୍ତି ? କାହିଁ କ ? ଏବେ ତ ବାଡ଼ପିଲାମାନେ ଏ ଗାଁରୁ ବି.ଏ., ବି. ଏସ୍‌ସି. ପଢ଼ିଲେଣି — ତଥାପି କରିବ କ'ଣ ?

ଭୋଟ ନଥା ହେଉଛି — ପଇସା ବର୍ଷା ହେଉଛି । ତା'ପରେ ତାଙ୍କୁ ଆଉ ପଚ୍ଚରେ କଏ ?

ଏହି ହେଲା ଗ୍ରାମସେବା — ଦେଶସେବା । କେତେ ଲୋକ ଏହି ଗାଁରେ ହୋଇଛି । କେତେ ଦାନ ଖଇରାତ । କେତେ ଦୟାଧର୍ମ ।

ଆଜି ଓଲନ୍ଦାସାହୀ ଚଢ଼ଉଛି । ସାହକୁ ପିଟି ପିଟି—ବଡ଼ ସାହକୁ—ଏକା-ନାୟକଙ୍କ ପୁତ୍ରପ୍ରାପ୍ତ କରି ଦେଇଛନ୍ତି । ତାହାର ଭିତରେ ଗୋଟିଏ ଗୋଟିଏ ପ୍ରାଣୀ ଇଷ୍ଟ୍ରୋପ ମାରି ଚନ୍ଦନ ପାଇ ଟିକିଏ ଏ ପାଖ ସେପାଖ ହେଉଛନ୍ତି ।

ସରକାରି ଭଲ ଖବେ କରିବେ—ଗାଁଟି କପଳ ସଫା ହେବ—

କିନ୍ତୁ ଏବେ ତ ଜନତାର କଥା ନୁହେଁ —ସମାଜବାଦୀ ସରକାର । କିନ୍ତୁ ସେ ସରକାର କରୁଛି କ'ଣ ? ବ୍ୟକ୍ତିଗତ ଲୋକର ଉଦ୍ୟମକୁ ସାହାଯ୍ୟ ମଧ୍ୟ କରୁନାହିଁ । ବରଂ ବାଧା ଦେଉଛି — ଲାଇସେନ୍ସ ଦେଉଛି— ପାଟି କରନା, ଆପତ୍ତି କରନା,ନୋହିଲେ ଆହୁରି ଟିକସ ବଢ଼ିବ ।

ଏହା କି କ'ଣ ସମାଜବାଦ ? ଏହା କି କ'ଣ ସ୍ୱାଧୀନତା ? ଏହା କି କ'ଣ ମନୁଷ୍ୟକୁ ଉପରକୁ ଉଠାଇବା ସୋପାନ ?

ମୁଁ ଯେଉଁ ଘରେ ବସି ଏହି ଲେଖା ଲେଖୁଛି—ସେହି ଘରେ କେତେ ମାଛ ଭଜା ହୋଇଥିଲା—କେତେ କ୍ଷୀରପିଠା ହୋଇଥିଲା—କେତେ ଲୋକ ଖାଇଥିଲେ, କେତେ ଧର୍ମସଂକୀର୍ତ୍ତନ—କେତେ ଆନନ୍ଦ !

ଯେ ସବୁ ନ ଥିଲା ସେଥି ସମାଜବାଦ? ଆଜି ହୋଇଛି ତଥା ସମାଜତନ୍ତ୍ର ! ବାଜେ କଥା । କିନ୍ତୁ ମୁଁ କେଉଁ କଥା କହିବି କିଏ ? ତା ମୁହଁରେ ତାହାର ବଜା । ତେଣୁ ଓଲନ୍ଦାସାହିରେ ନର୍ଦ୍ଦମା ସଫା ହୁଏ ନାହିଁ ଭଲ କରି । ଓଲନ୍ଦା ସାହିରେ ଇଲେକ୍ଟ୍ରିକ୍ ଆଲୁଅ ଜଳେ ନାହିଁ । ଓଲନ୍ଦାସାହିରେ ବଡ଼ ନାଳରେ ଗନ୍ଧ—ଦୁର୍ଗନ୍ଧ, ଚାରିଆଡ଼େ ଦୁର୍ଗନ୍ଧ । କେତେ ମରିହଜି ଗଲେଣି । ମୋ ସାଙ୍ଗ ସାଥୀ କେତେ ଚାଲିଗଲେଣି । ମୁଁ ବଞ୍ଚି ରହିଛି । ଯାହା ଦେଖିଥିଲି—ଓଲନ୍ଦା ସାହିକୁ ତା'ଠାରୁ ଆଜି ପଚାଶ ବର୍ଷ ପରେ ଆହୁରି ଖରାପ ଦେଖୁଛି ।

ମ୍ୟୁନିସିପାଲିଟି ବାଜେ କଥା…ଷ୍ଟେଟ ବାଜେ କଥା । ଗଣତନ୍ତ୍ର ପଦ୍ଧତିରେ ରାଷ୍ଟ୍ର ଗଠନ ମିଥ୍ୟା କଥା । ବ୍ୟକ୍ତି ପୁଷ୍ଟ ହୁଅ—ଗୋଷ୍ଠୀ ଦୃଢ଼ ହୁଅ । ସମାଜତନ୍ତ୍ର ଗଢ଼ିବ ତେବେ । ଆଜି ଦୁଇ ଶହ ଜଣରେ ଯେଉଁ-ମାନେ ଧନୀ ଥିଲେ—ଯେଉଁମାନଙ୍କର ଦାନ ସହୃଦୟତା ଥିଲା—ଆଜି ତାହା ଲୋପ ପାଇଛି ।

ଆଜି ଅଙ୍ଗାର—ତାହା ମଧ୍ୟ ଜଳୁନାହିଁ—ନାଳୁଆ ହୋଇଛି—ଅଥଚ ଏତେ ଚେଷ୍ଟା ଚାଲିଛି ।

ହରିଜନ ଉଠୁଛନ୍ତି ଗୋଟିଏ ଗୋଟିଏ—ଅନ୍ୟ ପଡ଼ିଥିବା ଜାତି ମଧ୍ୟ ଉଠୁଛନ୍ତି ଗୋଟିଏ ଗୋଟିଏ ।

କିନ୍ତୁ ସେମାନଙ୍କୁ ଉଠାଇବାକୁ ରାଷ୍ଟ୍ର ଚେଷ୍ଟା କଲେ ବି ରାଷ୍ଟ୍ରଚାଳକ ଅମଣିଷ ହେବାରୁ ଚେଷ୍ଟା ବ୍ୟର୍ଥ ହୋଇଛି—

ତେଣୁ ଆଜି ରକ୍ତରେ ଉଷ୍ମତା ନାହିଁ—ଶରୀରରେ ବଳ ନାହିଁ—ମନରେ ଉତ୍ସାହ ନାହିଁ—ଅଛି କେବଳ ପରଶ୍ରୀକାତରତା, ଅଛି କେବଳ ନିଜର ଉଦରପୂର୍ତ୍ତି ।

ଦାନ୍ତ ଖୁଣ୍ଟିଗଲାଣି—ତଣ୍ଟି ଭାଙ୍ଗିଗଲାଣି—ନାକ ବୁଜିଗଲାଣି—କାନ୍ଧଗରୁ ଝୁଲି-ଗଲେଣି—ସାଧୁ ସରଳ ବ୍ୟକ୍ତି ମରିହଜି ଗଲେଣି । ଆଜି ଓଲନ୍ଦାସାହି ହୋଇଛି ଗୋଟିଏ ପ୍ରକାରର ବୃଦ୍ଧଭୂମି--ଶୋକର ପ୍ରେତାତ୍ମା । କେବେ ଆଉ ? ପଚାଶ ବର୍ଷ ଚାଲିଗଲା—ପ୍ରଶ୍ନ ରହିଛି ଏବେ ବି, କେବେ ଆଉ ? * * *

# ପଚାଶ ବର୍ଷର ଇତିହାସ

ମୋର ବୟସ ବର୍ତ୍ତମାନ ୬୬ ପୂର୍ବ, ଅଛି କହୁ । ମୋର ଜନ୍ମ ଅକ୍ଟୋବର ୩, ୧୮୯୦ । ଅତଏବ ମୁଁ ଓଡ଼ିଶାର ପଚାଶ ବର୍ଷର ଇତିହାସ କିଛି କିଛି ଲେଖି ପାରିବି ।

ସାମାଜିକ ଇତିହାସ ତ ଖୁବ୍ ଲେଖି-ପାରିବି । ରାଜନୀତିକ ଇତିହାସ ମଧ୍ୟ ଲେଖିହେବ । ତା'ଛଡ଼ା ଆର୍ଥନୀତିକ ଇତିହାସ । ଏ'ଟା ଠିକଏ କଷ୍ଟକର ହେବ । ଧର୍ମ ଇତିହାସ ମଧ୍ୟ ଲେଖିହେବ ।

ମୁଁ ବର୍ତ୍ତମାନ ସେହି ଚେଷ୍ଟା କରୁଛି । ପ୍ରଥମେ ସାମାଜିକ ଇତିହାସ ।

## ସାମାଜିକ ଇତିହାସ

ମୁଁ ଗୃହଆଶ୍ରମରେ ଜନ୍ମଗ୍ରହଣ କରିଥିଲି । ଗୃହସ୍ଥ ହାଣ୍ଡିଆ ଜାତି । ସୁତରାଂ ସେମାନଙ୍କର ପଡ଼ାପଢ଼ି ନ ଥାଏ । ଅଦ୍ୟପର୍ଯ୍ୟନ୍ତ ମଧ୍ୟ ସେପରି ନାହିଁ । ଗୃହସ୍ଥ-ମାନଙ୍କ ମଧ୍ୟରେ ବାଲ୍ୟବିବାହ ଥିଲା । ମୁଁ ବାହା ହୋଇଥିଲି ମୋ ତେ ସେତେବେଳେ ଦଶ ବର୍ଷ, ଆଉ ମୋର ସ୍ତ୍ରୀକୁ ଆଠ ବର୍ଷ । ଏହି ଥିଲା ଆମର ସାମାଜିକ ଜୀବନ । ଗୃହଆଶ୍ରମରେ ଯେଉଁ ଅବସ୍ଥା, ସମସ୍ତ ହାଣ୍ଡିଆଶ୍ରମରେ ସେହି ଅବସ୍ଥା ଥିଲା । ଆଜି ମଧ୍ୟ ସେହିପରି ଅବସ୍ଥା ଅଛି । ତେବେ ବିବାହର ବୟସ ଏବେ କାଳର ଗତିରେ କିଛି ବଢ଼ିଯାଇଛି । ଆଜି ଏତେ ଶ୍ରେଷ୍ଠ କନ୍ୟା ବିବାହ ଦେଖାଯାଏ ନାହିଁ । ତାହା ବିରଳ ହୋଇଆସିଲାଣି ।

ପର୍ଦ୍ଦା ଖୁବ୍ ଥିଲା । ଆଜି ମଧ୍ୟ ରହିଛି । ଯାହା କମିଛି ତାହା କିଛି ନୁହେଁ । ଅତି କମ୍ ।

ଶିକ୍ଷା ମଧ୍ୟ କିଛି ନୁହେଁ । ଯାହା ଥିଲା, ଆଜି ମଧ୍ୟ ପ୍ରାୟ ସେହିପରି ରହିଛି । ହାଣ୍ଡିଆ ଜାତିର ସ୍ତ୍ରୀଲୋକ କଥା ଛାଡ଼, ପୁରୁଷ ମଧ୍ୟ ପାଠ ଆଜି ପଢ଼ୁନାହାନ୍ତି । ସେ ସୁବିଧା ମଧ୍ୟ ତାଙ୍କର ନାହିଁ ।

କିପରି କେଜାଣି ମୁଁ ଠିକଏ ପଢ଼ାପଢ଼ିରେ ପଡ଼ିଗଲି । ଦୋକାନରେ ବସୁଥିଲି— ପିଲାଟି ବଡ଼ନେ ଜଳଖିଆ ଇତ୍ୟାଦ କରିବାରେ ବାବାଙ୍କୁ ସାହାଯ୍ୟ କରୁଥିଲି—ତଥାପି କିପରି କେଜାଣି ପଢ଼ାରେ ମୁଁ ଉଠିଗଲି । ମାଇନର ପାସ୍ କରି ଦୋକାନରେ ବସିଥିଲି । କିନ୍ତୁ ଭାଗ୍ୟର ଜୋର୍‌ରେ ମୁଁ ପୁଣି ବାଲେଶ୍ୱର ଜିଲ୍ଲା ସ୍କୁଲକୁ ଗଲି ଏବଂ ଚତୁର୍ଥ ଶ୍ରେଣୀ, ବର୍ତ୍ତମାନ ଅଷ୍ଟମ ଶ୍ରେଣୀରେ ଭର୍ତ୍ତି ହେଲି । ଏଥିର ସେ ସମୟର ହେଡ୍‌ମାଷ୍ଟର ତୈଳୋକ୍ୟନାଥ ସାହାଯ୍ୟ କରିଥିଲେ । ସେ ଆମ ଦୋକାନରୁ ଜଳଖିଆ ନେଉଥିଲେ । ଦିନେ ମୋ ବାପାଙ୍କୁ ପଚାରିଲେ, "କ୍ଷେତ୍ରମୋହନ, ଏ ପିଲାଟିକୁ ପଢ଼ାଇଲ ନାହିଁ କାହିଁକି ? ଏ ତ ବୁଦ୍ଧିଆ ଦିଶୁଛି । କିଛି ପଢ଼ିଛି ?" ବାବା କହିଲେ, "ସେ ମାଇନର ପାସ୍ କରିଛି ।"

"ମାଇନର ପାସ୍ କରିଛି ?" ତା'ପରେ ମୋତେ ଦୁଇ ବର୍ଷ ଇଂରେଜୀ ପଢ଼ାଇଲେ । ଖୁସି ହେଲେ । ସେ କହିଲେ, "ଏହାକୁ ପଠାଅ, ମୁଁ ସ୍କୁଲରେ ଫ୍ରି କରି ଦେବି ।" ଏହାପରେ ମୁଁ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଭର୍ତ୍ତି ହେଲି । କିନ୍ତୁ ହାଡ଼ିଆ ଜାତି ଭିତରେ କେତୋଟି ଏପରି ପଢ଼ିବାର ସୁଯୋଗ ପାଆନ୍ତି ?

ଏହା ଉପରେ ପୁଣି ଈର୍ଷା ଥିଲା । ଅନ୍ୟ ଉଚ୍ଚ ଜାତିର କଥା ଛାଡ଼ିଦିଅ, ନିଜ ଜାତିର, ଆତ୍ମୀୟଙ୍କର । ମୋର ମଉସା ମୋର ଚଢ଼ଚଢ଼ିରେ ଉନ୍ନତି ଦେଖି ଏବଂ ନିଜ ପିଲାର ପଢ଼ାପଢ଼ିରେ ଉନ୍ନତି ହେଉ ନାହିଁ ଦେଖି ଅନେକ ସମୟରେ ଅଣ୍ଟା ବଦ୍ଧୃତ କରି ଲୋକଙ୍କ ଆଗରେ କହନ୍ତି--କ୍ଷେମମୋହନ ଗୁଡ଼ିଆର ପୁଅ ପାଠ ପଢ଼ୁଛି, ହୋପଟି ହେବ । ବିଂଶ ଶତାବ୍ଦୀର ଆରମ୍ଭରେ ଉତ୍କଳରେ ଏହି ଅବସ୍ଥା ଥିଲା । ଭତହାଣ୍ଡିରୁ ଗୋଟିଏ ଭାତ ଚିପିଲେ ଜଣାପଡ଼େ ଭାତ କିପରି ସିଝିଛି । ଏ ଠିକ୍ ସେହିପରି କଥା । ସବୁ ହାଡ଼ିଆ ଜାତିର ଏହି ଅବସ୍ଥା ଥିଲା ସେତେବେଳେ ।

ଆଜି ବ୍ରାହ୍ମଣମାନେ ତ ସମାଜର ଶୀର୍ଷସ୍ଥାନ ଅଧିକାର କରି ରହିଥିଲେ । ଆମ ଘରେ ଆମ ପୁରୋହିତ ଖାଇସାରିଲେ ତାଙ୍କ ସେହି ପଥର ବାସନରେ ମୋତେ ଖାଇବାକୁ କହନ୍ତି ମୋର ମା' । ପୁରୋହିତର ଅଇଁଠା ଅଇଁଠା ନୁହେଁ— ତାହା ପ୍ରସାଦ । ଏହି ମନୋଭାବ ଥିଲା ସେତେବେଳେ ।

ଏ ତ ହାଡ଼ିଆ ଜାତିର କଥା । ଅଛୁଆଁ-ମାନଙ୍କ କଥା ଅବା କହିବ କ'ଣ ? ତେବେ ଗୋଟିଏ କଥା ଏଠାରେ କହିବାକୁ ଚାହେଁ । ସେ ସମୟରେ ମହାପ୍ରସାଦର ଶକ୍ତି ଖୁବ୍ ଥିଲା । ସେଥିରେ ଜାତିଭେଦ ନ ଥିଲା ।

ଦିନେ ନସୁନମା' (ଆମ ହାଡ଼ିଆଣୀ) ଶଗବେଳେ ଆସି ମୋ ମା' ପାଖରେ ଗୋଟିଏ ପାନ ଗୁଞ୍ଜିଦେଇ କହିଲା, 'ମହାପ୍ରସାଦ ଅଛି, ତୁ ମୋର ଭଉଣୀ ହେଲୁ ।' ମା' ନାହିଁ କରି ପାରିଲେ ନାହିଁ । ସେହି ଦିନଠାରୁ ନସୁନ ମୋର ଭାଇ । ସେ ମୋତେ ଭାଇ ବୋଲି ଡାକିବାର ଅଧିକାର ପାଇଲା । ନସୁନମା' ଆମ ଘରେ ପଶିବାର ସାହସ ପାଇଲା ।

ଆଜି ପଚାଶ ବର୍ଷ ବିତିଗଲାଣି । ତଥାପି ମୁଁ ଦେଖିଛି, ଆମ ଘରେ ହାଣ୍ଡିଶାଳକୁ ଦଶବର୍ଷ ଆଗରୁ କେହି ପଶି ପାରୁ ନ ଥିଲେ । ଆଜି ଆମ ଘରେ ହାଣ୍ଡିଶାଳରେ ଅନ୍ୟ ଲୋକ ପଶିଯାଉଛନ୍ତି ସତ — କିନ୍ତୁ ଏ ପାଠ ଅନ୍ୟ ଘରେ ସହଜରେ ହେବ ନାହିଁ ।

ଯୋଉଁ ଘରେ ପଶୁ ନ ଥିଲା, ଗୁହାଳରେ ଖୋସା ହେଉଥିଲା । ମିସି ଆସୁଥିଲା ମୋର ବଡ଼ ଭଉଣୀକୁ ପଢ଼ାଇବା ପାଇଁ । ଗୁହାଳଘରେ ଗୋଟିଏ ଅଖା ଥାଏ । ସେ ଆସିଲେ ସେହି ଅଖାରେ ବସେ । ଆଉ ମୋର ବଡ଼ ଭଉଣୀ ଗୋଟିଏ କସ୍ତାଲୁଗା (ରଙ୍ଗଣୀ ଲୁଗା) ପିନ୍ଧି ତା'ପାଖରେ ବସି ପଢ଼େ । ସେ ଚାଲିଗଲେ, ଅଖାଟା ଉଠାଇ ରଖନ୍ତି । ଆଉ ସେ ସ୍ଥାନକୁ ଗୋବରରେ ଲିପି ଦିଅନ୍ତି ।

ଏ ଅବସ୍ଥା ଆଜି ନାହିଁ । ଏ ଅବସ୍ଥାର ସମ୍ପୂର୍ଣ୍ଣ ପରିବର୍ତ୍ତନ ହୋଇଅଛି ।

ପ୍ରତି ସମାଜରେ ଦୁଇଟା ଶକ୍ତି ବରାବର କାର୍ଯ୍ୟ କରେ । ଗୋଟିଏ

ହେଉଛି ରକ୍ଷଣଶୀଳତା, ଆଉ ଗୋଟିଏ ହେଉଛି ଗତିଶୀଳତା । ଏହି ଦୁଇ ଶକ୍ତିର ସଂଘାତ । ସଂଘାତରେ ପରିବର୍ତ୍ତନ ଆସୁଥାଏ ।

ମୁଁ ଦେଖିଛି ପିଲାଟି ଦିନେ ଆମ ଓଡ଼ିଆଘରେ ସ୍ତ୍ରୀଲୋକମାନେ ଲୁଗା ଛଡ଼ା ଆଉ ଅଙ୍ଗିଆ କାଞ୍ଚୁଲା ବ୍ୟବହାର କରୁ ନ ଥିଲେ । ଅଙ୍ଗିଆ କାଞ୍ଚୁଲା ଇତ୍ୟାଦି ଯେଉଁମାନେ ବ୍ୟବହାର କରନ୍ତି, ସେମାନଙ୍କୁ ବେଶ୍ୟା କୁହାଯାଉଥିଲା । ବେଶରୁ ବେଶ୍ୟା ହୋଇଛି । ଅତଏବ ଭଦ୍ରଘରର ସ୍ତ୍ରୀଲୋକମାନେ ଏତେ ବେଶ ହେଉ ନ ଥିଲେ ।

କିନ୍ତୁ ଏହାର ସାଙ୍ଗେ ସାଙ୍ଗେ ଦେଖା-ଯାଉଛି ଯେ, ମୋର ପିଲାଦିନେ ବୁଢ଼ୀଆ ବୁଢ଼ୀଆ ବୋହୂମାନେ ଏବଂ ବଡ଼ ମଧ୍ୟ— ଝୁମ୍ପିଆ, ଝମ୍ ଝମ୍ ସବୁ ପିନ୍ଧୁଥିଲେ ଏବଂ ବଧୂ ଓଢ଼ଣା ଦେଇଗଲେ ମଧ୍ୟ ଦୂରରୁ ତା'ର ପାଦର ଧ୍ୱନି ଶୁଣା ଯାଉଥିଲା । ସେ ଶିଞ୍ଜିନରେ ମନ ଉଲ୍ଲସିତ ହେଉଥିଲା । ସେହି ଅବଗୁଣ୍ଠନବତୀଙ୍କୁ ଦେଖିବାକୁ ଇଚ୍ଛା ହେଉଥିଲା । କିନ୍ତୁ ଏହି ପଚିଶ ବର୍ଷ ଭିତରେ ସେ ସବୁର ଅନେକ ପରିବର୍ତ୍ତନ ହୋଇଛି ସହରରେ— ମଫସଲରେ ବର୍ତ୍ତମାନ ସୁଦ୍ଧା ଓଢ଼ଣା, କଉଣସିରେ ହୁଏତ ଟୁଁ ଟାଁ ଠାର ଅଛି ।

ସହରରେ ଆଜି ତ ହାଇସ୍କୁଲ-ମାନଙ୍କରେ, କଲେଜରେ ପୁଅଝିଅ ଏକାଠି ପଢ଼ିଲେଣି—ସେଠି ଓଢ଼ଣାର କଥା ଆଉ ନାହିଁ । ପୁନଶ୍ଚ ଓଡ଼ିଆଣୀ ଝିଅମାନେ ଫ୍ରକ୍, ସେମିଜ୍, ସାୟା, ଇତ୍ୟାଦି ପିନ୍ଧିଲେଣି । ଓଡ଼ିଆପୁଏ ଆଜି ସବୁ ଲୁଙ୍ଗି ପିନ୍ଧିଲେଣି । ଆଗେ କୌଣସି ହିନ୍ଦୁ ଲୁଙ୍ଗି ପିନ୍ଧୁ ନ ଥିଲେ । ଏହା ପଠାଣର ଚିହ୍ନ । ପିଲାଦିନେ ମୁଁ ଚୁଟି ରଖିଥିଲି, ମାଳୀ ପିନ୍ଧୁଥିଲି । ଏହା ହିନ୍ଦୁତ୍ୱର ବଡ଼ ଲକ୍ଷଣ, କିନ୍ତୁ ଆଜି ତାହା ଗଲାଣି । ମୁଁ ଯେତେବେଳେ ସଂସ୍କୃତ ପଢ଼ୁଥିଲି ଏବଂ କାବ୍ୟ ବିଶାରଦ, କାବ୍ୟତୀର୍ଥ ପରୀକ୍ଷା ଆଦି ଦେବାକୁ ଯାଉଥିଲି, ସେତେ-ବେଳେ ମୁଣ୍ଡରେ ଗୋଟିଏ ଚନ୍ଦନଟୋପା ଲଗାଉଥିଲି ଏବଂ ବ୍ରାହ୍ମଣପଣ୍ଡିତମାନେ ମୋର ସେ ସ୍ୱଭାବ ଦେଖି ମୋତେ ବଡ଼ ଆଦର କରୁଥିଲେ । ଆଜି ସଂସ୍କୃତ କଲେଜର ଛାତ୍ରମାନେ ଲୁଙ୍ଗି ଖୁବ୍ ପିନ୍ଧିଲେଣି— ଟିକି ବି ଉଠିଗଲାଣି କ୍ରମଶଃ—

ପିଲାଦିନେ ଦେଖିଛି, ଖୁବ୍ ଠାକୁରାଣୀ ପୂଜା ହେଉଥିଲା ଗ୍ରାମ ଗ୍ରାମରେ—କାଳଶୀ ଲାଗୁଥିଲା । ଆଜିକାଲି କାଳଶୀ ଲାଗିବାର ଦେଖାଯାଉନାହିଁ ।

୧୯୦୯ ସାଲର କଥା କହୁଛି । ନାରାୟଣ ମିଶ୍ର (ଅଧ୍ୟାପକ) ମୋର ସାଙ୍ଗ । ମୁଁ ତାଙ୍କ ଘରକୁ ଯାଉଛି, ପାଲ୍‌କିର ବନ୍ଦୋବସ୍ତ ହୋଇଛି । ନାରାୟଣ ମିଶ୍ରଙ୍କର ସ୍ତ୍ରୀ ଘରକୁ ଆସିବେ—ଏହି ଉପଲକ୍ଷରେ । ମୁଁ ନିମନ୍ତ୍ରିତ, ସମ୍ମାନିତ ହୋଇ ନିଆ ହେଉଛି ତାଙ୍କ ଘରକୁ । କାଠଯୋଡ଼ି ଆର ପାରିକୁ, ଭିଙ୍ଗାରପୁର ପାଖକୁ, ପାଲ୍‌କିରେ ।

ଗୋଟିଏ ଜାଗାରେ ପାଲ୍‌କି ରହିଲା । ପାଲ୍‌କିବାଲା ଥକା ମେଣ୍ଟିଲେ । ସେଇଠି ମୋତେ ପଚାରିଲେ, ବାବୁ ଆପଣ କ ଘର ? ମୁଁ କହିଲି, ଗୁଡ଼ିଆ । ତା'ପରେ ମହା ମୁସ୍କିଲ । ସେମାନେ ଗଉଡ଼, ମୁଁ ଗୁଡ଼ିଆ; ସେମାନେ ମୋତେ କାନ୍ଧେଇ

କେବେ କପର ? ସୁରଙ୍ଗ ପାଲ୍ କୀ ସେଇଠି ରହିଲା । ଏମାନେ ଯାଇ ନାରାୟଣ ମିଶ୍ରଙ୍କ ଘରେ ଆପତ୍ତି କଲେ । ନାରାୟଣ ହଟ-ହଟାରେ ପଡ଼ିଲା, ମୁଁ ମଧ୍ୟ, ଆଉ ପାଲ୍ କୀ ବାଲାମାନେ ମଧ୍ୟ ।

ତା'ପରେ ଦେଖିଛି, ଗଉଡ଼ମାନଙ୍କର ପଇତାପକା ଆନ୍ଦୋଳନ । ପାଲ୍ କୀ ଆଉ ବୋହିବେ ନାହିଁ । କେତେ ମାରପିଟ, ମାଡ଼ଗୋଳ, ମୋକଦ୍ଦମା । ଶେଷରେ ଏପରି ହୋଇଛି ଯେ ମୁଁ ନିଜେ ପୁରୋହିତ ହୋଇ ପ୍ରାୟ ଦୁଇ ତିନି ହଜାର ଗଉଡ଼ଙ୍କୁ କଲକତାରେ ଥରେ ପଇତା ଦେଇଛି । ଅଥଚ ମୋର ପଇତା ନାହିଁ । ଆଉ ଥରେ ଯାଜପୁର ଅଞ୍ଚଳରେ ଗଉଡ଼ ଖଣ୍ଡାୟତ ଲଢ଼ଆ ବେଳେ ଯାଇଥିଲି । ଅସଂଖ୍ୟ ଲୋକ ସଭ୍ୟ, ସେଇଠି ମୁଁ କହିଲି — ପଇତାର ଉଦ୍ଦେଶ୍ୟ — ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନା, ଦାନ, ପ୍ରତିଗ୍ରହ — ଏହି ହେଲା ଛ' ଟିଅ । ଏହା ତ ହାଡ଼ି ମଧ୍ୟ ଗ୍ରହଣ କରିପାରେ, ଯଦି ସେ ଏହି ଛ'ଟା କାର୍ଯ୍ୟ କରେ ! ମହା ଆନ୍ଦୋଳନ ହେଲା, ହାଡ଼ିମାନେ ଅନେକ ସେଠାରେ ଥିଲେ । ଯଜ୍ଞ ପରେ ମୁଁ ହେଲି ତାଙ୍କ ଦେବତା । ମନୁଷ୍ୟ ଏହିପରି ପରକୁ ଆପଣାର କରିପାରେ । ଏହିପରି ସମାଜର ରକ୍ଷଣଶୀଳତା ଏବଂ ଗତିଶୀଳତା — ଏହି ଦୁଇ ପ୍ରଭାବ ବରାବର କାର୍ଯ୍ୟ କରୁଛି ।

ଆଗେ ବଙ୍ଗାଳୀ ଓଡ଼ିଆ ବାହାଘର ସେତେ ନ ଥିଲା । ଯେଉଁମାନେ କରୁଥିଲେ, ସେମାନେ ବ୍ରାହ୍ମ ହେଉଥିଲେ । ଏବେ କେତେ ବର୍ଷ ଭିତରେ ବଙ୍ଗାଳୀ ଓଡ଼ିଆ ବାହାଘର ତା' ମନକୁ ହୋଇ-ଯାଉଛି—ବ୍ରାହ୍ମ ହେବାର ଦରକାର ନାହିଁ । ଏପରି କି କେତେକ ଜାଗାରେ ହିନ୍ଦୁ ଖ୍ରୀଷ୍ଟିୟାନ ବାହାଘର ହୋଇଛି । ଧର୍ମପରିବର୍ତ୍ତନ ଦରକାର ହୋଇନାହିଁ । ଏପରି କି ହାଡ଼ି ଓ ବ୍ରାହ୍ମଣ ପରିବାର ମଧ୍ୟରେ ସମ୍ବନ୍ଧ—ବୈବାହିକ ସମ୍ପର୍କ ସ୍ଥାପିତ ହୋଇଛି—ଏହା ଛଡ଼ା ତେଲୁଗୁ ବଙ୍ଗାଳୀ, ତେଲୁଗୁ ଓଡ଼ିଆ ବାହାଘର ଦେଖା ଦେଇଛି । ଅତଏବ ସମାଜର ଗତିଶୀଳତା ଢେର ବଢ଼ିଛି । କିନ୍ତୁ ଆହୁରି ବଢ଼ିବ । କାରଣ ଯନ୍ତ୍ରଯୁଗ ହୁହୁ କରି ଆସୁଛି ।

ମୁଁ ଦେଖିଛି ୧୯୪୬/୪୭ ରେ, ମୁଁ ଯେତେବେଳେ ଦିଲ୍ଲୀ ଗଲି, ସୁବଳକୁ ନେଇ ହରିଜନ ସେବକସଂଘରେ ତାଙ୍କୁ ଭର୍ତ୍ତି କରିବା ପାଇଁ— ରେଲଗାଡ଼ିରେ ତା'ର ପରିବର୍ତ୍ତନ ହୋଇଛି । କାରଣ ସେ ଗହ୍ମାପୂର୍ଣ୍ଣିମା ଦିନ ଗୋଟାଏ ପଇତା ପକେଇଥିଲା—ଆଉ ତାକୁ କାଢ଼ିନାହିଁ । ମୁଁ କହିଲି, ଦେଖ ସୁବଳ, ଏଥର ବ୍ରାହ୍ମଣ ହୋଇଗଲ । ଏହାପରେ ସୁବଳ ହରିଜନ ସେବକ ସଂଘକୁ ଯାଇଁ ହରିଜନ ବୋଲାଇବ କିପରି, ଏହି ଭାବନା । ମୁଁ ବଡ଼ ହଟହଟାରେ ପଡ଼ିଲି, ତା'କୁ ଅନେକ ବୁଝାଇସୁଝାଇ ସେଠାକୁ ନେଲି । କିନ୍ତୁ ମୋ ମନ ମଧ୍ୟ କହୁଥାଏ, କାହିଁକି ସେ ହରିଜନ ହେବ ? ହରିଜନର ଗୋଟିଏ ଭୁଲ ଅର୍ଥ ହୋଇଯାଇଛି । ସେ କାହିଁକି ହରିଜନ ହୋଇରହିବ ? ଗୁରୁଜନ ନ ହେବ ? ଏହିପରି ସମାଜରେ ହୁହୁ ପରିବର୍ତ୍ତନ ଆସୁଛି । କିନ୍ତୁ ହୁହୁ କରି କିଛି ହୋଇ ପାରୁନାହିଁ । ସମାଜରେ ରକ୍ଷଣଶୀଳତା ଏବଂ ଗତିଶୀଳତା ଭିତରେ

ଗୋଟିଏ ଚିହ୍ନ ଲାଗି ଲାଗି ସମାଜ ଅଗ୍ରସର ହେଉଛି । ନୂତନ ଧର୍ମ, ନୂତନ ମୂଲ୍ୟ ଜୀବନରେ ହେଉଛି । ପଚ୍ଚିଶ ବର୍ଷ ଭିତରେ ଅନେକ ପରିବର୍ତ୍ତନ ହୋଇଛି । କିନ୍ତୁ ଆହୁରି ଅନେକ ପରିବର୍ତ୍ତନ ହେବାର ଅଛି । ମୋ'ର ଘରେ ମୋର ଝିଅର ଟିକିଏ ବୟସ ହେବାରୁ, ମୋର ମା'-ବାପାମାନେ ତା'ଙ୍କୁ ବିବାହ କରିଦେଲେ, ତା'ର ପଢ଼ାପଢ଼ି ବନ୍ଦ କରି । କିନ୍ତୁ ଆଜି ମୋ'ର ଘରେ ଭଡ଼ା ଦେଇ ଅଛନ୍ତି ପଣ୍ଡିତ ବଂଶ—ତାଙ୍କର ଝିଅ ଯୁବତୀ ହୋଇ ସୁଦ୍ଧା ସ୍କୁଲକୁ ଯାଉଛି । ଆଉ ଏଣିକି ଅଷ୍ଟବର୍ଷା ଭବେତ୍ ଗୌରୀ; ଦଶବର୍ଷା ଚ ରୋହିଣୀ, ତଦୋର୍ଦ୍ଧ୍ୱଂ ରଜସ୍ୱଳା ଚଳୁନାହିଁ । ଏବେ ଆଉ ରଜସ୍ୱଳା ପରେ କନ୍ୟାକୁ ଘରେ ରଖିଲେ ପିତାମାତାଙ୍କୁ କନ୍ୟାର ରକ୍ତସ୍ରାବ ପାନ କରିବା ପାତକ ଲାଗୁନାହିଁ । ଏ ଗୋଟିଏ ମହାପରିବର୍ତ୍ତନ ହୋଇଛି ।

ଗୋଟିଏ ଗୋଟିଏ, ଅଥଚ ଏପରି ଘଟଣା ମଧ୍ୟ ଦେଖାଯାଉଛି—ଏକ ଜାଗାରେ ଏହି ବିବାହ ବା ପ୍ରେମ ସମ୍ପର୍କରେ ପିତାମାତାମାନେ ବାଧା ଦେବା ଫଳରେ emotional cris ବା ଭାବନା ବିପ୍ଳବ ଘଟିଛି ଯେ, କେଉଁଠି ଯୁବକ, କେଉଁଠି ଅବା ଯୁବତୀ, କେଉଁଠି ଅବା ଉଭୟ ଆତ୍ମହତ୍ୟା କରିଛନ୍ତି । ଏ ଘଟଣା ଏବେ ସମାଜରେ ଦେଖାଯାଉଛି । ଆଗେ ଏହା ନ ଥିଲା । କାରଣ ସେତେବେଳର ସମାଜ ବଡ଼ କଠୋର କଠିନ ନିଗଡ଼ରେ ବନ୍ଧା ଥିଲା । ଆଜି ସମାଜରେ ସ୍ୱାତନ୍ତ୍ର୍ୟ, ଦୁଗ୍ରକାମି ପଶିଛି ନବଯୁଗର ପ୍ରଭାବରୁ, ଏବଂ ତା'ର ଫଳରେ ଏହି ଭାବନା—ବିପ୍ଳବ ଦେଖାଯାଉଛି ।

ଆଜି ସମାଜରେ ଦେଖା ଯାଉଛି ଅନେକ ଝିଅମାନେ ଯୁବତୀ ହୋଇ ନାଚୁଛନ୍ତି—ଓଡ଼ିଶୀ ନାଚ, କଥକ ନାଚ, ମଣିପୁରୀ ନାଚ, ଏପରି କି ଆଉ କିଛି ଦିନ ପରେ Ball Dance ମଧ୍ୟ ହୁଏତ ଚାଲିବ । ଅବାରିତ ଗତି ବର୍ତ୍ତମାନ । ବର୍ତ୍ତମାନ ଦିଲ୍ଲୀରେ ସବୁ ଇଉରୋପ, ଆମେରିକା, ରୁଷିଆ ଇତ୍ୟାଦି ଦେଶର ରାଜଦୂତମାନେ ଆସି ରହିଛନ୍ତି—ସେମାନଙ୍କର ରୀତିନୀତି ଆମକୁ ବହୁ ପରିମାଣରେ ପ୍ରଭାବିତ କରୁଛି ଏବଂ ବହୁ ଜୀବିଭାବରେ ଏବଂ ମନୁଷ୍ୟ ମନଭିତରେ ନୂତନ ଅଭିଳାଷାର ଲାଳସା ଯେ ରହିଛି, ସେ ଟିକିଏ ସୁବିଧା ପାଇଲେ ଆଉ ଗୁଡ଼ିବାକୁ ଚାହେଁ ନାହିଁ । ତାହାର ଫଳରେ ଆଜି ଅନେକ ପରିବର୍ତ୍ତନ ହେଉଛି । ଆଜି ପୁଣି Cultural activities ( ସାଂସ୍କୃତିକ କାର୍ଯ୍ୟକ୍ରମ ) ନାମରେ ଖୁବ୍ ନାଚ, ଖୁବ୍ ଗାନ, ଖୁବ୍ ବୁଲାବୁଲି—ଦିଲ୍ଲୀ, ବୋମ୍ବାଇ, ମାନ୍ଦ୍ରାଜ—ଖୁବ୍ ପ୍ରତିଯୋଗିତା ଚାଲିଛି । ସମସ୍ତ ସମସ୍ତରେ ଭୟ ହେଉଛି ଫଳ କ'ଣ ହେବ ? କିନ୍ତୁ ସମାଜର ଅନ୍ତଃସ୍ଥଳରେ ଏହି ଯେଉଁ ଦୁଇ ଶକ୍ତି ପ୍ରତ୍ୟେକ ଭିତରେ ଭିତରେ କାର୍ଯ୍ୟ କରୁଛି — ରକ୍ଷଣଶୀଳତା ଆଉ ଚଳଶୀଳତା—ମେଣ୍ଟ ତାକୁ ରକ୍ଷା କରି କରି ଚାଲିବ ବୋଲି ମୁଁ ଆଶା କରେ । ତେବେ କିଏ ଜାଣିବ, ଯୋତ୍ତମ ଓ ଗୋମସ୍ତ କେଉଁ କେଉଁ ଜାଗାରେ ନ ହେବ ବୋଲି ?

ଆଜି ଗୃହସ୍ଥ ଝିଅ ନାଚିବାରୁ ବେଶ୍ୟାନାଚ ଉଠିଯାଇଛି । ସେହିପରି ବେଶ୍ୟା ମଧ୍ୟ ଉଠିଯାଉଛି । ପୂର୍ବପରି ଆଜି ବେଶ୍ୟା ରଖୁନାହାନ୍ତି ଲୋକେ । ଆଗେ ଏହା ଆଭିଜାତ୍ୟର ଗୋଟିଏ ଗୌରବର ବସ୍ତୁ ଥିଲା — ବେଶ୍ୟା ରଖିବା । ଧନୀ ଲୋକମାନେ, ସେମାନଙ୍କର ପୁଅମାନେ, ଗୋଟିଏ ଯୋଡ଼ିଏ ବେଶ୍ୟା ରଖିଥିଲେ । ଏ ଅବସ୍ଥାର ପରିବର୍ତ୍ତନ ଆଜି ହୋଇଛି ।

ସାମାଜିକ ପରିବର୍ତ୍ତନ ଆହୁରି କେତେ ହୋଇଛି । ବ୍ରାହ୍ମଣମାନେ ମଧ୍ୟ ଆଜି ଘରେ କୁକୁଡ଼ା ପୋଷିଲେଣି ।

## ଅର୍ଥନୀତିକ ଇତିହାସ

ପଚାଶ ବର୍ଷ ପୂର୍ବେ ମୁଁ ଦେଖିଛି, ଆମ ବାଲେଶ୍ୱରରେ ଅନେକଗୁଡ଼ିଏ କୋଠାଘର ଥିଲା । ପୂର୍ବେ ଲୁଣସୋଲ୍ଟାନ ଚାଲିଥିଲା । ତେଣୁ ଲୋକଙ୍କ ହାତରେ ପଇସା ଥିଲା । ରେଳ ହୋଇଯିବା ପରେ ସେ ଲୁଣ ସୋଲ୍ଟାନ ଆଉ ଅନ୍ୟାନ୍ୟ କାରବାର ରେଳରେ ହିଁ ହେଲା — ଜାହାଜରେ ହେଲା ନାହିଁ ।

ସୁତରାଂ ଜାହାଜ (coastal shipping) ଆଉ ଚଳଣ ହେଲା ନାହିଁ । ଯାହା ଥିଲା, ସେ ସବୁ ଭାଙ୍ଗିବାକୁ ଲାଗିଲା । ଏହିପରି ଆର୍ଥିକ ଦୁଃସ୍ଥିତି ଜନ୍ମିଲା ।

ରେଳ ଲାଇନ୍ ପଡ଼ା ସାଙ୍ଗେ ସାଙ୍ଗେ ବଙ୍ଗଦେଶରୁ ଶାସନ କରିବାପାଇଁ ବଙ୍ଗାଳୀ ଆସିଲେ, ସାହେବଙ୍କର କର୍ମ୍ମସଖା ହୋଇ । ତା'ର ଫଳରେ ଅବସ୍ଥା ଖରାପ ହେବାକୁ ଲାଗିଲା । ଓଡ଼ିଆ ତାର ଆତ୍ମସମ୍ମାନ ହରାଇଲା । ଦେଶରେ ସେ ଅପମାନିତ ହେବାକୁ ଲାଗିଲା । ତାକୁ ଭଲ କାମଦାମ ମିଳିଲା ନାହିଁ । ତେଣୁ ଆର୍ଥିକ ଦୁଃସ୍ଥିତି ଜନ୍ମିଲା ।

କିନ୍ତୁ ଦୁଇ ଦୁଇଟା ପୃଥିବୀ ଯୁଦ୍ଧ ଫଳରେ ଭାରତର ଆର୍ଥିକ ଉନ୍ନତି ସଙ୍ଗେ ସଙ୍ଗେ ଓଡ଼ିଶାର ଆର୍ଥିକ ଉନ୍ନତି ମଧ୍ୟ କିଛି କିଛି ଘଟିଛି ।

ପୂର୍ବେ ଓଡ଼ିଆମାନେ ବ୍ୟବସାୟ କ୍ଷେତ୍ରରେ ପଶୁ ନ ଥିଲେ । ମାରୁଆଡ଼ିମାନେ ହିଁ ଥିଲେ ବ୍ୟବସାୟୀ । ଏଣିକି ଓଡ଼ିଆ ମଧ୍ୟ ବ୍ୟବସାୟରେ ଗୋଟିଏ ଗୋଟିଏ ପଶିଲେଣି । ଏହା ଶୁଭ ସୂଚନା ।

ତା'ପରେ ଆଉ ଗୋଟିଏ ଦିଗରୁ ଦେଖିବା । ପୂର୍ବେ ଜମିଦାର ଥିଲେ, ଆଉ ଗଡ଼ଜାତରେ ରଜା ଥିଲେ । ଏମାନଙ୍କ ହାତରେ ହିଁ ପଇସା ଥିଲା । ଏବେ ଜମିଦାର ଗଲେ । ରଜା ଗଲେ । ଓଡ଼ିଶାରେ ଆଜି ପଇସା ଅଛି ଚାଷୀ-ହାତରେ । କାରଣ ଧାନଚାଉଳର ଦର ବେଶୀ ହେବାରୁ ଚାଷିକୁଳ ଲାଭବାନ୍ ହେଲେ । ଆଉ ଉପର ଶ୍ରେଣୀ, ଯଥା ରଜାଜମିଦାରଙ୍କ କ୍ଷମତା ଦୂରୀଭୂତ ହୋଇଛି ସିନା, କିନ୍ତୁ ସେମାନଙ୍କ ହାତରେ ଟଙ୍କା ଅଛି ।

ଅତଏବ ଚାଷିକୁଳର ସୁବିଧା ହୋଇଛି, ଏପରି କି ହରିଜନମାନଙ୍କର ମଧ୍ୟ କିଛି ଆର୍ଥିକ ଉନ୍ନତି ହୋଇଛି । କିନ୍ତୁ ମଧ୍ୟଶ୍ରେଣୀର ଲୋକଙ୍କ ଅବସ୍ଥା ଅସଚ୍ଛଳ ହୋଇଛି । ମଧ୍ୟଶ୍ରେଣୀ କହିଲେ, ଯେଉଁମାନେ ମାସିକିଆ ଦରମାକୁ ଚାହିଁ ବସିଥାନ୍ତି କିମ୍ବା ଯେଉଁମାନଙ୍କର ଖାଇବା ପାଇଁ ବର୍ଷକର ଧାନ ବା ସାମାନ୍ୟ କିଛି ଟଙ୍କା

ମିଳୁଥିଲା, ସେମାନଙ୍କର ଅବସ୍ଥା ଖରାପ ହୋଇଛି । ସେମାନେ ଜୀବନ-ସଂଗ୍ରାମରେ ପାରୁନାହାନ୍ତି । ସେମାନେ ମ୍ରିୟମାଣ ହୋଇଯାଇଛନ୍ତି । ସୁତରାଂ ଲାଞ୍ଚ ବେଶୀ ହୋଇଯାଇଛି ।

ବ୍ୟବସାୟୀ ଲୋକଙ୍କର ଲାଭ ହୋଇଛି । ବିଶେଷତଃ କଣ୍ଟ୍ରୋଲ ଯୋଗୁଁ ଅନେକ ଅତ୍ୟଧିକ ବଡ଼ଲୋକ ହୋଇଯାଇଛନ୍ତି ।

ଏହିପରି ସମାଜରେ ପୂର୍ବ ପରି ଅସମତା ବିଷମତା ରହିଛି ସତ, କିନ୍ତୁ ସାଧାରଣତଃ ପଇସା ଟିକିଏ ଲୋକଙ୍କ ହାତରେ ହୋଇଛି । ପ୍ରକୃଷ୍ଟ inflation ବା ମୁଦ୍ରାସ୍ଫୀତି ଯୋଗୁଁ ଲୋକଙ୍କ ହାତରେ କିଛି ଅଧିକା ପଇସା ଜମିଛି ।

ସେଥିପାଇଁ ଦଶ ପନ୍ଦର ବର୍ଷ ଭିତରେ ଓଡ଼ିଶାରେ ସହରମାନଙ୍କରେ ଅନେକ ନୂଆ ଭୋଠାଦର ଦେଖାଦେଇଛି ।

କୁଟୀର ଶିଳ୍ପର କିନ୍ତୁ ଅବନତି ଘଟିଛି । ଏବେ ଅନେକ ଚେଷ୍ଟା କରା-ଯାଉଛି କୁଟୀର ଶିଳ୍ପର ବୃଦ୍ଧି କରିବା ପାଇଁ । କିନ୍ତୁ କୁଟୀରଶିଳ୍ପ ମୁଣ୍ଡ ଟେକି ଉଠି ପାରୁନାହିଁ ।

ଆମର ଶିକ୍ଷା ଓ ଶାସନକଳ ପଥ ଠିକ୍ ନ ଥିବାରୁ କୁଟୀରଶିଳ୍ପର ଭବିଷ୍ୟତ କିଛି ନାହିଁ—ବର୍ତ୍ତମାନ ତ କିଛି ନାହିଁ ।

ଦଶ ବର୍ଷ ଭିତରେ ଜମି ଦାମ୍ ଖୁବ୍ ବଢ଼ିଯାଇଛି । ଏହି କଟକ ସହରରେ ରାଜାବଗିଚା ଆଡ଼େ ଜମିର ମୂଲ୍ୟ ଯେଉଁଠାରେ ଗୁଣ୍ଠେ ପଞ୍ଚସ୍ତରୀ ଟଙ୍କା ଥିଲା, ଆଜି ସେହି ଜମିର ମୂଲ୍ୟ ହୋଇଛି ଅଢ଼େଇ ହଜାର ଟଙ୍କା ।

ବ୍ୟବସାୟୀଙ୍କ ଉନ୍ନତି ହୋଇଛି—କିନ୍ତୁ ଯେଉଁ କୃଷୀମାନେ ଜମିକୁ ଜୀବନ-ସମ୍ବଳ କରିଥିଲେ, ସେମାନଙ୍କ ଅବସ୍ଥା ଖରାପ ହୋଇଛି ।

ଆଉ ଗୋଟିଏ କଥା, ଏବେ ଟଙ୍କାକୁ ଲୋକେ ଲୁଚେଇ ରଖୁନାହାନ୍ତି । hoarding ନାହିଁ—ତାକୁ କିଛି ନା କିଛି କାମରେ ଲଗାଉଛନ୍ତି ।

ଆଜି ସାଧାରଣ ଶ୍ରମିକର ମୂଲ୍ୟ ବଢ଼ିଛି । ନିପୁଣ ଶ୍ରମିକର ଦାମ ତ ଢେର ବେଶୀ ବଢ଼ିଛି । କେବଳ ଦରମାଖିଆ ଲୋକଙ୍କର ଏବଂ ସାମାନ୍ୟ ଜମିଥିବା ଲୋକଙ୍କର ଅର୍ଥାତ୍ ମଧ୍ୟବିତ୍ତ ଶ୍ରେଣୀର ଲୋକଙ୍କର ଅବସ୍ଥା ଖରାପ ହୋଇଛି ।

* * *

# ଅତୀତର ସ୍ମୃତି

୧୯୪୮ ଜାନୁଆରୀ ୩୦—ମହାଶୋକର ଦିନ । ସେଦିନ ମୁଁ ଥାଏ ଦିଲ୍ଲୀରେ, କୁଇନ୍ସ ଓ୍ୱେରେ । ଦିନ ପାଞ୍ଚଟାବେଳେ ଶୁଣାଗଲା ମହାତ୍ମା ଗାନ୍ଧୀଙ୍କୁ ଗୁଳି କରାହୋଇଛି । ଶେଷ ସମୟରେ ସେ "ହା ରାମ" "ହା ରାମ" କହି ଆଖି ବୁଜିଦେଲେ ।

ତହିଁ ଆରଦିନ ସକାଳେ ଶୋକଗ୍ରସ୍ତା ଦିଲ୍ଲୀର ବୃତ୍ତାନ୍ତ । ପୁରୁଷର ହୃଦୟ ଯାହା ହେଉ ସ୍ତ୍ରୀହୃଦୟ ବଡ଼ କୋମଳ । ମହାତ୍ମା ଗାନ୍ଧୀଙ୍କର ମୃତ୍ୟୁ—ଅହେତୁକ ମୃତ୍ୟୁ କଥା ଶୁଣି ମୋର ସ୍ତ୍ରୀ ଏକାବେଳକେ ଅଶ୍ରୁପୂର୍ଣ୍ଣ—ତା'ର ମୁହଁରୁ କଥା ବାହାରୁ ନାହିଁ—ଖାଲି କାନ୍ଦି ଯାଉଛି ।

ଦେଖୁଁ ଦେଖୁଁ ଆମର ଘର ବାଟ ଦେଇ ତାଙ୍କ ମୃତ ଶରୀରକୁ ବୋହିନେଇ ଯାଉଥାନ୍ତି । ମହାଯାନ ଶୋଭାରେ, ମାଝ ମନ୍ତ୍ର ସ୍ଥିର, ସ୍ତବ୍ଧ, ଯାତ୍ରି ତ ନାହିଁ । ମିଲିଟାରି, ଦେଶସେବକ, ଶାସନକର୍ତ୍ତା—ସମସ୍ତେ ବଡ଼ ପ୍ରୋସେସନ କରି ବୁଲିଛନ୍ତି ରାଜଘାଟକୁ, ଯମୁନାକୂଳକୁ ।

ମୋର ସ୍ତ୍ରୀର ଖାଲି ଇଚ୍ଛା ସେ ଯାଆନ୍ତା ସେହି ପ୍ରୋସେସନରେ । ମୁଁ କିନ୍ତୁ ପୁରୁଷ ହେଲେ ମଧ୍ୟ ଯାଇ ପାରିଲି ନାହିଁ—ଏକାବେଳକେ ଭାଙ୍ଗି ପଡ଼ିଲି । ମୁଁ ମୋର ସ୍ତ୍ରୀକୁ କହିଲି, "ତୁମେ ଯିବ ତ ଯାଅ, ମୁଁ ଯାଇ ପାରିବି ନାହିଁ । ଏ ଦୃଶ୍ୟ ଦେଖି-ପାରିବି ନାହିଁ ।" କହୁଁ କହୁଁ ମୋ ଆଖି ଛଳ ଛଳ ହୋଇଗଲା ଏବଂ ମୋର ଛାତି ଖଣ୍ଡ ବାଜିଗଲା । ଓହୋ ! ସେ କି ମର୍ମାନ୍ତିକ ଦୃଶ୍ୟ !

ଏହି ମହାତ୍ମା କିଏ ଥିଲେ ? ମୁଁ ତାଙ୍କ ସମ୍ପର୍କରେ ପ୍ରଥମେ ପରିଚିତ ହେଲି ୧୯୧୭ରେ, ସାବରମତୀ ଆଶ୍ରମରେ । ମୁଁ ଅହମ୍ମଦାବାଦ ଯାଇଥାଏ ତାଙ୍କ ପାଖକୁ । ବାଟରେ ପଚାରିବାକୁ ଆରମ୍ଭ କଲି ଜଣକୁ—ସେ ମୋତେ ବତାଇଦେଲେ ସାବରମତୀ ଆଶ୍ରମ ସେଇଁଠି । ମାତ୍ର ସେ ଥିଲେ ସି. ଆଇ. ଡି. । ଆଜ୍ଞା ସେ ଏକାବେଳକେ ଆଶ୍ରମକୁ ଆସି ପୁଣି ଦେଖାଇଦେଲେ । ଗାନ୍ଧୀ ମୋତେ କହିଲେ—"ଏ ହେଉଛନ୍ତି ସି. ଆଇ. ଡି. । ଏହାଙ୍କୁ ତୁମର ସବୁ ନାମଧାମ କହିଦିଅ ।" ମୁଁ ତାହାହିଁ କଲି ।

ଏହିଠାରେ କୃପାଳନୀଙ୍କ ସଙ୍ଗରେ ପ୍ରଥମ ଦେଖା । ଗାନ୍ଧୀ ମୋତେ ତାଙ୍କ ସାଙ୍ଗରେ ପରିଚୟ କରାଇଦେଲେ ଏହା କହି—ଏ ହେଉଛନ୍ତି ଜଣେ dismissed Government servant । ମୁଁ ଏହାଙ୍କୁ ବଡ଼ serviceable ବା କର୍ମକୁଶଳ ଦେଖୁଛି । ମୁଁ ତେଣୁ ମହାତ୍ମାଙ୍କୁ କହିଲି, "ତା'ହେଲେ ଆପଣ ଶୁଣି ଖୁସି ହେବେ ମୁଁ ମଧ୍ୟ ଜଣେ dismissed school ମାଷ୍ଟର ।

ଏହି ପ୍ରଥମ ଆଳାପ । ଏହି ସମୟରେ ସେ ପ୍ରଥମରେ ହିନ୍ଦୀରେ ମୋ ସାଙ୍ଗରେ କଥା କହିବାକୁ ଆରମ୍ଭ କରିଥିଲେ । ମୁଁ ମଧ୍ୟ ହିନ୍ଦୀରେ କହିବାକୁ ଆରମ୍ଭ କଲି । କିନ୍ତୁ କେହି କାହାର କଥା ଭଲ ବୁଝି ପାରିଲୁ ନାହିଁ । ତେଣୁ ଗାନ୍ଧୀ କହିଲେ, "ତା'ହେଲେ ଇଂରେଜୀରେ ହିଁ କଥା ହେଉ ।" ସେଇୟା ହେଲା । ତା'ପରେ ଗାନ୍ଧୀ ନିଜ ହାତରେ ପରଷି ମୋତେ ଖାଇବାକୁ ଦେଉଥାନ୍ତି । ସେତେବେଳେ କସ୍ତୁରବା ମଧ୍ୟ ଥିଲେ, ରୁଟି ବେଲୁଥିଲେ ।

ଏହି କସ୍ତୁରବାଙ୍କ ସଙ୍ଗରେ ପୁଣି ଦେଖା ମିଳନ କର ଆନ୍ଦୋଳନ ବେଳେ ବିହାରର ଚମ୍ପାରଣରେ । ମୋର ସ୍ତ୍ରୀ କାର୍ଯ୍ୟ କରୁଥାନ୍ତି ମୋତିହାରିରେ ।

ଏହିଠାରେ ଭାରତ ସେବକ ସମିତିର ସମ୍ପାଦକ ହରି ଶ୍ରୀକୃଷ୍ଣ ଦେବ—ସେ ମରିଗଲେଣି—ଗାନ୍ଧୀଙ୍କ ସଙ୍ଗେ କାର୍ଯ୍ୟ କରୁଥିଲେ । ମୁଁ ଯେଉଁଦିନ ମୋର ସ୍ତ୍ରୀକୁ କସ୍ତୁରବାଙ୍କ ପାଖରେ ଛାଡ଼ିବାକୁ ଯାଏଁ, ବାଟରେ ଦେଖେ ହରି ଶ୍ରୀକୃଷ୍ଣ ଦେବ ମୁଣ୍ଡରେ ଗୋଟିଏ ପେଟରା ନେଇ ବାଟରେ ଆସୁଛନ୍ତି । ମୁଁ ସେତେବେଳେ ଭାରତ ସେବକ ସମିତିରେ ନୂଆ ଭର୍ତ୍ତି ହୋଇଥାଏ । ମୁଁ କହିଲି, ପେଟରାଟି ମୋତେ ଦିଅନ୍ତୁ । ସେ କହିଲେ, ନା ଗାନ୍ଧୀ ବିରକ୍ତ ହେବେ । ଯେ ଯା'ର ବୋଝ ସେ ନିଜେ ବହନ କରିବ । ଏହି ହେଲେ ମହାତ୍ମା ଗାନ୍ଧୀ ।

ତା'ପରେ ଦିନେ ଦେଖେ ଆଲ୍ଲାହାବାଦକୁ ଆମ ଭାରତ ସେବକ ସମିତି ଠିକଣାରେ ମହାତ୍ମା ଗାନ୍ଧୀଙ୍କର ଗୋଟିଏ ବହି ପାର୍ଶଲ ଆସିଛି । ମୁଁ ତାକୁ ନେଇ ରଖିଲି । ପରେ ଗାନ୍ଧୀଙ୍କୁ ଲେଖିଲି କ'ଣ କରାଯିବ । ସେ ଲେଖିଲେ, "ବୋଧହୁଏ ତାହା Home Rule in India ବହି, ମୋର—ଦକ୍ଷିଣ ଆଫ୍ରିକାରୁ ଆସିଛି—ବୋଧହୁଏ ୟୁ. ପି. ସରକାର ଏହାକୁ ban କରିବାକୁ ଭୁଲି ଯାଇଛନ୍ତି । ତେଣୁ ତାହା ଆଲ୍ଲାହାବାଦକୁ ଆସିଛି । ଥାଉ ସେଠାରେ ।

ସେ ସମୟରେ ଗୋବିନ୍ଦ ମିଶ୍ର ମଧ୍ୟ ମୋ ସାଙ୍ଗରେ ଥାନ୍ତି । ଗୋବିନ୍ଦ ତାଙ୍କୁ ଦେଖିବାକୁ ଛଟପଟ ହେଉଥାଏ । ପାର୍ଶଲରୁ ଗୋଟିଏ ପୋଡ଼ିଏ ବହି ବାହାର କଲୁଁ । ଦେଖିଲୁ Home Rule in India । ତାକୁ ଆମେ ଦୁଇ ଜଣ ଖୁବ୍ ପଢ଼ିଲୁ—ପିଇଗଲୁ । ବାସ୍ତବିକ ଆମ ଓଡ଼ିଆଙ୍କ ପକ୍ଷରେ ସେ ବିଚାରଧାରା ବଡ଼ ସହଜ, ସ୍ୱାଭାବିକ । ତେଣୁ ତାହା ଆମ ହୃଦୟକୁ ବଡ଼ ସ୍ପର୍ଶ କଲା । ଟ୍ରେନ୍ ରହିବ ନାହିଁ, ଡାକ୍ତର ରହିବେ ନାହିଁ—ଆମ ନିଜ ମୁଣ୍ଡର ଝାଳ ତୁଣ୍ଡରେ ମାରି ଜୀବିକା ଅର୍ଜନ କରିବୁ — ଇତ୍ୟାଦି, ଇତ୍ୟାଦି ।

ମହାତ୍ମା ଗାନ୍ଧୀଙ୍କୁ ମଝି ମଝିରେ ଅନେକ ଥର ଦେଖିଛି । ତାଙ୍କ ସାବରମତୀ ଆଶ୍ରମରେ ଦୁଇତିନି ଥର ଆଠ ଦିନ ଦଶ ଦିନ ଧରି ରହିଛି । ପୁଣି ଓ୍ୱାର୍ଦ୍ଧାରେ । ଯେତେ ନିକଟବର୍ତ୍ତୀ ହୋଇଛି ସେତେ subtle ବୋଲି ତାଙ୍କୁ ଅନୁଭବ କରିଛି— ସରଳ କିନ୍ତୁ ବିଚକ୍ଷଣ । ତାଙ୍କର ଈଶ୍ୱର ଭକ୍ତି ଆଧ୍ୟାତ୍ମିକ । ତାହା ଅର୍ଥନୀତିକ ସମାନତା ଉପରେ ପ୍ରତିଷ୍ଠିତ ନୁହେଁ— ତାହା ମାନବିକତା, ଆଧ୍ୟାତ୍ମିକତା, ପ୍ରକୃତ ମନୁଷ୍ୟତା ଉପରେ ପ୍ରତିଷ୍ଠିତ ।

ଜୀବନରେ ସେ କେତେ ଦୁଃଖ ଦୁର୍ଦ୍ଦିନର ସମ୍ମୁଖୀନ ହୋଇଛନ୍ତି । କିନ୍ତୁ ତଥାପି ସେ ସତ୍ୟବ୍ରତେ ଏକ ନିଷ୍ଠ ଆଦର୍ଶର ଅନୁଗାମୀ ହୋଇଛନ୍ତି ।

ହରିଜନ ଆନ୍ଦୋଳନ ବେଳେ ମୁଁ ପ୍ରଥମେ ଜାମସେଦପୁରରେ ତାଙ୍କୁ ଉତ୍କଳ ଭ୍ରମଣ ପାଇଁ ଅଭ୍ୟର୍ଥନା କରିଥିଲି । ସେଠାରୁ ଝାରସୁଗୁଡ଼ା । ମୁଁ ବନ୍ଧୁଙ୍କୁ ପଚାରୁଥାଏ, ଝାରସୁଗୁଡ଼ାରେ ସେ ଯେଉଁଠାରେ ରହିବେ ସେଠାରେ ସବୁ ବନ୍ଦୋବସ୍ତ ଆଦି ଠିକ୍ ଅଛି ତ ? ବନ୍ଧୁମାନେ କହିଲେ, ହଁ । କିନ୍ତୁ ଝାରସୁଗୁଡ଼ାରେ ପହଞ୍ଚିଲା ବେଳେ ସବୁ ଆଣ୍ଟୁ ଅଣ୍ଟୁ ଭେଣ୍ଟି ହେଲା । ଆଜି ସେପରି କବାଟ ଫିଟା ହେଲା — ବନ୍ଧଣା ଆଣ ଆଡ଼ ଶିଙ୍ଗାର ଚଢ଼ିଲା ! କିନ୍ତୁ ବନ୍ଧଣା ଆସିବାକୁ ଡେରି ହେଲା । ଗାନ୍ଧୀ ସେହିପରି ଭୂମିରେ ବସିଗଲେ । ବନ୍ଧଣା ଆସିଲା । ମାତ୍ର ସେ ଉଠିଲେ ନାହିଁ ।

ପୁଣି ଝାରସୁଗୁଡ଼ାରୁ ସମ୍ବଲପୁର ଯିବାବେଳେ ମୋଟରବାଲାଙ୍କୁ ସେ ଗୋଟିଏ ତକିଆ ମାଗିଲେ । ସେ ତକିଆଟି ଝାରସୁଗୁଡ଼ାରେ ସେ ଛାଡ଼ିଦେଇ ଆସିଥିଲେ । ମୋଟର ସେତେବେଳକୁ ଆଠ ଦଶ ମାଇଲ ଆସିସାରିଲାଣି । ମୋଟର ସେଠାରେ ଅଟକିଲା । ଯେହୁ ଟାର୍ଟ୍ରେଲ ଆସିଲା । ଇତିମଧ୍ୟରେ ଗାନ୍ଧୀ ତାଙ୍କ ମୋଟରରେ ଆଖି ବୁଜି ଶୋଇପଡ଼ିଲେ । ଠିକ୍ ଅନ୍ୟ ମୋଟର ଆସିବା ବେଳକୁ ସେ ପୁଣି ଜାଗ୍ରତ । ସମ୍ବଲପୁର ଗଲୁଁ ।

ସେଠାରୁ ଅନୁଗୋଳ—ବାଟରେ ଅବଶ୍ୟ ଆଉ କେତେ ଜାଗାରେ ସଭା ହୋଇଥିଲା — ଅନୁଗୋଳରେ ସଭା କରିବାକୁ ଦିଆହେଲା ନାହିଁ । ଗିରିଜାବାବୁ ( ଗିରିଜାଭୂଷଣ ଦତ୍ତ )ଙ୍କର ଅନୁଗୋଳ ବାହାରେ ଟିକିଏ ଦୂରରେ ଘର । ସେହିଠାରେ ସଭା ହେଲା । ଠକ୍କର ବାପା ସାଙ୍ଗରେ । ମୋତେ ଅନୁବାଦ କରିବାକୁ ଠକ୍କର ବାପା କହିଲେ । ମୁଁ ରାଜକୃଷ୍ଣ ବୋଷଙ୍କୁ କହିଲି । ସେ ଅନୁବାଦ କଲେ । ଏହିପରି ଚାଲିଲା ।

ଇତିମଧ୍ୟରେ ମହାତ୍ମା ଗାନ୍ଧୀ ଚିନ୍ତା କରୁଥାନ୍ତି — ପୁଣି ପଦଯାତ୍ରା — ଯେଉଁଠି ବରାବର ପଦଯାତ୍ରା । କି ଚିନ୍ତା ! କି ଭାବନା ! କି ବିଶ୍ୱାସ ! କି ଭକ୍ତି ! ଅନୁଭବରେ ଆସେ, ବାକ୍ୟରେ ପ୍ରକାଶ କରିହୁଏ ନାହିଁ ।

ରାତି ଚାରିରୁ ଉଠିବେ । ପ୍ରାର୍ଥନା ହେବ । ଏହି ପ୍ରାର୍ଥନାରେ ଜୀବନ ତାଙ୍କୁ ନିର୍ଭୀକ କରିଥିଲା — ସେ ଶାଶ୍ୱତ ସତ୍ୟରେ ଏକ ହୋଇ ଜୀବନ ଯାପନ କରୁଥିଲେ ।

ମୃତ୍ୟୁ ତାଙ୍କର କ'ଣ କରିପାରେ ? ମୃତ୍ୟୁଂଜୟ ସେ । ଭୟ ଦୂର କଥା । ସେଥିପାଇଁ ତାଙ୍କ ରାଷ୍ଟ୍ରରେ ସମସ୍ତେ ତାଙ୍କର ମିତ୍ର । ଆସିଥିଲେ, ଚାଲିଗଲେ — କିନ୍ତୁ ଜଗତକୁ ସେ ଯାହା ଦେଇ ଯାଇଛନ୍ତି ଆମେ ତାଙ୍କର ଉପଯୁକ୍ତ ଦାୟାଦ ହେଲେ ତାହା ରକ୍ଷା କରିପାରିବୁ, ନୋହିଲେ ସବୁ ହରାଇ ବସିବୁଁ । ଅଧିକ ଯାଉଛି ପଚିଲି ଓ ଯିବ ଶେଷରେ । ଗାନ୍ଧୀଜୀ ମନୁଷ୍ୟଙ୍କୁ ପ୍ରଥମ ସ୍ଥାନ ଦେଉଥିଲେ -- ଅନ୍ତରର ମନୁଷ୍ୟଙ୍କୁ । ସମଗ୍ର ବିଶ୍ୱ ତାଙ୍କର; ସେ ମଧ୍ୟ ସମଗ୍ର ବିଶ୍ୱର ବନ୍ଧୁ ।

* * *

# ଧର୍ମାନ୍ତର ଗ୍ରହଣ

ମୁଁ ଯେତେବେଳେ ସାନ ଥିଲି, ସେତେବେଳେ ହିନ୍ଦୁଧର୍ମ ପ୍ରତି ମୋର ବଡ଼ ନିଷ୍ଠା ଥିଲା । ମୁଁ ହିନ୍ଦୁକୁଳରେ ହିଁ ଜନ୍ମଗ୍ରହଣ କରିଥିଲି । ମୁଁ ଯେତେବେଳେ ମାଇନର ପାସ୍ କରି ହାଇସ୍କୁଲରେ ପ୍ରବେଶ କଲି, ସେତେବେଳେ ମଧ୍ୟ ମୋର ଖୁବ ହିନ୍ଦୁଭାବ ଖୁବ୍ ବେଶୀ ଥିଲା । ମୁଁ ଆମ ଘର ଏବଂ ମୋର ମାମୁଁ ଓ ମଉସା-ଘର ଛଡ଼ା ଆଉ କାହାରି ଘରେ ଅନ୍ନଗ୍ରହଣ ତ ଦୂରର କଥା, ଜଳଖିଆ ଆଦି ମଧ୍ୟ ଖାଉ ନ ଥିଲି । ଶୌଚଭାବଟା ଏତେ ବେଶୀ ଥିଲା । ମୁଁ ସରସ୍ୱତୀ, ଦୁର୍ଗା, ଗଣେଶ ଏବଂ କାର୍ତ୍ତିକ ଏହିପରି ଠାକୁରଙ୍କ ପାଖରେ ମନପ୍ରାଣ ଢାଳି ଦେଉଥିଲି । ସେମାନଙ୍କର ପୂଜାଦିନ ଆସିଲେ ମୁଁ ସେମାନଙ୍କର ପୂଜାପାଇଁ ଫୁଲସଂଗ୍ରହରେ ବ୍ୟସ୍ତ ରହୁଥିଲି । ବନ୍ଧୁବାନ୍ଧବ ସମସ୍ତଙ୍କୁ ଏମାନଙ୍କ ପାଦତଳେ ଉପସ୍ଥିତ ହେବା ପାଇଁ ନିମନ୍ତ୍ରଣ କରୁଥିଲି ।

ଆମର କୌଳିକ ଠାକୁର ଗଣେଶ । ତାଙ୍କର ବାର୍ଷିକ ପୂଜା ଆମ ଗୃହରେ ହେଉଥିଲା ଏବଂ ଆଜି ପର୍ଯ୍ୟନ୍ତ ମଧ୍ୟ ଆମ ଗୃହରେ ହେଉଅଛି । କିନ୍ତୁ ସରସ୍ୱତୀ, ଦୁର୍ଗା ଏବଂ କାର୍ତ୍ତିକ ପୂଜା ମୁଁ ଆମ ଘରେ ପ୍ରଥମେ କରାଇଥିଲି । ସେ ପୂଜା ଏବେ ସବୁ ବନ୍ଦ ହୋଇଯାଇଛି । ମୋର ସାଙ୍ଗ ପିଲାଙ୍କ ବେକରେ ମାଳି ନ ଥିଲେ ମୁଁ ନିଜେ କିଣିଆଣି ସେମାନଙ୍କର ବେକରେ ମାଳି ପିନ୍ଧାଉଥିଲି ଏବଂ ଭଣ୍ଡାରି କ୍ଷୌର କଲାବେଳେ ଯେଉଁ ସାଙ୍ଗ ଗୁହମାନେ ଚୁଟି ରଖି ନ ଥିଲେ, ସେମାନଙ୍କର ଜୋର କରି ଭଣ୍ଡାରିଦ୍ୱାରା ଚୁଟି ରଖାଉଥିଲି ।

ହାଇସ୍କୁଲକୁ ଆସିଲା ପରେ ମୁଁ ପ୍ରଥମେ ବ୍ରାହ୍ମସମାଜ ସମ୍ପର୍କରେ ଆସିଲି । ସେଠାରେ ପଶି ମୋର ଠାକୁରପୂଜା କୁଆଡ଼େ ବୁଲିଗଲା । ମୁଁ ଧର୍ମଭାବରେ ଆପଣାକୁ ଉଦ୍ଦିକ୍ତ କରିଥିଲେ ମଧ୍ୟ ହିନ୍ଦୁ-ଧର୍ମ, ପୌତ୍ତଳିକତା ପ୍ରତି ମୋର ଆଉ ଆସ୍ଥା ରହିଲା ନାହିଁ । କିନ୍ତୁ ଶୁଚିଭାବଟା ପୂର୍ବ ଭାବରେ ମୋ ମନରେ ଥିଲା । ସୁତରାଂ ମୁଁ କାହାରି ଘରେ ଖାଇବା ପାଇଁ କଦାପି ଇଚ୍ଛାପ୍ରକାଶ କରୁ ନ ଥିଲି । ପ୍ରଥମ ଯେଉଁ ଦିନ ବ୍ରାହ୍ମ ସମାଜରେ ଗୋଟିଏ ଭୋଜିରେ ଖାଇବାକୁ ବସିଥିଲି, ସେଦିନ କପରି କପରି ମନ ହେଉଥାଏ । ଏଣେ ବାପା ଏକଥା ଶୁଣିବା କ୍ଷଣି ମୋତେ ଜୋତା ଫୋପାଡ଼ି ମାରିଲେ । ମୁଁ ପଳାଇଗଲି । ସମସ୍ତ ରାତି ବୁଲି ବୁଲି କେତେ ଭାବିଛି, ହାୟ୍ ହାୟ୍ ! ମୁଁ କି କାମ କଲି ।

ପରେ ମନ ହିନ୍ଦୁଧର୍ମ ଆଡ଼କୁ ନ ଯାଇ ଜଗତର ମାନବଧର୍ମ ଦେଖିବାପାଇଁ ଉତ୍କଣ୍ଠିତ ହୋଇଉଠିଲା । ମୁଁ ପଠାଣ ହାତରୁ ପାଉଁରୁଟି ଛଡ଼ାଇ ଯେତେବେଳେ ଖାଇଦେଲି, ସେତେବେଳେ ମୋର

ମାଜିଁ ନୁହି ଲୋକ ନ ଥିଲି । ସେତେବେଳେ ମୁଁ କେବଳ ଭାବୁଥାଏ ମୋର ବନ୍ଧୁ ଶ୍ୟାମଭୁଞ୍ଜା ଏବଂ ଅଙ୍ଗଭୁଞ୍ଜା ତାଙ୍କ ମୋଠାରୁ ଭଲ ଏବଂ ଉପର ଭଲ, ଏହା ବୁଝିଲି । ସେହିଦିନ ଶ୍ୟାମଭୁଞ୍ଜା ଘରୁ ରୁଟି ଖାଇଆସି ମା' ପାଖରେ ଜଣାଇଲି, ସେଦିନ ମାଆ ଦୁଆରବନ୍ଧରେ ମୁଣ୍ଡ ପିଟି ରକ୍ତ ଝର ଝର କରିଦେଇଥିଲେ । ଏକ ଗୁଣିଆ ଆଣି ମୋତେ ଫୁଙ୍କାଇଥିଲେ । ସେ ଭାବିଥିଲେ ଯେ ମୋତେ କିଏ ଗୁଣି କରିଛି, ତା ନ ହେଲେ ମୁଁ ଏଡ଼େ ସୁନ୍ଦର ପିଲାଟିଏ ଏପରି କାହିଁକି ହୋଇଗଲି !

ମୋର ସତର ବର୍ଷ ପୂରି ଯିବା ପରେ ମୁଁ ବାଲେଶ୍ୱର ଛାଡ଼ି କଟକ ଆସିଲି । ସେତେବେଳେ କଲେଜରେ ପାଠ ପଢ଼ିବା ପାଇଁ ଆରମ୍ଭ କଲି । ସେତେବେଳେ ଇଣ୍ଟରମିଡିଏଟରେ ଦୁଇ ବର୍ଷଯାକ ମୁଁ କେବଳ ଏହି ଧର୍ମଜୀବନ ବୁଝିବାରେ ବ୍ୟାପୃତ ଥିଲି । ସେହି ସମୟରେ ମୁଁ କୋରାନ୍‌କୁ ପଢ଼ୁଥିଲି । ମୁସଲମାନ୍ ପିଲାଙ୍କୁ ନେଇ ଗୋଟିଏ ମୁସଲିମ୍ କ୍ଲବ ଆରମ୍ଭ କରାଇଥିଲି ଏବଂ ଅଜିଜୁଲ୍ଲା ଓ ଇମାର ବକ୍ସ ପାଖରେ ଅନେକ ରାତି ଇଚ୍ଛା କରି ରହି ଯାଉଥିଲି । ସେମାନେ ପ୍ରଥମେ ପ୍ରଥମେ ମୋତେ ପୁରି ମିଠାଇ ଆଣି ଖାଇବାକୁ ଦେଉଥିଲେ । କିନ୍ତୁ ମୋର ଭାତ ଖାଇବାରେ ଆପତ୍ତି ନାହିଁ ଜଣାଇବାରୁ ସେମାନେ ଅନେକ ଥର ଓଶଙ୍କ ନେଇ ଥରେ ଥରେ ଭାତ ଖାଇବାକୁ ଦେଉଥିଲେ । ଗୋମାଂସକୁ ଭୟ ଥାଏ । ସୁତରାଂ ମୁଁ ନିରାମିଷାଶୀ ହୋଇପଡ଼ିଥିଲି । ସେହି ସମୟରେ କଟକର ବ୍ରାହ୍ମସମାଜରେ ମଧ୍ୟ ଅଧିକତର ମିଶିବାକୁ ଆରମ୍ଭ କଲି ଏବଂ ବ୍ରାହ୍ମସମାଜ ମନ୍ଦିରରେ ଯେଉଁ ଛାତ୍ରସମାଜ ଥିଲା, ତାହାର ସେକ୍ରେଟାରୀ ମଧ୍ୟ ହୋଇଥିଲି ।

୧୯୧୧ରେ ଇଣ୍ଟରମିଡିଏଟ୍‌ର ପାସ୍ କରି ବି. ଏ. ପଢ଼ୁଥିଲା ସମୟରେ ପ୍ରଥମ ପ୍ରଥମ ଖ୍ରୀଷ୍ଟାନ୍‌ମାନଙ୍କର ଗିର୍ଜାକୁ ଯିବାକୁ ଆରମ୍ଭ କଲି । ସେଠାରେ ସେମାନଙ୍କ ସହ ଆଣ୍ଠୁ ମାଡ଼ି ଚକ୍ଷୁ ଝର ଝର ହୋଇ କେତେ ପ୍ରାର୍ଥନା ମଧ୍ୟ ଶୁଣିଛି । ବ୍ରାହ୍ମସମାଜର ମଧୁସୂଦନ ରାଓଙ୍କ ପ୍ରାର୍ଥନା ଶୁଣି ମଧ୍ୟ ଚକ୍ଷୁ ଝର ଝର ହେଉଥିଲା । ମୁସଲମାନ-ମାନଙ୍କର ମସଜିଦ୍‌ରେ ମଧ୍ୟ ନମ୍ର ହୋଇ ଆଖି ବୁଜି କେବଳ ମାଥ ଛୁଆଁ ହୋଇଛି ଏବଂ ସେମାନଙ୍କର ମର୍ମସ୍ପର୍ଶୀ "ଆଲ୍ଲା ହୋ ଆକବର" ଶବ୍ଦ ଶୁଣିଛି । ୧୯୧୩ ସାଲରେ କଟକର ମିଶନ ସ୍କୁଲରେ ଯେତେବେଳେ ଶିକ୍ଷକତା ଆରମ୍ଭ କଲି, ସେତେବେଳେ ଖ୍ରୀଷ୍ଟିଆନ ସମାଜ ସଙ୍ଗେ ମୋର ପରିଚୟ ଅଧିକ ହେବା ସଙ୍ଗେ ସଙ୍ଗେ ଆତ୍ମୀୟତା ହୋଇଉଠିଲା । କିନ୍ତୁ ଯେଉଁ ହିନ୍ଦୁ ପିଲାଙ୍କ ମେଳରେ ମୋର ବାଲ୍ୟ ଜୀବନ ଉଦ୍‌ଯାପିତ ହୋଇଥିଲା, ସେମାନଙ୍କୁ ଭୁଲି ପାରି ନ ଥିଲି । ଫଳତଃ ମୋର ସ୍ନେହର ଜଗତଟା ବଡ଼ ହୋଇ ଉଠିଥିଲା ଏବଂ ମୋର କୁଟୁମ୍ବଟା ଚତୁର୍ମୁଖୀ ହୋଇଥିଲା ।

ହିନ୍ଦୁ, ବ୍ରାହ୍ମ, ଖ୍ରୀଷ୍ଟିଆନ୍ ଏବଂ ମୁସଲମାନ୍ ଏ ସମସ୍ତଙ୍କୁ ମୋର ନିତାନ୍ତ ଆପଣାର ଲୋକ, ହୃଦୟର ନିକଟତମ ଲୋକ ବୋଲି ଭାବୁଥିଲି । ମିଶନ ସ୍କୁଲରେ

ବିଶ ବର୍ଷ ଶିକ୍ଷକତା କରିବା ସମୟରେ ମୋର ବୌଦ୍ଧଧର୍ମ ପ୍ରତି ମଧ୍ୟ ମନ ଯାଇଥିଲା । ପିଲାଦିନୁ ଯେଉଁ ବୁଦ୍ଧଙ୍କର ଜୀବନୀ ପାଠ କରିଥିଲି ତାହା ଶାନ୍ତ ଭାବରେ ମୋର ଜୀବନ ଉପରେ ପ୍ରଭାବ ବିସ୍ତାର କରି ଆଜି ପର୍ଯ୍ୟନ୍ତ ରହିଅଛି । ବିଶେଷ ଭାବରେ ୧୯୧୫ ସାଲରେ ମୁଁ ଫକୀରମୋହନ ସେନାପତିଙ୍କର ବୌଦ୍ଧାବତାର କାବ୍ୟ ପାଠ କରି ତାହା ସମସ୍ତ ନାଟକ ଆକାରରେ ଲେଖି ପକାଇଥିଲି । ଆଜି ଜୀବନର ପରିଣତ ବୟସରେ "ବୁଦ୍ଧଂ ଶରଣଂ ଗଚ୍ଛାମି" ଏହି କଥାଟି ଅନ୍ତର ମଧ୍ୟରେ ଜାଗି ଉଠୁଛି । ବୁଦ୍ଧ, ଯୀଶୁ, ମହମ୍ମଦ ଏହି ତିନି ଜଣଙ୍କୁ ବ୍ୟକ୍ତିଗତ ଭାବରେ ଯେପରି ଲାଭ କରିଥିଲି, ହିନ୍ଦୁଧର୍ମରେ ଥିଲାବେଳେ ଶଙ୍କରାଚାର୍ଯ୍ୟଙ୍କର ମୋହମୁଦ୍‌ଗର ବାରମ୍ବାର ଆବୃତ୍ତି କରି ତାକୁ ମଧ୍ୟ ସେହିପରି ଗାଇଥିଲି । କେତେ ଥର କୋରାନ୍ ହାତରେ ରଖି ଶୋଇପଡ଼ୁଛି । କେତେଥର ବାଇବେଲକୁ ଚୁମ୍ବନ କରୁଛି ଏବଂ ଅନ୍ତରରେ ଲଗାଉଛି । କେତେଥର ମୋହମୁଦ୍‌ଗର ଆବୃତ୍ତି କରି "ସୁର-ମନ୍ଦିର-ତରୁତଳ-ନିବାସଃ ଶଯ୍ୟା ଭୂତଳଂ ଅଜିନଂ ବାସଃ" ପାଠ କରି ନିଜକୁ ବିରକ୍ତ ସନ୍ନ୍ୟାସୀ ବୋଲି ଭାବୁଛି—ଅନୁରକ୍ତ ବୃଦ୍ଧ ପରି ନୁହେଁ । ସେସବୁ ଭାବିଲେ ବର୍ତ୍ତମାନ ବଡ଼ ଆନନ୍ଦ ଆସେ ।

ଏହା ପରେ ବୟୋବୃଦ୍ଧି ସଙ୍ଗେ ସଙ୍ଗେ କେତେ ମହତ ଲୋକଙ୍କର ଜୀବନଚରିତ ଆଲୋଚନା କରି ସେମାନଙ୍କର ମହତ୍ ଜୀବନରୁ କିଛି କିଛି ଆହରଣ କରିବା ପାଇଁ ଯେଉଁ ଚେଷ୍ଟା କରିଅଛି, ତାହା ଆଜି ମୋର ଧର୍ମାନ୍ତର ଗ୍ରହଣରେ ସାହାଯ୍ୟ କରିଅଛି । ଖ୍ରୀଷ୍ଟିଆନ୍, ମୁସଲମାନ୍, ବ୍ରାହ୍ମ, ହିନ୍ଦୁ ଏସବୁ ତ ସମାନ । ମୁଁ ଏ ସମସ୍ତ ସମାଜକୁ ଅତିକ୍ରମ କରି ପୂର୍ବୋକ୍ତ ମହାମନୀଷୀ ଏବଂ ଦେବସନ୍ତାନମାନଙ୍କ ନିକଟକୁ ଅନ୍ତରରେ ଯିବା ଆସିବା କରିବା ପାଇଁ ଯେଉଁ ଚେଷ୍ଟା କରିଅଛି, ସେହି ଚେଷ୍ଟା ହିଁ ମୋର ଧର୍ମ । ମୁଁ ଆଜି ହିନ୍ଦୁ, ମୁସଲମାନ୍, ବ୍ରାହ୍ମ ବା ଖ୍ରୀଷ୍ଟିଆନ ନୁହେଁ । କିନ୍ତୁ ଖ୍ରୀଷ୍ଟ, ଶଙ୍କର, ମହମ୍ମଦ, ବୁଦ୍ଧ ଏବଂ ଅନ୍ୟାନ୍ୟ ମହାମନୀଷୀମାନେ ମୋର ଆପଣାର । ଏମାନଙ୍କ ପାଖରେ ରହିବି, ଏମାନଙ୍କର ସତ୍ୟ କଥା ଯେଉଁଠାରେ ଆଲୋଚିତ ହେଉଥିବ ସେଠାରେ ମୁଁ ମନରେ ଅବାଧ ଗତିରେ ବିଚରଣ କରିବି । ସମାଜ ଏଥିରେ ବାଧା ଦେଲେ ଦେଉ; କିନ୍ତୁ ମୁଁ ମୋର ମନକୁ ବାଧା ଦେବି ନାହିଁ । ଏହା ହିଁ ମୋର ଧର୍ମ ବା ଧର୍ମାନ୍ତର ଗ୍ରହଣ ।

* * *

# ମୋ କାଳର କଥା

ଓଡ଼ିଶାର ଆର୍ଥିକ ଅବସ୍ଥାର ଇତିହାସ ଏହି ପଚାଶ ବର୍ଷ ଭିତରେ କିପରି ହୋଇଛି, ତାହା ପ୍ରଥମେ ଆମର ଜାଣିବା ଦରକାର । ତାପରେ ଆମ୍ଭମାନେ କିପରି ଓଡ଼ିଶାର ଆର୍ଥିକ ଅଗ୍ରଗତି କରିବୁ, ସେ ବିଷୟରେ ଚିନ୍ତା କରିବୁ । ଅତୀତକୁ ନ ଜାଣି ଭବିଷ୍ୟତ ଠିକଣା କରିବା ସହଜ ନୁହେ । ଓଡ଼ିଶାର ଲୋକେ ଜାମସେଦପୁର, ରେଙ୍ଗୁନ ଇତ୍ୟାଦି ଅଞ୍ଚଳକୁ ଯାଇ କିଛି ପଇସା ରୋଜଗାର କରୁଛନ୍ତି । କିନ୍ତୁ ସେମାନେ ସେଠାରୁ ଫେରି ଆସିଲା ବେଳକୁ ଧ୍ୱସ୍ତ ସ୍ୱାସ୍ଥ୍ୟ ହୋଇ ଫେରୁଛନ୍ତି, ନାନାପ୍ରକାର ରୋଗ ଘେନି ଓଡ଼ିଶାରେ ବଢ଼ୁଛନ୍ତି । ଆଜି ବି. ସି. ଜି., ମେଲେରିଆ ନିବାରଣୀ ଇତ୍ୟାଦି ନାନା-ପ୍ରକାର ଉଦ୍ୟମ ଚାଲିଅଛି; କିନ୍ତୁ ମୂଳ ଉଦ୍ୟମ ହେବା ଉଚିତ କିପରି ଆମର ଦେଶର ଯୁବକମାନେ ଆମର ଦେଶରେ ଅର୍ଥ ଉପାର୍ଜନ କରିବାକୁ ସକ୍ଷମ ହୋଇ ପାରିବେ । ୧୮୬୬ ଦୁର୍ଭିକ୍ଷ ପରେ, ଓଡ଼ିଶାରେ ଅଧିକାଂଶ ଲୋକ ପ୍ରାଣତ୍ୟାଗ କଲେ ଏବଂ ଅନେକ ଲୋକ ଖାଦ୍ୟାଭାବ ଯୋଗୁଁ ସମଗ୍ର ମାନ୍ଦ୍ରାଜ ପ୍ରଦେଶର ସବଳ ଦୃଢ଼ ହୋଇଗଲେ । ବଙ୍ଗଦେଶକୁ ସାଧାରଣତଃ ଯେଉଁ ଓଡ଼ିଆ ଯୁବକମାନେ ଯାଆନ୍ତି, ସେମାନେ ଦୁଏତ କଳ-କାରଖାନାରେ କାମ କରନ୍ତି । ତା ନ ହେଲେ ଲୋକଙ୍କର ଘର ବାଡ଼ିରେ ରନ୍ଧା ପୂଜାରୀ ଚାକର କାମ କରନ୍ତି । ଜାତିର ଯୁବକ, ଜାତିର ଯୌବନ ଏହିପରି ଅନ୍ୟତ୍ର ଧ୍ୱସ୍ତ ବିଧ୍ୱସ୍ତ ହେଉଛି । ଆଜି ଉତ୍କଳର ଅବସ୍ଥାକୁ ପରିବର୍ତ୍ତନ କରିବା ପାଇଁ ଯେଉଁ ‘ହୀରାକୁଦ ଯୋଜନା’ ଚାଲିଛି, ସେଥିରେ ଓଡ଼ିଆ ଉପଯୁକ୍ତ ଦେଖାଯାଉ ନାହାନ୍ତି । ସାଧାରଣ ମୂଲିଆର ଯୋଗ୍ୟତା ମଧ୍ୟ ସେମାନଙ୍କର କମ୍ । ସେମାନେ କର୍ମଠ ନୁହଁନ୍ତି । ସେମାନେ ସୁସ୍ତି । ସେଥିପାଇଁ ନିଜ ଦେଶର ଶିଳ୍ପ, କାରଖାନା ତିଆରି ହେଲେ ମଧ୍ୟ ସେମାନେ ସ୍ଥାନ ପାଇ ପାରୁ ନାହାନ୍ତି । ଆଜି ଅବଶ୍ୟ ଦେଖା ଯାଉଛି ଯେ ଓଡ଼ିଆ ଯୁବକ ଭାରତର ଭିନ୍ନ ଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କରେ କୃତିତ୍ୱର ସହିତ ପାସ୍ କରି ଆସୁଛନ୍ତି, କିନ୍ତୁ ସେମାନଙ୍କଠାରେ ସଚେତନ ମନୋଭାବ ଏବଂ ସେହିପରି ବଳିଷ୍ଠ ତନୁ ଦେଖାଯାଉ ନାହିଁ, ଯାହା ଫଳରେ ସେମାନେ ଦୁଏତ ନିଜ ଦେଶରେ କର୍ମବୀର ହୋଇ ଯଶୋଲାଭ କରିପାରୁ ନାହାନ୍ତି । ଓଡ଼ିଶାର କୁଟୀର ଶିଳ୍ପ ଧୀରେ ଧୀରେ ଲୋପ ପାଇବାକୁ ବସିଲାଣି ଏବଂ କାଳକ୍ରମେ ଲୋପ ପାଇଯିବ ମଧ୍ୟ, କାରଣ ଯନ୍ତ୍ର-ଯୁଗରେ କୁଟୀର ଶିଳ୍ପର ଆସନ ଅତି ଘଟରେ, କିନ୍ତୁ କିପରି ଆମର ଯୁବକମାନେ ତତ୍ପର ହୋଇ ଏହି ପରିବର୍ତ୍ତନକୁ ଗ୍ରହଣ କରିବେ, ତାହା ହିଁ ଚିନ୍ତାର ବିଷୟ । ସେଉଁଥି ପ୍ରସଙ୍ଗରେ ପଣ୍ଡି

ପ୍ରଥମେ କଠୋର ଶାରୀରିକ ଶ୍ରମଦ୍ୱାରା ଧୀରେ ଧୀରେ ଉଠିବାକୁ ହେବ । ତାକୁ ସାଦରରେ ବରଣ କରିନେବା ଆମ ଯୁବକଙ୍କର କର୍ତ୍ତବ୍ୟ । ତାହା ନ ହେଲେ ଜାତିର ପତନ ଅବଶ୍ୟମ୍ଭାବୀ । ଆଜି ଯୁବକମାନେ ଏହି ଅତ୍ୟଧିକ ପରିଶ୍ରମକୁ ଡରିଯାଇ ଯେ ପଛଘୁଞ୍ଚା ଦେଉଛନ୍ତି ଏଥିରେ ସମସ୍ତ ଜାତି ପଛଘୁଞ୍ଚା ଦେଉଛି— ଓ ଆମେ ଅନ୍ୟାନ୍ୟ ଲୋକଙ୍କ ସମ୍ମୁଖରେ ଆମର ଯୋଗ୍ୟତା ପାଇଁ ଉପହସିତ ହେଉଛୁ । ଯେଉଁ ଚେଷ୍ଟା କୁଟୀର ଶିଳ୍ପ ଏବଂ ଭୂମିବଣ୍ଟନ ଇତ୍ୟାଦି ପାଇଁ ହେଉଛି ତାହା କିଛିକାଳ ପାଇଁ ଶୋଭନୀୟ ହୋଇପାରେ, କିନ୍ତୁ ଏହା ବେଶି ଦିନ ଧରି ତିଷ୍ଠି ପାରିବ ବୋଲି ମୋର ବିଶ୍ୱାସ ହୋଇ ପାରୁନାହିଁ । ଆଉ ଓଡ଼ିଆଜାତି ଓଡ଼ିଆ ବୋଲି ଗର୍ବ କରିବାର କୌଣସି କାରଣ ଦେଖାଯାଉ ନାହିଁ । କାରଣ ବର୍ତ୍ତମାନ ସମାଜରେ ଛିଡ଼ା ହେବାପାଇଁ ତାର ବୈଷୟିକ ଯୋଗ୍ୟତା କଣ ଅଛି ? ଅତୀତର ଯେଉଁ ଯୋଗ୍ୟତା ତାହା ଇତିହାସରେ ଲିପିବଦ୍ଧ, ତାହା ଆମର ଦୈନନ୍ଦିନ ଜୀବନରେ ଦେଖା ଯାଉନାହିଁ । ମୁଁ ଆଜି ଗୋଟିଏ କଥା ଏଠାରେ ଉଲ୍ଲେଖ କରିବାକୁ ଚାହେଁ । ଜୀବନର ଧାରା ବର୍ତ୍ତମାନ ଏତେଅଧିକ ଜଟିଳ ହୋଇଗଲାଣି ଯେ ଆମର ବିଦ୍ୱାନ୍, ସୁଧୀ ଗୁଣୀ, ଯୁବକ ଅଧ୍ୟାପକ ଗୋଟିଏ ଗୋଟିଏ ବିଷୟକୁ ଅବଲମ୍ବନ କରି ନିଜର ଚିନ୍ତାରେ ଅନୁପ୍ରାଣିତ ହୋଇ ପୁସ୍ତକ ରଚନା କରନ୍ତି । କେବଳ ପଠିତ ବସ୍ତୁ ବା ବିଷୟକୁ ଚର୍ବିତ ଚର୍ବଣ କଲେ କିଛି ଲାଭନାହିଁ । ଆମର ଅଧ୍ୟାପକମାନେ ନିଜ ନିଜ ଚିନ୍ତାକୁ ଏକତ୍ରୀଭୂତ କରି ପୁସ୍ତକ ପ୍ରଣୟନ କରନ୍ତୁ । ତା ନ କରିବା ଫଳରେ ଜାତି ତଳକୁ ପଡ଼ିଯାଉଛି । ଉଦାହରଣ ସ୍ୱରୂପ ଏଠାରେ ଗୋଟିଏ କଥା ଉଲ୍ଲେଖ କରିପାରେ । ଯେତେବେଳେ ହୀରାକୁଦବନ୍ଧ ଯୋଜନା ତିଆରି କରିବା ଠିକ୍ ହେଲା, ସେତେବେଳେ ଆମେ ଅନ୍ଧ ମୂର୍ଖ କିଛି ନ ଜାଣି ନିର୍ମାଣରେ ମାତିଗଲୁ । ତାର ଅନ୍ୟ ଦିଗଟା କେହି ଦେଖାଇଲେ ତାକୁ ଘୃଣ୍ୟଧିକ୍କୃତ କଲୁଁ ଏବଂ ଗୁଣ୍ଡାମିଦ୍ୱାରା ହୁଏତ ତାକୁ ଦମନ କରିବାକୁ ଲାଗିଲୁ । ଆଜି ଫଳରେ କଣ ହୋଇଛି ? ସମସ୍ତ ହୀରାକୁଦରେ ଶହେ କୋଟି ଟଙ୍କା ଖର୍ଚ୍ଚ ହେବ ବୋଲି କୁହାଯାଉଛି । ସେଥିରେ କେତେ ଏକର ଜମି ଉପକୃତ ହେବ ତାହା ମଧ୍ୟ ଜଣାନାହିଁ । ଯେଉଁମାନଙ୍କୁ ଜଣାଅଛି ସେମାନେ ହୁଏତ ଏ ବିଷୟ ଘୋଡ଼ାଇ ରଖିବା ପାଇଁ ଜଳସେଚନର ନୂତନ ଫନ୍ଦୀ ବାହାର କରିଛନ୍ତି । ହୀରାକୁଦ ବନ୍ଧଦ୍ୱାରା ସାକ୍ଷାତରେ କେତେ ପାଣି ମାଡ଼ିବ, ତାହା କୁହା ଯାଉନି । ନୂତନ ଜଳସେଚନର ସ୍କିମ୍ ସେହି ଅଞ୍ଚଳରେ ତିଆରି ହେଉଛି । ଏହା କି ମାରାତ୍ମକ କଥା ! ଅଥଚ ଆମକୁ ଶହେ କୋଟି ଟଙ୍କାର ସୁଧ ବର୍ଷକୁ ସାଢ଼େ ତିନ କୋଟି ଟଙ୍କା ହିସାବରେ ଦେବାକୁ ପଡ଼ିବ ।

* * *

"ଉଗର" ସମ୍ପାଦକ ମହୋଦୟ,
ସମୀପେଷୁ

"ଉଗର" ଉଗ ଉଗ କରି ଚାଲିବାକୁ ଆରମ୍ଭ କରିଛି । ଓଡ଼ିଆ ଜାତି ଏକ ସମୟରେ ଉଗ ଉଗ କରି ଚାଲି-ଯାଇଥିଲା । ତେଣୁ ରୁଷିଆରେ ଓଡ଼େଶା ଦେଶ ସ୍ଥାପନ କରିଥିଲା । ରୁଷିଆକୁ ରୁଷା ବୋଲି କହନ୍ତି । ଓଡ଼ିଶାକୁ ବ୍ରହ୍ମଦେଶର ଭାଷା କହନ୍ତି । ରୁଷା ଆଉ ଭାଷା ମଧ୍ୟ ପ୍ରାକୃତିକ ଶକ୍ତିରେ ସମାନ ହୋଇଯିବ । ସୁତରାଂ ଓଡ଼ିଆ ଜାତି ଆଉ ରୁଷିଆର ଲୋକେ ଏକଦା ଏକ ସାମ୍ରାଜ୍ୟର ଅନ୍ତର୍ଗତ ଥିଲେ ଏବଂ ତାହା ନିଶ୍ଚୟ ଓଡ଼ିଶା ସାମ୍ରାଜ୍ୟ ଥିଲା । ପୁଣି ବ୍ରହ୍ମଦେଶ ସହର ପ୍ରାଚୀନ ନାମ ଯେଉଁ ଓଡ଼ିଆ, ତାହା ଏହି ଓଡ଼ିଶାର ଅନ୍ତର୍ଗତ ଥିଲା । ପୁଣି ଆପଣ ତ ଜାଣନ୍ତି ଓଡ଼ିଶାର ପ୍ରାଚୀନ ନାମ କଳିଙ୍ଗ । ସେହି କଳିଙ୍ଗ ଯବଦ୍ୱୀପରେ ବିସ୍ତୃତ ହୋଇଥିଲା । ଯବଦ୍ୱୀପବାସୀମାନଙ୍କୁ କ୍ଲିଂ ବୋଲି କହନ୍ତି । ଅତଏବ ବିସ୍ତୃତ ଓଡ଼ିଆ ରାଜ୍ୟ କେତେବଡ଼ ଥିଲା, ତାହା ଭାବନ୍ତୁ । କିନ୍ତୁ ଆଜିର ମୂର୍ଖ ଓଡ଼ିଆ ଏସବୁ କି ତଥାକଥିତ ପାଠୁଆ ଓଡ଼ିଆ ଏକଥା କହିଲେ ଥଟ୍ଟା କରିବେ । ରବୀନ୍ଦ୍ରନାଥ କର ଥଟ୍ଟା କରୁଥିଲେ । ସିଂହଳ ଦେଶ ଓଡ଼ିଆଙ୍କ ଦ୍ୱାରା ଅଧିକୃତ ହୋଇଥିଲା । ବିଜୟ ସିଂହ ତାମ୍ରଲିପ୍ତ ବନ୍ଦରରୁ ଯାଇଥିଲେ—ମେଦିନୀପୁର ଓଡ଼ିଆ । ଏସବୁ କଥା ହସରେ ଉଡ଼ାଇଦେବେ । ପୁଣି ଯଦି କହିବି ଯେ ମହୀଶୂରର ରାଜାଙ୍କର ଉପାଧି "ଓଡ଼ିୟାର" ସେହି ଓଡ଼ିଆ ଶବ୍ଦରୁ ହୋଇଛି । ଲୋକେ—ପାଠୁଆ ଲୋକେ ପୁଣି ହସି ଉଡ଼ାଇଦେବେ । ଅଥଚ ଚୋଡ଼ଗଙ୍ଗ ଦେବଙ୍କର ରାଜ୍ୟ ମହୀଶୂର ପର୍ଯ୍ୟନ୍ତ ବିସ୍ତୃତ ଥିଲା ଏବଂ ସେହି ଗଙ୍ଗ ବଂଶର ରାଜା ମହୀଶୂରରେ ରାଜତ୍ୱ କରୁଥିଲେ । ଏହା ଆର. ଡି. ବେନାର୍ଜୀଙ୍କ ଇତିହାସରୁ ଦ୍ରଷ୍ଟବ୍ୟ । ପୁଣି ଯଦି କହିବି ଯେ ସମସ୍ତ ମୋର ଜନ୍ମଭୂମି ଉତ୍କଳଖଣ୍ଡ ଥିଲା, ତାହାହେଲେ ହସିବେ ଆମ ତଥା-କଥିତ ଇଂରାଜୀ ପାଠୁଆମାନେ । ଦୁର୍ଭାଗ୍ୟ ଏମାନେ, କିଛି ଜାଣନ୍ତି ନାହିଁ । ଯଦି କହିବି ଲକ୍ଷ୍ମୀଙ୍କର ସମ୍ବଲପୁରର ଝିଅ ତେଠତ ଦେଶରେ ରାଣୀ ହୋଇଥିଲେ, ତାହାହେଲେ ହସ ଉଦ୍ଧୃତ କରି କଥାଟାକୁ ଓଡ଼ିଆଭାଇମାନେ ଉଡ଼ାଇଦେବେ । ଉଡ୍ଡୀୟାନ ତନ୍ତ୍ରର ଗୋଟିଏ ପ୍ରଧାନ କେନ୍ଦ୍ର ଥିଲା । ତାହା ହରପ୍ରସାଦ ଶାସ୍ତ୍ରୀ କହିଛନ୍ତି । ଏ ବିଷୟରେ ବରୋଦାର ଓରିଏଣ୍ଟାଲ ସିରିଜ୍‌ର ସାଧନାମାଳା ଗ୍ରନ୍ଥ-ଦ୍ୱୟ ଦ୍ରଷ୍ଟବ୍ୟ । ଏହି ଉଡ୍ଡୀୟାନ ଶବ୍ଦର ଅର୍ଥ ଉଡ୍ଡୀୟକୁ ଯାହା ଦେଖାଯାଏ । ଏହି ଉଡ଼ିବାକୁ ଟୀକା କରି ତାମିଲ ବଡ଼ ଗ୍ରନ୍ଥ-ମାନଙ୍କରେ ଲେଖା ହୋଇଛି ଯେ ଓଡ୍ ଧାତୁରୁ ଉତ୍ପନ୍ନ, ଯାହାର ଅର୍ଥ ପଳାଇଯିବା, ଯେ ଶତ୍ରୁ ସମ୍ମୁଖରୁ ପଳାଏ । ଛି ଛି,

ଭଦ୍ରୀସ୍ଥାନରୁ ଯେ ଶବ୍ଦର ପ୍ରକୃତ ଅର୍ଥ ମିଳେ, ଏକଥା ଆମ ଓଡ଼ିଆଙ୍କୁ ମଧ୍ୟ ଭଲ ଭାବରେ ଜଣାନାହିଁ ।

R. D. Benarjee ତାଙ୍କ History of Orissa ପ୍ରଥମ ଭାଗ ୧୬ ପୃଷ୍ଠାରେ ଲେଖିଛନ୍ତି—

The Ganga-Vansa chiefs of the Bamra state are distinctly descended from the Eastern Gangas who claim direct descent from the Western Gangas of Mysore.

ପତ୍ର କହୁଛ ଓଡ଼ିଶା ମତ୍ସ୍ୟଦେଶ ଏବଂ ମତ୍ସ୍ୟ ଦେଶର ରାଜା 'ଭରତ' ଥିଲେ ଏକଥା ଆମ ଲୋକ ଥଟ୍ଟା କରିବେ । ରାଜକ ଚଉଦ୍ୱାରରେ ଥିଲେ ଏକଥା କହିଲେ ଖାଲି ହସିବେ ।

ସମ୍ବଲପୁରରେ ହଡ଼ମଟିଆ ବସ୍ତ୍ର-ବ୍ୟବସାୟ, ଲକଡଗିର ଭଦ୍ରଗିରରେ ବସ୍ତ୍ରବ୍ୟବସାୟ ଥିଲା, ଏହା କହିଲେ ସେଇ ଥଟ୍ଟା ।

ପତ୍ର କହୁଛ ଦଶାର୍ଥ ପ୍ରସଙ୍ଗରେ, ଲୋକେ ଥଟ୍ଟା କରିବେ । ଅଥଚ ଦଶାର୍ଥ ଦର୍ଶନ ଶବ୍ଦର ଅପଭ୍ରଂଶ ମାତ୍ର । ସବୁ କ୍ଷେତ୍ରଠାରୁ ଏହି କ୍ଷେତ୍ରର ପ୍ରାଧାନ୍ୟ ଯୋଗୁଁ ଏହା ଦଶାର୍ଥ ନାମରେ ଅଭିହିତ ।

ପତ୍ର କହୁଛ ଓଡ଼ିଆଣୀମାନେ ଅତି ସୁନ୍ଦରୀ ଥିଲେ, ଆଜ ଖାଇବା ବିନା ଅସୁନ୍ଦରୀ ହୋଇ ଯାଇଛନ୍ତି, ଥଟ୍ଟା କରି ଅନେକେ କଥାଟାକୁ ପୁଣି ଉଡ଼ାଇଦେବେ । ଅଥଚ—History of Prostitution in India ବହିର ୧୩୪ ପୃଷ୍ଠାରେ ଦେଖନ୍ତୁ— King Indradyumna once visited Purusottam Khetra which he selected as the sight for the erection of temple of God Vishnu (Jagannath). The king was simply enchanted with the ravishing beauty of the women here who were all proud of the super-youth, attractive bodies and tremendous hips. These Oriya women were as adept in the art of music as in the fineness of sexual pleasure.

ଅଥଚ ଓଡ଼ିଆଙ୍କ ଭିତରେ ସୌନ୍ଦର୍ଯ୍ୟ ଅଛି ବୋଲି ବଙ୍ଗାଳୀ ଜାଣନ୍ତି ନାହିଁ ବୋଲି କହନ୍ତି ଏବଂ ଅନେକ ଓଡ଼ିଆ ମଧ୍ୟ ସେହି କଥାରେ ହିଁ ଭରନ୍ତି । ଏତିକି ।

ଆପଣଙ୍କର
ଲକ୍ଷ୍ମୀନାରାୟଣ ସାହୁ

* * *

## ମହମ୍ମଦ

ପରର ଦୁଃଖରେ ବନପ୍ରାନ୍ତ ମଧ୍ୟ କାନ୍ଦେ, ଫୁଲ ଶୁଖି ଯାଏ, ବର୍ଷା ଝରି-ଯାଏ । ମହମ୍ମଦ ପରର ଦୁଃଖରେ ସ୍ଥିର ହୋଇ ରହି ପାରୁ ନ ଥିଲେ । ଆରବ ଦେଶରେ ଯେତେବେଳେ ଲୋକେ ମଦୁଆ ହୋଇ ଜୀବନ କଟାଉଥିଲେ । ନାନା ଦେବଦେବୀ ପୂଜା କରୁଥିଲେ । କେତେ ବଳି ଦେଉଥିଲେ ଏପରି କି ନରବଳି ଦେଉଥିଲେ । ଝୁଅ – ଝିଅ ଝୁଅ ହେଲେ ପ୍ରାୟ ତାଙ୍କୁ ମାରି ପକାଉଥିଲେ, ଜୀଅନ୍ତା ପୋତି ପକାଉଥିଲେ । ଜଣେ ମଣିଷର ଯେତେ ଇଚ୍ଛା ସେତେ ମାଇପ ହେଉଥିଲା ।

ମହମ୍ମଦ, ମହମ୍ମଦଙ୍କର ବାପା ଆଉ ତାଙ୍କ ମା ୬୦୦ ଖ୍ରୀଷ୍ଟାବ୍ଦରେ ମକ୍କାରେ ରହୁଥିଲେ । ମହମ୍ମଦଙ୍କର ବାପା ଥିଲେ ମକ୍କା ମନ୍ଦିରର ପୂଜାରୀ । ସେ ମନ୍ଦିରଟିରେ ଖଣ୍ଡିଏ କଳା ପଥର ଅଛି । ଅବ୍ରାହାମ ବଣ ଜଙ୍ଗଲରେ ବୁଲି ବୁଲି ନିସର୍ତ୍ତି ହୋଇ ଗୋଟିଏ ଝରଣା ପାଇ ସେଠି ପିପାସା ତୃପ୍ତ କରିଥିଲେ । ସେହି ଝରଣାର ନାମ ଜମ୍ ଜମ୍ । ସେହିଠାରେ ଗୋଟିଏ କଳା ପଥର ଥିଲା । ତାକୁ ଦେବତା କରି ଥୋଇଲେ ଆରବ ଜାତି । ସେଇଠୁ ମକ୍କା ଗୋଟିଏ ସହର ହେବାକୁ ବସିଲା ।

ମହମ୍ମଦଙ୍କୁ ଯେତେବେଳେ ଛଅ ବର୍ଷ ବାପା ତାଙ୍କର ମରିଗଲେ । ଦେଖୁ ଦେଖୁ ମାଆ ବି ମଲେ । ମହମ୍ମଦ ହେଲେ ମା—ବାପାଛେଉଣ୍ଡ ବାଳକ । ମହମ୍ମଦ ପିଲାଟି ବଡ଼ ଭଲ । ସେ ଟଙ୍କାପଇସା ପାଇଲେ ଗରିବ ଲୋକମାନଙ୍କୁ ଦେଇ ଦେଉଥିଲେ । ଦୁଃଖୀକୁ ସାହାଯ୍ୟ କରିବା ପାଇଁ ତାଙ୍କର ଭାରି ମନ । ସେ ସବୁବେଳେ ପର ଉପକାରରେ ଲାଗିଥାନ୍ତି ।

ମହମ୍ମଦଙ୍କ ଗୋଟିଏ ଖାସ ଜବର ଗୁଣ ଥିଲା । ସେ ମିଛ କେବେ କହୁ ନ ଥିଲେ । ମହମ୍ମଦଙ୍କ ମୁହଁରୁ ଯାହା ବାହାରିବ ତାହା ସତ୍ୟ, ମିଥ୍ୟା ହୋଇ ନ ପାରେ । ଏଥିପାଇଁ ଗୁରୁଜନମାନେ ତାଙ୍କୁ ଭକ୍ତି କରିବାକୁ ଲାଗିଲେ । ତାଙ୍କର ନାମ ପରିବର୍ତ୍ତରେ ତାଙ୍କୁ ବିଶ୍ବାସୀ ବୋଲି ଡାକିବାକୁ ଲାଗିଲେ । ଅଲ୍ ଅମୀନ୍ ଅର୍ଥାତ୍ ବିଶ୍ବାସୀ । ଏ କି କମ୍ କଥା !

ମହମ୍ମଦ ସେହି ମକ୍କା ମନ୍ଦିରର ଭିତରେ ବାହାର, ସେଠାକାର ଲୋକଚରିତ୍ର, ଅନ୍ୟାୟ' ବ୍ୟଭିଚାର ସବୁ ତନ୍ନ ତନ୍ନ କରି ଦେଖିଥିଲେ । ସ୍ବତଃ ତାଙ୍କ ମନ ବଡ଼ କ୍ଷୁବ୍ଧ ହେଲା । ଏ ପ୍ରତିମାପୂଜା ଛାଡ଼ିବାକୁ ହେବ, କାରଣ ସେଠାରେ ଏତେ ବ୍ୟଭିଚାର ହେଉଅଛି, ନରବଳି ପର୍ଯ୍ୟନ୍ତ ଦିଆ ଯାଉଅଛି, ବାଳିକାମାନଙ୍କୁ ଜୀଅନ୍ତା ପୋତି ପକାଯାଉଛି । ଏହାର ବିରୁଦ୍ଧରେ ପ୍ରତିବାଦ କରିବାକୁ ହେବ,

ଏହା ବନ୍ଦ କରିବାକୁ ହେବ, ବହୁ ପତ୍ନୀ ବିବାହ ଦୂର କରିବାକୁ ହେବ, ମଦ୍ୟପାନ ମାତଲାମି ଛଡ଼ାଇବାକୁ ହେବ । ସେ ଅନୁଭବ କଲେ ନିଶ୍ଚୟ ସେ ଏଥିପାଇଁ କଷ୍ଟ ହେଲେ କଷ୍ଟ କରିବେ — ନିଶ୍ଚୟ ନିଶ୍ଚୟ, କଷ୍ଟ ହେଲେ କଷ୍ଟ କରିବେ । କିନ୍ତୁ ଉଟମୃଣା ଟୋକାଙ୍କୁ କିଏ ମାନିବ ? ହଉ ଦେଖା ଯାଉ ମାନିବେ କି ନାହିଁ ।

ମହମ୍ମଦ ଜଣେ ପଇସାବାଲୀ ବିଧବାର ଉଟମୃଣା ଟୋକା ହେଲେ । ସେ ତାଙ୍କର ଉଟ ଚରାନ୍ତି । ତାଙ୍କର କଥାରେ ସେଇଁ-ଆଡ଼େ ସେ କହନ୍ତି, ଏ ଯାଆନ୍ତି, ଜିନିଷ ବିକ୍ରୀ କରନ୍ତି । ମହମ୍ମଦ ସାଧୁପ୍ରକୃତିକ ଥିବାରୁ ଖାଦିଜା (ସେ ବିଧବାର ନାମ) ମହମ୍ମଦଙ୍କୁ ସମ୍ପୂର୍ଣ୍ଣ ବିଶ୍ୱାସ କରିବାକୁ ଲାଗିଲେ ଏବଂ ସବୁ ଭାର ତାଙ୍କ ଉପରେ କ୍ରମେ କ୍ରମେ ନ୍ୟସ୍ତ କଲେ । ମହମ୍ମଦ ଏତେ ସୁନ୍ଦର ବ୍ୟବହାର କଲେ ଯେ ଶେଷରେ ଖାଦିଜା ମହମ୍ମଦଙ୍କୁ ଅନ୍ତରରୁ ପ୍ରେମ କରିବାକୁ ଲାଗିଲେ ଏବଂ ତାଙ୍କୁ ବିବାହ କଲେ । ମହମ୍ମଦଙ୍କୁ ସେତେବେଳେ ପଚିଶ ବର୍ଷ ଏବଂ ଖାଦିଜାଙ୍କୁ ବୋଧହୁଏ ଚାଳିଶ ବର୍ଷ । କିନ୍ତୁ ମହମ୍ମଦ ତାଙ୍କର ମନୋଭାବ ବଦଳାଇଲେ ନାହିଁ । ସେ ନିଜ ଚିରା ଲୁଗା ସେପରି ସିଲେଇ କରୁଥିଲେ, ନିଜ ଜୋତା ସେପରି ନିଜେ ମରାମତି କରୁଥିଲେ, ନିଜ ରୋଷେଇ ସେପରି ନିଜେ କରୁଥିଲେ, ସେହିପରି କଲେ । ପରର ଦୁଃଖ ଦେଖି ତାଙ୍କ ମନ ଦୁଃଖିତ ହେଲା । ସେ ଚିତ୍କାର କରି କହିବାକୁ ଲାଗିଲେ — ହେ ଆଲ୍ଲା ! ମୋତେ ବାଟ ଦେଖାଅ । ସେ ଆଣ୍ଠୁ ମାଡ଼ି ଅଶ୍ରୁ-ବିଚଳିତ ହୋଇ କେତେ ଚିନ୍ତା କରିବାକୁ ଲାଗିଲେ । ଖାଦିଜାଙ୍କୁ ଯାଇଁ କହିଲେ, 'ଖାଦିଜା ତୁମେ କି ଭାବୁଛ ମୁଁ ପାଗଳ ?' ଖାଦିଜା, କହିଲେ, "ନା ତୁମେ ଈଶ୍ୱରଙ୍କ ପ୍ରେରିତ ।"

ମହମ୍ମଦ ମକ୍କାରେ ତେର ବର୍ଷ ରହିଲେ, ନୂତନ ଧର୍ମ ପ୍ରଚାର କଲେ, କିନ୍ତୁ କେହି ସେପରି ଗ୍ରହଣ କଲେ ନାହିଁ । ଏହା ପରେ ସେ ମଦିନାକୁ ଗଲେ ଏବଂ ସେଠାରେ ହଜାର ହଜାର ଲୋକ ତାଙ୍କ ପାଖକୁ ଆସିଲେ ଏବଂ ପ୍ରଥମ ମସଜିଦ ସେଠାରେ ତିଆରି କରାଇଲେ । ସେହିଠାରେ ସେଇଁ ବୀଜ ବୁଣା ହେଲା ତାହାର ଫଳରେ ଆଜି ସମଗ୍ର ପୃଥିବୀରେ ପଇଁତିରିଶ କୋଟି ଲୋକ ମୁସଲମାନ । *

## ସ୍ୱପ୍ନ

ଯୌବନ ବିଧୂନିତ ସନ୍ଧ୍ୟାରେ ତାର ଚରଣ ଚାଲିଲା, ସେ ଯେ ଅଳକାପୁରୀରୁ ଓହ୍ଲାଇ ଆସିଲା ମୋତେ ଖୋଜି ନେବା ପାଇଁ । ଜୀବନର ସନ୍ଧ୍ୟାରେ ଏହି ଚରଣରେ ଚମକି ଉଠିଲି, ମୁଁ ଉପରକୁ ଉଡ଼େଁ— ମାନସଭୂମିରେ ଉପରତଳ ନାହିଁ — ସେ ଯେ ସବୁଠାରେ — ଉଚ୍ଚରୁ ଉଚ୍ଚତର ଏବଂ ନୀଚରୁ ନୀଚତର । ସବୁଠାରେ ମୋର ଗତି, ମୋର ପ୍ରବେଶ ।

ତେବେ ଆଜି ସେ ମୋତେ ଦେଖି ପ୍ରସନ୍ନା, ମୁଁ ତାକୁ ଦେଖି ଚମକି ଉଠିଲି । ମୋର ହାତ ଧରି ସେ ମୋତେ ସ୍ୱର୍ଣ୍ଣ ରଥରେ ବସାଇ ନେଇଗଲା — ଅଳକାପୁରୀ — ଅଳକାପୁରୀ — ହଁ ଅଳକାପୁରୀ —

ମାନସରୋବରରେ ସ୍ନାନ କଲ—ଅବଗାହନ କଲ—କେତେ ମାନସ ରାଜହଂସ ସେଠାରେ ସନ୍ତରଣ କରୁଥିଲେ—କ ସୁନ୍ଦର, କ ଶୁଭ୍ର, କ ଶାନ୍ତ, ସୁଧୀର—ମଧୁର !

ଭାହିଁକ ଏ ରୂପର ମୋହ ? ଭାହିଁକ ଏ ବନ୍ଧର ପ୍ରୀତି ? ଏହା ଅନାବରଣର ମୋହ । କାହିଁକ ଏହି ଶରୀରର ଏତେ ଆକର୍ଷଣ ? ସତ୍ୟ କଥା—ପ୍ରକୃତି ସୁନ୍ଦରୀ, ମୋହିନୀ, ରୂପସୀ, ଉର୍ବଶୀ, ସେହି ପ୍ରକୃତିର ଅଂଶ ଆମ୍ଭେମାନେ । ଅତଏବ ଆମେ ପ୍ରତ୍ୟେକେ ରୂପମୋହନ, ସୁନ୍ଦର, ସୁଶ୍ୟାମଳ, କେବଳ ଧସର ଧୂଳିରେ ଆମେ ମଇଳା ହୋଇଯାଉଁ—ପ୍ରକୃତିରେ ମୋହ ଅଛି—ମେନକା ସେହିଠାରେ—ଉର୍ବଶୀ ସେହିଠାରେ—ନୃତ୍ୟ ନୃତ୍ୟ କରୁଅଛନ୍ତି—ବିଶ୍ୱାମିତ୍ର, ରୁଦ୍ର, ଶିବ, ଶଙ୍କର ମଧ୍ୟ ସେଥିରେ ମୁଗ୍ଧ ହେଉଛନ୍ତି—ଏବଂ ବଲୋଳ ଚକ୍ଷୁରେ ମଦନରସିକ୍ତ ମୁଗ୍ଧ ହୋଇ ଚରଣବନ୍ଦନା କରୁଛନ୍ତି । ଏହା କମ୍ କଥା ନୁହେଁ—ଯାଅ ଉତ୍ତର, ଯାଅ ଦକ୍ଷିଣ, ଯାଅ ମହାରାଷ୍ଟ୍ର, ଯାଅ ପଞ୍ଜାବ, କାଶ୍ମୀର—ଘରେ ଘରେ ଯାଅ—ସେହି ପ୍ରକୃତିପୁରୁଷର ଲୀଳା—ମୋହମାୟା ଲୀଳା ।

ଏହାର ଆବରଣ ଉନ୍ମୋଚନ କରି ଦେଖିପାରନ୍ତି ଦୁଇ ଜଣ । ଜଣେ ଶରୀରର ପ୍ରେମିକ ଯେ ରସନଶୀଳ, ଏକାବେଳକେ ମୁଗ୍ଧ, ତନ୍ମୟ ହୋଇଯାଏ—ଆଉ ଜଣେ ଭାବୁକ, ସାଧକ, ଭକ୍ତ, ଯେ କ ଏହାକୁ ଅନ୍ୟ ଚକ୍ଷୁରେ—ଭାବଚକ୍ଷୁରେ, ଜ୍ଞାନଚକ୍ଷୁରେ ଉନ୍ମୋଚନ କରି—ବାସ୍ତବ ଯାହା, ସତ୍ୟ ଯାହା, ଚିରନ୍ତନ ସତ୍ୟ ଯାହା, ଯାହା ସୁନ୍ଦର ମଧୁର ତାକୁ ସେ ଦେଖି ପାରନ୍ତି ।

ଏହି ଦୁଇ ଶ୍ରେଣୀରୁ ତୁମେ ମୁଁ ହତଭାଗ୍ୟ କୌଣସି ଶ୍ରେଣୀର ଅନ୍ତର୍ଭୁକ୍ତ ହୋଇ ପାରିଲୁ ନାହିଁ—କେବଳ ପରିଶ୍ରମ, କେବଳ ପରିଶ୍ରମ—ମୂଲ ମିଳ ନାହିଁ—କେବେ ମିଳିବ ସେ ଆଶା ମଧ୍ୟ ସ୍ଫୁରି ଉଠୁନାହିଁ ।

ଅନେକ ସମୟରେ ନିରାଶାରେ ହତାଶରେ ପଡ଼ିବାକୁ ହେଉଅଛୁ । ତଥାପି କ ଏ ଜଣେ ହାତ ଦେଖାଉଛୁ—ଇଙ୍ଗିତ କରୁଛୁ ଯେପରି ବିଷଣ୍ଣ ହୁଅ ନାହିଁ—ହତାଶ ହୁଅ ନାହିଁ—ତମିର ଭେଦ କରି ସୂର୍ଯ୍ୟର ସମ୍ମୁଖୀନ ହେବ—କୁହେଳି ଭେଦ କରି ଉପରକୁ ଉଠିବ—ମହାକାଶର ଶୀତଳ ଧାରାରେ ଅବଗାହନ କରି ପୂତ ପବିତ୍ର ହେବ—ଏବଂ ଦେବାଦିଦେବ ମହାଦେବଙ୍କ ସ୍ଫୁରିତ ଉଦାର ମନ ମଧୁର ପ୍ରେମ କରୁଣାସିକ୍ତ ଲୋଚନ ଦେଖି ମୁଗ୍ଧ ହେବ ଏବଂ ଆଶୀର୍ବାଦ ଲାଭ କରିବ । ସେହି ଆଶାରେ ଏହି ଚେଷ୍ଟା—ଏହି ଶତ ଶତ ବ୍ୟର୍ଥତା ମଧ୍ୟରେ ମାନବକୁ ଜିବାକୁ ପଡ଼ୁଅଛି—ସେହି ସୂର୍ଯ୍ୟ ନିତ୍ୟ ଉଠେ, ସେହି ପୃଥିବୀ ନିତ୍ୟ ଦେଖା ଦିଏ—କିନ୍ତୁ ପ୍ରତିଦିନ ଦିଶେ ନୂଆ ନୂଆ ।

ଏପରି ଦିନେ ଆସିବ—ଯେଉଁ ଦିନ ମୋହ ଆବରଣ ତୁଟିଯିବ । ସେ ଦିନ ସବୁ ସ୍ପଷ୍ଟ ଦେଖା ଦେବେ—ସେ ଦିନ ପଣ୍ଡିତ, ବିଦ୍ୱାନ୍, ସାଧୁ, ସୁନ୍ଦର ମନୁଷ୍ୟ ହୋଇ ତୁମେ ଦେଖାଯିବ—ତୁମେ ସେ ଦିନ ଦେବତା ହେବ—ଶିବ ସୁନ୍ଦର ହେବ—ସେଦିନ ତୁମେ ଜଗତକୁ ଆଶୀର୍ବାଦ କରିବ । ତୁମର ଆଶୀର୍ବାଦ

ଅପେକ୍ଷାରେ ସମସ୍ତେ ଉଗ୍ର୍‌ବ ଉଦ୍‌ଗ୍ରୀବ ହୋଇ ରହିବେ—ଅରୁଣା ଉଷାର ମଧୁର ଧୀର ଦୀପ୍ତି ଦେଖାଯିବ—ଇନ୍ଦ୍ରଧନୁ ଦେଖାଦେବ—ଆଶୀର୍ବାଦ ସ୍ୱରଅଢ଼େ ବର୍ଷିବ । *

## ଶାନ୍ତି

ଅନ୍ୟର ଉପକାର କରିବାକୁ ଯାଇ ନିଜର ଜୀବନର ସମତା ନଷ୍ଟ କରିବା ଉଚିତ ନୁହେ । ଯଦି କେହି ଅଜ୍ଞ, ଅମାନିଆ, ହୁଜୁତିଆ, ଦୁଷ୍ଟ, ପାଜି, ବଦମାସ୍ ଥାଏ—ସେ ଯଦି ଯୁକ୍ତି କରେ, କୁଯୁକ୍ତି କରେ, ହୁଜୁତି କରେ—ନ ହେଲା ନାହିଁ, ତାକୁ ଉପଦେଶ ଦେବା ଦରକାର ନାହିଁ । ତାକୁ କିଛି କହିବା ଦରକାର ନାହିଁ—ସେ ଆପଣାର ହେଉ କା ପରର ହେଉ । ସର୍ବଦା ଆପଣାକୁ ରକ୍ଷା କରିବ, ଆପଣାର ସମତା ରକ୍ଷା କରିବ, କେବେହେଁ ନିଜର ହୃଦୟର ସୁନ୍ଦର ଭାବ ଉପରେ ତୁମେ ଆଘାତ କରିବାକୁ ଦିବ ନାହିଁ । ତୁମେ ହୁଏତ ଭାବୁଛ, ସେ ଅଜ୍ଞ, ତୁମର ହୃଦୟର ସୁନ୍ଦର ଭାବ ଉପରେ ଆଘାତ କରୁଛି, ତୁମେ କରୁନାହିଁ । କିନ୍ତୁ ତାହା ଭ୍ରମ, ଭୁଲ । ତୁମେ ହିଁ ଆଘାତ କରୁଛ । ତୁମ ନିଜର କାର୍ଯ୍ୟଦ୍ୱାରା ଅପର ତୁମକୁ ଆଘାତ କରି ପାରିବ ନାହିଁ ଯଦି ତୁମେ ଏପରି ଗୋଟିଏ ମନୋଭାବ ଧର ଯେ ଅପର କଣ କରିବ ।

ସେ କପରି ମୋର ହୃଦୟର ସୁନ୍ଦର ଭାବସମୂହକ ନଷ୍ଟ କରିବ—ପ୍ରକୃତରେ ଗଛ ଅଛି—ଆମେ ହାଣି ଦେଉଛୁ, ସେ ହୁଏତ କାନ୍ଦୁଛି—କ୍ଷୀର ବୁହାଉଛି । ତଥାପି ବୃକ୍ଷ କେବେ ପ୍ରତିଶୋଧ ନେବାକୁ ଚାହେଁ ନାହିଁ—ସେ ଧୀର ସ୍ଥିର ମୂକ ହୋଇ ବସି ରହିଥାଏ ବା ଠିଆ ହୋଇଥାଏ । ଏପରି କି ଜଣାକ ଶାନ୍ତଳୀ ତନ୍ତୁ ବା ଶାଳତନ୍ତୁର ମୂଳ ଉଚ୍ଛେଦ କଲେ ଉଲ୍‌କାପାତ ପରି, ଘୋର ବଜ୍ର ପରି ସେ ପଡ଼ିଯାଏ ସତ—କଡ଼ କଡ଼ ଶବ୍ଦ କରି—କିନ୍ତୁ ତାକୁ ପ୍ରତିଶୋଧ ନେବାକୁ କେହି ଦେଖିଛି କି ? ନା, ସେ ପ୍ରତିଶୋଧ ନିଏ ନାହିଁ । ଯେ ପ୍ରତିଶୋଧ ନିଏ ନାହିଁ—ଯେ ଅହଂକାର, ନିଜର ଅହଂକାରରେ ବାଧା ପଡ଼ିଛି ବୋଲି କ୍ରୋଧାନ୍ୱିତ ହୁଏ, ଦୁଃଖିତ ହୁଏ, ମର୍ମାହତ ହୁଏ ସେହି ଦୁଃଖ ପାଏ—ଅନ୍ୟ ଦୁଃଖ ପାଏ ନାହିଁ—ଅନ୍ୟଥା ସେ ଦୁଃଖ ପାଆନ୍ତା ନାହିଁ ।

ଅତଏବ ନିଜର ମନର ସମତା ରକ୍ଷା କର, ଧୈର୍ଯ୍ୟଚ୍ୟୁତ ଘଟାଇବାକୁ ଦିଅ ନାହିଁ—ପରାସ୍ତ ହେଲି ବୋଲି ଭାବ ଅନ୍ତରରେ ଆଣ ନାହିଁ—କିଏ ଆଘାତ କଲା ବୋଲି ଭାବ ନାହିଁ ।

ଏହିପରି ଜୀବନକୁ ଗଢ଼ିବାକୁ ହେବ, ଜାଗ୍ରତ ରଖିବାକୁ ହେବ; ନୋହିଲେ ଜୀବନର ମୂଲ୍ୟ କିଛି ନାହିଁ ।

ଆଉ ଗୋଟିଏ କଥା । ଯେଉଁ ସବୁ କାରଣରୁ ନିଜର ଜୀବନର ସମତା ନଷ୍ଟ ହୁଏ ସେମାନଙ୍କ ଠାରୁ ଦୂରରେ ରହିବାକୁ ଚେଷ୍ଟା କର—

ହୁଏତ ଭାବିବ ଯେ ସେମାନଙ୍କ ଠାରୁ ଦୂରରେ ରହିଲେ ଆପଣାର ଲୋକ, ଆପଣାର ପ୍ରିୟଙ୍କଠାରୁ ହୁଏତ ଦୂରରେ ରହିବାକୁ ହେବ, କାରଣ ବେଶୀ ଦୁଃଖ ଜୀବନରେ ତାହାର ଠାରୁ ଆସେ ଯାହାକୁ

ନ ତୁମେ ଭଲ ପାଅ, ଯା ପ୍ରତି ତୁମେ ଅନୁରକ୍ତ—

ଅତଏବ ଅନୁରକ୍ତିର ମାତ୍ରା ଧୀରେ କମାଅ, ତ୍ୟାଗକର—ବିବେକ ବୈରାଗ୍ୟ ଦ୍ୱାରା ଆପଣାର ଜୀବନକୁ ସୁଶୋଭିତ କରିବାକୁ ଚେଷ୍ଟା କର । ନୋହିଲେ ଜୀବନ ଅନନ୍ତ ନରକ ହୋଇଯିବ—ଜୀବନରେ ଚିନ୍ତା କଟାହରେ ପୋଡ଼ି ମରିବାକୁ ହେବ—

କିନ୍ତୁ ଜୀବନର ସମତା ରକ୍ଷା କରି ପାରିଲେ ଚିନ୍ତା କଟାହରେ ତୁମକୁ କେହି ନିକ୍ଷେପ କଲେ ମଧ୍ୟ ତୁମେ ତଦ୍ଦ୍ୱାରା ବିଚଳିତ ହେବ ନାହିଁ—ତା ପ୍ରତି ଶତ୍ରୁଭାବ ପୋଷଣ କରିବ ନାହିଁ—

ଯେ ତୁମର ଲୋକ—ହୁଏତ ଶତ୍ରୁଟି ଯେପରି ଭାବରେ—ସେପରି ତୁମେ ଶତ୍ରୁଟି—ତୁମର ହେବ ନାହିଁ—ନ ହେଉ । ତୁମେ କିଏ, କଏ ? ଜଗତକୁ ଆସିଛ ସମସ୍ତଙ୍କ ସହିତରେ ପ୍ରୀତି ରକ୍ଷା କରିବାକୁ ହେଲେ ତୁମେ ତାହାପ୍ରତି ଶତ୍ରୁ ହେବ ନାହିଁ । ସେ ତୁମ ପ୍ରତି ଶତ୍ରୁ ହେଉ ପଛେ—

ଏହିପରି ମନନ କରି ଜୀବନକୁ ଗଢ଼ି ଉଠିବ—ମାୟା, ମମତା, ସବୁ ଅଭିମାନ, ଆସ୍ତେ ଆସ୍ତେ ଛାଡ଼ି ପାରିଲେ ନିଜକୁ ଜୟ କରି ପାରିବ, ନିଜକୁ ଜୟ କରି ପାରିଲେ ମୁକ୍ତି, ପ୍ରୀତି, ଶାନ୍ତି । *

## ଶମ୍ବର ଦଶମୀ

ଏହା ଗୋଟିଏ ବୌଦ୍ଧ ପର୍ବ ବୋଲି ଅଭିଧାନରେ ମିଳେ । ଏହି ଶମ୍ବର ଦଶମୀ ଦିନ ଯେଉଁ ପ୍ରକାର ଫଳ ମୂଳ ମିଳେ ତାହାର ଏକତ୍ରୀକରଣ ହୁଏ ଏବଂ ରଖାଯାଏ । ଏହି ଦିନ ସୂର୍ଯ୍ୟଙ୍କୁ ଉପାସନା କରାଯାଏ ।

ମନେହୁଏ ସୂର୍ଯ୍ୟର ସଂକ୍ରମଣ ପରିବର୍ତ୍ତନ ଏହି ଦିନଠାରୁ ଆରମ୍ଭ । ମନେହୁଏ ଏହା ହିଁ ବଡ଼ଦିନର ସୂତ୍ରପାତ କରେ । ଏହିଦିନ କୁହୁଡ଼ି ମଧ୍ୟ ଦେଖାଯାଏ । କୁହୁଡ଼ିର ସମୟ ଆସିଥାଏ । ସୁତରାଂ ସୂର୍ଯ୍ୟଙ୍କୁ ଲୋଡ଼ିବା ନିତାନ୍ତ ଦରକାର ହୋଇପଡ଼େ, ଅତଏବ ସୂର୍ଯ୍ୟର ପୂଜା ହୁଏ ।

ଆଉ କହନ୍ତି ଶମ୍ବର ନାମକ ଅସୁରକୁ ବଧ କରା ହୋଇଥିଲା ଏହି ଦିନ । ସେଇଥିପାଇଁ ଶମ୍ବର ଦଶମୀ ପାଳନ କରାଯାଏ । ସବୁ ବିପଦ, ସନ୍ତାପ ଦୂର ହେଉ, ଏହାହିଁ ଏହି ପୂଜାର ଉଦ୍ଦେଶ୍ୟ । ସୁତରାଂ ଏହି ପୂଜା ସଙ୍ଗେ ସଙ୍ଗେ ସ୍ତ୍ରୀମାନେ ଆପଣା ଆପଣାର ଏବଂ ସେମାନଙ୍କ ସମ୍ପର୍କୀୟ ସମସ୍ତଙ୍କର ମଙ୍ଗଳ କାମନା କରନ୍ତି । ଏହି ଦିନ ପିଠା ଓ ବସ୍ତ୍ର ଦରକାର ହୁଏ । ଘରେ ଆନନ୍ଦ ହୁଏ । ଅନ୍ୟକୁ ମଧ୍ୟ ଏହି ପିଠା ଆଦି ଦିଆଯାଏ । ସୁତରାଂ ସମୂହ ଭାବରେ ଆନନ୍ଦ ଉପଲବ୍ଧି କରିବାର ଦିବସ ଏହା ।

ହିନ୍ଦୁର ବର୍ଷ ବିଧାନରେ ଏହିପରି ଗୋଟିଏ କଥା ସାଙ୍ଗରେ ଆଉ ଦଶଟି କଥା ଯୋଡ଼ି ଦିଆଯାଇଅଛି ।

ଗୋଟିଏ କଥା କହିବାର ଯାହା ତାହା ବର୍ତ୍ତମାନ ବୁଝା କହୁନାହିଁ । ଏହା ବୌଦ୍ଧ ବ୍ରତ ବୋଲି ଲେଖା ଯାଇଅଛି । ହିନ୍ଦୁଧର୍ମ ବୌଦ୍ଧଧର୍ମର ଅନେକ କଥା

ଗ୍ରହଣ କରି ଆପଣାର କରି ନେଇଛନ୍ତି । ଜଗନ୍ନାଥ ଠାକୁରରେ ଆମର ବୌଦ୍ଧାବତାର ବୋଲି କହନ୍ତି । ଜାତିଭେଦ ମହାପ୍ରସାଦରେ ନାହିଁ, ଏହା ମଧ୍ୟ ରହିଛି । ସେହିପରି ଏହି ଶମ୍ବର ଦଶମୀ ବୌଦ୍ଧ ବ୍ରତରୁ ହିନ୍ଦୁ ବ୍ରତ ହୋଇ ଯାଇଥିବ, ଏଥିରେ ଆଶ୍ଚର୍ଯ୍ୟ କଣ ?

କିନ୍ତୁ କୁହା ଯାଉଛି ଯେ ଏହା ରାମାୟଣରେ ଅଛି । କେଉଁଠାରେ କପରି ହୋଇ ରହି ଯାଇଥାଏ । ସେ ସମୟରେ ରାମାୟଣ ଏବଂ ଆଜି ଏତେ ଶତ ବର୍ଷ ପରର ରାମାୟଣ ଭିତରେ ଅନେକ ଅଦଳ ବଦଳ, ଓଲଟ ପାଲଟ ହୋଇଥିବ, ଏଥିରେ ସନ୍ଦେହ କଣ ?

ଏହି ସମୟରେ ନାରୀମାନେ ହୁଳହୁଳି ଓ ଶଙ୍ଖ ବଜାନ୍ତି । ହୁଳହୁଳି ଓ ଶଙ୍ଖ ଏକ ସମୟରେ ବିପଦ ଆସିବାର ଦେଖିଲେ ବଜା ଯାଉଥିଲା । ଆଜି ଶୁଭ ମୁହୂର୍ତ୍ତରେ ଶୁଭ ଅନୁଷ୍ଠାନମାନଙ୍କରେ ଶଙ୍ଖ ଓ ହୁଳହୁଳି ପଡ଼ିଥାଏ । ଏହା ଶୁଭରେ ପରିଣତ ହୋଇଅଛି । ସେହିପରି ହିନ୍ଦୁର ବ୍ରତ ଭିତରେ ବୌଦ୍ଧ ବ୍ରତ ଅନେକ ମଙ୍ଗଳାର୍ଥ ପ୍ରବେଶ କରିଅଛି । ଅଳମତିପ୍ରସଙ୍ଗେନ ।

ଆହୁରି ହୋଇପାରେ—ଏଟା ଗୋଟିଏ ବସନ୍ତୋତ୍ସବ । ବସନ୍ତର ମଧୁ ଆଗମର ପ୍ରଥମ ସୂଚନାରେ ଏହି ଶମ୍ବର ଦଶମୀ । ଶମ୍ବରାସୁର ଶୀତ । ଏହି ଶୀତକୁ ବଧ କରେ ବସନ୍ତ । ଏହି ବସନ୍ତର ଆଗମନକୁ ପ୍ରତୀକ୍ଷା କରି ମାନବଗଣ ରହିଥିଲେ । ଆଜି ବସନ୍ତର ଆଗମନ କୋଦଣ୍ଡ କାଣ୍ଡ ଧରି, ଅପରୂପ ମୂର୍ତ୍ତି ଘେନ । ମଧୁର ସୁନ୍ଦର କେତେ ଫଗୁ ଖେଳ, କେତେ ହୋରି ଆନନ୍ଦ, କେତେ ଚୂତ ମୁକୁଳ, କେତେ କୋକିଳ କୁହୁ । ଆଜି ବସୁନ୍ଧରାରେ ବସନ୍ତର ପ୍ରଥମ ପ୍ରବେଶ । ଅଭିବାଦନ କର । ଅଭିନନ୍ଦନ କର—ଗାଅ, ବଜାଅ, ନୃତ୍ୟ କର । ତର୍ଲିଖତ ! —ହେଲ୍ଲ ! ତାଣ୍ଡବ ! —ଭଲ ! ଗବା ! ସବ ! ଭଲ ଭଲ—ସବୁ ଭଲ !

## ପରିବର୍ତ୍ତନ

ମଧୁଆ ଟୋକାଟା ବଡ଼ ଦୁଷ୍ଟ । ସେ ସ୍କୁଲ ମାରି, ତାକୁ ଧରି ଏହିପରି କରେ । କିଏ ଜାଣିଥିଲା ଟୋକାଟା ବଡ଼ ହେଲେ ଏତେ ଭଲ ହେବ ବୋଲି । ହିନ୍ଦୁ ମୁସଲମାନ କାହିଁକି ଗୋଟିଏ ଗୋଟିଏ ଅଲଗା, ଏହି କଥା ତା' ମନକୁ ସବୁ ବେଳେ ଘାରୁଥାଏ ।

ମଧୁ ନ. ପ୍ରା. ପାଠ ପଢ଼ି ସାରି ଉ. ପ୍ରା. କୁ ଗଲାବେଳକୁ ତା ଦୁଷ୍ଟାମି ଖୁବ ବଢ଼ିଛି । ଦୋକାନରୁ ଚୋରି କରି ଜଳଖିଆ ଖାଏ, ପଇସା ଚୋରି କରି ବଜାରରେ ସାଙ୍ଗ ସୁଖ ଘେନ ମାଉଁସ ଖାଏ ।

ଦିନେ ଧରା ପଡ଼ିଲା । ମଧୁ ଘରୁ ହଜାରେ ଟଙ୍କା ଚୋରି କରି ସବୁ ଉଡ଼ାଇ ଦେଇଥିଲା । ସେ କଥା ଟଙ୍କା ଶେଷ ବେଳକୁ ଜଣା ପଡ଼ିଲା । ଏଥର ସେ ଜବଦ ହେଲା । ମାଡ଼ ଖାଇଲା, ଭଲ ପିଲା ହେଲା, ଶିଖା ପଇତା କେତେ ଘେନିଲା, ଚୁଟି ରଖିଲା ! ବେକରେ ମାଳ ବାନ୍ଧିଲା—ଆଉ କଣ ? କାହାରି ଘରେ ଖାଏ ନାହିଁ, କାହାରି ସାଙ୍ଗରେ ଖେଳେ ନାହିଁ । ଯାତ

ଦେଖିବାକୁ ଯାଏ ନାହିଁ, ତାକୁ ମାଡ଼ ମାରିଲେ ମଧ୍ୟ ସେ ନାଟ ଦେଖିବାକୁ ଯାଏ ନାହିଁ । ଶଙ୍କରାଚାର୍ଯ୍ୟକୃତ 'ମୋହମୁଦ୍‌ଗର' ଖୁବ୍ ଘୋଷିଲା, ବଡ଼ ପାଟି କରି ପଢ଼ିବାକୁ ଲାଗିଲା, ମାୟାମୟ ସଂସାରରେ କିଛି ନାହିଁ । ରେ ମୂଢ଼ ! ସବୁ ମିଛ । ଏ ସବୁ ଦେଖିଲାବେଳେ ମଧୁର ମା ଶୁଣିଲା, ସେ ଚମକିଲା, ପୁଅ ମୋର ବାବାଜୀ ହୋଇ ଯିବ କାଳେ । ସେଥିପାଇଁ ତତ୍‌କ୍ଷଣ ବିବାହର ବନ୍ଦୋବସ୍ତ କରାଗଲା । ଝିଅ ଜୁଆଣ୍ଟିଏ ପାଇ ଶାଶୁ ଶ୍ୱଶୁର ତାଙ୍କ ଘରେ ମିଳିତ ଖୁସି, ଝିଅ ବୋହୂଟିଏ ପାଇ ମଧୁ ଘରେ ତା ବାପମା ମଧ୍ୟ ମିଳିତ ଖୁସି । ଏହାରେ ଗୋଟିଏ ଗୁରୁ ତାତ୍ତ୍ୱିକ ମୁଣ୍ଡରୁ ଚାଲିଗଲା ।

ମଧୁର ପିଲାବୋହୂର ନାମ ବାଣୀ । ବାଣୀ ଭଲ ପାଠ ପଢ଼ିନାହିଁ ସିନା, ମାତ୍ର କାନ୍ତକାନ୍ତି ପଦ୍ମିନୀ, ସୁନ୍ଦରୀ । ଆଉ କଣ ଦରକାର କହ ?

ମଧୁ ଭାରି ବୈଷ୍ଣବ ହୋଇଛି— ବାଣୀ ତ ସଦଗର ଉଡ଼ିଆଣୀ ଘର ଝିଅ । ସେ କଣ ହଡ଼ିଆଣୀକୁ ଛୁଇଁବ ? ଖିରସ୍ତାଣୀକୁ ଛୁଇଁବ ? ସେ ପାଠ ନ ହୁଏ ବାବା ।

ମଧୁ ଏଥର ଜଳବଳ । ପୂଜା ଛୁଟିରେ ସେ ଘରକୁ ଯାଇଛି । ଦଶହରା ଦିନ ଶ୍ୱଶୁର ଘରକୁ ଯାଇ ଶାଶୁ ଶ୍ୱଶୁରଙ୍କୁ ପ୍ରଣାମ କରି ଆସିବା କଥା । ମଧୁକୁ ଭାରି ଲାଜ । ସେ ଯିବ ନାହିଁ ।

ଏଣେ ମାଆ ଭାରି ରାଗି କହିଲା, ଶାଶୁ ଶ୍ୱଶୁରଙ୍କୁ ଯାଇ ଜୁହାର ହୋଇ ଆସିବୁ, ଏଥିରେ ପୁଣି ଲାଜ । ସେ ପାଠ ପଢ଼ି ଜୁହାର ହେବାକୁ ଶିଖିନାହିଁ ସେ ପାଠକୁ ଛି । ଆଉ—

ମଧୁ ଏତିକରେ ଗରମ ହୋଇଗଲା । ଘରୁ ବାହାରି ମଣିଆମାଆ ଗୋଡ଼ତଳେ ପଡ଼ିଲା—ଗୋପିଆ ହାଡ଼ି ଗୋଡ଼ତଳେ ପଡ଼ିଲା—ଗୋପିଆମାଃ ହାଡ଼ିଆଣୀ ଗୋଡ଼-ତଳେ ପଡ଼ିଲା—

ଏଥର ମଧୁ ସାନ ବଡ଼ ନ ମାନି ହାଡ଼ି ପାଣ ବ୍ରାହ୍ମଣ କିଛି ଭେଦାଭେଦ ନ ମାନି ସମସ୍ତଙ୍କ ଗୋଡ଼ତଳେ ପଡ଼ିଲା—

ମଧୁ ମା ଏହା ଦେଖି ମଧୁକୁ ଗାଳି ଦେଲା । କହିଲା, ତୋତେ କଣ ହାଡ଼ିଟାକୁ ଜୁହାର ହେବାକୁ କହିଲି ? ମଧୁ କହିଲା, ହିଁ ବେଶ୍ କଲି, ଜୁହାର ହେଲି ।

ଏଥର ମଧୁ ସ୍ୱରଦଉଡ଼ିକଟା । ହିନ୍ଦୁ ମୁସଲମାନ କାହିଁକି ଅଲଗା ଅଲଗା ! ଏଥର କଟକ ଆସି ସେ ମୁସଲମାନ୍ ଛାତ୍ରଙ୍କ ସାଙ୍ଗରେ ମିଶିଲା, ତାଙ୍କ ସାଙ୍ଗରେ ବସାଉଠା କଲା, ଖାଲି ତାକେ ଗାଈମାଂସ ଖୁଆଇ ଦେବେ, ଏଥିପାଇଁ ହେଲା ସେ ନିରାମିଷାଶୀ । ପଠାଣଘରେ ଭାତ ଖାଇଲା । ପରେ ଚାଲିଲା ଖୀରସ୍ତାନ ଯୁବକଙ୍କ ସାଙ୍ଗକୁ । ତାଙ୍କ ଘରେ ଖାଇଲା । ବ୍ରାହ୍ମସମାଜରେ ମିଶିଲା । ସେଠି ଖାଇଲା ।

ଏହାପରେ ମଧୁ ଜାତି ପତି ସବୁ ହରାଇଲା । ମଧୁ କଲେଜ ଛାଡ଼ିଲା—ସ୍କୁଲ-ମାଷ୍ଟର ହେଲା—ସେଠି ଏହି ଖାଇବା ନେଇ ଯେତେ ମାଡ଼ଗୋଳ, ବ୍ରାହ୍ମଣ ମାଷ୍ଟର, ହିନ୍ଦୁ ମାଷ୍ଟର, ଖୀରସ୍ତାନ ମାଷ୍ଟର, ପଠାଣ ମାଷ୍ଟର ଏହିପରି ସବୁ ଅଲଗା ଅଲଗା । ମଧୁକୁ ଏ କଥା ଭଲ ଲାଗେ ନାହିଁ । ସେ ଥରେ ପଠାଣ ମାଷ୍ଟର

ସାଙ୍ଗରେ, ଆଉ ଥରେ ଖ୍ରୀଷ୍ଟାନଙ୍କ ସାଙ୍ଗରେ, ଆଉ କେତେବେଳେ ଅବା ହିନ୍ଦୁଙ୍କ ସାଙ୍ଗରେ ଚଉର ଚକାଇ ବସିଲା ।

ଶେଷରେ ସ୍କୁଲରେ ବି ବଡ଼ ଗଣ୍ଡଗୋଳ ହେଲା ।

ମଧୁ ସ୍କୁଲ ଛାଡ଼ିଲା । ହାଡ଼ିଘରେ ଖାଇଲା । ବଡ଼ ହେଲା । ଗାନ୍ଧି ଆନ୍ଦୋଳନ ଆସିଲା—ସମସ୍ତଙ୍କ ସଙ୍ଗେ ମିଶିଲା । ଗୋଟିଏ ହାଡ଼ିପିଲାକୁ ସାଙ୍ଗରେ ନେଇ ବୁଲିଲା । ଯିଏ ପଚାରେ, ଏ ପିଲାଟି କିଏ, ମଧୁ କହେ, ମୋ ପୁଅ । ଯିଏ ଜାଣେ ନାହିଁ, ସିଏ ଧରିଆ (ସେହି ହାଡ଼ି ପିଲା)କୁ ବଡ଼ ସ୍ନେହ କରେ । ଯିଏ ଜାଣି ପକାଏ ଯେ ଧରିଆ ମଧୁର ପୁଅ ନୁହେଁ—ସେ ହାଡ଼ିପିଲା— ସେ ଖାଇଲା ବେଳେ, ପଢ଼ିଲାବେଳେ, ପାଖରେ ତାକୁ ଦେଖିବାକୁ, ବସିବାକୁ, ସାଙ୍ଗରେ ଖାଇବାକୁ ଆଉ ସୁଖ ପାଏ ନାହିଁ ।

ମଧୁ କିନ୍ତୁ ଏଣେ ହାଡ଼ି, ପାଣ, ବାଉରିଙ୍କ ସାଙ୍ଗରେ ବେଶୀ ମିଶିଲା, ତାଙ୍କ ଘରେ ଖାଇଲା ବେଶୀ ବେଶୀ ।

ଆଜି ମଧୁ ସେହି କାମ କରୁଛି । ଜାତି ମାନୁ ନାହିଁ, ସାଇବ ଘରେ ଖାଉଛି, ପଠାଣ ଘରେ ଖାଉଚି—ଏ କ କଥା । ହିନ୍ଦୁ ହୋଇ ଆଜି ମଧୁ ନାହିଁ । ତା ପତ୍ନୀଟିର କିନ୍ତୁ ସବୁ ହିନ୍ଦୁ ଢଙ୍ଗ । କଥାଟି ଏକ ଘରେ ଅଛନ୍ତି । ପିଲାପିଲିଙ୍କ ସାଙ୍ଗରେ ମଧୁକୁ ଖାଇବାକୁ ଘରେ ମନା ନାହିଁ ।

ହିନ୍ଦୁ ସମାଜ ଆଜି ପରିବର୍ତ୍ତିତ । *



# ମିଳନ

ରାତି ଦୁଇଟା । ହଠାତ୍ ଘୋର ଝଡ଼ ତୋଫାନ ଆସିଗଲା । ଗଛପତ୍ର ସୋ ସୋ କଡ଼ କାଡ଼୍ ହୋଇ ଭାଙ୍ଗି ଛିଡ଼ି ପଡ଼ୁଛି—ବିଜୁଳି ଯେପରି ଗର୍ଜୁଛି, ଚମକାଉଛି ସେହିପରି ଥରେ ଥରେ ବଡ଼ ରଡ଼ି କରି ବଜ୍ର ମାରି ଦେଉଛି । ସେଥିରେ ଆଖି ଝଲସି ଯାଉଛି, ଛାତିରେ ଛନକା ପଶି ଯାଉଛି ।

ଜଣକ ପିଣ୍ଡାରେ ଅଗତ୍ୟା ଆଶ୍ରା ନେବାକୁ ପଡ଼ିଲା । ଭୋର ହେବାକୁ ଆଉ କିଛି ବେଳ ଅଛି । ଝଡ଼ ତୋଫାନ ଟିକିଏ କମିଗଲାଣି । ଘର ଭିତରେ ଯେଉଁମାନେ ଶୋଇଥିଲେ ସେମାନଙ୍କ ଭିତରୁ କାହାରି କାହାରି ନିଦ ଭାଙ୍ଗିଗଲାଣି—ସେମାନେ ଫୁସ୍‌ରୁ ଫୁସ୍‌ରୁ ହେଉଛନ୍ତି ।

ଜଣେ କହୁଛି ରାତିରେ ପିଣ୍ଡାରେ ଜଣେ କିଏ ଆସି ଆଶ୍ରୟ ନେଇଥିଲା, ରାତି ଦୁଇଟାରେ ସେ ଲୋକଟି କେତେ ଶୀତରେ ବାହାରେ ପଡ଼ିଥିବ । ହେଇ ଦେଖ ନିଃଶ୍ୱାସ ତାର ଶୁଣା ଯାଉଛି, ସେ କିଏ ଦେଖ ଟିକିଏ ?

ଦ୍ୱିତୀୟ ବ୍ୟକ୍ତି—ଆଚ୍ଛା ଦେଖିଆସେ ।

ଦ୍ୱିତୀୟ ବ୍ୟକ୍ତି କବାଟ ଖୋଲି ଏହି ଲୋକର ପରିଚୟ ନେଲା । ସେ ରାମକୁ ଚିହ୍ନେ । ବହୁ ବର୍ଷର କଥା । ପଚାଶ ବର୍ଷ ହୋଇଯିବ ସେ ରାମ ସାଙ୍ଗରେ ଖେଳୁଥିଲା । ଏବେ ସେ ଖଡ଼ଗପୁର ଯାଇଥିଲା । ରାମର ଜୁଆଇଁକୁ ଦେଖିଲା । ଜୁଆଇଁର ସମ୍ବାଦ ପରିଚୟ ନେଇଁ ନେଇଁ ଜାଣିଲା ଯେ ସେ ବାଲେଶ୍ୱରର ବାରବାଟିରେ ରାମର

ଝିଅଙ୍କୁ ବାହା ହୋଇଛୁ । ଝିଅଟି ତ ଗୋଡ଼ତଳେ ଆସି ପ୍ରଣାମ କରିଥିଲା ।

ମଧ୍ୟ ବ୍ୟକ୍ତି — ତୁମେ କିଏ ?

ମୁଁ ଲକ୍ଷ୍ମୀନାରାୟଣ ସାହୁ—ଚେଷ୍ଟ ମୋହନ ଗୁଡ଼ିଆର ପୁଅ ।

ଓହୋ ! ସେତେବେଳେ ଏମାନଙ୍କ ଚୈତନ୍ୟ ହେଲା ।

ଘର ଭିତରକୁ ଆସ ଭାଇ କହି ତାଙ୍କୁ ନେଇଗଲେ । କେତେ ଆଦର ଅଭ୍ୟର୍ଥନା । ଏହି ପଚାଶ ବର୍ଷ ମଧ୍ୟରେ କେତେ ପରିବର୍ତ୍ତନ ହୋଇ ଯାଇଅଛି । କେତେ ଭାଙ୍ଗିରୁଜି ଯାଇଛି, ପୁଣି କେତେ ନୂଆ ନୂଆ ହୋଇଛି । ସବୁ ନୂଆ—ତଥାପି ଧୂତ ନୂଆ ପୁରୁଣା ମିଳେଇ କରି ଧରି ରଖିଛି ।

ସେହି ଦିନ ସକାଳେ ମୋତେ ଆଜି ସେମାନେ ଛାଡ଼ିଲେ ନାହିଁ । କେତେ ଆଦର ଯତ୍ନ କଲେ ।

ଭାଇର ପୁଅ, ବୋହୂ, ଝିଅ, ଭାଇର ଭାଇ ଭଉଣୀମାନଙ୍କର ପୁଅ, ଝିଅ, ନାତି ନାତୁଣୀ ସମସ୍ତଙ୍କ ସହିତରେ ପରିଚୟ ହେଲା । ଏତେ ନୂତନ ପରିଚୟ--ଏତେ ଆନନ୍ଦ, ଏତେ ପ୍ରଣାମ, ନମସ୍କାର—ସତେ ଯେପରି ମୁଁ ଆକାଶର ଚନ୍ଦ୍ର ହାତରେ ପାଇଲି—ନା ନା, ସତେ ଯେପରି ସ୍ୱର୍ଗଟା ମୋ ପାଇଁ ଦ୍ୱାରଆଡ଼େ ଖୋଲା ହୋଇଗଲା--ମୋର ଆନନ୍ଦ ଧରେ ନାହିଁ—ବସନ୍ତର ମୃଦୁଳ ମଳୟ ପବନ ପରି ମଲ୍ଲିକାଗନ୍ଧରେ ଆମୋଦିତ ହୋଇ--ଧୂପଗନ୍ଧରେ ନନ୍ଦିତ ହୋଇ ଯେପରି ପୁଣ୍ୟମୟୀ ଜାହ୍ନବୀ ସରୋବରରେ ସ୍ନାନପୂତ ହୋଇ--ମୁଁ ସ୍ପର୍ଶ କରୁଛି, ଦର୍ଶନ କରୁଛି--ମୋର ଚିର ବାଞ୍ଛିତ ସେହି ନନ୍ଦନ କାନନ-- ସତେ ସତେ ସତେ, ପ୍ରକୃତ ବାସ୍ତବ ସେହି ନନ୍ଦନକାନନ ।

ଏତେ ଆଦର ଯତ୍ନ, ଏତେ ପ୍ରୀତିଭରା ଆନନ୍ଦଗୁଞ୍ଜନ, ଏତେ ଶାନ୍ତ ମଧୁରତା ! ଏତେ ଶାନ୍ତତା--ସ୍ୱର୍ଗ ସତେ, ସ୍ୱର୍ଗ ସେହି ! ଆଜି ମୋର ଚକ୍ଷୁଜନମକ ତୃପ୍ତି ହିତ ହୋଇଗଲା ! ବୁଝି ପାରିଲି ସ୍ୱର୍ଗ ଏହିଠାରେ --ଏହି ମାନବ ହୃଦୟରେ, ଏହି ମର୍ତ୍ତ୍ୟର ମର୍ତ୍ତ୍ୟବାସୀର ଗେହରେ, ଏହି ଧରାରେ ବିଚରଣ କରୁଥିବା ଦୁର୍ବଳ ମାନବ ଭାଇର ହୃଦୟରେ--ସତେ ସତେ ସତେ, ତାହାରି ଘରେ । ଆଜି ସୁପ୍ରଭାତ । ୧୭ ତାରିଖ ମାର୍ଚ୍ଚ ମୋ ପକ୍ଷରେ ପୁଣ୍ୟର ଦିନ---ପବିତ୍ରତାର ଦିନ--ଆନନ୍ଦର ଦିନ---ମଧୁରତାର ଦିନ ।

କୋଳାହଳ କର-- ଜୟଧ୍ୱନି ବଜାଅ । ଗାଅ ମଧୁର ସୁନ୍ଦର ଛନ୍ଦରେ--

ପତିତପାବନ ହେ ମଧୁସୂଦନ ।
ଜୀବନ ମୋହର କର ତୁ ଚନ୍ଦନ,
ମଲ୍ଲିକା ସୁବାସ ଭର ଏହି ଦେହେ
ତୋଷୁ ସରବେ ଯେ ପୁଣ୍ୟର
ପ୍ରବାହେ । *

## ନନ୍ଦିନୀ

ତିନି ତିନିଟା ପିଲାର ମା ନନ୍ଦିନୀ । ବାଳିକା ବିଦ୍ୟାଳୟରେ ପାଠ ପଢ଼ି ସେ ସୁଖୀ ହୋଇଥିଲା । ନିଜେ ପତ୍ରିକା-ମାନଙ୍କରେ ପ୍ରବନ୍ଧ ଓ କବିତା ଅନେକ ଲେଖିଛି । ନିଜେ ଗୋଟିଏ ନାରୀ ପତ୍ରିକାର ନାରୀ ସମ୍ପାଦିକା ମଧ୍ୟ ହୋଇଥିଲା । ନନ୍ଦିନୀ

ବିଧବା । ତାର ତିନି ତିନିଟା ପିଲା । ବଡ଼ ପୁଅ ଯୋଡ଼ିଏ । କନ୍ୟା ଗୋଟିଏ । ମାତୃତ୍ୱର ଆକାଂକ୍ଷା ତଥାପି ଯାଇନି । ଅନ୍ତରରେ ସୁପ୍ତ ହୋଇ ରହିଛି ।

ବନମାଳୀ ବାବୁଙ୍କର ହେଲା ସ୍ତ୍ରୀ-ବିୟୋଗ । ନନ୍ଦିନୀ ଉକ୍ତ ସ୍ତ୍ରୀକୁ ବଞ୍ଚାଇବା ପାଇଁ ଅନେକ ସେବା କରିଥିଲା । କିନ୍ତୁ ବିଧାତାର ଇଚ୍ଛାରେ ସେ ରହିଲା ନାହିଁ । ଅକାଳରେ କନ୍ୟାଟିଏ ପ୍ରସବ କରି ଚାଲି ଗଲା ଅନନ୍ତ ଧାମକୁ ।

କନ୍ୟାଟିକୁ ନନ୍ଦିନୀ ଆଣି ପାଳିଲା । ମାତୃତ୍ୱର ଆକାଂକ୍ଷା । ବନମାଳୀ ବାବୁଙ୍କର ପତ୍ନୀଶୋକ ଆସ୍ତେ ଆସ୍ତେ ଲିଭିଗଲା । ଯୌବନର କୁସୁମ ସମ୍ଭାର ଘେନି ନନ୍ଦିନୀର କନ୍ୟା ପଦ୍ମିନୀ ଉଭା । ବନମାଳୀ ବାବୁ ସେ ଦିଗକୁ ଆକୃଷ୍ଟ ହେବା ସ୍ୱାଭାବିକ । କିନ୍ତୁ ଘଟନାଚକ୍ରରେ ପଦ୍ମିନୀ ବନମାଳୀର ଦୃଷ୍ଟିକୁ ପସନ୍ଦ କଲା ନାହିଁ । ସୁତରାଂ ବନମାଳୀ ହେଲା ପରାସ୍ତ । କିନ୍ତୁ ପଡ଼ିଲା ନନ୍ଦିନୀର ଆକର୍ଷଣରେ । ଏକା ବିଧୁର, ବିଧବା, ବିପତ୍ନୀକ । ଆଜି ଆକୃଷ୍ଟ ସାଗର ଓ ଚନ୍ଦ୍ର—ଉଚ୍ଛ୍ୱାସକୁ କିଏ ନା କରିବ ? ଫଳ ହେଲା ନବ ଯୌବନର ଉଦୟ । ଉଭୟର ବକ୍ଷ ଫୁଲି ଉଠିଲା । ବସନ୍ତରେ କୋକିଳ ଗାଏ । ଏମାନଙ୍କ ଜୀବନକୁଞ୍ଜରେ ବସନ୍ତ ଆସିଲା, କୋକିଳ ଗାଇଲା । କିନ୍ତୁ ଜଗତ ଛି ଛି କଲା । ନନ୍ଦିନୀ ପୁତ୍ରମାନେ ଛି ଛି କଲେ ।

ନନ୍ଦିନୀ ଗୃହତ୍ୟାଗିନୀ । ଆଜି ସେ ଜଗତକୁ ଚିହ୍ନିଛି । ଆଜି ସ୍ୱାମୀସ୍ତ୍ରୀ ହାତ ଧରାଧରି ହୋଇ ବାହାରିଗଲେ ଦୂର ଦୂର ଦେଶକୁ । ଅନେକ ତାଡ଼ନା ସହ୍ୟ କରି ସେମାନେ ବୁଲିଲେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ । ଏହିପରି ଫଳରେ ହେଲା ସେମାନଙ୍କର ଦୁଃଖୀର ଜୀବନ । କିନ୍ତୁ ଦୁଃଖ ମଧ୍ୟ ଜୀବନର ଚିର ସାଥୀ ହେଲେ ଆଉ ତାହା ବାଧେ ନାହିଁ । ସୁତରାଂ ସେ ଦୁଃଖ ଆଉ ତାଙ୍କୁ କିଛି କରି ପାରିଲା ନାହିଁ । ଏଥର ନନ୍ଦିନୀ ଓ ବନମାଳୀ ହେଲେ ଜୟୀ । ଦୁଃଖ ତାଡ଼ନା ତାଙ୍କୁ ଆଉ କିଛି କରି ପାରିଲା ନାହିଁ । ତୀବ୍ର କାଳର ନିଷ୍ପେଷଣରେ ଏମାନଙ୍କର ଶକ୍ତି ଆଉ କେତେ ? ପ୍ରାଚୀନ ସାଙ୍ଗ ସୂତ୍ରର ଯେଉଁ ଦୁଇ ଚାରି ଜଣ ରହିଲେ, ସେହିମାନଙ୍କୁ ଘେନି ସେମାନେ ଜୀବନ ପଥର ଦ୍ୱିତୀୟ ଅଧ୍ୟାୟ ଶେଷ କରୁଛନ୍ତି । ବନମାଳୀ ଓ ନନ୍ଦିନୀ ବିବାହିତ । କିନ୍ତୁ ଏକମାତ୍ର ସ୍ନେହର ଡୋରି ସେହି ବାଲ୍ୟ-କାଳର କନ୍ୟାଟି । ସତୀ ସୀତା ପରି ବଢ଼ିଛି, ମା ହୋଇଛି, ଆଜି ସେ ରହିବ ସଂସାରାଶ୍ରମରେ । ଏହି ପିତାମାତା ତାର ଆଶ୍ରୟ । ତାର ସ୍ୱାମୀ ଅଛି ମତ । ସ୍ୱାମୀ ମଧ୍ୟ ଏହି ପିତାମାତା ଉପରେ ଆଶ୍ରୟ କରି ରହିଛନ୍ତି । ଜୀବନରେ କେତେ କଥା ହୁଏ । ମାତୃତ୍ୱର ଆକାଂକ୍ଷା—ପିତୃତ୍ୱର ଆକାଂକ୍ଷା ମରେ ନାହିଁ । ବିଦ୍ୟୁଲ୍ଲତା ମେଘ ପର୍ବତରେ ଜଡ଼ିତ ହୋଇ ରହିବା ପାଇଁ ଚାହେଁ । ଲତାବଲ୍ଲରୀ ଶାଳତରୁର ଆଶ୍ରୟ ଗ୍ରହଣ କରେ । ବର୍ଷାରେ କେତେ ଫୁଲ ଫୁଟେ, କେତେ ଆମୋଦ ଆସେ । ସେ ସବୁ ରହେ, ଝରେ, ପୁଣି ଜୀବନର କଠୋରତା ଆସେ । ଗ୍ରୀଷ୍ମ ଆସେ । ସବୁ ଶୁଖିଯାଏ । ନୀରସ, କର୍କଶ, କଠୋର ଜୀବନ ଜଣାଯାଏ । ଏହିପରି ସବୁ ମାନବର ଜୀବନପଥ । ଏହାକୁ ଏଡ଼ାଇବ କିଏ ? ଅତି ଅଧିକ ସାଧୁ ସନ୍ଥ ବ୍ୟକ୍ତିର

କଥା କହି ନ ପାରେଁ । କଠୋର, କର୍କଶ, ମାନ୍ତମାନ୍ ବ୍ୟକ୍ତିର କଥା କହି ନ ପାରେଁ ।

ରକ୍ତ ମାଂସର ଶରୀର ଥିବା ଲୋକଙ୍କର କଥା ଏହିପରି । ଜୀବନରେ ନିଜର କଥା ଭାବିଲେ ମନେ ହୁଏ— କେତେ ଶୋକ, ଉଚ୍ଛ୍ୱାସ, କେତେ ଆନନ୍ଦ କେତେ ଆଶା, ନିରାଶା, କେତେ ସଂଯମ ଓ କେତେ ଉଚ୍ଛୃଙ୍ଖଳତା ଏହାରି ଭିତର ଦେଇ ଜୀବନନଦୀ ଚାଲିଛି । କେତେ ଗିରିଗୁହା, କେତେ ଗିରିଶିଖର, କେତେ ପ୍ରସ୍ତର ଭିତର ଉପର ଦେଇ ଜୀବନନଦୀ ଚାଲିଛି । ଏହା ଶାଶ୍ୱତ, ପ୍ରକୃତି ପରି ଏହି ରୀତି । ମାନବ ଅନେକ ସମୟରେ ଠିକ୍ ଏହାର ରୀତିପଥ ଧରିପାରେ ନାହିଁ—ଛୁଟି ପାରେ ନାହିଁ । ସୁତରାଂ ସେ ଶଙ୍କିତ ହୋଇ ବିଭୀଷିକା ପ୍ରଦର୍ଶନ କରେ । ବିଭୀଷିକା କିଛି ନୁହେଁ । ମନୁଷ୍ୟ ଅନବରତ ଊର୍ଦ୍ଧ୍ୱକୁ ଗତି କରୁଅଛି । ତାର ସକଳ ପ୍ରଚେଷ୍ଟା ଭିତରେ, ସକଳ ଜୟପରାଜୟ ଭିତରେ ସେ ଉପରକୁ ହିଁ ଉଠୁଛି । ଅତଏବ ଶେଷ ଲକ୍ଷ୍ୟ ମୁକ୍ତି । ସାଗରସଙ୍ଗମ । ଭୟ ନାହିଁ, ଭୂତ ଦେଖ ନାହିଁ । ଦେଖ "ଆନନ୍ଦାଦ୍ଧ୍ୟେବ ଖଲ୍ୱିମାନି ଭୂତାନି ଜାୟନ୍ତେ ।" ନିଧିମା ଆଜି ବୃଦ୍ଧା । ବନମାଳୀ ବାବୁ ମଧ୍ୟ ଆଜି ଶିଥିଳ, ଶ୍ଲଥଚର୍ମ, ପକ୍ୱକେଶ । ଜୀବନର ପାପ ପୁଣ୍ୟର ଆତ୍ମାନୁଭୂତିର ଅବକାଶ ଦେଇ ଏହିପରି ସେମାନଙ୍କର ଜୀବନ ଆଜି ଶେଷପ୍ରାୟ ।

* * *

# ଅଜ୍ଞାତବାସ ଓ ନାରୀର ଅବମାନନା

## ଏକ

କନ୍ୟାଟା ଖୁବ୍ ଖାନଦାନ ବଂଶର ଝିଅ । ଶାନ୍ତ, ଶିଷ୍ଟ । ସେ ପାଠ ପଢ଼ିଲା । ତାର ବାପ ହଠାତ୍ ମରିଗଲା । ତାର ମା ତାକୁ ହାଇସ୍କୁଲରେ ପଢ଼ାଇଲା । ସେ ମାଟ୍ରିକ ପାସ୍ କଲା । ତାପରେ ସେ କଲେଜକୁ ଗଲା । କଲେଜ କଷ୍ଟକରେ, ସୁତରାଂ ସେ ଆଉ ମଫସଲରେ ରହି ପାଠ ପଢ଼ି ପାରିଲା ନାହିଁ । ଇନ୍ଟାରମିଡିଏଟ୍ ପରୀକ୍ଷା ଦେଲା; କିନ୍ତୁ ଫେଲ ହେଲା ।

ତାପରେ ତାକୁ କଟକରେ ରଖି ପଢ଼ାଇବାର ସମ୍ବଳ ତାର ମା'ର ଥିଲା ନାହିଁ । ପ୍ରାଇଭେଟ୍ ଭାବରେ ଆଇ. ଏ. ପରୀକ୍ଷା ଦେବ—ଘରେ ବସି ପାଠ ପଢ଼ିବ ।

ଗାଁରେ ହାଇସ୍କୁଲ । ସେ ହାଇସ୍କୁଲର ଗୋଟିଏ ମାଷ୍ଟର ଯୁବକ—ସେ ମଧ୍ୟ ଆଇ. ଏ. ପଢ଼ୁଥିଲା । ଦୁହେଁ ସାଙ୍ଗ ହୋଇ ପାଠ ପଢ଼ିଲେ । ମା' ଭାବିଲା ସେ ଅଳ୍ପ ପଇସାରେ ସୁବିଧା ହୋଇଗଲା । କିନ୍ତୁ ଦେଖୁ ଦେଖୁ ପାଠପଢ଼ା ଆଉ କଣ ହେବ, ପ୍ରେମ ପଢ଼ା ହେବାକୁ ଲାଗିଲା । ଦୁହେଁଯାକ ଫେର ଫେଲ ହେଲେ ।

ଏଣେ ଦେଖୁ ଦେଖୁ କନ୍ୟାଟାର ପେଟ ଫୁଲିଲା । ଉପାୟ କଣ ? ନିର୍ବୋଧ ମା ! ଦୁଇ ମାସ ତିନି ମାସ ହୋଇଥିଲେ ଗର୍ଭପାତ ସହଜରେ କରାଯାଇ ପାରନ୍ତା । ଆଜିକାଲି ତ ଅସଂଖ୍ୟ ସ୍ତ୍ରୀଲୋକ ଏହା କରୁଛନ୍ତି—କାହାରି କାହାରି ତିନି ଚାରି ଥର ଦୁଇଏକ ଗର୍ଭପାତ ହୋଇଥିବ । ଏହା ଛଡ଼ା ବଡ଼ବଡ଼ିଆ ଜୀବନ ଅନୁକରଣ ଯେଉଁମାନେ କରୁଛନ୍ତି--ବଡ଼ଲୋକ ଜୀବନ ଯେଉଁମାନେ ଯାପନ କରୁଛନ୍ତି—ସେମାନେ ତ ଏହାକୁ ସାଧାରଣ ସ୍ୱାଭାବିକ କଥା ବୋଲି ମନେ କରୁଛନ୍ତି । ଏକ ସମୟରେ ଗର୍ଭପାତ ମହା ନିନ୍ଦନୀୟ ଥିଲା । ଆଜି ଖାଦ୍ୟସମସ୍ୟା ଦିନରେ ଗର୍ଭପାତ ବରଂ ବାଞ୍ଛନୀୟ ହୋଇଉଠିଛି । ଏକ ସମୟରେ କୃତ୍ରିମ ଜନ୍ମନିରୋଧ ଦଣ୍ଡନୀୟ ଥିଲା—ଆଜି ସରକାର ନିଜେ ହାଟ୍ ବଜାରରେ ଜନ୍ମନିୟନ୍ତ୍ରଣ ଚିକିତ୍ସାଗାର ତ ଖୋଲିଲେଣି । ବ୍ୟବସ୍ଥାର ତ ବଢ଼ିଲାଣି ।

ଏଣୁ କନ୍ୟାଟି ସେ ସବୁର ସନ୍ଧାନ ପାଇ ନ ଥିବା ଫଳରେ—କେବଳ ଟିକିଏ ଶୁଣିଥିବା ମାତ୍ର ଦେଖି ନ ଥିବା ଯୋଗୁଁ—ଆଜି ଗର୍ଭବତୀ ।

ମା ବ୍ୟସ୍ତ, କରିବ କଣ ? ନିଜର ବଂଶମର୍ଯ୍ୟାଦା ଗଲା, କଥାକୁ ଘୋଡ଼ାଇବା ପାଇଁ ନାନା ଚିନ୍ତା କଲା ।

ଶେଷରେ ଏହାକୁ ତାହାକୁ ଲେଖି ଲେଖି ଜଣେ ଦେଶର ସେବକକୁ ପାଇଲା । ତାକୁ ସେ ମଉସା ବୋଲି ଡାକେ । ତାର ଝିଅ ଆଉ ଏଣୁ କନ୍ୟାଟାର ମା ପିଲା

ଦନକୁ ସଞ୍ଚାର । ସୁତରାଂ ତାର ଟିକିଏ ସାହସ ହୋଇଲା—ପରେ ତା ନିଜର ଆତ୍ମୀୟମାନେ ପରାମର୍ଶ ଦେଲେ ଯେ, ଯେ ତାକୁ ଗର୍ଭ କରିଛି ସେ ତାକୁ ବିବାହ କରିବାକୁ ଇଚ୍ଛୁକ—ଅତଏବ ତା ସାଙ୍ଗରେ କନ୍ୟାର ବିବାହ ହେଉ ।

କିନ୍ତୁ କନ୍ୟାର ମାତା ନାରାଜ । ଏହା ସେନ ନିଜର ଆତ୍ମୀୟ ସ୍ୱଜନଙ୍କ ସାଙ୍ଗରେ ଝଗଡ଼ା ହେଲା ଆଉ ଏହି ସଞ୍ଚାରକୁ ଧରିଲା । ସଞ୍ଚାରର ପିତା ସ୍ୱର୍ଣ୍ଣନାଥ—ଦେଶସେବକ—ମାତା ଅତି ନିରୀହ—ସେ ଏସବୁ କିଛି ଜାଣେ ନାହିଁ—ସମସ୍ତଙ୍କର ସେବା କରେ—ଖାଏ, ବସେ, ରହିଛି । ତାକୁ ଏସବୁ କଥା ଆଦୌ ଭଲ ଲାଗେ ନାହିଁ । ସେ ବାଲ୍ୟ ବିବାହର ପକ୍ଷପାତୀ । ସେ ଯୁବତୀ ବିବାହ ପସନ୍ଦ କରେ ନାହିଁ । କୁମାରୀମାନଙ୍କର ଭ୍ରମଣ—ସ୍ଫୂର୍ତ୍ତି—ଲୁଚି ଲୁଚି ପାପ କରିବା ପସନ୍ଦ କରେ ନାହିଁ—ସେ ହରବିଲାସ ସର୍ଦ୍ଦା ବିବାହ ବନ୍ଧନକୁ ବଢ଼ାଇ ଯାଇଛନ୍ତି ତାଙ୍କୁ ସେ ଶାନ୍ତ୍ର ମାରନ୍ତା ।

ଯାହା ହେଉ, ଅଧିବା ଛଟି ଲେଖିଲା । ମନସା ମୁଁ ବଡ଼ ବିପଦରେ ପଡ଼ିଛି । ବିପଦଟା କ'ଣ ? କନ୍ୟା ଗର୍ଭବତୀ । ତାକୁ ଲୁଚେଇ କରି କେଉଁଠାରେ ରଖିବ । ଆଠ ମାସ ହୋଇଗଲାଣି—ଏତେବେଳେ ଉପାୟ କଣ ? ଅତଏବ ଦିନେ ସେ କନ୍ୟାକୁ ଆଣି ମନସାଘରେ ଗୁପ୍ତରେ ଦେଇ ଗଲା ।

ଭବିଷ୍ୟତ କଣ ହେବ, ସେ ଚିନ୍ତା କରିବାକୁ ଲାଗିଲା । ମନସା କହିଲା, ଆରେ ସମ୍ମୁଖୀନ ବିପଦରୁ ପାର ପାଅ— ତା ପରେ ଭବିଷ୍ୟତ ବିଷୟ ବିଚାର କରିବା ।

ଦିନେ ବଡ଼ ଗର୍ଭଯନ୍ତ୍ରଣା ହେଲା—ତାକୁ କଟକ ହସପିଟାଲକୁ ନିଆଗଲା—କନ୍ୟା ଯିବାକୁ ନାରାଜ । ସେଠି ତାର ଦୁଇଟା ମାଉସୀ ବଡ଼ ଡାକ୍ତରୀ ପଢ଼ୁଛନ୍ତି—ସେମାନେ ଅବିବାହିତା—ସେମାନଙ୍କୁ ଲଜ୍ଜା ଅପମାନ ହେବ—ସେମାନେ ଉଚ୍ଚ ଶ୍ରେଣୀରେ ପଢ଼ନ୍ତି—ସେମାନେ ଶୁଣିଲେ ନାହିଁ—

ଯାହାହେଉ ଶେଷରେ ସେତେବେଳେ କନ୍ୟାକୁ ନିଆଗଲା—ସେମାନେ ଆସି ସଞ୍ଚାରର ଗୋଡ଼ତଳେ ପଡ଼ିଲେ—କହିଲେ ଏହାକୁ ଫେରାଇ ନେଇଯାଅ—ଘରେ ଏହାର ପ୍ରସବ କରାଅ—ବଡ଼ ଡାକ୍ତରଣୀଙ୍କୁ ଆମେ ନେଇଯିବା, ଇତ୍ୟାଦି—କିନ୍ତୁ ଘରେ ପ୍ରସବ କରାଇଲେ ଯଦି ପିଲା ମରେ କିମ୍ବା କନ୍ୟା ମରେ--ପୁଲିସ ତଦନ୍ତ, ପୁଲିସର ଜୁଲୁମ, ପୁଲିସର ଅତ୍ୟାଚାରରୁ ରକ୍ଷା ମିଳିବା ବଡ଼ କଠିନ । ସରକାରୀ ଡାକ୍ତରଖାନା ହସପିଟାଲରେ ପ୍ରସବକାର୍ଯ୍ୟ କରାଇଲେ ଫଳାଫଳ ପାଇଁ କେହି ଦାୟୀ ହେବ ନାହିଁ ।

ହଉ, ହଉ, ତାର ନାମ ବଦଳାଗଲା---ତାର ସ୍ୱାମୀ ବୋଲି ଗୋଟିଏ ନାମ ଦିଆଗଲା--ସଞ୍ଚାର ଏହା କରିବାକୁ ବାଧ୍ୟ ହେଲା, କେବଳ ଏହି ଡାକ୍ତରୀ ପଢ଼ୁଥିବା ଦୁଇ ଝିଅଙ୍କ ପାଇଁ ।

ମନସା ଏକଥା ଶୁଣି ଖୁସି ହେଲେ । ଯାହା ହେବାର ହେବ---ଯା ତା ନାଁ ଲେଖ । ପରେ ତାହା ବି ବଦଳଗଲା ।

ଆଜି କନ୍ୟାର ଗୋଟିଏ କନ୍ୟା-ସନ୍ତାନ ଜାତ ହୋଇଛି— ସେ

ଡାକ୍ତରଖାନାରେ । ତାର ମାକୁ ଚିଠି ଲେଖା ଗଲା—କନ୍ୟାକାର ଗୋଟିଏ ପିଲା ହୋଇଛି —ଶୀଘ୍ର ଆସ—କଣ ବର୍ତ୍ତମାନ କରିବାକୁ ହେବ, ତାର ବନ୍ଦୋବସ୍ତ କରିବା ।

କିନ୍ତୁ ସଙ୍ଗାତ ବର୍ତ୍ତମାନ ପଛଘୁଞ୍ଚା ଦେଉଛି—ସେ ଆଜି ଆସୁନାହିଁ ।

ସେ ତାର ସଙ୍ଗାତକୁ ଚିଠି ଲେଖିଛି—

ତା ୧୧ । ୮ । ୫୧

ସଙ୍ଗାତ, ଆଜି ତୁମଠାରୁ ଚିଠି ପାଇ ମନ ବିଶେଷ ଅସ୍ଥିର ହେଉଛି । କଣ କରିବି ? ତେମେ ଲେଖିଛ—ତୁ ଆ । ମୁଁ କା କପରି ଯାଉଛି । ମୁଁ ବର୍ତ୍ତମାନ ସବୁଆଡ଼ୁ ବଡ଼ ବିପତ୍ତିରେ ପଡ଼ିଛି । ଯେତେ ଯାହା ହେଉଥାଉ ବା ପଡ଼ାନ୍ତୁ । ମୁଁ ଯିବା ପରେ ପରେ ସେ ଯେଉଁ ଦେଡ଼ଶ୍ଵଶୁରଙ୍କ ଧର୍ମପୁତ୍ର ଏଠି ଅଛି, ସେ ଯାଇ ସେଠି ହୁଲସ୍ଥୁଲ କରିବ ନିଶ୍ଚୟ । ତେଣୁ ମୁଁ ତମ ଜମା ତ ଦେଉଛି, ତମଠାରୁ ଅଧିକା ବା ମୁଁ କଣ କରିବି ? ତେମେ କଣ ତାର ମା' ନୁହଁ ? କଣ ହେଲା, ମୋ ରାଣ, ମୋତେ ଶୀଘ୍ର ଲେଖ । ଆଉ ତା ଦେହ ପ୍ରତି ବିଶେଷ ନଜର ଦେବ । ବାହାରୁ ଯଦି ବା ଯାହା ଦରକାର ହେବ କିଣିଦେବ । ମୁଁ କିଛି ଦିନ ଗୁଡ଼ ଯିବି । ବର୍ତ୍ତମାନ ଗଲେ ସମସ୍ତେ ଜାଣିବେ । କଣ ହେଲା ଶୀଘ୍ର ଚିଠି ଦେଅ । ଲୋକ ମଧ୍ୟ ବନ୍ଦୋବସ୍ତ କରିବ । ତମ ଉପରେ ସବୁ ନିର୍ଭର କରି ଭଗବାନଙ୍କୁ ଡାକୁଛି । ଏକମାତ୍ର ସେଇ ସହାୟ ତମକୁ ଓ କନ୍ୟାଠିକୁ ହେବେ । ଆଉ କେହି ନାହିଁ । ତାଙ୍କ ଇଚ୍ଛା ତ ସବୁ ଦେଖିଲ, କଣ ଲେଖିବି !

ତେମେ ଏକମାତ୍ର ଭରସା । ସବୁ ବିଷୟ ତୁମେ ଠିକ୍ କରିବ । ମୁଁ ଜାଣେ ମୁଁ ପାରିବି ନାହିଁ । ମତେ ଶୀଘ୍ର ଚିଠି ଦେବ । ଯାହା ଟଙ୍କା ଲାଗିବ ଖାଇବାକୁ ଦେବାକୁ ଓ ଲୋକ ଲାଗି, ଦେବ । ମୁଁ ଦେବି । ତମର ସେ, ଆଉ କଣ ଲେଖିବି ।

ତମର ଚିଠିକୁ ଗୁହାରି କରିଲି । ଭଗବାନଙ୍କର ଇଚ୍ଛା ! ଇତି ।

ତମର
ସଙ୍ଗାତ

ଏହି ବାପ୍ପ ଆଜ ଅସହାୟ । ଅଥଚ ତାର ସମସ୍ତେ ଅଛନ୍ତି । ତାର ମୃତ ପତିର ବଡ଼ ଭାଇ—ତାର ନିଜର ଦୁଇ ଭଉଣୀ ଡାକ୍ତରଖାନା ଚଢ଼ୁଛନ୍ତି—ତାର ମୃତ ପତିର ଅସଂଖ୍ୟ ବନ୍ଧୁ—ଆତ୍ମୀୟ ବନ୍ଧୁବାନ୍ଧବ—ସେ ସବୁ କେହି ତାର ସାହାଯ୍ୟରେ ଆସୁନାହାନ୍ତି — ସେ ଦାରୁଣ ଅନ୍ଧକାର ଦେଖୁଛି—ତାର କନ୍ୟାକାର ଭବିଷ୍ୟତ ଦେଖୁଛି—

ଆମର ସମାଜ ଏହିପରି ଗଠିତ । ଯଦି ପାଠ ପଢ଼େଇଲ—ବଡ଼ କନ୍ୟା ଘରେ ରଖିଲ—ତାହା ହେଲେ ଏହି ଘଟଣା ତ ସ୍ୱାଭାବିକ ଘଟିବ । ସେଥିପାଇଁ ପୁଣି ସମାଜର ଏତେ କଠୋର ନିୟମ କାହିଁକି ?

କନ୍ୟାକାର ମା ଆସୁନାହିଁ । ଆଜ ତାର ସଙ୍ଗାତର ପିତା ବିରକ୍ତ ହୋଇ ଚିଠି ଲେଖିଛି—

ଦେଖ୍ ତୁ ଆସୁନାହୁଁ । ପରାମର୍ଶ କରିବାର ସୁବିଧା ଦେଉନାହୁଁ । ଅଥଚ କହୁଛୁ, ଆମେ ଯାହା କରିବୁ—ଆମେ କଣ କନ୍ୟାକାର ମା'ବାପ ନୋହୁଁ ?

ବେଶ୍ ଭଲ କଥା । ତୁ ଯଦି ଏସବୁ ଚମକ୍ର ଖେଳୁ, ମୁଁ ତାକୁ ଆଜି ଖ୍ରୀଷ୍ଟିଆନ କରିଦେଉଛି । ସେଲ୍‌ଟରରେ ରଖିଦେଉଛି । ସେତେବେଳେ ତୁ ଆମକୁ କିଛି କହିବୁ ନାହିଁ ।

ଏଣେ ଭଦ୍ୟକା ସେହି ସଙ୍ଗୀତସଭାକୁ ସେଣିବାକୁ ଚାହେଁ । ସଙ୍ଗୀତସଭରେ କିଏ ତାର ରକ୍ଷଣାବେକ୍ଷଣ କରିବ ? ସହଜ କଥା ନୁହେଁ । ସଙ୍ଗୀତର ତ ପ୍ରାଣ ସାତଟା ନିଜର ପିଲା—ତେଣେ ତାର ମା'ର ମତ ନୁହେଁ—ପିତା ମଧ୍ୟ ଅନୁକୂଳ—କାରଣ ନିଜର ମାତା ସେତେବେଳେ ଏସବୁ ଛମିବାକୁ ଚାହୁଁଛି—ଆମେ କାହିଁକି ଏତେ ବସି ତା ପାର୍ଲି କରିବୁ ?

ଏଣେ ଯେଉଁ ମାଷ୍ଟରଟି ଭଦ୍ୟକାକୁ ଗର୍ଭବତୀ କରିଛି, ତାର ସ୍ତ୍ରୀ କୁଆଡ଼େ ମରିଛି—ସେ ଏହାକୁ ବିବାହ କରିବାକୁ ଚାହେଁ ।

—ଭଦ୍ୟକାର ହିଁ-ନାରେ କିଛି ନାହିଁ—ଭଦ୍ୟକାର ମା ଏଥିରେ ରାଜି ନୁହେଁ ।

ଭଦ୍ୟକା ଯଦି ପାଠ ପଢ଼ି ନିଜର ବ୍ୟକ୍ତିତ୍ୱ ସୁଦୃଢ଼ କରିଥାନ୍ତା, ତାହାହେଲେ ଏସବୁ ଘଟନ୍ତା ନାହିଁ । ସେ ନିଜର ମନକୁ କିଛି ସ୍ଥିର କରି ପାରୁନାହିଁ । ସମାଜ ଭୟ, ଚକ୍ଷୁଲଜ୍ଜା, ଲୋକଲଜ୍ଜା ମାନ ମହତ୍ତ୍ୱ ସବୁ କଥା ତାକୁ ଦବେଇ ଦେଉଛି । ଆଜିର ଉଡ଼ନ୍ତା ସମାଜ—ପାଠୁଆ ସମାଜ ଏହିପରି ।

ଏଥିମଧ୍ୟରେ ମେଳାପ ଆସିଲାଣି । ଦୁଇ ବୃଦ୍ଧଙ୍କର ଖବର ନେଲାଣି । ପୋଲିସର ଏଥିରେ କି ସ୍ୱାର୍ଥ ବୁଝା ପଡୁନାହିଁ । ଏଣେ ଏପରି ଘଟଣା ତ ଭୁରି ଭୁରି ସମାଜରେ ଘଟୁଛି । ଯେଉଁ ପୋଲିସ ଏତେ ତତ୍ପର—ସେ ଯେ ବଶିଷ୍ଟ, ତାହା ନୁହେଁ । ସେହି ଦୁଇଟି ସୁବିଧା ପାଇଲେ ପାପର ଖଣ୍ଡଣ ଅଭିନୟ ନିଜେ କରିବ, ଆଉ ସବୁ ଘୋଡ଼ାଇ ଦେବ ।

ତେବେ ସର୍ବାନ୍ତର୍ଯ୍ୟାମୀ ପ୍ରଭୁର କଥା । ସେ କଥା ତ ଆମେ କଥା କଥାକେ କହୁ । କିନ୍ତୁ କାର୍ଯ୍ୟତଃ ଆମର ସେଥିରେ ଅତୁଟ ବିଶ୍ୱାସ ଅଛି କି ? ନା, କେବଳ ନିଃସହାୟର ଗୋଟିଏ ଆକାଙ୍କ୍ଷା—ସେହି ସାହାଯ୍ୟ କରିବ—ବିପଦରୁ ଉଦ୍ଧାର କରିବ—ଆଉ ଶତ୍ରୁକୁ ଦଣ୍ଡ ଦେବ—ଇତ୍ୟାଦି ।

## ଭୁଲ

ଯେଉଁଦିନ ପ୍ରଥମେ ହାଇସ୍କୁଲ-ମାନଙ୍କରେ ବାଳକ ବାଳିକା ଏକତ୍ର ପଢ଼ିବାର ସୁବିଧା ହୋଇଗଲା, ସେହି ଦିନଠାରୁ ହେଡ୍‌ମାଷ୍ଟରମାନଙ୍କର ଦାୟିତ୍ୱ ବଢ଼ି ବେଶୀ ହୋଇଯାଇଛି । କିନ୍ତୁ ସେମାନେ ସେ ଦାୟିତ୍ୱ ତୁଲାଇ ପାରୁଛନ୍ତି କି ? ସହଜ ନୁହେଁ । ଯେକୌଣସି ଲୋକ ଏଥିରେ ହାର ମାନିବ । ମାଷ୍ଟର କରିବେ କଣ ? ଅନେକ ଜାଗାରେ ମାଷ୍ଟରଙ୍କ ଠାରୁ ହିଁ ଏହି ଗୋଳମାଳ ସୃଷ୍ଟି ହୁଏ । ସହଜେ ବାଳିକା, ମାଷ୍ଟର ସ୍ନେହପ୍ରେମ ମୋହରେ ଆକର୍ଷଣ କରି ସେମାନଙ୍କୁ ବିପଦର ସମ୍ମୁଖୀନ କରାଉଛନ୍ତି ।

ହୁଦାପାଏ ମନୁଷ୍ୟ ବଡ଼ rational ବା ବିଚାରଶୀଳ ବ୍ୟକ୍ତି । କିନ୍ତୁ ବେଟ୍ରାଣ୍ଡ ରସେଲ କହନ୍ତି, ଏହା ଠିକ୍ କଥା ନୁହେଁ । ମଣିଷ ଅତି irrational ସେ ଅବସ୍ଥାରେ କଣ କଣ ନ କରେ ? ତାର ବିବେକ,

ବୈଧବ୍ୟ କୁଆଡ଼େ ଉଭେଇ ଯାଏ ! କେତେ ବିଧବା ବିପନ୍ନ ହୋଇଛନ୍ତି ! କେତେ ବିବାହିତ ପୁରୁଷ ନିଜର ସ୍ତ୍ରୀ ଥାଉଁ ଥାଉଁ କେତେ ମଧ ସ୍ତ୍ରୀହରଣ ନ କରୁଛନ୍ତି ! କେତେ ସ୍ତ୍ରୀ ମଧ କେତେ ବ୍ୟଭିଚାର ନ କରୁଛନ୍ତି ! ଏ ସବୁର ତାଲିକାଫର୍ଦ୍ଦ ଦେବ କିଏ ?

ଆଉ ଗୋଟିଏ କଥା, ଏହିପରି ଗୋଟିଏ କନ୍ୟକା ଗର୍ଭବତୀ ହେଲେ ହିନ୍ଦୁ ସମାଜରେ ତାର ସ୍ଥାନ ନାହିଁ । ଆଉ ସରକାର ତରଫରୁ ମଧ ଏହିପରି କନ୍ୟକାଙ୍କର ରକ୍ଷଣାବେକ୍ଷଣର କିଛି ସୁବିଧା କରାଯାଇ ନାହିଁ ।

ଅଥଚ କେତେଗୁଡ଼ିଏ ଖ୍ରୀଷ୍ଟିଆନ୍ ଅନୁଷ୍ଠାନ ଅଛି—ଯେଉଁଠି ଏହି କନ୍ୟକାମାନେ ପ୍ରବେଶ କରି ପାରନ୍ତି, ଆଉ ମଧ ଖ୍ରୀଷ୍ଟିଆନ୍ ହୁଅନ୍ତି, କିମ୍ବା ମୁସଲମାନଙ୍କ ଘରେ ପ୍ରବେଶ କରନ୍ତି ଆଉ ମୁସଲମାନୀ ହୁଅନ୍ତି । ଏ ଅବସ୍ଥାକୁ ହିନ୍ଦୁ ସମାଜ ଆଖି ବୁଜି ଦେଇଛି । ଏହାର ସମାଧାନ କରୁନାହିଁ । ନୂତନ ପରିବର୍ତ୍ତିତ ପରିସ୍ଥିତିରେ ଯାହା ଯାହା ଦରକାର ଏବଂ ଯେଉଁପରି ମନୋଭାବ ସମାଜରେ ରହିବା ଦରକାର, ତାହା ନ ହେବା ଫଳରେ ଅନେକ ବାଳିକା ପ୍ରାଣ ହରାଉଛନ୍ତି କିମ୍ବା ସମସ୍ତ ଜୀବନ ବାଟ ବୁଲୁଛନ୍ତି ଏବଂ ବିପଥଗାମିନୀ ହେଉଛନ୍ତି ଏବଂ ହୁଏତ ଚିରକାଳ ଅନ୍ଧକାରରେ ଦୁଃଖିନୀ ବିଷାଦିନୀ ହୋଇ ଜୀବନ କଟାଉଛନ୍ତି । ଅଥଚ କନ୍ୟକାର ପାପ ପାଇଁ ପୁରୁଷ ମଧ ଦାୟୀ । ସେହି ଶିକ୍ଷକ ମଧ ଦାୟୀ । ଆଉ କେଉଁ ପୁରୁଷ ମଧ ଦାୟୀ । କେବଳ ସ୍ତ୍ରୀର ପେଟ ଫୁଲିଛି ବୋଲି ସେ ଧରାପଡ଼ି ଯାଉଅଛି, ଆଉ ଏତେ କଳଙ୍କିନୀ ହେଉଛି । ଯେପରି ଗର୍ଭପାତ ହୋଇ ପାରିବ ସେପରି ବନ୍ଦୋବସ୍ତ ସରକାରଙ୍କ ତରଫରୁ କରନ୍ତୁ । ତା'ହେଲେ କନ୍ୟକାମାନେ ଉଚ୍ଚଶିକ୍ଷାରେ ଆଜି ହତଚେଷ୍ଟ ହେବେ ନାହିଁ । ଏହି ପେଟଫୁଲାକୁ ମୂଳରୁ ମାରି ଦେଲେ ହେଲା । ଯୌନକ୍ଷୁଧା ଏକାବେଳକେ ମାରିହେବ ନାହିଁ । ଏହା ତ ସୃଷ୍ଟିର ରହସ୍ୟ । ଆଜି ସିନେମା, ନାଟକରେ କେତେ ନରନାରୀ, ନର୍ତ୍ତକ-ନର୍ତ୍ତକୀ, ନାୟକ ନାୟିକା କେତେ ରହସ୍ୟମୟ ଯୌନମିଳନରେ ଅବିବେକୀ ଭାବରେ ମିଶି ଯାଉଛନ୍ତି, ତାହାର ସବୁ ସନ୍ଧାନ କହିବ କିଏ ? କିନ୍ତୁ ଯେତିକି ଖବରକାଗଜ ଇତ୍ୟାଦିରେ ବାହାରେ ସେହି ଯଥେଷ୍ଟ । ପ୍ରମାଣ କରୁଛି ଘଟଣା କଣ ? ସମାଜର ଅବସ୍ଥା କଣ ? ତେବେ ନାରୀକୁ ଏତେ ଅବମାନନା କାହିଁକି ?

ପୂର୍ବର ହିନ୍ଦୁର ପାରିବାରିକ ଜୀବନରେ ଅବିମିଶ୍ରିତ ସୁଖ ଏବଂ ଯୌନତୃପ୍ତି ଆଦର୍ଶ ନ ଥିଲା । ଜୀବନ ଗୋଟିଏ ମହାନ୍ ଉତ୍ସର୍ଗ ଥିଲା ।

ଗାର୍ହସ୍ଥ୍ୟ ସ୍ତ୍ରୀଲୋକମାନଙ୍କ ପକ୍ଷରେ ଗୋଟିଏ ଧାର୍ମିକ ବାଧ୍ୟତା ଥିଲା ଏବଂ ପୁରୁଷ ପକ୍ଷରେ ଏହା ଗୋଟିଏ ସାମାଜିକ କର୍ତ୍ତବ୍ୟ ଥିଲା ।

ଯେଉଁଠାରେ ଗୋଟିଏ ସ୍ତ୍ରୀ ଦ୍ୱାରା ସମସ୍ତ ଆବଶ୍ୟକତା ଯୋଗାଇ ହେଉଥିଲା ସେଠାରେ ବହୁ ସ୍ତ୍ରୀ ଦରକାର ହେଉ ନ ଥିଲେ । ଏକପତ୍ନୀବ୍ରତ ବା ଏକପତିବ୍ରତ ସେଥିପାଇଁ ଆଦର୍ଶ ରୂପେ ସ୍ୱୀକୃତ ହୋଇଥିଲା । ସେଥିପାଇଁ ବିବାହପୂର୍ବରୁ ନାରୀର କୁମାରୀତ୍ୱ ଏବଂ ପୁରୁଷ ପକ୍ଷରେ ବିବାହ

ପ୍ରସବ ସମୟରେ ସତର୍କତା ନିତାନ୍ତ ଆବଶ୍ୟକ ହୋଇ ଉଠୁଥିଲା।

ବିବାହର ଉଦ୍ଦେଶ୍ୟ ଥିଲା ପ୍ରଜା-ଉତ୍ପତ୍ତି। ଅତଏବ ପ୍ରଜା-ଉତ୍ପତ୍ତି ଯଦି ନହେଇ ନ ପାରିଲା ତାହାହେଲେ ଅନ୍ୟ ଥରେ ବିବାହ କରାଯାଇ ପାରୁଥିଲା।

ସେଥିପାଇଁ ବିବାହ ହିନ୍ଦୁର ଥିଲା ଧର୍ମ ଅନୁଷ୍ଠାନ। ସେଥିରେ ବ୍ୟକ୍ତିର ମାତ୍ର କହିଲା ଭଳି ଦରଦସ୍ତୁର ନ ଥିଲା। ଧର୍ମ ହିଁ ଥିଲା ଆଦର୍ଶ। ହିନ୍ଦୁଧର୍ମ ମତରେ କୌଣସି ବାଳିକା ଅବିବାହିତା ରହିବ ନାହିଁ। ଶାସ୍ତ୍ରରେ ଏପରି ବର୍ଣ୍ଣିତ ଅଛି ଯେ ଗାର୍ଗ୍ୟଙ୍କ ଝିଅ ବୃଦ୍ଧ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ଅବିବାହିତା ଥିଲେ। ନାରଦଙ୍କ ପରାମର୍ଶରେ ସେ ଦିନକ ପାଇଁ ମୃତ୍ୟୁର ପୂର୍ବଦିନ ବିବାହିତା ହେଲେ। ଶୃଙ୍ଗବତ ଗାଲବ ତାଙ୍କୁ ବିବାହ କଲେ। ନୋହିଲେ ସ୍ୱର୍ଗର ମୁକ୍ତି ହେବ ନାହିଁ। ମାଲବାରର ନମ୍ବୁଦ୍ରି ବ୍ରାହ୍ମଣମାନଙ୍କ ମଧ୍ୟରେ ଏପରି ମତ ଅଛି ଯେ, ଯଦି କୌଣସି ବାଳିକା ଅବିବାହିତା ହେବା ପୂର୍ବରୁ ମରିଯାଏ, ତାର ଦୁର୍ଗତି ନିମନ୍ତେ ଜଣେ ଏତତ ପୁରୋହିତ ସେହି ମୃତ କନ୍ୟାକୁ ବିବାହ କରିବ।

ପିତା କନ୍ୟା ଦାନ କରେ। ଅତଏବ ପିତା ଦାତା ହେଲା ସେଥିକି। କନ୍ୟାର କିଛି ଅଧିକାର ନାହିଁ। ମାତ୍ର କନ୍ୟା ଯଦି ନିଜେ ନିଜ ଇଚ୍ଛାରେ ବିବାହ କରେ, ତାହା ହେଲେ ପିତାର କନ୍ୟାଦାନ କରିବାରେ ଅଧିକାର ନାହିଁ।

ଗାନ୍ଧର୍ବ ବିବାହରେ କନ୍ୟାପ୍ରଦାନ ନାହିଁ। ସେ ତ ପରସ୍ପରାନୁରାଗ। ଅତଏବ ଆଜିକାଲି ଯେତେ ପ୍ରେମର ବିବାହ ହେଉଛି, ସେଥିରେ କନ୍ୟାପ୍ରଦାନର କଥା ଉଠିବା ଉଚିତ ନୁହେଁ। ବିବାହର ମୂଳ ଅର୍ଥ ହେଉଛି ଧରି ନେଇଯିବା। ସେ ଭାବରେ ସ୍ତ୍ରୀ ହୃତା ହୋଇଯାଏ, ତାର ହିଁ ବିବାହ। ପୁରୁଷର ବିବାହ ନୁହେଁ। ପୁରୁଷର କନ୍ୟା ହରଣ କରିବାର ଅଧିକାର ଯୋଗୁଁ କନ୍ୟାକୁ ବିବାହ କରେଇବାର ଦାୟିତ୍ୱ ତାର ଅଛି। ଆଜି କିନ୍ତୁ ଅବସ୍ଥା ଅଳ୍ପେ ଅଳ୍ପେ ବଦଳୁଛି। ଯଥା - ସମ୍ପତ୍ତିର ଦାବି।

ହିନ୍ଦୁର ବିବାହରେ ଦର୍ଶନ ହେଉଛି, ଯେଉଁ ଦୁଇଜଣ ପରସ୍ପର ବିବାହସୂତ୍ରରେ ଆବଦ୍ଧ ହେବେ ସେହି ଦୁଇ ଜଣ ଜନ୍ମ-ଜନ୍ମାନ୍ତର ଆପଣା ଆପଣାର ଆତ୍ମାର ଉନ୍ନତି ପାଇଁ ପରସ୍ପର ବିବାହିତ ମଧ୍ୟ ହେଉଥିବେ।

ତା ପରେ କିପରି କନ୍ୟା ବିବାହ କଲେ ପରିବାର ସୁଖୀ ହେବ, ତାର ମଧ୍ୟ ବର୍ଣ୍ଣନା ଅଛି। ଯଥା —

ହଂସ ସ୍ୱନାଂ ମେଘବର୍ଣ୍ଣାଂ
ମଧୁପିଙ୍ଗଳଲୋଚନାଂ।
ତାଦୃଶୀଂ ବରୟନ୍ କନ୍ୟାଂ
ଗୃହସ୍ଥଃ ସୁଖମେଧତେ॥

ଏହିପରି ଅଦ୍ଭୁତ କେତେ କଥା ଅଛି।

ଯାଉ ସେ କଥା। ଆଜି ଆମକୁ ଦେଖିବାକୁ ହେବ ନୂତନ ପରିସ୍ଥିତିରେ କନ୍ୟା କିପରି ବିବାହର ସମ୍ମୁଖୀନ ହେଉଅଛି।

## ତିନି

ନାରୀର ବିଷୟରେ ସମାଲୋଚନା ଅନେକ। ନାରୀ ହେଉଛି Eve ଏବଂ ଏହି Eve ଅର୍ଥାତ୍ ଆଦ୍ୟା ନାରୀଙ୍କୁ Evil

ହୋଇଛନ୍ତି ବୋଲି ଗୋଟିଏ ସ୍କୁଲ ପିଲା ଥରେ କହିଥିଲା ।

ନାରୀ ତିଆରି ହେଲା ନରର ପଞ୍ଜରାରୁ । ସେ ନରର ମୁଣ୍ଡରୁ ତିଆରି ହୋଇନାହିଁ, କାରଣ ତାହା ହୋଇଥିଲେ ସେ ଅତିରିକ୍ତ ଅହଂକାରୀ ହୋଇପଡ଼ନ୍ତା । ସେ ଆଖିରୁ ତିଆରି ହୋଇନାହିଁ, କାରଣ ତାହା ହୋଇଥିଲେ ସେ ଆହୁରି ଅତି ଚଞ୍ଚଳ ହୁଅନ୍ତା । ସେ ମୁଖରୁ ତିଆରି ହୋଇନାହିଁ, କାରଣ ତାହା ହୋଇଥିଲେ ସେ ଆହୁରି ବାଗ୍ମୀ ହୁଅନ୍ତା । ସେ ନାକରୁ ତିଆରି ହୋଇନାହିଁ, କାରଣ ତାହା ହୋଇଥିଲେ ସେ ଆହୁରି ଗନ୍ଧ ବାରି ବୁଲନ୍ତା । ସେ ଗୋଡ଼ରୁ ତିଆରି ହୋଇନାହିଁ, କାରଣ ତାହା ହୋଇଥିଲେ ସେ ଆଉ ଥୟ ଧରନ୍ତା ନାହିଁ । କିମ୍ବା ସେ ହୃଦୟରୁ ତିଆରି ହୋଇନାହିଁ, କାରଣ ତାହାହେଲେ ଆହୁରି ଅଧିକ ଈର୍ଷାପରାୟଣ ହୁଅନ୍ତା । ସେଥିପାଇଁ ନରଦେହର ପାଶ୍ୱର୍ ପଞ୍ଜର ହାଡ଼ରୁ ତିଆରି ହୋଇଛି ।

ଗୋଟିଏ କଥା ଅଛି ସଇତାନ ନିଜେ ମଧ୍ୟ ସ୍ତ୍ରୀଲୋକକୁ ଖାଇବ ନାହିଁ । ଏପରି ଅଂଶ ନାହିଁ, ଯେଉଁଥିରେ ନର ପାପ କରେ ଆଉ ନାରୀର ହାତ ନାହିଁ । ସ୍ତ୍ରୀ ଯେ କେବଳ ନିଜେ ମନ୍ଦ ତାହା ନୁହେଁ, ସେ ଆଉ ସମସ୍ତଙ୍କୁ ମଧ୍ୟ ମନ୍ଦ କରାଏ ।

କିନ୍ତୁ ଏହା ମଧ୍ୟ ତ ମାନିବାକୁ ହେବ ମୃତପ୍ରାୟ ବ୍ୟକ୍ତିର ପ୍ରାଣରେ ନାରୀ ସୁଧା ସଞ୍ଜୀବନୀ ଭଳି କାମ କରିଛି । ନାରୀ ଅନେକ ସମୟରେ ନରକୁ ଧର୍ମର ପଥ ଦେଖାଇଛି । ନାରୀ ଅନେକ ଚେଷ୍ଟ ଭଲ କାର୍ଯ୍ୟ କରିଛି । ନାରୀର ତ୍ୟାଗ ନରର ତ୍ୟାଗଠାରୁ ସବୁବେଳେ ଅଧିକ । ଏ କଥା କଣ ମିଥ୍ୟା ? ତଥାପି ନାରୀକୁ କି ଅବମାନନା କରାହୋଇନାହିଁ ? ସୋପେନହର କହିଛନ୍ତି, ନାରୀର ମୁଣ୍ଡରେ ଲମ୍ବା ବାଳ, କିନ୍ତୁ ତା ମୁଣ୍ଡରେ ବୁଦ୍ଧି କମ୍ । ଆଉ ଜଣେ କହିଛନ୍ତି, ତାର ବାଳ ବଡ଼, କିନ୍ତୁ ତାର ଜିଭ ଆହୁରି ବଡ଼ । ଆଉ ଜଣେ କହିଛନ୍ତି, ନାରୀର ଜିହ୍ୱାକୁ ସାବଧାନ, ଏହା ବୃଶ୍ଚିକ ଦଂଶନ ଠାରୁ ଅଧିକ ଯନ୍ତ୍ରଣାଦାୟକ । ଜଣେ ଇଂରେଜ ସ୍ତ୍ରୀଲୋକ ଡକ୍ଟର ଜନ୍‌ସନଙ୍କୁ ପଚାରିଲେ ଫ୍ରେଞ୍ଚ ଭାଷା କପରି ସହଜରେ ଶିଖି ପାରିବେ । ଜନ୍‌ସନ ଉତ୍ତର ଦେଲେ, ନାରୀପକ୍ଷରେ ଗୋଟିଏ ଭାଷା ହିଁ ଯଥେଷ୍ଟ । ଆଉ ଥରେ ଡକ୍ଟର ଜନ୍‌ସନଙ୍କୁ ପଚାରିଲେ, "ଆପଣ ଇଂରାଜୀ ଡିକ୍‌ସନାରି କପରି ଲେଖିଲେ ? ଏତେ ଶବ୍ଦ କପରି ପାଇଲେ ?" ତାଙ୍କର ଉତ୍ତରରେ ଜନ୍‌ସନ କହିଲେ, "ଏ ବଡ଼ ସହଜ କଥା । କୌଣସି ସ୍ତ୍ରୀକୁ ରଗେଇ ଦିଅ—ଆଉ ଦେଖିବ ଶବ୍ଦର ସ୍ରୋତ ଛୁଟୁଛି ।"

ଚାର୍ଲସ ଡିକେନ୍ସ ନର ନାରୀର ବୈବାହିକ ଜୀବନର କଥା ଅନେକ ଲେଖିଛନ୍ତି, ତାଙ୍କର ଉପନ୍ୟାସମାନଙ୍କରେ—କିନ୍ତୁ ନିଜେ ଦୁଃଖମୟ ପାରିବାରିକ ଜୀବନ ଯାପନ କରିଥିଲେ ।

ନାରୀ ହେଉଛି ୨୪ ଘଣ୍ଟା actress—ଜନ୍ମରୁ ସେ actress ।

ଏହିପରି କେତେ କଥା ନାରୀ ସମ୍ବନ୍ଧରେ ଲେଖା ହୋଇଛି । ପୁରୁଷର ଏହା ଅହଂକାର ଭଲ ନୁହେଁ । ସ୍ୱତନ୍ତ୍ର ଜାତି କି ସ୍ତ୍ରୀ ଜାତି ଏ ବିଷୟରେ ବିଶେଷ ଗୋଳମାଳ କରିବା ଉଚିତ ନୁହେଁ ।

ପୁରୁଷ ବି ଚାକର ଅଛନ୍ତି । ସ୍ତ୍ରୀ ବି ଚାକର ଅଛନ୍ତି ।

ସ୍ୱାମୀ ହୋଇ ସ୍ତ୍ରୀକୁ ପିଟିବା ଅତି କଦର୍ଯ୍ୟ କଥା । ଆଗ ଯୁଗରେ ସ୍ତ୍ରୀକୁ chattel ବୋଲି ମାନୁଥିଲେ । ଆଜି ନାରୀ ଓ ନର ସମାନ । କେବଳ ସେତିକି ନୁହେଁ—ନାରୀର ମୂଲ୍ୟ ପୁରୁଷ ଠାରୁ ବେଶୀ, କାରଣ ତାର ଦାୟିତ୍ୱ ମଧ୍ୟ ବେଶୀ । ମାତୃତ୍ୱର ଗୁରୁ ଦାୟିତ୍ୱ ନାରୀ ଉପରେ । ଅତଏବ ଯେଉଁ ନରାଧମ ସ୍ୱାମୀ ନାରୀକୁ ମାରେ, ସେ ଅତି ହୀନ ।

ଆଜି ଶାଶୁନଣନ୍ଦର ବୋହୂକୁ କଥା କଥାକେ ମାରିବା ଆହୁରି ବେଶୀ ଅନ୍ୟାୟ । କାରଣ ଏମାନେ ତ ଆହୁରି ବେଶୀ ବୟସ୍କ । ଏମାନଙ୍କର ବ୍ୟବହାର ତ ଆହୁରି ବେଶୀ ସୁନ୍ଦର ହେବାର କଥା ।

ହଁ, ନାରୀ ବ୍ୟଭିଚାରିଣୀ ହେଲେ, କୁଳକଳଙ୍କିନୀ ହେଲେ, ସେ ସ୍ୱତନ୍ତ୍ର କଥା ।

ମୁଁ ଦେଖିଛି ଆଜି ଅନେକ ସ୍ୱାମୀ ବି. ଏ., ଏମ୍. ଏ. ପାସ୍ କରିସାରି ମଧ୍ୟ ନାରୀକୁ ପିଟନ୍ତି ।

ତାଙ୍କୁ ଧୁ ଧିକାର କରନ୍ତୁ । ଏହାଦ୍ୱାରା ନାରୀର ମର୍ଯ୍ୟାଦା ହାନି ହୁଏ ।

## ଗୁଣ

ଚାଲିଗଲା ! ଅଦୃଶ୍ୟ ହୋଇଗଲା ।

ପିଲାଟା ଚାଲିଗଲା ଗୋପାଳପୁର । ସେଠାରେ ଲାଳିତାପାଳିତା ହେବ । କନ୍ୟାଟି । ମା ତାର ତାକୁ ଛାଡ଼ିଗଲା । ଲଜ୍ଜାରେ ତାର ମୁହଁ ନ ଦେଖି—ତାକୁ ସ୍ତନ୍ୟ ନ ଦେଇ । ସମାଜର ଏପରି ତିରସ୍କାର, କଠୋର ଦଣ୍ଡ—ସୁତରାଂ କନ୍ୟକା ଆଉ ତାର ସେ ଛୁଆକୁ ଦେଖିଲା ନାହିଁ ।

ବର୍ତ୍ତମାନ ସେ ଯାଉଛି ତାର ମା ପାଖକୁ—ସେ ହୁଏତ କିଛି କରିବ—ପାଠ ପଢ଼ିବ—ତା ପରେ କଣ କରିବ କେଜାଣି—ଏଣେ କନ୍ୟା ବଢ଼ୁଥିବ—କାହାଦ୍ୱାରା ଲାଳିତା ପାଳିତା ହେବ—କାହାଦ୍ୱାରା ଶିକ୍ଷିତା ହେବ—ପୁଣି ସେ ବଡ଼ ହେଲେ କଣ କରିବ ? କାହାକୁ ବିବାହ କରିବ ? ବିବାହ ପୂର୍ବରୁ ହୁଏତ ଯୌବନର ଧର୍ମ ଅନୁଯାୟୀ କାହାଦ୍ୱାରା ଗର୍ଭବତୀ ହେବ—ହୁଏତ ଠିକ୍ କନ୍ୟକା ପରି ସେ ତାର ଛୁଆଟିକି ହସପିଟାଲରେ ଛାଡ଼ିଦେଇ ଆସିବ ।

ଏ ହେଉଛି କଣ ? ସମାଜ କେବଳ ଆଖି ବୁଜି ଦେଉଛି—କିନ୍ତୁ ସମସ୍ୟାର ସମାଧାନ କାହିଁ ? ଏହିପରି କେତେ ଚାଲିଥିବ ? ଏହା ତ ବଡ଼ ଅନ୍ୟାୟ !

ତେବେ ଏହାର ପରିବର୍ତ୍ତନ କିପରି ଆନୟନ କରିବାକୁ ହେବ ? କେବେ, କାହାଦ୍ୱାରା ?

ସେ ତ ଜନ୍ମିଲା—ମାତା ଠାରୁ ବିଚ୍ୟୁତ ହେଲା—ଗୋପାଳପୁର ଗଲା । କାହାଦ୍ୱାରା ଲାଳିତା ପାଳିତା ହେଲା । ସେ ବଢ଼ିଲା କି ମଲା—ବଞ୍ଚିଛି କି ନାହିଁ, କିଛି ଜଣା ନାହିଁ ।

ହୁଏତ ଏପରି ଦିନ ଆସିବ ମାତା କନ୍ୟାର ଭେଟ ହେବ । ମାତା ସେତେବେଳେ ବୁଢ଼ୀ ଆଉ କନ୍ୟା ସେତେବେଳେ ଯୌବନା । ହୁଏତ ସେ ସୁନ୍ଦର ଭାବରେ ଘରସଂସାର କରୁଛି । ହୁଏତ ସେମ୍ କେନ୍ସ ତାକୁ ଦତ୍ତକ ନେଇ ପାଠ ପଢ଼େଇଲେଣି । ସେ ଇଂରାଜୀରେ ଧୁରନ୍ଧର ।

ତାର ଚାଲଚଳଣ, ଚତୁରତା ଏବଂ ଚରିତ୍ର ବର୍ତ୍ତମାନ ନବ୍ୟତମ ଯୁଗର ସମ୍ପୂର୍ଣ୍ଣ ଉପଯୋଗୀ । ସେ ହୁଏତ କୃତାର୍ଥ କିମ୍ବା ହୁଏତ ଅଭାଗିଣୀ ଅକୃତାର୍ଥ । କିଏ କହିବ—କଣ ହେବ ? କିନ୍ତୁ ଗୋଟିଏ କଥା ବାର ବାର ମନରେ ଆସେ—ହିନ୍ଦୁ ସମାଜ ଏତେ ନିର୍ମମ କଠୋର କାହିଁକି ? ଖ୍ରୀଷ୍ଟାନ୍ ସମାଜ ଏହାକୁ ଗ୍ରହଣ କଲା କାହିଁକି ? କିନ୍ତୁ ତାହା ମଧ୍ୟ ନୁହେଁ । ମୁସଲମାନ ସମାଜ ମଧ୍ୟ ଗ୍ରହଣ କରି ନଥାନ୍ତା । କିନ୍ତୁ ସେ ପଣ ନୁହେଁ—ଅନାଥାଶ୍ରମରେ । ଆଜି ତ ଆର୍ଯ୍ୟସମାଜ ମଧ୍ୟ ତା କରୁଛି ! ଏହି ଦେଶସେବକ ହିନ୍ଦୁ ସମାଜରେ ମଧ୍ୟ ଅଛନ୍ତି । ସେହି ଅନାଥ ଆଶ୍ରମରେ ଏହିପରି ପିଲାମାନେ ବଢ଼ୁଛନ୍ତି ଏବଂ ସେମାନଙ୍କର ଭବିଷ୍ୟତ ଏହି ସବୁ ଆଶ୍ରମ ଦ୍ୱାରା ନିର୍ମିତ ହେଉଛି । କିନ୍ତୁ ପ୍ରଶ୍ନ ଆସେ ଗୃହ କାହିଁକି ତାହାକୁ ଗ୍ରହଣ କଲା ନାହିଁ ? ଗୃହର ଆଦର୍ଶ ତାକୁ ଆଶ୍ରୟ ଦେଇ ପାରିଲା ନାହିଁ ? ଏହି ଗୃହର ଆଦର୍ଶ, ମାପକାଠି ସମାଜକୁ ନିୟନ୍ତ୍ରିତ କରିବ । ଯେଉଁମାନେ ସେ ମାପକାଠିରେ ନ ଆସିବେ ସେମାନେ ବଞ୍ଚି ପାରନ୍ତି—ବଢ଼ି ପାରନ୍ତି—ଏବଂ ହୁଏତ ସମାଜର ସାଧାରଣ ସ୍ତର ଠାରୁ ଅନେକ ଉଚ୍ଚରେ—କେଉଁ କେଉଁ—ଉଠି ପାରନ୍ତି । ମାତ୍ର ଗୃହ ସେ ଶିଶୁକୁ ଆଦ୍ୟରେ ସ୍ଥାନ ଦେବ ନାହିଁ, କାରଣ ତଦ୍ଦ୍ୱାରା ଗୃହସ୍ଥାଶ୍ରମର ସାଧାରଣ ମାପକାଠି ହୁଏତ ଭ୍ରଷ୍ଟ ହୋଇଯିବ—ଖୁବ୍ ସମ୍ଭବ—ସ୍ୱାଭାବିକ ।

ଏହା ହିଁ ହେଉଛି ରହସ୍ୟ । ହଉ ସେ ପିଲା ରହିଲା । ତାର ଭବିଷ୍ୟତ ପରେ ହୁଏତ ଜଣାଯିବ—ହୁଏତ ବା ଜଣା ନ ଯିବ । କିଏ କହିପାରେ । ପରେ ଦେଖିବାର କଥା ।

## ପାଞ୍ଚ

ଦୁଇଜଣ କଥାବାର୍ତ୍ତା ହେଉଛନ୍ତି । ଜଣେ କହୁଛି ଆଉ ଜଣକୁ । କହିଲ ଭଲା ସମସ୍ତଙ୍କ ଠାରୁ ବଡ଼ କଠିନ କାମ କଣ ? ଅନ୍ୟଟି ଉତ୍ତର ଦେଉଛି—ସ୍ତ୍ରୀଲୋକର ଜିଭ । ଥରେ କଥା କହିଲେ ତାକୁ ବନ୍ଦ କରିବା ଅସମ୍ଭବ ।

ଟଲଷ୍ଟୟଙ୍କୁ ନାରୀ ସମ୍ବନ୍ଧରେ ଥରେ ପଚରା ଯାଇଥିଲା । ସେ କହିଲେ, "ମୁଁ ନାରୀ ସମ୍ବନ୍ଧରେ କହିବି ଯେତେବେଳେ ମୋର ଗୋଟିଏ ଗୋଡ଼ କବରରେ ରହିବ । ସେତେବେଳେ କହିବି, ମୋର କଫିନ୍ ଭିତରକୁ ଡେଇଁପଡ଼ି ଆଉ ଯାହା କରିବାର କର ।" ଟଲଷ୍ଟୟ ବିବାହିତ ଥିଲେ, ଆଉ ତାଙ୍କ ମନକଥା କହିବାକୁ ସେ କୁଣ୍ଠିତ ଥିଲେ ।

ଗୋଟିଏ ସ୍କୁଲ ପିଲାକୁ ପଚରାଗଲା Evil କେଉଁ ଶବ୍ଦରୁ ହୋଇଛି । ସେ କହିଲା Eve ରୁ ହୋଇଛି ।

ଏ କଥାକୁ ବଳବତ୍ତର କରିବା ପାଇଁ ଶାସ୍ତ୍ରକାର କଣ କହୁଛନ୍ତି ଶୁଣନ୍ତୁ । ନାରୀ କାହିଁକି ନରର ପଞ୍ଜରାରୁ ତିଆରି ହେଲା ? ଉତ୍ତର—ନରର ମୁଣ୍ଡରୁ ତିଆରି ହୋଇଥିଲେ ସେ ଗର୍ବିଣୀ ହୋଇ ଉଠନ୍ତା । ଆଖିରୁ ବାହାରିଥିଲେ ସେ ଆହୁରି ବେଶୀ ଚଞ୍ଚଳମନା ହୁଅନ୍ତା । ମୁଖରୁ ତିଆରି ହୋଇଥିଲେ ସେ ଆହୁରି ବେଶୀ ବାଚାଳ ହୁଅନ୍ତା । କାନରୁ ତିଆରି ହୋଇଥିଲେ

ଯେ ଅନ୍ତର ବେଶୀ କାଳକୂଟ ହୁଅନ୍ତା । ଯୋଗେନ୍ଦ୍ର ଉଦ୍ଧୃତ ହୋଇଥିଲେ ସେ ଆତ୍ମର ବେଶୀ ଉତ୍ତପ୍ତଃ ଧାବମାନା ହୋଇଥାନ୍ତା । ସୁରେନ୍ଦ୍ର ଉଦ୍ଧୃତ ହୋଇଥିଲେ ସେ ଆତ୍ମର ବେଶୀ ଈର୍ଷ୍ୟାପରବଶା ହୁଅନ୍ତା । ସେମାନଙ୍କ ଯେ ମନର ଚିନ୍ତାରୁ ତିଆରି ହୋଇଛି ।

ଏହି ହେଲା ଶାସ୍ତ୍ରକାରଙ୍କର ବଚନିକା । ଏହାଠାରୁ ଆଉ ବେଶୀ ଅପମାନମୂଳକ କଥା ନାରୀ ସମ୍ବନ୍ଧରେ କଣ କୁହାଯାଇ ପାରେ ?

ଏପରି ମଧ୍ୟ କୁହାଯାଇଛି ଯେ ଭୂତ ମଧ୍ୟ ଉଲଗ୍ନ ନାରୀକୁ ଛୁଇଁବାକୁ ସାହସ କରେ ନା । ଏହାର ପାପ ନାହିଁ ଯାହା କି ନାରୀ ଭିତରେ ରହିଛି । ସ୍ତ୍ରୀ ନିଜେ କେବଳ ମନ୍ଦ ତାହା ନୁହେଁ, ସେ ଅପରକୁ ମଧ୍ୟ ମନ୍ଦ କରାଏ ।

ଜଣେ ସମାଲୋଚକ କହିଛନ୍ତି । ସ୍ତ୍ରୀ ଲୋକ କିଏ ଠକାମି କରେ । ଉପରଟା ଖାଲି ସାଜସଜ୍ଜା, ଚାକଚକ୍ୟ, ଚକଚକିଆ, ଝଲମଲ, ଢଳ ଢଳ, ଟଳଟଳ । କିନ୍ତୁ ତା'ର ଯେତେ ବିଶୁଦ୍ଧଟା ମିଥ୍ୟା ଭିତ୍ତି ଉପରେ ଅବସ୍ଥିତ । ଯେ ପଦ୍ମଫୁଲ ପରି ଦିଶେ, ଦୁନେଲି ଦ୍ରବ୍ୟ, ସୁନେଲି ସୁନେଲି ରଙ୍ଗ— ଯେପରି କ ଗୋଟିଏ ଶର୍ତ୍ତ ପିଲ୍ଲୁକା, ଅଥବା ଗୋଟିଏ ଶସ୍ତା ପାତ୍ର ଉପରଟା ଚକଚକ; କିନ୍ତୁ ଭିତରେ ଯେଉଁ ପଦାର୍ଥ ଅନେକ ଅଳ୍ପ ଗୁଣ ହୋଇଛି । ଯେଉଁ କୌଣସି ସ୍ତ୍ରୀଲୋକକୁ ଚାହିଁ ଦେଖ— ଦେଖିବ ସେ ସମସ୍ତ ସମାନ—ବକ୍ରବକ୍ର ଭିତର ଯେ ପଦ୍ମବେଳେ ମୁଣ୍ଡଟା ଗରମ —ଚକ୍ ଚକ୍ ଚକଚକିଆ ଯେ—ଅମାଳିଆ, ଆଉ କି ବେଶୀ ସ୍ୱରସ୍ୱର—ତା' କଥାକୁ କେହି କାଟିବ ନାହିଁ, କାଟିଲେ ସେ ମଲା । ଆଉ ତାକୁ ଖୁସି କରାଅ, ଖୋସାମଦ କର, ତାକୁ ମଞ୍ଜକିଆ ମଞ୍ଜକିଆ କଥା କୁହ, ସେ ହସି ହସି ତୁମ କଥାରେ ହଁ ଭଣିବ । ଆଉ ତୁମେ ଠିକ୍ ମନକଥା ଖୋଲାଖୋଲି କୁହ ଓ ଦେଖିବ —ଆଉ ତୁମେ ଯିବ କୁଆଡେ—ଚୁଲ୍ ଟାଣି ଧରି ସେ ତୁମକୁ ଗୋଡ଼େଇ ଗୋଡ଼େଇ ଛଡ଼େଇବ ।

ଏତେ ବଡ଼ ଦାର୍ଶନିକ ସୋପେନହାର ନାରୀକୁ କହିଛନ୍ତି, ତାର ମୁଣ୍ଡର ବାଳ ବଡ଼ ମାତ୍ର ତା ବୁଦ୍ଧି ସ୍ୱଳ୍ପ । ଆଉ ଆଧୁନିକ ଯୁଗରେ ତା ମୁଣ୍ଡ ବାଳ ସ୍ୱଳ୍ପ କରିଗଲେ ମଧ୍ୟ ତା ଜିହ୍ୱାଟା ବଡ଼ ହୋଇ ଯାଇଛି । ସ୍ତ୍ରୀର ଜିହ୍ୱାକୁ ଦୂରରୁ ନମସ୍କାର— ସେ ଯେ ଭଙ୍କାରୀଙ୍ଗୀ । ଜଣେ ସ୍ତ୍ରୀଲୋକ ଡ କ୍ଟର ଜନସନଙ୍କୁ ଫ୍ରେଞ୍ଚ ଭାଷା କାହିଁକି ଶିଖିବାକୁ ଦେବ ପଚାରିବାରୁ ସେ କହିଥିଲେ, "ବାପ୍ ରେ, ଗୋଟିଏ ଭାଷାରେ ତ ରକ୍ଷା ନାହିଁ, ଦୁଇଟା ସେ ଶିଖିଲେ ତ ଆମେ ମରିଯିବୁଁ ।" ଆଉ ଥରେ ଜଣେ ଜନସନଙ୍କୁ ପଚାରିଲେ ଏତେ ବଡ଼ ଅଭିଧାନ ସେ ଲେଖିଲେ କିପରି ? ସେ ଉତ୍ତରରେ କହିଲେ—"ଗୋଟିଏ ସ୍ତ୍ରୀକୁ ରଗେଇ ଦେଲି—ତା ମୁହଁରୁ ଶବ୍ଦସ୍ରୋତ ଛୁଟିଲା—କେତେ ଲେଖିବ କହ ? ଅଭିଧାନ ତିଆରି ହୋଇଗଲା ।"

ଏପରି କ ଭୂଜପୀ ଦାସ ତାଙ୍କ ସମାପ୍ତଣରେ ଲେଖିଗଲେ—

ଅନେକା ଯୋଜନ, ସ୍ୱନକା ବାଣିଜ
ଚଳନ ଚଳନ ଲୋଚନ ଲେଚେ ।
ଅଟ୍ ଖ ଦୁନଅଲେଭ ବାଜବ ହୋକର
ବରୁ ଘରୁ କାଢିନ ପୋଚେ ॥

## ଋଷ

ଜୋସେଫାଇନ ବଟଲରର ପୃଥିବୀର ବନ୍ଦରମାନଙ୍କ ପାଖରେ ନାରୀ ବିପଣୀର ବ୍ରତବାଦ ଓ ସେଥିପାଇଁ ନାନାଆନ୍ଦୋଳନ ଓ ପରିଶ୍ରମ କରି ତାହା ଉଠାଇଦେଲେ । ଆଜ ସୋଭିଏଟ୍ ରୁଷିଆରେ ନାରୀର ସ୍ଥାନ ଅତି ଉଚ୍ଚରେ । ସେ ନରର ପଦସ୍ଖଳନୀ, କେବଳ ଘର ଦାସୀ, ଦେହ ପଦପଲ୍ଲବ ମୁଦାରମ୍ ନୁହେଁ । ସେ ସିଧା ହୋଇ ବାଟ ଚାଲେ । ବାଟ ଘାଟରେ, କଳ-କାରଖାନାରେ, ସ୍କୁଲକଲେଜରେ ପୁରୁଷ ସଙ୍ଗେ ସମାନ ଅନୁଭବ କରେ । ଏହା କମ୍ ଗୌରବର କଥା ନୁହେଁ । ସେମାନେ ସମାଜସେବା, ରାଜନୀତି, କୃଷିକର୍ମ, ଯୁଦ୍ଧ, ଶିଳ୍ପ, କଳକାରଖାନା—ସବୁଥିରେ ଏବଂ ସବୁଠାରେ ସମାନ ଭାବରେ କାର୍ଯ୍ୟ କରନ୍ତି । ପ୍ରକୃତି ସେମାନଙ୍କ ଉପରେ ମାତୃତ୍ୱର ଗୁରୁ ଭାର ଦେଇଥିବାରୁ ସେମାନଙ୍କ ଉପରେ କଠିନ ଶାରୀରିକ ପରିଶ୍ରମ ଦିଆଯାଏ ନାହିଁ । ସେମାନେ ଗର୍ଭବତୀ ହେଲେ ଯଥେଷ୍ଟ ବିଶ୍ରାମ ପାଆନ୍ତି । ସୋଭିଏଟ୍ ରୁଷିଆରେ ବିବାହିତା ନାରୀ ଆଉ ଗୃହକୋଣରେ ବନ୍ଦୀ ହୋଇ, ଅନ୍ତଃପୁରର ଦାସୀ ହୋଇ ନରର କ୍ରୀଡ଼ନକ ବସ୍ତୁ ହୋଇ ରହେ ନାହିଁ । ସବୁଠି ତାର ପ୍ରବେଶ ଅଧିକାର ଅଛି, ସବୁଠି ତାର ପୁରୁଷ ସଙ୍ଗରେ ସମାନ ଆସନ ପାଇବାର ଅଧିକାର ଅଛି ।

୧୯୩୭ ଖ୍ରୀଷ୍ଟାବ୍ଦର ହିସାବ ଅନୁଯାୟୀ ନାରୀ ଶତକଡ଼ା ଅ[illegible]ଜଣ ଶିଳ୍ପ ଓ ବାଣିଜ୍ୟ ବିଭାଗରେ, ତେର ଜଣ ଦୋକାନ ଷ୍ଟୋର ଓ ସାଧାରଣ ଅନୁଷ୍ଠାନମାନଙ୍କରେ କାମ କରୁଥିଲେ । ଶତକଡ଼ା କୋଡ଼ିଏ ଜଣ ଡାକ୍ତର ଓ ଶିକ୍ଷୟିତ୍ରୀ ଥିଲେ । ଶତକଡ଼ା ତେଇଶ ବିଜ୍ଞାନ କଳକାରଖାନା ଇତ୍ୟାଦି ବିଭିନ୍ନ ବିଭାଗରେ ନିଯୁକ୍ତ ଥିଲେ । (ଶ୍ରୀ ଗଙ୍ଗାଧର ରଥଙ୍କ ସୋଭିଏଟ୍ ରୁଷ ଦ୍ରଷ୍ଟବ୍ୟ—୯୭ ପୃଷ୍ଠା ।) ଆଜ ୧୯୫୧ରେ ସୋଭିଏଟ୍ ନାରୀର ସ୍ଥାନ ତ ଆହୁରି ଉଚ୍ଚରେ, ଆହୁରି ସମ୍ମାନଜନକ ।

ଲେନିନଗ୍ରାଡର ଜୋତା କାରଖାନାର ଶ୍ରମିକଙ୍କ ମଧ୍ୟରେ ଶତକଡ଼ା ଷାଠିଏ ଜଣ ସ୍ତ୍ରୀଲୋକ; ମସ୍କୋର ପୋଲିସ ବିଭାଗରେ ଶତକଡ଼ା ପଞ୍ଚାବନ ଜଣ ସ୍ତ୍ରୀଲୋକ, ଶିକ୍ଷା-ବିଭାଗର ନବେ ଜଣ ସ୍ତ୍ରୀଲୋକ । ଏହା କମ୍ ଆଶ୍ଚର୍ଯ୍ୟର କଥା ନୁହେଁ । ନାରୀ ଆପଣାକୁ ଆଜ ସେଠାରେ ସମାଜର ନୂତନ ବିଧାନ ସାହାଯ୍ୟରେ କେତେ ଉନ୍ନତ କରି ପାରିଛି । ସେ ସମରକ୍ଷେତ୍ରରେ ପୁରୁଷ ସହିତରେ ସମାନ ଭାଗ ନେଇ ଲଢ଼େଇ କରିଛି ।

ସୋଭିଏଟ୍ ରୁଷିଆରେ ପ୍ରେମ ଓ ବିବାହର ନିୟନ୍ତ୍ରଣ ଆଇନ କାନୁନ ଜରିଆରେ ଜୋର ଜବରଦସ୍ତି କରାଯାଏ ନାହିଁ । ସେଠାରେ କୌଣସି ଶିଶୁକୁ ଜାରଜ ସନ୍ତାନ ହିସାବରେ ଘୃଣା କରାଯାଏ ନାହିଁ ।

ଆଜ ଆମର ଭାରତୀୟ ସମ୍ବିଧାନରେ ନାରୀକୁ ପୁରୁଷ ସହିତରେ ସମାନ ଆସନ ଦିଆଗଲେ ମଧ୍ୟ ପ୍ରକୃତ ସମାଜରେ ନାରୀର ସ୍ଥାନ ଏତେ ନିମ୍ନରେ ଯେ, କହିଲେ ନ ସରେ । ସେଥିପାଇଁ କନ୍ୟାର ଏତେ ଦୁର୍ଦ୍ଦଶା । ଅବୈଧ ସନ୍ତାନର ଅଙ୍କିତବାସ । ଆଜି କେତେ ଗର୍ଭସ୍ରାବ । ଅଥଚ ନାରତ ଜାରଜ ସନ୍ତାନ । ଭାରତର କୃଷ୍ଟିର

ଇଂଜ୍ଞାପରେ ସେ କବି, ଗାୟକ, ସମ୍ପାଦକ, ବୀଣାବାଦକ, ଚତୁର, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ସବୁଠି ତାର ଯାତାୟାତ —କେତେ ଗୁଣ ଥିଲେ ମଧ୍ୟ ସବୁ ରାଜାଙ୍କ ମହଲ ତାର ପ୍ରବେଶ ବାର୍ତ୍ତା ମାତ୍ରକେ ଝୁଙ୍କି ପଡ଼େ । ବଶିଷ୍ଠ ତ ଜାରଜ । ଏହିପରି କେତେ ଋଷି ତ ଜାରଜ । କିନ୍ତୁ ସମାଜରେ ସେମାନେ ପ୍ରତିକୂଳ ଅବସ୍ଥାରେ ଠେଲି ପେଲି ଏହିପରି ଉପରକୁ ଉଠିଛନ୍ତି । ସମାଜ ସାହାଯ୍ୟ କରି ନାହିଁ—ବାଧା ଦେଇଛି, ଆପତ୍ତି କରିଛି, ଇତ୍ୟାଦି—

ଆଜି ଗଲେ କୁଆଡ଼େ ଆମର ନିଷଡ, ଯୁବକ, ତର୍କକର୍ତ୍ତା ? ସେ ତ ରହିଗଲେ ସୁ ରୁଷ୍ଟ ରୁହରେ—କାରଣ ତାଙ୍କର ତ ଆଜି ସେହି ସ୍ଥଳ ନାହିଁ, ତାଙ୍କୁ ତ ଆଜି ତର୍କ-ଚିନ୍ତା ନେଇ କରିବାକୁ ହେଉନି ନାହିଁ । ସେ ରହିଗଲେ ଅଜ୍ଞାତବାସରେ—ହୁଏତ ଆଜି କେତେ ବାଳକାଙ୍କୁ ସେହିପରି ପଲରେ ପକେଇବେ ବା ତାଙ୍କ ପାଲରେ ଏ ପଡ଼ିବେ ଏବଂ ଏହିପରି ଖସିଯିବେ—ମଞ୍ଜନ କରି ରହିବେ ।

ଆଜି ଷୋଳଷ—ସତେ ସେ ସେପରି ରାମଚନ୍ଦ୍ର, ସତ୍ୟବାନ୍—ସତ୍ୟର ପକ୍ଷି ହାତରେ ଧରି ଦ୍ୱାରେ ଦ୍ୱାରେ ଉପସ୍ଥିତ । ଆଜି ଗର୍ଭପାତ କାହିଁକି ? ଆଜି ପିଲା ଲୁଚେଇବା କାହିଁକି ? ଏହାକୁ ଏତେ ଲୁଚ୍ଛଲୁଚି ନ କରି ସାଧାରଣ ଚକ୍ଷୁରେ ଦେଖିଲେ, ନର ନାରୀର ବ୍ୟବହାର ତା ମନକୁ ଠିକ୍ ହୋଇ ଆସିବ । କେବଳ ହୁଏତ କେତେଗୁଡ଼ିଏ ଯୌନ କ୍ଷୁଧାଗ୍ରସ୍ତ ରୋଗୀ ସମାଜରେ ଗୋଳମାଳ କରିବେ । କିନ୍ତୁ ସେମାନଙ୍କୁ ଧରି ତ ଚିକିତ୍ସା କରିବାକୁ ହେବ ଏବଂ ସେମାନଙ୍କର ସେହି ବିକୃତ ମାନସିକ ଭାବ କିମ୍ବା ଶାରୀରିକ ଉତ୍ତେଜିତ ଅବସ୍ଥାକୁ ଦୂର କରିବାକୁ ହେବ ଡାକ୍ତର ଦ୍ୱାରା । ଆଉ ସମସ୍ତେ ଶିକ୍ଷା ପାଇଲେ, କାମରେ ଲାଗିଗଲେ, ଜୀବନ ତ ସହଜ, ସରଳ, ସ୍ୱଚ୍ଛ, ସୁନ୍ଦର ହୋଇଉଠିବ ।

* * *

# କଳା

The great event to which the whole creation moves.

ମନୁଷ୍ୟ ମଧ୍ୟରେ ଯେଉଁ ଅମରତ୍ୱର ଆକାଙ୍‌କ୍ଷା ତାହାହିଁ ତାକୁ କଳାବିତ୍‌ କରାଏ। ସେ ଜୀବନଯାପନର ସୁବିଧା କରିବାକୁ ଚାହିଁଲେ, ତାକୁ କଳାର ସାହାଯ୍ୟ ନେବାକୁ ହିଁ ହେବ—କେତେବେଳେ ସାହିତ୍ୟ, କେତେବେଳେ ଶିଳ୍ପ, କେତେବେଳେ କଳାର ଅନ୍ୟାନ୍ୟ ଅବୟବ।

'Tis the divinity that stirs within us.

'Tis heaven itself that whispers immortality to man.

ପୁଣି ଏହି ଅମରତ୍ୱ, ଏହି ଦେବତ୍ୱହିଁ ତାକୁ ସୌନ୍ଦର୍ଯ୍ୟପିପାସୁ କରାଏ। ଯାହା ସୁନ୍ଦର ତାହା ଆଧ୍ୟାତ୍ମିକ ଭାବ ଉତ୍ପନ୍ନ କରାଏ। ସୁନ୍ଦରରେ ମୋହ ଅଛି, କିନ୍ତୁ ସୁନ୍ଦରର ଜନ୍ମ ମୋହରେ ନୁହେଁ। ତାହା ବହୁ ଆଧ୍ୟାତ୍ମିକ କର୍ଷଣରେ। ମାଳୀ ବଗିଚାରେ ବଡ଼ ସୁନ୍ଦର ଗୋଲାପ ଫୁଟାଏ ଅନେକ ପରିଶ୍ରମ କରି, ଅନେକ ଉଦ୍ୟମ କରି, ଅନେକ ସାଧନା ପରେ। ଜୀବନର ତୃପ୍ତି କେବଳ ଖାଇବା ପିଇବାରେ ପର୍ଯ୍ୟବସିତ ହୁଏ ନାହିଁ। ଖାଦ୍ୟର ଅଭାବ ପରେ ଯେଉଁ ସମସ୍ୟା ଆସେ, ସେଥିରେ ସୃଷ୍ଟିର କାର୍ଯ୍ୟ ସମାହିତ ହୁଏ। ଏହି ସୃଷ୍ଟି ବିଦ୍ୟାହିଁ କଳା। ଏହା ସୃଜନରେ ଯେପରି ପ୍ରାଚୁର୍ଯ୍ୟ ପ୍ରଜନନର ବାହାରେ ଅନ୍ୟାନ୍ୟ ସବୁ କାର୍ଯ୍ୟରେ ମଧ୍ୟ ସେହିପରି ପ୍ରାଚୁର୍ଯ୍ୟ। ସୁନ୍ଦର ସନ୍ତାନ ଉତ୍ପାଦନକୁ ମୁଁ କଳା କହୁଛି। ଏଥିରେ ହୁଏତ ଅନେକ ଏକମତ ହୋଇ ନ ପାରନ୍ତି। ତଥାପି ମୋର ମନେ ହୁଏ ସୁନ୍ଦର ପ୍ରଜନନ ହେଲେ ଜଗତ୍‌ଟା କଳାବିତ୍‌ଙ୍କୁ ଖୁବ୍‌ ଉପଭୋଗ୍ୟ ହୋଇ ପାରନ୍ତା। ସୁନ୍ଦର ସନ୍ତାନସନ୍ତତିରେ ଜଗତ୍‌ ପୂର୍ଣ୍ଣ ହେଲେ ଜଗତ୍‌ ସୌନ୍ଦର୍ଯ୍ୟର ଖଣି ହୁଅନ୍ତା। ଆଜି ଆମର ଘରଆଡ଼େ ଯେପରି ଅସୁନ୍ଦର ପୁତ୍ରକନ୍ୟା ଦେଖାଯାନ୍ତି, ଆମେ ମଧ୍ୟ ସେଥିରୁ ସହଜରେ ବାଦ୍‌ ପଡ଼ିବୁ ନାହିଁ—ସେଥିରେ ସୃଷ୍ଟିର ଆଦ୍ୟ ସୃଷ୍ଟି ପ୍ରଜନନକୁ ମୁଁ ସର୍ବଶ୍ରେଷ୍ଠ ଆର୍ଟ ବା କଳା କହିବାକୁ କଦାପି କୁଣ୍ଠିତ ହେବ ନାହିଁ। ଏଥିପାଇଁ ଯେଉଁ ନିୟମପାଳନ, ଯେଉଁ ସଂଯମ, ଯେଉଁ ସାଧନା, ଯେଉଁ ନମ୍ରତା ପ୍ରକୃତ ଦରକାର, ସେ ସବୁ ନ ହେବା ଯାଏଁ ସୁନ୍ଦର ସର୍ବାଙ୍ଗୀଣ ସୁସ୍ଥ ସନ୍ତାନ ତିଆରି ହୋଇ ପାରିବ ନାହିଁ। ସୁତରାଂ ଏହି ପ୍ରଜନନ ହିଁ ଆଦ୍ୟ ସୃଷ୍ଟି, ଆଦ୍ୟ କଳା। ଏହା ଆଦର୍ଶ ପର ସର୍ବ-ପ୍ରଥମ ଏବଂ ସର୍ବାଗ୍ରଗଣ୍ୟ ଏବଂ ଏହାକୁ ଆଶ୍ରୟ କରି ଅନ୍ୟାନ୍ୟ ସବୁ ସୃଷ୍ଟି ବା କଳା ସମ୍ଭବପର। ଅନ୍ତରରେ ସୌନ୍ଦର୍ଯ୍ୟର ଅବବୋଧ ନ ହେଲେ ବାହାରେ ସୌନ୍ଦର୍ଯ୍ୟର ପ୍ରକାଶ ଅସମ୍ଭବ।

ସେଥିପାଇଁ ଶ୍ରେଷ୍ଠ ଶିଳ୍ପୀ ସେହି ଯେ ଅନ୍ତରର ଭାବକୁ ବାହାରେ ମୁଖରେ ଶରୀରରେ ଅଙ୍ଗସଞ୍ଚାଳନରେ ପ୍ରକାଶ କରିପାରେ । ଭାରତରେ ମିଳନ—ରାଧାକୃଷ୍ଣଙ୍କର ଏହି ଅପୂର୍ବ ପ୍ରେମ--ପରିଷ୍ଟ ପ୍ରେମଧର୍ମୀର ଜଗତର ସର୍ବଶ୍ରେଷ୍ଠ ଶିଳ୍ପୀକୁ ଯେପରି ଅନୁପ୍ରାଣିତ କରିଅଛି, ସେହିପରି ନିମ୍ନତମ କ୍ଷୁଦ୍ରତମ ଶିଳ୍ପୀଙ୍କୁ ମଧ୍ୟ ଅନୁପ୍ରାଣିତ କରିଅଛି । ଏହା ବିଶ୍ୱସ୍ତାଜନକ ନୁହେଁ । ଏହି ସୌନ୍ଦର୍ଯ୍ୟାନୁଭୂତି ଏବଂ ଏହି ସୌନ୍ଦର୍ଯ୍ୟର କଳ୍ପନା ଏବଂ ପରିକଳ୍ପନା ହିଁ କଳା ।

ପୁରୁଷ କଳା ନାମରେ ସ୍ତ୍ରୀ ଏବଂ ସ୍ତ୍ରୀ କଳା ନାମରେ ସୃଷ୍ଟିର ଆଦ୍ୟରେ ପୁରୁଷର ମୂର୍ତ୍ତି ଅଙ୍କନ କରିଅଛି । ଏହି ସ୍ତ୍ରୀଜାତିର ପ୍ରମୁଖ ହେଉଛନ୍ତି ରାଧା ଏବଂ ପୁରୁଷ ଜାତିର ପ୍ରମୁଖ ହେଉଛନ୍ତି କୃଷ୍ଣ । ଏହି ରାଧା ଏବଂ କୃଷ୍ଣ, ଆଦ୍ୟ ନର ଏବଂ ନାରୀଠାରୁ ଆଜି ପର୍ଯ୍ୟନ୍ତ ଅଜସ୍ର ଧାରାରେ ଅଜସ୍ର ଭାବରେ ଅଜସ୍ର ବର୍ଣ୍ଣର କଳାର ଉଦ୍ଭବ, ବିକାଶ, ଉନ୍ନତି ହେଉଅଛି । ନୂତନ ନୂତନ କଳାର ଉଦୟ ଏବଂ ପୁରୁଣା କଳାର ବିଲୟ ହେଉଛି । ଏହା ମଧ୍ୟ ଦେଖା ଯାଉଅଛି—କିନ୍ତୁ ସୃଷ୍ଟି ଚିରକାଳ ଲାଗିଅଛି – ନୂତନରୁ ନୂତନରେ, ସୁନ୍ଦରରୁ ସୁନ୍ଦରରେ ଉପଭୋଗ୍ୟ ବସ୍ତୁ, ମୂର୍ତ୍ତି ନାରୀରଚନା ପାଇଁ ମନୁଷ୍ୟର ମନ ସଦା ପ୍ରଧାବିତ—ଗଙ୍ଗା ଏବଂ ଯମୁନୋତ୍ରିରୁ ଗଙ୍ଗା ଯମୁନା ଉଦୟ ହୋଇ ସମତଳଭୂମି ସମାନ୍ତରରୁ ବହିଚାଲି ବାହାରି ସାଗରସଙ୍ଗମିନୀ ହୋଇ ନାଚି ନାଚି ବୁଲି ବୁଲି ଯେପରି ଚାଲିଛନ୍ତି ଅନନ୍ତ କାଳକୁ, ସେହିପରି କଳା ମାନବ ସଭ୍ୟତାର ଆଦ୍ୟରୁ ଆଜି ପର୍ଯ୍ୟନ୍ତ ଚାଲିଛି ଅବିଶ୍ରାନ୍ତ ଭାବରେ । ତାହା ସ୍ଥଗିତ ହୋଇ ନାହିଁ, ହେବ ନାହିଁ—ଏହା ହେବାର ନୁହେଁ—ଏହା ନିତ୍ୟ, ଶାଶ୍ୱତ । ବାହାରର ବହିରାବରଣ ନାନାରୂପରେ ପରିବର୍ତ୍ତିତ ହୋଇପାରେ; କିନ୍ତୁ ଅନ୍ତରର ସେହି ସୌନ୍ଦର୍ଯ୍ୟପିପାସା, ସେହି ବହିଃପ୍ରକାଶର ଚେଷ୍ଟା ହିଁ କଳାର ନିତ୍ୟ ଅଭିବ୍ୟକ୍ତି ।

କଳା କହିଲେ ଅନ୍ତରର ଉଚ୍ଚତର ଭାବର ପରିସ୍ଫୁଟନ । ଉଚ୍ଚତର ଜୀବନର ଉପଲବ୍ଧି; ଉଚ୍ଚତର, ମହତ୍ତର, ବୃହତ୍ତରର ରସାସ୍ୱାଦନ ବୁଝାଏ । ଏହି କଳା ପାଇଁ ନାରୀର ପ୍ରସାଧନ, ନରର ସୋଢ଼ବେଶ ଧାରଣ । ଏହି କଳା ପାଇଁ ସାହିତ୍ୟ ସୃଷ୍ଟି, କବିର ଉଦ୍ଭବ, ନର୍ତ୍ତକର ଓ ନର୍ତ୍ତକୀର ମୃଦୁଳ ଏବଂ ଉଦ୍ଦାମ ତରଙ୍ଗାୟିତ ନୃତ୍ୟ—ସେଥିପାଇଁ ଭାବ୍ୟ ବୀଣାର ଝଙ୍କାର, ମୃଦଙ୍ଗର ଗମ୍ଭୀର ନାଦ, ଡମ୍ବରୁର ଡବ ଡବ, ବଂଶୀର ସୁସ୍ୱର-ଲହରୀ ମଧୁର ନିସ୍ୱନ ।

ଆକାଶର ଶନିମାନେ—ଜ୍ୟୋତ୍ସ୍ନା-ପୁଲକିତ ରଜନୀରେ, ଦୂର ନୀଳ ନକ୍ଷତ୍ରର ସ୍ୱହାଣିରେ କବିର ମନରେ ଯେଉଁ ପୁଲକ ଜାଗେ--ତାହା ହିଁ ତାହାକୁ ବାଣୀର ମୂର୍ଚ୍ଛନାଦ୍ୱାରା ଜଗତକୁ ଦେଖାଇଦିଏ—କହେ ଯେ, 'ଅମୃତସ୍ୟ ପୁତ୍ରା ଉପଭୋଗ କର, ଉପଭୋଗ କର ।' ସର୍ବଭୋଗ୍ୟା ବସୁନ୍ଧରା – ସୁନ୍ଦର ପାଇଁ ଏହି ସଂସାର—ରତିପତି ମଦନ ପାଇଁ କେବଳ ସୁନ୍ଦରୀଶ୍ରେଷ୍ଠୀ ରତି—ନଗରାଜ କନ୍ୟା ପାର୍ବତୀ ପାଇଁ ଦେବାଦିଦେବ ମହାଦେବ —ହିମ ଅଚଳର ନଗକନ୍ୟା ପାର୍ବତୀର

ତପସ୍ୟା ଅନ୍ତର୍ଣ୍ଣାରେ ପୃଷ୍ଠ ହୋଇଥିଲ । ସୁତରାଂ ମହାଧିମ ଲୋଚନ ସ୍ୱସ୍ତଶଂ ସ୍ୱୟଂ ମହାଦେବଙ୍କର ମୋଡ଼ ଲାଭ କରି ପାରିଥିଲେ । କଳାର ଉପଲବ୍ଧି, ହୃଦୟଙ୍ଗମତା ଏବଂ କଳାର ପ୍ରକାଶ ପରସ୍ପର ଯୁକ୍ତ—ଏଥିପାଇଁ ତପସ୍ୟା-ପୂତ ହେବାକୁ ହେବ ।

ଭଗବାନ ଲଳିତ ବାଙ୍ମୟ ରଚନା ଦ୍ୱାରା, ସ୍ୱର ତାହାର ସିଦ୍ଧହସ୍ତ ଧୃତ କଦାଣଦ୍ୱାରା, ଚିତ୍ରକର ତାହାର ଅପାର କୌଶଳ ଧୃତ ତୂଳିକା ଦ୍ୱାରା ଅନ୍ତରର ତନ୍ମୟତାକୁ ବହିଃପ୍ରକାଶ କରିପାରେ—ତାହା ହିଁ କଳା ।

କଳା ଉଚ୍ଚତର ମହତ୍ତର ଭାବକୁ ପ୍ରକାଶ କରେ । ନିତ୍ୟ ନୈମିତ୍ତିକ ସଂସାରର ଜ୍ୱାଳା ଭିତର ଦେଇ ଜ୍ୱାଳାମୁଖୀର ସୌନ୍ଦର୍ଯ୍ୟ ସୃଷ୍ଟି କରେ କଳା—ପ୍ରଶାନ୍ତ ମହାସାଗର ଲୁକ୍କାୟିତ ମୁକ୍ତାବଳୀର ଆହରଣ କରି ପ୍ରିୟାକଣ୍ଠରେ ଯେ ଅପୂର୍ବ ଭଙ୍ଗୀରେ ସମସ୍ତ ହୃଦୟ ଦେଇ ମାଲ୍ୟ ରଚନା କରେ, ସେ ଶିଳ୍ପୀ—ତାହାର ଶିଳ୍ପ କଳା ନାମଯୋଗ୍ୟ ।

ଶିଳ୍ପୀ ଲୋଡ଼ୁଥାଏ ଅବସର, ଶିଳ୍ପୀ ଦେଖୁଥାଏ ସେହି ସମୟ ଯେଉଁ ସମୟରେ ସନ୍ଧ୍ୟାତାରା ଉଦିତ ହୁଏ, ଯେଉଁ ସମୟରେ ଚୋଧୂଳିର ଘନୀଭୂତ ନକ୍ଷତ୍ର ମଣ୍ଡଳ ସୁନ୍ଦର ହସେ—ଯେଉଁ ସମୟରେ ପ୍ରଭାତୀ ଗଗନରେ ଅସ୍ତାୟମାନ ସୂର୍ଯ୍ୟର ରୈଖିକ ଭାବ ଅନ୍ତରରେ ସନ୍ନ୍ୟାସୀର ଭାବ ଜାଗ୍ରତ କରେ—କବି, ଚିତ୍ରକର, ଗାୟକ ଏମାନେ ସମସ୍ତେ ସେହି ଅନ୍ତର୍ନିହିତ ପରମ ଉପଲବ୍ଧିର ବସ୍ତୁକୁ ଜଗତ ପାଇଁ ନିଜ ନିଜ ତନ୍ମୟତାରେ ପ୍ରକାଶ କରିବାକୁ ରଚନା କରନ୍ତି—ଏହା ହିଁ ଶିଳ୍ପସାଧନା । ଏହାହିଁ କଳା ପ୍ରସାଧନ ।

କଳାର ପ୍ରଧାନ ଉପକରଣ ହେଉଛି ସହାନୁଭୂତି । କଣ୍ଟିକ୍ କାଲ୍ପା ଭରତବୃନ୍ଦଶା ସ୍ୱାଧିକାର ପ୍ରମତ୍ତଃ ଯକ୍ଷର ବ୍ଲେଶକୁ କାଳିଦାସ ବକ୍ଷରେ ଧାରଣ କରି ପାରିଥିଲେ ବୋଲି ଏପରି ଅନବଦ୍ୟ ପୂର୍ବ ମେଘ ଏବଂ ଉତ୍ତର ମେଘର ସୃଷ୍ଟି ହୋଇଅଛି — କଳାରେ moral immoral କିଛି ନାହିଁ—ଉଲଙ୍ଗ ଯୋଗୀର ମୂର୍ତ୍ତି ପୁଣି ଉଲଙ୍ଗିନୀ ଭରତ୍ୱଣୀ ବା ପ୍ରକ୍ଷୁଟପାଳଣ୍ଡା ସ୍ୱାଭାବିକା ନଗ୍ନ ବାଳିକା ବା ରମଣୀ ମୂର୍ତ୍ତିରେ ପାପ ପୁଣ୍ୟର ବିଷୟର ବିଚାରର ଅବସର ନାହିଁ —ସେଠାରେ ଶିଳ୍ପ ବା କୁଶଳତା, ଶିଳ୍ପୀର ତନ୍ମୟତା, ଅନ୍ତସନ୍ଧି ଲକ୍ଷ୍ୟ କରିବାର କଥା । ପ୍ରେମିକପ୍ରେମିକା ହରପାର୍ବତୀ ପରି କମ୍ବା ଅର୍ଦ୍ଧନାରୀଶ୍ୱରର ପରି କମ୍ବା ବିବସ ଓ ରଜନୀର ମିଳନସନ୍ଧି ସନ୍ଧ୍ୟା ପରି ଯେଉଁ ଶଙ୍ଖଳ ମୂର୍ତ୍ତି ଶିଳ୍ପୀ ପ୍ରକାଶ କରେ, ସେଥିରେ ସେ ତନ୍ମୟ ହୋଇଯାଏ । ସେହି ତନ୍ମୟତାର ବିକାଶ ହିଁ ଶିଳ୍ପ ବା କଳା । ଏହି କଳା ଶବ୍ଦ ରୂପରସଗନ୍ଧରେ ଭିନ୍ନ ଭିନ୍ନ ଭାବରେ ପ୍ରକାଶିତ ହୁଏ । ରୂପ ଦିଏ କାରିଗର, ଶିଳ୍ପୀ, ଚିତ୍ରକର ଭାସ୍କର ଇତ୍ୟାଦି । ଶବ୍ଦ ଓ ଭାବଙ୍କୁ ଦିଏ କବି, ଗାୟକ, ଗାୟିକା, ନର୍ତ୍ତକ ଓ ନର୍ତ୍ତକୀ । ରସ ଏବଂ ଗନ୍ଧ ଅନ୍ତଃସଲିଳ ଫଲ୍‌ଗୁ ପରି ଏହି ପ୍ରତ୍ୟେକ ଶିଳ୍ପୀ ଭିତରେ ଏବଂ ଉପଭୋଗୀ ଜନସାଧାରଣ ମଧ୍ୟରେ ଥାଏ । ତାହା ଶବ୍ଦ ଏବଂ ରୂପକୁ ଅନୁପ୍ରାଣିତ କରିଥାଏ । ସୁତରାଂ ସହାନୁଭୂତିରେ ତାହା ଉଜ୍ଜ୍ୱଳତରେ ।

ବାସ୍ତବିକ ମାନବର ମନ ପ୍ରତି ଅଯାଚିତ ଅପରିଚିତ ବନ୍ଧୁର ହୃଦୟ ଯେତେବେଳେ ନରର ସଂଗମ ଅପରିଚିତ ପ୍ରେମଧାର ସହିତ ମିଳିତ ହୁଏ, ସେତେବେଳେ ସେହି ଯୁଗଳମୂର୍ତ୍ତି ଅପୂର୍ବ ଶିଳ୍ପର, କଳାର ସୃଷ୍ଟି କରେ । ରାଧାକୃଷ୍ଣ ମୂର୍ତ୍ତି ଏହି କଳାର ଶୀର୍ଷ, ଚରମ ସ୍ଥାନ । ଏହାକୁ ଅନ୍ତରରେ ଉପଲବ୍ଧି କରି, ଏହାର ରସାସ୍ୱାଦନ କରି କବି ଶିଳ୍ପୀ ଗାୟକ ପୁଲକରେ ଯାହା ପ୍ରକାଶ କରେ ଭାଷା ସାହାଯ୍ୟରେ, ନିର୍ମାଣ ବା ନୃତ୍ୟକଳା ସାହାଯ୍ୟରେ, ତାହା ହିଁ କଳା । ନିପୁଣତାହିଁ କଳା, ଚତୁରତା ହିଁ କଳା, ସୂକ୍ଷ୍ମ ସହାନୁଭୂତି ହିଁ କଳା ନାମ-ଯୋଗ୍ୟ । ମାନବର ଅନ୍ତରାତ୍ମା ଚିରକାଳ ସେହି କଳାରେ ହିଁ ନବନବ ଜ୍ୱାଳା ଜଞ୍ଜାଳ ଭୁଲିଯାଏ—ପ୍ରକୃତି ପ୍ରାତଃ ସନ୍ଧ୍ୟାରେ ଏହି କଳାଚର୍ଚ୍ଚା ତାହାର ନବନବ ରଙ୍ଗରେ, ଗ୍ରହ ନକ୍ଷତ୍ରରେ, ତାହାର ଅଦୃଶ୍ୟ ବିଦଗ୍ଧ-କୁଶଳତା ପ୍ରକାଶ କରୁଅଛି—ତାହାର ଋତୁ ପରିବର୍ତ୍ତନ ଦ୍ୱାରା ନବ ନବ ରୂପ ଦେଖାଇ ଶିଳ୍ପୀକୁ କାରିଗରକୁ ଉତ୍ତେଜିତ କରୁଅଛି—ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ କହୁଅଛି ।

ସେହି ନେଇ କହୁଛନ୍ତି ଜୀବନହିଁ କଳା ଅଥବା କଳାହିଁ ଜୀବନ (Art is life) । ବାସ୍ତବିକ ଶ୍ରେଷ୍ଠ ଜୀବନୋପଲବ୍ଧିରେ ଶ୍ରେଷ୍ଠ କଳା ବିକଶିତ ହୁଏ । ପ୍ରାଚୀନ ଭାରତର ଯୋଗୀ ଋଷି କିମ୍ବା ବର୍ତ୍ତମାନ ଜଗତର ଚିନ୍ତାଶୀଳ ମନସ୍ୱୀ ବୈଜ୍ଞାନିକ ସାଧୁ ପ୍ରେମିକମାନେ ହିଁ ଜଗତରେ ଜୀବନ ଯାପନ କରୁଅଛନ୍ତି । ସୁତରାଂ ସେହିମାନେ ହିଁ କଳାକୁ ଅଧିକ ଉପଭୋଗ କରୁଅଛନ୍ତି—ଅନ୍ୟମାନେ ଅଳ୍ପ ସ୍ତରର ଲୋକ ସେହି କଳାକୁ ଅବଲମ୍ବନ କରି ଜୀବନର କଠୋର କଠିନ କର୍କଶ ପଥରେ ଟିକିଏ ସୁଖରେ ଆରାମରେ ବିଚରଣ କରି ପାରୁଅଛନ୍ତି । କଳାର ମୂଲ୍ୟ ଏହିଠାରେ । ନୋହିଲେ ନିତ୍ୟ ପ୍ରାତ୍ୟହିକ ଜୀବନରେ ସାଧାରଣ ପକ୍ଷରେ କଳାର ଆବଶ୍ୟକତା କଣ ? କଳା ବାସ୍ତବିକ ସେଥିପାଇଁ useless ଅର୍ଥାତ୍ ଏହା ରୁଟିପିଠା ଖିଆ ପରି useful ନୁହେଁ—ଏହାର କମନୀୟତା, ମାର୍ଦ୍ଦବ, ସୂକ୍ଷ୍ମତା ଏହାକୁ ଗୌରୀଶଙ୍କର ଶୃଙ୍ଗର ଗୌରୀଶଙ୍କର କରି ରଖିଅଛି—ତାକୁ ପାଇବାକୁ ହେଲେ ଦୁସ୍ତର ପଥ, ଗଭୀର ଅରଣ୍ୟ ଏବଂ ବନ୍ଧୁର ଗିରିମାଳା ଅନ୍ୱେଷଣ କରିବାକୁ ହେବ । ତୁମେ ଆମେ କଳା ସୃଷ୍ଟି କରିପାରୁଁ କିନ୍ତୁ ତାହା ଗୌରୀଶଙ୍କର ବା କେଦାରନାଥ ହେବ ନାହିଁ । ଏଥିପାଇଁ ଟଲଷ୍ଟୟ, ଉପେନ୍ଦ୍ରଭଞ୍ଜ, ତାନସେନ, ମାଧବୀ କିମ୍ବା ଚୈତନ୍ୟ, ନାନକ, ଯୀଶୁ ପ୍ରଭୃତି ମନସ୍ୱୀ ଓ ବୀର ଆବଶ୍ୟକ । କଳା ଜୀବନରେ ଉଚ୍ଚ ସ୍ଥାନ ଅଧିକାର କରେ । କଳାର ସ୍ଥାନ ନିମ୍ନରେ ନୁହେଁ । ଯାହାହେଉ ପଣ୍ଡିତ ଯେଉଁମାନେ ଏହି କଳାର ସେବକ, ସେମାନେ ନିଜ ନିଜ ସ୍ତରରୁ ଉପରକୁ ଉଠିବା ପାଇଁ ଚେଷ୍ଟା କରନ୍ତୁ । ଏହାହିଁ ଆନନ୍ଦର କଥା । ଯେଉଁଠାରେ ଏହି ଚେଷ୍ଟା ନିମ୍ନମୁଖିନ ହୁଏ, ସେହିଠାରେ କଳାର ଭ୍ରଷ୍ଟତା ଜନ୍ମେ । ଅନ୍ତରରେ ମାନବ ମନରେ ସୌନ୍ଦର୍ଯ୍ୟ ଅବବୋଧର ଯେଉଁ ସ୍ପୃହା ଏବଂ ବୃତ୍ତି ଅଛି, ତାହାର ବିକାଶ ଏବଂ ଉଦ୍ଦୀପନ ହିଁ କଳା । କଳା ମାନବ-ଜୀବନକୁ ସୁନ୍ଦର କରିବାକୁ ଚେଷ୍ଟା କରେ । ଭିନ୍ନ ଭିନ୍ନ ଜାତି ଭିନ୍ନ ଭିନ୍ନ ବାଟରେ

ସେହି ସୌନ୍ଦର୍ଯ୍ୟ ଫୁଟାଇବାର ଚେଷ୍ଟା କରିଛନ୍ତି । ଗ୍ରୀସର କଳା ଐଶ୍ୱର୍ଯ୍ୟରେ, ପୁଣି ଉତ୍କଳର କଳା ସେହି ଐଶ୍ୱର୍ଯ୍ୟରେ । ଜଗତରେ ଏହି ଦୁଇ ଜାତି ଐଶ୍ୱର୍ଯ୍ୟରେ ଅତୁଳନୀୟ । ଉତ୍କଳ ଐଶ୍ୱର୍ଯ୍ୟର ଶ୍ରେଷ୍ଠ ନିଦର୍ଶନ ଭୁବନେଶ୍ୱର, କୋଣାର୍କ ଆଦି ସୁଠାମ ମନ୍ଦିର । ସେଥିରେ ଶିଳ୍ପୀର ଶିଳ୍ପବୃତ୍ତିଗୁଣର ଅବସର ନାହିଁ—ପ୍ରତ୍ୟେକ ପ୍ରସ୍ତର ଖଣ୍ଡରେ ଶିଳ୍ପର ଐଶ୍ୱର୍ଯ୍ୟ ବିକଶିତ ହୋଇଅଛି—ଶିଳ୍ପୀ ପ୍ରକୃତିକୁ ସତ୍ୟ ସ୍ୱରୂପ ଅବଲମ୍ବନ କରି ସତ୍ୟସ୍ୱରୂପ ସେଠାରେ ବିକଶିତ କରିଛି । ସୁତରାଂ ଭୁବନେଶ୍ୱରର ମନ୍ଦିରରେ ଯାହା ସବୁ ଅଶ୍ଳୀଳତା, ଅନୁପାଦେୟତା ବୋଲି ସାଧାରଣ ନୈତିକ ପୁରୁଷ ଚକ୍ଷୁରେ ଦୃଷ୍ଟିଗୋଚର ହୁଏ, ସେହି ସବୁ ଅଶ୍ଳୀଳତା, ଅନୁପାଦେୟତା ନୁହେଁ । ଶିଳ୍ପୀ ସଂସାରର ସମସ୍ତ ଚିତ୍ର ଯଥାଯଥ ଭାବରେ ସେଠାରେ ଥୋଇଛି । ଯତି, ବ୍ୟାଧିଗ୍ରସ୍ତ, ସନ୍ନ୍ୟାସୀ, ନାଗରିକ, ଯୋଦ୍ଧା, ଋତୁ, ଅପ୍ସରା, କର୍ଦ୍ଦମ, ଅରଣ୍ୟ, ମୃଗ, ସିଂହ, ପକ୍ଷୀ, ଦେବତା, କିନ୍ନର ଆଦି ସମସ୍ତ ପଦାର୍ଥ ସେଠାରେ ରହିଅଛି । ସତ୍ୟର ପ୍ରକାଶ ଏହାଠାରୁ ବଳି ଆଉ କଣ ହୋଇପାରେ ? ପ୍ରକୃତିର ବାସ୍ତବ ଚିତ୍ର ସେଠାରେ ଅଛି, ଅଥଚ ଶିଳ୍ପୀର କଳ୍ପନାର ସୌନ୍ଦର୍ଯ୍ୟ ସେଥି ସଙ୍ଗରେ ସମ୍ମିଶ୍ରିତ ହୋଇଅଛି । ପ୍ରକୃତ ସଙ୍ଗରେ ଏପରି ମନୋଜ୍ଞ ସାମାଜିକତା ଏବଂ ଆତ୍ମୀୟତା ଅନ୍ୟତ୍ର ଦୃଷ୍ଟିଗୋଚର ହୋଇନାହିଁ । ଗ୍ରୀସର ଐଶ୍ୱର୍ଯ୍ୟରେ ପ୍ରକୃତିକୁ ଆଂଶିକ ଭାବରେ ପ୍ରକାଶିତ କରା ହୋଇଅଛି, କିନ୍ତୁ ଉତ୍କଳର ଐଶ୍ୱର୍ଯ୍ୟରେ ସମଗ୍ର ପ୍ରକୃତି ସତ୍ୟଭାବରେ ବିକଶିତ ହୋଇଅଛି ପୁଣି ସେଥିରେ ଶିଳ୍ପୀର କଳ୍ପନା ମିଶ୍ରିତ ହୋଇଅଛି । ବାସ୍ତବିକ ଶିଳ୍ପୀ ସ୍ୱତଃ କୁସୁମିତ କଳ୍ପନାକୁ ଆହୁରି ସୁନ୍ଦର କରି ଫୁଟାଇବାପାଇଁ—to paint the lily, to gild the gold । ଉତ୍କଳର ଏହି ଅଳଙ୍କାର ପ୍ରାଚୁର୍ଯ୍ୟ ତାହାର ଐଶ୍ୱର୍ଯ୍ୟ କଳାରେ, ତାହାର ସାହିତ୍ୟ କଳାରେ, ତାହାର ସଂସାରର ସକଳ ବିଭାଗରେ ପରିଲକ୍ଷିତ ହୁଏ । ଉତ୍କଳ ସାହିତ୍ୟରେ ଅଳଙ୍କାରର ପ୍ରାଚୁର୍ଯ୍ୟ ଏଥିପାଇଁ, ଶିଳ୍ପର କଳ୍ପନାର ଶେଷ ନାହିଁ, ଅବସର ନାହିଁ—ପୁଣି ଦୈନିକ ବ୍ୟାବହାରିକ ଅଳଂକାରରେ ମଧ୍ୟ ଏହି ଉତ୍କଳ ପ୍ରସିଦ୍ଧ । ଏଥିପାଇଁ କଟକର ତାରକସି କାମ ଜଗତ୍ପ୍ରସିଦ୍ଧ ଥିଲା—ଏଥିପାଇଁ ଏହାର ମାଳୀ ନାନା ଭଙ୍ଗୀରେ ମାଳ ରଚନା କରେ । ଜଗନ୍ନାଥଙ୍କର ନାନା ବେଶ ପୁଷ୍ପସମ୍ଭାର ଦ୍ୱାରା ଭିନ୍ନ ଭିନ୍ନ ଭାବରେ ପ୍ରସ୍ତୁତ କରା ହୋଇଥାଏ ।

ବାଲ୍ମୀକି ମୁନି ନିଷାଦର ଶର-ନିକ୍ଷେପରେ କ୍ରୌଞ୍ଚର ବ୍ୟଥା ଦେଖି ଯେଉଁ ଶ୍ଳୋକ ରଚନା କରିଥିଲେ, ତାହା ସ୍ୱତଃ ଅନୁଷ୍ଟୁପ୍ ଛନ୍ଦରେ ବାହାରି ପଡ଼ିଥିଲା—ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀ ସମାଃ ଇତ୍ୟାଦି । ଏହି ଚିତ୍ତ ଅନୁଭୂତ ଓ ସହାନୁଭୂତି ହିଁ ବାଲ୍ମୀକିଙ୍କୁ ରାମାୟଣ ରଚନାରେ ସାହାଯ୍ୟ କରିଥିଲା—ଯୀଶୁଙ୍କର ମହତ୍ ଜୀବନ ହିଁ ମହତ୍ ଅଥଚ ସରଳ ଭାଷା ଦ୍ୱାରା ଜଗତକୁ ବାଇବଲ ଦାନ କରି ପାରିଅଛି । ମହମ୍ମଦଙ୍କର ନମ୍ରୀକ ନିର୍ଭୀକ ଜୀବନହିଁ ଜଗତକୁ କୋରାଣ ଦେଇ ଯାଇ-ଅଛି—ବୁଦ୍ଧଙ୍କର ଜୀବନ ହିଁ ପାଲିରେ ତ୍ରିପିଟକ ରୂପେ ଆଜି ବିଦ୍ୟମାନ ।

ଅର୍ଜ୍ଜୁନଙ୍କୁ ଶ୍ରୀକୃଷ୍ଣଙ୍କର ଗୀତା ଉପଦେଶ ଅନୁରୂପ କଳା । ଏହା ଚିରକାଳ ଅମର ଧର୍ମ । କାଳିଦାସ ଶକୁନ୍ତଳା ପ୍ରତି ଧର୍ମବୁଦ୍ଧି ଦେଖାଇ ଅପୂର୍ବ ଶକୁନ୍ତଳା ନାଟକର ରଚନା କରି ପାରିଥିଲେ, ତଥା ସେକ୍ସପିଅର, ହୋମର ଇତ୍ୟାଦି । ଜୀବନ ହିଁ କଳା—Art is life । ଏଠାରେ Art ପୁଣି Artless, ସ୍ୱଭାବଜାତ, ନୈସର୍ଗିକସୁନ୍ଦର ।

ଜଗତରେ କଳାର ଗତି ଆଜି ବିଜ୍ଞାନ ଆଡ଼କୁ ବେଶି ଝୁଙ୍କିଅଛି—ଏଠାରେ ଶିଳ୍ପକଳାର ପରିଚୟ ମିଳୁଛି ସତ କିନ୍ତୁ ସ୍ୱାଭାବିକ ମାନବ ହସ୍ତରଚିତ ଶିଳ୍ପର ଅଭାବ ଘଟୁଛି । ସେଥିପାଇଁ ଯନ୍ତ୍ର ଆରମ୍ଭ ହେବାଠାରୁ ହସ୍ତଶିଳ୍ପର ଅନ୍ତ ହୋଇଅଛି—କିନ୍ତୁ ଏହା ଧ୍ରୁବସତ୍ୟ ସବୁବେଳେ ସ୍ୱାଭାବିକ ସେ ହସ୍ତନୈପୁଣ୍ୟ ହସ୍ତପାଟବ ଦେଖାଇ ଯେଉଁ ଅପୂର୍ବ ଶିଳ୍ପକଳା ସୃଷ୍ଟି ରଚନା କରୁ ପାରୁଥିଲେ, ତାହା କଦାପି ଯାନ୍ତ୍ରିକ ସାଧ୍ୟ ହୋଇ ନ ପାରେ । ସେ ଯୁଗର କୋଣାର୍କ ଶିଳ୍ପ ଅର୍କ ହସ୍ତନିର୍ମିତ ନମୁନା ଦରକାର । ସୌନ୍ଦର୍ଯ୍ୟବୋଧ ହିଁ କଳାର ସାହାଯ୍ୟ କରେ । ସାଧାରଣ ସୁନ୍ଦର ଘରର, କୁଠୀଘରରେ ଯଦି iron bar ଥାଏ ତାହା ଯେପରି ଅସୁନ୍ଦର ଦିଶେ, ସେହିପରି ସରଳ ନିରାଡମ୍ବର ଜୀବନ ଧାରାର ମଧ୍ୟରେ ବର୍ତ୍ତମାନ ଜଗତର କୃତ୍ରିମ ଜୀବନ ଆଡ଼ମ୍ବର ଅସୁନ୍ଦର ଦିଶେ ।

ଆଜି କଳାର ଗତି କିନ୍ତୁ ଏହି ଦିଶା ଟାଣର ସ୍ରୋତରେ ପଡ଼ି ଓଲଟ ପାଲଟ ଖାଉଅଛି । ତାହାକୁ ଉଦ୍ଧାର କରିବାକୁ ହେଲେ ସରଳ ଜୀବନରେ ସରଳ ଉପଭୋଗ ଅର୍ଥାତ୍ plain living ଏବଂ high thinking ର ପ୍ରୟୋଜନ । ବିଜ୍ଞାନ ଆମର ଦାସ ହେବ —ବିଜ୍ଞାନ ଆମର ପ୍ରଭୁ ହେବ ନାହିଁ । ଯେଉଁମାନେ ଅନ୍ଧ ବିଜ୍ଞାନକୁ ପ୍ରଭୁର ଆସନରେ ବସାଇଛନ୍ତି, ସେମାନେ କଳାଠାରୁ ଦୂରକୁ ଚାଲି ଯାଉଅଛନ୍ତି । କୃତ୍ରିମତା, ବିଳାସ, ବ୍ୟସନ ଭିତରେ ମନୁଷ୍ୟ ଯେତେ ପଶିବ ସେ ସେତେ କଳାକୁ ହରାଇବସିବ ।

କଳାର ଶାନ୍ତ ସୁମଧୁର ସୁଶୀତଳ ଛାୟାତଳେ ଉପବେଶନ କରିବାକୁ ହେଲେ, ବଟବୃକ୍ଷର ସ୍ନିଗ୍ଧ ଛାୟା ଉପଭୋଗ କରିବାକୁ ହେଲେ ମଶାରିର ବ୍ୟବହାର କରିବାକୁ ହେବ ନାହିଁ—ଆକାଶର ମନୋରମ ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ମୁକ୍ତ ଗଗନ ତଳେ ପ୍ରକୃତିର ଅନାବୃତ କୋଳରେ ଅଳସ ଶୟନ କରିବାକୁ ହେବ—ସ୍ୱଚ୍ଛନ୍ଦରେ ଶୀତଳ ହେବାକୁ ହେବ, ନିର୍ମଳ ଚନ୍ଦ୍ରିକାରେ ଉଦ୍ଭାସିତ ହେବାକୁ ହେବ । କଳା ଜୀବନକୁ ସତ୍ୟ ଆଡ଼କୁ, ସରଳତା ଆଡ଼କୁ, ମଧୁରତା, ସୁନ୍ଦରତା ଆଡ଼କୁ ନେଇଯାଏ । ଯେପରି ଅପବିତ୍ର ଅସ୍ୱଚ୍ଛ ଜୀବନ ସୁନ୍ଦର ନୁହେଁ, ସେହିପରି କଳାରେ ଜଡ଼ତା, ଅନ୍ୟମନସ୍କତା ଆସି ପଡ଼ିଲେ କଳା କଳଙ୍କିତ ହୁଏ । କଳାକୁ ବୁଝିବାକୁ ହେଲେ ଖୁବ ମହାନୁଭବତାର ଆବଶ୍ୟକ । କଳା ରଚନା କରିବାକୁ ହେଲେ ନିଜସ୍ୱ କଳ୍ପନା, ସତ୍ୟର ସଚ୍ଚୋଟତାର ପ୍ରୟୋଜନ । କଳାବିତ୍ ପ୍ରକୃତିକୁ ସତ୍ୟ ରୂପରେ ଅବଲମ୍ବନ କରି ତାହାର ବସ୍ତୁ ଓ ଭାବସମ୍ପଦର ଆଚରଣ କରି ଏବଂ

ସତ୍ୟ ନୂତନ ନୂତନ ସ୍ୱପ୍ନ ପ୍ରତ୍ୟକ୍ଷିତ କରି ସବୁ ନୂତନ ନୂତନ କଳାର ସୃଷ୍ଟି କରେ ।

କଳାର ବଡ଼ କଥା harmony । ଯେଉଁଠାରେ ହାର୍‌ମୋନି ବା ସମାନତା ରକ୍ଷା ହୋଇନାହିଁ ସେଠାରେ ସୌନ୍ଦର୍ଯ୍ୟ ଆସିପାରେ ନା । ଗାୟକ ସଙ୍ଗୀତର ହାରମୋନି ରକ୍ଷା କଲେ ଗାନ ସୁନ୍ଦର ହୁଏ । ପ୍ରକୃତିର ରଜଃ ଏବଂ ତମଃ ମଧ୍ୟରେ ଏହି ହାର୍‌ମୋନି ହିଁ ସତ୍ତ୍ୱ ରୂପରେ ନିହିତ । ଏହି ହାର୍‌ମୋନି ଯୋଗୀ ଋଷିମାନେ, ମନସ୍ୱୀ ଧୀମାନ୍‌ମାନେ ଜୀବନରେ ଅନୁଭବ କରିବା ଲାଗି ସତତ ପ୍ରଚେଷ୍ଟିତ । Music of the spheres ରେ ଏହି ହାର୍‌ମୋନି ଅଛି । ସୁତରାଂ ଏହା ଶିବ ଉପଭୋଗ୍ୟ । ହିମାଳୟରେ ଦେବାବତରଣରେ ଏହି ହାର୍‌ମୋନି ଅଛି । ସୁତରାଂ ଏହା ଶ୍ରେଷ୍ଠ ସୁନ୍ଦର ଏବଂ ଉପଭୋଗ୍ୟ । ମାନବ ଜୀବନରେ ଏହି ହାର୍‌ମୋନି, ଐକ୍ୟ, ସମତା ରକ୍ଷା କରିବା ହିଁ ଆଦର୍ଶ ଗାର୍ହସ୍ଥ୍ୟ ଜୀବନ ଏବଂ ମଙ୍ଗଳ-ଆଶ୍ରମ-ଶ୍ରେଷ୍ଠ ଜୀବନ । ଏହା ହିଁ ଶ୍ରେଷ୍ଠ କଳା !

କଳାକାରର ସମୀକ୍ଷଣାତ୍ମକ ଦୃଷ୍ଟି ଥିବା ଦରକାର । ସାହିତ୍ୟରେ ଯେପରି ଅନ୍ୟାନ୍ୟ ସକଳ କ୍ଷେତ୍ରରେ ସେହିପରି ଏହି ସମୀକ୍ଷଣାତ୍ମକ ଦୃଷ୍ଟି ଅତୀବ ପ୍ରଶଂସନୀୟ । ଯେଉଁମାନେ ବାହ୍ୟ ପ୍ରଦର୍ଶନରେ ବ୍ୟସ୍ତ, ସେମାନେ ଏ କଥା ଜାଣନ୍ତୁ ଯେ ରସ ସଂଚାର କରିବାକୁ ହେଲେ ହୃଦୟର ହୃଦ୍‌ବୋଧକୁ ସଂସାର ବସ୍ତୁକତାରେ ନଷ୍ଟ ନ କରି ଉପଯୁକ୍ତ ସ୍ଥାନରେ ଅନୁସନ୍ଧାନ କରି ଉପଯୁକ୍ତ ଶବ୍ଦ-ଯୋଜନା କରି ଲଳିତ ଲେଖକର ସ୍ଥାନ ଆହରଣ କରିବାକୁ ହୁଏ । ଅସିତାଭ ଜଟାଜାଳ ଆବୃତ୍ତ ଭାସ୍ମନ ଭାସ୍ୱ ସନ୍ନ୍ୟାସୀର ବାହାର ଦେଖିଲେ କେବଳ ହେବ ନାହିଁ, ତାର ଅନ୍ତର ମଧ୍ୟ ଦେଖିବାକୁ ହେବ । ତାହାହେଲେ ପ୍ରକୃତ ସତ୍ୟର ଉନ୍ମୋଚନ ହେବ । ଏହି ସତ୍ୟ ଉନ୍ମୋଚନ କରିବା ହିଁ କଳାର ଉଦ୍ଦେଶ୍ୟ । ସିନ୍ଧୁବକ୍ଷରେ ଶ୍ୱାସ ତରଙ୍ଗ ସଂଘାତରେ ଆହତ ହେବା ନୁହେଁ— ସେଥିରେ ଆନନ୍ଦରେ ଉଚ୍ଛ୍ୱଳତାର ମଣ୍ଡିତ ସ୍ତବମାନ ସନ୍ତରଣଶୀଳ ହେଲେ ଯାଇ ସନ୍ତରଣ କଳାକୁଶଳ ହୋଇ ପାରିବ । ସେହିପରି ସଂସାର ସମ୍ପ୍ରସ୍ୱରକୁ ଉଦ୍ଧୃତ କରି କେବଳ ଝଙ୍କାର କଲେ ଅନ୍ତରର ମଳାମୂର ପଟରେ ଲାବଣ୍ୟର ଦାମିନୀ ଝଲକିବ ନାହିଁ-- ସାଗରତାର ସାର୍ଥକତା କରିବାକୁ ହେଲେ, ଉଦ୍ଦାମତାର ଉନ୍ମାଦ ପରିଚୟ ଦେବାକୁ ହେଲେ ବୃଷ୍ଟିସୃଷ୍ଟି ହାରମୋନି ସୃଷ୍ଟି କରିବାକୁ ହେବ । କିଂ ବହୁନା ? ହାରମୋନି ବ୍ୟତିରେକେ କଳାର ମୂଲ୍ୟ ନାହିଁ ।

ଯେଉଁମାନେ ବଦନ୍ତି ସୌନ୍ଦର୍ଯ୍ୟ ସହିତ ସତ୍ୟର କୌଣସି ସମ୍ବନ୍ଧ ନାହିଁ, ସେମାନେ ଭୁଲ ବୁଝନ୍ତି — ସତ୍ୟ ବ୍ୟତିରେକେ ସୌନ୍ଦର୍ଯ୍ୟବୋଧ ଅସମ୍ଭବ । ସୌନ୍ଦର୍ଯ୍ୟ ସତ୍ୟକୁ ଆଶ୍ରୟ କରି ରହିଥାଏ । ସେ ସତ୍ୟ ଐତିହାସିକ ସତ୍ୟ ନ ହୋଇପାରେ; କିନ୍ତୁ ସେ ସତ୍ୟ ଈଶ୍ୱରର, ପରଂପରର ସତ୍ୟ । ସେ ସତ୍ୟକୁ ଏଡ଼ି କୌଣସି କଳା ସୌନ୍ଦର୍ଯ୍ୟ ଫୁଟାଇ ପାରେ ନା । ଯଦି ଦଳ ସ୍ୱାର୍ଥାନ୍ଧ ଅନ୍ୟକୁ ଆନନ୍ଦ ବିତରଣ କରିବେ, ତାହାହେଲେ ସେ ମିଥ୍ୟାର ଆଶ୍ରୟ ନେଇ

କଦାପି ସେ ଆନନ୍ଦ ଦାନ କରି ପାରିବେ ନାହିଁ । ସତ୍, ଚିତ୍ ଏବଂ ଆନନ୍ଦ ଏହି ତିନି ପରସ୍ପରସମ୍ବନ୍ଧ । ସେଥିପାଇଁ ସଚ୍ଚିଦାନନ୍ଦ, ବ୍ରହ୍ମ ଦାର୍ଶନିକ ବ୍ୟକ୍ତିଙ୍କର ଜଗତ୍‌କୁ ପ୍ରଧାନ ଦାନ । ସେହିପରି ସତ୍ୟ ଶିବ-ସୁନ୍ଦର ଆଉ ଏକ ଦାନ ଯାହା ସତ୍ୟ ତାହା ସତ୍, ଯାହା ଶିବ ତାହା ଚିତ୍, ଯାହା ସୁନ୍ଦର ତାହା ଆନନ୍ଦ । ଏହି ମୂଳ ତଥ୍ୟକୁ ଯେପରି କେହି ନ ଭୁଲନ୍ତି । ଏହି ମୂଳ ତଥ୍ୟକୁ ପାଇଛନ୍ତି ଜଣେ ନୁହେଁ—ଅନେକ ଦାର୍ଶନିକ ଲୋକେ ଭାରତର ବହୁଯୁଗ ବ୍ୟାପୀ ଚିନ୍ତା ଏବଂ ସାଧନା ଦ୍ୱାରା । ଏହାକୁ ଉପେକ୍ଷା କଲେ ଚଳିବ ନାହିଁ । ମାନବର ଜୀବନ ସୃଷ୍ଟି ନିଜର ଆବେଷ୍ଟନକୁ ଭୁଲିପାରେ ନାହିଁ—ତାହା ନିଜ ମନରେ ଓତପ୍ରୋତ ହୋଇ କାବ୍ୟ ଏବଂ କଳାରେ ସମ୍ମିଳିତ ହୋଇଉଠେ । ସଭ୍ୟତାର ଉଷା ମୁହୂର୍ତ୍ତରେ ଅରଣ୍ୟ ଜୀବନର ପ୍ରତିଭାସ ସେ ସମୟର କଳାରେ ରହିଅଛି । ସତ୍ୟକୁ ଆଶ୍ରୟ କରି କଳା ବଢ଼ିବାର ଚାଲିଥାଏ ।

ଯୋ ଦେବଃ ଅପ୍‌ସୁ ଭବନ୍ତିଷ୍—ଏହି ବାଣୀ ଭାରତରେ ପ୍ରଥମ ଧ୍ୱନିତ ଓ ପ୍ରଚାରିତ ହୋଇଥିଲା । ଇଉରୋପ ଏବଂ ଭାରତ ଅଥବା ପ୍ରାଚ୍ୟ ଓ ପ୍ରତୀଚ୍ୟ ଅଥବା ପ୍ରାଚୀନ ସଭ୍ୟତା ଏବଂ ପରସଭ୍ୟତା ମଧ୍ୟରେ କଳାରେ କୌଣସି ତଫାତ୍ ଏହି ଯେ ପ୍ରକୃତି ସହିତରେ ଘନିଷ୍ଠ ଆତ୍ମୀୟତା କରିବା ପଶ୍ଚିମରେ ନାହିଁ, ପୂର୍ବରେ ଅଛି । ସେଥିପାଇଁ କବେ କହନ୍ତି—କନଷ୍ଟତକୁ ନଦ୍ୟ କଳ୍ପନା କରିବା ବା ଫଲକ ସଙ୍ଗମରେ ଆତ୍ମୀୟତାର କୌଣସି ରୋପନ ବାଞ୍ଛା ଉଦ୍‌ବୋଧିତ କରିବା ଇଉରୋପର ସାହିତ୍ୟରେ ବା କଳାରେ ନାହିଁ । ଫଳରେ ରୂପର ମୁକୁରରେ ସେଠାରେ ଫୁଟି ଉଠିଛି ଅପରୂପ ଅନାତ୍ମୀୟତାର ମୂର୍ଚ୍ଛନା ।"

ଗୋଟିଏ ବିସମ୍ବାଦ art ବା କଳା ସମ୍ବନ୍ଧରେ ରହିଅଛି । ସେ କଥାଟି ହେଉଛି art for art sake । ଅନେକେ ଅଛନ୍ତି ଯେଉଁମାନେ କହନ୍ତି ବିହଗ ଗାଏ ତାର ନିଜର ଆନନ୍ଦରେ—ସେ ଅନ୍ୟର ଅପେକ୍ଷା ରଖେ ନାହିଁ । ସେଥିପାଇଁ ଶିଳ୍ପୀ ବା କଳାବିତ୍ କଳା ବା କାବ୍ୟ ରଚନା କରେ ତାହାର ନିଜର ଆନନ୍ଦ ପାଇଁ, କିନ୍ତୁ ଆନନ୍ଦ ସଙ୍ଗେ ସଙ୍ଗେ ଅପରକୁ ଆନନ୍ଦଦାନର ସ୍ପୃହା ଥାଏ । ବାହାରର ଦଶ ଜଣଙ୍କର ବାହାବା ନେବାରେ କଳା ଯେ ନ ଥାଏ ଏପରି-ବେଳେ ତାହା କେହି ନା ବୋଲି କହି ପାରିବେ ନାହିଁ । ସୁତରାଂ art for art sake ସାଧାରଣ ଭାବରେ ସତ୍ୟ ହେଲେ ମଧ୍ୟ ସମ୍ପୂର୍ଣ୍ଣତଃ ସତ୍ୟ ନୁହେଁ । ଏହା ଆଂଶିକ ସତ୍ୟ, ପୁଣି ଏହା ସମ୍ପୂର୍ଣ୍ଣତଃ ନ ହେଲେ ମଧ୍ୟ ବହୁ ପରିମାଣରେ ସତ୍ୟ ।

ସୁତରାଂ art individualist, art subjective ଅର୍ଥାତ୍ ବ୍ୟକ୍ତିଗତ ଏବଂ ଆତ୍ମଗତ ହେଉ—ଏହା ସ୍ୱୀକାର କରାଗଲା । କିନ୍ତୁ ବ୍ୟକ୍ତି ସ୍ୱତନ୍ତ୍ର ନୁହେଁ । ସେ ପାରିପାର୍ଶ୍ୱିକ ଅବସ୍ଥାକୁ ଏକାବେଳକେ ଅଗ୍ରାହ୍ୟ କରି ଉଚ୍ଛେଦ କରି ଉପରକୁ ଉଠିପାରେ ନା । ସୁତରାଂ ସେ ପାରି-ପାର୍ଶ୍ୱିକ ବେଷ୍ଟନୀକୁ ଲକ୍ଷ୍ୟ କରି ମଧ୍ୟ art ର ସର୍ଜନା କରେ । ଅତଏବ art for art sake ରେ ମଧ୍ୟ ଏହି

ବେଷ୍ଟମାର ପ୍ରଭାବ ଏତାବେଳକେ ଅଦୂରିତ ହୋଇନାହିଁ ।

ତେବେ ପ୍ରଶ୍ନ ଉଠେ — ଏହି subjective art ରେ ମାନବ ଜାତିର ଲାଭ କଣ ? ଲକ୍ଷଲକ୍ଷ ଲୋକ art ବା କଳାକୁ ଦେଖିବାକୁ ନ ପାଇଲେ ମଧ୍ୟ ଏହା ମାନବଜାତିକୁ ପ୍ରଭାବିତ କରେ । ସୁତରାଂ ମାନବଜାତିର ଏହି art ବା କଳାକୁ ସମ୍ୟକ୍ ପରୀକ୍ଷଣ କରିବା ଉଚିତ ଏବଂ ତାହାର ଅନୈତିକତା ବା ଉଚ୍ଛୃଙ୍ଖଳତାରୁ ସମାଜକୁ ରକ୍ଷା କରିବା ଉଚିତ । ଏହିଠାରେ artରେ moral ବା immoral ପ୍ରଶ୍ନ ଆସି ପଡ଼େ । ତେବେ ଉଚ୍ଚଭୂମିକୁ ଉନ୍ନୀତ ହେଲେ ଏହି ବିବାଦ ବିସମ୍ବାଦ ଦୂର ହୋଇଯାଏ । କେବଳ ସତ୍ୟ ଲୋକ, ସତ୍ୟ ବସନ୍ତରସ, ସତ୍ୟ ଖେଳ, ସତ୍ୟ ଅବସର କଳ୍ପନାଭୂମିରୁ ଭଲ ହୋଇପାରେ, କିନ୍ତୁ ତାହା ଜଗତରେ ଦୁଷ୍ପ୍ରାପ୍ୟ, ପୁଣି ତାହା ଜଗତର କର୍ମଶୀଳ ଲୋକଙ୍କ ପକ୍ଷରେ ଭ୍ରାନ୍ତାଦର୍ଶ ସ୍ଥାପନ କରେ । ଏହାଦ୍ୱାରା ସମାଜରେ ଈର୍ଷା-ଦ୍ୱେଷ ଉଦ୍ଭ୍ରାଟ ଘଟିପାରେ । କିନ୍ତୁ ତାହାହେଲେ ମଧ୍ୟ ପର୍ବତର ପାଦଦେଶ ଏବଂ ପର୍ବତର ଶୀର୍ଷଦେଶ ଯେପରି ଭିନ୍ନ ସେହିପରି ଉଚ୍ଚ ଶିଳ୍ପୀ ଏବଂ ଅସଂଖ୍ୟ ସାଧାରଣ ଶିଳ୍ପୀ ମଧ୍ୟରେ ଅନେକ ପାତାଳର ପାର୍ଥକ୍ୟ ଅଛି । ଅତଏବ ବିଶିଷ୍ଟ ବ୍ୟକ୍ତି, ବିଶିଷ୍ଟ ଭାବୁକ, ବିଶିଷ୍ଟ ଶିଳ୍ପୀ, ବିଶିଷ୍ଟ କଳାବିତ୍‌ଙ୍କ ପାଇଁ ବିଶିଷ୍ଟ ସ୍ୱତନ୍ତ୍ର ମାପକାଠି, ମାନଦଣ୍ଡ ଦରକାର । ଏଥିରେ aristocracy of intellect ଅଛି । ଆଜି democracy ବା ଗଣତନ୍ତ୍ର ଯୁଗରେ ଏହି aristocracy of intellect ବା ବୁଦ୍ଧି କୌଳିନ୍ୟରେ ଉଚ୍ଚତାର ସ୍ୱାତନ୍ତ୍ର୍ୟ ଏହି କଥା କହିବା ବଡ଼ ସାହସର କଥା । ତାହା ହେଲେ ମଧ୍ୟ ଏହା ସତ୍ୟ । ଏହି ମହାମନୀଷୀମାନଙ୍କ ଦ୍ୱାରା ବିଶ୍ୱର ସକଳ ପ୍ରଗତି ସମ୍ଭବପର ହୋଇଅଛି । ଏମାନେ ହିଁ ମନ୍ଦରଗିରିକୁ ଟେକି ରଖିଛନ୍ତି । ଅତଏବ ଜଗତରେ କଳାବିତ୍‌ର ସ୍ଥାନ ହିମାଳୟର ଶୀର୍ଷ ସମ ଉଚ୍ଚ ସ୍ଥାନରେ — ଏହା ଅସ୍ୱୀକାର କରିବାର କିଛି ନାହିଁ । Art for art sake ର ଅର୍ଥ ଏହି ଯେ କବି ବା ଶିଳ୍ପୀ ତାହାର କାର୍ଯ୍ୟରେ ବା ଚିନ୍ତାରେ ସ୍ୱାଧୀନତା ଲୋଡ଼େ । କିନ୍ତୁ ଶିଳ୍ପୀ ବା କବି ଶ୍ରେଷ୍ଠ ଧରଣର ହୋଇଥିଲେ ସେ ଏଟା ନିଶ୍ଚେ ଅନୁଭବ କରିବ ଯେ ସ୍ୱାଧୀନତା ସ୍ୱେଚ୍ଛାଚାରିତା ନୁହେଁ — ସ୍ୱାଧୀନତା ମଧ୍ୟ ସତ୍ୟର ଭିତ୍ତି ଉପରେ ପ୍ରତିଷ୍ଠିତ । ଅତଏବ ଯେଉଁଠାରେ ସତ୍ୟ ନାହିଁ ସେଠାରେ ସ୍ୱାଧୀନତାର ଅପବ୍ୟବହାର ହୋଇଅଛି । କବି ଶିଳ୍ପୀ କଳାବିତ୍ ସେହି ଏକ ସତ୍ୟର ଉପାସକ ।

କଳାଦ୍ୱାରା ଜଗତ୍‌ବାସୀର ସେବା ହୁଏ, ଏହି ଦାରୁଣ ଦୈନନ୍ଦିନ ଜୀବନରେ ଏହି କଳା ହିଁ ମାନବ ଜୀବନରେ ତାହାର ମରୁଭୂମିରେ ଓଏସିସ୍ ଭଳି — ଏହା ଶୁଷ୍କ କଣ୍ଠରେ ସୁଶୀତଳ ଜଳ ପରି । କଳା ଭଲ ବସ୍ତୁ, ଏହା ହୃଦୟ ବୋଧ କରେ, ଆତ୍ମବୋଧ କରେ, ଶାନ୍ତି ପ୍ରଦାନ କରେ । ଯଦି ଜାତି ହିସାବରେ ଆମେ ଓଡ଼ିଆ ଜାତି ବଡ଼ ହେବାକୁ ଚାହୁଁ, ତାହାହେଲେ ଆମକୁ କଳା ପ୍ରତି ଦୃଷ୍ଟି ଦେବାକୁ ହେବ — ତାକୁ ଶ୍ରଦ୍ଧା କରିବାକୁ ହେବ । କଳାକୁ ଅବହେଳା କରି କୌଣସି ଜାତି

ଜଗତରେ ବଡ଼ ହୋଇ ନାହିଁ, ମହତ୍ ହୋଇ ନାହିଁ । ଆଜି ଆମର କର୍ତ୍ତବ୍ୟ ଆମର ପାରିପାର୍ଶ୍ୱିକ ଅବସ୍ଥାକୁ ଦେଖି ନିଜର ଘରଦ୍ୱାର, ମନ୍ଦିର, ବିଦ୍ୟା, ବୁଦ୍ଧି, ସାହିତ୍ୟ ଆଦି ସବୁର ଶ୍ରୀବୃଦ୍ଧି କରିବାକୁ ହେବ । ଏହା କଳା ସାହାଯ୍ୟରେ ସମ୍ଭବପର ହେବ । ଜୀବନର ପ୍ରତ୍ୟେକ କାର୍ଯ୍ୟରେ କଳାର ଆବଶ୍ୟକତା ଅଛି । ଓଡ଼ିଆ ଜାତି ଶିଳ୍ପୀର ଜାତି । ଓଡ଼ିଆ ଆଜି ସୁଦ୍ଧା ତାର ଶିଳ୍ପ ନିପୁଣତା ଭୁଲି ନାହିଁ—ଅତଏବ ଆମର ବେଳ ଥାଉଁ ଥାଉଁ ସାବଧାନ, ସତର୍କ ଏବଂ ଅବହିତ ହେବାକୁ ହେବ ଯେପରି କି ଆମେ ଉତ୍କଳ-କଳା ସାଧନର ମୁଖ୍ୟ ଉପାୟ ଅବଲମ୍ବନ କରିପାରୁଁ । ଦାରିଦ୍ର୍ୟ ମଧ୍ୟରେ ଏହି କଳା ସାଧନ ସମ୍ପୂର୍ଣ୍ଣ ଅସମ୍ଭବ ନୁହେଁ । ଏହା ଭୂତ ଏବଂ ଅଦ୍ଭୁତ ଜଗତରେ ନିର୍ଭର କରେ । ଏହି ଭୂତ ଏବଂ ଅଦ୍ଭୁତକୁ ଠିକ୍ ବାଟରେ ବଢ଼ାଇବାକୁ ହେବ । ଆମର ସହରକୁ ସୁନ୍ଦର କରିବାକୁ ହେବ । ଆମର କଚେରି, ସ୍କୁଲ, ଘରଆଡ଼କୁ ମନୋହର କରିବାକୁ ହେବ, ଉଦ୍ୟାନ, ପାର୍କ ପୁଷ୍ପବାଟିକା ଆଦି ସୃଷ୍ଟି କରିବାକୁ ହେବ, ଆମର ସାହିତ୍ୟରେ aesthetics ବା ସୌନ୍ଦର୍ଯ୍ୟ ବଢ଼ାଇବାକୁ ହେବ । ବହିଃ-ସ୍ୱଭାବର ତଥା ଅନ୍ତରର ମାଲମସଲା ଦ୍ୱାରା—ଆମ୍ଭମାନଙ୍କୁ ଶିକ୍ଷିତ ହେବାକୁ ହେବ, ଅନୁପ୍ରାଣିତ ହେବାକୁ ହେବ । ଦାରିଦ୍ର୍ୟତା ଭିତରେ, ଅବସାଦ ଭିତରେ, ହତାଶା ନିରାଶା ଭିତରେ ଓଡ଼ିଆ ଜାତିକୁ ପକାଇ ରଖିଲେ ଚଳିବ ନାହିଁ । ଜୀବନ ଉପଲବ୍ଧି କରିବାକୁ ହେବ । ଏହି ଜୀବନ ନିଗାଡ଼ ପୂର୍ଣ୍ଣଭାବରେ ଉପଲବ୍ଧି କରିବା ଦ୍ୱାରା ଆର୍ଟ ବା କଳାର ସୌଖ୍ୟ ବଢ଼ିବ ଏବଂ ଆମେ ପୃଥିବୀରେ, ଉତ୍କଳରେ ସ୍ୱର୍ଗରାଜ୍ୟର ପ୍ରତିଷ୍ଠା କରି ପାରିବୁ ।

ଏକ ସମୟରେ ଏହି ଓଡ଼ିଶା କଳାର ଶ୍ରେଷ୍ଠତ୍ୱ ଉପଲବ୍ଧି କରି ନିଜ ଦେଶର ନାମ ରଖିଥିଲା ଉତ୍କଳ । ଅର୍ଥାତ୍ ଉତ୍କୃଷ୍ଟ କଳା ଯାହାର, ଯେଉଁଠାରେ, ସେ ଉତ୍କଳ । ଆଜି ପୁନର୍ବାର ଉତ୍କଳ-ସନ୍ତାନଙ୍କୁ ସେହି ଅବସ୍ଥାକୁ ଉନ୍ନୀତ ହେବାକୁ ହେବ ।

ନବଘନ ମେଘମାଳାର ଗୁରୁ ଗମ୍ଭୀର ନାଦ ଶୁଣି ଆମକୁ ପୁଲକିତ ହେବାକୁ ହେବ ଏବଂ ସେଥିରେ ନିବିଷ୍ଟ ହେବାକୁ ହେବ । ଚନ୍ଦ୍ର ଜ୍ୟୋତ୍ସ୍ନାର ନିଷ୍କଳଙ୍କତା ଶୁଭ୍ରତାରେ ଅବଗାହିତ ହୋଇ ଆପଣାକୁ ପରି-ସ୍ନାପନ୍ନ କରିବାକୁ ହେବ । ବିହଙ୍ଗମର ସୁଗୃପକ୍ଷ ପରି ଚିତ୍ତକୁ ଲଘୁ କରି ତନ୍ଦ୍ରାରେ ଭାବରାଜ୍ୟରେ ଉଡ୍ଡୀନ ହେବାକୁ ହେବ । ମଣି-ବିଭବଶାଳିନୀ ଫଣିନୀ ପରି ଆମ୍ଭମାନଙ୍କୁ ଉଜ୍ଜ୍ୱଳ ହେବାକୁ ହେବ । ଓମର ଖାୟାମ୍‌ଙ୍କ ପରି other worldliness ବା ଅପର ଜଗତରେ ନିବିଷ୍ଟ ହୋଇ ସେଥିରୁ ଇକ୍ଷୁରସ ପରି ରସ ସଂଗ୍ରହ କରିବାକୁ ହେବ । ତାହାହେଲେ ଆମ୍ଭେମାନେ କଳାର ମାଧୁର୍ଯ୍ୟ, ପ୍ରାଚୁର୍ଯ୍ୟ, ମଙ୍ଗଳମୟତା ଉପଲବ୍ଧି କରି ପାରିବୁଁ । ବସ୍ତୁତଃ କଳାମୟ ଜୀବନ ଯାପନରେ ହିଁ କଳାର ଅଭିବୃଦ୍ଧି, ସତ୍ତ୍ୱ ସମ୍ଭବ । Art is like religion. I we don't live it, we haven't got it । ଅତଏବ ହେ ଶିଳ୍ପି, କ୍ଷୁଦ୍ର ଏବଂ ବୃହତ୍ ଶିଳ୍ପି, ହେ କଳାବିତ୍, ତୁମେ ବଡ଼ ହୁଅ ବା ଗ୍ରେଟ୍ ହୁଅ, ତୁମର କାମ ତୁମେ କରିଯାଅ, ନିଜର କଳା ସୃଷ୍ଟି

କରପାଅ—ଅନ୍ୟକୁ ଈର୍ଷା କର ନାହିଁ । ଶେଷ କଥା କଳା ଏପରି ହେବା ଦରକାର ଯେଉଁଥିରେ ପ୍ରଚେଷ୍ଟ କରାହୋଇ-ଅଛି ବୋଲି ଯେପରି ଜଣା ନ ପଡ଼ୁ, ତାହା ଯେପରି ସ୍ୱାଭାବିକ, ସରଳ ବୋଲି ପ୍ରତୀୟମାନ ହୁଏ । ଏହାକୁ କୁହାଯାଇଅଛି Art lies in concealing art.

ସ୍ୱର୍ଗସ୍ଥ ରବୀନ୍ଦ୍ରନାଥ ଠାକୁର ଥରେ କହିଥିଲେ ଯେ କଳା ମାନବୀୟ ଜାଗ୍ରତ ସଙ୍ଗରେ ବର୍ଦ୍ଧିତ ହୁଏ । ଏହା ସତ୍ୟ କଥା । ଆଜି ଜଗତରେ ଲୋକସାଧାରଣଙ୍କର ଆଶା ଆକାଂକ୍ଷାକୁ ଯେଉଁମାନେ ଭାଷାରେ, ଛନ୍ଦରେ, ଶିଳ୍ପରେ ଓ ଅନ୍ୟାନ୍ୟ ଭାବରେ ବିକଶିତ କରିପାରୁଛନ୍ତି, ସେହିମାନେ ଶ୍ରେଷ୍ଠ ଶିଳ୍ପୀ ବା କଳାବିତ୍ ରୂପରେ ଗଣ୍ୟ ହେଉଅଛନ୍ତି । ଟଲଷ୍ଟୟଙ୍କ ମତରେ ଜୀବନରେ ଯାହାର utility ନାହିଁ, ସେ Art ବା କଳାର ପ୍ରୟୋଜନ ନାହିଁ । Oscar Wilde କିନ୍ତୁ କହନ୍ତି, ନା, Art for art sake ହେବା ଉଚିତ । Galsworthy କହନ୍ତି, ଜଗତର ସୀମା ମଧ୍ୟରେ ରହି ଆତ୍ମାର ପରିତୃପ୍ତି ଯେଉଁଥିରେ ପ୍ରକାଶିତ ହୋଇପାରେ ତାହାହିଁ ଶ୍ରେଷ୍ଠ art । ମହାତ୍ମାଗାନ୍ଧୀଙ୍କର art ଉନ୍ନତମ asceticism ବା ବୈରାଗ୍ୟ । Shelley କହନ୍ତି, ଯେଉଁ Love ବା ପ୍ରେମ ଆମ୍ଭ ଜଗତର ବାହାରକୁ ନେଇଯାଏ ତାହାହିଁ art ବା ଶ୍ରେଷ୍ଠ କଳା । Keats ଙ୍କ କଥା ତ ଅଛି, Truth beauty, beauty truth ଅର୍ଥାତ୍ ଯାହା ସତ୍ୟ ତାହା ସୁନ୍ଦର, ଯାହା ସୁନ୍ଦର ତାହା ସତ୍ୟ । Bernard Shaw କହନ୍ତି ଯେ କଳାବିତ୍ ବା ଶିଳ୍ପୀ ମାନବ ସମାଜର ଅସାଡ଼ତାଗୁଡ଼ିକ ସ୍ପଷ୍ଟଭାବରେ ଦେଖାଇ ଦେଇପାରେ । ମୋର ବନ୍ଧୁ ଶ୍ରୀମାନ୍ ସଚ୍ଚିଦାନନ୍ଦ ରାଉତରାୟ ଗୋଟିଏ ଗଳ୍ପର ଆଶ୍ରୟ ନେଇ କହନ୍ତି, କଣ୍ଟ୍ରାକ-ପୁଅ, ସାଧବପୁଅ, ମନ୍ତ୍ରିପୁଅ ହାଡ଼, ମାଉଁସ ଶରୀର ତିଆରିରେ ସାହାଯ୍ୟ କରନ୍ତି, କିନ୍ତୁ ରଜାପୁଅ ସେଥିରେ ଜୀବନ ଫୁଙ୍କେ ! Artist ବା ଶିଳ୍ପୀ ହେଉଛି ସେହି ରଜାଘରର ପୁଅ । ବୈଦିକ ଯୁଗରୁ ଆଜି ପର୍ଯ୍ୟନ୍ତ ହିନ୍ଦୁର କଳା ହେଉଛି ରସ-ପ୍ରଧାନ । ରସୋ ବୈ ସଃ ।

ବର୍ତ୍ତମାନ ଜଗତରେ ଯେପରି ଅଦ୍ଭୁତ ପରିବର୍ତ୍ତନ — ସାମାଜିକ, ନୈତିକ, ମାନସିକ, ରାଜନୈତିକ ଆଦି ହେଉଅଛି ଏବଂ ହେବାର ଆବଶ୍ୟକତା ଅଛି, ସେଥିରେ କେବଳ କୃଷ୍ଣଙ୍କର ବଂଶୀବାଦନ ଚଳିବ ନାହିଁ । ସେଥିରେ ପାଞ୍ଚଜନ୍ୟ ମଧ୍ୟ ଫୁଙ୍କିବାକୁ ହେବ । ଏ ଯୁଗର ବାଣୀ ହେଉଛି, ହେ ଶିଳ୍ପି, ହେ କବି, ହେ ଭାବୁକ, ହେ ରସପାରଙ୍ଗ, ଭିନ୍ନ ଭିନ୍ନ ଶଙ୍ଖ ଫୁଙ୍କ, ଜାତୀୟ ଚେତନା, ଜାତୀୟ ଜାଗୃତି ଆଣ । ଏ ଭାରତୀୟ, ମହା-ଭାରତୀୟ ଅର୍ଦ୍ଧସୁପ୍ତ ଜାତିକୁ ବର୍ତ୍ତମାନ ଭ୍ରମରର ଗୁଞ୍ଜନରୁ ରକ୍ଷା କରି ଶାର୍ଦ୍ଦୂଳର ଘନଘୋର ଗମ୍ଭୀର ଜଳଦ ନାଦଦ୍ୱାରା ଉଦ୍‌ବୁଦ୍ଧ କର । ସମସ୍ତେ ବନ୍ୟାର ସମୁଚ୍ଛ୍ୱାସ, ମେଘର ମହ୍ଲାର, ସମୁଦ୍ରର ଗର୍ଜନ ଅନୁଭବ କରନ୍ତୁ । ଯେଉଁ କଳା ଏହା କରିପାରିବ, ସେହି କଳା ଆମକୁ ବର୍ତ୍ତମାନ ସମୟରେ ବଞ୍ଚାଇବ । ପ୍ଲାଟୋଙ୍କର କଳା ସାହାଯ୍ୟରେ ସୁନ୍ଦର ମନୁଷ୍ୟ ହୋଇ ବଞ୍ଚିପାରିଲେ ଚିରକାଳର ମଧୁର ସୁନ୍ଦର ସଙ୍ଗୀତର ଆବଶ୍ୟକତା ଜନ୍ମିବ । * * *

# ଉତ୍କଳୀୟତ୍ୱ ଓ ତା'ର ବୈଶିଷ୍ଟ୍ୟ

ଓଡ଼ିଶାର ଲୋକେ କ'ଣ କୌଣସି ଗୁଣରେ ଅନ୍ୟ ଲୋକଙ୍କ ଠାରୁ ସ୍ୱତନ୍ତ୍ର ? ହଁ ସ୍ୱତନ୍ତ୍ର ଯେମିତି, ଯେପରି ପ୍ରତ୍ୟେକ ଲୋକ ଅନ୍ୟଠାରୁ ପୃଥକ୍ । ଯେମିତି ଗୋଟିଏ ଗୋଷ୍ଠୀ ଅନ୍ୟ ଗୋଷ୍ଠୀଠାରୁ ଅଲଗା, ସେହିପରି ଭାରତୀୟ ଗୋଷ୍ଠୀଠାରୁ ଓଡ଼ିଆମାନେ ସ୍ୱତନ୍ତ୍ର । ଯୁଗ ଯୁଗ ଧରି ପ୍ରାକୃତିକ ଓ ରାଜନୈତିକ ପରିବର୍ତ୍ତନର ଘାତ ପ୍ରତିଘାତ ଭିତରେ ଉତ୍କଳୀୟମାନେ ଅନ୍ୟମାନଙ୍କ ଠାରୁ କେତେକ ଗୁଣରେ ଅଲଗା ହୋଇ ପାରିଛନ୍ତି । ଦୃଢ଼ ଓ ଉଦାର ମନୋବୃତ୍ତି, ସ୍ୱଳ୍ପସନ୍ତୁଷ୍ଟି, ତ୍ୟାଗ ଓ ସଦ୍ଭାବପ୍ରଦର୍ଶନ — ଏ ଗୁଣଗୁଡ଼ିକ ହେଉଛି ଓଡ଼ିଆମାନଙ୍କର ବୈଶିଷ୍ଟ୍ୟ ।

ଏହା ଯେ ବଦଳୁନାହିଁ, ତାହା ନୁହେଁ । ସମସ୍ତ ଆଜି ଜୀବନର ଅନେକ ଅନୁଭୂତି ନିଶ୍ଚିତ ତା'ର ପରିବର୍ତ୍ତନ ମଧ୍ୟ ସମ୍ଭବ ହେଉଛି । ତଥାପି କେତୋଟି ଗୁଣ ଅନ୍ୟମାନଙ୍କ ଠାରୁ ସେମାନଙ୍କୁ ଅଲଗା ରଖିଛି । ଦୃଢ଼ ମନୋବୃତ୍ତି ତନ୍ମଧ୍ୟରୁ ଗୋଟିଏ । ସେ ପ୍ରତିହିଂସାପରାୟଣ ନୁହେଁ, ଘାତକ ପ୍ରବୃତ୍ତିର ନୁହେଁ କିମ୍ବା ଉଚ୍ଚାକାଂକ୍ଷୀ ମଧ୍ୟ ନୁହେଁ ।

ମାତ୍ର ଏ ପରିବେଷ୍ଟନୀ ଭିତରେ ଓଡ଼ିଆର କୋମଳତାର ପ୍ରମାଣ ମିଳିଥାଏ । ମାନସିକ ପ୍ରବୃତ୍ତି ଅପେକ୍ଷା ଦାର୍ଶନିକ ଅନୁଭୂତି ତାକୁ ଅଧିକ ଅଭିଭୂତ କରିଛି । ମହୋଦଧିର ଉତ୍ତାଳ ତରଙ୍ଗ, ବିଚିତ୍ର ବାଲୁକାରାଶି, ନଦୀମୁହାଣର ଉପତ୍ୟକା ବା ପଶ୍ଚିମାଂଶର ପର୍ବତଶ୍ରେଣୀ ବହୁଭାବରେ ତା'ର ଗୁଣଗୁଡ଼ିକୁ ପ୍ରତିପନ୍ନ କରିଛି । ନାତ୍ୟୁଚ୍ଚ ପୂର୍ବଘାଟ ପର୍ବତମାଳା, ସମୁଦ୍ର ଓ ତା'ର ଭୀମ ଗର୍ଜନର ଆବାହନୀ ସମସ୍ତ ଅଭାବ ଓ ଅବସାଦ ମଧ୍ୟରେ ଉତ୍କଳୀୟକୁ ଧ୍ୟାନମଗ୍ନ, ଚିନ୍ତାଶୀଳ ଓ ସନ୍ତୁଷ୍ଟ ରହିବାକୁ ଶିଖାଇଛି ।

ଉତ୍ତର ଓ ପଶ୍ଚିମରୁ ବହୁଜାତି, ବହୁ ଗୋଷ୍ଠୀ ଥରକୁ ଥର ଏ ଭୂମିକୁ ଆସିଛନ୍ତି । ଏ ଦେଶର ଜନସମାଜ ସହିତ ନିଜକୁ ମିଶାଇ ସେମାନଙ୍କଠୁଁ ନେଇଛନ୍ତି ସନ୍ତୋଷ ଓ ଦୃଢ଼ତାର ଶିକ୍ଷା ।

କ୍ଷୁଦ୍ର କ୍ଷୁଦ୍ର କୃତି ଘେନି ଗର୍ବ କରିବାର ଲୋକ ଓଡ଼ିଆ ନୁହେଁ । ସେ ଅତି ପରିଶ୍ରମୀ, ବୁଦ୍ଧିମାନ୍ ଏବଂ ସ୍ୱେଚ୍ଛାବ୍ରତୀ । ସେ କରେ ଲକ୍ଷ୍ୟର ସନ୍ଧାନ ଆଉ ହୁଏ ସଫଳ । ଏ ସଫଳତାର ସମ୍ମାନ ପାଏ ସେ ଅଜ୍ଞାତରେ । ଉଠାଣପଥରେ ଗତି ତା'ର ଧୀର । ସୃଷ୍ଟି କରୁ ପ୍ରକଟ । ସେ ଗଢ଼େ ମନ୍ଦିର, ଫୁଟାଏ ସ୍ଥାପତ୍ୟ । ଏହି ମନ୍ଦିରର ସ୍ଥାପତ୍ୟ ଭିତରେ ସେ ସମସ୍ତ ଦୁନିଆକୁ ରୂପ ଦିଏ । ଧ୍ୟାନମଗ୍ନ ରହି ନିଜ କର୍ତ୍ତବ୍ୟ ସମ୍ପାଦନରେ ନିମଜ୍ଜିତ ରହେ । ସେ ଏଥିପାଇଁ ବ୍ୟସ୍ତ କି ବିବ୍ରତ ହୁଏ ନାହିଁ । କୌଣସି କାର୍ଯ୍ୟକୁ ତର ତର ହୋଇ ଶୀଘ୍ର ଶେଷ କରିବାକୁ ସେ ଚାହେଁନା । ଏ ପ୍ରକାର ପ୍ରକୃତିକୁ ସେ ମୂଲ୍ୟହୀନ ଓ ଅବ୍ୟବସ୍ଥିତ ବୋଲି ମନେକରେ । ଏ ପ୍ରଚେଷ୍ଟା ଦ୍ୱାରା କରୁ

ଗୋଟାଏ ଚିରନ୍ତନ, ଶାଶ୍ୱତ ଓ ସୌନ୍ଦର୍ଯ୍ୟପୂର୍ଣ୍ଣ ସୃଷ୍ଟିର ଆଶା କରିବା ବିଡ଼ମ୍ବନା ବୋଲି ତା'ର ଧାରଣା । କୋଣାର୍କ ଆଉ ଭୁବନେଶ୍ୱର ମୂର୍ତ୍ତି ଆଡ଼କୁ ଚାହିଁ । ଦେଖିବ, କେଡ଼େ ସୁନ୍ଦର, କେଡ଼େ ଚିରନ୍ତନ ! ସେ ମୂର୍ତ୍ତିଭିତରେ ନାହିଁ କାଳିମା, ନାହିଁ ଅପୂର୍ଣ୍ଣତା ଆଉ ସୌନ୍ଦର୍ଯ୍ୟହୀନତା ।

କଳାକ୍ଷେତ୍ରରେ ଓଡ଼ିଆ ଜାତିର ଗତି ଏହିପରି ଧୀର । ବର୍ତ୍ତମାନ ଯୁଗର ଆବଶ୍ୟକତା ଅନୁରୂପ ତା'ର ସୃଷ୍ଟି । ଓଡ଼ିଆମାନେ ଧର୍ମପରାୟଣ । ମାତ୍ର ତା'ର ଅର୍ଥ ନୁହେଁ ଯେ ସେ ଚିନ୍ତା କରେନା । ସେ ଅତି ଶାନ୍ତ, ଗମ୍ଭୀର ଓ ଉଦାର ଚିତ୍ତରେ ଚିନ୍ତା କରେ । ଚଞ୍ଚଳତାଦ୍ୱାରା କୌଣସି ବିଷୟକୁ ବିକ୍ଷିପ୍ତ କରିଦିଏନା । ଖଣ୍ଡିଏ ପଥର ପାଇଲେ ତାକୁ ବାରମ୍ବାର ନିରୀକ୍ଷଣ କରେ ଏବଂ ମନଭିତରେ ତା'ର ରଚନା କରି ବହୁ ସମୟ ଅପେକ୍ଷା କରେ । ପୁଣି ଖଣ୍ଡିଏ ପଥର ଆଣି ତାକୁ ପରୀକ୍ଷା କରେ । ସେ ଭାବେ, ମୃତ ପଥରଦେହରେ ଜୀବନ କେମିତି ଶୋଇ ରହିଛି । ସେଇ ସୁପ୍ତ ଜୀବନକୁ ଜାଗ୍ରତ କରିବାକୁ ସେ ପ୍ରୟାସ କରେ । ନିଜକୁ ସେ ନିର୍ଜିତ ଆତ୍ମା ସହିତ ମିଶାଇଦିଏ । ସେଇଠି ହିଁ ସେ ହୁଏ ଜାଗ୍ରତ ସ୍ରଷ୍ଟା । ଓଡ଼ିଆଚରିତ୍ରର ଏଇହିଁ ମୋଟାମୋଟି ପରିଚୟ ।

ସେଇଁ ଭୂଇଁର ଲୋକେ କଳାପ୍ରିୟ । ବୌଦ୍ଧ, ନିରାକାରବାଦୀ, ସେ ଉତ୍କଳଭୂଇଁକୁ ଏ ବର୍ଷ ପି. ଇ. ଏନ୍. ଆସିଛି । ପୃଥିବୀର ମାୟାମୋହକୁ ଉତ୍କଳୀୟମାନେ ଅସ୍ୱୀକାର କରିଛନ୍ତି । ମଣିଷର ସ୍ୱକୀୟ କୃତିକୁ ବିଶ୍ୱାସ କରିପାରିନାହାନ୍ତି । ସେମାନେ ଶାନ୍ତ । ଚିନ୍ତାଶୀଳ । ତେଣୁ ଏ ଭୂମି ହୋଇଛି ବହୁ ଦର୍ଶନବାଦର ଜନ୍ମସ୍ଥଳୀ । ଶାକ୍ତବାଦ, ନାସ୍ତିକବାଦ ପ୍ରଭୃତି ଦର୍ଶନ ଏଠି ମୁଣ୍ଡ ଟେକି ଉଠିଛି । ମାତ୍ର ହଣ୍ଟରଙ୍କ ପରି ସାଧାରଣ ଚିନ୍ତକ ଏହାର ଗୂଢ଼ ମର୍ମ ବୁଝି ନ ପାରି ଦର୍ଶନକ୍ଷେତ୍ରରେ ଓଡ଼ିଆଙ୍କର କିଛି ଦାନ ନାହିଁ ବୋଲି ପ୍ରକାଶ କରିଛନ୍ତି । ହେଲେ ହଣ୍ଟର ହେଉଛନ୍ତି ଏ ଦର୍ଶନବାଦ ନିକଟରେ ଶିଶୁମାତ୍ର । ଏ ଚିନ୍ତା ଓ ଦର୍ଶନ ପାଖରେ ତାଙ୍କର ଶିକ୍ଷା ପରାହତ ।

ଏହି ଓଡ଼ିଶାରେ ଅଳଙ୍କାର ଶାସ୍ତ୍ରର ପ୍ରଭୂତ ବିକାଶ ଘଟିଥିଲା । ରସକାର, ଆଳଙ୍କାରିକ, ବୈୟାକରଣିକ, ସଙ୍ଗୀତଜ୍ଞ, ଭକ୍ତ ଏପରି କି ଅଶରୀରୀ ଶକ୍ତି ମଧ୍ୟ ଓଡ଼ିଶାର ଆଦିମ ସଭ୍ୟତାକୁ କ୍ରମଶଃ ନିଜର ମାନସିକ ଶକ୍ତିଦ୍ୱାରା ସମୃଦ୍ଧ କରିପାରିଥିଲା ।

ଏ ହେଉଛି ପ୍ରାଚ୍ୟ ଦେଶ । ପ୍ରଥମ ଲୋହିତ ତପବାଳର ଅଭ୍ୟୁଦୟ ଘଟିଥିଲା ଏଇଠି । ଜଗତର ନାଥ ଜଗନ୍ନାଥ ଏଯାଏ ଏଠି ବିରାଜିତ । ଏ ଶକ୍ତିକୁ ବୁଝ, ଗ୍ରହଣ କର, ଆଉ ସମୃଦ୍ଧ ହୋଇ ଫେରିଯାଅ । ଏ ସାଗର ତୁମକୁ ଆଶୀର୍ବାଦ କରୁଛି, ଆଶୀର୍ବାଦ କରୁଛି ଏ ପର୍ବତମାଳା, ଚିରହାସ୍ୟିତ ଶସ୍ୟକ୍ଷେତ୍ର ।

ଦେଖିବାକୁ ଅନେକ ମାତ୍ର ତା' ଅପେକ୍ଷା ଅନୁଭବ କରି ବୁଝିବାର ରହିଛି ଅଧିକ । ଏ କଙ୍ଗୋଦ, କଳିଙ୍ଗ, ଓଡ୍ର, ଉତ୍କଳ, ଓଡ଼ିଶା ସତରେ କ'ଣ ନୁହେଁ ! ! ତିନି ହଜାର ବର୍ଷ ତଳେ ଏଇ ଭୂମିରେ ଜୈନଧର୍ମର ମୂଳଭିତ୍ତି ସ୍ଥାପିତ ହୋଇଥିଲା । ଯୁଗ ବିତି ଯାଇଛି । ଯୁଗ ପୁଣି ଆସୁଛି । ସ୍ୱାଗତମ୍ ।

* * *

# ଓଡ଼ିଆର ଜାତୀୟ ଜୀବନ

ବହୁ ଦିନରୁ ଓଡ଼ିଆ ପରାଧୀନତାର ଶୃଙ୍ଖଳରେ ଜର୍ଜରିତ । ଓଡ଼ିଆର ପ୍ରାଣ ନାହିଁ, ତାର ମଧ୍ୟଭାଗରେ ସୌରଭ ନାହିଁ, ସେ ମୁମୂର୍ଷୁ । ତାର ନିବେଦନ ପ୍ରାର୍ଥନା ଆଜି କେହି ଶୁଣୁନାହିଁ । ତାର ବନଗର୍ଭ ଅନ୍ତସ୍ଥଳରୁ ତାର ଦିଗ୍‌ଭ୍ରାନ୍ତ ଭଳି ଚକିତ ହୋଇ ଚାହିଁ ରହିଛି । ଏହାର କାରଣ ଅନେକ । କଳିଙ୍ଗ ସଭ୍ୟତା ଯେତେବେଳେ ଉନ୍ନତ ଥିଲା, ସେତେବେଳେ ଓଡ଼ିଶା କର୍ମ ଥିଲା । କଳିଙ୍ଗ ସାମ୍ରାଜ୍ୟ ବହୁ ବିସ୍ତୃତ ଓ ବହୁ ପ୍ରଭାବଶାଳୀ ଥିଲା । ତାର ସେହି ଆର୍ଯ୍ୟ ସଭ୍ୟତା ବ୍ରହ୍ମଦେଶ, ସୁମାତ୍ରା, ଜାଭା, ବାଲିଦ୍ୱୀପ ପ୍ରଭୃତିକୁ ବିସ୍ତାରିତ କରିଥିଲା । ସେତେବେଳେ ଶୌର୍ଯ୍ୟ ଓ ବୀର୍ଯ୍ୟରେ ଓଡ଼ିଆ ଜଗତର ଅନୁଣପ୍ରମ-ଦ୍ରୁତ ବିରାଜମାନ ହୋଇଥିଲା ।

ତଳ ସେ କୁଆଡ଼େ ? ଅଶୋକଙ୍କର କଳିଙ୍ଗବିଜୟ (ଖ୍ରୀ. ପୂ. ୩ୟ ଶତାବ୍ଦୀରେ) ହୋଇଥିଲା । ଏଥିରେ ଦେଢ଼ ଲକ୍ଷ ଲୋକ ବନ୍ଦୀ ଓ ଏକ ଲକ୍ଷ ନିହତ ହୋଇଥିଲେ । ତଥାପି ଏହା ଓଡ଼ିଆ ଜାତିକୁ ଦୁର୍ବଳ କରି ନ ଥିଲା । କାରଣ ଓଡ଼ିଆ ସେତେବେଳେ ମଗଧକୁ ବରଂ ଜୟିବା ପାଇଁ ଭୟ କରୁ ନ ଥିଲା । କଳିଙ୍ଗଯୁଦ୍ଧ ପୂର୍ବରୁ ଅଶୋକ ଚଣ୍ଡାଶୋକ ଥିଲେ । ମାତ୍ର ସେ କଳିଙ୍ଗଯୁଦ୍ଧ ପରେ ଧର୍ମାଶୋକରେ ପରିଣତ ହୋଇଥିଲେ । ଖାରବେଳ କଳିଙ୍ଗ ରାଜା (ଖ୍ରୀ. ପୂ. ୧୮୮) ଓଡ଼ିଶା ଶାସନ କଲେ । କଳିଙ୍ଗଯୁଦ୍ଧ ପରେ ଓଡ଼ିଆ ଶାନ୍ତ ହୋଇ ନ ଥିଲେ । ଯୁଦ୍ଧରେ ହାରିଲେ ଲୋକେ ଶାନ୍ତ ହୁଅନ୍ତି ନାହିଁ । ଯୁଦ୍ଧରେ ହାର ବା ଜିତ ଅଛି । ସେଥିପାଇଁ କିଛିମାତ୍ର ଭ୍ରୂକ୍ଷେପ କଲେ ନାହିଁ । ପରେ ଖାରବେଳ ପୁଣି ମଗଧ ଖେଦିଲେ । କିନ୍ତୁ ଏହି ସମୟଠାରୁ କଳିଙ୍ଗ ସଭ୍ୟତା କ୍ରମେ କ୍ରମେ ପରିବର୍ତ୍ତିତ ହେବାକୁ ଲାଗିଲା । ବହିର୍ମୁଖୀ କଳିଙ୍ଗ ସଭ୍ୟତା ସେହି ସମୟଠାରୁ ଅନ୍ତର୍ମୁଖୀ ହେବାକୁ ଲାଗିଲା । ଏହି ନୂତନ ସାଧନା ପ୍ରଥମ ଖ୍ରୀଷ୍ଟାବ୍ଦରୁ ଆରମ୍ଭ ହୋଇ ସିଦ୍ଧିଲାଭ କରିବାକୁ ଓଡ଼ିଆଜାତିକୁ ପ୍ରାୟ ସାତ ଶହ ବର୍ଷ ଲାଗିଲା ।

ସେତେବେଳେ ଅଶୋକଙ୍କର ବୌଦ୍ଧ ଧର୍ମ ପ୍ରଚାର ଚାଲିଲା, ସେତେବେଳେ ଓଡ଼ିଆ ଅନ୍ତର୍ମୁଖୀ ହେଲା ଏବଂ ଶେଷରେ କେତେ କୃଚ୍ଛ୍ର ତାନ୍ତ୍ରିକ ସାଧନାରେ ପାରଙ୍ଗମ ହେଲା । ଏହାର ପରିପୂର୍ଣ୍ଣତା ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ହେଲା । ଏହାପରେ ଓଡ଼ିଆ ଜାତିଟା ବହିର୍ମୁଖୀନତାରୁ ଅନ୍ତର୍ମୁଖୀନତାକୁ ଅଗ୍ରସର ହେଲା । ଶିଳ୍ପ, ସାହିତ୍ୟ, ସଙ୍ଗୀତ, ଚିତ୍ର, ସୌଜନ୍ୟ, ଔଦାର୍ଯ୍ୟ, ତିତିକ୍ଷା କେଉଁଥିରେ ହିଁ ଓଡ଼ିଆ କମ୍ ନ ଥିଲା ।

ପ୍ରଥମ ମାନବଜାତି ଏହି ଧରିତ୍ରୀ ତଳେ ଭାରତର ପୂର୍ବ ପ୍ରାନ୍ତରେ ମହାନଦୀ-ଠାରୁ ଗୋଦାବରୀ ମଧ୍ୟରେ ଗୋଚରୀଭୂତ ହୋଇଥିଲା ବୋଲି କେହି କେହି

ପ୍ରତ୍ନତାତ୍ତ୍ୱିକଙ୍କର ମତ । ସଂସ୍କୃତ-ସାହିତ୍ୟ ବୈଭବ କିଛି କମ୍ ନ ଥିଲା । ପୁଣି ଯେତେବେଳେ କାଳକ୍ରମେ ପ୍ରାକୃତ ଓଡ଼ିଆ ଭାଷାର ସୃଷ୍ଟି ହେଲା, ସେତେବେଳେ ଓଡ଼ିଆ ସାହିତ୍ୟର ବୈଭବ ଫୁଟିଉଠିଲା । ଉପେନ୍ଦ୍ର ଭଞ୍ଜ ସେହି ଓଡ଼ିଆ ସାହିତ୍ୟର ଶୀର୍ଷ ବା ଚୂଡ଼ା ।

ସମରପ୍ରିୟ ଜାତିଟା ଶାନ୍ତିପ୍ରିୟ ଥିଲା । କିନ୍ତୁ ଯେତେବେଳେ ସାହିତ୍ୟ, ସଙ୍ଗୀତ, ସ୍ଥାପତ୍ୟ ପ୍ରଭୃତିର ସୃଷ୍ଟି ହେଲା, ସେତେବେଳେ ଜାତିଟା ବୀର୍ଯ୍ୟ ବା ଚେତନାଶୂନ୍ୟ ହୋଇଯାଇଥିଲା ।

ହିନ୍ଦୁସଭ୍ୟତା ପରେ ଭାରତରେ କିଛି ସମୟ ମୁସଲମାନ ସଭ୍ୟତା ହିନ୍ଦୁସଭ୍ୟତା ସହିତ ଯୁଦ୍ଧ କରି ଜୟୀ ହେଲା । ତା ପରେ ପାଶ୍ଚାତ୍ୟ ଦେଶର ଜଡ଼ବିଜ୍ଞାନ ଏ ଦେଶକୁ ଆବୋରି ପକାଇଲା । ଜାତି ମଧ୍ୟରେ ଦୈନ୍ୟତା ଓ କୃତ୍ରିମ ବିଧାନ ପ୍ରବେଶ କଲା ।

ଓଡ଼ିଆ ଧୀରେ ଧୀରେ ପଶ୍ଚାତ୍‌ପଦ ହେଲା । କାରଣ ମୁସଲମାନ ବା ପାଶ୍ଚାତ୍ୟ ସଭ୍ୟତା ଓଡ଼ିଆ ସଭ୍ୟତାକୁ ଯେପରି ଭାବରେ ଗ୍ରାସ କରି ନ ଥିଲା ସେପରି ବା ଭାରତର ଅନ୍ୟାନ୍ୟ ପ୍ରଦେଶକୁ ଏହା ପାରିଛି । ସୁତରାଂ ବର୍ତ୍ତମାନ ଜଗତର ମାପକାଠିରେ ଓଡ଼ିଆ ଜାତି ପଶ୍ଚାତ୍‌ପଦ । କିନ୍ତୁ ମାପକାଠି ଅନେକ ରକମର ହୁଏ । ହୀରା ମପାଯାଏ ଯେଉଁ ତୁଳାଦଣ୍ଡରେ, ସୁନା ମପାଯାଏ ନାହିଁ ସେହି ତୁଳା-ଦଣ୍ଡରେ । ହୀରାମପା ତୁଳାଯନ୍ତ୍ର ଏବଂ ସୁନାମପା ତୁଳାଯନ୍ତ୍ର ମଧ୍ୟରେ ଅନେକ ଫରକ୍, ଅନେକ ତଫାତ୍ । କାହାକୁ ବଡ଼ କରିବ, କାହାକୁ ଶ୍ରେଷ୍ଠ କରିବ, କିଏ । ଯେଉଁ ଜାତି ଭୁବନେଶ୍ୱର, କୋଣାର୍କ ତିଆରି କରି ଥୋଇ ଦେଇଛି, ଯେଉଁ ଜାତି ଓଡ଼ିଶାରେ ମନ୍ଦିର ତିଆରି କରି ଜଗତକୁ ବିସ୍ମିତ କରିଛି ଏବଂ ଆଜି ପର୍ଯ୍ୟନ୍ତ ଯାର ସମକକ୍ଷ ଆଉ କେହି ହୋଇ ପାରିନାହିଁ, ସେ ଜାତିର ମହତ୍ତ୍ୱ ଯେ ବୁଝିବାର ଲୋକ, ସେ ବୁଝିବ । ଜଙ୍ଗଲର ବାଘଭାଲୁ ତାହା ବୁଝି ପାରିବେ ନାହିଁ । ସାମ୍ରାଜ୍ୟ ଗଠନରୁ ଓଡ଼ିଆ ମନ୍ଦିର ଗଠନ ଦିଗରେ ମନ ଦେଇ ସେଥିରେ ଅଶେଷ କୃତିତ୍ୱ ଦେଖାଇଲା । ଏହାହିଁ ଲକ୍ଷ୍ୟ କରିବାର କଥା । କଳିଙ୍ଗବିଜୟ ଠାରୁ ଏକ ହଜାର ବର୍ଷ ମଧ୍ୟରେ ଓଡ଼ିଆ ଶିଳ୍ପ ସ୍ଥାପତ୍ୟରେ ଜଗତରେ ଅଗ୍ରଣୀ ହେଲା । ଓଡ଼ିଆ ଶିଳ୍ପୀ, ଏ କଥା କ ଭୁଲିବା କଥା । ଓଡ଼ିଆ ଜଗନ୍ନାଥ ମନ୍ଦିର, କୋଣାର୍କ ମନ୍ଦିରରେ ଜାତିର ସମସ୍ତ ବଳସ୍ୱ, ଜାତିର ସମସ୍ତ ପରିଶ୍ରମ, ସମସ୍ତ ସାଧନା, ଚିନ୍ତା ବ୍ୟୟିତ ହୋଇଛି—କମ୍ କଥା ନୁହେଁ । ଓଡ଼ିଆ ଜାତିର ରାଜା ସମର, ଓଡ଼ିଆ ଜାତିର ରାଜା ପଣ୍ଡିତ, ଓଡ଼ିଆ ଜାତିର ରାଜା ଧର୍ମବୀର, ଓଡ଼ିଆ ଜାତିର ରାଜା ଜାତିର ସେବକ—ମେହେନ୍ତର, ଝାଡ଼ୁଦାର, ଚଣ୍ଡାଳ । ସମସ୍ତଙ୍କ ସଙ୍ଗେ ତାର ବୀର୍ଯ୍ୟ ଅଛି, ସାଧନା ଅଛି, ଥିଲା । ବୀର ବୀର ଓ ସାଧକ ଥିଲେ । ପ୍ରତାପରୁଦ୍ର ଦେବ ବୀର ଓ ଭକ୍ତ ତଥା ପୁରୁଷୋତ୍ତମ ଦେବ ତଥା ଅନ୍ୟାନ୍ୟ ଅନେକ । କ୍ଷମତା – ଏକ-ଚ୍ଛତ୍ରାଧିପତିର କ୍ଷମତା ଥିଲା, ଗୌରବ ଥିଲା; କିନ୍ତୁ ନ ଥିଲା ଗର୍ବ । ନିଜଠାରେ ସମସ୍ତ ଦାୟିତ୍ୱ ରଖି ସୁଦ୍ଧା ଓଡ଼ିଆ ରାଜା କ୍ଷମତାପୂର୍ଣ୍ଣ ନ ଥିଲା । ସେ ଜାତିର,

ସେବକ ଥିଲା । ସେ ଶୂଦ୍ର ଥିଲା, ପୁଣି ସ୍ଥାନରେ ସେ ବ୍ରାହ୍ମଣ ଏବଂ ବାହୁବଳରେ କ୍ଷତ୍ରିୟ ଥିଲା ।

ଏହିଠାରେ ପୁଣି ଗୋଟିଏ କଥା କହିବି । କଳିଙ୍ଗର ସାମ୍ରାଜ୍ୟ ବିସ୍ତାର ବେଳେ ଓଡ଼ିଆଜାତି କେବଳ ବୈଶ୍ୟ-ପ୍ରଧାନ ଥିଲା, ବୈଶ୍ୟ ଥିଲା । ବୈଶ୍ୟ-ପ୍ରଧାନ ହେଲେ ହେଁ କ୍ଷତ୍ରିୟପ୍ରଧାନ ହେବାକୁ ପଡ଼େ । ସେହି ଆଦର୍ଶ ଅଶୋକଙ୍କର କଳିଙ୍ଗ ବିଜୟ ପରେ ବଦଳିଗଲା । ଜାତି ଜ୍ଞାନଗୁଣ ପ୍ରଧାନ ହେଲା । ପାଣ୍ଡିତ୍ୟ, ଶିଳ୍ପ ତାର ବୃଦ୍ଧି ପାଇଲା । ଗଭୀରରୁ ସେ ଗଭୀରତମକୁ ଏକାବେଳେ ପ୍ରବେଶ କଲା । ଶିଳ୍ପୀର ଆଉ ଅବସର ରହିଲା ନାହିଁ । ସେ ମନ୍ଦିର-ଗାତ୍ରରେ ଅସଂଖ୍ୟ କାରୁକାର୍ଯ୍ୟ ସ୍ଥାପନ କଲା । ତାର ବଳଶାସନ ଶିଥିଳ ହେଲା ସତ୍ୟ, ମାତ୍ର ମାନବତା ତାର ନିଜ ମନକୁ ଶାସନ କରିବାକୁ ଲାଗିଲା । ବୁଦ୍ଧଦେବ ଠିକ୍ କହିଥିଲେ—ମନୁଷ୍ୟ ସମଗ୍ର ସାମ୍ରାଜ୍ୟ ଜୟ କରିପାରେ, କିନ୍ତୁ ନିଜର ମନକୁ ଜୟ କରି ପାରେ ନାହିଁ । ଓଡ଼ିଆ ସାମ୍ରାଜ୍ୟ ଜୟ କରିବା ଛାଡ଼ି ଆପଣା ମନକୁ ଜିଣିବାକୁ ବସିଲା । ଚଞ୍ଚଳ ମନକୁ ଜୟ କରିବାକୁ ବସିଲା ସେତେବେଳେ ଆସିଲା ତନ୍ତ୍ର ସାଧନ । ଏହା ଅଷ୍ଟମ ଶତାବ୍ଦୀର କଥା । ଏହି ଶତାବ୍ଦୀରେ ଓଡ଼ିଆର ସାମ୍ରାଜ୍ୟ ତିଆରି ହେଲା । ଏହା ମାନବକୁ ଶାସନ କଲା । ଏହା ଭାରତ-ବର୍ଷରେ ବ୍ୟାପ୍ତ ହେଲା । କଳିଙ୍ଗ ସାମ୍ରାଜ୍ୟ ପରି ଏହା ବିସ୍ତୃତ । ଏହାର ଶାସନ କମ୍ ଶାସନ ନୁହେଁ । ମାତ୍ର ଏହା ରାଜନୀତି ନୁହେଁ, ଏହା ସନ୍ନ୍ୟାସମନ୍ତ୍ର । ଏହା ଭୋଗମନ୍ତ୍ର ନୁହେଁ, ଏହା ତ୍ୟାଗମନ୍ତ୍ର । ପୁରାତନ ପନ୍ଥା ଭାଙ୍ଗିଗଲା, ନୂତନ ପନ୍ଥା ଗଢ଼ିଉଠିଲା ।

* * *

# ଓଡ଼ିଆ ଭାଷାର ବୁଦ୍ଧିବୈଭବ

The genius of a language—ଏହି କଥାଟି ଇଂରାଜୀରେ ଆମ୍ଭେମାନେ ପଢ଼ୁଁ । ଓଡ଼ିଆ ଭାଷାର genius ଜନସଟା କଣ, ଏହି ବିଷୟରେ କେତେ ଜଣ ଆଲୋଚନା କରିଛନ୍ତି । Genius କହିଲେ ଭାଷାର ବିଶେଷତ୍ୱ ବୁଝାଏ । ଓଡ଼ିଆ ଭାଷାର ବିଶେଷତ୍ୱ କେଉଁଠାରେ ? ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଏହାର ସନ୍ଧାନ ମିଳିବ । ଆଧୁନିକ ଯୁଗର ଓଡ଼ିଆ ସାହିତ୍ୟରେ ଓଡ଼ିଆ ଭାଷାର genius ଏକାବେଳେ ତ ଲୁପ୍ତ ହୋଇଛି ଅଥବା କ୍ରମେ କ୍ରମେ ହେଉଅଛି କହିବାକୁ ହେବ । ଆଧୁନିକ ଯୁଗର ଓଡ଼ିଆ ବଙ୍ଗଭାଷାର genius ଦ୍ୱାରା ଆକ୍ରାନ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ । ବର୍ତ୍ତମାନ ଓଡ଼ିଆ ଭାଷାର ବିଶେଷତ୍ୱ ମୁଁ ଖୋଜି ପାଏ ନାହିଁ । ଯାହା ଆମର ବିଶେଷତ୍ୱ ବୋଲି ଦାବୀ କରିବାକୁ ଯିବୁ, ତାହା ବଙ୍ଗଳାରେ ହିଁ ମିଳିବ । ମୋ ବିଚାରରେ ଓଡ଼ିଆ ଭାଷାର genius ତାହାର ଶବ୍ଦରେ । ପୁରୁଣା ସାହିତ୍ୟଗ୍ରନ୍ଥ ଅଧ୍ୟୟନ କଲେ ଆମ୍ଭେମାନେ ଏପରି କେତେଗୁଡ଼ିଏ ଶବ୍ଦର ସମ୍ପର୍କରେ ଆସୁ, ଯାହା କି ଏକାବେଳେ ଆମ୍ଭମାନଙ୍କୁ ଯେ ନୂତନ, ଏ କଥା ନୁହେଁ ବୋଲି ବେଶ୍ ଉପଲବ୍ଧି ହୁଏ । ଆଉ ସେହି ଶବ୍ଦଗୁଡ଼ିକ ବ୍ୟବହାର କରିବା ପାଇଁ ମନ ସ୍ୱତଃ ଆକୃଷ୍ଟ ହୁଏ । କାରଣ ଭାଷାର genius ଯେଉଁଠାରେ, ସେହିଠାକୁ ହିଁ ଲୋକ ଆକୃଷ୍ଟ ହୁଏ । ଏହିସବୁ ଶବ୍ଦ ଛଡ଼ା ଓଡ଼ିଆ ଭାଷାର ଆଉ ଗୋଟିଏ genius ଅଥବା ସେହି ଗୋଟିଏ genius ମଧ୍ୟରେ ଆଉ ଗୋଟିଏ ଗୁଣ ଅଛି । ସେ ଗୁଣଟି ଅଥବା ବିଶେଷତ୍ୱଟି ତାହାର ଚଉତିଶାମାନ, ତାହାର ଅ ଠାରୁ ଆରମ୍ଭ କରି କ୍ଷ ପର୍ଯ୍ୟନ୍ତ ଲେଖିବା, ଗୋଟାରେ ବର୍ଣ୍ଣ ନେଇ ବାହାଦୁରି କରିବା, ତାହାର ବାହାରର ମାପଚ୍ଚ୍ଛ । ଏ ଯେ, ଅନେକ ହୋଇଗଲା । ଗୋଟିଏ ଗୁଣ କହୁଁ କହୁଁ ଏ ଯେ ଅନେକ କହି ପକାଇଲି । ଯେଉଁମାନେ ଉପେନ୍ଦ୍ର ଭଞ୍ଜ ପଢ଼ିଛନ୍ତି, ସେମାନେ ଏହା ବୁଝିପାରିବେ । ଯେଉଁମାନେ ଗୋପାଳ ଦ୍ରବରାଜଙ୍କ ଚଉତିଶାମାନ ପଢ଼ିଛନ୍ତି ସେମାନେ ବୁଝି-ପାରିବେ । ଯେଉଁମାନେ ଫକୀର ମୋହନଙ୍କ ଉପନ୍ୟାସ ପଢ଼ିଛନ୍ତି ସେମାନେ ବୁଝି ପାରିବେ । ଏହା ଛଡ଼ା ଓଡ଼ିଆ ସାହିତ୍ୟରେ କରୁଣ ରସଟି ପ୍ରଧାନ genius । ତାର ସମସ୍ତ ସାହିତ୍ୟରେ ଏହା ପ୍ରକାଶିତ ହୋଇପାରିଛି । ଓଡ଼ିଶାର ଦୈନ୍ୟ ଓଡ଼ିଶାର ଦୁର୍ଦ୍ଦଶା ତାର କଣ-କଣରେ କରୁଣ ସ୍ୱର ହିଁ ଉଠାଇଅଛି । ଏହାର ପରିଚୟ ବା ପ୍ରମାଣ ଦେବାପାଇଁ ବିଶେଷ ଚେଷ୍ଟାର କୌଣସି ପ୍ରୟୋଜନ ନାହିଁ । "ଅଭାବ ହୋଇଲା", "ଫୁଲ ବଉଳବେଣୀ" ପ୍ରଭୃତି ପୁସ୍ତକ ପଢ଼ିଲେ ଜଣାଯାଏ । ରାଧାନାଥଙ୍କ ପରି କବିଙ୍କର

ଚଳନ୍ତା, ଦରବାର ପଦ୍ୟରେ ସର୍ବତ୍ର ଏହି ସଙ୍ଗୀତ ଧ୍ୱନି ଶୁଣିପାରିବ । ଓଡ଼ିଶାର genius ତାର ଲକ୍ଷ୍ମ ସଙ୍ଗୀତରେ କହିଲେ ଅନ୍ୟାୟ ହେବ କି ? ମଧୁସୂଦନ ଏକା ହିଁ ତ ଏହାର ପ୍ରକୃଷ୍ଟ ନିଦର୍ଶନ । ପଲ୍ଲୀପ୍ରେମ ଓଡ଼ିଆ ସାହିତ୍ୟର ଆଉ ଏକ ପ୍ରକାର genius । ଗଙ୍ଗାମଣିର ଗୋପାଳକୃଷ୍ଣ ଗ୍ରନ୍ଥାବଳୀରୁ ଓ ଲଳିତାରୁ ହିଁ ଏହା ସ୍ପଷ୍ଟ ହୃଦୟଙ୍ଗମ ହେବ । ଓଡ଼ିଆ ସାହିତ୍ୟରେ ବୀରରସର ସ୍ଫୁରଣ ହୋଇନାହିଁ, ଏପରି ନୁହେଁ । ମହାଯାତ୍ରାର ରଚୟିତା ଶିବାଜୀଙ୍କ ଉଦ୍ଧାତ ବାଣୀ ଲେଖିଥିଲେ । ସମରତରଙ୍ଗ ଅନ୍ୟତମ ଗ୍ରନ୍ଥ । ଓଡ଼ିଆ ସାହିତ୍ୟର genius ଖୋଜି ଖୋଜି କେଉଁଠାରେ ଆସି ପହଞ୍ଚିଲଣି ! ମୋଟ କଥା ଏହି, ଓଡ଼ିଆ ସାହିତ୍ୟର genius ଖୋଜିବାକୁ ହେଲେ ଉପେନ୍ଦ୍ର ଭଞ୍ଜ ଫକୀରମୋହନଙ୍କର ଉପନ୍ୟାସ, ରାଧାନାଥ ଗ୍ରନ୍ଥାବଳୀ, ମଧୁସୂଦନ ଗ୍ରନ୍ଥାବଳୀ, କବି ଗୋପାଳକୃଷ୍ଣଙ୍କ ରଚନା ଓ ଲଳିତା ଗୋପାଳ ପ୍ରହରାଜଙ୍କ "ଉଦ୍ଗତମାଳ", "ଶିବାଜୀଙ୍କ ଉଦ୍ଧାତବାଣୀ" ଓ "ସମରତରଙ୍ଗ" ଏହି କେତୋଟି ଗ୍ରନ୍ଥ ପାଠ କଲେ ଜଣାପଡ଼ିବ । ଏହି ସଙ୍ଗରେ ଅରକ୍ଷିତ ଦାସଙ୍କ "ମହୀମଣ୍ଡଳ ଗୀତା" ଜଗନ୍ନାଥ ଦାସଙ୍କ "ତର ପୁରାଣ ତର ନୁହେଁ ଭାଗବତ", ଦୀନକୃଷ୍ଣଙ୍କର "ରସକଲ୍ଲୋଳ" ଯୋଗ କରିବାକୁ ହେବ । ଏହି ତିନି ଖଣ୍ଡି ଶେଷରେ ହେଲ ବୋଲି ଏମାନଙ୍କର ମୂଲ୍ୟ କିଛି ଅଳ୍ପ, ଏପରି ମନେ କରିବ ନାହିଁ । ଯେଉଁମାନେ ଏହି ଗ୍ରନ୍ଥମାନ ପଢ଼ି ନାହାନ୍ତି, ଶୁଣି ନାହାନ୍ତି, ଦେଖି ନାହାନ୍ତି, ସେମାନେ ଓଡ଼ିଆ ସାହିତ୍ୟର genius କିଛି ବୁଝି ପାରିବେ ନାହିଁ । ଓଡ଼ିଆ ସାହିତ୍ୟର genius ଲେଖିବାକୁ ଯାଇ ଶେଷରେ ଓଡ଼ିଆ ସାହିତ୍ୟର ଆବର୍ଜନା କଣ, ଟିକିଏ ନ କହି ରହିପାରୁ ନାହିଁ । ରଙ୍ଗଲତା ଗୀତ, ଶାଶୁବୋହୂ କଳି, ନଟବରର ଇତ୍ୟାଦି ପୁସ୍ତକ ଓଡ଼ିଆ ସାହିତ୍ୟର ଆବର୍ଜନା । ଏହାକୁ ପଢ଼ନ୍ତି ସେହିପରି ସମାଜର ନିମ୍ନଶ୍ରେଣୀର ଲୋକେ । ଓଡ଼ିଆ ସାହିତ୍ୟର ଆଉ କି ବାକି ଅଛି ଯାହା କି ଓଡ଼ିଆ ସାହିତ୍ୟରେ genius ଦାବି କରିପାରିବ ? ହୁଏତ ଆଉ ଖଣ୍ଡିଏ ପୁସ୍ତକ ରହିଯାଇ ଥାଇପାରେ । ଏହାଛଡ଼ା ଆଉ ସବୁ ପୁସ୍ତକ ଆଧୁନିକ ବଙ୍ଗ ସାହିତ୍ୟର ଛାୟା, ପୋଷାକରେ ଆଚ୍ଛାଦିତ । ସୁତରାଂ ସେଠାରେ ଓଡ଼ିଆ ସାହିତ୍ୟର genius ବା ଆତ୍ମା ଧରିବା ସହଜସାଧ୍ୟ ନୁହେଁ । ବର୍ତ୍ତମାନ ଶେଷରେ ଗୋଟିଏ ପ୍ରଶ୍ନ ହୋଇପାରେ, ବଙ୍ଗାନୁପ୍ରାଣିତ ସାହିତ୍ୟର ପ୍ରଭାବ କେବେ କୌଣସି କାର୍ଯ୍ୟରେ ଉପକାରରେ ଆସିବ କି ନାହିଁ ? ଉପକାରରେ ଆସିବ ନାହିଁ, ଏପରି କେହି କହି ନ ପାରେ । ଏସବୁରେ ନୂତନ ଚିନ୍ତା, ନୂତନ ଭାବ ଓ ନୂତନ ପ୍ରଣାଳୀ ଅଛି । ମାତ୍ର ମୋର କହିବାର ଉଦ୍ଦେଶ୍ୟ, ଏସବୁରେ ଓଡ଼ିଆ ସାହିତ୍ୟର genius ବା ଆତ୍ମାର ଦର୍ଶନ ମିଳିବ ନାହିଁ କି ମିଳିବା ଦୁଷ୍କର । ତେବେ କଣ ଏଣିକି ନୂତନ ଓଡ଼ିଆ ସାହିତ୍ୟ ଆତ୍ମା ହରାଇ ବସିଥିବ ? ଏହା କିପରି ଅସମ୍ଭବ ତାହା ଜଣାଯାଉଛି ।

ଯେଉଁ ସାହିତ୍ୟ ତାର ଆତ୍ମା ହରାଇବ, ସେ ତ ମୃତବତ୍; ସେ ଜାତିକୁ

ଉଦ୍‌ବୁଦ୍ଧ କରିପାରିବ ନାହିଁ, ଜାଗ୍ରତ କରିପାରିବ ନାହିଁ, ମୋର ଆଶଙ୍କା ହେଉଅଛି । ଓଡ଼ିଆ ସାହିତ୍ୟ ମୃତ୍ୟୁମୁଖରେ ପଡ଼ିବ ଯଦି ସେ ତାର ଆତ୍ମାର ସନ୍ଧାନ ଅନ୍ତର୍ଜଗତରେ ନ କରେ । ବିଦେଶୀୟ ସାହିତ୍ୟରୁ ଭାବ ନେଉ, କିନ୍ତୁ ତାହାକୁ ନିଜସ୍ୱ ନ କରିବା ପର୍ଯ୍ୟନ୍ତ ସେ ମରୀଚିକା ଭ୍ରମରେ ପଡ଼ିଥିବ । ଏହା ହିଁ ମୋର ବିଶ୍ୱାସ । ଆତ୍ମା ଅବିନଶ୍ୱର । କିନ୍ତୁ ସାହିତ୍ୟର ଆତ୍ମା କେବଳ ଅବିନଶ୍ୱର କହିଲେ ଠିକ୍ ହେବ ନାହିଁ; ଏହା ପରିବର୍ତ୍ତନଶୀଳ, ମାତ୍ର ଅବିନଶ୍ୱର, ଏହା କହିବାକୁ ହିଁ ହେବ । ଯଦି କେହି ଭୁଲକ୍ରମେ ଏହି ପରିବର୍ତ୍ତନଶୀଳତାକୁ ନଷ୍ଟ କରିବାକୁ ଚେଷ୍ଟା କରିବ, ସେ ଭୁଲ କରିବ । ପରିବର୍ତ୍ତନ ଘଟୁ, କିନ୍ତୁ ସାହିତ୍ୟର ଆତ୍ମା ଯେପରି ପୁଷ୍ଟ ଏବଂ ବଳିଷ୍ଠ ହେଉ, ଏହା ହିଁ କାମନା ।

* * *

# ବ୍ୟାବହାରିକ ବ୍ରହ୍ମଚର୍ଯ୍ୟ

ବ୍ରହ୍ମଚର୍ଯ୍ୟ ବା ଜୀବନ ଚର୍ଯ୍ୟା ସମ୍ବନ୍ଧରେ ଆମେ ଆଲୋଚନା କଲାବେଳେ ଦେଖିବୁ ଆମର ଜୀବନକୁ ଭିନ୍ନ ଭିନ୍ନ କ୍ଷେତ୍ରରେ କପରି ପରିଚାଳିତ କରିବାକୁ ହେବ । କେତେଗୁଡ଼ିଏ ସର୍ବସାଧାରଣ ସତ୍ୟ ଅଛି, ତାକୁ ଗ୍ରହଣ କରିବାକୁ ହେବ ଏବଂ ତା'ଉପରେ ଆମର ଜୀବନ ଗଢ଼ିବାକୁ ହେବ ।

ପିଲାମାନେ ! ମୁଁ ତୁମକୁ ଗୋଟିଏ ଛୋଟ କଥା କହିବି । ଏଇ ଦେଖ ଭୁବନେଶ୍ୱର ରାଜଧାନୀରେ ଯେଉଁସବୁ ଘର ହୋଇଛି, ସେଥିରେ ଗୋଟିଏ ଗୋଟିଏ ଫାଟକ ଅଛି । ଯିବାଆସିବା ବେଳେ ସେହି ଫାଟକକୁ ଖୋଲିବା ଏବଂ ବନ୍ଦ କରିବା ଅଭ୍ୟାସ ଆମକୁ କରିବାକୁ ହେବ ।

ପୁଅ, ଯୁବକ, ବଡ଼ ପଣ୍ଡିତ, ବୁଢ଼ା, ଟୋକା ସମସ୍ତେ ଭୁଲି ଯାଉଛନ୍ତି ଯେ ଫାଟକ ଫିଟାଇ ଯେତେବେଳେ କମ୍ପାଉଣ୍ଡ ଭିତରକୁ ଆସିବ, ସେତେବେଳେ ତାହାକୁ ଆଗେ ବନ୍ଦ କରିବାକୁ ହେବ । ତା'ପରେ ଅନ୍ୟ ଯା' କରିବ । କିନ୍ତୁ ପିଲାଏ କରୁଛନ୍ତି କ'ଣ ? ଫାଟକ ଠେଲି ଭିତରକୁ ପଶି ଆସୁଛନ୍ତି, ଆଉ ଫାଟକ ଖୋଲା ରହୁଛି । କହିଲେ କହୁଛନ୍ତି ମୁଁ ଭୁଲିଗଲି, ଏଇକ୍ଷଣି ତ ବୁଲିଯିବି—ଇତ୍ୟାଦି । କିନ୍ତୁ ଏପରି କଲେ ଚଳିବ ନାହିଁ । ତୁମକୁ ଅଭ୍ୟାସ କରିବାକୁ ହେବ ଯେ ଭିତରକୁ ପଶିଲେ ଫାଟକ ତତ୍‌କ୍ଷଣାତ୍ ଲଗାଇଦେବ ଏବଂ ବାହାରିଗଲେ ଫାଟକ ବନ୍ଦ କରିବ ଆଗ—ତେବେ ବୁଲିଯିବ ।

ଏତକ ଶିଖିବା ପାଇଁ ଆମକୁ ଦଶ, ବାର ବର୍ଷ ଲାଗିଯାଉଛି । ତଥାପି ଅଭ୍ୟାସ ହେଉନାହିଁ । ଏହା କି ଦୁଃଖର କଥା !

ଖାଲି ସେତକ ନୁହେଁ—ଅନେକଙ୍କୁ କହିଲେ ସେମାନେ ଆଉ ଖାତିର କରୁ ନାହାନ୍ତି ।

ଏପରି କରିବା ମହା ଅନ୍ୟାୟ । ଏହାଦ୍ୱାରା ଜାତିପୁ ଚରିତ୍ର ଗଢ଼ିଉଠିବ ସେହିପରି ଅନୁଦ୍ଦେଶ୍ୟ ଭାବରେ--ଚଳାଣିଆ ଭାବରେ ।

ଓଡ଼ିଆ ଜାତିଟାକୁ ନୂଆ କରି, କର୍ମଠ କରି, ସୁନ୍ଦର କରି ଗଢ଼ିବାକୁ ହେଲେ, ଏହା ଶିଖିବାକୁ ହେବ । ଏହିପରି କାର୍ଯ୍ୟ କରିବାକୁ ହେବ । ତା' ନ ହେଲେ ଜାତି ଉପରକୁ ଉଠି ପାରିବ ନାହିଁ, ତଳକୁ ତଳକୁ ଖସିଯିବ । ଶୃଙ୍ଖଳା ବା ବ୍ରହ୍ମଚର୍ଯ୍ୟ ଏହା ହିଁ ମଧ୍ୟ ଦୃଷ୍ଟି ଦିଏ ଏବଂ ଶିକ୍ଷା ଦିଏ ।

ସେହିପରି ସଫାଇ ରଖିବା । ଘର ଭିତରେ ସବୁ ଜିନିଷ ସବୁବେଳେ ସଜାଇ ରଖିବା ଦରକାର । ଆମ ଓଡ଼ିଆଙ୍କ ଘରେ ମାଇପେ, ପିଲାଛୁଆଏ ଏହି କଥାଟି ଜାଣନ୍ତି ନାହିଁ । ଏହାର ବଡ଼ ଅଭାବ ଅଛି । ଅବଧୂତ ଭଳିଆ ଆମେ ରହୁ—

ଅଳିଆଆବର୍ଜନା କରି ସବୁ ଜିନିଷ ଏଠିସେଠି ରଖି । କୌଣସି ବସ୍ତୁର ନିର୍ଦ୍ଦିଷ୍ଟ ସ୍ଥାନ ନାହିଁ । ଗୃହିଣୀଟା କେଉଁଠି ରହିବ, ତା'ର ବି ଠିକଣା ନାହିଁ । ତେଣୁ ଘର ଓଳାଇବା ବେଳକୁ ଗୃହିଣୀ ଖୋଜା ଲାଗିଥାଏ । ଏହା କେଡେ ଅଶୋଭନୀୟ କଥା । ଜୋତା ଘର ଚାରିଆଡ଼େ ବୁଲୁଥାଏ, ଗାମୁଛା ଯେଉଁଠି ସେଇଠି ପଡ଼ିଥାଏ । ଅଳିଆ ମେଞ୍ଚାଏ ଏଠି, ଆଉ ମେଞ୍ଚାଏ ସେଠି—ଆଉ କୋଣ କୋଣରେ କାଗଜ, ରେଶା, ଏପରି କି ଟଙ୍କାର, ଛେପ, ପାନପିକ ମଧ୍ୟ ପଡ଼ିଥାଏ ।

ନା, ଏ ଅଭ୍ୟାସ ଛାଡ଼ିବାକୁ ହେବ ।

ଆମର ଭାରତରେ, ଓଡ଼ିଆ ଜାତି ଭିତରେ ଖ୍ରୀଷ୍ଟିଆନ୍‌ମାନଙ୍କ ଘରେ—ସେ ଯେତେ ଗରିବ ହୁଅନ୍ତୁ ନା କାହିଁକି—ସାଧାରଣତଃ ଅପେକ୍ଷାକୃତ ପରିଷ୍କାର ଥାଏ । ଆମେ କାହିଁକି ତାହା ନ ଶିଖିବୁ ?

ବ୍ରହ୍ମବିଦ୍ୟା ସମିତିର ପ୍ରଧାନ କେନ୍ଦ୍ର ଅଡ଼ିଆରକୁ ଗଲେ ଆମେ ଦେଖିବୁ ସବୁ ଘରଦ୍ୱାର, ବାଡ଼ିବଗିଚା କିପରି ପରିଷ୍କାର ହୋଇ ରହିଛି ।

ବ୍ରହ୍ମବିଦ୍ୟା ସମିତିର ସଭାପତି ଥିଲେ ଅରୁଣ୍ଡେଲ । ସେ ଥରେ କୌଣସି ଆଲୋଚନା-ଚକ୍ରରେ କହିଥିଲେ ଯେ, ଲୋକେ କହନ୍ତି "ପରିଷ୍କାର ପରିଚ୍ଛନ୍ନ ରହିବା ଦେବତ୍ୱର ପାଖାପାଖି," କିନ୍ତୁ ସେ କହୁଥିଲେ, "ମୁଁ କହେ, ପରିଷ୍କାର ପରିଚ୍ଛନ୍ନତା ହିଁ ଦେବତ୍ୱ, ସୁନ୍ଦରତା, ମହତ୍ତ୍ୱ, ମଧୁରତା ।"

ଥରେ ଅରୁଣ୍ଡେଲ ମୋ ଘରକୁ ଆସି ଦେଖିଲେ ଯେ, ମୁଁ କାନ୍ଥରେ କ୍ୟାଲେଣ୍ଡର ସବୁ ଝୁଲାଉଛି । ସେ ଏହା ସହ୍ୟ କରି ପାରିଲେ ନାହିଁ । ଆଉ ପଚାରିଲେ, ତୁମେ କ'ଣ ଏହି ସବୁ କ୍ୟାଲେଣ୍ଡର ଏଜେଣ୍ଟ ? ମୁଁ କହିଲି, ନା, ଛବି ଅଛି ବୋଲି ଝୁଲାଉଛି । ତେଣୁ ସେ କହିଲେ, ଓଃ ତୁମେ ଏତେ ଛବିପ୍ରିୟ ! ତା'ହେଲେ ଛବିଗୁଡ଼ିକ କାଟି ଗୋଟିଏ ଏଲ୍‌ବମ୍ କରି ରଖୁନାହଁ ? ମୁଁ କହିଲି ସେଥିରେ ତାରିଖ ଅଛି । ତେଣୁ ସେ କହିଲେ, କେତେଟା ଜାଗାରେ ତାରିଖ ଦେଖିବ କି ? ଗୋଟିଏ ବର୍ଷର ତାରିଖ କାଢ଼ି ଟେବୁଲ ଉପରେ ରଖିଲେ ତ ହେଲା । ମୋତେ ଏହି ସବୁ କଥା ମାନିନେବାକୁ ହିଁ ହେଲା । ସତ କଥା ତ ସବୁ । ଏଥିରେ ଯୁକ୍ତି କରିବାର କ'ଣ ଅଛି ?

ବସ୍ତୁତଃ, ଏହି ଶାଶ୍ୱତ ଜୀବ ମନୁଷ୍ୟ ଉନ୍ନତି ପାଇଁ ନିରନ୍ତର ଚେଷ୍ଟା ଚାଲିଥିବ । ଉପରକୁ ଉପର ଉଠିବା ପାଇଁ ସବୁବେଳେ ଆମକୁ ଅଭ୍ୟାସ କରିବାକୁ ହେବ, ଜୀବନକୁ ସବୁ ଦିଗରେ ସୁନ୍ଦର କରିବାକୁ ଚେଷ୍ଟା କରିବାକୁ ହେବ ଏବଂ ସବୁବେଳେ ମନେ ରଖିବାକୁ ହେବ ଯେ ଏହି ସତତ ପ୍ରୟାସ ଆମର କାମ୍ୟ । ଆଉ ଆମ ଜୀବନର ଗତି, ମୁକ୍ତି, ଉନ୍ନତି ପାଇଁ ସବୁବେଳେ ଆମକୁ ସେହି ଉତ୍ତମ, ମହତ୍ତମ ଶକ୍ତି ସହିତରେ ଯୁକ୍ତ କରି ରଖିବାକୁ ହେବ । ତାହା ହେଲେ ଆମେ ଭିତରର ପ୍ରେରଣା ପାଇ ପାରିବୁ । ଗୁରୁଜନମାନଙ୍କୁ ଏହା ଜାଣିବାକୁ ହେବ ଯେ ପ୍ରତ୍ୟେକ ଶିଶୁର ଗୋଟିଏ ଆତ୍ମା ଅଛି । ସେ ସ୍ୱତନ୍ତ୍ର । ଆମେ ତାର ଖାଦ୍ୟ-ପେୟର ବନ୍ଦୋବସ୍ତ କରୁ । କିନ୍ତୁ ତା'ର ଆତ୍ମାର ଉନ୍ନତି ପାଇଁ ସେତେ ଚିନ୍ତା କରୁନାହିଁ ।

କିନ୍ତୁ ଶାସିବା ଉଚିତ—ବୁଝିବା ଉଚିତ । ଆମେ ସବୁ ଶରୀର ଧାରଣ କରି ରହିଲେ ମଧ୍ୟ, ଆମେ ଗୋଟିଏ ଗୋଟିଏ ଆତ୍ମା । ପ୍ରତ୍ୟେକ ଭିନ୍ନ ଏବଂ ପ୍ରତ୍ୟେକ ଆତ୍ମା ଗୋଟିଏ ଘରେ ଆସି ପଡ଼ିଅଛୁ । ସେ କିପରି ତାର ସ୍ୱାଧୀନତା ରକ୍ଷା କରି ଜୀବନପଥରେ ଅଗ୍ରସର ହୋଇପାରେ, ତାହା ଆମକୁ ଲକ୍ଷ୍ୟ କରିବାକୁ ହେବ ।

ଏହା ଆମେ ଦେଖିଛୁ, ଗ୍ରେଟ ପିଲା ଗ୍ରେଟ ପିଲାଙ୍କ ସାଙ୍ଗରେ ଖେଳେ, ରହେ, ଘର କରେ, ନାଚେ, ଗାଏ । ସମବୟସ୍କ ସନ୍ତାନରେ ସମବୟସ୍କର ପ୍ରୀତି ହୁଏ—ସେହି ହିସାବରେ ଠିକ୍ ସତ୍‌ମାର୍ଗରେ ସମବୟସ୍କଙ୍କ ମିଶିବାରେ ଜୀବନ ଚଳାଇବାକୁ ହେବ, ସେହି ଚେଷ୍ଟା କରିବାକୁ ହେବ । ସେହି ଲକ୍ଷ୍ୟ ରଖିବାକୁ ହେବ ।

ଆଉ ଗୋଟିଏ କଥା, ଗ୍ରେଟପିଲା ଯେତେ ଯାହା ସାଙ୍ଗରେ ମିଶୁ, ଖେଳୁ, ଶେଷରେ ସେ ମାଆକୁ ଖୋଜେ । ଅତଏବ ମା'କୁ ତା'ଠାରୁ ବଞ୍ଚିତ ରଖିବାକୁ ହେବ ନାହିଁ । ତାହା ଉଚିତ ନୁହେଁ ।

ଆଜି ହଷ୍ଟେଲ ପ୍ରଣାଳୀ ହୋଇଛି । କିନ୍ତୁ ହଷ୍ଟେଲ ଠାରୁ ପିଲା ଘରବାର ଭିତରେ ରହି ପଢ଼ିଲେ ବଢ଼ିଲେ, ଭଲ ହେବ । କେବେ କଥା ହେଉଛି, ଆମ ପରିବାର ବର୍ଗଙ୍କର ସେପରି ଶିକ୍ଷାଦୀକ୍ଷା ହେବା ଦରକାର । ତାହା ନ ହେଲେ ଭଲ ଫଳ ମିଳିବ ନାହିଁ । ମା'ଙ୍କୁ disciplinarian ବା ନିୟମନିଷ୍ଠ ହେବାକୁ ହେବ ।

କୃଷ୍ଣମୂର୍ତ୍ତି ଥରେ କହିଥିଲେ, ମୁଁ ବିଲାତ ଦେଖିବା ପୂର୍ବରୁ ବରାବର ଭାବୁଥାଏ, ମୋତେ ଯଦି ଆଉ ଥରେ ଜନ୍ମିବାକୁ ହେବ, ତାହା ହେଲେ ମୁଁ ଯେପରି ଭାରତବର୍ଷରେ ଜନ୍ମଗ୍ରହଣ କରେ । କିନ୍ତୁ ବିଲାତ ଦେଖିବା ପରେ ମୁଁ ଭାବିଲି ଯେ ମୋତେ ଯଦି ଆଉ ଥରେ ଜନ୍ମଗ୍ରହଣ କରିବାକୁ ହୁଏ, ତା'ହେଲେ ମୁଁ ଯେପରି ଲଣ୍ଡନରେ ଜନ୍ମଗ୍ରହଣ କରେ । ତା ପରେ ଭାରତରେ ପ୍ରେମର ବୁଢ଼ୁଆ ଫିଟା ହୋଇ ପଡ଼ିଛି—ଛୁଆଟା ଆଜି ମା' ପାଖରେ ଶୋଉଛି । କାଲି ବୁଢ଼ୀ ଆଈ ପାଖରେ ଶୋଉଛି । ପରଦିନ ଗ୍ଲକର ପାଖେ ଶୋଉଛି । ତା'ର ଶୋଇବାର ନିର୍ଦ୍ଦିଷ୍ଟ ସ୍ଥାନ ନାହିଁ । କିନ୍ତୁ ବିଲାତରେ ତାହା ହୋଇ ପାରିବ ନାହିଁ । ପିଲାର ପାଇଁ ସ୍ୱତନ୍ତ୍ର ଗୃହକୋଣ ଅଛି । ଖାଇବା ପାଇଁ ସ୍ୱତନ୍ତ୍ର ସ୍ଥାନ ଅଛି । ସବୁ କଥାରେ ପିଲାର ଆତ୍ମସମ୍ମାନ ବଜାୟ କରାଯାଉଛି । ଏହି ହେଲା ଇଂଲଣ୍ଡ ଆଉ ବର୍ତ୍ତମାନ ଭାରତ ମଧ୍ୟରେ ତଫାତ୍ ।

ଆମ ପିଲା ବଡ଼ sensitive ଅର୍ଥାତ୍ ସ୍ପର୍ଶୀ । ଅତଏବ ପିଲାକୁ କଟୁ କଥା କହିବାକୁ ହେବ ନାହିଁ । ପିଲାକୁ ସବଳରେ ମାରିବାକୁ ହେବନାହିଁ । ପିଲା ଉପରେ ଆଖି ରଙ୍ଗାଇବାକୁ ହେବନାହିଁ । ଚେଣ୍ଡି ବଡ଼ ଆବାଜ କରିବାକୁ ହେବ ନାହିଁ ।

ବୃଦ୍ଧଜନ୍ୟା ସମିତିରେ ଦେଖାଦେଇଛି ଯେ ପିଲାକୁ ଦଣ୍ଡ ଦେବାକୁ ହେବ ନାହିଁ । ଶାରୀରିକ ଦଣ୍ଡ ବଡ଼ କ୍ଷତିକାରକ । ଅତଏବ କୌଣସି ଅବସ୍ଥାରେ ପିଲାକୁ ଶାରୀରିକ ଦଣ୍ଡ ଦେବା ଉଚିତ ନୁହେଁ । କୌଣସି ଅବସ୍ଥାରେ ଶିଶୁକୁ ମାରିବାକୁ ହେବ ନାହିଁ । ଆମେ ଯେତେବେଳେ ଶିଶୁକୁ ମାରୁ, ସେତେବେଳେ ଆମେ

ଆମର ତରଫରୁ ସ୍ୱୀକାର କରୁ । ମାଡ଼ ଦେଇ ପିଲାକୁ ସିଧା କରିବାର ଚେଷ୍ଟା ବଡ଼ କ୍ଷତିକାରକ । ପ୍ରତ୍ୟେକ ଆତ୍ମାର ସ୍ୱାଧୀନତା ଉପରେ ତୀକ୍ଷ୍ଣ ଆଘାତ ବା କଠୋର ଆଘାତ କରିବା ଉଚିତ ନୁହେଁ ।

ଆତ୍ମିକ ବିକାଶ ପାଇଁ ସ୍ତ୍ରୀ ସ୍ୱାମୀ ସମ୍ବନ୍ଧ । ଏହି ସ୍ତ୍ରୀସ୍ୱାମୀ—ସମ୍ବନ୍ଧରେ ଅନେକ ତ୍ରୁଟି ଭିତର ଦେଇ ହୁଏତ ସ୍ୱାମୀସ୍ତ୍ରୀଙ୍କୁ ଗତି କରିବାକୁ ହୁଏ । ତଥାପି ଏହା ମନେ ରଖିବାକୁ ହେବ ଯେ ସ୍ୱାମୀ ଓ ସ୍ତ୍ରୀ ଯେତେ ଏକ ହେଲେ ମଧ୍ୟ ଦୁଇଟି ସ୍ୱତନ୍ତ୍ର ଆତ୍ମା—ପ୍ରତ୍ୟେକ ଆତ୍ମାର ସ୍ୱତନ୍ତ୍ର ସ୍ୱାଧୀନ ବିକାଶପଥରେ ଯେପରି କେହି କାହାରିକୁ ବାଧା ନ ଦିଏ । ଏହି ଭାରି କଠିନ । ତଥାପି ଏହାକୁ ଜାଣି, ହୃଦୟଙ୍ଗମ କରି ସ୍ୱାମୀସ୍ତ୍ରୀ ମଧ୍ୟରେ ମୈତ୍ରୀ, ସ୍ନେହ, ପ୍ରେମର ବନ୍ଧନକୁ ଦୃଢ଼ କରିବାକୁ ଚେଷ୍ଟା କରିବାକୁ ହେବ ।

ଘରେ ଜୀବଜନ୍ତୁଙ୍କ ପ୍ରତି ମଧ୍ୟ ଶ୍ରଦ୍ଧାନ୍ୱିତ ବ୍ୟବହାର କରିବାକୁ ହେବ । ସେମାନଙ୍କୁ କଷ୍ଟ ଦେବାକୁ ହେବ ନାହିଁ । ମାଡ଼ ଦେବାକୁ ହେବ ନାହିଁ । ବନ୍ଧନରୁ ସ୍ନେହରେ ସେମାନଙ୍କୁ ଆବଦ୍ଧ କରିବାକୁ ହେବ । ସେମାନଙ୍କୁ ଖାଇବା, ପିଇବା, ରଖିବା ପ୍ରଭୃତିରେ ଶ୍ରଦ୍ଧା ଦେଖାଇବାକୁ ହେବ ।

ଶିକ୍ଷା ସମ୍ବନ୍ଧରେ ଆମର ମନେ ରଖିବାକୁ ହେବ ଯେ ପିଲାର ମନ କିଛି ଖାଲି ନୁହେଁ ଯେ ତାହା ଭିତରେ ଯାହା ଇଚ୍ଛା କରିବୁ ତାହା ପୂରାଇ ଦେଇ ପାରିବୁ । ପ୍ରତ୍ୟେକ ପିଲାର ଜନ୍ମରୁ ଗୋଟିଏ ଗୋଟିଏ ଦିଗରେ ବିଶେଷତା ବା ପାରଙ୍ଗମତା ଦେଖାଯାଏ । କେହି [illegible] ହୁଏତ ତା' ମନକୁ ନାଚିପାରେ, କେହି ହୁଏତ ଛବି କାଟେ, କେହି ହୁଏତ ପାଠପଢ଼ାରେ ଧ୍ୟାନଦିଏ, କେହି ହୁଏତ ଖେଳରେ । ଏହିପରି ପ୍ରତି ପିଲାର ଗୋଟିଏ ସ୍ୱତନ୍ତ୍ର ପ୍ରବୃତ୍ତି ଅଛି, ଯୋଗ୍ୟତା ଅଛି, ବିଶିଷ୍ଟତା ଅଛି । ଅତଏବ ଜୋରଜବରଦସ୍ତି କରି ଶିଶୁକୁ କିଛି ଶିଖାଇବାକୁ ହେବ ନାହିଁ । ତା' ମନକୁ କଣ ଭଲ ଲାଗୁଛି, ସେ କେଉଁ ଦିଗକୁ ଗତିକରିବାକୁ ଚାହୁଁଛି, ଏହା ଲକ୍ଷ୍ୟ କରି ଶିଶୁକୁ ସେହିପରି ଶିକ୍ଷା ଦେବା ଉଚିତ । କେହି ହୁଏତ ନାଚ ତାମସାରେ ପଟୁ—କେହି ହୁଏତ ଖେଳରେ, ଆଉ କେହି ହୁଏତ ପଢ଼ାରେ । ଯାର ଯେପରି ପ୍ରବୃତ୍ତି ଅଛି, ତା'କୁ ସେହିପରି ପଢିବା ପାଇଁ ସୁଯୋଗ ସୁବିଧା ଦେବା ଦରକାର ।

ପ୍ରତ୍ୟେକ ମନୁଷ୍ୟର, ଶିଶୁର ତିନୋଟି ଆବରଣ ଅଛି—ଶାରୀରିକ, ମାନସିକ ଏବଂ astral । ଏହି ତିନୋଟି ଉପରି ଉନ୍ନତ ଓ ବଳିଷ୍ଠ କରିବାକୁ ହେବ, ସେଥିପ୍ରତି ଲକ୍ଷ୍ୟ ରଖିବା ଉଚିତ ।

ଶିଶୁ ଭଲ ବଢ଼େ, ଚାଲି ପାରେ, ଖେଳ ଖେଳେ, କୁଣ୍ଠାଇ ନଥାଏ—ଏସବୁ ଦ୍ୱାରା ତା'ର ଶରୀରର muscle ବା ମାଂସପେଶୀ ତଥା ସୂକ୍ଷ୍ମ ସୂକ୍ଷ୍ମ ଶିରାପ୍ରଶିରା ନିପୁଣତା ସେ ସଂଗ୍ରହ କରେ । ଅତଏବ Kindergarten ପ୍ରଣାଳୀ ପ୍ରଥମ ଅବସ୍ଥାରେ ଅତ୍ୟନ୍ତ ଦରକାର । ଖେଳ-ଦ୍ୱାରା, mass drill ଦ୍ୱାରା ଶିଶୁର ମନ disciplined ହୁଏ, ଶୃଙ୍ଖଳିତ ହୁଏ, ସଂଯତ ହୁଏ, ସୁଶ୍ରୀ ହୁଏ । ଅଙ୍ଗ ହାତର ଅସଂଯମତା, ବାହାରର ଉଚ୍ଛୃଙ୍ଖଳା—

ଏଥିରୁ ପିଲା ମନଉପରେ ଖରାପ ପ୍ରଭାବ ପକାଉଅଛି । ସେଥିପାଇଁ ଆଜି ଶିଶୁ ଓ ବାଳକ ଦୁରନ୍ତ ହେଉଛନ୍ତି, ଅମାନିଆ ହେଉଛନ୍ତି । ଅତଏବ ଏଠାରେ ଶିଶୁର ବା ବାଳକର ଦୋଷ ନାହିଁ । ବହିର୍ଜଗତର ଉଚ୍ଛୃଙ୍ଖଳା, ଗୋଳମାଳ, ପାଟିତୁଣ୍ଡ ଆଜି ଯୁବକଙ୍କୁ ଉଚ୍ଛୃଙ୍ଖଳ କରି ପକାଉଛି, ଏଥିରେ ବାଳକ ବା ଯୁବକର ଦୋଷ ନାହିଁ । ଆମକୁ ପୁନରାୟ ଶାନ୍ତି, ଶୃଙ୍ଖଳା, ସଂଯମ ସନ୍ତୁଷ୍ଟି ଆଡ଼କୁ ମନ ଦେଇ ବଳିଷ୍ଠ ମଣିଷ ଗଢ଼ିବାକୁ ହେବ । ବାହାରର ହଟଗୋଳମାନ ବନ୍ଦ କରିବାକୁ ହେବ । ବାହାରର ଉଚ୍ଛୃଙ୍ଖଳତା ଦୂର କରିବାକୁ ହେବ । ତେବେ ଯାଇଁ ଯୁବକ, ବାଳକ, ଯୁବତୀ ସୁଶୃଙ୍ଖଳ ଜୀବନ କଟାଇ ପାରିବେ । ବାହାର ଓ ଭିତର ଏହିପରି ପରସ୍ପର ସାପେକ୍ଷ ।

ବ୍ରହ୍ମବିଦ୍ୟା ସହିତ ପ୍ରକୃତ ପୂର୍ଣ୍ଣଶିକ୍ଷା ପ୍ରତି ଲକ୍ଷ୍ୟ ରଖ । ଗୋଟିଏ ପିଲା ପାଠ ପଢ଼ିବ— କେବଳ ଯେ ପାଠ ପଢ଼ିବ ତା' ନୁହେଁ, ପିଲାର ଚାରିପାର୍ଶ୍ୱକୁ ଏପରି କରିବାକୁ ହେବ ଯେଉଁଥିରେ ସେ ସମସ୍ତଙ୍କର ସୁଖକର ହୋଇ ପାରିବ ଏବଂ ସମସ୍ତଙ୍କ ଠାରୁ ଶିକ୍ଷା କରିପାରିବ ଏବଂ ସମସ୍ତଙ୍କୁ ଆନନ୍ଦ ଦେଇ ପାରିବ । ଘରେ ଗୋରୁ, ଗାଈ, ଫୁଲ, ଫଳଗଛ ଏସବୁ ସଙ୍ଗତରେ ତା'ର ଆତ୍ମୀୟତା ଯେପରି ବଢ଼େ, ସେଥିପ୍ରତି ଦୃଷ୍ଟି ଦେବାକୁ ହେବ । ବସ୍ତୁତଃ ଆମ ସମସ୍ତଙ୍କର ଗୋଟିଏ ଜୀବନ । କେବଳ ପ୍ରକାଶ ଭିନ୍ନ ଭିନ୍ନ ଭାବରେ, ଭିନ୍ନ ଭିନ୍ନ ବାଟ ଦେଇ । ଅତଏବ ଏହି ଜୀବନକୁ ପୁଷ୍ଟ କରିବାପାଇଁ ପଶୁପକ୍ଷୀ, ଜୀବଜନ୍ତୁ, ଫୁଲଫଳ ସମସ୍ତଙ୍କ ଠାରୁ ଆହରଣ କରିବାକୁ ହେବ ସେମାନଙ୍କର ଗୁଣମାନ ଏବଂ ଆମେ ମଧ୍ୟ ଆମ ବ୍ୟବହାରରେ ସେମାନଙ୍କୁ ସନ୍ତୁଷ୍ଟ କରିବୁ, ସୁଖୀ କରିବୁ । ଯେପରି ଶକୁନ୍ତଳା ସଖୀ ପ୍ରିୟମ୍ବଦା ଓ ଅନସୂୟା ସହିତରେ ମୃଗ ଓ ମୃଗଶିଶୁ ସହିତରେ ସୁନ୍ଦର ବ୍ୟବହାର କରୁଥିଲେ, ଆଉ ଫଳ ଫୁଲ ଗଛକୁ ଆଦର କରିପାରୁଥିଲେ । ଏହାହିଁ ଉପଯୁକ୍ତ ଶିକ୍ଷା । ପ୍ରକୃତି ସହିତରେ ସୌନ୍ଦର୍ଯ୍ୟରେ, ସଂଗୀତରେ, ଶୃଙ୍ଖଳାରେ ମିଳାମିଶି ରହିବା ଏବଂ ପ୍ରକୃତିକୁ ମଧ୍ୟ ଆମର ସ୍ନେହ, ସେବା, ମଧୁରତା ଦ୍ୱାରା ପରିପୁଷ୍ଟ କରିବା — ଏହି ବୃତ୍ତିର ଆତ୍ମୀୟତା ଅନୁଭବ କରିପାରିଲେ ଆମର ଚିତ୍ତ ଉଦାର ହେବ, ମହତ୍ ହେବ ଏବଂ ଦିନୁଦିନୁ ମହତ୍ତରୁ ମହତ୍ତର ହେବ । ପ୍ରକୃତି ଜଡ଼ ନୁହେଁ, ପ୍ରକୃତି ଜୀବନ୍ତ; ଆମର ଆତ୍ମୀୟ, ପରମାତ୍ମୀୟ — ଏହା ଉପଲବ୍ଧି କରିବାକୁ ହେବ । ଆମର ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ ଏହାହିଁ ବ୍ରହ୍ମବିଦ୍ୟା ଶିକ୍ଷା ହେଉ ।

ବେଶୀ ପାଠ ପଢ଼ି, କଲେଜଜୀବନ ଯାପନ କରିସାରି ଯଦି ଆମେ ଆମର ଜୀବନର ଉଦ୍ଦେଶ୍ୟ କଣ ବୁଝି ପାରିଲୁ ନାହିଁ, ତାହାହେଲେ ଆଉ ହେଲା କ'ଣ ? ଆମେ କ'ଣ ଖାଲି ପାଠ ପଢ଼ି, ଚାକିରି କରି ଜୀବନକୁ ଶେଷ କରିଦେବୁ ? ଏହା କି କ'ଣ ଜୀବନର ଶେଷ ଉଦ୍ଦେଶ୍ୟ ? ଆଜି ଯୁଗର କଥା—କଲେଜର ବଡ଼ ବଡ଼ ଅଧ୍ୟାପକମାନେ ମଧ୍ୟ ପାଠ ପଢ଼ାଉଛନ୍ତି ସତ୍ୟ; କିନ୍ତୁ ଜୀବନର ଉଦ୍ଦେଶ୍ୟ ସେମାନେ ବୁଝିପାରୁ ନାହାନ୍ତି, ଧରିପାରୁ ନାହାନ୍ତି । ଏପରି ଅବସ୍ଥାରେ ଛାତ୍ରଙ୍କୁ କ'ଣ ଜୀବନର

ଲକ୍ଷ୍ୟ ସମ୍ବନ୍ଧରେ ବୁଝାଇବେ ? ଏହା ହିଁ ହେଲା ଉତ୍ତମ ସମସ୍ୟା । କଲେଜ ଜୀବନରେ ଯୁବକ ବା ଯୁବତୀର ମନ ଏପରି ତିଆରି ହୋଇଥିବ ଯେ ସେ ଆହରଣ କରି ପାରିବ ଗୋଟିଏ ଉଦ୍ଦେଶ୍ୟ ନେଇ—ଉଦ୍ଦେଶ୍ୟବିହୀନ ଜୀବନ ଆଜି ଆମକୁ ପଥବଣା କରିଦେଇଛି । ଆମେ ବାଟବଣା ହୋଇଛୁ । ସେଥିପାଇଁ କିଛି ବୁଝିପାରୁ ନାହୁଁ । କଲେଜ ଶିକ୍ଷାର ଲକ୍ଷ୍ୟ ହେଉଛି ଆମେ ମଣିଷକୁ କିପରି ଭଲ କରିପାରିବୁ; କିନ୍ତୁ ବ୍ରହ୍ମବିଦ୍ୟା ସମିତି ଲକ୍ଷ୍ୟ ରଖେ ଆମେ ମଣିଷକୁ କିପରି କେବଳ ଭଲ ନୁହେଁ, ତାକୁ କିପରି ସମଗ୍ର ସମାଜ ଭିତରେ ନିଜର ଐକ୍ୟ ଅନୁଭବ କରି ସମସ୍ତଙ୍କ ଉପଯୁକ୍ତ ସେବା କରି ପାରିବା ।

ଆଜି ଅନେକ ଉଚ୍ଚ ଶିକ୍ଷା ପାଇଁ ଏଠି ମାନବନ୍ତି, ମନୁଷ୍ୟର ସେବାକୁ ଭୁଲି ଆପଣାର ସ୍ୱାର୍ଥର ସନ୍ଧାନରେ ବୁଲୁଛନ୍ତି । ବ୍ରହ୍ମବିଦ୍ୟା ସମିତି ଏଠିରେ ଆଘାତ ଦିଏ ଏବଂ କହେ, ଉଚ୍ଚ, କେବଳ ତୁମର ନିଜର ସୁଖସୁବିଧା ପାଇଁ ଏଠି ଉଚ୍ଚଶିକ୍ଷା ପାଇନାହଁ—ସମଗ୍ର ସମାଜର ସେବା ପାଇଁ, ସେଥିରୁ ପ୍ରତ୍ୟେକ ଜୀବନକୁ ସହାୟତା ଦେବାପାଇଁ ତ'ଣ କରି ପାରିବା, ତାକୁ ଆଖି ଆଗରେ ମନରେ ବରାବର ରଖି ଜୀବନପଥରେ ଗତି କରିବ, ଅନ୍ୟପର ହେବ । ଏହା ହିଁ ହେଲା ପ୍ରକୃତ ଶିକ୍ଷା । ଏହି ଶିକ୍ଷା ଆମକୁ ପାଇବାକୁ ହେବ ।

ଜୀବନଟାକୁ ବୈଷୟିକ ଏବଂ ଧାର୍ମିକ ଏପରି ସ୍ୱତନ୍ତ୍ର ଭାବରେ ଦେଖିବା ଦ୍ୱାରା ଆମେ ଜୀବନଟାର କ୍ଷତି କରୁଛୁ ଏବଂ ଆଜି ଠିକ୍ ପୂର୍ଣ୍ଣ ମଣିଷ ଭାବରେ ବଢ଼ି ପାରୁନାହୁଁ । ଜୀବନଟା ଭାଗ ନୁହେଁ । ପ୍ରକୃତ ମଣିଷ ଧାର୍ମିକ ହେବ, ସୁନ୍ଦର ହେବ ଏବଂ ଅପରର ସେବା ମଧ୍ୟ କରିବ । ବୈଷୟିକ ଏବଂ ଧାର୍ମିକ ଜୀବନ ଭିତରେ ଗୋଟାଏ ବାଡ଼ବତା ରହିବ ନାହିଁ । ବୈଷୟିକ ଜୀବନ ଏବଂ ଧାର୍ମିକ ଜୀବନ ମିଳିତ ହୋଇ ଗୋଟିଏ ଅପୂର୍ବ ସୁନ୍ଦର ଜନଜାଗରଣ ଆନୟନ କରିବ । ଜୀବନକୁ ଆମେ ଯେତେବେଳେ ପୂର୍ଣ୍ଣାଙ୍ଗ ଭାବରେ ଦେଖିପାରିବୁ, ଉପଲବ୍ଧି କରିପାରିବୁ । ମନ୍ଦିର ବା ଗୀର୍ଜା ବା ମସ୍‌ଜିଦ୍ ଜୀବନ ସତ୍ତ୍ୱରେ ପ୍ରକୃତ ଜନର ବ୍ୟାବହାରିକ ଜୀବନର ପୂର୍ଣ୍ଣ ସହଯୋଗ, ସମ୍ବନ୍ଧ, ଏପରି କି ପରସ୍ପର ମିଳିତ ସମ୍ବନ୍ଧ ନ ରହିଲେ ସମାଜ ଗଢ଼ି ଉଠିବ ନାହିଁ । ସୁନ୍ଦର, ସରସ, ମଧୁମୟ ହୋଇପାରିବ ନାହିଁ । ମନୁଷ୍ୟ ଯେ ମୂଳତଃ ମନ, ଆତ୍ମା, ଶରୀରର ସମାବେଶ । ଅତଏବ ଯେଉଁ ଶିକ୍ଷା ଦିଆଯିବ, ତାହା ସମଗ୍ର ଜୀବନକୁ ଯେପରି ରସ ଯୋଗାଇପାରେ । ଅତଏବ ସମାଜକୁ କେବଳ secular କରି ରଖିବାକୁ ହେବ—ଏ ଦୃଷ୍ଟି ଅତି ସଂକୀର୍ଣ୍ଣ ଦୃଷ୍ଟି । ଜୀବନକୁ ପରିପୂର୍ଣ୍ଣ କରିବାକୁ ହେଲେ ଆତ୍ମା, ମନ ଏବଂ ଶରୀରର ପୂର୍ଣ୍ଣ ସମ୍ପୃକ୍ତି ଏବଂ harmonious ବା ସୁସମ୍ମିଳିତ ସଂପୃକ୍ତି ଲୋଡ଼ା । ଏହା କରି ପାରିଲେ ସମଗ୍ର ମାନବଜାତିକୁ ଐକ୍ୟ, ସୂତ୍ରରେ ବାନ୍ଧିହେବ । ବ୍ରହ୍ମବିଦ୍ୟା ଏହାହିଁ ଲକ୍ଷ୍ୟ କରେ । କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀ ବା ଭିନ୍ନ ଭିନ୍ନ ଧର୍ମ ଭିତରେ ଆପଣାକୁ ଜାକିଡ଼ି ରଖିବା ଧର୍ମ ନୁହେଁ । ଜୀବନକୁ ଉପଲବ୍ଧି କରିବାକୁ ହେଲେ ସବୁ ଗୋଷ୍ଠୀ, ସମ୍ପ୍ରଦାୟ, ଧର୍ମ ଭିତରେ

ଆପଣାକୁ ବିସ୍ତାରିତ ଦୃଷ୍ଟି ଦେବାକୁ ହେବ ଏବଂ ସେହି ବିସ୍ତାରିତ ଦୃଷ୍ଟି ଦ୍ୱାରା ଜୀବନର ମହାନ ଆଚରଣ କରି ଆପଣା ଆପଣାକୁ ଗଢ଼ିବାକୁ ହେବ, ଉଚ୍ଚରୁ ଉଚ୍ଚତର ମଣିଷ କରି, ଉଚ୍ଚତର ଆଦର୍ଶକୁ ଧରି ତଦ୍ୱାରା ଅନୁପ୍ରାଣିତ ହେବା, ଏହାହିଁ ହେଲା ଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ ।

ବ୍ରହ୍ମବିଦ୍ୟାକମ୍ ଶିକ୍ଷା ଆମକୁ ଯଦି ଏହି ବିସ୍ତାରିତ ଦୃଷ୍ଟି ଦେଇ ନ ପାରିଲା, ତାହାହେଲେ ଲାଭ କିଛି ହେଲା ନାହିଁ ଜାଣିବାକୁ ହେବ । ସମଗ୍ର ପ୍ରକୃତି ଭିତରେ ମୁଁ ରହି ସମଗ୍ର ପ୍ରକୃତିକୁ ଭଲ ପାଇବି, ତା'ର ସେବା କରିବି; ଅତଏବ କେହି ବାଦ୍ ପଡ଼ିବେ ନାହିଁ । ପଶୁ, ପକ୍ଷୀ, କୀଟ, ପତଙ୍ଗ, ମାନବ, ଭିନ୍ନ ଭିନ୍ନ ଧର୍ମାବଲମ୍ବୀ ଗୋଷ୍ଠୀ ସବୁ ତା' ଭିତରେ ଆସିଯିବେ । ସମସ୍ତଙ୍କୁ କୋଳାଗତ କରି ମୁଁ ମାନବ, ବ୍ରହ୍ମବିଦ୍ୟାର ମାନବ, ବିପୁଳ, ଚିରନ୍ତନ ଆନନ୍ଦର ଅନୁଭବ କରୁଥିବି । ଏହା ହିଁ ହେଲା ବ୍ରହ୍ମବିଦ୍ୟା ଶିକ୍ଷାର ମୂଳ ତଥ୍ୟ । ଏହାକୁ ହିଁ ଲକ୍ଷ୍ୟ ରଖି ଆମକୁ ଶିକ୍ଷା ଦେବାକୁ ହେବ, ଆମର ପିଲାପିଲିଙ୍କୁ ଗଢ଼ିବାକୁ ହେବ । ଏହାଦ୍ୱାରା ଗୋଟିଏ ନୂତନ ସୁନ୍ଦର ଜଗତର ଆବିର୍ଭାବ କ୍ରମଶଃ ହେବାକୁ ଲାଗିବ । ଏକ ମନ, ଏକ ପ୍ରାଣ, ବ୍ୟବସାୟୀ, ରାଜନୀତିଜ୍ଞ, ଯୋଦ୍ଧା, ସେବାକାଙ୍କ୍ଷୀ ସମସ୍ତଙ୍କ ଭିତରେ ସେହି ଏକମନ, ଏକପ୍ରାଣ, ଯେଉଁ ଏକ ଦୈବତ ମାନ ମାପକାଠି । ସେହି ଏକାତ୍ମବୋଧ, ସେହି ପ୍ରୀତି, ସେହି ପ୍ରାଣବନ୍ତତା ଅନୁଭବ କରିବାକୁ ହେବ । ସେତେବେଳେ ରାଜନୀତିକ୍ଷେତ୍ର, ଧର୍ମକ୍ଷେତ୍ର ଏପରି ଅବସ୍ଥା ରହିବ ନାହିଁ । ସେ ଦୃଷ୍ଟି, ଏହି ବିଭକ୍ତ ବିଭାଜିତ ଦୃଷ୍ଟି ମନୁଷ୍ୟକୁ କ୍ଷୁଦ୍ର କରିଛି, ଖଣ୍ଡ ଖଣ୍ଡ କରିଛି, ଅମନୁଷ୍ୟ କରିଛି । ବ୍ରହ୍ମବିଦ୍ୟା ଚାହେଁ ସମସ୍ତ ପୂର୍ଣ୍ଣ ଦୃଷ୍ଟି—ସେହି ବିପୁଳ ପୂର୍ଣ୍ଣାୟତ ଦୃଷ୍ଟି ଦ୍ୱାରା ଆମେ ସମଗ୍ର ମାନବ ଜାତିର - ନା, ଖାଲି ସେତିକି ନୁହେଁ, ସମଗ୍ର ଜୀବଜଗତର ତଥା ଉଦ୍ଭିଦଜଗତର ମଧ୍ୟ ସେବା କରି ପାରିବୁ । ସମସ୍ତଙ୍କ ମଧ୍ୟରେ ସଖ୍ୟସ୍ଥାପନ କରିପାରିବୁ । ଏହା ହିଁ ହେଲା ବ୍ରହ୍ମବିଦ୍ୟା ଶିକ୍ଷାର ଉଦ୍ଦେଶ୍ୟ । ଶରୀର, ମନ ଓ ଅନ୍ତ ପ୍ରିୟ ରାଜ୍ୟ ଭିତର ଦେଇ ଆପଣାକୁ ଉଦ୍‌ବୁଦ୍ଧ କରିବାକୁ ହେବ, ଉପରକୁ ଉଠାଇବାକୁ ହେବ ଏବଂ ଆମଦ୍ୱାରା ସମଗ୍ର ସମାଜକୁ, ସେଥିରୁ ପ୍ରତ୍ୟେକ ଜୀବଜନ୍ତୁକୁ ମଧ୍ୟ ଉପରକୁ ଉଠାଇବାକୁ ହେବ । ଏହା ହିଁ ହେଲା ବ୍ରହ୍ମବିଦ୍ୟା ସମିତିର ବିପୁଳ ଲକ୍ଷ୍ୟ ଓ ପ୍ରଚେଷ୍ଟା ।

ବ୍ରହ୍ମବିଦ୍ୟା ସମିତିରେ ଶିଳ୍ପର ସ୍ଥାନ ବହୁ ଉଚ୍ଚରେ । ମନ୍ଦିର ନିର୍ମାଣ କୁହ, କାଠ କାମ କୁହ, କିମ୍ବା ଚିତ୍ରବିଦ୍ୟା କୁହ ସବୁଥିରେ ଶିଳ୍ପୀ ଜଡ଼ର ନିର୍ମାଣ ପରେ ସମଗ୍ର ଜଡ଼ ଭିତରେ ମନର ଭାବ ଫୁଟାଇବ ଏବଂ ତା'ପରେ ଅନ୍ତ ପ୍ରିୟ ଜଗତର ଆଭାସ ମଧ୍ୟ ସେଥିରେ ଦେବାକୁ ଚେଷ୍ଟା କରିବ । ଏଥିରେ ଓଡ଼ିଶାର ଶିଳ୍ପୀମାନେ ବହୁ ଯଶସ୍ୱୀ ହୋଇଥିଲେ । ସେମାନେ ମନପ୍ରାଣ ଦେଇ ପଥର ପାଖରେ ପଥର ହୋଇ ପୁଣି ପଥର ଭିତରେ ଆପଣାର ଭାବନାକୁ ଓ ଚେତନାକୁ ଥୋଇ ପଥର ଖୋଳିଥିଲେ— ଯେଉଁପାଇଁ ସେହି ପଥର ତାହାରୁ ମେନକା, ଉର୍ବଶୀ ପରି ରୂପସୀ ବାହାରି

ପାରିଥିଲେ । ସେଥିପାଇଁ ଜୀବନ୍ତ ଜାଗ୍ରତ ପଶୁପକ୍ଷୀ ଏପରିକି ବୃକ୍ଷଲତା ମଧ୍ୟ ବାହାରି ପାରିଥିଲେ । ଏହି ସମଗ୍ରତା—ସମଗ୍ର ପ୍ରାଣ ଦେଇ ସାଧନା କରିବା ପଥର ଉପରେ ତୂଳୀରେ, ରଙ୍ଗରେ, ମାଟିରେ—ଆହା ! ଏ କି ଘୋର ଅଭିନିବେଶ ! ସେତେବେଳେ ଶିଳ୍ପ ଜଗତରେ ଶିଳ୍ପୀ ଜାଣି ନ ଥାଏ—ସେ ଥାଏ ସମଗ୍ର ବିଶ୍ୱ ଭିତରେ ସୌନ୍ଦର୍ଯ୍ୟ, ଚେତନା, ଶକ୍ତି ଆହରଣ କରିବା ପାଇଁ । ପୁଣି ସର୍ବଶେଷରେ ଅତି ହୃଦ୍ୟ ଆଶା ସେଥିରେ ଫୁଟାଇବା ପାଇଁ ସେ ଚେଷ୍ଟା କରନ୍ତି ।

ସେଥିପାଇଁ ଓଡ଼ିଶାର ଶିଳ୍ପ ଏତେ ସୁନ୍ଦର, ମହାନ୍ ହୋଇଉଠିଛି । ତା'ର ଭୁବନେଶ୍ୱର, ତା'ର କୋଣାର୍କ, ତା'ର ରାଜରାଣୀ ମନ୍ଦିର—ଏହାର ସାକ୍ଷୀ ସ୍ୱରୂପ ଆଜି ବିଦ୍ୟମାନ । ଏହି ଏକାଗ୍ରତା ଶିଳ୍ପକୁ ପରିପୂର୍ଣ୍ଣ କରି ରଖିଥିଲା । ଏହା ହିଁ ପ୍ରକୃତ ଜୀବନ ଓ ଜୀବନଦର୍ଶନ । ଏହାର ଦ୍ୱାରା ହିଁ ଆମେ ଆମର ଜୀବନକୁ ସମୃଦ୍ଧ, ସୁନ୍ଦର କରିବୁ ।

ବ୍ରହ୍ମଚର୍ଯ୍ୟ ଆମକୁ ଏହି ବିଶାଳ ଦୃଷ୍ଟି ଦିଏ । ଆମକୁ ସୌନ୍ଦର୍ଯ୍ୟମୟୀ କରେ । ଜୀବନକୁ ସୁନ୍ଦର କରିବାକୁ ସାହାଯ୍ୟ କରେ । ଆମ ଭିତରୁ ଅସୁନ୍ଦର ଭାବ ଦୂର କରିବା ପାଇଁ ସାହାଯ୍ୟ କରେ । ବ୍ରହ୍ମଚର୍ଯ୍ୟ ହିଁ ଏହି ସହୃଦୟତାର ଚର୍ଯ୍ୟା; ଏହି ସୌନ୍ଦର୍ଯ୍ୟ ଚର୍ଯ୍ୟା, ଏହି ମଧୁରତର ଚର୍ଯ୍ୟା । ଏହା ସମଗ୍ର ବିଶ୍ୱଭାବନା ଦ୍ୱାରା ଓତପ୍ରୋତ ଭାବରେ ପରିପୂର୍ଣ୍ଣ ।

ଆମର ଜନରାଷ୍ଟ୍ର ଏହି ଭ୍ରାତୃତ୍ୱ ଉପରେ ପ୍ରତିଷ୍ଠିତ ହେଉ । ବ୍ରହ୍ମଚର୍ଯ୍ୟ ସମିତ ଭ୍ରାତୃତ୍ୱ ଉପରେ ଖୁବ୍ ଜୋର ଦିଏ । ଏହି ଭ୍ରାତୃତ୍ୱ, ବୃହତ୍ତରୁ ବୃହତ୍ତର ଭ୍ରାତୃତ୍ୱ ସ୍ଥାପନଦ୍ୱାରା ହିଁ ଆମର କର୍ତ୍ତବ୍ୟ-ବୋଧ ବଢ଼ିବ ଏବଂ ଆମେ ପରସ୍ପରକୁ ସାହାଯ୍ୟ କରିବାକୁ ଆଗଭର ହେବୁ ।

ସେତେବେଳେ ଆମେ ଆମର ଦାବି ଉପରେ, ଆମର କ୍ଷମତା ଉପରେ, ଆମର କର୍ତ୍ତୃତ୍ୱ ଉପରେ ଜୋର୍ ଦେବୁ ନାହିଁ । ସେତେବେଳେ ଆମେ ଜୋର ଦେବୁ ଆମର ସେବା ମନୋଭାବ ଉପରେ, ଆମର ବୃହତ୍ତର ଭ୍ରାତୃତ୍ୱ ଉପରେ, ଆମର କର୍ତ୍ତବ୍ୟ ଉପରେ । ଯେତେବେଳେ ଏହା ହୋଇ ପାରିବ, ସେତେବେଳେ ରାଷ୍ଟ୍ର ଭିତରେ ଏତେ ଗଣ୍ଡଗୋଳ, ହରତାଳ, ଗୁଳି, ଅଶ୍ରୁଗ୍ୟାସ, ଫାଶୀ, ଜେଲଖାନା ବା କାରାଗାର ଦରକାର ହେବ ନାହିଁ । ମନୁଷ୍ୟର ମନ artistic ହେଲେ ସେ ସୁନ୍ଦର ଆଡ଼କୁ ଧାଇଁବ, କଦର୍ଯ୍ୟ ଆଡ଼କୁ ଧାଇଁବ ନାହିଁ । ଉପ୍ରକ ବିଶାଳ ବିଶ୍ୱରେ ଆମେ ଏକ ପରିବାର, ଗୋଟିଏ ପରିବାର; ପଶୁପକ୍ଷୀ, ଜୀବଜନ୍ତୁ, ମାନବ ସମସ୍ତଙ୍କୁ ସବୁ ସ୍ତରରେ ନେଇ ଆମେ ଗୋଟିଏ ପରିବାର ଏବଂ ସେଇ ପରିବାରଗୋଷ୍ଠୀ ଭିତରେ ଆମର ସେବା, ଆମର ଭାବନା, ଆମର କର୍ମକ୍ଷେତ୍ର ସବୁ ସମନ୍ୱିତ ଭାବରେ ରହିଛି । ଏହା ଅନୁଭବ କରିବାକୁ ହେବ । ସେହି ଅନୁଭବ ଆସିଲେ ଆମର ଆନନ୍ଦ, ଆମର ମୁକ୍ତି, ଆମର ସୌନ୍ଦର୍ଯ୍ୟର ସୀମା ରହିବ ନାହିଁ । ଆମେ ସେହି ଶାଶ୍ୱତ

ଈଶ୍ୱରଙ୍କ ସନ୍ନିଧରେ ଏକୀଭୂତ ହୋଇଯିବୁ । କି ସୁନ୍ଦର ଜୀବନ ହେବ ଆମର ସେତେବେଳେ ! ସେତେବେଳେ ଆମେ ଈଶ୍ୱରଙ୍କୁ ଘରେ ଘରେ ଦେଖିବୁ ଏବଂ ଈଶ୍ୱର ଆମକୁ ଘରେ ଘରେ ଦେଖିବେ । କି ସୁନ୍ଦର ଏହି ଭାବନା !

ବ୍ରହ୍ମବିଦ୍ୟା ସମିତିର ପ୍ରବର୍ତ୍ତକ ମନୀଷୀ ପଣ୍ଡିତ ସି. ଜିନରାଜ ଦାସ କି ସୁନ୍ଦର ଭାବରେ ଏହି ଭାବକୁ ଗୋଟିଏ ବାକ୍ୟରେ କହିଛନ୍ତି—

Wisdom in planning confidence in endeavour, and a joyous outlook night and day to all things in life are his who sees God's world and man's world by Theosophy.

ଅର୍ଥାତ୍ ପ୍ଲାନ୍ ବା ଭାବନା କରିବାରେ ବିଜ୍ଞତା ନିହିତ । ଜୀବନରେ ଦିନରାତି ସବୁଥିରେ ଗୋଟିଏ ଆନନ୍ଦ ଦୃଷ୍ଟି ତା'ର ହେବ, ସେ ଈଶ୍ୱରଙ୍କ ରାଜ୍ୟକୁ ଏହିପରି ଦେଖିବ ଏବଂ ମନୁଷ୍ୟ ରାଜ୍ୟ ଏହିପରି ବ୍ରହ୍ମବିଦ୍ୟାଦ୍ୱାରା ଧୌତ ଓ ପବିତ୍ର ହେବ ।



# ମରହଟ୍ଟା ଓ ବ୍ରିଟିଶ ରାଜତ୍ୱକାଳରେ ବାରବାଟୀ

କବିପ୍ରବର ରାଧାନାଥ ଗାଇଥିଲେ,

"ଐତିହାସିକ ଏ ଦୁର୍ଗ ବାରବାଟୀ
ବୀରରକ୍ତ ପିଣ୍ଡେ ଗଢ଼ା ଯାର ମାଟି ।
କେତେ କେତେ
କାଳ ଦେଖି ସେ ଆସିଲା,
ନଶ୍ୱର ନରର ଗାରମାର ଲୀଳା ।"

କବି ରାଧାନାଥ ଉତ୍କଳର ପୂର୍ବ କୀର୍ତ୍ତି ମୃତିପୂତ ବାରବାଟୀ କଥା ସ୍ମରଣ କରି ବିସ୍ମୟାଭିଭୂତ ହୋଇଥିଲେ । ବାରବାଟୀର ଯୌବନ କାଳରେ ଉତ୍କଳ ଜୟଶ୍ରୀହାର ମଣ୍ଡିତ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । ସେତେବେଳର ଉତ୍କଳ ବର୍ତ୍ତମାନର ଉତ୍କଳ ଭଳି ମିତ୍ରପ୍ରମାଣ ନ ଥିଲା, କାବନ୍ଧୃତ ନ ଥିଲା । ସେତେବେଳେ ଉତ୍କଳର ରାଜା ଥିଲେ ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ଗଜପତି ଗୌଡ଼େଶ୍ୱର । ପ୍ରତ୍ୟେକ ନଗର, ଗ୍ରାମ୍ୟ, ପର୍ବତ, ପ୍ରାନ୍ତର ଚତୁର୍ଦ୍ଦିଗ ବୀରତ୍ୱର ମହା ମନ୍ତ୍ରମାନେ ପ୍ରତିଧ୍ୱନିତ ହେଉଥିଲା । ଏପରି କି ଯେଉଁ ଆକବରଙ୍କୁ 'ଦିଲ୍ଲୀଶ୍ୱର ବା ଜଗଦୀଶ୍ୱର ବା' ବୋଲି କୁହାଯାଉଥିଲା, ସେହି ପ୍ରବଳ ପ୍ରତାପଶାଳୀ ମୋଗଲ ସମ୍ରାଟ ଆକବର ଉତ୍କଳର ଶୌର୍ଯ୍ୟ ବୀର୍ଯ୍ୟରେ ବିମୁଗ୍ଧ ହୋଇ ଏବଂ ଉତ୍କଳକୁ ଅଜେୟ ବା ଦୁର୍ଜ୍ଜେୟ ଜାଣି ଉତ୍କଳର ମୈତ୍ରୀ ଆକାଂକ୍ଷା କରିଥିଲେ । ଉତ୍କଳ ସାଦରେ ତାଙ୍କୁ ବନ୍ଧୁତ୍ୱ ବଢ଼ାଇ ଦେଇଥିଲା ଏବଂ ବାରବାଟୀ ଦୁର୍ଗର ସୈନ୍ୟ ସାମନ୍ତବର୍ଗ ମୋଗଲ ସମ୍ରାଟଙ୍କର ସୈନ୍ୟମାନଙ୍କୁ ସାହାଯ୍ୟ କରିବା ପାଇଁ ବଙ୍ଗାଭିମୁଖରେ ଗତି କରିଥିଲେ । ସେହି ଐତିହାସିକ ବାରବାଟୀର କଥା ଭାବିଲେ ହୃଦୟ ସ୍ପନ୍ଦିତ ଓ ବ୍ୟଥିତ ହୋଇଉଠେ ।

"କାଣ୍ଠ ଅଭିମାନେ ଯେ ଦୁର୍ଗ ପ୍ରାଚୀର
ବାଦ୍ୟନାଦେ ଦେଉଥିଲା ପ୍ରତିଗୀର ।"

ଆଜି ସେହି ବାରବାଟୀ ନୟନ-ପଥାରୂଢ଼ ହୁଏ ନାହିଁ । ଖଣ୍ଡିଏ ମସ୍‌ଜିଦ୍, ଗୋଟିଏ ମରହଟ୍ଟା ବ୍ୟାରେକ୍, ସୁଦର୍ଶନଚକ୍ରିତ ଅର୍ଦ୍ଧଭଗ୍ନ ତୋରଣଦ୍ୱାର ଓ ପରିଖା, ଏହା ହିଁ ତାହାର ଇତିହାସର ଶ୍ମଶାନଭୂମି । ତା ଛଡ଼ା ଆଉ ଅଛି କଣ କେତୋଟି ନୂତନ କୋଠା ।

"ପୁଣି ନୂଆ ଲୀଳା ଲାଗିଛି ଏଠାରେ
ପୁଣି ମତ୍ତ ନର ନଶ୍ୱର ବ୍ୟାପାରେ ।"

ଅଧୁନା ବାରବାଟୀ ପ୍ରାଙ୍ଗଣରେ ଦେଖିବାକୁ ମିଳେ ଆମୋଦପ୍ରମୋଦ ପାଇଁ କଟକ କ୍ଲବ, କେତେକ ଅଫିସରଙ୍କର କୋଠା ଇତ୍ୟାଦି । ଏହି ଦୃଶ୍ୟ ଦେଖି

ଦୃଶ୍ୟର ଇତିହାସ ସ୍ମରଣ କଲେ ହୃଦୟ ବେଦନାଗ୍ରସ୍ତ ହୁଏ । ତେଣୁ ଆଜିକାର ଏହି ଅବସରରେ ବାରବାଟୀର ପୂର୍ବ ଇତିହାସର କିଞ୍ଚିତ୍ ଅବଲୋକନ ।

ରାଜା ଅନଙ୍ଗଭୀମ ଦେବ ଥିଲେ ବାରବାଟୀର ନିର୍ମାତା ।

ଦ୍ୱାଦଶ ଶତାବ୍ଦୀରେ ସେ ବାରବାଟୀ ନିର୍ମାଣ କରିଥିଲେ । ସେହି ଦିନଠାରୁ ଇଂରେଜମାନଙ୍କ ଓଡ଼ିଶା ଅଧିକାର ସମୟ ପର୍ଯ୍ୟନ୍ତ ୧୮୦୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବାରବାଟୀ ଦୁର୍ଗ ଓଡ଼ିଶାର ରାଜଧାନୀ ଥିଲା । ରାଜା ଅନଙ୍ଗଭୀମ ଦେବ ଯେଉଁ ବାରବାଟୀର ଭିତ୍ତି ସ୍ଥାପନ କରିଥିଲେ, ସେହି ବାରବାଟୀର ଦୃଢ଼ତ୍ୱ ଅସ୍ତିତ୍ୱ ହେତୁ ମହାକୀର୍ତ୍ତିସ୍ୱ ଜାତୀୟତା ଭାରତ ଇତିହାସରେ ଏକ ସ୍ୱର୍ଣ୍ଣମୟ ଇତିହାସ ସୃଷ୍ଟି କରିଅଛି । ତାହାର ପ୍ରମାଣ ମିଳନ୍ତି ଯେତେବେଳେ ଭାରତର ଅନ୍ୟାନ୍ୟ ପ୍ରଦେଶ ମୁସଲମାନ ଓ ମୋଗଲ ହସ୍ତରେ କବଳିତ ହୋଇ-ଥିଲା, ଓଡ଼ିଶା ତାହାର ଜାତୀୟତା ଅକ୍ଷୁଣ୍ଣ ରଖିଥିଲା ।

୧୫୬୮ ଖ୍ରୀ. ରେ କଳାପାହାଡ଼ ଦ୍ୱାରା ଓଡ଼ିଶାର ସ୍ୱାଧୀନତା ଚିରକାଳ ପାଇଁ ଲୋପ ପାଇଲା । ସେତେବେଳେ ରାଜା ଥିଲେ ମୁକୁନ୍ଦ ଦେବ । ତାଙ୍କର ରାଜତ୍ୱ କାଳରେ ବାରବାଟୀ ଦୁର୍ଗର ବହୁ ଉନ୍ନତି ସାଧିତ ହୋଇଥିଲା । ସେ ସେହି ଦୁର୍ଗ ଭିତରେ 'ନବତଳ ପ୍ରାସାଦ' ତିଆରି କରି ରଖିଥିଲେ । ସୁପ୍ରସିଦ୍ଧ ଆଇନ ଆକବରୀ ଲେଖକ ଆବୁଲ ଫଜଲ ମୁକୁନ୍ଦ ଦେବଙ୍କ ନବତଳ ପ୍ରାସାଦ ନିଜ ଚକ୍ଷୁରେ ଦେଖିଥିଲେ । ସେ ତାହା ଦେଖି ଏତେ ଦୂର ମୁଗ୍ଧ ହୋଇଥିଲେ ଯେ ତାଙ୍କ ଲିଖିତ ଆଇନ ଆକବରୀ ପୁସ୍ତକରେ ସବିସ୍ତାର ବର୍ଣ୍ଣନା ଦେଇଛନ୍ତି ।

୧୫୯୨ ଖ୍ରୀ. ରେ ରାଜା ମାନସିଂହ ଅଧୀନସ୍ଥ ମୋଗଲ ସୈନ୍ୟଗଣ ଜଳେଶ୍ୱର ଓ ଆଳ ଦୁର୍ଗ ପଛରେ ବାରବାଟୀ ଦୁର୍ଗକୁ ମଧ୍ୟ ଅଧିକାର କରିଥିଲେ । ତେଣୁ ଓଡ଼ିଶା ସହିତ ବାରବାଟୀ ଦୁର୍ଗ ଆକବରଙ୍କଦ୍ୱାରା ଅଧିକୃତ ହେଲା । ଏହାପରେ ହସ୍ତାନ୍ତର ହେଉ ହେଉ ୧୭୫୦ ସାଲ ବେଳକୁ ବାରବାଟୀ ମହମ୍ମଦ ମସୁମ ଖାଁଙ୍କ ଅଧୀନକୁ ଆସିଲା । ତା ପରେ ୧୭୫୧ ସାଲରେ ମରହଟ୍ଟାମାନେ ବାରବାଟୀ ଆକ୍ରମଣ କଲେ । ଭାସ୍କର ପଣ୍ଡିତ ମରହଟ୍ଟାମାନଙ୍କର ସେନାପତି ଥିଲେ । ତାପରେ ରଘୁଜୀ ଭୋଁସଲ ଏହି ଦୁର୍ଗ ହସ୍ତଗତ କଲେ । ତାଙ୍କର ପୁଅ ଜାନୋଜୀ ବାରବାଟୀର ସଂରକ୍ଷଣ ନିମନ୍ତେ କିଛି ସୈନ୍ୟ ବାରବାଟୀରେ ରଖାଇ ନାଗପୁର ଫେରିଗଲେ । ଏହି ସମୟରେ ଅଲବର୍ଦ୍ଦି ଖାଁ ବାରବାଟୀକୁ ପୁନର୍ବାର ଅଧିକାର କରିବା ପାଇଁ ଚେଷ୍ଟା କଲେ, କିନ୍ତୁ ସେ ସଫଳତା ଲାଭ କରିପାରିଲେ ନାହିଁ ।

ବାରବାଟୀ ମରହଟ୍ଟାମାନଙ୍କ ରାଜଧାନୀ ହୋଇ ରହିଲା । ୧୮୦୩ ଖ୍ରୀ. ରେ ଇଂରେଜଗଣ ବାରବାଟୀ ଦୁର୍ଗ ଅବରୋଧ କଲେ । ଇଂରେଜଗଣ ଯେଉଁ ଉପାୟରେ ଦୁର୍ଗକୁ ଅଧିକାର କଲେ ତାହା ଜଣେ ଇଂରେଜ ସୈନିକ ତାଙ୍କର ଗୋଟିଏ ଚିଠିରେ ଲେଖିଅଛନ୍ତି । ସେ ଲେଖିଛନ୍ତି, "ତୋପ ଫାୟାର ନିମନ୍ତେ ସୁସଜ୍ଜିତ କରି ରଖି ଦୁର୍ଗ ଅଡ଼କୁ ଅଗ୍ରସର

ହେବାପାଇଁ ଇଂରେଜମାନଙ୍କୁ ଛଅ ଦିନ ଲାଗିଲା । ମହାନଦୀର ଦୁଇଟି ଶାଖା ମଧ୍ୟରେ ଦୃଢ଼ ରୂପେ ଅବସ୍ଥିତ ଥିବାରୁ ଏହା ଓଡ଼ିଶା ମଧ୍ୟରେ ଗୋଟିଏ ଦୁର୍ଭେଦ୍ୟ ଦୁର୍ଗ ଥିଲା । ପ୍ରସ୍ତର ପ୍ରାଚୀରଦ୍ୱାରା ବେଷ୍ଟିତ ଆଠଟି କ୍ଷୁଦ୍ର ଅଟ୍ଟାଳିକା ଦ୍ୱାରା ସୁରକ୍ଷିତ ଏହି ଦୁର୍ଗ ଗୋଟିଏ ଉଚ୍ଚ ପ୍ରାଚୀର ପାହାର କୋଡ଼ିଏରୁ ତିରିଶ ପାହୁଣ୍ଡ ପ୍ରସ୍ଥ ଓ ସ୍ଥାନ ଦୁଇଟି ଗଭୀର ପରିଖାଦ୍ୱାରା ସମାବୃତ ଥିଲା । ଏହାର ଦୁର୍ବଳତା ସ୍ୱରୂପ ନିକଟ-ବର୍ତ୍ତୀ ପଡ଼ିଆରେ କେତେଗୁଡ଼ିଏ ଗହ୍ୱର ଥିଲା । ଅବରୋଧକାରୀମାନେ ଏହି ଗହ୍ୱର ଗୁଡ଼ିକରେ ଉତ୍ତମ ଆଶ୍ରୟ ପାଇଥିଲେ । ଅକ୍ଟୋବର ୧୪ ତାରିଖ ସକାଳ ଦଶ ବେଳେ ଜଣେ ଇଂରେଜ ସୈନିକ ଗୁଳିଦ୍ୱାରା ଗୋଟିଏ କ୍ଷୁଦ୍ର ଦ୍ୱାର ଉଡ଼ାଇ-ଦେଲେ ଏବଂ ସେହି ସମୟରେ ସେ ନିଜେ ରକାରେ ଏକ ଆଘାତ ପାଇଥିଲେ । ଏହି ଦ୍ୱାରବାଟେ ଇଂରେଜ ସୈନ୍ୟ ଦୁର୍ଗ ମଧ୍ୟରେ ପ୍ରବେଶକଲେ ଏବଂ ଅଳ୍ପ ସମୟ ମଧ୍ୟରେ ଦ୍ୱନ୍ଦ୍ୱସଂଗ୍ରାମ ଘଟିଲା । ଅବରୋଧକାରୀଙ୍କର କର୍ଣ୍ଣେଲ ପାଦରେ ଆଘାତପ୍ରାପ୍ତ ହୋଇ ଜୀବନ ତ୍ୟାଗ କଲେ । ମରହଟ୍ଟମାନେ ପ୍ରାଚୀରରୁ ଲମ୍ଫ ଦେଇ ଅନ୍ୟ ଦ୍ୱାରବାଟେ ଦୁର୍ଗରୁ ପଳାୟନ କଲେ । ମରହଟ୍ଟାମାନଙ୍କର ପ୍ରାୟ ତିରିଶଟି ମୃତଦେହ ବଳଦଗାଡ଼ିରେ ଲଦା ହୋଇ ବନ୍ୟ ପଶୁ ଓ ପକ୍ଷୀଙ୍କର ଆହାର ପାଇଁ ନଦୀମଧ୍ୟରେ ନିକ୍ଷିପ୍ତ ହେଲା ଏବଂ ୨୩୯୦୭ ବର୍ଗମାଇଲ କ୍ଷେତ୍ରବିଶିଷ୍ଟ ଓ ତିରିଶଲକ୍ଷ ଲୋକାଧିବାସଯୁକ୍ତ ଓଡ଼ିଶା ପ୍ରଦେଶ ଇଂରେଜ ସରକାରର ଅଧିକୃତ ହେଲା ।”

ଇଂରେଜ ସୈନିକର ଉପରୋକ୍ତ ପତ୍ରର ବିବରଣୀରୁ ବାରବାଟୀ ଦୁର୍ଗ କପରି ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହେଲା, ଜଣାଯାଏ । ଏଥିରେ ସତ୍ୟତା ଥିଲା ପରି ମନେହୁଏ । ଅନନ୍ତର କିଛି ବର୍ଷ ପରେ ହିଁ ବାରବାଟୀ ଦୁର୍ଗ ଧ୍ୱଂସ ହେବାକୁ ଲାଗିଲା, ଏଥିରେ ସନ୍ଦେହ ନାହିଁ । ସୁଦୃଢ଼ ଦୁର୍ଗପ୍ରାଚୀର ଭାଙ୍ଗି ପଡ଼ିଥିବ । ବର୍ତ୍ତମାନ ପରିଲକ୍ଷିତ ହେଉଥିବା ବିଶାଳ ସ୍ତୂପ ସେ ମୁକୁନ୍ଦଦେବଙ୍କ ପ୍ରାସାଦ ହୋଇ ନ ଥିବ, ତାହା କିଏ କହିପାରେ ? ପ୍ରସିଦ୍ଧ ଐତିହାସିକ ଟଏନ୍‌ବି ୧୮୭୩ରେ ଲେଖିଅଛନ୍ତି —“ରାଜମିସ୍ତ୍ରୀ ବିଭାଗ (P. W. D) ଏହି ଦୁର୍ଗସ୍ଥ ପ୍ରାସାଦକୁ, କଦର୍ଯ୍ୟ ମୃତ୍ତିକା ଗଦାରେ ଏବଂ ପରିଖା ଅନ୍ତର୍ବର୍ତ୍ତୀ ଭୂଭାଗକୁ ଗୋଟିଏ ପ୍ରସ୍ତର ଜଙ୍ଗଲରେ ପରିଣତ କରିଅଛନ୍ତି । ଦୁର୍ଗ ଚତୁଃପାର୍ଶ୍ୱସ୍ଥ ପରିଖାର ପ୍ରାଚୀର ପ୍ରସ୍ତର ବର୍ତ୍ତମାନ ଗୋଟିଏ ଡାକ୍ତରଖାନା ନିର୍ମାଣରେ ବ୍ୟବହୃତ ହେଉଛି । ଦୁର୍ଗର ଭିତରର ପ୍ରସ୍ତର ଫଲ୍‌ସ ପଏଣ୍ଟର ବନ୍ଦରର ଓ ଅନ୍ୟାନ୍ୟ ସରକାରୀ ଗୃହ ନିର୍ମାଣରେ ବ୍ୟୟିତ ହେଉଛି । ଷ୍ଟାର୍ଲିଂ ବର୍ଣ୍ଣିତ ପୂର୍ବ ଇଟର ତୋରଣ ଭଟିକୁ ଭାଙ୍ଗିଦେଲେ ଏବଂ ଫତେ ଖାଁ ରହିମଙ୍କ ନାମରେ ଥିବା ଗୋଟିଏ ସୁନ୍ଦର ମନ୍ଦିର ହିଁ କେବଳ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କର କୌତୂହଳଜନକ ହୋଇ ରହିଅଛି । ଏହି ପ୍ରଦେଶର ବହୁତ ଆଶ୍ଚର୍ଯ୍ୟଜନକ ମନ୍ଦିର ଓ ପ୍ରାସାଦର ଦଶା ଦୁର୍ଭାଗ୍ୟବଶତଃ ଏପରି ହୋଇଅଛି । ଉପରୋକ୍ତ ମନ୍ତବ୍ୟରୁ ସ୍ପଷ୍ଟ ଜଣାଯାଏ ଇଂରେଜମାନେ କପରି ଅମର ଗୌରବ ଯୁକ୍ତ ବାରବାଟୀ

ଦୁର୍ଗକୁ ଭୂମିସାତ୍ କରି ନଷ୍ଟ କରି ଦେଇଅଛନ୍ତି ।

ବାରବାଟୀର ଏହି ନବରତ୍ନ ପ୍ରାସାଦ ଗୋଟିଏ ଆଶ୍ଚର୍ଯ୍ୟଜନକ ବସ୍ତୁ । ଏହା ଓଡ଼ିଶୀୟ ମାନଙ୍କର ସେ ସମୟର ଗୋଟିଏ ଉଜ୍ଜ୍ୱଳ କୀର୍ତ୍ତି ।

ସେ କାଳକୁ ଲକ୍ଷ୍ୟକଲେ ଓଡ଼ିଶା କଣ କଣ ନ ଥିଲା ? ୧୦୭୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ କେଶରୀ ବଂଶ ଓଡ଼ିଶାରେ ରାଜତ୍ୱ କରୁଥିଲେ । ନୃପତିକେଶରୀ ଚଉଦ୍ୱାରରେ ଗୋଟିଏ ଦୁର୍ଗ ନିର୍ମାଣ କରାଇଥିଲେ । ଏହି କେଶରୀବଂଶର ଆଉ ଜଣେ ନୃପତି କଟକର ଦକ୍ଷିଣରେ ସାରଙ୍ଗଗଡ଼ ଦୁର୍ଗ ନିର୍ମାଣ କରିଥିଲେ । ତାହା ଆଜି ମଧ୍ୟ ଜଙ୍ଗଲ ଭିତରେ ରହିଛି । ଆଉ ଗୋଟିଏ ଥିଲା ଚଉଦ୍ୱାର ଦୁର୍ଗ । ଏହା ୧୧୩୪ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏହି ଚୋଡ଼ଗଙ୍ଗଦେବ ଓଡ଼ିଶାର କେଶରୀବଂଶର ଶେଷ ରାଜା ସୁବର୍ଣ୍ଣ କେଶରୀଙ୍କୁ ପରାସ୍ତ କରିଥିଲେ । ସେତେବେଳେ କେଶରୀ ବଂଶର ରାଜଧାନୀ ଥିଲା ଚଉଦ୍ୱାର ।

୧୧୯୭ ଖ୍ରୀ.ରେ ଅନଙ୍ଗଭୀମ ଦେବ ବାରବାଟୀ ଦୁର୍ଗ ନିର୍ମାଣ କରାଇଲେ । କୃଷ୍ଣଅଡ଼ ଦୁର୍ଗ — ସାରଙ୍ଗଗଡ଼, ଚୌଦ୍ୱାର, ଚନ୍ଦ୍ରକାଟି, ପୁଣି ତା ଉପରେ କଟକ ନିକଟରେ ଏହି ବାରବାଟୀ ଦୁର୍ଗ । ଏହାପରେ ହିନ୍ଦୁରାଜାମାନେ ଏହି ଦେଶକୁ ଖୁବ୍ ସୁଦୃଢ଼ କରିଥିଲେ । ବାରବାଟୀ ଦୁର୍ଗର ନାମ, ବାରବାଟି ଜମିଉପରେ ଏହା ସ୍ଥାପିତ ହୋଇଅଛି ।

ଅନଙ୍ଗଭୀମଦେବ ପ୍ରଥମେ ଯାଜପୁରରେ ରାଜଧାନୀ କରିଥିଲେ । ସେ ଦେଖିଲେ ଯେ ମୁସଲମାନ ଆକ୍ରମଣ ବଡ଼ ଭୀଷଣ ହେଉଛି । ସେଥିପାଇଁ କଟକରେ ଏହି ବାରବାଟୀ ଦୁର୍ଗ ନିର୍ମାଣ କରାଇଲେ ।

ଅନଙ୍ଗଭୀମ ଦେବ ନିଜେ ମହା ଯୋଦ୍ଧା ଥିଲେ । ତେଣୁ ସେ ଏହି ବାରବାଟୀ ଦୁର୍ଗକୁ ଦୁର୍ଭେଦ୍ୟ କରିଥିଲେ ।

ଇଂରେଜମାନେ ଏହି ଦୁର୍ଗକୁ ୧୮୦୩ ଖ୍ରୀ. ରେ ଅଧିକାର କଲେ ।

ଓଡ଼ିଶାର ସୂର୍ଯ୍ୟବଂଶୀୟ ରାଜାମାନେ ଅତି କ୍ଷମତାବାନ୍ ଥିଲେ ଏବଂ ସେମାନେ ଆପଣା ଆପଣାର ପ୍ରତିପତ୍ତି ଖୁବ୍ ବଢ଼ାଇ ଯାଇଥିଲେ । ପ୍ରତାପରୁଦ୍ର ଦେବ ଏହି ସୂର୍ଯ୍ୟବଂଶର ଶେଷ ରାଜା । ତାଙ୍କର ସେନାପତି ମୁକୁନ୍ଦ ଦେବ ବାହୁବଳରେ ଓଡ଼ିଶାର ସିଂହାସନରେ ୧୫୫୭ ଖ୍ରୀ. ରେ ଆରୋହଣ କଲେ ଏବଂ ଆପଣାକୁ କଳିଙ୍ଗ ସାମ୍ରାଜ୍ୟର ଏକ ମହାଧିପତି ବୋଲି ଘୋଷଣା କଲେ ।

ଏହି ମୁକୁନ୍ଦ ଦେବ ଚାଲୁକ୍ୟବଂଶୀୟ ଥିଲେ । ଚାଲୁକ୍ୟମାନେ ଓଡ଼ିଶାରେ ଏକ ପ୍ରକୃଷ୍ଟ ଶାସନ କରିଥିଲେ ।

ଏହି ମୁକୁନ୍ଦ ଦେବ ବାରବାଟୀ ଦୁର୍ଗକୁ ଅଦ୍ଭୁତ ସୁଦୃଢ଼ କରିଥିଲେ । ସେ ସମସ୍ତ ସମଗ୍ର ଭାରତର ଚକ୍ଷୁଆଚ ନବରତ୍ନ ପ୍ରାସାଦ ନିର୍ମାଣ କରାଇଥିଲେ । ଐତିହାସିକଙ୍କ ମତଭେଦ ଅଛି ଏହି ନବରତ୍ନ ପ୍ରାସାଦ ହେଲା । କେତେକ କହନ୍ତି

ଯେ ଉପର ଉପର ନବତଳ ପ୍ରାସାଦ ଥିଲା । ଆଉ କେତେକ କହନ୍ତି, ଏହା ଏକ ଭୂମି-ପୃଷ୍ଠରେ ଗୋଟିଏ ଗୋଟିଏ ବଖରା ଭାଗ ସ୍ୱରୂପ ଥିଲା । କିନ୍ତୁ ଗୋଟିଏ କଥାରେ ସନ୍ଦେହ ହୁଏ ଯଦି ଏପରି ସମଭୂମିରେ ଗୋଟିଏ ଗୋଟିଏ ବଖରା ଥିଲା ତାହାହେଲେ ରାଜାଙ୍କ ବାସଗୃହଟି ଅରକ୍ଷିତ ହୋଇପଡ଼ିବ । କାରଣ ବର୍ଣ୍ଣନା ଅନୁଯାୟୀ ଏହା ଏକାବେଳେ ଶେଷକୁ ଗୋଟିଏ କଣରେ ପଡ଼ି ରହିବ । ପୁଣି ଦରବାର ଗୃହକୁ ଲାଗି ରନ୍ଧନ ଶାଳାଟି ପଡ଼ିବ । ଏହା ଅସୁନ୍ଦର, ଅସମୀଚୀନ ଜଣାପଡ଼ୁଛି ।

ହୁଏତ ମୁକୁନ୍ଦଦେବ ଶ୍ରୀରଙ୍ଗମ୍ ମନ୍ଦିର ଦେଖି ଏହିପରି ନବତଳ ପ୍ରାସାଦ ତିଆରି କରିଥିଲେ । ଏହିପରି ନବତଳ ପ୍ରାସାଦର ଧ୍ୱଂସାବଶେଷ ଇତ୍ୟାଦି ଜୟପୁର ଏବଂ ବିଜାପୁରରେ ଦେଖାଯାଏ । ଆକବରଙ୍କ ନିଜ ପ୍ରାସାଦ ପଞ୍ଚତଳ ବିଶିଷ୍ଟ ଥିଲା ଫତେପୁର ସିକ୍ରିଠାରେ ।

୧୭୬୭ ଖ୍ରୀ. ରେ ଲମଟ୍ସ ଏହି ପ୍ରାସାଦର ଉତ୍ତର ଏବଂ ପଶ୍ଚିମ ଭାଗ ଦେଖିଥିଲେ ବୋଲି ବର୍ଣ୍ଣନା କରିଛନ୍ତି ଏବଂ ଏହା ଇଂଲଣ୍ଡର ୱିଣ୍ଡସର୍ ଦୁର୍ଗ ପରି ଦିଶୁଛି ବୋଲି ଲେଖିଯାଇଛନ୍ତି । ଚତୁର୍ଦ୍ଦିଗରେ ପରିଖା ମଣ୍ଡିତ ଏହି ବାରବାଟୀ ଦୁର୍ଗର ପତନ ଓଡ଼ିଆଜାତିର ଧମନୀରେ ମହା ଆଘାତ ଦେଇଥିଲା ଏବଂ ଆଜି ପର୍ଯ୍ୟନ୍ତ ଦେଉଅଛି । ରାଜପ୍ରାସାଦ ଏବଂ ଦୁର୍ଗ ଏକତ୍ର ଥାଇ ଏହି ବାରବାଟୀ ଲୋକଚକ୍ଷୁର ବିସ୍ମୟ, ଆନନ୍ଦ ଏବଂ ଓଡ଼ିଆ ଜାତିର ଗର୍ବ ଉତ୍ପାଦନ କରୁଥିଲା ।

ଦୁଃଖର କଥା, ଏହି ବାରବାଟୀ ଦୁର୍ଗର ଖନନକାର୍ଯ୍ୟ ଆଜି ସୁଦ୍ଧା ଭାରତ ସରକାର ଆରମ୍ଭ କରିନାହାନ୍ତି । ଅଥଚ ଏହାର ପଥର ସବୁ ଏଆଡ଼େ ସେଆଡ଼େ ଯାଇ କଟକ ହସପିଟାଲରେ ଲାଗିଛି ଏବଂ ଫଲ୍‌ସପଏଣ୍ଟ ବଙ୍ଗଳାର ତିଆରି ହୋଇଛି । "କାଳସ୍ୟ କୁଟିଳା ଗତିଃ ।"

* * *

# ହିନ୍ଦୁ ମୁସଲମାନ

ଆଜକୁ ତିନି ହଜାର ବର୍ଷ ଧରି ଆଫଗାନିସ୍ଥାନର ସେହି ମର୍ଦ୍ଦ (He-man) ମାନେ ଭାରତ ଉପରେ ଚଢ଼ାଉ କରୁଛନ୍ତି । ଆଜକୁ ତିନି ହଜାର ବର୍ଷ ଧରି ଭାରତ ତାହା ସହ୍ୟ କରିଆସିଛି । ଆଜି ଅସାଧ୍ୟ ସାଧିତ ହୋଇଛି — ଫ୍ରଣ୍ଟିଅର ଗାନ୍ଧୀ 'ଲାଲକୁର୍ତ୍ତି' ଦଳକୁ ଅହିଂସା ମନ୍ତ୍ରରେ ପରିବର୍ତ୍ତନ କରି ପାରିଛନ୍ତି । ଆଶ୍ଚର୍ଯ୍ୟଜନକ ଏହା ।

ଆଜି ଭାରତରେ ପ୍ରଶ୍ନ ଉଠିଛି, ହିନ୍ଦୁ ମୁସଲମାନ ଏକ ହେବେ କି ନାହିଁ ? ସୁରତ କଂଗ୍ରେସ ପରେ ଯେଉଁ ଦୁଇ ଫାଙ୍କ ସୃଷ୍ଟି ହୋଇଥିଲା, ତାଙ୍କୁ ଲକ୍ଷ୍ୟ କରି ଅମୃତବଜାର ପତ୍ରିକାର ଧନୀ ଶ୍ରେଷ୍ଠ ସମ୍ପାଦକ ମୋତିଲାଲ ଘୋଷ କହିଥିଲେ— ହୁଏତ ମିଳିତ କଂଗ୍ରେସ ହେବ, ନୋହିଲେ କଂଗ୍ରେସ ଆଦୌ ନ ହେଉ — ଏହି ମତ କହିଥିଲେ । ଏହା ଫାଟ୍ଆ ଶତଜନ୍ତା ମୋନବେଙ୍କର ମତ ମଧ୍ୟ । ନିଜ ଘର ଦୁ' ଫାଙ୍କ ହେଲେ ଘର ଭାଙ୍ଗିବ, ଅତଏବ ହିନ୍ଦୁମୁସଲମାନ ସମସ୍ୟା ସମାଧାନ କରିବା ବଡ଼ ଦରକାର ।

ଗାନ୍ଧି ଜୀ କହିଛନ୍ତି, ଏକ ମା'ର ଦୁ'ଟା ଆଖି ଏହି ହିନ୍ଦୁ ମୁସଲମାନ । ଅତଏବ କୌଣସି ଆଖିକୁ ନଷ୍ଟ କରିହେବ କି ? ଏହା ଅଦୌ ସମ୍ଭବ ନୁହେଁ । କଂଗ୍ରେସ — ଭାରତୀୟ ଜାତୀୟ କଂଗ୍ରେସ ଆଜି ସେଥିପାଇଁ ପୂର୍ଣ୍ଣ ଏକ ହୋଇ ପାରୁ ନାହିଁ । ମୁସଲମାନ୍ ବେଶୀ ଭାଗ ଅଲଗା ହୋଇ ରହିଛନ୍ତି ।

ଇସଲାମ୍ ଧର୍ମ ଓ ଈଶ୍ୱରଙ୍କ ଠାରେ ନତ, ପ୍ରଶାନ୍ତ, ଆପଣାକୁ ଏକାନ୍ତ ଭାବରେ ଦାସ, ଦାସାନୁଦାସ କରିଦେବା କଥା । ଇସଲାମ୍ ର ଅର୍ଥ ହିଁ ଏଇଆ ।

ହିନ୍ଦୁ ଧର୍ମପ୍ରାଣ, ମୁସଲମାନ ଧର୍ମପ୍ରାଣ, ବିରୋଧ କାହିଁକି ? ଏ ବିରୋଧ ରାଜନୀତି ମୂଳକ, ଧର୍ମମୂଳକ ନୁହେଁ । ହିନ୍ଦୁ ଉଦାର ହୃଦୟର । ସେ ତୁଚ୍ଛତା ଅନ୍ତରକୁ ଯାଏ ନାହିଁ । ତା'ର ଧର୍ମ ଆପଣା ଠାରେ ରହୁ, ସେ ଆପଣା ଧର୍ମକୁ ଆପେ ରଖିଲେ ହେଲା । ଇହୁଦୀ ଓ ଖ୍ରୀଷ୍ଟିଆନ୍ ମାନେ ଏକ ହିଁ ପୁସ୍ତକ ପଢ଼ନ୍ତି, ଅଥଚ କଜିଆ କରନ୍ତି । ଏ ସେହିପରି । ହିନ୍ଦୁ ମୁସଲମାନ ବିରୋଧ ଧର୍ମମୂଳକ ନୁହେଁ, ଏହା ରାଜନୀତି-ମୂଳକ ।

ମୁସଲମାନ ଧର୍ମ ତ ଉଦାର ଧର୍ମ । ଏ ଧର୍ମ କହେ ନାହିଁ, ଯେ ମୁସଲମାନ ନୁହନ୍ତି ସେ ନରକକୁ ଯିବେ — ଖ୍ରୀଷ୍ଟିଆନ ଧର୍ମ ଯେପରି କହେ । ପକ୍ଷାନ୍ତରରେ ମୁସଲମାନ ଧର୍ମ ସବୁ ଧର୍ମର ପ୍ରଧାନଙ୍କୁ ସମ୍ମାନ କରିବା ପାଇଁ ଅନୁଜ୍ଞା କରେ ।

ମହମ୍ମଦଙ୍କ ମୃତ୍ୟୁରୁ ଯେଉଁସବୁ ଲେଖ ଛପିଥିବ, ସେସବୁ କହିବ ଦେଖନ୍ତୁ—

କିଏ ମୁସଲମାନ ?— ଯାହା ହାତରୁ ଏବଂ କଥାରୁ ଲୋକେ ଆଶ୍ୱାସନା ପାଆନ୍ତି, ଆପଣାକୁ ନିରାପଦ ମଣନ୍ତି ।

ସେହି ଘର ଧନ୍ୟ, ଯେଉଁ ଘରେ ଅନାଥ ପୂଜା ପାଏ ।

ସବୁ ଦାରିଦ୍ର୍ୟଠାରୁ ମୂର୍ଖତା ବଡ଼ ।

ଯେ ମୁସଲମାନ, ସେ କେବେ କୃପଣ ଓ ମିଥ୍ୟାବାଦୀ ହୋଇପାରିବ ନାହିଁ ।

ସ୍ତ୍ରୀଠାରେ ସୁନ୍ଦର ମୁହଁଠାରୁ ସୁନ୍ଦର ଆତ୍ମା ବେଶୀ ମୂଲ୍ୟବାନ ।

ମା'ର ଗୋଡ଼ତଳେ ସ୍ୱର୍ଗ ।

ଯା'ର ଦୟା ନାହିଁ, ସେ ଦୟା ପାଇବ ନାହିଁ ।

ଜ୍ଞାନ ଅର୍ଜନ କରିବା ପ୍ରତ୍ୟେକ ମୁସଲମ୍ ପୁରୁଷ ଓ ସ୍ତ୍ରୀର କର୍ତ୍ତବ୍ୟ ।

ଦେଶବାସୀର ରକ୍ତଠାରୁ ଜ୍ଞାନୀ ଛାତ୍ରଙ୍କର କାଳୀ ବେଶୀ ପବିତ୍ର ।

ମହାତ୍ମା ଗାନ୍ଧୀ କହିଛନ୍ତି—ତରବାରି ସାହାଯ୍ୟରେ ମୁସଲମାନ ଧର୍ମ ପୃଥିବୀରେ ବିସ୍ତାରିତ ହୋଇନାହିଁ । ମହମ୍ମଦଙ୍କ କଠୋର ସରଳତା, ପୂର୍ଣ୍ଣ ଆତ୍ମାହୁତି, ପ୍ରତିଜ୍ଞା ପ୍ରତି ପ୍ରଗାଢ଼ ଭକ୍ତି, ତାଙ୍କର ବନ୍ଧୁ ଓ ଅନୁଚରଙ୍କ ପ୍ରତି ଗଭୀର ମମତା, ତାଙ୍କର ସାହସ, ନିର୍ଭୀକତା, ଈଶ୍ୱରଙ୍କ ଠାରେ ପୂର୍ଣ୍ଣ ଆତ୍ମସମର୍ପଣ ଏବଂ ନିଜର ଲକ୍ଷ୍ୟରେ ପୂର୍ଣ୍ଣ ବିଶ୍ୱାସ—ଏହି ସବୁଦ୍ୱାରା ମୁସଲମାନ ଧର୍ମ ବିସ୍ତାରିତ ହୋଇଛି । ମୁସଲମାନ ଧର୍ମ ମନୁଷ୍ୟଙ୍କୁ ଯେଉଁ ସାମ୍ୟ ଶିକ୍ଷା ଦିଏ, ତାହା ଅଦ୍ଭୁତ । ମୁସଲମାନ ହେଲେମଣି ରାଜା ଆଉ ଫକୀର ଏକ ପିଆଲାରୁ ପାଣି ପିଇବେ ।

ମହମ୍ମଦ, ମହମ୍ମଦ—ଅଦ୍ଭୁତ ଶକ୍ତି ମହମ୍ମଦଙ୍କର । ମଦ ପିଇବ ନାହିଁ । ଏହା ମହାଅନ୍ୟାୟ । ଏତିକି କଥାରେ ମଦିନାର ରାସ୍ତାରେ ସବୁ ମଦ ତଳା ହୋଇଗଲା, ସବୁ ମଦଘଡ଼ା ଭଙ୍ଗା ହେଲା । ଅଥଚ ଆମର prohibition ପାଇଁ କେତେ କଳ୍ପନା, ଚେଷ୍ଟା, ପ୍ରଚେଷ୍ଟା, ସ୍କିମ୍ ପ୍ଲାନ୍ ଚାଲିଛି ।

ମହମ୍ମଦ, ମହମ୍ମଦ—ସେ ପତିତ, ନୀଚ, ଗରିବଙ୍କୁ ଅମିର ଆସନରେ ଏକ କରି ବସାଇଦେଲେ ସେହି ମହମ୍ମଦ ଆହା ବିପ୍ଳବ କର୍ମୀ ଥିଲେ ।

ମୁସଲମାନ ଧର୍ମରେ ଅବତାର-ବାଦର କଥା ନାହିଁ, ଯୀଶୁଖ୍ରୀଷ୍ଟ ଭଳିଆ କାହାର ସାହାଯ୍ୟ ବିନା ସ୍ୱର୍ଗର ସିଡ଼ିକୁ ଉଠିବା ଅସମ୍ଭବ—ଏ କଥା ନାହିଁ, ପୌତ୍ତଳିକ ନାହିଁ, ଗଛପୂଜା, ମଣିଷ-ପୂଜା—କିଛି ନାହିଁ । ଯାଅ ସିଧା ସିଧା ଭଗବାନଙ୍କ ପାଖକୁ—ସମ୍ପୂର୍ଣ୍ଣ ଆତ୍ମ-ସମର୍ପଣ କରି ଆପଣାକୁ ପରିଷ୍କାର କର । ମୁସଲମାନ ଧର୍ମ ଏକ ଭଗବାନ ଛଡ଼ା ଅନ୍ୟ କୌଣସି ପ୍ରକାର ଗନ୍ଧ ସହ୍ୟ କରିପାରେ ନାହିଁ । ଗୀତାର "ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ"କୁ ହିଁ ଏକମାତ୍ର ଖାଣ୍ଟି ସତ୍ୟ ଧରିନେଇଛି ମୁସଲମାନ । ଜୟ ହେଉ ମୁସଲମାନର, ଜୟ ହେଉ । ଅର୍ଥାତ୍ ଯେ ଈଶ୍ୱରଙ୍କଠାରେ ଆପଣାକୁ ପୂର୍ଣ୍ଣତଃ ଅବନତ କରିପାରିଅଛି, ଆଉ କାହାରିଠାରେ, ଅନ୍ୟ କିଛିରେ ମଥା ନୁଆଁଇ ନାହିଁ, ସେହି ବ୍ୟକ୍ତିର ଜୟ ହେଉ । ସେ ମୁସଲମାନ୍—ଖାଣ୍ଟି ମୁସଲମାନ୍ । ଗୀତାର ଏହିଠାରେ ହିନ୍ଦୁ ମୁସଲମାନ୍ ମିଳନ ହେଉ ।

* * *

# ଗୋରକ୍ଷା

ଯେପରି ଦେକକାଳ ପଡ଼ୁଛି ସେଥିରେ ଗାଈ କ'ଣ, ମଣିଷଙ୍କୁ ମଧ୍ୟ ଖାଇବାକୁ ହେବ । ଆଜି ଗାଈ । ଆଜି ଯେପରି ଗାଈ—ସେ ସବୁ ତ ଖାଇଦେବା ଦରକାର, ଅତଏବ ଯେତେ ଗାଈ ଖାଇ ପାରିବ, ସେତେ ଭଲ ବୋଲି ବଡ଼େ ପାଠୁଆ ଲୋକଙ୍କର—ଅତି ପାଠୁଆ ଲୋକଙ୍କର ମତ—ବିଶେଷତଃ ଯେଉଁମାନେ ବିଲାତକୁ ଯାଇଛନ୍ତି, କିମ୍ବା ନୂତନ ଅର୍ଥଶାସ୍ତ୍ର ଆଲୋଚନା କରିଛନ୍ତି । ଏହି ଯୁକ୍ତି ଅବଲମ୍ବନ କରି କୁହାଯାଇପାରେ, ଯେପରି ଦେକକାଳ ପଡ଼ୁଛି, ସେଥିରେ ସାନ ସାନ ସୁନ୍ଦର ଛୁଆଙ୍କୁ—ମଣିଷଛୁଆଙ୍କୁ ମଧ୍ୟ ରାନ୍ଧି ଖିଆଯାଇପାରେ । ଏଥିରେ ଆପତ୍ତି କ'ଣ ?

ବନ୍ଧୁ ରେ ପାଠୁଆ—ହାୟ ରେ ପାଠୁଆ ! କଥାଟା ତାହା ନୁହେଁ । ବହୁ ଯୁଗଧର୍ମ ଭାରତରେ ଗାଈଙ୍କୁ ଆମେ ଆମର ପରିବାରର ଅନ୍ତର୍ଭୁକ୍ତ କରି-ନେଇଛୁ । ସେଥିପାଇଁ ଗାଈଙ୍କୁ ଖାଇବାକୁ ହେବନାହିଁ କୁହା ଯାଇଅଛି । ଆଜି ଭାରତରେ ଛତିଶ କୋଟି ଲୋକଙ୍କ ପାଇଁ ପନ୍ଦର କୋଟି ଗାଈ ମଇଁଷି ମାତ୍ର ରହିଛନ୍ତି । ଯଦି ଏହା ବେଶୀ ହେଲା, ତାହା ହେଲେ ଜନ୍ମନିୟନ୍ତ୍ରଣ କରାଯାଇପାରେ । ଯେପରି ଏଣିକି ମଣିଷର ଜନ୍ମନିୟନ୍ତ୍ରଣ ମଧ୍ୟ କରାଯାଉଅଛି, ଆଉ ଆବହମାନ କାଳରୁ ଅଣ୍ଡିରା ବାଛୁରିଙ୍କୁ ତ ଖାସି କରି ବଳଦ ତିଆରି କରାଯାଉଛି । ଏଣିକି ମଣିଷଙ୍କୁ ଖାସି କରି ଏହିପରି କେତେଗୁଡ଼ିଏ ମଣିଷ-ବଳଦ ମଧ୍ୟ ତିଆରି କରାଯାଇପାରେ ।

କଥାଟା ତାହା ନୁହେଁ । କଥାଟା ରହିଲାଣି Economics ରେ । କିନ୍ତୁ Economics ପାଇଁ ଯଦି ଭାରତୀୟଙ୍କ ଗୋଟିଏ ଅତି ପବିତ୍ର ପ୍ରାଚୀନ sentiment ଉପରେ ଏପରି ଆଘାତ ହେବ, ତାହାହେଲେ ତୁମେ ଗୋହନ୍ତା, ନରହନ୍ତା ମଧ୍ୟ । ଯେଉଁଠାରେ ମଣିଷଙ୍କୁ ପୁରା ଖାଇବାକୁ ଦେଇ ପାରୁନାହଁ, ସେଠାରେ ତୁମେ ନରହନ୍ତା ନୁହଁ ତ ଆଉ କ'ଣ ?

ଅତଏବ Economics ର ସମାଧାନ କରିବାକୁ ଯାଇ ଗୋଖାଦକ ହୁଅ କହିବାଟା ଅନ୍ୟାୟ । ମହା ଅନ୍ୟାୟ—ଘୋର, ଘୋରତର, ଘୋରତମ ଅନ୍ୟାୟ ! ତୁମେ ଚଣ୍ଡାଳ, ଦୁର୍ବୃତ୍ତ, ନରାଧମ !

ଅତଏବ ସରକାର ଦେଶର ଆର୍ଥିକ ଉନ୍ନତିର ଚେଷ୍ଟା କରନ୍ତୁ ଆଉ ସର୍ବ-ସାଧାରଣଙ୍କୁ ଗୋଖାଦକ ନ କରନ୍ତୁ ।

ଆଉ ଗୋଖାଦକ ତିଆରି କରିବାର ଯୁକ୍ତିଟା କ'ଣ ? ଯୁକ୍ତିଟା ହେଉଛି, ବୃଦ୍ଧ ଗାଈଙ୍କୁ ଯେପରି କୁତ୍ସିତ ଅବସ୍ଥାରେ ରଖିଛୁ, ତା'ଠାରୁ ସେହି ଗାଈଙ୍କୁ ଖାଇଦେବା ଦରକାର । ଆଉ ଭାରତୀୟ ହୋଇ—ହିନ୍ଦୁ ହୋଇ ଏପରି ହାଲୁକା

ଭାବରେ କଥାଟା କହିବା ଅତ୍ୟନ୍ତ ଅଶୋଭନୀୟ—କେବଳ ଅଶୋଭନୀୟ ନୁହେଁ ଅମାର୍ଜନୀୟ ।

ଏହା ଛଡ଼ା ଏହା ଭିତରେ ଆଉର ଗୋଟିଏ ଗମ୍ଭୀର ତଥ୍ୟ ନିହିତ ଅଛି । ଗୃହସ୍ଥର ଦରକାର ଗୋବତ୍ସା ଦୁଧ ପାଇଁ । ସେଥିପାଇଁ ଗାଈକୁ ଗୋମାତା କୁହାଯାଇଛି । ଆଜି ସେଥିପାଇଁ ଗାଈ ଘରେ ଘରେ ହିନ୍ଦୁ ପାଳୁଛି, ପୋଷୁଛି, ପୂଜା କରୁଛି । ଆଜି ସେହି ହିନ୍ଦୁ ଗାଈକୁ ଭଲକରି ଖାଇବାକୁ ଦେଇପାରୁ ନାହିଁ, କଥା ମଧ୍ୟ ଭାବିବାକୁ ହେବ, ହିନ୍ଦୁ ଆଜି—ସାଧାରଣ ହିନ୍ଦୁ ଗୃହସ୍ଥ ଆଜି କଅଣ ଖାଉଛି ।

ଦୁଃଖ ହୁଏ ଏତିକି ଯେ, ଏହି (new philosophy) ଶିଖାଉଥିବା, ସାଧାରଣ ହିନ୍ଦୁ ଗୃହସ୍ଥମୁଖରୁ ବାହାରିବ ନାହିଁ—ଏହା ବାହାରୁଛି କେବଳ କେତୋଟି ଆଜିକାଲି ପାଠୁଆଙ୍କ ମୁହଁରୁ ଯେଉଁମାନେ ବେଶୀ ଦରମା ପାଆନ୍ତି, ଅଥଚ ଗାଈ ରଖନ୍ତି ନାହିଁ ।

ସେହିମାନଙ୍କୁ ଆଗେ ଦଣ୍ଡ ଦେବାକୁ ହେବ । ସେମାନଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଥିବା ସ୍ଥଳେ ସେମାନେ କାହିଁକି ଗାଈ ରଖୁନାହାନ୍ତି ? ସେମାନେ କାହିଁକି ଗାଈ ପୋଷୁନାହାନ୍ତି ? ସେମାନେ କାହିଁକି farm କରୁନାହାନ୍ତି ? ତାହାହେଲେ ଏ ଦେଶରେ ଦୁଧ ବିଶେଷ ପ୍ରଚୁର ହୁଅନ୍ତା । ଆଉ ଯେଉଁ ସରକାର ଆମକୁ ପାଳୁଛନ୍ତି, Welfare State ଭଳି, ସେ କାହିଁକି ଗୃହସ୍ଥର ଗାଈ ପାଇଁ ଭଲର ସୁବ୍ୟବସ୍ଥା କରୁ ନାହାନ୍ତି ? ସେ କାହିଁକି farm କରି ଶୁଖିଲା ଗାଈକୁ ଦୁହାଁଳିଆ କରୁନାହାନ୍ତି ? ସେ କାହିଁକି ଗାଈର ବାଛୁରି ନ ଥିବା ବେଳେ ତା'ର ଯତ୍ନ ନେଉ ନାହାନ୍ତି, ଯେପରି କି ଗୃହସ୍ଥମାନେ କିଛି ମାସିକ ଖୋରାକ ପଇସା ଦେଇ ସେମାନଙ୍କର ଗାଈ ସେଠାରେ ଛାଡ଼ିଦେଇ ଆସି ପାରନ୍ତେ । ଏସବୁ ଦିଗରେ ଚିନ୍ତା ନ କରି ଖାଲି ଅଳ୍ପଭାବରେ କହିଦେଉଛି । ଯେତିକି ଗାଈ ଆମର ଅଛି ସେସବୁ ଗାଈ ହତ୍ୟା କରିବା ଦରକାର । ଏ ସୁକ୍ତିରେ କହିବାକୁ ହେବ, ଯେପରି ମଣିଷ ଆମର ଅଛନ୍ତି ସେପରି ମଣିଷ ସବୁଙ୍କୁ ତ ହତ୍ୟା କରିବା ଦରକାର । ତାହାହେଲେ ଆଉ ଏତେ Welfare State କରିବାର ଦରକାର ପଡ଼ିବ ନାହିଁ ।

ଗାଈ ହିନ୍ଦୁର ଅତି ପବିତ୍ର ଜୀବ । ଗାଈର ଅଧିକତର ସେବା ଦିଗରେ ପାଠୁଆମାନେ ଓ ଧନିକମାନେ ମନଦିଅନ୍ତୁ । ଆଉ ଖାଲି ଗାଈ ଖାଇଦେଲେ ସମସ୍ୟାର ସମାଧାନ ହେବ ନାହିଁ । ଯୁଦ୍ଧବେଳେ ୧୯୩୯-୧୯୪୨ ବେଳେ ଭାରତରୁ ଅନେକ ଗାଈ ତ ଖାଇ ଦେଇଛ—ଭାଙ୍ଗେଣି ପଡ଼ିଗଲା— ଗୋରୁ ସଂଖ୍ୟା ଏତେ କମିଗଲା ।

ଆଜି ଯୁକ୍ତି ବାଢ଼ୁଛି, ଦୁର୍ବଳ ଗାଈ ଏତେ ରଖିବା ଠାରୁ ସେ ସବୁ ଖାଇଦେବା ଦରକାର । କାହିଁକି, ତୁମର ଦୁର୍ବଳ ବୁଆଟାକୁ ମାରି ଦେଉନାହିଁ ? ଦୁର୍ବଳ ମଣିଷକୁ ମାରି ଦେଉନାହିଁ ? ପୀଡ଼ିତ, ବ୍ୟଥିତଙ୍କୁ ମାରି ଦେଉନାହିଁ ? —ଏତେ ହସପାତାଳ, ଡାକ୍ତରଖାନା କାହିଁର

କଷିବାର ଖୋଲିବାର ଦରକାର ହେବ ନାହିଁ ।

କଥା ତାହା ନୁହେଁ—ଭଲ କରି ଖାଇବାକୁ ହେବ । ଗୋମାତାକୁ ତୁମର କୁଟୁମ୍ବର ଜଣେ ବୋଲି ଗ୍ରହଣ କରିବ ନା ନାହିଁ ? ସେ ଯେ ହିନ୍ଦୁର ପରିବାରଭୁକ୍ତ ହୋଇଯାଉଛି । ଅନ୍ୟ ଜୀବଜନ୍ତୁ ସେପରି ନୁହଁନ୍ତି ହିନ୍ଦୁଙ୍କ ପକ୍ଷରେ ।

କୁକୁର, ବିଲେଇ କଥା କେହି କହୁ ନାହିଁ । କୁକୁଡ଼ା କଥା କେହି କହୁ ନାହିଁ ।

ଭାରତରେ ଏହି ଗୋଭକ୍ତି ଅତି ପ୍ରାଚୀନ ଏବଂ ଏହା ଭାରତୀୟଙ୍କ ମର୍ମେ ମର୍ମେ ଲାଗିଛି । ଆଜି ବୌଦ୍ଧଧର୍ମ, ଜୈନଧର୍ମ କଥା ଯାହା କହିବ, ତାହା-ହେଲେ ତ ତୁମକୁ ନିରାମିଷାଶୀ ହେବାକୁ ହେବ ।

ଆଜି ତ ବୁଦ୍ଧଜୟନ୍ତୀ ହେଉଛି—ବୁଦ୍ଧଙ୍କର ଅହିଂସା ଆଲୋଚନା ଖୁବ୍ ହେଉଛି । ଏପରି ସମୟରେ ଭାରତକୁ ଗୋ-ଖାଦକ ହେବାକୁ ପରାମର୍ଶ ଦେବା ନୂଆ ନେତାମାନଙ୍କର ଅବିବେକତା ଛଡ଼ା ଆଉ କିଛି ନୁହେଁ ।

ଗାଈ ପାଇଁ ସରକାର farm କରୁ, ଲୋକଙ୍କୁ ଅଧିକ ଦୁଧ ଯୋଗାଉ । ଲୋକଙ୍କର ଆର୍ଥିକ ଉନ୍ନତି କରିବାର ପ୍ରଗାଢ଼ ଚେଷ୍ଟା କରୁ ଯଦ୍ଦ୍ୱାରା କି ଲୋକେ ଦୁଧ ଖାଇବା ପାଇଁ ପଇସା ଅଧିକ ପାଇ ପାରିବେ । ସେ କଥା ନ କହି—ଖାଲି କହିଦେବା ଯେ ଆମର ଯେପରି ଗାଈ ସବୁ ଅଛନ୍ତି, ସେଥିରେ ଗୋରକ୍ଷା ଆନ୍ଦୋଳନ ଫିଲ୍ମି, ମୂର୍ଖତା, ଅବୈଜ୍ଞାନିକ ଇତ୍ୟାଦି । ଛି ଛି, ଘୃଣା ହୁଏ ଏ ସବୁ ଲୋକଙ୍କୁ । ହିନ୍ଦୁସ୍ଥାନରେ ଏମାନଙ୍କର ସ୍ଥାନ ନାହିଁ । ଏମାନେ ଭାରତକୁ ଇଂଲଣ୍ଡପ୍ରାୟ କରିବାକୁ ଚାହୁଁଛନ୍ତି । ଭାରତୀୟ ସଭ୍ୟତାକୁ ମାରିଦେବାକୁ ଚାହୁଁଛନ୍ତି । ଭାରତର ସଂସ୍କୃତିକୁ ରସାତଳରେ ବୁଡ଼ାଇ ଦେବାକୁ ଚାହୁଁଛନ୍ତି । ଏମାନଙ୍କର ମତିଗତି ବଦଳେଇବା ଦରକାର, ଅଥଚ ଏହି-ମାନେ ହିଁ କହୁଛନ୍ତି ଯେ ଯେଉଁମାନେ ଗୋ-ରକ୍ଷା ଆନ୍ଦୋଳନ କରୁଛନ୍ତି, ସେମାନେ ମୂର୍ଖ, ଗୁଣ୍ଡା ଇତ୍ୟାଦି । ମହାସଙ୍କଟ ଭିତରେ ଭାରତବର୍ଷ ପଡ଼ିଛି । ଏହି ପ୍ରକାରର ଲୋକମାନଙ୍କୁ ନ ବଦଳାଇଲେ ଭାରତର ଗତି ମୁକ୍ତି ନାହିଁ ।

* * *

# ଅଶ୍ଳୀଳତା

ଶ୍ରୀ ରବୀନ୍ଦ୍ରନାଥ ଠାକୁର ତାଙ୍କର 'ଭୁବନେଶ୍ୱର ମନ୍ଦିର' ପ୍ରବନ୍ଧରେ ଲେଖି ଅଛନ୍ତି—"ଦେଖିଲି ମନ୍ଦିର ଭିତର ସର୍ବାଙ୍ଗରେ ଛବି ଖୋଳା ହୋଇଅଛି । କେଉଁଠାରେ ଅବକାଶ ମାତ୍ର ନାହିଁ । ଏବଂ ଯେଉଁଠାରେ ଆଖି ପଡ଼େ ସେଉଁଠାରେ ଆଖି ପଡ଼େ ନାହିଁ, ସର୍ବତ୍ର ଶିଳ୍ପୀର ନିରଳସ ଚେଷ୍ଟା କାର୍ଯ୍ୟ କରୁଅଛି । ଛବିଗୁଡ଼ିକ ବିଶେଷ ଭାବରେ ପୌରାଣିକ ଛବି ନୁହେଁ । ଦଶ ଅବତାର ଲୀଳା ବା ସ୍ୱର୍ଗଲୋକର ଦେବ କାହାଣୀ ଯେ ଦେବାଳୟ ଗାତ୍ରରେ ଲିଖିତ ହୋଇଅଛି, ତାହା କହିପାରୁ ନାହିଁ । ମନୁଷ୍ୟର ଯାନ ବଡ଼ ଭଲମନ୍ଦ ପ୍ରତିଦିନର ଘଟଣା—ଖେଳ ଓ କାର୍ଯ୍ୟ, ଯୁଦ୍ଧ ଓ ଶାନ୍ତି, ଘର ଏବଂ ବାହାର ବିଚିତ୍ର ଆଲେଖ୍ୟଦ୍ୱାରା ମନ୍ଦିରକୁ ବେଷ୍ଟନ କରିଅଛି । ଏହି ଛବି ଗୁଡ଼ିକ ମଧ୍ୟରେ ଆଉ କୌଣସି ଉଦ୍ଦେଶ୍ୟ ଦେଖୁନା । କେବଳ ଏ ସମସ୍ତ ଯେପରି ଭାବରେ ଚାଲିଅଛି, ତାହା ହିଁ ଅଙ୍କନ କରିବାର ଚେଷ୍ଟା ।"

ସୁତରାଂ ଶତ ଭିତରେ ଏପରି ଅନେକ ଆଖିରେ ପଡ଼େ, ଯାହା ଦେବାଳୟର ଅଙ୍କନଯୋଗ୍ୟ ବୋଲି ତାଙ୍କୁ ମନେହୁଏ ନାହିଁ । ଏଥିରେ ବସ୍ତୁ-ବଛା ବଛି ନାହିଁ—ଭଲ ଏବଂ ମନ୍ଦ, ଗୋପନୀୟ ଏବଂ ଘୋଷଣୀୟ ସମସ୍ତ ହିଁ ଅଛି । କୌଣସି ସ୍ତ୍ରୀ ଭିତରକୁ ଯାଇ ଯଦି ଦେଖନ୍ତୁ ସେଠାରେ ଆଜିକାଲିର ଇଂରେଜ ସମାଜର ପ୍ରତିଦିନର ଛବି ଝୁଲୁଅଛି—କେହି ଖାନା ଖାଉଛି, କେହି ଡଗକାର୍ଟ (କୁକୁରଗାଡ଼ି) ହାଙ୍କୁଛି, କେହି ହୁଇସ୍କି ଖାଉଛି, କେହି ପିଆନୋ ବଜାଉଛି, କେହି ସଙ୍ଗୀଙ୍କୁ ବାହୁପାଶରେ ବେଷ୍ଟନ କରି ପଲ୍‌କା ନାଚୁଅଛି—ତାହା ହେଲେ ହତବୁଦ୍ଧି ହୋଇ ଭାବନ୍ତି ବୋଧେ ସ୍ୱପ୍ନ ଦେଖୁଅଛନ୍ତି । କାରଣ ଗୀର୍ଜା ସଂସାରକୁ ସର୍ବତୋଭାବରେ ମୁକ୍ତିକ ଦେଇ ଆପଣାର ସ୍ୱର୍ଗୀୟତା ପ୍ରକାଶ କରିବାକୁ ଚେଷ୍ଟା କରେ । ମନୁଷ୍ୟ ସେଠାରେ ଲୋକାଳୟର ବାହାରକୁ ଯାଏ, ତାହା ଯେପରି ଯଥାସମ୍ଭବ ମର୍ତ୍ତ୍ୟ ସମ୍ପର୍କ-ବର୍ଜିତ ଦେବଲୋକର ଆଦର୍ଶ । ସେଥିପାଇଁ ଭୁବନେଶ୍ୱର ମନ୍ଦିରର ଚିତ୍ରାବଳୀରେ ପ୍ରଥମେ ମନରେ ବିସ୍ମୟରେ ଆଘାତ ଲାଗେ । ସ୍ୱଭାବତଃ ଭଲ ଲାଗେ ନାହିଁ । କିନ୍ତୁ ଅଦ୍ୱୈତ ଶିକ୍ଷାରେ ଆମ୍ଭେମାନେ ସ୍ୱର୍ଗ ମର୍ତ୍ତ୍ୟକୁ ମନେ ମନେ ଜଡ଼ିକରି ରଖିଅଛୁ । ସର୍ବଦା ହିଁ ସନ୍ତର୍ପଣରେ ଥିଲେ ପାଛେ ଦେବ ଆଦର୍ଶରେ ମାନବଭାବର କୌଣସି ଦାଗ ପଡ଼େ, ପାଛେ ଦେବ ମାନବ ମଧ୍ୟରେ ସେହିଁ ପରମ ପବିତ୍ର ଦୂରର ବ୍ୟବଧାନ, କ୍ଷୁଦ୍ର ମନୁଷ୍ୟ ତାହା କେଶମାତ୍ର ଲଙ୍ଘନ କରେ । ଏଠାରେ ମନୁଷ୍ୟ ଦେବତାର ଏକାବେଳକେ ଯେପରି ଶରୀରର ଉପରେ ଆସି ପଡ଼ିଅଛି—ସେ

ମଧ୍ୟ ଯେ ଧୂଳି ଝାଡ଼ି ଆସିଅଛି ତାହା ନୁହେଁ । ଗତିଶୀଳ, କର୍ମରତ, ଧୂଳିଲିପ୍ତ ସଂସାର ପ୍ରତିକୃତି ନିଃସଂକୋଚରେ ସମୁଚ୍ଚ ଦେଉଳଗଠି ଦେବତାର ପ୍ରତିମୂର୍ତ୍ତିକୁ ଆଲିଙ୍ଗନ କରି ରଖିଅଛି ।

କିନ୍ତୁ ଭୁବନେଶ୍ୱର ମନ୍ଦିରରେ ଆଉରି ଯେପରି ଟିକିଏ ବିଶେଷତ୍ୱ ଅଛି । ଋଷି କବିର ଉପମା ମଧ୍ୟରେ ନିଭୃତ ଅରଣ୍ୟର ଏକାନ୍ତ ନିର୍ଜନତାର ଯେପରି ଏକାକୀ ରୂପରେ ପରମାତ୍ମା ଶାଶ୍ୱତିକ ରହି- ଯାଇଛନ୍ତି । ଏହିପରି ଉପମା ଦୃଷ୍ଟିରେ ପ୍ରତୀକ ଜୀବାତ୍ମା ପ୍ରକୃତିରେ ସଂଯୁକ୍ତ । ଏଥିରେ ଯେ ଧ୍ୟାନଚିତ୍ର ମନକୁ ଆସେ ସେଥିରେ ଦେଖିବାକୁ ପାଉ ଯେ, ମୁଁ ଭୋଗ କରୁଅଛି, ଭ୍ରମଣ କରୁଅଛି । ସେହି ମୁଁ ମଧ୍ୟରେ ଶାନ୍ତଂ ଶିବଂ ଅଦ୍ୱୈତଂ ଶୁଦ୍ଧ ଭାବରେ ଆବର୍ତ୍ତିତ ।

ଶ୍ରୀ ଦୟାନିଧି ମିଶ୍ର "ଭକ୍ତସାହିତ୍ୟ" ପ୍ରବନ୍ଧରେ ( 'ସହକାର', ୩୨ ଭାଗ, ମାର୍ଗଶିର ୧୩୩୯, ୮ମ ସଂଖ୍ୟା) ଲେଖିଛନ୍ତି, ବଙ୍ଗଦେଶରେ ବିଦ୍ୟାପତି, ଚଣ୍ଡୀଦାସ, ଭାରତଚନ୍ଦ୍ର ଓ ରବୀନ୍ଦ୍ରନାଥ ପ୍ରଭୃତି ପୁରାତନ ଓ ଆଧୁନିକ ଲେଖକମାନଙ୍କ ଲେଖାରେ ଅଶ୍ଳୀଳତାର ଅଭାବ ନାହିଁ । ଏହି ବଙ୍ଗୀୟ କବିମାନଙ୍କର ଅଶ୍ଳୀଳତା ସମ୍ବନ୍ଧରେ ମଜୁମଦାର ମହାଶୟ (ବିଜୟ- ଚନ୍ଦ୍ର) କୌଣସି ସ୍ୱାଧୀନ ଅଭିମତ ବ୍ୟକ୍ତ କରିଅଛନ୍ତି କି ? ଉପେନ୍ଦ୍ର ଭଞ୍ଜଙ୍କ ଲେଖା ଗୁଡ଼ିକ ଓଡ଼ିଆ ସାହିତ୍ୟର ଗୋଟିଏ ବିଶିଷ୍ଟ Type । ଏହି ଟାଇପ୍‌କୁ ବାଦ୍ ଦେଇ ବିଜୟ ବାବୁ ଓଡ଼ିଆ ସାହିତ୍ୟ Typical Selection କରନ୍ତେ କପରି ? ଏହି Typical Selection ମୁଖ- ବନ୍ଧରେ ବିଜୟ ବାବୁ ଓଡ଼ିଆ ଜାତି ଓ ଓଡ଼ିଆ ସାହିତ୍ୟ ସମ୍ବନ୍ଧରେ ଯାହା ଲେଖିଛନ୍ତି, ତହିଁର ଖଣ୍ଡ ପ୍ରତିବାଦ ଆଜି ପର୍ଯ୍ୟନ୍ତ ହୋଇନାହିଁ ।

ନୂତନ ଯୁଗର ଆରମ୍ଭଠାରୁ ନୂତନ ସାହିତ୍ୟର ସମ୍ପର୍କରୁ ଆମ୍ଭେମାନେ ଉତ୍କଳର ଉପେନ୍ଦ୍ର ଭଞ୍ଜ ଆଦି କେତେକ ଲେଖକଙ୍କ ଲେଖାକୁ ଅଶ୍ଳୀଳ କହିବାକୁ ଲାଗିଲୁ । ଅବଶ୍ୟ ସମସ୍ତେ ନୁହନ୍ତି—ପୁଣି ଅନେକଙ୍କ ମତ ପରିବର୍ତ୍ତନ ହେଉଛି । କିନ୍ତୁ ମୁଁ କହେ ପାଶ୍ଚା, ଅସ୍କାର ଓ୍ୟାଇଲ୍ଡ ପ୍ରଭୃତିଙ୍କ ଲେଖାରେ, ଗଲ୍ପରେ କ'ଣ କମ୍ ଅଶ୍ଳୀଳତା ରହିଛି ? ସେକ୍ସପିଅର, ବାଇରନ୍, କୀଟସ୍ ପ୍ରଭୃତିଙ୍କ ଲେଖାରେ ମଧ୍ୟ ଅଶ୍ଳୀଳତା ରହିଛି । ତା'କୁ କେହି କେହି ଚନ୍ଦ୍ରରେ କଳଙ୍କ ଥିଲା ପରି ଧର୍ତ୍ତବ୍ୟ ନୁହେଁ ବୋଲି କହନ୍ତି । ଏ ପ୍ରବୃତ୍ତି "ଇନ୍ଦ୍ରଧନୁ", "ବିଜୁଳି" ଯୁଗର ସୃଷ୍ଟି । ଯେତେବେଳେ ଲାଲ ରାମନାରାୟଣ ରାୟ ଏ ଯୁକ୍ତି କାଢ଼ିଥିଲେ ଏବଂ ରାଧାନାଥ ରାୟ ମଧ୍ୟ ତାଙ୍କର ସମର୍ଥନ କରିଥିଲେ । ମଧୁସୂଦନ ରାଓ କିନ୍ତୁ ଏହି ଯୁକ୍ତିର ବିପକ୍ଷରେ ଥିଲେ ଏବଂ ଏତେ ଦୂର ପର୍ଯ୍ୟନ୍ତ ଯାଇଥିଲେ ଯେ ସେ ଉପେନ୍ଦ୍ର ଭଞ୍ଜଙ୍କ ଲେଖାକୁ ସମର୍ଥନ କରିଥିଲେ । ଏହା ହିଁ ଆଶ୍ଚର୍ଯ୍ୟ । ରାଧାନାଥଙ୍କ ଲେଖାରେ ଶୃଙ୍ଗାର ରସ ପୂର୍ଣ୍ଣ ରହିଅଛି—ସେ ହେଲେ ଭକ୍ତିବିରୋଧୀ ଓ ଭକ୍ତକବି ମଧୁସୂଦନ ହେଲେ ଭଞ୍ଜପକ୍ଷ—ଏହାହିଁ ଅତି ଆଶ୍ଚର୍ଯ୍ୟଜନକ ।

ପ୍ରାଚୀନ ରୀତି ଅନୁସରଣକାରୀ "ଇନ୍ଦ୍ରମଣି" ଲେଖକ ଶ୍ରୀ ଗୋଲୋକଚନ୍ଦ୍ର ପ୍ରଧାନ ପ୍ରାଚୀନ ସାହିତ୍ୟ ଆଲୋଚନାରେ

ଉତ୍କଳ ସାହିତ୍ୟ ସମାଜର ସାହିତ୍ୟ ସପ୍ତାହରେ ( ୧୯୫୫, 'ଜାଗରଣ', ୨ୟ ବର୍ଷ, ସାହିତ୍ୟ ସପ୍ତାହ ସଂଖ୍ୟା ଦ୍ରଷ୍ଟବ୍ୟ ) ଲେଖିଛନ୍ତି—"ଆଦିରସ ପ୍ରଧାନ କାବ୍ୟମାନ ଦୋଷାବହ ହେବାର ବିଷୟ ନୁହନ୍ତି । କାରଣ ଆଳଙ୍କାରିକମାନେ ଶୃଙ୍ଗାର ରସ ପ୍ରଧାନ ରସ ବୋଲି ସ୍ଥିର କରିଅଛନ୍ତି । ଶୃଙ୍ଗାର ରସ ପରି ଅନ୍ୟ କୌଣସି ରସ ଅତି ସୁକୁମାର ନୁହେଁ ଓ ସମସ୍ତଙ୍କ ହୃଦୟରେ ଆହ୍ଲାଦ ଦିଏ ନାହିଁ ।

× ×

ଶୃଙ୍ଗାର ରସ ବର୍ଣ୍ଣନ କରୁ କରୁ କବିର ପ୍ରଧାନ ଭୂଷଣ ସତ୍ୟ ଓ ସାରଲ୍ୟକୁ ରକ୍ଷା କରିବାକୁ ପାଇ ଉତ୍କଳର ପ୍ରାଚୀନ କବିମାନେ କେବଳ କାହିଁକି ଜୟଦେବାଦି ସଂସ୍କୃତ କବିମାନେ ଓ ସେକ୍ସପିଅର, ବାଇରନ ପ୍ରଭୃତି ପାଶ୍ଚାତ୍ୟ କବିମାନେ ଏ ସତ୍ୟର ଅପଳାପ ନ କରି ଅଶ୍ଳୀଳ ବର୍ଣ୍ଣନ କରିଅଛନ୍ତି । ତେଣୁ ସେମାନେ କିମ୍ବା ସେମାନଙ୍କ କାବ୍ୟ ଦୂଷଣୀୟ ନୁହେଁ । ବାସ୍ତବରେ ଗୋପାଳକୃଷ୍ଣ, କବିସୂର୍ଯ୍ୟ, ଅଭିମନ୍ୟୁ, ବ୍ରଜ ପ୍ରଭୃତି ପ୍ରାଚୀନ କବିମାନେ ନିଜମାନଙ୍କର ପଦଲାଳିତ୍ୟ ବୁଦ୍ଧିଦ୍ୱାରା ସୂକ୍ଷ୍ମାନୁଭୂତିର ଯେଉଁ ମଧୁର ଚିତ୍ରମାନ ଦେଇଅଛନ୍ତି, ତାହା କେବଳ ସେହିମାନଙ୍କ ଲେଖାରେ ସମ୍ଭବ । ସେହିମାନେ ହିଁ କବି ଅନୁକୂଳରେ ହିତୈଷୀ ରୂପେ ଚିରପୂଜ୍ୟ ।"

ଶ୍ରୀଯୁକ୍ତ ପରମାନନ୍ଦ ଆଚାର୍ଯ୍ୟ ('ସହକାର', ଏକାଦଶ ସଂଖ୍ୟା, ଦ୍ୱାବିଂଶ ଭାଗ, ୫୬୨ ପୃଷ୍ଠା) ଲେଖିଛନ୍ତି, "ଉପେନ୍ଦ୍ର ଭଞ୍ଜଙ୍କର ଭାଷାର ଅଶ୍ଳୀଳତା ଦୋଷ ଦେଖି କେହି ଯେପରି ମନେ କରିବେ ନାହିଁ ଯେ ନାୟକ ନାୟିକା ଚରିତ୍ର ଚିତ୍ରଣରେ ତାଙ୍କର ଆଦର୍ଶ ନ ଥିଲା । ଆଧୁନିକ ଉପନ୍ୟାସରେ ନାୟକନାୟିକା ଦାମ୍ପତ୍ୟ ଜୀବନର ଯେଉଁ ଅନ୍ତରଙ୍ଗତାର ଗନ୍ଧ ମିଳେ ଉପେନ୍ଦ୍ର ଭଞ୍ଜଙ୍କ ଲେଖାରେ ତାହାର ଆଭାସ ସୁଦ୍ଧା ନାହିଁ ।"

ଶ୍ରୀଯୁକ୍ତ କାଳିନ୍ଦୀଚରଣ ପଟ୍ଟନାୟକ ତାଙ୍କର ଶଙ୍ଖରେଖା କାବ୍ୟର ଭୂମିକାରେ ଲେଖିଛନ୍ତି—"ଉତ୍କଳର ଶୃଙ୍ଗାରରସ-ପ୍ରଧାନ କାବ୍ୟକବିତା ଓ ଉତ୍କଳଶିଳ୍ପୀର ଶୃଙ୍ଗାର ଭାବ ରମଣୀୟ ମୂର୍ତ୍ତିମାନଙ୍କୁ ଅଶ୍ଳୀଳ କହିବା ଏ ଦେଶର ଲେଖକଙ୍କର ଗୋଟିଏ ଗୀତ ହୋଇଗଲାଣି । ଏହା ଦାସ ମନୋଭାବର ଗୋଟିଏ ଚିହ୍ନ । କିଛି ଚିନ୍ତା ନ କରି ଅନ୍ୟ ଯାହା କହୁଛନ୍ତି ସେଥିରେ ଭାସିଯିବା ଆମର ଉଚିତ ନୁହେଁ । ପାଶ୍ଚାତ୍ୟ ଦେଶମାନଙ୍କରେ ପ୍ରଚଳିତ ବଲଡ୍ୟାନସ୍ ବା ଷ୍ଟ୍ରିପ୍ ଟିଜର ଉଲ୍ଲଙ୍ଗ ନୃତ୍ୟ ଦୃଶ୍ୟ ଓଡ଼ିଆ ଆଖିରେ ଅଶ୍ଳୀଳ । କିନ୍ତୁ ଅନୁକରଣପ୍ରିୟ ଜାତି ପକ୍ଷେ ଆତ୍ମଚିନ୍ତା ନିତାନ୍ତ ସ୍ୱାଭାବିକ । ଆଜ ଓଡ଼ିଆ ସେ ବିଦେଶୀଙ୍କ ସହିତ ସ୍ୱର ମିଶାଇ ନିଜର ଅତୀତ ଆଦର୍ଶକୁ ହେୟ ଓ ତୁଚ୍ଛ ମନେ କରୁଅଛି । ଏଥିରୁ ଏତିକି ମାତ୍ର ପ୍ରମାଣିତ ହେଉଅଛି ଯେ ଓଡ଼ିଆ ଆଜି ପରାଧୀନ ଓ ପତିତ । ଯାହାକୁ ଅଶ୍ଳୀଳ କୁହାଯାଉଅଛି ତହିଁରେ ଯେଉଁ ସୌନ୍ଦର୍ଯ୍ୟ ଅଛି, ତାହାର ଉଦାର-ଭାବ ଆସ୍ୱାଦନ ଓ ଉପଲବ୍ଧିର କ୍ଷମତା ଓଡ଼ିଆଙ୍କ ପରି ସାଧୁ ଓ କଳାବିତ୍ ହେବା

ପ୍ରୟୋଜନ । ଆମର ଆଶା ଅତୀତର ଉଦ୍‌ବୋଧନ ସଙ୍ଗୀତ ଓଡ଼ିଆପ୍ରାଣରେ ପୂର୍ବ ଓଜଃ ଫେରିଆସିବ ଓ ଅଶ୍ଳୀଳତାରୁ ମୁକ୍ତ ହୋଇ ଓଡ଼ିଆ ପୁଣି ପ୍ରେମର କଣ୍ଠଭରା ଗୀତ ପ୍ରାଣପୂର୍ଣ୍ଣ ଉଚ୍ଛ୍ୱାସରେ ଗାଇବ ।

"The God-idea of the Ancients or Sex in Religion" by Eliza Burt Gamble (S. P. Partners Sons, London 1897) ଗ୍ରନ୍ଥ ପାଠ କଲେ ଜଣାଯାଏ ଯେ ପ୍ରକୃତରେ ଯେ କେବଳ ଏହି ଯୌନଲୀଳା ସ୍ଥଳରେ ତାହା ନୁହେଁ, ଧର୍ମରେ ମଧ୍ୟ, ଈଶ୍ୱରସୃଷ୍ଟିରେ ମଧ୍ୟ । ଏଥିପାଇଁ ଆମ୍ଭମାନଙ୍କର ଧର୍ମଶାସ୍ତ୍ରରେ ଯୌନ ତତ୍ତ୍ୱବିଧିର କଥା ଅନେକ ଲେଖା ହୋଇଅଛି । ଏହାଦ୍ୱାରା ଆମ ଧର୍ମଶାସ୍ତ୍ର କଳୁଷିତ ହୋଇ ଯାଇନାହିଁ । ଅଶ୍ଳୀଳତା ଯଦି କୁହାଯାଏ, ତାହା ହେଲେ ଆମର ମାନବ ଜନ୍ମ କ୍ରିୟାଟା ହିଁ ଅଶ୍ଳୀଳ । ସେତିକି କାହିଁକି, ସମସ୍ତ ସୃଷ୍ଟି ବା ପ୍ରଜନନ କ୍ରିୟାଟା ହିଁ ଅଶ୍ଳୀଳ । ପୁନଶ୍ଚ ଯଦି କୁହାଯାଏ ଏହି କ୍ରିୟାଟା ଗୁପ୍ତ ଭାବରେ ରଖିବା ଉଚିତ, ତାହା ହେଲେ ପ୍ରକୃତରେ ସବୁ ଏହା ପ୍ରକାଶ୍ୟ ଭାବରେ ହେଉଛି । ମାନବ କେବଳ ତା'ର ନାନା ପ୍ରକାର ମାନସିକ ଜଟିଳତା ଯୋଗୁଁ କେତେକୁଡ଼ିଏ କାର୍ଯ୍ୟ ବା ବ୍ୟବହାରକୁ ଗୁପ୍ତ କରି ରଖୁଅଛି । ଯୌନ ସମ୍ବନ୍ଧରେ ଯଥାର୍ଥ ତଥ୍ୟ ଦେବା କଣ ପାପ ନା ମହାପାପ ? ପୁଣି ଏହି ଯୌନକ୍ରିୟାର ନାନା ବିଧି ଅଛି । ଯାହାର ଆଲୋଚନା ନିତାନ୍ତ ହେୟ ନୁହେଁ । କାରଣ ଏହାରି ଉପରେ ସ୍ୱାମୀ ଓ ସ୍ତ୍ରୀର ନୈତିକ ଓ ମାନସିକ ଜୀବନର ସୁସ୍ଥତା ମଧ୍ୟ ନିର୍ଭର କରେ ।

ମଦନମୋହନ ଗାଙ୍ଗୁଲି ଜମ୍ବା ଅନ୍ୟାନ୍ୟ ବୈଦେଶିକ ତଥାକଥିତ ପଣ୍ଡିତମାନେ ଯେ ଓଡ଼ିଆ ଜାତିକୁ ଅତି ଜଘନ୍ୟ, ଘୃଣ୍ୟ, ପାପାସକ୍ତ, ବ୍ୟଭିଚାରୀ ବୋଲି ନିନ୍ଦିତ କରିଛନ୍ତି, ତାହା ଠିକ୍ ନୁହେଁ । ପାପ, ବ୍ୟଭିଚାର ତ ମନ୍ଦିରଗାତ୍ରରେ ନ ଫୁଟାଇ ଅଧିକ ହୋଇପାରେ । ଯେଉଁମାନେ କୁକଟା, ଯେଉଁମାନେ ବ୍ୟଭିଚାରୀ, ସେମାନେ ପାପାସକ୍ତ ନା ଯେଉଁମାନେ ଶିଳ୍ପୀ ସେମାନେ ପାପାସକ୍ତ ? ଶିଳ୍ପୀ ନିକଟରେ ତା'ର ସୃଷ୍ଟି କଳା ହିଁ ଏକମାତ୍ର ଅଭିନବେଶର ବସ୍ତୁ ।

ଓଡ଼ିଆ ଜାତିକୁ—ଏଡ଼େ ଶିଳ୍ପୀ ଓ କଳାକୁଶଳ ଜାତିକୁ ଏକ ନିଃଶ୍ୱାସରେ କାମୁକ, ଯୌନକ୍ଷୁଧାନ୍ୱେଷୀ କହିବା ଯଥାର୍ଥ ନୁହେଁ । ଏହାର ସୂକ୍ଷ୍ମ ବିଚାର ଆବଶ୍ୟକ । ଏଥିରେ ଗୁଣ୍ଡାମି କଲେ ଚଳିବ ନାହିଁ । ଜଗତର ସବୁଆଡ଼େ ଯେ ଏହି ଅଶ୍ଳୀଳ ଛବିର ଚିତ୍ର ଅଛି, ଏହାର ପ୍ରମାଣ ଭୂରି ଭୂରି ରହିଛି । କେବଳ ଯେ ଅନ୍ଧ, ଯେ ନ ଜାଣି ଏହିପରି ଅହେତୁକ ଯୁକ୍ତି କରେ ।

ଅବଶ୍ୟ ଆଧୁନିକ ନୂତନ ଜଗତରେ ଯାହା ଲୋଡ଼ା ନୁହେଁ, ତାହା ଆଉ କେହି କରୁନାହାନ୍ତି; ଯାହା ଲୋଡ଼ା ତାହା କରୁଛନ୍ତି । କାଳ ପ୍ରତି ହିଁ ଲୋକଃ । ଯୁଗ ଯୁଗରେ ଧର୍ମ ବଦଳୁଛି, ଆଦର୍ଶ ବଦଳୁଛି । କିନ୍ତୁ ସବୁରି ଭିତରେ ମନୁଷ୍ୟ

ଗଢ଼ିବାର ଆକାଙ୍କ୍ଷା ରହିଛି । ଅତଏବ ଛୁଡ଼ିବାକୁ କେହି ଆଦର୍ଶ କରି ଧରି ପାରେନା । ଜଙ୍ଗଲରେ ଅସଂଖ୍ୟ, କୋଟି କୋଟି ମନ୍ଦିର କହିଲେ ଅତ୍ୟୁକ୍ତି ହେବ ନାହିଁ—ସେଥିରେ କ'ଣ କେବଳ ଯୌନ ଲୀଳାର ବୀଭତ୍ସ ଲୀଳା ସୃଷ୍ଟି ପାଇଁ ସେସବୁ ତିଆରି ହୋଇଥିଲା ? ତାହା ନୁହେଁ । ଆଉ ଯଦି ଏହା କହିବ ତାହା ହେଲେ ନିଶ୍ଚୟ ସମସ୍ତେ ସ୍ୱୀକାର କରିବାକୁ ବାଧ୍ୟ ହେବେ ଯେ ପୃଥିବୀର ସମସ୍ତ ଧର୍ମର ଅଭ୍ୟୁଦୟ ମୂଳରେ ଏହି ଲିଙ୍ଗ ଯୋନିର କଥା ଭୂରି ଭୂରି ଭାବରେ ରହିଛି । ଏହାକୁ ପରିତ୍ୟାଗ କରି ଜୀବନ ଯାପନ କରିହେବ ନାହିଁ, ସଂସାର ବାନ୍ଧ ହେବ ନାହିଁ । ଏହା ଅଶ୍ଳୀଳ ନୁହେଁ । ମାନବର କଳୁଷିତ ମନ ବରଂ ଏହାକୁ ଅଶ୍ଳୀଳ ଭାବ ଲୁଚାଇବାର ଚେଷ୍ଟା କରିଛି, ଘୋଡ଼ାଇବାର ଚେଷ୍ଟା କରିଛି । ଓଡ଼ିଶାର ଶିଳ୍ପ ଶାସ୍ତ୍ରରୁ ଜଣାଯାଏ ଯେ ମନ୍ଦିର ଉପରେ ଏପରି ବୀଭତ୍ସ ମୂର୍ତ୍ତି ଥିଲେ ମନ୍ଦିର ଉପରେ ବଜ୍ରପାତ ହୁଏ ନାହିଁ । ସୁତରାଂ ଶିଳ୍ପୀ-ମାନେ ଏହି ସଂସ୍କାରକୁ ଭିତ୍ତି କରି ମନ୍ଦିର ଗାତ୍ରରେ ଅଶ୍ଳୀଳ ମୂର୍ତ୍ତି ଅଙ୍କନ କରିଥିବା ସମ୍ଭବପର । ଧର୍ମଶାସ୍ତ୍ରବିତ୍‌ମାନଙ୍କ ମତରେ ପାର୍ଥିବ ଭୋଗବିଳାସ ପରିତ୍ୟାଗ କରି ନ ପାରିଲେ ସ୍ୱର୍ଗସୁଖ ଲାଭ ଅସମ୍ଭବ । ପାର୍ଥିବ ଭୋଗବିଳାସର ନିଦର୍ଶନ ସ୍ୱରୂପ ଅଶ୍ଳୀଳ ମୂର୍ତ୍ତିର ମୋହ ଏଡ଼ି ପାରିଲେ ଭଗବତ୍‌ପ୍ରାପ୍ତି ସମ୍ଭବପର ହୋଇପାରେ ।

ଯେଉଁ ଓଡ଼ିଆ ଜାତି ଭୁବନେଶ୍ୱର, କୋଣାର୍କ ତିଆରି କରି ଥୋଇଦେଇଛି, ଯେଉଁ ଜାତି ଓଡ଼ିଶାର ମାନମନ୍ଦିର ତିଆରି କରି ଜଗତକୁ ବିସ୍ମିତ କରିଛି ଏବଂ ଆଜି ପର୍ଯ୍ୟନ୍ତ ଯା'ର ସମକକ୍ଷ କୌଣସି ଜାତି ହୋଇପାରି ନାହିଁ, ସେ ଜାତିର ମହତ୍ତ୍ୱ ଯେ ବୁଝିବାର ଲୋକ ସେ ବୁଝିବ; ଜଙ୍ଗଲର ବାଘଭାଲୁ ତାହା ବୁଝି ପାରିବେ ନାହିଁ । ସାଧକ ଯେତେ-ବେଳେ ମନ୍ଦିରରେ ପ୍ରବେଶ କରେ, ସେତେବେଳେ ସେ ଚାରିଆଡ଼େ ଯେଉଁ ସଂସାରର ଚିତ୍ର ଦେଖେ । ଯାହାକୁ ଛାଡ଼ି-ଆସି ସେ ମୁକ୍ତି ପାଇଁ ମନ୍ଦିରରେ ପ୍ରବେଶ କରୁଛି । ଏହିଠାରେ ତାକୁ ବିଚାର କରିବାକୁ ହେବ, ବାଛିବାକୁ ହେବ—ପୁଣି ଗୃହସ୍ଥାଶ୍ରମରେ ପ୍ରବେଶ କରିବ, ପୁଣି ସଂସାରଧର୍ମ କରିବ ନା ଅମୃତର ସୁଖଲାଭ ପାଇଁ ଏସବୁ ଚିରକାଳ ପାଇଁ ଛାଡ଼ିବ । ଏହି ଭାବ ପାଇଁ ଏସବୁ ସଂସାରଚିତ୍ର ; ଏ ତାହାର ପରୀକ୍ଷା—ମାନସିକ ପରୀକ୍ଷା । ମନ୍ଦିରଗାତ୍ରରେ ଏସବୁ ପ୍ରଲୋଭନ, ଏହି ସବୁ ଯୌନଚିତ୍ର ସାଧକର ମନ ବଦଳିବା ପାଇଁ କୌଶଳ, ସନ୍ଧାନ । ସାଧକ ମନ୍ଦିରର ବହିଃପ୍ରାଙ୍ଗଣ ଅତିକ୍ରମ କରି ଯେତେବେଳେ ଭିତରକୁ ଯାଏ, ଯେଉଁଠାକୁ ଗଲେ ଆରାଧ୍ୟ ଦେବତା ରହିଛନ୍ତି, ସେଠାରେ ସେ ଦେଖେ କ'ଣ ? ସେ ଦେଖେ ସବୁ ଅନ୍ଧାର, ଆଲୁଅ ନାହିଁ; କେବଳ ସ୍ତିମିତ ଭାବରେ ଗୋଟିଏ ଦୀପ ଦେବତା ପାଖରେ ଜଳୁଅଛି । ଏହିଠାରେ ଭକ୍ତ ସାଧକ ଅମୃତର, ଆତ୍ମାର ଅନ୍ତର ଭିତରକୁ ପଶିବାର, ଚିନ୍ତା କରିବାର, ନିଦିଷ୍ଟ ହେବାର ସୁଯୋଗ ପାଏ, ଏହିଠାରେ ସେ ଅତୀନ୍ଦ୍ରିୟ ରାଜ୍ୟକୁ ଟାଣି ହୋଇଥାଏ, ଏହିଠାରେ ସେ ସବୁ ଭୁଲିଯାଏ, ଏହିଠାରେ ମୁକ୍ତି ପାଏ । ଏହା ହିଁ ମନ୍ଦିର

ଗାତ୍ରରେ ଅଶ୍ଳୀଳ ଚିତ୍ରର ଅନୁପମ ବ୍ୟାଖ୍ୟା । ମନ୍ଦିରଦର୍ଶନକାରୀ ବ୍ୟକ୍ତି ସାଧାରଣ ଖାମ୍‌ଖେୟାଲି ପରିଭ୍ରମଣକାରୀ ହୁଏତ ହୁଅନ୍ତି, କିମ୍ବା ସେ ନାସ୍ତିକ ହୁଅନ୍ତି କିମ୍ବା ଜଗଧର୍ମୀ ସମ୍ପ୍ରଦାୟୀ ହୁଅନ୍ତି । ପ୍ରକୃତ ମନ୍ଦିରଦର୍ଶନକାରୀ ବ୍ୟକ୍ତି ମୁମୁକ୍ଷୁ ଏବଂ ମୁମୁକ୍ଷୁ ତାଙ୍କୁ ହିଁ କୁହାଯାଏ ଯାହାର ଅନ୍ୟ ବାସନାମାନ ଛିଡିଯାଇଛି । କେବଳ ଈଶ୍ୱରଙ୍କ ଭକ୍ତିରେ ମହାଶକ୍ତି ସହିତରେ ମିଳିତ ହେବା ।

ଅତଏବ ଏହି ଅଶ୍ଳୀଳ ଚିତ୍ର ପ୍ରକୃତ ମୁମୁକ୍ଷୁ ବୋଲାଉଥିବା ବ୍ୟକ୍ତିମାନଙ୍କ ପକ୍ଷରେ ଗୋଟିଏ ବେଶ କଠିନ ପରୀକ୍ଷା । ଏହା ହିଁ ମନ୍ଦିରଗାତ୍ରରେ ଅଶ୍ଳୀଳ ଚିତ୍ରର ଗୋଟିଏ ବ୍ୟାଖ୍ୟା । ଉପେନ୍ଦ୍ର ଭଞ୍ଜ ଯଥାର୍ଥରେ କହିଛନ୍ତି—

“କପଟ ଦର୍ଶନ ଲମ୍ପଟ
ଶଠ ସଙ୍ଗତ ରହିଁ,
ଯେ ସୁଧୀ ସୁଧୀରେ ବୋଲନ୍ତି
ଷୋଡଶବରଟି ଏହି ।”

ଆଉ ଗୋଟିଏ କଥା । ଅଶ୍ଳୀଳତା କେଉଁଠି ? ଅଶ୍ଳୀଳତା ବସ୍ତୁଜଗତରେ ନା ଅଶ୍ଳୀଳତା ଆମ ମନରେ ? ବସ୍ତୁତଃ କହିବାକୁ ଗଲେ ଅଶ୍ଳୀଳତା ଆମ ମନରେ । ଏହା subjective ବା ଆପଣା ମନ ଭିତରେ । ମନ ଭିତରେ ଆମେ ଏହି ଅଶ୍ଳୀଳତା ରଖିଛୁ । ସେଥିପାଇଁ ତାହା ଆମ ବାହାର ଜଗତରେ ଆମ ଆଖି ଦ୍ୱାରା ପ୍ରତିଫଳିତ ହୋଇ ପଡ଼ୁଛି । ଆପେ ଭଲ ତ ଜଗତ ଭଲ । ଏ କଥାର ତାତ୍ପର୍ଯ୍ୟ ଏହିଠାରେ ଅନୁଭବ କରିବା ଉଚିତ । ଭଞ୍ଜକାଳର ମନ୍ଦିରଗାତ୍ରରେ ଯେଉଁସବୁ ଅଶ୍ଳୀଳ ଚିତ୍ର ଅଛି, ତାହା ବୌଦ୍ଧଧର୍ମର ମହାଯାନ ପ୍ରଭାବ ଯୋଗୁ ବୋଲି କେତେକଙ୍କର ମତ । ଏ ବିଷୟରେ କାଶୀ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଆତ୍ରେୟ ବିଶେଷଭାବରେ ଆଲୋଚନା କରିଛନ୍ତି । ଶାନ୍ତିନିକେତନର କଳା ଶିଳ୍ପଗୁରୁ ସ୍ୱର୍ଗତ ନନ୍ଦଲାଲ ବୋଷ ଏ ବିଷୟରେ “ପ୍ରବୁଦ୍ଧ ଭାରତ”ରେ ଏବଂ “ପ୍ରବାସୀ”ରେ ଆଲୋଚନା କରିଛନ୍ତି । ଏ ସବୁ ସେ ଶିଳ୍ପର ଗୋଟିଏ ଭଙ୍ଗୀ, ତାହା ନିଶ୍ଚିତ । ତାହା ଛଡ଼ା ତନ୍ତ୍ରରେ ଏପରି ଅନେକ କଥା ଥାଏ, ଯାହାର ଭିତରି ଅର୍ଥ ବୁଝିବା ସାଧାରଣଙ୍କ ପକ୍ଷରେ କଠିନ । ଅନେକ ପ୍ରମାଣ ମିଳେ ଯେ ବହୁ ପୂର୍ବ କାଳରେ ଅନେକ ଦେଶରେ ଲିଙ୍ଗ ଯୋନିର ଶୋଭାଯାତ୍ରା ପ୍ରଚଳିତ ଥିଲା ।

* * *

# ମାନବର ଧର୍ମ

ମାନବର ଧର୍ମ ଏହି କଥାରେ ଦୁଇଟି ବିଷୟ ଅଛି । ପ୍ରଥମେ ମାନବ, ଦ୍ୱିତୀୟ ଧର୍ମ । ମାନବ କାହାକୁ କହନ୍ତି, ତାହା ବିଚାର କରାଯାଉ । ଯେଉଁ ପ୍ରକୃତ ମାନବ ଯାହାର ଧର୍ମ ଅଛି । ଅତଏବ ମାନବର ଧର୍ମ କହିଲେ ଆଦର୍ଶ ମାନବ ବୋଲି ବୁଝିବାକୁ ହେବ ।

ବିଶ୍ୱବିଦ୍ୟାଳୟ ମଣିଷ ତିଆରି କରୁନି; ପଶୁ ତିଆରି କରୁଛି ବୋଲି କେତେକ କହୁଛନ୍ତି । କାହିଁକି କହୁଛନ୍ତି ତାର କାରଣ ହେଉଛି — ମନୁଷ୍ୟ ପାଠୁଆ ହେଲେ କିଛି ଲାଭ ନାହିଁ ଯଦି ତାର ଚରିତ୍ର ନ ଥାଏ । ଖୁବ୍ ପାଠୁଆ; କିନ୍ତୁ ଏଇଠାରେ ଗୋଟିଏ ନୂଆ ଶବ୍ଦର ପ୍ରୟୋଗ କଲି । ଚରିତ୍ର, ଚରିତ୍ର କଣ ? ଆମେ ଭାରତରେ ସାଧାରଣତଃ ଚରିତ୍ରକୁ sex ଦିଗ ଦେଇ ଦେଖୁ । କିନ୍ତୁ sex ଦିଗ ଛଡ଼ା ଅନ୍ୟ ଦିଗଟି ଆମେ ଆଗେ ଦେଖିବା । ଜଣେ ବିଶ୍ୱବିଦ୍ୟାଳୟ କୃତୀ ଛାତ୍ର ସବୁବେଳେ first ହୁଏ; କିନ୍ତୁ ତାହାର ଦେଖାରେ ଚରିତ୍ରହୀନ କହିବାକୁ ହେବ । ଧରନ୍ତୁ, ସେହିପରି ଗୋଟିଏ ଛାତ୍ର କହିଲା ଦିନ ଦୁଇଟା ବେଳେ ଆସିବ, ଆଉ ଆସିଲା ନାହିଁ । ସେ ଚରିତ୍ରହୀନ । ଏହିପରି ଲୋକଙ୍କୁ ବିଶ୍ୱାସ କରିହେବ ନାହିଁ । ତାଙ୍କୁ ଯଦି ଛାତ୍ର ଆନ୍ଦୋଳନର ମୂଳରେ ଦେଖାଯାଏ, ଲୋକର ବଳ ଆଜିକାଲି ସେ ଠକେଇବ ବୁଝନ୍ତୁ । ଅତଏବ ମାନବର ଧର୍ମ ହେଉଛି ଚରିତ୍ରରକ୍ଷା । କଥାର, ଜବାବର ମୂଲ୍ୟ, ପବିତ୍ରତା ରକ୍ଷା କରିବ । Sir Allan Octave Hume ଯେ କି ଭାରତୀୟ କଂଗ୍ରେସର ମୂଳ ସ୍ଥାପନକର୍ତ୍ତା ଭିତରୁ ଜଣେ ଥିଲେ, ସେ ଭାରତରୁ ଶେଷ ବିଦାୟ ନେବାବେଳେ କହିଥିଲେ, ଦେଖ ଭାଇମାନେ, ମୁଁ ଭାରତସେବାରେ ଆପଣଙ୍କୁ ଏତେ ବର୍ଷ ଧରି ନିୟୋଜିତ କରି ଆଜି ଶେଷ ବିଦାୟ ନେବାବେଳକୁ ଯଦି ଗୋଟିଏ ଯୋଡ଼ାଏ କଟୁ କଥା କହିପାରେଁ, ତାହାହେଲେ ତୁମ୍ଭେମାନେ ମୋତେ ଭୁଲ ବୁଝିବ ନାହିଁ । ତୁମର ମଙ୍ଗଳ ପାଇଁ ଏହା କହୁଛି । ଭାରତବାସୀର ଚରିତ୍ରରେ ଗୋଟିଏ ବଡ଼ ଦୋଷ ମୁଁ ଲକ୍ଷ୍ୟ କରୁଛି । ତାହା ହେଉଛି ଭାରତବାସୀ ସତ୍ୟର ମୂଲ୍ୟ, ପବିତ୍ରତା ବୁଝନ୍ତି ନାହିଁ ।

ଏହି ଦେଶର ଦଶରଥଙ୍କ ପ୍ରତିଜ୍ଞା ଯୋଗୁଁ ରାମଚନ୍ଦ୍ର ବନବାସ ପାଇଥିଲେ । ହରିଶ୍ଚନ୍ଦ୍ର ସର୍ବସ୍ୱ ତ୍ୟାଗ କରିଥିଲେ । ମହାଭାରତରେ ଏହିପରି ଦୃଷ୍ଟାନ୍ତ ଅସଂଖ୍ୟ ରହିଛି । କିନ୍ତୁ ସେ ସବୁ ଆଜି ଆମକୁ inspire କରୁ ନାହିଁ କାହିଁକି ? ଉଦ୍‌ବୁଦ୍ଧ କରୁନାହିଁ କାହିଁକି ? ତାର କାରଣ ହେଉଛି ସେ ସବୁ ସ୍କୁଲକଲେଜରେ ପଢ଼ା ହେଉନାହିଁ । ସେପରି — ଅତଏବ ମାନବର ଧର୍ମ ବାସ୍ତବିକ ମାନବକୁ ମାନବ ଆଖ୍ୟା ଦେଇଥାଏ । ମଣିଷର ମଣିଷପଣିଆ ନ ଥିଲେ ସେ ଅମଣିଷ, ପଶୁ, ଅଧମ,

ମାତ୍ର, ଦୃଶ୍ୟ ସମସ୍ତଙ୍କର ଲୁଚାଣ । ଅତଏବ ମାନବର ଧର୍ମ ହେଉଛି ବଡ଼ କଥା—ଯେଉଁଥିପାଇଁ ହିତୋପଦେଶରେ କୁହାଯାଇଛି ଯେ ମଣିଷକୁ ଧର୍ମ ସବୁବେଳେ ରକ୍ଷା କରେ । ଧର୍ମ ଧନଠାରୁ ବଡ଼, ବିଦ୍ୟା ଠାରୁ ବଡ଼ । ମୋ ପାଖରେ ଉମା ନାମରେ ଗୋଟିଏ ଚାକର ଅଛନ୍ତି ୧୭ ବର୍ଷ ହେଲା ରହିଛି । ଏବେ ସେ ଚୋରି କରିନାହିଁ । ମୋ ପାକେଟରେ, ଖଟରେ, ବିଛଣାରେ ଯାହା ପଡ଼ିଥାଏ ପଇସା, କାଗଜ ଉଠାଇ ଅଛି, କଲମ ଇତ୍ୟାଦି ସବୁ ସଜାଇ ରଖିଦିଏ । ଅଥଚ ଆମ ସ୍କୁଲ ପିଲା ଓ କଲେଜ ପିଲାଙ୍କ ମଧ୍ୟରେ ଘଡ଼ିଚୋର, କଲମଚୋର, ବହି-ଚୋର ଭର୍ତ୍ତି । ଏହା ମାନବ ଧର୍ମ ନୁହେଁ, ଏହା ଅଧର୍ମ । ଏହା ମଣିଷକୁ ତଳକୁ ଟାଣିନିଏ । ସେଥିପାଇଁ ଉପନିଷଦ, ଗୀତା, ମହାଭାରତ ଇତ୍ୟାଦି ପାଠ କଲେ ଆମେ ଏହି କଥା ହିଁ ବୁଝିପାରୁ ଯେ, ଚୋରି କରିବ ନାହିଁ, ଅସ୍ତେୟ ପାଳନ କରିବ, ଅଳସୁଆ ହେବ ନାହିଁ, ଠକ ହେବ ନାହିଁ । ତେବେ ଯାଇଁ ମଣିଷର ଧର୍ମ ପାଳନ କରି ପାରିବ । ସ୍ୱାର୍ଥପର ହେବ ନାହିଁ । ଏହିପରି ହୋଇପାରିଲେ ମାନବର ଧର୍ମ ପାଳିତ ହୋଇପାରିବ । ଆଜି ବାଳକ ସଙ୍ଗତରେ ବାଳିକା ମଧ୍ୟ ଖୁବ୍ ଚାଲିଛି । ସେଥିରେ ପୂର୍ବରୁ ସମାଜର ଚରିତ୍ର ପରିବର୍ତ୍ତନ ଦେଖାଯାଉଛି । ଅନେକ ସମୟରେ ନାରୀର ଶୁଦ୍ଧ ଚରିତ୍ର ଧ୍ୱସ୍ତ ହେଉଛି । ସେଥିରେ ଅନେକ କ୍ଷୁବ୍ଧ ହେଉଛନ୍ତି, କିନ୍ତୁ ଉପାୟ ନାହିଁ । ଦୁର୍ଗତିଂ ମୁହିଁ ମୋହ ରହୁଛନ୍ତି । ଏହିପରି ଆମ ମାନଙ୍କର ଜୀବନରେ ଗୋଟିଏ ଜୁଆର ଆସିଛି ଯାହା-ଯୋଗୁଁ ଆଜି ସାମାଜିକ ବନ୍ଧନ ଅନେକ ଶିଥିଳ ହୋଇଯାଇଛି ଏବଂ ଆହୁରି ଶିଥିଳ ହୋଇଯାଉଛି ଦିନକୁ ଦିନ ।

ମାନବର ଧର୍ମ ପାଳନ କର । ମାନବର ଧର୍ମ ପାଳନ ନ କରି ତୁମେ ପଶୁ ହୋଇଯିବ । ଏଥିପାଇଁ ସାଧୁ, ଧର୍ମପ୍ରଚାରକ, ପଣ୍ଡିତ, ମୋଲ୍ଲା ସମସ୍ତେ ଚିତ୍କାର କରୁଛନ୍ତି, କହୁଛନ୍ତି ଧର୍ମ ଧର୍ମ । ଆଉ ଅନ୍ୟ ଦିଗରେ ଚିତ୍କାର ଉଠୁଛି—ବାଜେ କଥା, ଧର୍ମ ଫର୍ମ କିଛି ନାହିଁ । ଖାଅପିଅ ମଉଜ କର । ଚାର୍ବାକ ଏ ପକ୍ଷଧର ଭାରତରେ ଅନେକ ଆଗରୁ ହୋଇ ସାରିଥିଲେ । ଚାର୍ବାକ ଥିଲେ । ସେ କହୁଥିଲେ, ଋଣଂ କୃତ୍ୱା ଘୃତଂ ପିବେତ୍, ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ । ଋଣ କରି ଘିଅ ଖାଅ । ମରିଗଲେ ସବୁ ସରିଲା । ଅତଏବ ଉତ୍ତର କଣ ? କିନ୍ତୁ ଋଷିମୁନିମାନେ ଦେଖିଲେ ଯେ ପ୍ରେୟର ପଥ ପଥ ନୁହେଁ—ଶ୍ରେୟର ପଥ ହିଁ ପଥ । ପ୍ରେୟର ପଥରେ କାମନାର ବାସନାର ମୁକ୍ତିରେ ତୃପ୍ତି ନାହିଁ । ତାହା ନର୍କରେ ଦିଏ ତାଙ୍କର ପରି ବଢ଼ି ଚାଲେ ।

ଶ୍ରେୟର ପଥହିଁ ପଥ । ଏହାହିଁ ମାନବର ପ୍ରକୃତ ଧର୍ମ । ଏହିଠାରେ ସମଗ୍ର ଜୀବନର ସ୍ୱାଦ ରହିଛି । ଏହି ସ୍ୱାଦ ପିଠାଇଲେ ମଙ୍ଗଳ ହୃଦୟରେ ପହଞ୍ଚିବ । ଆଉ ପ୍ରେୟର ସ୍ୱାଦ ପିଠାର ଘରେ ପ୍ରବେଶ କଲେ ମାନବର ଧର୍ମ ରକ୍ଷା ହୋଇ ପାରିବ ନାହିଁ । ଏହା ହିଁ ଶାଶ୍ୱତ ।

* * *

# ଓଡ଼ିଶାରେ ଜୈନଧର୍ମ

## ଜୈନଧର୍ମର ସ୍ୱରୂପ

ଭାରତବର୍ଷରେ ଆଦିମ କାଳରୁ ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ସ୍ୱପ୍ରୋଦର୍ଶନ-ଜନିତ ଜ୍ଞାନପୁଞ୍ଜ ବେଦ ନାମରେ ଅଭିହିତ । ଭିନ୍ନ ଭିନ୍ନ କାଳରେ ଭିନ୍ନ-ବିଷୟକ ଜ୍ଞାନ ଉପଲବ୍ଧ ହୋଇଥିଲେହେଁ ତାହା ଏକତ୍ର ମନ୍ତ୍ର ଓ ସୂକ୍ତ ଆକାରରେ ସଙ୍କଳିତ ହୋଇଥିଲା । ପରବର୍ତ୍ତୀ କାଳରେ ସେ ସବୁ ବିଷୟଭେଦରେ ବିଭକ୍ତ ହୋଇଥିବାର ଜଣାପଡ଼େ । ଦୂରଦ୍ରଷ୍ଟାମାନେ ଜଗତର ସୃଷ୍ଟି ଓ ସ୍ଥିତିର ମୂଳତତ୍ତ୍ୱ ନିରୂପଣ କରିବାକୁ ଯାଇ ନାନା ମୁନି ନାନା ମତ ପ୍ରକାଶ କଲେ । ତାହା ହିଁ କ୍ରମେ ଭିନ୍ନ ମତ ଓ ଭିନ୍ନ ଧର୍ମ ରୂପେ ଆତ୍ମପ୍ରକାଶ କରିଅଛି । ଋଗ୍‌ବେଦର ଦଶମ ମଣ୍ଡଳ ଦଶମ ସୂକ୍ତରେ ଯେଉଁ କେଶୀ ଓ ଦିଗମ୍ବରଙ୍କର ବର୍ଣ୍ଣନା ଅଛି, ସେ ଜୈନମାନଙ୍କର ଋଷଭ ଏବଂ ହିନ୍ଦୁ ପୁରାଣର ଶିବଙ୍କ ସହିତ ଅଭିନ୍ନ ରୂପରେ ଚିହ୍ନିତ ହୋଇ ପାରନ୍ତି । ଏଥିରୁ "ବେଦୁଁ ହୋଇଲା ନାନା ଭଣ" ଭାଗବତ ବାକ୍ୟର ସାର୍ଥକତା ପ୍ରତିପନ୍ନ ହୁଏ । ଆହୁରି ମଧ୍ୟ ଜୈନ ହରିବଂଶ ନାମକ ଗ୍ରନ୍ଥରେ ନାରଦ ଓ ପର୍ବତ ଋଷିଙ୍କ ମଧ୍ୟରେ ବେଦାର୍ଥ ନେଇ ଯେଉଁ ବିବାଦ ଲାଗିଥିଲା ତାହା ମଧ୍ୟ ଉକ୍ତ ବାକ୍ୟର ପୋଷକ । ନାରଦ ଓ ପର୍ବତଙ୍କ ଆଖ୍ୟାନର ସାର କଥା ଏହିପରି —

ଥରେ 'ଅଜୈର୍ଯଜେତ' ଏହି ବୈଦିକ ବାକ୍ୟର ଅର୍ଥ ବିଷୟରେ ଆଲୋଚନା ହେଉଥିଲା । ପର୍ବତ ଏହି ବାକ୍ୟର ଅର୍ଥ କଲେ "ଅଜ" ଅର୍ଥାତ୍ ଚତୁଷ୍ପଦ ପଶୁ-ବିଶେଷ । ତଦ୍ୱାରା ଯଜ୍ଞ କରିବା ବିଧେୟ । କିନ୍ତୁ ନାରଦ ତାହା ସ୍ୱୀକାର ନ କରି କହିଲେ "ଅଜ"ର ଅର୍ଥ ହେଉଛି ଯହିଁରୁ ଜନ୍ମ ଜାତ ହୁଏ ନାହିଁ ଅର୍ଥାତ୍ ତିନି ବର୍ଷର ପୁରୁଣା ଶସ୍ୟ । ତାହାରି ଦ୍ୱାରା ଯଜ୍ଞ କରିବା ବିଧେୟ । ଏହି ଆଲୋଚନା ଏତିକିରେ ସରିଲା ନାହିଁ । ଉଭୟ ବ୍ୟକ୍ତିଦ୍ୱାରା ଏହାର ସମାଧାନ ଲୋଡ଼ି ଦୁହେଁ କୌଣସି ରାଜାଙ୍କ ନିକଟକୁ ଗଲେ । ତାଙ୍କ ସଭାରେ ନାନା ଯୁକ୍ତିତର୍କ ପରେ ନାରଦଙ୍କ ମତ ଯଥାର୍ଥ ବୋଲି ସ୍ଥିରୀକୃତ ହେଲା । ତହିଁ ପରଠାରୁ ପର୍ବତ ଅନ୍ୟ ଜଣେ ରାଜାଙ୍କ ଆଶ୍ରୟରେ ରହି ପଶୁହିଂସା ଦ୍ୱାରା ଯଜ୍ଞକରଣ ମତର ପ୍ରଚାର କଲେ । ନାରଦ ଅହିଂସାର ପ୍ରଚାରରେ ଲାଗିଲେ । ଏହା ହିଁ ହେଲା ଏକ ବେଦର ହିଂସା ଓ ଅହିଂସା ରୂପକ ଦୁଇ ଶାଖା । କ୍ରମେ ଦୁହେଁ ପ୍ରଶାଖା ଓ ପଲ୍ଲବ ସମ୍ଭାରରେ ପରିବର୍ଦ୍ଧିତ ହୋଇ ପ୍ରାଚୀନ ବଟବୃକ୍ଷର ଶାଖାବଲମ୍ବୀ ପ୍ରରୋହ ଭଳି କାଳକ୍ରମେ ସ୍ୱତନ୍ତ୍ର ବୃକ୍ଷରେ ପରିଣତ ହେଲେ ଏବଂ ବ୍ରାହ୍ମଣ୍ୟ ଓ ଜୈନଧର୍ମ ନାମରେ ଅଭିହିତ ହେଲେ । କ୍ରମେ ଉଭୟ ଗୋଷ୍ଠୀର ଉପାସନା ଓ ଆଚାର ପ୍ରଣାଳୀ

ଭିନ୍ନ ହେବାକୁ ଲାଗିଲା ଏବଂ ଦୁହେଁ ଯେ ଗୋଟିଏ ବୃକ୍ଷର ଦୁଇଟି ପ୍ରଶାଖା ମାତ୍ର ସେ କଥା ସ୍ମୃତିରୁ ବାହାରକୁ ଚାଲିଗଲା ।

ଅତଏବ ଦେଖିବାକୁ ଗଲେ ବ୍ରାହ୍ମଣ୍ୟ ଧର୍ମ ଓ ଜୈନଧର୍ମ ଦୁହେଁ ଏକ ପରିବାରଭୁକ୍ତ । ଜୈନଧର୍ମ ବୌଦ୍ଧଧର୍ମଠାରୁ ପ୍ରାଚୀନତର । ବୌଦ୍ଧଧର୍ମ ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ ମହାବୀରଙ୍କ ଶିଷ୍ୟ ଅନେକ ଥର ବୁଦ୍ଧଦେବଙ୍କ ସହିତ ଶାସ୍ତ୍ରାର୍ଥ ବିଚାର କରୁଥିଲେ । ସ୍ୱୟଂ ବୁଦ୍ଧଦେବ ମଧ୍ୟ ଅନେକ କ୍ଷେତ୍ରରେ ନିର୍ଗ୍ରନ୍ଥି ଓ ଆଜୀବକମାନଙ୍କର ମତର ଖଣ୍ଡନ କରି ଶିକ୍ଷା ଦେଉଥିଲେ । ମହାବୀର ସନ୍ନ୍ୟାସୀ ହେବା ପୂର୍ବରୁ ଜୈନଧର୍ମ ପ୍ରଚଳିତ ଥିଲା । (୧) ଅତଏବ ମୂଳ ହେଲା ବ୍ରାହ୍ମଣ୍ୟଧର୍ମ, ତା'ପରେ ଜୈନଧର୍ମ ଏବଂ ତା'ପରେ ବୌଦ୍ଧଧର୍ମ । ଏହା ହିଁ ହେଉଛି କ୍ରମପରମ୍ପରା ।

ଆଗେ ଅନେକଙ୍କର ଧାରଣା ଥିଲା ଯେ ବୌଦ୍ଧଧର୍ମରୁ ଜୈନଧର୍ମ ସମ୍ଭୂତ, ମାତ୍ର ଏହା ଭ୍ରମାତ୍ମକ । ଜୈନଧର୍ମ ଯେ ବୌଦ୍ଧଧର୍ମଠାରୁ ପ୍ରାଚୀନତର ଏଥିରେ ସନ୍ଦେହର ଅବକାଶ ନାହିଁ । ମହାବୀର ହେଉଛନ୍ତି ଜୈନଧର୍ମର ଚତୁର୍ବିଂଶତି ତୀର୍ଥଙ୍କର । ସେ ଥିଲେ ବୁଦ୍ଧଙ୍କର ସମସାମୟିକ ଏବଂ ବୁଦ୍ଧଙ୍କ ପରି ରାଜବଂଶଜ । ଖାଲି ତପସ୍ୟାରେ ଏକ ମତ୍ତ ଦର୍ପକୁ ଦମନ କରିବାରୁ ଲୋକମୁଖରେ ମହାବୀର ଆଖ୍ୟା ପ୍ରାପ୍ତ ହୋଇ ସେହି ନାମରେ ସେ ପରିଚିତ ହେଲେ ।

ଏହି ମହାବୀର ଉତ୍କଳ ଖଣ୍ଡରେ ଜୈନଧର୍ମର ପ୍ରଚାର କରିଥିଲେ । ଉତ୍କଳରେ ତାଙ୍କର କେନ୍ଦ୍ର ଥିଲା କୁମାରୀ ପର୍ବତ ବା ଆଧୁନିକ ଖଣ୍ଡଗିରି । ଓଡ଼ିଶାର ମହେନ୍ଦ୍ର ପର୍ବତରେ ଆଦି ତୀର୍ଥଙ୍କର ଋଷଭଙ୍କର ଆସ୍ଥାନ ଥିଲା । ମହେନ୍ଦ୍ର ପର୍ବତ ଆଜି ମାନ୍ଦ୍ରାଜରେ । ମାତ୍ର ଆଜି ତାହା ରାଜନୈତିକ ଓଡ଼ିଶାରେ ନ ଥାଇ ଆନ୍ଧ୍ରରେ ରହିଅଛି ।

ବୁଦ୍ଧଙ୍କର ସମସାମୟିକ ଯୋଗୁଁ କେହି କେହି ମହାବୀରଙ୍କୁ ବୁଦ୍ଧଙ୍କର ବଂଶୀୟ ଲୋକ ବୋଲି କହୁଥାନ୍ତି । ଏତକ ସତ୍ୟ ଏବଂ ସୁନ୍ଦର କଥା ଯେ ଏକ ସମୟରେ ଉତ୍କଳରେ ବେଦଧର୍ମ, ଜୈନଧର୍ମ ଏବଂ ବୌଦ୍ଧଧର୍ମ ପ୍ରଚଳିତ ଥିଲା ।

ପ୍ରବାଦ ଅଛି ଯେ, ମହାବୀର ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରୁଁ କରୁଁ କ୍ଷତ୍ରିୟ କୁଳରେ ଜନ୍ମଗ୍ରହଣ କଲେ, କାରଣ ଇନ୍ଦ୍ର ତାଙ୍କ ଜନ୍ମ କଥା ପୂର୍ବରୁ ଜାଣିପାରି ତାଙ୍କୁ କହିଲେ—ସବୁ ଜିନମାନେ କ୍ଷତ୍ରିୟ କୁଳରେ ଜନ୍ମଗ୍ରହଣ କରିଅଛନ୍ତି, ଆପଣ ମଧ୍ୟ ସେହି କ୍ଷତ୍ରିୟକୁଳରେ ଜନ୍ମ ନିଅନ୍ତୁ । ଏଥି ନିମିତ୍ତ ମହାବୀର କ୍ଷତ୍ରିୟକୁଳରେ ଜନ୍ମ ନେଲେ । ମହାବୀରଙ୍କ ଜନ୍ମ ହେଲା-ପରେ ତାଙ୍କ କୁଳରେ ଧନଧାନ୍ୟ ବୃଦ୍ଧି ହେବାରୁ ତାଙ୍କ ନାମ ରଖାଗଲା ବର୍ଦ୍ଧମାନ । ସମସ୍ତେ ଆଶା କରିଥିଲେ ରାଜପୁତ୍ର ବର୍ଦ୍ଧମାନ ରାଜ୍ୟର ସମୃଦ୍ଧି ବଢ଼ାଇବେ, ମାତ୍ର ସେ ନିଜେ ଅପେକ୍ଷା କରିଥିଲେ ଜିନ ସନ୍ନ୍ୟାସୀ ହେବାପାଇଁ । ରାଜବୈଭବ ପରିତ୍ୟାଗ କରି ସେ ଅରଣ୍ୟରେ କଠୋର ତପଶ୍ଚରଣ ଆରମ୍ଭ କଲେ ଏବଂ ଶେଷରେ ସିଦ୍ଧକାମ ହୋଇ ଜିନ ହେଲେ । ତାଙ୍କର

(୧) P. Sacred Book of the Ind. by Dr. Jacobi.

ଅବିଦ୍ୟା ଦୂର ହେଲା ଏବଂ ସେ ସର୍ବଜ୍ଞ ହେଲେ । ସେ ୩୦ ବର୍ଷ ବୟଃକାଳ ବର୍ଷ ଜୈନଧର୍ମ ପ୍ରଚାର କରିଥିଲେ । କଳିଙ୍ଗର କୁମାରୀ ପର୍ବତ ତାଙ୍କର ପ୍ରଧାନ ପୀଠ ହୋଇଥିଲା ଏବଂ ସେହିଠାରୁ ଜୈନଧର୍ମର କେତେ କେତେ ଅଞ୍ଚଳକୁ ଖେଳି ଯାଇଥିଲା । ଏହାପରେ ସମ୍ରାଟ୍ ଅଶୋକ କଳିଙ୍ଗ ଜୟ କରି ଅନୁତାପରେ ଜର୍ଜରିତ ହୋଇ ବୌଦ୍ଧଧର୍ମ ଗ୍ରହଣ ଓ ପ୍ରଚାର କରି ଦେବାନାଂ ପ୍ରିୟଦର୍ଶୀ ହୋଇଗଲେ । ବୌଦ୍ଧଧର୍ମର ପ୍ରବଳ ପ୍ରଚାର ଦେଶଦେଶାନ୍ତରେ ମାଡ଼ିଗଲା । ଏହା ସତ୍ତ୍ୱେ କଳିଙ୍ଗରେ ଜୈନଧର୍ମ ମୁଣ୍ଡ ଟେକି ନିଜକୁ ରକ୍ଷା କରିଥିଲା । କାଳଚକ୍ର ଆବର୍ତ୍ତନରେ କଳିଙ୍ଗ ପୁଣି ସ୍ୱାଧୀନ ହେଲା ଏବଂ ଖ୍ରୀଷ୍ଟପୂର୍ବ ୧ମ ଶତାବ୍ଦୀ ବେଳକୁ ଖାରବେଳ ରାଜା ହୋଇ ଭାରତରେ ନାନା ଅଞ୍ଚଳ ଦିଗ୍‌ବିଜୟ କରି ଜୈନଧର୍ମର ତେଜ ମହାବ୍ୟାପକ କରିଦେଲେ ।

ମହାବୀରଙ୍କ ଦୁଇଶହ ପଚାଶ ବର୍ଷ ପୂର୍ବେ ପାର୍ଶ୍ୱନାଥ ଯେଉଁ ଧର୍ମ ପ୍ରଚାର କରିଥିଲେ, ତାହା ଚତୁର୍ଯାମ ଧର୍ମ ନାମରେ ଅଭିହିତ । କାରଣ ସେଥିରେ ଥିଲା ଚାରୋଟି ମତ । ଯଥା—ଅହିଂସା, ଅଚୌର୍ଯ୍ୟ, ଅନୃତ ବା ସତ୍ୟ ଓ ଅପରିଗ୍ରହ । ଏହି ଚତୁର୍ଯାମ ଧର୍ମର ସଂସ୍କାର ସାଧନ କରି ମହାବୀର ତାହାକୁ ପଞ୍ଚଯାମ ଧର୍ମରେ ପରିଣତ କରିଥିଲେ । ତାଙ୍କର ପଞ୍ଚମ ମତଟି ହେଉଛି ଅମୃଷାଦନ । ଏହାରି ଉପରେ ସେ ବିଶେଷ ଜୋର୍ ଦେଇଥିଲେ । (୨)

ମୌର୍ଯ୍ୟ କାଳରେ ଜୈନଧର୍ମ ଦୂର ଭାରତରେ ବିଭକ୍ତ ହୋଇଥିଲା । ସେ ସମୟରେ ଜୈନଧର୍ମର ଦୁଇଜଣ ପ୍ରସିଦ୍ଧ ଆଚାର୍ଯ୍ୟ ଥିଲେ—ସେମାନେ ହେଉଛନ୍ତି ଭଦ୍ରବାହୁ ଏବଂ ସ୍ଥୂଳଭଦ୍ର । ଭଦ୍ରବାହୁ ଚଳାଇଲେ ଦିଗମ୍ବର ସମ୍ପ୍ରଦାୟ ଏବଂ ସ୍ଥୂଳଭଦ୍ର ଚଳାଇଲେ ଶ୍ୱେତାମ୍ବର ସମ୍ପ୍ରଦାୟ । ହରିଷେଣକୃତ 'ଆରାଧନା କଥାକୋଷ'ରେ ଲେଖାଅଛି ଯେ ଆଚାର୍ଯ୍ୟ ଭଦ୍ରବାହୁ ୧୨ ବାର ବର୍ଷ କାଳ ଦୁର୍ଭିକ୍ଷ ପଡ଼ିବ ଜାଣିପାରି ନିଜ ଶିଷ୍ୟମାନଙ୍କୁ ଦକ୍ଷିଣ ଓ ଅନ୍ୟତ୍ର ବୁଲିଯିବାକୁ କହିଥିଲେ ଏବଂ ନିଜେ ଉଜ୍ଜୟିନୀକୁ ଯାଇ ସେଠାରେ ଅନଶନ ବ୍ରତ ଦ୍ୱାରା ସମାଧି ଲାଭ କରିଥିଲେ ।

ବୌଦ୍ଧମାନଙ୍କ ପିଟକ ଗ୍ରନ୍ଥ ପରି ଜୈନମାନଙ୍କର ସିଦ୍ଧାନ୍ତ ମଧ୍ୟ ଅଛି । ତାହା ଧର୍ମଶାସ୍ତ୍ର । ଭଦ୍ରବାହୁ ଏହିସବୁ ସିଦ୍ଧାନ୍ତକୁ ଏକତ୍ର କରି ଲେଖିଥିଲେ । ଏହା ଖ୍ରୀଷ୍ଟପୂର୍ବ ୩ୟ ଓ ୪ର୍ଥ ଶତାବ୍ଦୀର କଥା । ଏହା ପୂର୍ବରୁ ଲୋକମୁଖରେ ଜୈନଧର୍ମର ତଥ୍ୟ ପ୍ରଚାରିତ ହେଉଥିଲା । ୫୪ ଖ୍ରୀଷ୍ଟାବ୍ଦରେ ବଲ୍ଲଭୀଠାରେ ଜୈନମାନଙ୍କର ଏକ ମହାସଭା ଆଚାର୍ଯ୍ୟ ଦେବାର୍ଦ୍ଧିଗଣୀଙ୍କ ନେତୃତ୍ୱରେ ବସିଥିଲା । ସେହି ସଭାରେ ଜୈନଧର୍ମର କଥାଗୁଡ଼ିକ ସଂକଳନ କରାଗଲା । (୩) ଏହି ଦେବାର୍ଦ୍ଧିଗଣୀଙ୍କୁ ଜୈନମାନଙ୍କର ବୁଦ୍ଧଘୋଷ ଆଖ୍ୟା ଦିଆଯାଇ ପାରେ । ଜୈନମାନଙ୍କର କଥାଗୁଡ଼ିକ ପୂରଣଖଣ୍ଡ ଗ୍ରନ୍ଥରେ ଲିପିବଦ୍ଧ କରାଗଲା ।

(୨) Indian Antiquary, Vol. IX 160-61

(୩) Early History of India— N. N. Ghose, 1951 Ed., page 43-52

ଜୈନଧର୍ମର ଅନେକ ଧର୍ମଗ୍ରନ୍ଥ ବର୍ତ୍ତମାନ ଅବଲୁପ୍ତ । ଏହାକୁ 'ପୂର୍ବ' ବୋଲି କହନ୍ତି । ଜୈନମାନଙ୍କର ଅନେକ ଧର୍ମଗ୍ରନ୍ଥ ଅଛି; ମାତ୍ର ସେମାନେ ସାଧାରଣତଃ ସେହି ଧର୍ମଗ୍ରନ୍ଥ କଥା ପ୍ରକାଶ କରି ନ ଥାନ୍ତି ।

ଦିଗମ୍ବର ଜୈନଙ୍କ ହାତରେ ଖୁବ୍ ଉଚ୍ଚ ଧରଣର ସାହିତ୍ୟ ରହିଅଛି; କିନ୍ତୁ ସେ ସବୁ ଅପ୍ରକାଶିତ ।

ଏହି ସବୁ ଧର୍ମଶାସ୍ତ୍ର ଛଡ଼ା ଜୈନମାନଙ୍କର ଅନେକ ପୁରାଣ ଓ ଇତିହାସ ମଧ୍ୟ ରହିଅଛି । ତାହା ହିନ୍ଦୁ ପୁରାଣମାନଙ୍କ ପରି । ଏହା ଛଡ଼ା ଅନେକ ଜୈନ ବ୍ୟାକରଣ, ଶବ୍ଦକୋଷ, ଅଳଙ୍କାରଶାସ୍ତ୍ର, ଆୟୁର୍ବେଦ ଆଦି ରହିଅଛି । ଅମରକୋଷ ବୋଧହୁଏ ଖଣ୍ଡିଏ ଜୈନ ଗ୍ରନ୍ଥ ।

ଉତ୍ତର ଭାରତରେ ଜନ୍ମ ଲଭିଥିଲେ ମଧ୍ୟ ଦକ୍ଷିଣ ଭାରତରେ ଜୈନଧର୍ମ ଉତ୍କଣ୍ଠ ଭାବରେ ପ୍ରଚାରିତ ହୋଇଥିଲା । ମଦୁରା, ତ୍ରିଚନାପଲ୍ଲୀ ପ୍ରଭୃତି ଅଞ୍ଚଳକୁ ଜୈନ ପ୍ରଚାରକମାନେ ଯାଇ ଧର୍ମ ପ୍ରଚାର କରିଥିଲେ ଏବଂ ସେହି ସୂତ୍ରରେ ତାମିଲ ସାହିତ୍ୟର ପ୍ରାଣ ପ୍ରତିଷ୍ଠା କରିଥିଲେ । ଆଜି ଯେଉଁ ତାମିଲ ବ୍ୟାକରଣ ଚଳୁଛି, ତାହା ଏକ ଜୈନ ଗ୍ରନ୍ଥ । କନାଡ଼ ସାହିତ୍ୟରେ ମଧ୍ୟ ଏହି ଏକ କଥା । ବାସ୍ତବିକ ଜୈନମାନେ ସେ ସମୟରେ ଅତି ପ୍ରସିଦ୍ଧ ଥିଲେ ।

ଜୈନଧର୍ମ ମୂଳତଃ ନିବୃତ୍ତିମାର୍ଗବ୍ରତୀ; ଏଣୁ ସେଥିରେ ଭକ୍ତିଭାବଧାରା ନ ଥିଲା । ଯେତେବେଳେ ଦେଶରେ ମହାଦେବଙ୍କର ସ୍ତୋତ୍ର ଗୀତ ଆଦି ଗୁଞ୍ଜିଲା, ଯେତେବେଳେ ଜୈନଧର୍ମର ପ୍ରଭାବ କ୍ରମଶଃ କମିବାକୁ ଲାଗିଲା । ଦେଖି ଦେଖି ନବପ୍ରବର୍ତ୍ତିତ ସରସ ସହଜ ଭକ୍ତିସ୍ରୋତରେ କଠୋର ବୈରାଗ୍ୟ ସର୍ବସ୍ୱ ଜୈନଧର୍ମ ଲୋପ ପାଇବାକୁ ଲାଗିଲା । ତାହା ସ୍ଥାନରେ ମାଡ଼ିଗଲା ଶୈବ ଧର୍ମ । ଏହା ସତ୍ତ୍ୱେପି ଜୈନଧର୍ମ ବହୁକାଳ ଯାଏ ସଞ୍ଜୀବିତ ରହି ଏବଂ କାଳକ୍ରମେ ଅନ୍ୟଆଡ଼କୁ ହଟିଯାଇ ଏବେ କେବଳ ମାତ୍ର ରାଜପୁତାନା ଓ ଗୁଜରାଟ ଅଞ୍ଚଳରେ ରହିଅଛି ।

ଜୈନଧର୍ମର ମୂଳ କଥା ହେଉଛି ଯେ ସଂସାର ପ୍ରକୃତିରେ ରହିଅଛି । ତାକୁ କେହି ନିର୍ମାଣ କରିନାହିଁ । ଆତ୍ମା ବା ଜୀବ ଯେତେବେଳେ ଏକୁ ବୁଝିପାରେ, ଯେତେବେଳେ ସେ ଅବିଦ୍ୟାକୁ ଜୟ କରି ବୁଦ୍ଧ ଜ୍ଞାନର ଅଧିକାରୀ ହୁଏ । ଜୀବ ଓ ପଦାର୍ଥ ଏ ଦୁଇଟି ତତ୍ତ୍ୱର ଆଧାରିତ ହୋଇ ରହିଅଛି । ଏହି ପଦାର୍ଥ ସହିତ ଗୁଣ ଜଡ଼ିତ । ପଦାର୍ଥରେ ପୁଣି ପର୍ଯ୍ୟାୟ ଅର୍ଥାତ୍ ପରିବର୍ତ୍ତନ ରହିଛି । ପଦାର୍ଥ ବା ବସ୍ତୁ ଛଅ ପ୍ରକାର; ଧର୍ମ, ଅଧର୍ମ, ସ୍ଥାନ, କାଳ, ଦ୍ରବ୍ୟ ଏବଂ ଆତ୍ମା ।

ଜୈନଧର୍ମରେ ସ୍ୟାଦ୍‌ବାଦ କଥାଟି ଅତି ଚମତ୍କାର କଥା । ଧରିବସିଲେ ଏହା ହିଁ ହେଉଛି ଜୈନଧର୍ମର ଦର୍ଶନ । "ସ୍ୟାତ୍ ଅସ୍ତି, ସ୍ୟାତ୍ ନାସ୍ତି, ସ୍ୟାତ୍ ଅସ୍ତି ନାସ୍ତି, ପୁଣି ସ୍ୟାତ୍ ଅବ୍ୟକ୍ତଂ, ସ୍ୟାତ୍ ଅସ୍ତି ଅବ୍ୟକ୍ତଂ, ସ୍ୟାତ୍ ନାସ୍ତି ଅବ୍ୟକ୍ତଂ, ସ୍ୟାତ୍ ଅସ୍ତି ନାସ୍ତି ଅବ୍ୟକ୍ତଂ, ଅର୍ଥରେ ଏହା ହୋଇ ପାରେ, ଏହା ନ ହୋଇ ପାରେ, ହୁଏତ ଅଛି, ହୁଏତ ନାହିଁ । ସ୍ୟାଦ୍‌ବାଦ ଏହିପରି ଭାବରେ ବଡ଼ ବିଚକ୍ଷଣ ଓ ବିଚିତ୍ର । ଅନେକାନ୍ତ ହେଉଛି ପୃଷ୍ଠଭୂମି । ଏକ ହିଁ ବସ୍ତୁ ଅନେକ

ଦୃଷ୍ଟିକୋଣରୁ ଦେଖାଯାଇ ପାରିବ । ଉଦାହରଣ ସ୍ୱରୂପ—ମୁଁ ପିତା ଧରିଲେ ପୁତ୍ର, ଭଉଣୀକୁ ଧରିଲେ ଭାଇ, ଭଣଜାକୁ ଧରିଲେ ମାମୁଁ । ଏକ ହୋଇ ମୁଁ ବହୁଧା ସାଦ୍ୟ ଅଟେ; କିନ୍ତୁ ପିତା ବା ମାତାକୁ ଧରିଲେ ମୁଁ ପୁତ୍ର ହେଲେ ମଧ୍ୟ ଭଉଣୀକୁ ଧରିଲେ ମୁଁ ପୁତ୍ର ନୁହେଁ । ଯଦି ଦୁଇଜଣଙ୍କୁ ଧରି ମୋର ବର୍ତ୍ତିବା କରାଯାଏ, ତେବେ ମୁଁ ପୁତ୍ର ପୁଣି ପୁତ୍ର ନୁହେଁ । ଏକ ବସ୍ତୁ ଏହି ହେବା ନ ହେବା କଥା ବଡ଼ ଅନିର୍ବଚନୀୟ । ଏଥିପାଇଁ ଭିନ୍ନ ବାହାରର ଜୀବନ ଓ ଉତ୍ତରଶୈଳୀର ସେପାଣରେ ସଂସାରର ବିବିଧ ବସ୍ତୁକୁ ବିବିଧ ଦୃଷ୍ଟିକୋଣରୁ ଦେଖିଲେ ଆମର ଦୃଷ୍ଟି ଗାଢ ଉଦାର ହୁଏ ଏବଂ ନାନା ପ୍ରକାର ବିରୋଧ ଦୂର ହୁଏ ଏବଂ ପ୍ରେମର ପ୍ରସାର ଘଟେ ।

ଜୈନଧର୍ମଟି ମୁଖ୍ୟତଃ ସାତଗୋଟି ତତ୍ତ୍ୱର ମୀମାଂସା ଅଟେ—

ଜୀବ—ଚୈତନ୍ୟ ଗୁଣସମ୍ପନ୍ନ ସତ୍ତ୍ୱ; ଅଜୀବ— ଶରୀର ଆଦି ଜଡ଼ ପଦାର୍ଥ; ଆସ୍ରବ—ଶୁଭାଶୁଭ ଆଦି କର୍ମର ଦ୍ୱାର । କର୍ମବନ୍ଧ-ଆତ୍ମା ଓ କର୍ମର ପାରସ୍ପରିକ ସମ୍ମେଳନ; ସମ୍ବର-ଶୁଭାଶୁଭ କର୍ମର ପ୍ରତିରୋଧ; ନିର୍ଜରା—ପୂର୍ବ ସଞ୍ଚିତ କର୍ମରୁ ସ୍ୱତନ୍ତ୍ର ହେବା; ମୋକ୍ଷ—ସମ୍ପୂର୍ଣ୍ଣ କର୍ମର ବିନାଶ ।

ଜୈନମାନଙ୍କର ଅଷ୍ଟମଙ୍ଗଳକ ଅଛି । ଆମେ ସେପରିଅଛୁ ଅଷ୍ଟମଙ୍ଗଳା କରୁଅଛୁ । ବିବାହ ପରେ ଅଷ୍ଟମଙ୍ଗଳା ଅନୁଷ୍ଠାନ । ଏଥିରେ ଆଠ ପ୍ରକାରର ବସ୍ତୁ ଥାଏ । ଯଥା —ସ୍ୱସ୍ତିକ, ଶ୍ରୀବତ୍ସ, ନନ୍ଦ୍ୟାବର୍ତ୍ତ, ବର୍ଦ୍ଧମାନଙ୍କ ଉଦ୍ଭାସନ, କଳସ, ମତ୍ସ୍ୟ ଓ ଦର୍ପଣ । ଆମେ ସାଧାରଣତଃ ମଙ୍ଗଳ ପାଇଁ ପୂର୍ଣ୍ଣକୁମ୍ଭ ବସାଉ ଏବଂ ସେଥିରେ ଆମ୍ରଡାଳ ଦେଉଁ । ଦହି, ମାଛ ମଧ୍ୟ ଆମର ମଙ୍ଗଳସୂଚକ ।

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ଜୈନଧର୍ମର ଅଷ୍ଟମଙ୍ଗଳକୁ ଆମେ ହିନ୍ଦୁଧର୍ମରେ ପୂରାଇ ଦେଇଅଛୁଁ ।

ଏହାପରି ଅଷ୍ଟମଙ୍ଗଳକ ଆହୁରି ଅଛି; ଯଥା—ମୃଗରାଜ, ବୃଷ, ନାଗ, କଳସ, ବ୍ୟଜନ, ବୈଜୟନ୍ତୀ, ଭେରୀ ଏବଂ ଦୀପ । ଆଉ ଏକ ଅଷ୍ଟମଙ୍ଗଳକ ହେଉଛି—ବ୍ରାହ୍ମଣ, ଗୌ, ହୁତାଶନ, ହିରଣ୍ୟ, ଘୃତ, ଆଦିତ୍ୟ, ଆପ ଓ ରାଜା । ଜୈନଧର୍ମରେ ପୂଜା ପାଇଁ ଅଷ୍ଟ ପ୍ରାତିହାର୍ଯ୍ୟ ଲୋଡ଼ା । ଯଥା— ଅଶୋକ, ସୁରପୁଷ୍ପବୃଷ୍ଟି, ଦିବ୍ୟଧ୍ୱନି, ଚାମର, ଆସନ, ଭାମଣ୍ଡଳ, ଦୁନ୍ଦୁଭି ଓ ଆତପତ୍ର ।

ବୌଦ୍ଧଙ୍କ ପରି ଜୈନଙ୍କର ମଧ୍ୟ ତ୍ରିରତ୍ନ ବିଶ୍ୱାସ ଅଛି । ଏହି ତ୍ରିରତ୍ନ ଜୈନଧର୍ମର ସବୁ ତତ୍ତ୍ୱର ସମାହାର । ଏହା ହେଉଛି ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଚରିତ୍ର । ମୋକ୍ଷପ୍ରାପ୍ତି ପାଇଁ ଏହି ତିନିଟି ହିଁ ଏକମାତ୍ର ଅବଲମ୍ବନ । (୮)

ଜୈନଧର୍ମରେ ସ୍ୱସ୍ତିକ ଚିହ୍ନର ଏକ ବିଶେଷ ଆକର୍ଷଣୀୟତା ଅଛି । ନିମ୍ନରେ ସ୍ୱସ୍ତିକର ଏକ ଚିତ୍ର ଦର୍ଶାଗଲା—




(୮) ତତ୍ତ୍ୱାର୍ଥ ସୂତ୍ର Ch. I. V. I.

ଏହା ଜୈନମାନଙ୍କର ସ୍ୱସ୍ତିକର ସଙ୍କେତ । ଜୈନମତରେ ଜୀବ ଚାରି ଶ୍ରେଣୀରେ ବିଭକ୍ତ, ଯଥା—ନାରକୀ, ତିର୍ଯ୍ୟକ, ମନୁଷ୍ୟ ଓ ଦେବତା । ଯେଉଁମାନେ ମନୁଷ୍ୟଠାରୁ ହୀନ ହୋଇ ନର୍କ ପତଙ୍ଗ ପକ୍ଷୀ ରୂପରେ ଜନ୍ମପରିଗ୍ରହ କରିଅଛନ୍ତି, ସେମାନେ ନାରକୀ; ଯେଉଁମାନେ ପଶୁ ବା ଉଦ୍ଭିଦ ରୂପରେ ଜନ୍ମଗ୍ରହଣ କରନ୍ତି ସେମାନେ ତିର୍ଯ୍ୟକ, ନରଦେହଧାରୀ ଜୀବ ମନୁଷ୍ୟ ଏବଂ ଯେଉଁମାନେ ଅଶରୀରୀ ସେମାନେ ଦେବତା ଅର୍ଥାତ୍ ଜୈନ ଭାବନାରେ, ଜୈନଦୃଷ୍ଟିରେ ନର୍କ, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ସର୍ବତ୍ର ବ୍ୟାପ୍ତ । ଜୈନମାନଙ୍କର ସବୁଠେ ତତ୍ତ୍ୱର ଏହାହିଁ ତାତ୍ପର୍ଯ୍ୟ । ଏହି ସ୍ୱସ୍ତିକ ଚିହ୍ନ ଜୈନ ଧର୍ମଗ୍ରନ୍ଥ ଏବଂ ଦେବାଳୟମାନଙ୍କରେ ପ୍ରଚୁର ପରିମାଣରେ ଦେଖିବାକୁ ମିଳେ । ଜୈନମାନଙ୍କର ଅସଂଖ୍ୟ ପୂଜାରେ ଏହି ଚିହ୍ନ ଅଙ୍କା ହେବା ଦେଖିବାକୁ ମିଳେ । ସ୍ୱସ୍ତିକ ଉପରକୁ ତିନିଗୋଟି ବିନ୍ଦୁ ତ୍ରିରତ୍ନ "ସମ୍ୟଗ୍ ଦର୍ଶନ ଜ୍ଞାନ ଚାରିତ୍ରାଣି ମୋକ୍ଷ ମାର୍ଗଃ"ର ସଙ୍କେତ । ତ୍ରିରତ୍ନ ଉପରକୁ ଅର୍ଦ୍ଧମାତ୍ରା ଉପରେ ବିନ୍ଦୁ ବା ଚନ୍ଦ୍ରବିନ୍ଦୁର ଚିହ୍ନ । ଏଥିରେ ଜୀବର ମୋକ୍ଷ ବା ନିର୍ବାଣର କଳ୍ପନା ସ୍ପଷ୍ଟ ହୋଇ ପାରେ । ଏହି ତ୍ରିରତ୍ନ କଳ୍ପନା ପରବର୍ତ୍ତୀ କାଳରେ ଜୈନଧର୍ମ ମଧ୍ୟରେ ପ୍ରବେଶ କରିଅଛି କିନ୍ତୁ ସ୍ୱସ୍ତିକ ଯେ ଆଦ୍ୟ ଜୈନ ସଙ୍କେତ ସେଥିରେ ଅଣୁମାତ୍ର ସନ୍ଦେହ ନାହିଁ । (୫)

ଜୈନମାନେ ପୁଣି ନିଜ ଦେବତାଙ୍କୁ ଚାରି ସ୍ତରରେ ବିଭକ୍ତ କରନ୍ତି । ଯଥା—

(୫) ନବଜ୍ୟୋତି, ଜୁଲାଇ ୧୯୫୦ ରୁ ସଂଗୃହୀତ

(୧) ଭବନପତି, (୨) ବ୍ୟନ୍ତର, (୩) ଜ୍ୟୋତିଷ୍କ, (୪) ବୈମାନିକ । ଏମାନେ ପାତାଳପୁରୀ, ମର୍ତ୍ତ୍ୟପୁରୀ, ଅନ୍ତରୀକ୍ଷ ଓ ବ୍ୟୋମମଣ୍ଡଳର ଅଧିପତି । ଖଣ୍ଡଗିରିରେ ଗୋଟିଏ ପାତାଳପୁରୀ ଓ ଗୋଟିଏ ମର୍ତ୍ତ୍ୟପୁରୀ ଗୁମ୍ଫା ଆଜି ସୁଦ୍ଧା ବିଦ୍ୟମାନ । (୬)

ଜୈନ ତୀର୍ଥଙ୍କରମାନଙ୍କର କୀର୍ତ୍ତି ଅତୁଳନୀୟ । ତୀର୍ଥଙ୍କର ହେଉଛନ୍ତି ସେହିମାନେ, ଯେଉଁମାନେ ଘାଟ ପାରି କରନ୍ତି, ଅର୍ଥାତ୍ ଜୀବନତରୀକୁ ନେଇ ଯିବା ପାଇଁ ଠିକ୍ ପଥ ଦେଖାଇଥାନ୍ତି । ଏହି ତୀର୍ଥଙ୍କରମାନେ ସମସ୍ତେ ରାଜପୁତ୍ର ଥିଲେ, କିନ୍ତୁ ସେମାନେ ସନ୍ନ୍ୟାସୀ ହୋଇଥିଲେ ଏବଂ ଜଗତରେ ଶ୍ରେଷ୍ଠ ଆଦର୍ଶମାନ ଦେଖାଇଥିଲେ । ଋଷଭ, ନେମି, ପାର୍ଶ୍ୱନାଥ, ମହାବୀର ପ୍ରଭୃତି ତାହାଙ୍କଠାରୁ ଜଣା ଯାଆନ୍ତି । ଜୈନଧର୍ମର ଚବିଶ ତୀର୍ଥଙ୍କରଙ୍କୁ ମିଶାଇ ତେଷଠି ଜଣ ଶଳାକା ପୁରୁଷଙ୍କୁ ଜୈନମାନେ ସ୍ୱୀକାର କରନ୍ତି । ସେମାନେ ହେଉଛନ୍ତି—

୨୪ ତୀର୍ଥଙ୍କର
୧୨ ଚକ୍ରବର୍ତ୍ତୀ
୯ ବଳଦେବ
୯ ନାରାୟଣ (ବାସୁଦେବ)
୯ ପ୍ରତିନାରାୟଣ (ପ୍ରତିବାସୁଦେବ)

୬୩ ଜଣ ଶଳାକା ପୁରୁଷ (୭)

(୬) The Heart of Jainism by Mrs. Sinclair Stevenson, p. 105

(୭) ୨୪ ତୀର୍ଥଙ୍କର—ଋଷଭ, ଅଜିତ, ସମ୍ଭବ, ଅଭିନନ୍ଦନ, ସୁମତି, ପଦ୍ମପ୍ରଭ, ସୁପାର୍ଶ୍ୱ, ଚନ୍ଦ୍ରପ୍ରଭ, ସୁବିଧି, ଶୀତଳ, ଶ୍ରେୟାଂଶ, ବାସୁପୂଜ୍ୟ, ବିମଳ, ଅନନ୍ତ, ଧର୍ମନାଥ,

ଜୈନଧର୍ମରେ ବୀରତ୍ୱ ଗାଥା ନାହିଁ, ଅଛି ତ୍ୟାଗର କଥା, ଆପଣାକୁ ଜୟ କରିବାର କଥା । ସେହି ହେଉଛି ପ୍ରକୃତ ଜୈନ ଯିଏ ଆପଣାକୁ ଜୟ କରିଛି, ଆପଣାର ବାସନାକୁ, ସକଳ ପ୍ରବୃତ୍ତିକୁ ଆପଣାର ଶାସନରେ ରଖିଛି । ନିଜକୁ ଜୟ କରେ ଯିଏ, ଜଗତକୁ ଜୟ କରେ ସେ । ଏହା ହେଲା ଖୁବ୍ ବଡ଼ କଥା । ଜୈନଧର୍ମର ମୂଳକଥା ହେଉଛି ଆପଣାକୁ ଜୟ କରିବା ଅର୍ଥାତ୍ ସମ୍ପୂର୍ଣ୍ଣ ଭାବରେ ଆପଣାକୁ ଆପଣାର କର୍ତ୍ତୃତ୍ୱ କରିବା, ଯଦ୍ଦ୍ୱାରା ଜଗତର ହିତ କରିହେବ ଏବଂ କାହାର କ୍ଷତି ହେବ ନାହିଁ ।

ଏହି ମନୋଭାବ ସବୁ ଧର୍ମର ମୂଳରେ । ଜୈନଧର୍ମ କେବଳ ଏତିକି ଜୋର୍ ଦେଇ କହିବାକୁ ଚାହେଁ ଯେ ମଣିଷର ଆପଣାର ଭାଗ୍ୟ ଆପଣା ହାତରେ । ଯେପରି କର୍ମ କରିବ ସେପରି ଫଳ ପାଇବ । ଅତଏବ କର୍ମ ହିଁ ହେଉଛି ବଡ଼ କଥା । ଏହି କର୍ମ ହିଁ ବନ୍ଧନ, ପୁଣି ଏହି କର୍ମ ହିଁ ହେଉଛି ମୁକ୍ତି । ସୁତରାଂ ବୁଦ୍ଧି ବିଚାର କର୍ମ କରିପାରିଲେ, ଆମେ ମୁକ୍ତ ସ୍ୱରୂପ ଲାଭ କରିପାରିବୁ । ଜୈନଧର୍ମ ଏହି ମୁକ୍ତ ସ୍ୱରୂପକୁ ଲକ୍ଷ୍ୟ କରେ, ସେଥିପାଇଁ ଅନ୍ୟ କାହାକୁ ଆଶ୍ରୟ କରିବାକୁ ଚାହେଁ ନାହିଁ । ମୁଁ ମୋର ମୁକ୍ତି ଆନୟନ କରିବି, ମୋର ବନ୍ଧନ ମୁଁ ନିଜ ହାତରେ ବାନ୍ଧିବି । ଅତଏବ ଅନ୍ୟ ଆଶ୍ରୟ ଲୋଡ଼ା ନାହିଁ—କୌଣସି ଦେବ-ଦେବୀ, କୌଣସି ଈଶ୍ୱର, କୌଣସି କାହାରି ଶକ୍ତି ଉପରେ ନିର୍ଭର କର ନାହିଁ ।

ଜୈନଧର୍ମର ଏହି ଆତ୍ମ-ଅବଲମ୍ବନ ବୌଦ୍ଧ ଧର୍ମରେ ମଧ୍ୟ ଅଛି, ଅର୍ଥାତ୍ କ୍ରିୟାର ପ୍ରତିକ୍ରିୟା ଅଛି, ଏଣୁ ବୁଦ୍ଧି ବିଚାର କାର୍ଯ୍ୟ କର । ଆଉ କ୍ରିୟା ବା କର୍ମରୁ ମୁକ୍ତିଲାଭ କରିବାର ଏକମାତ୍ର ଉପାୟ ହେଉଛି ଆପଣାକୁ ଫଳାକାଂକ୍ଷୀ ହେବାରୁ ଦୂରରେ ରଖିବା । ଫଳାକାଂକ୍ଷା ଥିଲେ ତୃଷ୍ଣା ଆସେ, ତୃଷ୍ଣା ଘଟାଏ ବନ୍ଧନ । ବୌଦ୍ଧଧର୍ମରେ ଏହି ତୃଷ୍ଣା କଥା କୁହାଯାଇଛି । ଜୈନଧର୍ମ ମୂଳରୁ ଗୋଟିଏ କଥା ଧରିଛି, ଆଉ ସବୁ ଛାଡ଼ି ଦେଇଛି ।—ମୁଁ ତ ମୁଁ—ମୋହାରି ମୋହର ମୁକ୍ତି ଦେବ—ଅନ୍ୟହାତ ନୁହେଁ । ଆଉ କେହି ଶକ୍ତି ନାହିଁ, ଆଉ କାହାରିଠାରେ ମୁକ୍ତି ନାହିଁ । ଅତଏବ ଅନ୍ୟର ଅବଲମ୍ବନ କରିବାକୁ ହେବ ନାହିଁ । ମୁହିଁ ମୋହର ଅବଲମ୍ବନ, ମୁହିଁ ମୋର ମୁକ୍ତି, ମୁହିଁ ମୋର ବନ୍ଧନ ।

---

ଶାନ୍ତିନାଥ, କୁନ୍ଥୁନାଥ, ଅରନାଥ, ମଲ୍ଲୀ, ମୁନିସୁବ୍ରତ, ନମି, ନେମି, ପାର୍ଶ୍ୱନାଥ, ମହାବୀର ।

୧୨ ଚକ୍ରବର୍ତ୍ତୀ—

ଭରତ, ସଗର, ମଘବାନ, ସନତ୍କୁମାର, ଶାନ୍ତିନାଥ, କୁନ୍ଥୁନାଥ, ଅରନାଥ, ସୁଭୌମ ପଦ୍ମନାଭ, ହରିଷେଣ, ଜୟସେନ, ବ୍ରହ୍ମଦତ୍ତ ।

୯ ନାରାୟଣ ବା ବାସୁଦେବ—

ତ୍ରିପୃଷ୍ଠ, ଦ୍ୱିପୃଷ୍ଠ, ସ୍ୱୟମ୍ଭୂ, ପୁରୁଷୋତ୍ତମ, ପୁରୁଷସିଂହ, ପୁଣ୍ଡରୀକ, ଦତ୍ତଦେବ, ଲକ୍ଷ୍ମଣ, କୃଷ୍ଣ ।

୯ ବଳଦେବ—

ଅଚଳ, ବିଜୟ, ଭଦ୍ର, ସୁପ୍ରଭ, ସୁଦର୍ଶନ, ଆନନ୍ଦ, ନନ୍ଦନ, ରାମଚନ୍ଦ୍ର, ପଦ୍ମ ।

୯ ପ୍ରତିନାରାୟଣ ବା ପ୍ରତିବାସୁଦେବ ।

ଅଶ୍ୱଗ୍ରୀବ, ତାରକ, ମେରକ, ମଧୁ, ନିଶୁମ୍ଭ, ବଳି, ପ୍ରହ୍ଲାଦ, ରାବଣ, ଜରାସନ୍ଧ ।

ଏହାହିଁ ଜୈନଧର୍ମ ବିଶେଷ ଜୋର୍ ଦେଇ କହେ । ଏହି ଭାବ ହିନ୍ଦୁ ଭାଗବତରେ ମଧ୍ୟ ଅଛି । ଏହି ଭାବ ହିଁ ଆମର ପୁରାଣମାନଙ୍କରେ ସମୁଦ୍‌ଘୋଷିତ । ଏହି ନିଷ୍କର୍ଷକୁ ଆମେ ଭୁଲିଯାଇ ନାନା ଦେବଦେବୀଙ୍କ ଆରାଧନାରେ ମଗ୍ନ ରହୁଛୁ—ବାହାର ଶକ୍ତିର ପୂଜା କରୁଛୁ—ବାହାରେ ବ୍ୟକ୍ତି ମୁକ୍ତି ଖୋଜୁଛୁ ।

ମାନବ ଓ ଅନ୍ୟାନ୍ୟ ଜୀବଙ୍କ ମଧ୍ୟରେ ଆପଣାର ଐକ୍ୟ ଓ ସଖ୍ୟ ସ୍ଥାପନ କରିବା ଜୈନଧର୍ମରେ ପ୍ରବଳତମ ଉପଦେଶ । ଏଥିପାଇଁ ଜୈନମାନେ ଅହିଂସା ନୀତିକୁ ଅତି କଡ଼ା ଭାବରେ ଜୀବନରେ ଗ୍ରହଣ କରିଥିଲେ । ଏଥିପାଇଁ ସେମାନେ ରାତିରେ ଖାଆନ୍ତି ନାହିଁ, କାରଣ ରାତିରେ ଆଲୁଅ ଜଳାଇଲେ ସେଥିରେ ଅନେକ ପୋକଜୋକ ପଡ଼ି ମରିଯିବେ । ଏପରି କି ଜୈନମାନେ ପାଣି ଛାଣି ପିଇଲେ ମଧ୍ୟ ତାହା ବେଶୀ ଫୁଟାଇ ନ ଖାନ୍ତି, କାରଣ ଉତ୍ତପ୍ତ ପାଣିରେ ଥିବା ଛୋଟ ଛୋଟ ଜୀବାଣୁ ମରିଯିବେ । ଏହିପରି ଉଦାର ଭାବ ।

ପୃଥିବୀର ଅନ୍ୟାନ୍ୟ ଧର୍ମରେ ଯେଉଁ ସଙ୍କୀର୍ଣ୍ଣତା, ଯେଉଁ ବର୍ବରତାର ପରିପ୍ରକାଶ ଦେଖିବାକୁ ମିଳେ, ଜୈନଧର୍ମରେ ସେପରି ନାହିଁ । ଜୈନଧର୍ମରେ ଅଛି ଶାନ୍ତି, ସୌହାର୍ଦ୍ଦ୍ୟ, ପ୍ରୀତି, ସଂଯମ, ଅହିଂସା ମଧୁରତା ପ୍ରଭୃତି । ଧାର୍ମିକ, ଆଧ୍ୟାତ୍ମିକ, ଦାର୍ଶନିକ ଓ ବ୍ୟାବହାରିକ ଦୃଷ୍ଟିରୁ ଜୈନଧର୍ମ ମାନବ ଜୀବନକୁ ସୁନ୍ଦର କରିବାର ବିଧାନ କରିପାରିଛି । କୌଣସି ଜୀବକୁ ହିଂସା କରିବ ନାହିଁ ଏବଂ ଉଦାସ ମୁକ୍ତି ସାଧନ କରିବ, ମୋକ୍ଷପ୍ରାପ୍ତ ହେବ । ଏହା ହିଁ ହେଉଛି ଜୈନଧର୍ମର ବଡ଼ କଥା । ବୌଦ୍ଧଧର୍ମରେ ଯେଉଁ ନିର୍ବାଣର କଥା ଅଛି, ତାହା ହେଉଛି ସେ ଶେଷକୁ ଶରୀରକୁ ଧ୍ୱଂସ କରିବାକୁ ହେବ । କିନ୍ତୁ ଜୈନଧର୍ମରେ ମୋକ୍ଷ ନିମିତ୍ତ ନିଜକୁ ଧ୍ୱଂସ କରିବାର କଥା ନାହିଁ । ଆପଣାକୁ ଜୟ କରିପାରି ଜଗତର ସେବାରେ ଲାଗିବା କଥା ଅଛି । ଏହା ହିଁ ହେଲା ଅସଲ ମୋକ୍ଷ ।

ଏମିତି ଧର୍ମ ମତଟି ପୃଥିବୀର ସର୍ବତ୍ର ସମାଦୃତ ଓ ବ୍ୟାପୃତ ହୋଇ ପାରିଲା ନାହିଁ କାହିଁକି, ଏହା ହିଁ ଆଶ୍ଚର୍ଯ୍ୟ ବୋଧ ହୁଏ । ମୁଁ ମନେ କରେ, ମାନବ ହୃଦୟରେ ଶାନ୍ତିସ୍ପୃହା ମୂଳ ବସ୍ତୁ ହେଲେ ମଧ୍ୟ ଦ୍ୱନ୍ଦ୍ୱ ଓ ଯୁଦ୍ଧପ୍ରବୃତ୍ତି ବେଶୀ କାର୍ଯ୍ୟ କରିଥାଏ । ସେହି ପ୍ରବୃତ୍ତିଟାକୁ ଜୈନଧର୍ମ ମୂଳରୁ ମାରିଦେବାକୁ ଚେଷ୍ଟା କରିଅଛି । ସେଥିପାଇଁ ପୃଥିବୀର ଅନ୍ୟତ୍ର ଧର୍ମପ୍ରଚାରକ ପଠାଇ ଧର୍ମ ପାଇଁ ଧର୍ମଯୁଦ୍ଧର ଚେଷ୍ଟା କରିନାହିଁ । ତେବେ ପ୍ରଶ୍ନ ଉଠେ, ବୌଦ୍ଧଧର୍ମ ତ ଧର୍ମନାମରେ ଧର୍ମଯୁଦ୍ଧ କରିନାହିଁ । ତାହା କିପରି ଭାରତ ବାହାରେ ଚୀନ, ଜାପାନ ପ୍ରଭୃତି ସୁଦୂର ଦେଶରେ ପ୍ରସାରିତ ହୋଇ ପାରିଲା ? ମୋର ମନେ ହୁଏ ଜୈନଧର୍ମର ଚରମ ଅତିକଠୋରତା ଓ ନିଷ୍ଠା ତାକୁ ସାଧାରଣରେ ଲୋକପ୍ରିୟ କରି ପାରିଲା ନାହିଁ । ବୌଦ୍ଧଧର୍ମ ମଧ୍ୟମ ପନ୍ଥା ଅର୍ଥାତ୍ ନାତିକଠୋର ଏବଂ ନାତିବିଳାସପୂର୍ଣ୍ଣ ଜୀବନଧାରା ଯୋଗୁ ବେଶୀ ଲୋକାଦରଣୀୟ ହୋଇ ପାରିଥିଲା । ଜୈନଧର୍ମରେ ତୀର୍ଥଙ୍କରମାନଙ୍କର ସୁକଠୋର ଆଦର୍ଶ ଲୋକଙ୍କୁ ବିମୁଗ୍ଧ କଲା ସତ, ମାତ୍ର

ତାହାଦ୍ୱାରା ଲେକ ଶରବନ ଅନୁପ୍ରାଣିତ ହୋଇ ପାରି ନ ଥିଲ ।

ଜୈନମାନେ ଭାରତ ବାହାରେ ପୃଥିବୀର ଅନ୍ୟ କୌଣସି ଦେଶରେ ପରିଦୃଷ୍ଟ ନ ହେଲେ ମଧ୍ୟ, ଭାରତରେ କାଠିଆବାଡ଼, ରାଜପୁତାନା ଏବଂ ଉତ୍କଳ ପ୍ରଭୃତି ଅଞ୍ଚଳରେ ଆଜ ପର୍ଯ୍ୟନ୍ତ ରହି-ଅଛନ୍ତି । ଓଡ଼ିଶାର ବହୁ ଅଞ୍ଚଳରେ ଯଥା ପୁରୀଜିଲାର ପ୍ରାଚୀ ନଦୀ ଅବବାହିକା, କଟକ ଜିଲାର ଆଠଗଡ଼, ତିଗିରିଆ ଓ ନୃଆପାଟଣା ଆଦି ସ୍ଥାନରେ ମଧ୍ୟ ଅଛନ୍ତି । ସିଂହଭୂମ ଜିଲାରେ ସରାକ ବୋଲି ଏକ ଜାତି ଦେଖାଯାଆନ୍ତି । ସ୍ୱର୍ଗୀୟ ମହା-ମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ଏହି ସରକମାନଙ୍କୁ ବୌଦ୍ଧ ବୋଲି ଆଖ୍ୟା ଦେଇଥିଲେ । (୮) ମାତ୍ର ଏମାନେ ଜୈନ ବୋଲି ମୋହର ଦୃଢ଼ ମତ ।

ମୟୂରଭଞ୍ଜ ଓ କେନ୍ଦୁଝର ଜିଲାରେ ଯେଉଁ ଯେଉଁ ସ୍ଥାନରେ ଜୈନଧର୍ମର ପ୍ରାଚୀନ ଅବଶେଷ ଓ ନିଦର୍ଶନମାନ ମିଳିଅଛି ସେଠାରେ 'ସରକ ପୋଖରୀ'ମାନ ଅଛି । ସେ ସବୁ ପୋଖରୀ ସରକ ଜାତିର ଲୋକେ ଖୋଳିଥିଲେ । ସରକମାନେ ନିରାମିଷାଶୀ । ସେମାନଙ୍କର ଅଧିକ ପଣ୍ଡିତ ହିନ୍ଦୁ ଧର୍ମଦ୍ୱାରା ପ୍ରଭାବିତ ହୋଇଥିଲେ ସୁଦ୍ଧା ଜୈନ ପ୍ରଭାବ ଲକ୍ଷିତ ରହିଅଛି । ଏଥିପାଇଁ ବୋଧହୁଏ ହରପ୍ରସାଦ ଶାସ୍ତ୍ରୀ ତାଙ୍କୁ ବୌଦ୍ଧ ବୋଲି କହିଥିଲେ । ମାତ୍ର ଶାସ୍ତ୍ରୀଙ୍କ ବହୁ ପୂର୍ବରୁ ପଣ୍ଡିତ ଡାଲ୍‌ଟନ ସାହେବ ସେହି ସରକମାନଙ୍କୁ ଜୈନ ବୋଲି ପ୍ରକାଶ କରିଅଛନ୍ତି । (୯)

## ଜୈନଧର୍ମର ଐତିହାସିକ ଭୂମିକା

ଆଜ ଆମ୍ଭେମାନେ ଭାରତର ଯେଉଁ ଭୌଗୋଳିକ ଖଣ୍ଡକୁ ଓଡ଼ିଶା ବୋଲି ଗ୍ରହଣ କରୁ, ତହିଁର ପରିସୀମା ନାତି-ବିଶାଳ ହେଲେ ମଧ୍ୟ ତହିଁର ଦେଢ଼-କୋଟି ଅଧିବାସୀଙ୍କ ମଧ୍ୟରେ ଦେଢ଼ଶ ଜଣ ଜୈନଧର୍ମାବଲମ୍ବୀ ଅଛନ୍ତି କି ନାହିଁ ସନ୍ଦେହ । ଅଥଚ ପ୍ରାଚୀନ କାଳରେ ଏହି ଧର୍ମ ଉତ୍କଳର ରାଷ୍ଟ୍ରଧର୍ମରେ ପରିଣତ ହୋଇଥିଲା । ସମ୍ରାଟ୍ ଖାରବେଳଙ୍କ ଅମଳର ଖଣ୍ଡଗିରି ଗୁମ୍ଫାମାନଙ୍କରେ ଏହାର ଭୂରି ଭୂରି ପ୍ରମାଣ ବିଦ୍ୟମାନ । ଏହି ଜୈନଧର୍ମ ସମ୍ବନ୍ଧରେ ଆଲୋଚନା କରିବାକୁ ହେଲେ ଉକ୍ତ ଧର୍ମର ଅଭ୍ୟୁଦୟ, ପ୍ରସାର, ପ୍ରାଧାନ୍ୟ, ଦେଶର ଶିଳ୍ପକଳା, ସଂସ୍କୃତି, ଲୋକାଚାର, ଇତିହାସ, ଭାଷା, ପ୍ରାତ୍ନତତ୍ତ୍ୱ ଏବଂ ଅନ୍ୟାନ୍ୟ ବହୁ ବିଷୟ ଅନୁସନ୍ଧାନ କରି ତହିଁରୁ ଉପାଦାନ ସଂଗ୍ରହ କରିବାକୁ ପଡ଼ିବ ଏବଂ ସର୍ବାଦୌ ବିଚାର କରିବାକୁ ହେବ ଭୌଗୋଳିକ ଭିତ୍ତିରେ । ଉତ୍କଳ ଏକ ସୁପ୍ରାଚୀନ ଦେଶ । ଏହାର ନିଦର୍ଶନ ରହିଛି ପ୍ରାଚୀନ ସଂସ୍କୃତ ପୁରାଣ ଏବଂ ଧର୍ମଗ୍ରନ୍ଥମାନଙ୍କରେ । (୧) ତନ୍ମଧ୍ୟରେ

(୮) H. P. Sastri's Introduction to Neo-Buddhism in Orissa by N. N. Basu.

(୯) Chuhanaghen by Dalton J. B. O. R. S., Vol. XII Part IIIରେ S. N. Royଙ୍କର Saraks of Mayurbhanj ଦ୍ରଷ୍ଟବ୍ୟ ।

ଉତ୍କଳ ସମ୍ପର୍କରେ ନାନା ବର୍ଣ୍ଣନା ରହିଛି ପ୍ରାଚୀନ ମିଶରୀୟ, ଗ୍ରୀକ୍ ଏବଂ ଚୈନିକ ପରିବ୍ରାଜକମାନଙ୍କର ବିବରଣୀରେ । (୨) ଏହି ପ୍ରାଚୀନ ଭୂଖଣ୍ଡ ମୋଟାମୋଟି ଛ'ଗୋଟି ଭିନ୍ନ ରାଷ୍ଟ୍ରର ସମ୍ମିଶ୍ରଣ । ସେମାନଙ୍କର ନାମ ହେଉଛି ଓଡ୍ରରାଷ୍ଟ୍ର, କଳିଙ୍ଗ, କଙ୍ଗୋଦ, ଉତ୍କଳ, ଦକ୍ଷିଣ କୋଶଳ ଏବଂ ଗଙ୍ଗାରାଢ଼ୀ । କେବେକେବେ ଏ ସବୁଯାକ ମିଳିମିଶି ଯାଇ ଏକ ଚକ୍ରବର୍ତ୍ତୀଙ୍କ ଅଧୀନରେ ରହୁଥିଲା, ପୁଣି କେବେ କେବେ ସ୍ୱାଧୀନ ହୋଇ ପଡ଼ୁଥିଲା ।

ଏହା ହିଁ ହେଲା ତତ୍କାଳୀନ ରାଜନୈତିକ ପରିସ୍ଥିତି ଏବଂ ବିକାଶ । କିନ୍ତୁ ଲକ୍ଷ୍ୟ କରିବା ବିଷୟ ହେଲା ଏହି ଯେ, ଏହି ଖଣ୍ଡରାଜ୍ୟମାନଙ୍କର ସଂସ୍କୃତି ଓ ସଭ୍ୟତା ଏକ ଥିଲା ଏବଂ ଏକ ସୂତ୍ରରେ ଗ୍ରଥିତ ହୋଇଥିଲା । ପ୍ରକୃତପକ୍ଷରେ ପ୍ରାଚୀନ ଉତ୍କଳର ସୀମା ଉତ୍ତରରେ ଗଙ୍ଗାନଦୀଠାରୁ ଦକ୍ଷିଣରେ ଗୋଦାବରୀ, ପୂର୍ବରେ ସମୁଦ୍ରଠାରୁ ପଶ୍ଚିମରେ ଦଣ୍ଡକାରଣ୍ୟ ପର୍ଯ୍ୟନ୍ତ ବିସ୍ତୃତ ଥିଲା । (୩) କାଳକ୍ରମେ ଦକ୍ଷିଣ କୋଶଳର କେତେକାଂଶ ଉତ୍କଳଠାରୁ ବିଚ୍ଛିନ୍ନ ହୋଇ ଯାଇ

ଅବଶିଷ୍ଟ ଯାହା ଥିଲା ତାହା ହିଁ ତ୍ରିକଳିଙ୍ଗ ନାମରେ ପ୍ରଖ୍ୟାତ ପାଇଥିଲା । ଏହି ତ୍ରିକଳିଙ୍ଗ ନାମକୁ ଲକ୍ଷ୍ୟ କରି ପ୍ଲିନି ଓ ମେଗାସ୍ଥିନିସ୍ ପ୍ରଭୃତି ବୈଦେଶିକ ପରିବ୍ରାଜକମାନେ ନିଜ ନିଜ ବିବରଣୀରେ ଉତ୍ତର କଳିଙ୍ଗ, ମଧ୍ୟ କଳିଙ୍ଗ ଏବଂ ଦକ୍ଷିଣ କଳିଙ୍ଗର ଆଭାସ ଦେଇଅଛନ୍ତି ।

ଓଡ଼ିଶାରେ ଜୈନଧର୍ମ କଥା କହିଲେ ତାହା ବ୍ୟାପକ ଅର୍ଥରେ ବ୍ୟବହାର କରିବା କଥା । ଦେଶର ଆଚାର, ବ୍ୟବହାର, କୃଷ୍ଟି, ସଂସ୍କୃତି, ଧର୍ମଗ୍ରନ୍ଥ, କାବ୍ୟ-ପୁରାଣ ଆଦି ସାହିତ୍ୟ, ସ୍ଥାପତ୍ୟ, ଶିଳ୍ପ ପ୍ରଭୃତି ଯାବତୀୟ ବିଷୟ ଉପରେ ଉକ୍ତ ଧର୍ମର ପ୍ରଭାବ କଥା ଅବଶ୍ୟ ଆଲୋଚ୍ୟ । ଖାଲି ଓଡ଼ିଶା କାହିଁକି ଯେକୌଣସି ରାଜ୍ୟ ଓ ପ୍ରଦେଶ ଉପରେ ଏହି ସୂତ୍ର ସମାନ ପ୍ରଯୁଜ୍ୟ । କିନ୍ତୁ ତତ୍ପୂର୍ବରୁ ଏହି ଧର୍ମର ସ୍ଥାପୟିତା, ପ୍ରଚାରକ ଓ ଧର୍ମମତ ସମ୍ପର୍କରେ ମଧ୍ୟ ବିଚାର କରିବା ଆବଶ୍ୟକ । କୌଣସି ଧର୍ମର ପ୍ରତିଷ୍ଠା, ପ୍ରଚାର, ପରିବୃଦ୍ଧି, ପ୍ରକାଶ ଏବଂ ପରକାଷ୍ଠା ଉକ୍ତ ଧର୍ମର ମହତ୍ତ୍ୱ, ତତ୍ସହିତ ପ୍ରଚାରକମାନଙ୍କର ସାଧୁ କର୍ମମୟ ଜୀବନ ଏବଂ ଉଚ୍ଚ ଆଦର୍ଶ ପ୍ରସଙ୍ଗକ୍ରମେ ଆପଣା ଛାଏଁ ଆସି ପଡ଼େ । ଏହି ଦୃଷ୍ଟିରେ ଆମେ ଜୈନଧର୍ମର କଥା ଗବେଷଣା କଲେ ଆମକୁ ଖ୍ରୀଷ୍ଟପୂର୍ବ ୮ମ ଶତାବ୍ଦୀ ଏବଂ ତାହାର ଆଗକୁ ଯିବାକୁ ହେବ । ଅବଶ୍ୟ ଭାରତ ଇତିହାସର କ୍ରମ ଖ୍ରୀ. ପୂ. ୭ମ ଶତାବ୍ଦୀ ଯାଏ ସଠିକ୍ ଭାବରେ ମିଳୁଅଛି । (୪)

---

(୧) କୂର୍ମ ପୁରାଣ ୪୮ ଅଧ୍ୟାୟ, ଅଗ୍ନିପୁରାଣ ୧୦୯ ଅଧ୍ୟାୟ, ବାୟୁପୁରାଣ ୪୫ ଅଧ୍ୟାୟ, ବ୍ରହ୍ମାଣ୍ଡପୁରାଣ ୧୮ଶ ଅଧ୍ୟାୟ, ବ୍ରହ୍ମପୁରାଣ ୨୭ ଅଧ୍ୟାୟ, ବିଷ୍ଣୁ ପୁରାଣ ୧୮ଶ ଅଧ୍ୟାୟ, ମତ୍ସ୍ୟ ପୁରାଣ ୧୧୪ ଅଧ୍ୟାୟ ।

(୨) Pliny, Ptolemy Geography, Yuan Chawang etc.

(୩) କୂର୍ମପୁରାଣ

(୪) Political History of India—Dr. H. C. Raychau-

ତାହା ଉପରକୁ ଗିବାକୁ ହେଲେ ଆମର ୧୮ଶ ପୁରାଣର ଆଶ୍ରୟ ଏକାନ୍ତ ଲୋଡ଼ା । ପୁରାଣମାନଙ୍କରେ ଘଟଣାବଳୀର ସାମାନ୍ୟ ଅଦଳବଦଳ ସତ୍ତ୍ୱେ ମୋଟ ବିବରଣର ଉଚିତ ସାଦୃଶ୍ୟ ରହିଅଛି । ତହିଁରୁ ଇତିହାସର କ୍ରମିକ ଧାରା ନିର୍ଣ୍ଣୟ କରିବା ସୁକଠିନ ହେଲେ ହେଁ ପ୍ରଧାନ ପ୍ରଧାନ ଘଟଣାର କ୍ରମ ବାରିନେଇ ହୁଏ । ଏହି ଭାବରେ କ୍ରମେ ଅତୀତ ସୁଦୂର ତମସାଚ୍ଛନ୍ନ ଅଂଶକୁ ଦୃଷ୍ଟି ପକାଇଲେ ଆମ୍ଭେମାନେ ଯେଉଁ ଭାରତୀୟ ସମସ୍ତମାପକ କଣାଣ ଖୁଣ୍ଟି ଦେଖିବାକୁ ପାଉଁ ତାହା ହେଉଛି କୁରୁକ୍ଷେତ୍ରର ମହାଯୁଦ୍ଧ । ସେହି ଯୁଦ୍ଧର ସମୟ ଖ୍ରୀ. ପୂ. ୧୪ଶ ଶତାବ୍ଦୀ ବୋଲି ଧାର୍ଯ୍ୟ କରାଯାଇଅଛି । (୫)

ଜୈନଧର୍ମର ପରମ୍ପରା ମଧ୍ୟରେ ପାର୍ଶ୍ୱନାଥଙ୍କ ଦୁଇଶହ ପଚାଶ ବର୍ଷ ପରେ ବର୍ଦ୍ଧମାନ ମହାବୀରଙ୍କ ଆବିର୍ଭାବ କାଳ । ଏ ଦୁହେଁ ହେଉଛନ୍ତି ଜୈନଧର୍ମର ଶେଷ ତୀର୍ଥଙ୍କର ଏବଂ ସର୍ବାପେକ୍ଷା ଶକ୍ତିଶାଳୀ ପ୍ରଚାରକ । ଜୈନଧର୍ମରେ ଏହିପରି ଅଦ୍ଭୁତ ଚବିଶ ଜଣ ତୀର୍ଥଙ୍କରଙ୍କର ପରିଚୟ ମିଳେ । ସେମାନଙ୍କର ନାମ ଇତିପୂର୍ବେ ଦିଆଯାଇଅଛି ।

ଅତଏବ ପାର୍ଶ୍ୱନାଥଙ୍କ ପୂର୍ବରୁ ଆଉ ବାଇଶ ଜଣ ତୀର୍ଥଙ୍କର ଜନ୍ମ ଲଭି ଧର୍ମ-ପ୍ରଚାର କରିଥିଲେ । ଏମାନଙ୍କର ଆଦି ତୀର୍ଥଙ୍କର ହେଉଛନ୍ତି ଋଷଭଦେବ ଏବଂ ଦ୍ୱାବିଂଶ ତୀର୍ଥଙ୍କର ହେଲେ ନେମିନାଥ ବା ଅରିଷ୍ଟନେମୀ । ଏହି ଅରିଷ୍ଟନେମୀ ବୃଷ୍ଣି ବଂଶୀୟ ଏବଂ ଶ୍ରୀକୃଷ୍ଣଙ୍କର ଖୁଡ଼ୁତାତ ଥିଲେ । (୬)

ଅତଏବ ଏହାକୁ ଖ୍ରୀ. ପୂ. ୧୪ଶ ଶତାବ୍ଦୀର ଲୋକ ବୋଲି ଧରାଯାଇପାରେ । ଏହା ଅବଶ୍ୟ ପୁରାଣଦୃଷ୍ଟିରେ କରିବାକୁ ହେବ । ପୁରାଣରେ ମହାଭାରତ ଯୁଦ୍ଧ ପରଠାରୁ ଚନ୍ଦ୍ରଗୁପ୍ତଙ୍କ ସାମ୍ରାଜ୍ୟ ଯାଏ ଗୋଟାଏ ନିର୍ଦ୍ଦିଷ୍ଟ କାଳ ଧାରାବାହିକ ଭାବରେ ଦିଆଯାଇଅଛି । ଦଶ ବାର ବର୍ଷ ଏପାଖ ସେପାଖ ହେଲେ ମଧ୍ୟ ତହିଁର ଅନ୍ୟ ସମସ୍ତ ବିବରଣୀ ପ୍ରାୟ ଇତିହାସ ଦ୍ୱାରା ସମର୍ଥିତ । ଯେଉଁ ଦଶ ବାର ବର୍ଷର ପାର୍ଥକ୍ୟ ପରିଲକ୍ଷିତ ହୁଏ, ତାହା ଚାନ୍ଦ୍ରମାନ ଓ ସୌରମାନ ବର୍ଷ ନେଇ ହୋଇଅଛି । ଅତଏବ ଭିନ୍ନ ଭିନ୍ନ ଧର୍ମ ପ୍ରବର୍ତ୍ତକମାନଙ୍କର

---

dhury ଚୌଧୁରୀଙ୍କ ଅନ୍ୟ ମନ୍ତ୍ରୀ ମୂଳଦଳ ୧୮୩ ପୃଷ୍ଠାରେ ଟେଷ୍ଟୋୟ ଭାଗରେ ଅନୁଦିତ ହୋଇଅଛି । ତହିଁରେ ଗୋଟିଏ ଅଧ୍ୟାୟରେ ଭାରତୀୟ ରାଜବଂଶର ଇତିହାସ ୭୭° ଖ୍ରୀ. ପୂ. ଯାଏ ଦିଆଯାଇଅଛି । ସେଥିରେ ଅନ୍ୟ ଜୈନ ସାଧକଶ୍ରେଣୀରେ ତନ୍ମଧ୍ୟରେ ଋଷଭ ନାମ ଦିଆ ଯାଇଅଛି । Dr. K. P. Jayaswal's Imperial History of India.

(୫) Proceedings of Indian History Congress, 1939, Calcutta Sessions, Dr. A. S. Altekar's Presidential address —Appendix A.

(୬) ଋଷଭଦେବ, ଅଜିତନାଥ, ସମ୍ଭବନାଥ, ଅଭିନନ୍ଦନନାଥ, ସୁମତିନାଥ, ପଦ୍ମପ୍ରଭ, ସୁପାର୍ଶ୍ୱନାଥ, ଚନ୍ଦ୍ରପ୍ରଭ, ପୁଷ୍ପଦନ୍ତ ବା ସୁବିଧିନାଥ, ଶୀତଳନାଥ, ଶ୍ରେୟାଂସନାଥ, ବାସୁପୂଜ୍ୟ, ବିମଳନାଥ, ଅନନ୍ତନାଥ, ଧର୍ମନାଥ, ଶାନ୍ତିନାଥ, କୁନ୍ଥୁନାଥ, ଅରନାଥ, ମଲ୍ଲୀନାଥ, ମୁନିସୁବ୍ରତ, ନମିନାଥ, ନେମିନାଥ, ପାର୍ଶ୍ୱନାଥ, ମହାବୀର ।

ସଭ୍ୟତାକାଳର ବ୍ୟବଧାନ ପାଞ୍ଚ ଶହରୁ ଦୁଇଶହ ପଚାଶ ବର୍ଷ ମଧ୍ୟରେ ହେବାର ଦେଖା ଯାଉଅଛି । ଏହା ହିଁ ସ୍ୱାଭାବିକ ସତ୍ୟ । କୌଣସି ନବ-ପ୍ରବର୍ତ୍ତିତ ଧର୍ମ ଦୀକ୍ଷା ପରେ କାଳର କର୍ମର ଜ୍ୟୋତି ହରାଇ ମ୍ଳାନ ହୋଇଥାଏ । ଏହା ଇତିହାସର ଚିରନ୍ତନ ସତ୍ୟ । ଏହି ମଳିନତା ଦୂର କରି ନୂତନ ଧର୍ମତତ୍ତ୍ୱ ପ୍ରବର୍ତ୍ତନ ବା ସଂସ୍କାର ପାଇଁ ଲୋକଗୁରୁମାନଙ୍କର ଆବିର୍ଭାବ ହୋଇଥାଏ । ଏହି ଦୃଷ୍ଟିରୁ ବିଚାର କଲେ ମନେ ହେବ ଯେ ଅରିଷ୍ଟନେମିଙ୍କ ପୂର୍ବରୁ ଯେଉଁ ଏକୋଇଶ ଜଣ ତୀର୍ଥଙ୍କର ଜନ୍ମିଥିବେ, ସେମାନଙ୍କର ସମସ୍ତ ବ୍ୟବଧାନ ଗଣନା କଲେ ଆଦିନାଥଙ୍କ କାଳ ପ୍ରାୟ ଖ୍ରୀ. ପୂ. ୩୦୦୦ ବର୍ଷ ଧରି ଯାଇପାରେ । ମିସର, ବେବିଲନ୍, ସୁମେରିଆ ପ୍ରଭୃତି ପ୍ରାଚୀନ ସଭ୍ୟତାଗୁଡ଼ିକ ଏହି କାଳ ତଥା ତତ୍ପୂର୍ବରୁ ମହେଞ୍ଜୋଦାରୋ, ହରପ୍ପା ଓ ନର୍ମଦା ଉପତ୍ୟକା କାଳ ଏ ପର୍ଯ୍ୟନ୍ତ ସନ୍ଦେହରେ ପ୍ରସାରିତ । (୭)

ଆଦିନାଥ ଋଷଭଦେବଙ୍କ କଥା ବେଦର ମନ୍ତ୍ରମାନଙ୍କରେ ଦେଖିବାକୁ ମିଳେ । (୮) ଯଦି କେହି ଏହାକୁ ପରବର୍ତ୍ତୀ ପ୍ରକ୍ଷିପ୍ତ ବୋଲି କହିବେ, ତେବେ ମଧ୍ୟ ବେଦର ସଙ୍କଳନ ଦ୍ୱୈପାୟନ ବ୍ୟାସ କଲାବେଳେ କରିଥିବେ ବୋଲି ଧରାଯାଇ ପାରେ । ବ୍ୟାସ ହେଉଛନ୍ତି କୁରୁକ୍ଷେତ୍ର ଯୁଦ୍ଧକାଳର ଅର୍ଥାତ୍ ଖ୍ରୀ. ପୂ. ୧୪ଶ ଶତାବ୍ଦୀର ଲୋକ । ଅତଏବ ତାଙ୍କର ବେଦ ସଙ୍କଳନ ବେଳେ ଋଷଭଦେବଙ୍କୁ ଭଗବାନ୍ ବୋଲି ଦେଶରେ ଗୃହୀତ ହେବା କଥା ମାନିବାକୁ ହେବ । ଏ ସମ୍ପର୍କରେ ଲୋକମାନ୍ୟ ତିଳକଙ୍କର ଆଲୋଚନା ଓ ଅଧ୍ୟବସାୟ ପ୍ରଣିଧାନଯୋଗ୍ୟ । (୯)

ଆଦିନାଥ ଋଷଭଦେବଙ୍କ ସମ୍ବନ୍ଧରେ ଜୈନଧର୍ମ ଗ୍ରନ୍ଥରେ ଅନେକଗୁଡ଼ିଏ ଏକ-ଦେଶଦର୍ଶୀ ତଥ୍ୟ ସନ୍ନିବିଷ୍ଟ । (୧୦) ସେ ଅଗ୍ନି ଆବିଷ୍କାର କରିଥିଲେ । ଲୋକଙ୍କୁ ପଶୁପାଳନ, କୃଷିବାସ ଶିକ୍ଷା ଦେଇଥିଲେ ବୋଲି ନାନା ପ୍ରକାର କଥା ଅଛି । ଅବଶ୍ୟ ତାଙ୍କ ସମୟରେ ଭାରତବର୍ଷ ବା ଭରତ ରାଜାଙ୍କର ରାଜ୍ୟ ବୋଲି କୌଣସି ନାମ ପ୍ରଚଳିତ ନ ଥିଲା । ସେରକ କରିଥିଲେ ଋଷଭଙ୍କ ପୁତ୍ର ଭରତ । ତେବେ ତତ୍‌ପୂର୍ବରୁ ଇକ୍ଷ୍ୱାକୁ ବଂଶ ବା ଅଗ୍ନି ଆବିଷ୍କାରକ ବଂଶ ଏ ଦେଶରେ ଥିଲା ଏବଂ କୃଷିବାସ ବୁଲିଥିଲା ।

---

(୭) Prehistoric India Stuart Piggott. ୧୩୨-୨୧୫ ପୃ ।

(୮) ଋଗ୍‌ବେଦରେ ଦଶମୂର ସାଙ୍କ କଥା ଅଛି । ଋଗ୍‌ବେଦ ୧୦ମ ମଣ୍ଡଳ, ୧୦ମ ସୂକ୍ତ ୧୩୬ । ଏଥିରେ ଦଶମୂରମ ଜଣଙ୍କର କେଶୀଙ୍କର ପ୍ରଶଂସା ଅଛି । ଏହି କେଶୀଙ୍କ ବର୍ଣ୍ଣନା ଭାଗବତର ଋଷଭଦେବଙ୍କ ସହେ ସ୍ୱାଦୃଶ୍ୟ ।

(୯) ଗୀତା ରହସ୍ୟ—ବାଲଗଙ୍ଗାଧର ତିଳକ କୃତ (ଭୂମିକା ଦେଖନ୍ତୁ) ।

(୧୦) ଭାଗବତ ମତେ କଳ୍ପସୂତ୍ରରେ ଋଷଭଦେବଙ୍କ ନାନାଦି କୈବଲ୍ୟ ଶିକ୍ଷାଦାନ କଥା ଅଛି । କଳ୍ପସୂତ୍ର ଲେଖେ ପୂର୍ବ ନାଟ୍ୟ ପଢ଼ନ୍ତେ । Wilson's ବିଷ୍ଣୁପୁରାଣ—page 103. Jacobi in I. Antiquary IX – page 103. Mahavir and His Predecessors.

ଲୋକେ ହିଂସା ମଧ୍ୟ କରୁଥିଲେ । ସ୍ୱୟଂ ଋଷଭଦେବ ପିତାଙ୍କର ପୁତ୍ରେଷ୍ଟି ଯଜ୍ଞ-ଫଳରୁ ଜନ୍ମ ହୋଇଥିବା କଥା ମଧ୍ୟ ସମସ୍ତଙ୍କୁ ଜଣା ଅଛି । ଅତଏବ ଏ ସବୁ ତଥା ବେଦଙ୍କ ପୂର୍ବବର୍ତ୍ତୀ । ଋଷଭଦେବ ଖୁବ୍ ପ୍ରଜାପ୍ରିୟ ରାଜା ଥିଲେ ଓ ଶାସ୍ତ୍ରମତରେ ରାଜ୍ୟ ଶାସନ କରି ବାର୍ଦ୍ଧକ୍ୟାବସ୍ଥାରେ ବାନପ୍ରସ୍ଥ ଅବଲମ୍ବନ କରିଥିଲେ । ତାଙ୍କର ଅନେକଗୁଡ଼ିଏ ରାଣୀ ଥିଲେ । ଦିନେ ସେ ନୀଳାଞ୍ଜସା ନାମଧାରିଣୀ ଏକ ନର୍ତ୍ତକୀଙ୍କର ନୃତ୍ୟ ଗୀତ ଦର୍ଶନରେ ସଂସାର ପ୍ରତି ଉଦାସୀନ ହୋଇ ବାହାରିଗଲେ ଓ ଦୀର୍ଘକାଳ ତପସ୍ୟାରେ ସିଦ୍ଧିଲାଭ କରି ନିଜର ଅହିଂସା ଧର୍ମ ପ୍ରଚାର କରିଥିଲେ । ତାଙ୍କର ପ୍ରଥମ ନ'ଜଣ ପୁତ୍ର ରାଜା ହୋଇ ପରେ ପଞ୍ଚବ୍ରତ ଅବଲମ୍ବନ କରିଥିଲେ ଏବଂ ଅନ୍ୟମାନେ ବ୍ରାହ୍ମଣ ଓ ଋଷି ହୋଇ ଯାଇଥିଲେ । ଅହିଂସା ଦୀକ୍ଷା ଗ୍ରହଣ କରି ଯଜ୍ଞରେ ପଶୁବଳି ବନ୍ଦ କରିବା ପାଇଁ ଋଷଭଦେବ ସମସ୍ତଙ୍କୁ ବୁଝାଉଥିଲେ ।

ପରବର୍ତ୍ତୀ ତୀର୍ଥଙ୍କରମାନେ ପ୍ରାଣୀହିଂସା ନ କରିବା ପାଇଁ ଯେଉଁସବୁ ପନ୍ଥା ଗ୍ରହଣ କଲେ, ତଦ୍ୱାରା ଗାର୍ହସ୍ଥ୍ୟ ଧର୍ମ ପାଳିବା ଅସମ୍ଭବ ହେଲା । ଧର୍ମର କଷ୍ଟ ରୂକ୍ଷ କଟକଣା ଏବଂ ସୂକ୍ଷ୍ମ ମତ ଲୋକମାନଙ୍କୁ ଅନୁପ୍ରାଣିତ କରି ପାରି ନ ଥିଲା । ଜୈନଙ୍କ ପକ୍ଷରେ ବାଣିଜ୍ୟ ବ୍ୟତୀତ ଜୀବିକାର୍ଜନର ଅନ୍ୟ କୌଣସି ପନ୍ଥା ରହିଲା ନାହିଁ । ଅତଏବ ସେହି ଏକ ସୂକ୍ଷ୍ମ ଜ୍ଞାନମାର୍ଗ ନିବୃତ୍ତିପର ଧର୍ମ ଯେ ପ୍ରବୃତ୍ତିପର ସମାଜରେ ଥରୁ ଥର ମାର୍ଜିତ ହେବାକୁ ପଡ଼ିଥିବ, [illegible] । ବୁଦ୍ଧପୂର୍ବରେ ଅନେକ ଗୁଡ଼ିଏ ସିଦ୍ଧ ଦିଗମ୍ବର ଅବଧୂତଙ୍କର ଉଲ୍ଲେଖ ସମ୍ମାନାର୍ହ ଭାବେ ଲିପିବଦ୍ଧ । ସେମାନେ ଜୈନଦୀକ୍ଷାର ମୂଳତତ୍ତ୍ୱ ନିସ୍ପୃହ ଗ୍ରହଣ କରି ନିର୍ଲଜ୍ଜ ଭାବରେ ନଗର ଜନପଦରେ ବୁଲୁଥିଲେ । ଏହିପରି ଭାବରେ ଏକୋଇଶି ତୀର୍ଥଙ୍କରଙ୍କ ଅବତାର ହୋଇଗଲା ପରେ ଅରିଷ୍ଟ-ନେମୀଙ୍କର ଉପସ୍ଥିତି ମହାଭାରତ ଯୁଗରେ ଆମ୍ଭେମାନେ ପାଉଥାଉଁ । ଅରିଷ୍ଟନେମୀ ସେତେବେଳେ ଲୋକପୂଜ୍ୟ ଥିଲେ । ମାତ୍ର ଶ୍ରୀକୃଷ୍ଣଙ୍କ ଭଗବତ୍ତ୍ୱ ପ୍ରଚାରିତ ହୋଇ ନ ଥିଲା । ଅରିଷ୍ଟନେମୀଙ୍କ ନାମରେ ଯେଉଁ ପ୍ରକାଶିତ ସଂସ୍କୃତ ପୁରାଣ ଅଛି, ତାକୁ ଜୈନ ହରିବଂଶ କୁହାଯାଇ-ଥାଏ । ଏହି ହରିବଂଶ ଆମର ହରିବଂଶ ସହିତ ସାଧାରଣ ସାଦୃଶ୍ୟ ରଖି ରଚିତ ଏବଂ ଏଥିରେ ସ୍ପଷ୍ଟ ଭାବରେ ଲେଖା ଅଛି ଯେ, କୃଷ୍ଣ, ବାସୁଦେବ, ଜରାସନ୍ଧ କିମ୍ବା ପାଣ୍ଡବମାନଙ୍କ ଅମଳରେ ଲୋକମାନେ ବହୁଳାଂଶରେ ଜୈନ ଦୀକ୍ଷା ଗ୍ରହଣ କରିଥିଲେ । ଅର୍ଜୁନ ନିଜର ବନବାସ ବେଳେ ରାମଗିରିରେ ଜୈନପ୍ରତିମା ମଧ୍ୟ ଦର୍ଶନ କରିଥିଲେ । ମହାଭାରତ ଯୁଗରେ ଜୈନଧର୍ମ ଯେ ପ୍ରଚଳିତ ଥିବ, ଏଥିରେ ସନ୍ଦେହ ନାହିଁ, କାରଣ ମୂଳ ମତ ବ୍ରାହ୍ମଣ୍ୟ ଧର୍ମ ଠାରୁ ବିଶେଷ ପାର୍ଥକ୍ୟ ନ ଥିଲା ଏବଂ ଜୈନଙ୍କର ଧର୍ମଗୁରୁ ହିନ୍ଦୁର ଅବତାର ହୋଇଯାଇଥିଲେ । ଅତଏବ ଅରିଷ୍ଟନେମୀ ପ୍ରଚାରିତ ଜୈନଧର୍ମ ସାଧାରଣଙ୍କ ପକ୍ଷରେ ଲୋକପ୍ରିୟ ନ ଥିଲେହେଁ ଏକ ସଜାଗ ଧର୍ମମତ ବୋଲି ଆଦୃତ ଥିଲା ଏବଂ ଖ୍ରୀ. ପୂ. ୧୮୦୦ଠାରୁ ପ୍ରାୟ ପାଞ୍ଚଶହ ବର୍ଷ ଆର୍ଯ୍ୟାବର୍ତ୍ତରେ ବ୍ୟାପକ ହୋଇରହିଥିଲା । ହରିବଂଶ ଓ

ମହାଭାରତରେ ରୈବତକ ପର୍ବତର କଥା ବର୍ଣ୍ଣନା କରାଯାଇଛି । ଏହି ପର୍ବତ ହିଁ ଜୈନମାନଙ୍କର ଶତ୍ରୁଞ୍ଜୟ ଗିରି ।

ପାର୍ଶ୍ୱନାଥଙ୍କ ଜନ୍ମକାଳ ହେଉଛି ଖ୍ରୀ. ପୂ. ୮୨୦ ଏବଂ ତିରୋଭାବ ପ୍ରାପ୍ତ ଖ୍ରୀ ପୂ. ୭୫୦ ଅବ୍ଦ । ତାଙ୍କର ପିତା ଅଶ୍ୱସେନ ବାରାଣସୀର ରାଜା ଥିଲେ । ମାତା ଥିଲେ ଅଯୋଧ୍ୟାର ରାଜା ପ୍ରସେନଜିତଙ୍କ କନ୍ୟା ବାମା ଦେବୀ । ସେ ରାଜପଦ ଗ୍ରହଣ ନ କରି ସନ୍ନ୍ୟାସ ବରଣ କରିଥିଲେ ଏବଂ ବାରାଣସୀଠାରେ ସିଦ୍ଧିପ୍ରାପ୍ତ ହୋଇ ନିଜର ଶୁଦ୍ଧ ଧର୍ମମତ ପ୍ରଚାର କରିଥିଲେ । ବଙ୍ଗଠାରୁ ଗୁର୍ଜର ଯାଏ ଅଞ୍ଚଳରେ ତାଙ୍କର ଧର୍ମ ପ୍ରସାରିତ ହୋଇଥିଲା ଏବଂ ଅଧିକାଂଶ ନୀଚ ଜାତୀୟ ଲୋକ ତାଙ୍କର ଦୀକ୍ଷା ଗ୍ରହଣ କରିଥିଲେ । ସେ ପରେଶନାଥ ପର୍ବତରେ ଦେହତ୍ୟାଗ କରିଥିଲେ । ଖ୍ରୀଷ୍ଟ ପୂର୍ବ ସମ୍ଭବ ତାଙ୍କର ସମୟରେ ଜୈନଧର୍ମ ଉତ୍କଳରେ ବ୍ୟାପକ ହୋଇଉଠିଥିଲା ।

ପାର୍ଶ୍ୱନାଥଙ୍କ ସମ୍ବନ୍ଧରେ ଅନେ ନିମ୍ନଲିଖିତ କଥାଟି ପାଉଁ । (୧୧)

ରାଜା ପ୍ରସେନଜିତଙ୍କର ଗୋଟିଏ ସୁନ୍ଦରୀ କନ୍ୟା ଥିଲା । ତାଙ୍କ ନାମ ପ୍ରଭାବତୀ । ସେ ପାର୍ଶ୍ୱନାଥଙ୍କ ଗୁଣଗ୍ରାମରେ ମୁଗ୍ଧ ହୋଇ ତାଙ୍କୁ ବିବାହ କରିବାକୁ ଇଚ୍ଛା କରିଥିଲେ, କିନ୍ତୁ କଳିଙ୍ଗ ରାଜା ଓ ଅନ୍ୟାନ୍ୟ ରାଜାମାନେ ତାଙ୍କୁ ପାଇବାକୁ ମଧ୍ୟ ଇଚ୍ଛା କରିଥିଲେ । କଳିଙ୍ଗ ରାଜା ଜୋର୍ କରି ପ୍ରଭାବତୀଙ୍କୁ ନେଇଗଲେ ।

ଫଳରେ ଯୁଦ୍ଧ ହେଲା । ସେଥିରେ ରାଜା ପ୍ରସେନଜିତ ପାର୍ଶ୍ୱନାଥଙ୍କୁ ଅନୁରୋଧ କଲେ ତାଙ୍କୁ ସାହାଯ୍ୟ କରିବା ପାଇଁ । ସୁତରାଂ ପାର୍ଶ୍ୱନାଥ ଯାଇ ସେମାନଙ୍କୁ ପରାସ୍ତ କରି ପ୍ରଭାବତୀଙ୍କୁ ବିବାହ କଲେ । ଖଣ୍ଡଗିରି ପର୍ବତର ଅନନ୍ତ ଗୁମ୍ଫାରେ ଯେଉଁ ପାର୍ଶ୍ୱନାଥ ପ୍ରତିମୂର୍ତ୍ତି ଅଛି, ତା ଉପରେ ଏକ ସର୍ପ ଅଛି । ଏହା ଉତ୍କଳ ପାର୍ଶ୍ୱନାଥଙ୍କର ଗୋଟିଏ ବିଶିଷ୍ଟ ଚିହ୍ନ । ମହେନ୍ଦ୍ର ପର୍ବତରେ ଥିବା ପାର୍ଶ୍ୱନାଥ ମୂର୍ତ୍ତି ସହସ୍ର ସର୍ପର ଫଣାଦ୍ୱାରା ଆଚ୍ଛାଦିତ ।

ଶ୍ରମଣ ଭଗବାନ୍ ମହାବୀର ଖ୍ରୀ. ପୂ. ୫୬୭ରେ ତାଙ୍କ ଜୀବନକାଳର ବୟାଳିଶ ବର୍ଷ ବୟସରେ ତୀର୍ଥଙ୍କର ହୋଇଥିଲେ । ବାସ୍ତରି ବର୍ଷ ବୟସରେ ଖ୍ରୀ. ପୂ. ୫୨୭ରେ ନିର୍ବାଣଲାଭ କରିଥିଲେ । ସେ ଜୃମ୍ଭିକ ଗ୍ରାମରେ କେବଳ ଜ୍ଞାନଲାଭ କରିଥିଲେ । ବାରବର୍ଷ ଧରି ଗଭୀର ଚିନ୍ତା ଓ ଅନ୍ତର୍ଦୃଷ୍ଟି ଦେଇ ସେ ଜୀବନ କଟାଇଥିଲେ । ତା ପରେ ତାଙ୍କର ଜ୍ଞାନୋଦୟ ହୋଇଥିଲା । ତୀର୍ଥଙ୍କରମାନଙ୍କ ମଧ୍ୟରେ ସେ ଥିଲେ ସର୍ବଶ୍ରେଷ୍ଠ । କଳ୍ପସୂତ୍ର, ଉତ୍ତର ପୁରାଣ, ତ୍ରିଷଷ୍ଟି ଶଳାକା, ପୁରୁଷଚରିତ, ବର୍ଦ୍ଧମାନଚରିତ ଆଦି ଜୈନଗ୍ରନ୍ଥରେ ତାଙ୍କର ଜୀବନୀ ବିସ୍ତୃତଭାବେ ବର୍ଣ୍ଣିତ ହୋଇଅଛି । ଜୈନଧର୍ମରେ ତାଙ୍କର ସ୍ଥାନ ଅପ୍ରତିହତ ଏବଂ ଅଦ୍ୱିତୀୟ । ସେ ଚବିଶ ତୀର୍ଥଙ୍କରମାନଙ୍କ ମଧ୍ୟରେ ଶ୍ରେଷ୍ଠ ପଣ୍ଡିତ ଭିନ୍ନ ଆନ୍ତ ବୋଲି ସିଂହ ତାଙ୍କର ଲାଞ୍ଛନରୂପେ ବ୍ୟବହୃତ ହୋଇଥାଏ ।

ଜୈନଙ୍କର ଚବିଶ ତୀର୍ଥଙ୍କର ମଧ୍ୟରୁ ଚଉଦ ଜଣ କେବଳ ମଗଧ, ଅଙ୍ଗ ଓ ବଙ୍ଗରେ ଦେହ ତ୍ୟାଗ କରିଅଛନ୍ତି ।

---

(୧୧) See 'Parswanatha Charita' by Bhavadeva Suri.

ଜୈନଧର୍ମ ଯଦିଓ ପଶ୍ଚିମ ଭାରତରେ ବ୍ୟାପିଥିଲେ ମଧ୍ୟ ତୀର୍ଥଙ୍କରଙ୍କ ପ୍ରଧାନ କର୍ମକ୍ଷେତ୍ର ମଗଧ, ଅଙ୍ଗ, ବଙ୍ଗ ଓ କଳିଙ୍ଗରେ ସୀମାବଦ୍ଧ ଥିଲା, ଏହା ସହଜରେ ଅନୁମେୟ । ବିଶେଷକରି ଏହା ମଗଧ, କଳିଙ୍ଗ ସାମ୍ରାଜ୍ୟର ରାଜଧର୍ମରେ ପରିଣତ ହୋଇପାରିଥିଲା ଏବଂ ବୌଦ୍ଧଧର୍ମର ପ୍ରାଧାନ୍ୟ ସେତେବେଳେ ବେଶୀ ନ ଥିଲା ।

କୌଣସି ଏକ ଧର୍ମର ସୁଦୂର ବିସ୍ତାର ପ୍ରତିଷ୍ଠା ହେବା ନିମିତ୍ତ ଅନ୍ୟୁନ ଚାରି ପାଞ୍ଚ ଶତ ବର୍ଷ ଲୋଡ଼ା । ଶାକ୍ୟ ସିଂହଙ୍କ ପ୍ରବର୍ତ୍ତିତ ବେଦବିରୋଧୀ ଓ ସାଂଖ୍ୟ ମତ ପରିପୂରକ ବୌଦ୍ଧଧର୍ମ ଏସିଆ ବ୍ୟାପୀ ହେବା ପାଇଁ ଚାରି ଶତ ବର୍ଷ ଲାଗିଥିଲା । ଏହି ସୂତ୍ରରେ ଅଗ୍ରସର ହେଲେ ଧରିବାକୁ ହେବ ଯେ, ଜୈନଧର୍ମ ମଧ୍ୟ ମହାବୀରଙ୍କ ବହୁ ପୂର୍ବରୁ ପ୍ରବର୍ତ୍ତିତ ଏବଂ ଏହାହିଁ ଉକ୍ତ ଧର୍ମର ସୁପ୍ରାଚୀନତ୍ୱର ପ୍ରକୃଷ୍ଟ ଯୁକ୍ତି ।

ଜୈନଧର୍ମର ପ୍ରାଚୀନତ୍ୱ ସମ୍ବନ୍ଧରେ ସାଧାରଣତଃ କୁହାଯାଇଥାଏ ଯେ ଦକ୍ଷିଣ ଭାରତର ଶ୍ରୁତକେବଳୀ ଭଦ୍ରବାହୁ ତାଙ୍କର ଶିଷ୍ୟ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଏବଂ ଅନ୍ୟାନ୍ୟ କେତେ ଜୈନ ସାଧୁଙ୍କୁ ନେଇ ସର୍ବପ୍ରଥମେ ଖ୍ରୀଷ୍ଟପୂର୍ବ ୨୯୮ରେ ପହଞ୍ଚିଥିଲେ । (୧୨) କିନ୍ତୁ ଅଦ୍ଭୁତ ପ୍ରମାଣ ଅଛି ଯେ, ଜୈନଧର୍ମ ମହାବୀରଙ୍କ ଜୀବନକାଳରେ ଜମ୍ବା ଟିକିଏ ପରେ ଦକ୍ଷିଣ ଭାରତର ଦେଶମାନଙ୍କୁ ବ୍ୟାପିଥିଲା । ମହାବୀର ହେଉଛନ୍ତି ଶେଷ ତୀର୍ଥଙ୍କର । ତାଙ୍କ ସମୟରେ କଳିଙ୍ଗ, ମହାରାଷ୍ଟ୍ର, ଅନ୍ଧ୍ର ଓ ସିଂହଳରେ ଜୈନଧର୍ମ ବ୍ୟାପିଥିଲା । ହାତୀଗୁମ୍ଫା ଶିଳାଲେଖରୁ ଜଣାଯାଏ ଯେ ମହାବୀର କଳିଙ୍ଗକୁ ଆସିଥିଲେ ଏବଂ କୁମାରୀ ପର୍ବତରୁ ଜୈନଧର୍ମ ପ୍ରଚାର କରିଥିଲେ । ଅଧିକନ୍ତୁ ଖ୍ରୀ. ପୂ. ପ୍ରଥମ ଶତାବ୍ଦୀରେ ଜୈନଧର୍ମ କଳିଙ୍ଗର ଧର୍ମ ଥିଲା । ମହାରାଷ୍ଟ୍ରରେ ଜୈନଧର୍ମ ମହାବୀରଙ୍କ ପୂର୍ବରୁ ପ୍ରବର୍ତ୍ତିତ ହୋଇଥିଲା । ପାର୍ଶ୍ୱନାଥଙ୍କ ଶିଷ୍ୟ କରକଣ୍ଡୁ କଳିଙ୍ଗର ରାଜା ଥିଲେ । ସେ ତେରପୁର (ଧାରାଶିବ) ଗୁମ୍ଫା ପରିଦର୍ଶନ କରିଥିଲେ ଏବଂ ଜୈନ ମନ୍ଦିରମାନ ସେଠାରେ ନିର୍ମାଣ କରିଥିଲେ । (୧୩) ସେହି ମନ୍ଦିରଗୁଡ଼ିକରେ ଜିନେନ୍ଦ୍ରମାନଙ୍କର ମୂର୍ତ୍ତି ସ୍ଥାପିତ ହୋଇଥିଲା ।

ଆହୁରି ମଧ୍ୟ କଥିତ ଅଛି ଯେ ଆନ୍ଧ୍ର ଦେଶରେ ମୌର୍ଯ୍ୟ ରାଜତ୍ୱର ପୂର୍ବରୁ ଜୈନଧର୍ମ ପ୍ରବର୍ତ୍ତିତ ହୋଇଥିଲା । ସେହିପରି 'ମହାବଂଶ'ରୁ ଜଣାଯାଏ ଯେ ଖ୍ରୀ. ପୂ. ପଞ୍ଚମ ଶତାବ୍ଦୀ ବେଳକୁ ଜୈନଧର୍ମ ସିଂହଳରେ ପ୍ରବର୍ତ୍ତିତ ହୋଇଥିଲା । ଏହିପରି ଜୈନଧର୍ମ ପୂର୍ବ, ଉତ୍ତର ଏବଂ ଦକ୍ଷିଣରେ ଚେର, ଚୋଳ ଏବଂ ତାମିଲ ଦେଶମାନଙ୍କରେ ଶ୍ରୁତକେବଳୀ ଭଦ୍ରବାହୁଙ୍କ ଅନେକ ପୂର୍ବରୁ

(୧୨) Cambridge History of India, Vol. I, page 164-165 ଏବଂ Epigrapbia Carnatica, Vol. I ଓ Early History of India, page 154.

(୧୩) J. B. O. R., Vol. XVI Parts I-II and Karakanducharya's (Karanja Series) Introduction.

ଗତଥିଲା । ଶ୍ରୀଯୁକ୍ତ ରାମସ୍ୱାମୀ ଆୟାଙ୍ଗାର (୧୪) ମଧ୍ୟ ମତପ୍ରକାଶ କରିଅଛନ୍ତି ଯେ ଦକ୍ଷିଣ ଭାରତକୁ ଛାଡ଼ି ଉତ୍ତର ଭାରତର ଗୋଟିଏ ଧର୍ମ ସିଂହଳକୁ ଗଲା; ଅଥଚ ଦକ୍ଷିଣ ଭାରତକୁ ସ୍ପର୍ଶ କଲା ନାହିଁ । ଏହା କପରି ସମ୍ଭବ ହୋଇପାରେ ? ଏକମାତ୍ର ସମ୍ଭାବ୍ୟ ଉତ୍ତର ହୋଇପାରେ ଯେ ଉତ୍ତରରୁ ବୌଦ୍ଧଧର୍ମ ସମୁଦ୍ର ବାଟେ ଦକ୍ଷିଣକୁ ଯାଇଥିଲା । ଏହା ଛଡ଼ା ଏହା ମଧ୍ୟ ବିଚାର କରିବାର କଥା ଯେ ଜଣେ ଜୈନ ଆଚାର୍ଯ୍ୟ ଜୈନସଂଘର କେତେ ଗୃହସ୍ଥ ସାଧୁଙ୍କୁ ତାଙ୍କ ଅଧୀନରେ ନେଇ ଗଲେ, ଅଥଚ ଜୈନଧର୍ମ ଭଦ୍ରବାହୁଙ୍କ ପୂର୍ବରୁ ସେଠାରେ କୌଣସି ପ୍ରଭାବ ପକାଇ ନ ଥିଲା । ଏହା କପରି ବିଶ୍ୱାସ କରାଯାଇ ପାରେ ? ଜୈନ ଧର୍ମଗ୍ରନ୍ଥମାନଙ୍କରେ କହିତ ଅଛି ଯେ ଋଷଭଦେବ ଦକ୍ଷିଣ ଭାରତକୁ ପ୍ରଥମେ ଜୈନଧର୍ମ ନେଇଥିଲେ । ତାଙ୍କ ପୁତ୍ର ବାହୁବଳୀ ଦକ୍ଷିଣ ଭାରତର ପ୍ରଥମ ରାଜା ଥିଲେ ଯେ କି ସଂସାର ପରିତ୍ୟାଗ କରି ନଗ୍ନ ଜୈନ ସାଧୁ ହୋଇଥିଲେ । ସେ ଗୋଦାବରୀକୂଳରେ ଅବସ୍ଥିତ ପୋଦନା-ପୁରଠାରେ ମହାତପସ୍ୟା କରିଥିଲେ ଏବଂ ସର୍ବଜ୍ଞ ହୋଇଥିଲେ । ଏହି ବାହୁବଳୀ ଦକ୍ଷିଣ ଭାରତରେ ଜୈନଧର୍ମ ପ୍ରଚାର କରିଥିଲେ । ଏଥିରୁ ଜଣାଯାଏ ଯେ ଜୈନଧର୍ମ ଦକ୍ଷିଣ ଭାରତରେ ଅତି ପ୍ରାଚୀନ କାଳରୁ ପ୍ରବେଶଲାଭ କରିଥିଲା । ଏହା ଛଡ଼ା ସାହିତ୍ୟ ଏବଂ ପ୍ରତ୍ନ ଅବ-ଶେଷମାନଙ୍କରୁ ଜୈନଧର୍ମର ଏହି ଐତିହାସିକତା ପ୍ରମାଣିତ ହେଉଅଛି ।

ଜୈନ ସାହିତ୍ୟରେ ଭଦ୍ରବାହୁଙ୍କ ଅନେକ ପୂର୍ବରୁ ଦକ୍ଷିଣ ମଥୁରା, ପୋଦନା-ପୁର, ପଳାଶପୁର, ଉଦିକ (ମଳୟଗିରି ନିକଟରେ), ମହାଶୋକନଗର ଇତ୍ୟାଦି ସ୍ଥାନର କଥା ଜୈନ ସାହିତ୍ୟରେ ଉଲ୍ଲିଖିତ ହୋଇଅଛି । ଦକ୍ଷିଣ ମଥୁରା ପାଣ୍ଡବ ଭ୍ରାତାମାନଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ସେତେବେଳେ ସେମାନେ ବନବାସରେ ଥିଲେ । ପାଣ୍ଡବମାନେ ଯେତେବେଳେ ଦକ୍ଷିଣ ଭାରତରେ ଥିଲେ (୧୫) ସେତେବେଳେ ଦ୍ୱାରକା ନଷ୍ଟଭ୍ରଷ୍ଟ ହୋଇଯାଇଥିବାରୁ ଶ୍ରୀକୃଷ୍ଣ ତାଙ୍କ ଭାଇ ବଳଦେବଙ୍କ ସହିତ ଦ୍ୱାରକା ଛାଡ଼ି ଦକ୍ଷିଣ ମଥୁରାକୁ ଆସିଥିଲେ । ବାଟରେ ଅସୁ ଅସୁ ଜରତ୍କୁମାରଙ୍କ ଶରରେ କୃଷ୍ଣଙ୍କର କୌଶାମ୍ବୀ ବନରେ ମୃତ୍ୟୁ ଘଟିଲା ।

ପାଣ୍ଡବମାନେ ଏକଥା ଶୁଣି ବଳରାମଙ୍କୁ ସାନ୍ତ୍ୱନା ଦେବା ପାଇଁ ଦୌଡ଼ିଆସିଲେ ଏବଂ ନାରାୟଣଙ୍କୁ ଶୃଙ୍ଗୀ ପର୍ବତରେ ଦାହ କଲେ । ଏହି ଶୃଙ୍ଗୀ ପର୍ବତରେ ବଳରାମ ତପସ୍ୟା ଆରମ୍ଭ କଲେ । ପାଣ୍ଡବମାନେ ଦକ୍ଷିଣକୁ ଯିବା ପରେ ଯେତେବେଳେ ଶୁଣିଲେ ଯେ ପଲ୍ଲବ ଦେଶର ଅରିଷ୍ଟନେମୀ ତୀର୍ଥଙ୍କର ଅଛନ୍ତି, ସେମାନେ ତାଙ୍କ ପାଖକୁ ଗଲେ ଏବଂ ଜୈନମୁନିଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । (୧୬) ସେମାନଙ୍କ ସଙ୍ଗରେ ଜଣେ ଦ୍ରାବିଡ଼ୀୟ ରାଜା ମଧ୍ୟ ଜୈନ ହୋଇଥିଲେ ଏବଂ ସେ

(୧୪) Studies in South India Jainism, Part I p. 33.

(୧୫) ଜୈନ ଦର୍ଶନ, page 48.

(୧୬) ଜୈନ ହରିବଂଶ, ପର୍ବ

ଓ ଦକ୍ଷିଣ ଜୈନ ଇତିହାସ, Vol. III, page 78-90

ସମସ୍ତଙ୍କୁ ଶତ୍ରୁଞ୍ଜୟ ପର୍ବତରୁ ଉଦ୍ଧାର କରିଥିଲେ ।

ଜୈନ ସାହିତ୍ୟ ଛଡ଼ା ହିନ୍ଦୁ ପୁରାଣ-ମାନଙ୍କରେ ମଧ୍ୟ ଏହାର ଜୈନମତ ମିଳେ । ଦେବ ଓ ଅସୁରମାନଙ୍କ ମଧ୍ୟରେ ଯୁଦ୍ଧ ହେଲାବେଳେ ବିଷ୍ଣୁ ଦିଗମ୍ବର ଜୈନମୁନି ଅବତାର ହୋଇ ଅସୁରମାନଙ୍କ ମଧ୍ୟରେ ଅହିଂସା ଓ ସୌହାର୍ଦ୍ଦ୍ୟର ବାର୍ତ୍ତା ପ୍ରଚାର କରିଥିଲେ । (୧୭) ସେ ସେତେବେଳେ ନର୍ମଦା କୂଳରେ ବାସ କରୁଥିଲେ । ଏଥିରୁ ଜଣାଯାଏ ଯେ ଜୈନଧର୍ମ ବହୁ ପୂର୍ବରୁ ନର୍ମଦା ନଦୀକୂଳରେ ନିଜର କେନ୍ଦ୍ର ପ୍ରତିଷ୍ଠା କରିଥିଲା । ଆଜି ମଧ୍ୟ ଜୈନମାନେ ସେଠାରେ ପୂଜା କରନ୍ତି ।

ସମ୍ରାଟ୍ ନେବୁଚ୍ଛଦ ନେଜାର--୧ ଙ୍କର ତାମ୍ର ଶାସନରୁ ଜଣାପଡ଼େ ଯେ (ଖ୍ରୀ ପୂ. ୧୧୪୦ ) ( କାଠିଆବାଡ଼ରେ ଏହାର ପ୍ରମାଣ ମଧ୍ୟ ଅଛି ) ଏହି ସମ୍ରାଟ ରେବା ନଗରର ଅଧିପତି ଥିଲେ ଏବଂ ଦ୍ୱାରକାକୁ ଆସିଥିଲେ । ସେଠାରେ ନେମୀଙ୍କ ନାମରେ ରୈବତକ ପର୍ବତରେ ଗୋଟିଏ ମନ୍ଦିର ନିର୍ମାଣ କରିଥିଲେ । (୧୮) ଏହି ନେମୀ ହେଉଛନ୍ତି ତୀର୍ଥଙ୍କର ଅରିଷ୍ଟନେମୀ । ନେବୁଚ୍ଛଦ ନେଜାର ତାଙ୍କୁ ଭକ୍ତି କରୁଥିଲେ । ତାଙ୍କ ସମୟ କ୍ରମେ ରେବା ନଗର ନାମରେ ପ୍ରସିଦ୍ଧ ହୋଇଥିଲା ।

ସିଦ୍ଧବରକୂଟ ନାମରେ ଏକ ଜୈନତୀର୍ଥ ରେବାନଦୀ ତଟରେ ଅବସ୍ଥିତ । ଏଥିରୁ ଜଣାଯାଏ ଯେ ଜୈନଧର୍ମ ଦାକ୍ଷିଣାତ୍ୟରେ ଅତି ପ୍ରାଚୀନ କାଳରୁ ନିଜର ଆସ୍ଥାନ ସୁଦୃଢ଼ କରିଥିଲା ।

ତାମିଲ ସାହିତ୍ୟରେ ମଧ୍ୟ ଏହାର ପ୍ରମାଣ ଅଛି । ତାମିଲ ବ୍ୟାକରଣ 'ଅଗଥିୟମ୍' ଓ ଗ୍ରନ୍ଥ 'ଓଲକା-ପିୟମ୍'ରୁ ଜଣାଯାଏ ଯେ ଜୈନଧର୍ମ ଦକ୍ଷିଣ ଭାରତରେ ପ୍ରଚଳିତ ଥିଲା । 'ଓଲକାପିୟମ୍' ଜଣେ ଜୈନ ଦ୍ୱାରା ଖ୍ରୀ. ପୂ. ୪ର୍ଥ ଶତାବ୍ଦୀରେ ଲିଖିତ ବୋଲି ଅନୁମିତ ହୁଏ । 'ମଣିମେଖଳାୟି' ଓ 'ଶିଲ୍ପଦ୍ଦିକାରଂ' ମଧ୍ୟ ଆମକୁ ଅନେକ ଉପାଦାନ ଯୋଗାଇଥାନ୍ତି ।

ଅଧିକନ୍ତୁ ମଥୁରା ଓ ରାମନଦ ଜିଲାରେ ଖ୍ରୀ. ପୂ. ୩ୟ ଶତାବ୍ଦୀର ଯେଉଁ ବ୍ରାହ୍ମୀ ଲେଖା ମିଳେ, ସେଥିରୁ ଜଣାଯାଏ ଯେ ସେ ଅଞ୍ଚଳରେ ଜୈନଧର୍ମ ଅତି ପ୍ରବଳ ଥିଲା । ତା ନ ହେଲେ ସେ ସମୟରେ ଜନମୂର୍ତ୍ତି ଏତେ ବେଶୀ ପରିମାଣରେ ଦେଖାଯାନ୍ତା ନାହିଁ । ଅତଏବ ଜୈନଧର୍ମ ଦକ୍ଷିଣ ଭାରତରେ ମୌର୍ଯ୍ୟକାଳର ବହୁ ପୂର୍ବରୁ ପ୍ରସାରିତ ହୋଇଥିଲା ।

ହିନ୍ଦୁ ଶାସ୍ତ୍ରରେ ବୁଦ୍ଧ ଅବତାର-କଥିତ । (୧୯) ବୌଦ୍ଧ ଶାସ୍ତ୍ରମାନରେ ଏମିତି ଅନେକ ବୁଦ୍ଧ ଭିନ୍ନ ଭିନ୍ନ ଯୁଗରେ ଜଗତକୁ ଲୋକଶିକ୍ଷା ଦେବା ନିମିତ୍ତ ଆସି-ଅଛନ୍ତି । ଏହା ହିନ୍ଦୁଙ୍କର ଅବତାର କଳ୍ପନାର ଅନୁରୂପ । ବୌଦ୍ଧଙ୍କ ପରି ଜୈନମାନେ ମଧ୍ୟ ଚବିଶ ତୀର୍ଥଙ୍କର ବା

---

(୧୭) ବିଷ୍ଣୁ ପୁରାଣ, ଅଧ୍ୟାୟ XVIII; ପଦ୍ମ ପୁରାଣ, ଅଧ୍ୟାୟ I, ମତ୍ସ୍ୟ ପୁରାଣ, ଅଧ୍ୟାୟ XXIV.

(୧୮) Times of India, 19th March, 1935, page 9 ଏବଂ ସଚିତ୍ର ଜୈନ ଇତିହାସ III ପୃଷ୍ଠା ୨୪-୨୭ ।

(୧୯) ବୁଦ୍ଧ ବଂଶ

ଅବତାର କଥା ବିଶ୍ୱାସ କରନ୍ତି । ହିନ୍ଦୁର ପୁରାଣମାନଙ୍କରେ ଯେପରି ବୃଷଭଦେବଙ୍କୁ ଅବତାର ବୋଲି ଧରା ଯାଇଛି, ଠିକ୍ ସେହିପରି ଭାବରେ ଋଷଭ ଦେବଙ୍କୁ ମଧ୍ୟ ବିଷ୍ଣୁଙ୍କ ଅବତାର ବୋଲି କୁହା ଯାଇଛି । ସେ ସଙ୍ଗପଗଲରୁ ସମ୍ରାଟ ଏବଂ ଚକ୍ରବର୍ତ୍ତୀ ରାଜା ଥିଲେ । ଶେଷକୁ ନିଜ ପୁତ୍ରମାନଙ୍କୁ ରାଜ୍ୟ ବାଣ୍ଟି ଦେଇ ସେ ଯତିବ୍ରତ ଅବଲମ୍ବନ କରିଥିଲେ । (୨୦)

ଏହି ଦୃଷ୍ଟିରୁ ବିଚାର କଲେ ଜୈନଧର୍ମ ଓ ବୌଦ୍ଧଧର୍ମ ଅଂଶବିଶେଷରେ ଯେଉଁ ବିଶେଷରେ ବେଦବାଧ୍ୟ ଖଣ୍ଡନକାରୀ ହେଲେ ହେଁ ବୈଦିକ ଧର୍ମର ସଂସ୍କାରକ ବୋଲି ଧରାଯାଇ ପାରେ । ପ୍ରତ୍ୟକ୍ଷ ପ୍ରାସଙ୍ଗିକ ନ ହେଲେ ମଧ୍ୟ ଏହି ଐତିହାସିକ ଅନୁଚ୍ଛେଦଟି ଏଠାରେ ସ୍ଥାପିବାର ପ୍ରଧାନ କାରଣ ହେଉଛି ଜୈନଧର୍ମର ମୂଳ ପ୍ରକୃତି ଓ ଐତିହାସିକ କାଳନିରୂପଣ । ସେଥିକି ପରେ ଧର୍ମର ଆଲୋଚନା ସମ୍ବନ୍ଧରେ ପ୍ରାଞ୍ଜଳ ହୋଇଯିବ । ଇତିହାସର ପୃଷ୍ଠଭୂମି ଦେଇ ଆମ୍ଭେମାନେ ସମ୍ରାଟ୍ ଚନ୍ଦ୍ରଗୁପ୍ତଙ୍କ ଅମଳରେ କଳିଙ୍ଗର ରାଜଶକ୍ତି ପ୍ରଭୃତି ଦେଖିବାକୁ ପାଉଁ ଏବଂ ବୁଝିପାରୁଁ ଯେ କଳିଙ୍ଗ ରାଜା ସେତେବେଳେ ସୁଦ୍ଧା ଜୈନଧର୍ମାବଲମ୍ବୀ ଥିଲେ । ଚନ୍ଦ୍ରଗୁପ୍ତ କଳିଙ୍ଗ ଆକ୍ରମଣ ନ କରି ଦାକ୍ଷିଣାତ୍ୟକୁ ମାଡ଼ିଯିବାର ଏହି ସମଧର୍ମର ଏକ କାରଣ ।

ଏତେ ଶକ୍ତିଶାଳୀ ଓ ସ୍ୱାଧୀନ ଥାଇ ଏବଂ ସେହି ଦେଶର ସ୍ୱାଧୀନତା ଓ ସ୍ୱାଦେଶିକତା ଯୋଗୁଁ କଳିଙ୍ଗ ସୈନ୍ୟ ପ୍ରାଣ ଦେଇ ଅଶୋକଙ୍କ ସହ ଲଢ଼ିଥିଲେ । (୨୧) ଦେଶର ସ୍ୱାଧୀନତା ଏହା ଫଳରେ ଲୁପ୍ତ ହୋଇଥିଲା ସତ୍ୟ ଏବଂ ଚଣ୍ଡାଶୋକ 'ଦେବାନାଂ ପ୍ରିୟ' ହୋଇ ଯେଉଁ ବିଶ୍ୱଜନୀନ ମୈତ୍ରୀର ପ୍ରଚାର କରିଥିଲେ ତହିଁରେ ଉଦ୍‌ବୋଧିତ ହେଲେ ମଧ୍ୟ, କଳିଙ୍ଗ ଲୋକେ ନିଜର ଧର୍ମରକ୍ଷା ସହଜରେ ପାସୋରି ଦେଇ ନ ଥିଲେ । ଏହାର ପ୍ରମାଣ ମିଳେ ପରବର୍ତ୍ତୀ ଯୁଗରେ ଯେତେବେଳେ ଖାରବେଳ ଉତ୍ତର ଭାରତ ଦିଗ୍‌ବିଜୟ ପରେ ଜିନମୂର୍ତ୍ତିକୁ ପାଟଳୀପୁତ୍ରରୁ କଳିଙ୍ଗକୁ ଫେରାଇ ଆଣିଥିଲେ । (୨୨) ଆମର ଆଲୋଚ୍ୟ ବିଷୟ ଏହି ଖାରବେଳଙ୍କ ଯୁଗରୁ ଆରମ୍ଭ ବୋଲି ଧରିବାକୁ ହେବ । ଏହା ଖ୍ରୀଷ୍ଟପୂର୍ବ ୧ମ ଶତାବ୍ଦୀର କଥା । ଅଶୋକଙ୍କ ପରେ କଳିଙ୍ଗ ପୁଣି ସ୍ୱାଧୀନ ହୋଇ ଖାରବେଳଙ୍କ ଅମଳରେ ସମଗ୍ର ଭାରତରେ ଏକ ଶକ୍ତିଶାଳୀ ସାମ୍ରାଜ୍ୟରେ ପରିଣତ ହୋଇଥିଲା । ଖାରବେଳ ଜୈନଧର୍ମର ମହିମା ପ୍ରଚାରରେ ଲାଗିପଡ଼ିଲେ । ଜୈନଧର୍ମର ଏହି ନବ ପର୍ଯ୍ୟାୟ ଓଡ଼ିଶାରେ ପ୍ରାୟ ଷଷ୍ଠମ ଶତାବ୍ଦୀ ଯାଏ ଜୈନଧର୍ମ ଓ ବୌଦ୍ଧ ତାନ୍ତ୍ରିକବାଦ ପ୍ରବର୍ତ୍ତନ ହେବାଯାଏ ରହିଥିଲା । ସେହି ସମ୍ଭବ ପ୍ରାୟ ଖ୍ରୀଷ୍ଟାବ୍ଦ ୧୦ମ ଶତାବ୍ଦୀ

(୨୦) ଭାଗବତ ୧ମ ସ୍କନ୍ଧ ୩ୟ ଅଧ୍ୟାୟ
୨ୟ ସ୍କନ୍ଧ ୭ମ ଅଧ୍ୟାୟ
୫ମ ସ୍କନ୍ଧ ୧-୩ୟ ଅଧ୍ୟାୟ
୫ମ ସ୍କନ୍ଧ ୪ର୍ଥ ଅଧ୍ୟାୟ
୭ମ ସ୍କନ୍ଧ ୧୧ଶ ଅଧ୍ୟାୟ

(୨୧) R. E. XIII Corpus Inscriptionum Indicarum. Vol. I by Hultzch.

(୨୨) Select Inscriptions—D. C. Sircar

ଶେଷ ପାଏ ଅବ୍ୟାହତ ରହି ଶେଷରୁ ବୌଦ୍ଧଧର୍ମ ସ୍ରୋତରେ ଲୋପ ପାଇଗଲା ।

## କଳିଙ୍ଗରେ ଆଦ୍ୟ ଜୈନଧର୍ମ

ଜୈନଧର୍ମରେ ଯେଉଁ ଚବିଶ ଜଣ ତୀର୍ଥଙ୍କରଙ୍କର ଉପାସନା କରିବାର ବିଧି ଅଛି, ସେମାନଙ୍କ ମଧ୍ୟରୁ କେତେଜଣ ଐତିହାସିକ ମହାପୁରୁଷ ଓ କେତେଜଣ କାଳ୍ପନିକ ପୁରୁଷ, ତାହାର ଏ ପର୍ଯ୍ୟନ୍ତ ଯୁକ୍ତିଯୁକ୍ତ ପରୀକ୍ଷା ହୋଇ ପାରିନାହିଁ । ଧର୍ମର ଭାବଧାରାରେ ଭାସିଗଲେ ବୈଜ୍ଞାନିକ ଦୃଷ୍ଟିକୋଣରୁ ଏହାର ଉପଯୁକ୍ତ ମୀମାଂସା ହୋଇ ପାରିବ ନାହିଁ । ଐତିହାସିକମାନଙ୍କ ମତରେ ଏହି ଚବିଶ ଜଣ ତୀର୍ଥଙ୍କରଙ୍କ କଳ୍ପନା ପରବର୍ତ୍ତୀ ଯୁଗର । ଐତିହାସିକ ଜେକୋବି ଏବଂ ଅନ୍ୟାନ୍ୟ ପଣ୍ଡିତମାନେ ଜୈନଶାସ୍ତ୍ର ସମୂହର ବହୁ ଆଲୋଚନା କରି ମନ୍ତବ୍ୟ ପ୍ରକାଶ କରିଛନ୍ତି ଯେ ଜୈନଧର୍ମ ଆରମ୍ଭ ହେଲା ପାର୍ଶ୍ୱନାଥଙ୍କ ଠାରୁ । ତେଣୁ ସେହି ପାର୍ଶ୍ୱନାଥଙ୍କୁ ହିଁ ଜୈନଧର୍ମର ପ୍ରଥମ ପ୍ରବର୍ତ୍ତକ ରୂପେ ଐତିହାସିକ ଭିତ୍ତିରେ ସେମାନେ ଗ୍ରହଣ କରିଅଛନ୍ତି । (୧)

ପାର୍ଶ୍ୱନାଥଙ୍କୁ ଜୈନଧର୍ମର ପ୍ରବର୍ତ୍ତକ-ରୂପେ ଗ୍ରହଣ କରିବାରେ କିଂବଦନ୍ତୀ ଓ ଇତିହାସର ଯେ ଏକ ସାଲିସ ସମାଧାନ ହୋଇଛି ଏହା ଅନେକଙ୍କର ମତ । (୨)

ପାର୍ଶ୍ୱନାଥ ଜୈନଧର୍ମର ଆଦ୍ୟ ପ୍ରବର୍ତ୍ତକ ହୁଅନ୍ତୁ ବା ନ ହୁଅନ୍ତୁ ସେ ଯେ ପ୍ରଥମେ କଳିଙ୍ଗରେ ଜୈନଧର୍ମ ପ୍ରଚାର କରିଥିଲେ ଏଥିରେ ସନ୍ଦେହ ନାହିଁ । ପାର୍ଶ୍ୱନାଥଙ୍କ ନାମ ସହିତ କଳିଙ୍ଗର ପ୍ରାଚୀନ ସଂସ୍କୃତିର ଘନିଷ୍ଠ ସମ୍ପର୍କ ରହିଛି ଏବଂ ଉଦୟଗିରି ଓ ଖଣ୍ଡଗିରିର ଗୁମ୍ଫାମାନଙ୍କରେ ମହାବୀର ମୂର୍ତ୍ତି ଓ କଥାବସ୍ତୁ ଅନ୍ୟ ତୀର୍ଥଙ୍କରମାନଙ୍କ ଅପେକ୍ଷା ଅଧିକ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ଖଣ୍ଡଗିରିରେ ପାର୍ଶ୍ୱନାଥଙ୍କୁ ହିଁ ମୂଳ ନାୟକ ରୂପେ ସମ୍ମାନ ପ୍ରଦର୍ଶନ କରାହୋଇଛି । କଳିଙ୍ଗ ସହିତ ପାର୍ଶ୍ୱନାଥଙ୍କର ଯେଉଁ ସମ୍ପର୍କ ଥିଲା ତାହା ପୂର୍ବ ଅଧ୍ୟାୟରେ ସୂଚିତ ହୋଇଛି । ପ୍ରାଚ୍ୟ-ବିଦ୍ୟା-ମହାର୍ଣ୍ଣବ ୰ ନଗେନ୍ଦ୍ର ନାଥ ବସୁ ଜୈନ ଭଗବତୀ ସୂତ୍ର, ଜୈନ କ୍ଷେତ୍ରସମାସ ଓ ଭାବଦେବଙ୍କ ଲିଖିତ ଚବିଶ ତୀର୍ଥଙ୍କରଙ୍କର ଜୀବନୀ ଆଲୋଚନା କରି ପ୍ରଥମେ କହିଅଛନ୍ତି ଯେ ପାର୍ଶ୍ୱନାଥ ଅଙ୍ଗ, ବଙ୍ଗ ଓ କଳିଙ୍ଗରେ ଜୈନଧର୍ମ ପ୍ରଚାର କରିଥିଲେ । ତାମ୍ରଲିପ୍ତ ବନ୍ଦରରୁ ସେ ଧର୍ମପ୍ରଚାର ଉଦ୍ଦେଶ୍ୟରେ କଳିଙ୍ଗ ଅଭିମୁଖରେ ଆସି କୋପକଟକର ଧନ୍ୟ ନାମଧେୟ ଏକ ଗୃହସ୍ଥର ଆତିଥ୍ୟ ଗ୍ରହଣ କରିଥିଲେ । ବସୁ ମହାଶୟଙ୍କ ମତାନୁସାରେ ଏହି କୋପକଟକ ହେଉଛି ବାଲେଶ୍ୱର ଜିଲ୍ଲାର ଅଧୁନାତନ କୁପାରି ଗ୍ରାମ । ଏହି କୁପାରି ଗ୍ରାମ କୋମାରକ

(୧) I. A II, page 261 and Vol. IX, page 162. ଏ ପ୍ରସଙ୍ଗରେ ସାର୍ ଅଶୁତୋଷ ମୁଖାର୍ଜି Silver Jubilee Vol. III, Part III, ପୃଷ୍ଠା ୭୪-୮୨ ଦ୍ରଷ୍ଟବ୍ୟ ।

(୨) O. H. R. J., Vol. IV, page 79.

ଗ୍ରାମ ରୂପେ ଖ୍ରୀଷ୍ଟୀୟ ୮ମ ଶତାବ୍ଦୀରେ ପରିଚିତ ଥିବା ଭୌମ ତାମ୍ରଫଳକରୁ ଜଣାଯାଏ । (୩)

ପାର୍ଶ୍ୱନାଥ ଗୃହସ୍ଥ ଧନ୍ୟଙ୍କର ଅତିଥି ହୋଇଥିବା ହେତୁ ତାହା ସ୍ମରଣୀୟ କରିବା ପାଇଁ କୋପକଟକକୁ ଧନ୍ୟକଟକ କୁହାଯାଉଥିଲା । ବସୁ ମହାଶୟ ଆହୁରି ପ୍ରକାଶ କରନ୍ତି ଯେ ସେ କାଳରେ ମୟୂରଭଞ୍ଜ ଅଞ୍ଚଳରେ ବୃହନ୍ନ ନାମକ ଏକ କ୍ଷତ୍ରିୟ ଜାତି ରାଜତ୍ୱ କରୁଥିଲେ ଏବଂ ସେହି ରାଜବଂଶ ପାର୍ଶ୍ୱନାଥଙ୍କର ପ୍ରଚାରିତ ଧର୍ମରେ ଅନୁପ୍ରାଣିତ ହୋଇଥିଲେ । ଏ ବିଷୟ ବସୁ ମହାଶୟ କେଉଁଠୁ ପାଇଛନ୍ତି ତାହା ଆମକୁ ଜଣା ନାହିଁ ।

ପାର୍ଶ୍ୱନାଥଙ୍କ ପରେ ମହାବୀର ଜୈନଧର୍ମର ଶେଷ ତୀର୍ଥଙ୍କର ରୂପେ ଆବିର୍ଭୂତ ହୋଇଥିଲେ । ଜୈନଙ୍କର 'ଆବଶ୍ୟକ ସୂତ୍ର'ରେ ଲିଖିତ ଅଛି ଯେ ଭଗବାନ୍ ମହାବୀର ତୋଷଳି ଅଞ୍ଚଳକୁ ଆସି ତାଙ୍କର ଧର୍ମ ପ୍ରଚାର କରିଥିଲେ ଓ ଏହି ତୋଷଳି ଦେଶରୁ ମୋଷଳି ରାଜ୍ୟକୁ ଯାଇଥିଲେ ।

"ତତୋ ଭଗବଂ ତୋଷଲିଂ ଗଓ…ତତ୍ଥ ସୁମାଗହୋ ନାମ ରଟ୍ଠି ଓ ପିତୃମିତ୍ତୋ ଭଗବଓ ସୋ ମୋଏଇ, ତତୋ ସାମୀ ମୋଷଲିଂ ଗଓ…"

(ଆବଶ୍ୟକ ସୂତ୍ର, ପୃ. ୨୧୯-୨୦)

ହରିଭଦ୍ର ଏହି ଆବଶ୍ୟକ ସୂତ୍ରର ବୃତ୍ତି ବା ଟୀକା ଲେଖିଛନ୍ତି । ତାହା ହରିଭଦ୍ରିୟ ବୃତ୍ତି ରୂପେ ବିଖ୍ୟାତ । ଏହି ଟୀକାରେ ହରିଭଦ୍ର ସ୍ପଷ୍ଟ ରୂପେ ଲେଖିଛନ୍ତି ଯେ ମହାବୀର ସ୍ୱାମୀଙ୍କ ପିତା ସିଦ୍ଧାର୍ଥ ତତ୍କାଳୀନ ତୋଷଳି ରାଜାଙ୍କର ବନ୍ଧୁ ଥିଲେ ଏବଂ କଳିଙ୍ଗ ରାଜା ମହାବୀରଙ୍କୁ ତାଙ୍କ ରାଜ୍ୟରେ ଧର୍ମପ୍ରଚାର କରିବା ପାଇଁ ଆମନ୍ତ୍ରଣ କରିଥିଲେ । (୪)

ସ୍ୱର୍ଗୀୟ ଜୟସ୍ୱାଲ କହନ୍ତି ଯେ, ସମ୍ରାଟ୍ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲିପିର ୧୪ଶ ଧାଡିରେ ମହାବୀର ସ୍ୱାମୀ କଳିଙ୍ଗ ଆସିଥିବା ଓ କୁମାରୀ ପର୍ବତରେ ନିଜ ଧର୍ମମତ ପ୍ରଚାର କରିଥିବାର ସୂଚନା ଅଛି । (୫)

ଜୈନ ଗ୍ରନ୍ଥ ଉତ୍ତରାଧ୍ୟୟନ ସୂତ୍ରରେ (୬) ଦେଖିବାକୁ ମିଳେ ଯେ ମହାବୀରଙ୍କ ସମୟରେ କଳିଙ୍ଗ ଏକ ଜୈନଭୂମି ଥିଲା । କଳିଙ୍ଗର ପିହୁଣ୍ଡ ନାମକ ଏକ ସୁବିଖ୍ୟାତ ବନ୍ଦର ସେତେବେଳେ ଜୈନଧର୍ମର ଅନ୍ୟତମ କେନ୍ଦ୍ର ଥିଲା । ବହୁ ଦୂର ଦେଶରୁ ବଣିକମାନେ ବାଣିଜ୍ୟ ଉଦ୍ଦେଶ୍ୟରେ, କେହି କେହି ବା ଧର୍ମ ଉଦ୍ଦେଶ୍ୟରେ ଏହି ବନ୍ଦରକୁ ଆସୁଥିଲେ । ଚମ୍ପା ରାଜ୍ୟରୁ ଏକ ଜୈନ ବଣିକ ଏହି ପିହୁଣ୍ଡ ବନ୍ଦରକୁ ଆସି ସେଠାରେ କିଛିକାଳ ବସତି ସ୍ଥାପନ କରିଥିବା ଓ ସେ ନଗରରେ ଏକ ସୁନ୍ଦରୀ ନାରୀକୁ ବିବାହ କରିଥିବା ବିଷୟ ଜୈନ ଉତ୍ତରାଧ୍ୟୟନ ସୂତ୍ରରେ ଲିଖିତ ଅଛି । ଏହି ପିହୁଣ୍ଡ

(୩) Neulpur Copper Plate

(୪) Haribhadriya Vrittie (Agamodaya Samiti) 218-220. Also vide J. B. O R. S. VIII, p. 223.

(୫) J. B. O. R. S. VIII ୨୨୬ ପୃଷ୍ଠା ।

(୬) ଉତ୍ତରାଧ୍ୟୟନ ସୂତ୍ର, ପୃଷ୍ଠା ୨୧

ବନ୍ଦର ଯେ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲିପିର 'ପିଥୁଣ୍ଡ', ତାହା ନିଃସନ୍ଦେହ ରୂପେ ଫରାସୀ ପଣ୍ଡିତ Sylvain Levi ସିଲଭେନ୍ ଲେଭି ଜଣାଇଅଛନ୍ତି । (୨)

ଖାରବେଳଙ୍କ ହାତୀଗୁମ୍ଫା ଲିପିରୁ ମଧ୍ୟ ମିଳେ ଯେ ପିଥୁଣ୍ଡ ନଗର ତାଙ୍କର ବହୁକାଳ ପୂର୍ବେ କଳିଙ୍ଗ ରାଜାମାନଙ୍କ ଦ୍ୱାରା ଅଧ୍ୟୁଷିତ ଏକ ଜୈନ କ୍ଷେତ୍ର ଥିଲା ।

ଏହି ଆଲୋଚନାରୁ ସ୍ପଷ୍ଟ ପ୍ରତୀତ ହେଉଛି ଯେ ପାର୍ଶ୍ୱନାଥଙ୍କ ସମୟରୁ କଳିଙ୍ଗରେ ଜୈନଧର୍ମର ପ୍ରଭାବ ପଡ଼ିଥିଲା ଓ ମହାବୀରଙ୍କ ସମୟରେ ଅର୍ଥାତ୍ ଖ୍ରୀ. ପୂ. ୬ଷ୍ଠ ଶତାବ୍ଦୀରେ ଏହି ଧର୍ମଦ୍ୱାରା କଳିଙ୍ଗ ବିଶେଷ ଭାବରେ ଅନୁପ୍ରାଣିତ ହୋଇଥିଲା । ଖ୍ରୀ. ପୂ. ୪ର୍ଥ ଶତାବ୍ଦୀବେଳେ ମହାପଦ୍ମନନ୍ଦ କଳିଙ୍ଗ ଆକ୍ରମଣ କରିଥିଲେ । ସେ ତାଙ୍କର କଳିଙ୍ଗବିଜୟର ଚିହ୍ନ ରୂପେ ବହୁକାଳରୁ ଜାତୀୟ ଦେବତା ରୂପେ ପୂଜିତ ହେଉଥିବା କଳିଙ୍ଗ ଜିନପ୍ରତିମା ସ୍ୱୀୟ ରାଜଧାନୀ ରାଜଗୃହକୁ ନେଇ ଯାଇଥିଲେ । ଏହି ଅବେରଚନା ଯେ କେବଳ ପୁରାଣ-ମାନଙ୍କରେ ଦେଖାଯାଏ ତାହା ନୁହେଁ । ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରେ ମଧ୍ୟ ଏହାର ସ୍ପଷ୍ଟ ଉଲ୍ଲେଖ ଅଛି । ତେଣୁ ଖ୍ରୀ. ପୂ. ୪ର୍ଥ ଶତାବ୍ଦୀରେ ମଧ୍ୟ କଳିଙ୍ଗରେ ଜୈନଧର୍ମ ଜାତୀୟ ଧର୍ମ ରୂପେ ପ୍ରତିଷ୍ଠିତ ହୋଇଥିବା ନିଃସନ୍ଦେହ ରୂପେ କୁହାଯାଇ ପାରେ ।

ଖ୍ରୀ. ପୂ. ୩ୟ ଶତାବ୍ଦୀରେ କଳିଙ୍ଗ ଉପରକୁ ଏକ ଚାହିଁ ନ ଥିବା ବିପଦ ମାଡ଼ି ଆସିଲା । ମଗଧ ସମ୍ରାଟ୍ ଅଶୋକ କଳିଙ୍ଗ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି କଳିଙ୍ଗକୁ ଛାରଖାର କରିଦେଲେ । ଏହି ଯୁଦ୍ଧ ଫଳରେ କଳିଙ୍ଗର ଲକ୍ଷେ ଲୋକ ମଲେ, ଦେଢ଼ଲକ୍ଷ ବନ୍ଦୀ ହେଲେ ଓ ତାଦୃଶ ସଂଖ୍ୟକ ନରନାରୀ ଯୁଦ୍ଧୋତ୍ତର ଦୁର୍ବିପାକରେ ପ୍ରାଣତ୍ୟାଗ କଲେ । ଯେଉଁ କଳିଙ୍ଗ ରାଜା ଅଶୋକଙ୍କ ସହିତ ଏହି ଭୂମୂଳ ଯୁଦ୍ଧ ଚଳାଇଥିଲେ, ସେ ଯେ ଏକ ଜୈନରାଜା ଏହା ମୋର ଦୃଢ଼-ବିଶ୍ୱାସ । ଅଶୋକ ତାଙ୍କର ୧୩ଶ ଅନୁଶାସନରେ ଗଭୀର ଅନୁଶୋଚନା ପୂର୍ବକ ସ୍ୱୀକାର କରିଛନ୍ତି ଯେ କଳିଙ୍ଗ ଯୁଦ୍ଧରେ ବ୍ରାହ୍ମଣ ତଥା ଶ୍ରମଣ ଉଭୟ ସମ୍ପ୍ରଦାୟ ଦୁଃଖ ଭୋଗ କରିଥିଲେ । ଅଶୋକ ଯେଉଁମାନଙ୍କୁ ଶ୍ରମଣ ବୋଲି କହିଅଛନ୍ତି, ସେମାନେ ଯେ ଜୈନ ଏଥିରେ ସନ୍ଦେହ ନାହିଁ । ଅଶୋକ କଳିଙ୍ଗର ଭାଗ୍ୟ ଉପର୍ଯ୍ୟୁପରେ ଲୁଟ ତାଳ କାଟିଥିଲେ ସତ୍ୟ, କିନ୍ତୁ ନନ୍ଦରାଜ ନେଇ ଯାଇଥିବା କଳିଙ୍ଗର ଜିନପ୍ରତିମାକୁ ଫେରାଇ ପାରିଲେ ନାହିଁ ।

ତାଙ୍କ ପରେ କଳିଙ୍ଗ ସନ୍ତାନ ଖାରବେଳ ଯେତେବେଳେ କଳିଙ୍ଗ ସିଂହାସନ ଆରୋହଣ କଲେ, ସେ ତାଙ୍କର ୧୨ଶ ବର୍ଷର ରାଜତ୍ୱକାଳେ ମଗଧ ବିରୁଦ୍ଧରେ ଅଭିଯାନ କରି ସେହି କଳିଙ୍ଗ ଜିନ ପ୍ରତିମାକୁ ଫେରାଇ ଆଣିଥିଲେ ।

ଅଶୋକଙ୍କ ପରେ ତାଙ୍କର ନାତି ସମ୍ପ୍ରତି ମଗଧର ରାଜା ହୋଇଥିଲେ । ଅଶୋକ ଯେପରି ବୌଦ୍ଧଧର୍ମର ପୃଷ୍ଠ-ପୋଷକ ଥିଲେ ଠିକ୍ ସେହିପରି ସମ୍ପ୍ରତି ଥିଲେ ଜୈନଧର୍ମର ପୃଷ୍ଠପୋଷକ । ତାହାଙ୍କ ରାଜତ୍ୱ କାଳରେ କଳିଙ୍ଗରେ

(୨) I. A. 1956 ପୃଷ୍ଠା, ୧୦୫

ଜୈନଧର୍ମର ଅଭ୍ୟୁତ୍ଥାନ, ଘଟିଥିବା ସମ୍ଭବପର । କଳିଙ୍ଗରେ ମୌର୍ଯ୍ୟ ଶାସନ ପରେ ସ୍ୱାଧୀନ ଚେଦବଂଶର ଅଭ୍ୟୁଦୟ ହୋଇଥିଲା । ଏହି ବଂଶର ରାଜତ୍ୱବେଳେ କଳିଙ୍ଗରେ ଜୈନଧର୍ମ ପୁନର୍ବାର ଜାତୀୟ ଧର୍ମ ରୂପେ ପ୍ରତିଷ୍ଠାପ୍ରାପ୍ତ ହୋଇଥିଲା ।

ଖାରବେଳ ହେଉଛନ୍ତି ଏହି ବଂଶର ତୃତୀୟ ରାଜା । ତାହାଙ୍କର କାର୍ଯ୍ୟକଳାପ ଓ ଜୈନଧର୍ମ ପ୍ରତି ଦାନ ପରବର୍ତ୍ତୀ ପରିଚ୍ଛେଦମାନଙ୍କରେ ବିସ୍ତୃତ ଭାବେ ଆଲୋଚନା ହୋଇଛି ।

କଳିଙ୍ଗରେ 'ଆଦିଧର୍ମ, ଜୈନଧର୍ମ' ବର୍ଣ୍ଣନା କରିବାକୁ ଯାଇ ପାର୍ଶ୍ୱନାଥଙ୍କ ଜନ୍ମଠାରୁ ଆରମ୍ଭ କରି ଖାରବେଳ ପର୍ଯ୍ୟନ୍ତ ଧାରାବାହିକ ଭାବେ ଏକ ସଂକ୍ଷିପ୍ତ ଆଲୋଚନା ଏଠାରେ ପ୍ରଦତ୍ତ ହେଲା । ଏହି ଆଲୋଚନା ପର୍ଯ୍ୟାୟରେ ଅଶୋକଙ୍କର ସମସାମୟିକ କଳିଙ୍ଗର ଜୈନରାଜା ତଥା ମୌର୍ଯ୍ୟୋତ୍ତର ଯୁଗର ରାଜା ଖାରବେଳଙ୍କ ସୂଚନା ଦିଆ ହୋଇଛି । କଳିଙ୍ଗରେ ଜୈନଧର୍ମର ପ୍ରାଚୀନତା ପ୍ରତିପାଦନ କରିବାକୁ ଗଲେ ମୌର୍ଯ୍ୟଯୁଗର ବହୁ ପୂର୍ବବର୍ତ୍ତୀ କଳିଙ୍ଗର ଏକ ବିଖ୍ୟାତ ଜୈନ ରାଜାଙ୍କର ବିଷୟ ଏଠାରେ ଉପସ୍ଥାପିତ କରିବା ପ୍ରାସଙ୍ଗିକ ଏବଂ ବିଧେୟ ମନେ କରେ । ସେ ହେଉଛନ୍ତି କଳିଙ୍ଗରାଜ କରକଣ୍ଡୁ । ସେ ମହାବୀରଙ୍କ ପୂର୍ବେ ଏବଂ ପାର୍ଶ୍ୱନାଥଙ୍କ ପରେ କଳିଙ୍ଗର ରାଜା ହୋଇଥିବା ସୁନିର୍ଣ୍ଣିତ । କେତେକ ଲେଖକ ତାଙ୍କୁ ପାର୍ଶ୍ୱନାଥଙ୍କର ଏକ ଶିଷ୍ୟ ବୋଲି ମଧ୍ୟ ବର୍ଣ୍ଣନା କରିଅଛନ୍ତି । (୮) ଜୈନଗ୍ରନ୍ଥ ଉତ୍ତରାଧ୍ୟୟନ ସୂତ୍ରର ୧୮ଶ ଅଧ୍ୟାୟରେ ଏହି କରକଣ୍ଡୁଙ୍କ ବିଷୟ ଲିଖିତ ହୋଇଛି । ସେଥିରୁ ଜଣାଯାଏ ଯେ ଯେତେବେଳେ ଦ୍ୱିମୁଖ ପାଞ୍ଚାଳରେ, ନେମି ବିଦେହରେ ଓ ନଗ୍ନଜିତ ଗାନ୍ଧାରରେ ଶାସନ କରୁଥିଲେ, ସେତେବେଳେ କରକଣ୍ଡୁ ଥିଲେ କଳିଙ୍ଗର ରାଜା । ଏହି ଚାରିଜଣ ରାଜାଙ୍କୁ ଉତ୍ତରାଧ୍ୟୟନ ସୂତ୍ରର ଲେଖକ ପ୍ରତ୍ୟେକବୁଦ୍ଧ ବ ଆଖ୍ୟା ଦେଇଅଛନ୍ତି । (୯)

ସେମାନେ ନିଜ ନିଜ ପୁତ୍ରଙ୍କ ହସ୍ତରେ ରାଜ୍ୟଭାର ସମର୍ପଣ କରି ଶ୍ରମଣ ରୂପେ ଜିନପନ୍ଥା ଅବଲମ୍ବନ କରିଥିବା କଥା ବର୍ଣ୍ଣନା କରିଅଛନ୍ତି । ବୌଦ୍ଧମାନେ ରାଜା କରକଣ୍ଡୁଙ୍କୁ ଏକ ପ୍ରତ୍ୟେକ ବୁଦ୍ଧ ବୋଲି କହିଥାନ୍ତି ଓ ବୁଦ୍ଧଙ୍କ ପୂର୍ବରୁ ଯେଉଁ କେତେଜଣ ଜନ୍ମ ପରିଗ୍ରହ କରିଥିବା କଥା ସେମାନେ ପ୍ରକାଶ କରିଛନ୍ତି ସେମାନଙ୍କ ମଧ୍ୟରେ କରକଣ୍ଡୁ ବିଶିଷ୍ଟ ସ୍ଥାନ ଲାଭ କରିଅଛନ୍ତି । (୧୦) ବୌଦ୍ଧଙ୍କ କୁମ୍ଭକାର ଜାତକରୁ ଜଣାଯାଏ ଯେ କରକଣ୍ଡୁଙ୍କର ରାଜଧାନୀ ଥିଲା ଦନ୍ତପୁର । ରାଜା ତାଙ୍କ ଅନୁଚରଙ୍କ ଗହଣରେ ଦନ୍ତପୁରର ଏକ ଆମ୍ରତୋଟାରେ ପ୍ରବେଶ କରି ଫଳପୂର୍ଣ୍ଣ ଏକ ବୃକ୍ଷରୁ ପକ୍ୱ ଆମ୍ବ ଖାଇଥିଲେ । ସମସ୍ତେ ଆମ୍ବ ତୋଳି ଖାଇବା ହେତୁ ଆମ୍ବ ଗଛଟି ଧ୍ୱସ୍ତ ବିଧ୍ୱସ୍ତ ହୋଇ ଯାଇଥିଲା । ରାଜା କରକଣ୍ଡୁ ଥିଲେ ଏକ ଭାବୁକ ।

---

(୮) Indian Culture, Vol. IV 319 ff.

(୯) ଉତ୍ତରାଧ୍ୟୟନ ସୂତ୍ର, ୧୮ଶ ଅଧ୍ୟାୟ, ୪୫-୪୭ ଶ୍ଳୋକ ।

(୧୦) Fousball's Jatak No. 3 p. 376

ଯେ ଜଳବାନ୍ ବୃକ୍ଷଟିର ସେହି ଦଶା ଦେଖି ଗଭୀର ଭାବେ ଚିନ୍ତାମଗ୍ନ ହେଲେ ଏବଂ ପରିଶେଷରେ ସ୍ଥିର କଲେ ଯେ ସଂସାରର ଧନ ସମ୍ପଦ ସମସ୍ତ ଦୁଃଖର କାରଣ । ଏହା ଭାବି ସେ ସଂସାରତ୍ୟାଗୀ ହେଲେ ଓ ପ୍ରତ୍ୟେକ ବୁଦ୍ଧ ରୂପେ ଖ୍ୟାତି ଲାଭ କଲେ ।

ଏହା ହେଉଛି କରକଣ୍ଡୁଙ୍କ ସମ୍ପର୍କରେ ବୌଦ୍ଧ ଉପାଖ୍ୟାନ । ଜୈନମାନେ 'କରକଣ୍ଡୁ ଚରିଅ' ନାମକ ଏକ ପୁସ୍ତକ ପ୍ରଣୟନ କରିଅଛନ୍ତି । ଅଭିଧାନ ରାଜେନ୍ଦ୍ରରେ କରକଣ୍ଡୁଙ୍କ ସମ୍ପର୍କରେ ମଧ୍ୟ ବିସ୍ତୃତ ବର୍ଣ୍ଣନା ଅଛି । ଜୈନଗ୍ରନ୍ଥରୁ ମିଳିଥିବା ଉପାଖ୍ୟାନର ବିସ୍ତୃତ ବର୍ଣ୍ଣନା ନିମ୍ନରେ ପ୍ରଦତ୍ତ ହେଲା ।

## କରକଣ୍ଡୁ ଉପାଖ୍ୟାନ

ପୂର୍ବେ ଚମ୍ପା ନଗରୀରେ ଦଧିବାହନ ନାମକ ଜଣେ ରାଜା ଥିଲେ । ଚେଟକ ମହାରାଜାଙ୍କ କନ୍ୟା ପଦ୍ମାବତୀ ତାଙ୍କର ରାଣୀ ଥିଲେ । ରାଣୀ ତାଙ୍କର ପ୍ରଥମ ଗର୍ଭ ସମୟରେ ଏକ ଅଦ୍ଭୁତ ପ୍ରକାରର ଅଭିଳାଷ ପୋଷଣ କରିଥିଲେ । ସେ ଚାହୁଁଥିଲେ ଯେ ସ୍ୱାମୀଙ୍କ ସହିତ ପୁରୁଷ-ବେଶରେ ହାତୀରେ ଚଢ଼ି ବନକୁ ଯାଆନ୍ତେ ଓ ରାଜା ତାଙ୍କ ଉପରେ ଛତ୍ର ଟେକି-ଥାଆନ୍ତେ । କିନ୍ତୁ ସେ ଲଜ୍ଜାରେ ଏ କଥା ରାଜାଙ୍କ ଆଗରେ ପ୍ରକାଶ କରିପାରିଲେ ନାହିଁ । ଅଧିକନ୍ତୁ ଚିନ୍ତାରେ ସେ ଦିନକୁଦିନ ଦୁର୍ବଳ ହେଲେ । ରାଜା ତାଙ୍କୁ ଅନେକଥର ଅନୁନୟ କରି ସ୍ନେହବାକ୍ୟ ବହୁକଷ୍ଟରେ ପରିଶେଷରେ ପଦ୍ମାବତୀ ନିଜର ଗର୍ଭାଭିଳାଷ ବ୍ୟକ୍ତ କରିଥିଲେ । ଗର୍ଭବତୀର ସକଳ ପ୍ରକାର ଇଚ୍ଛା ପୂରଣ କରିବା ଚିକିତ୍ସା ଶାସ୍ତ୍ରାନୁମୋଦିତ ହେବାରୁ ରାଜା ଦଧିବାହନ ରାଣୀଙ୍କ କଥାରେ ସମ୍ମତି ପ୍ରଦାନ କଲେ ଏବଂ ନିଜ ପାଟହାତୀ ଉପରେ ରାଣୀଙ୍କୁ ବସାଇ ନିଜେ ପଛରେ ଛତ୍ର ଟେକି ବସିଲେ ଓ ବନ ଅଭିମୁଖରେ ଅଗ୍ରସର ହେଲେ । ରାଜା ଓ ରାଣୀ ବନରେ ପ୍ରବେଶ କରନ୍ତେ ବର୍ଷା ଆରମ୍ଭ ହେଲା । ପୂର୍ଣ୍ଣ ଗ୍ରୀଷ୍ମକାଳ ପରେ ପ୍ରଥମ ବର୍ଷାର ଆର୍ଦ୍ରତା ଯୋଗୁଁ ମାଟିରୁ ଏକ ପ୍ରକାର ସୁଗନ୍ଧ ବାହାରିଲା ଓ ସମସ୍ତ ପବନରେ ବନର ବୃକ୍ଷ,ଅଙ୍ଗ୍ ନାନା ପ୍ରକାର ଫୁଲର ମହକ ଛୁଟି ଆସିଲା । ବାଲ୍ୟକାଳରେ ବସ୍ ଭଦ୍ରାସୁ ମାତୃଭୂମିର ପ୍ରଶାନ୍ତ ଦୃଶ୍ୟ ହାତୀର ମନମଧ୍ୟରେ ଝଙ୍କାର ସୃଷ୍ଟି କଲା । ବର୍ଷାର ପ୍ରାରମ୍ଭରେ ମାଟିର ଗନ୍ଧ ଆଘ୍ରାଣ କରି ହାତୀମାନେ ଉନ୍ମତ୍ତ ହୋଇଉଠନ୍ତି । ସେହି ବନ୍ୟକ୍ରୀଡ଼ା ସ୍ମରଣ ମାତ୍ରକେ ସେହି ହାତୀର ଗଣ୍ଡସ୍ଥଳରୁ ମଦଜଳ ବୋହିଲା ଓ ସେ ନିବିଡ଼ ଅରଣ୍ୟ ମଧ୍ୟକୁ ଅତି ଦ୍ରୁତ ଗତିରେ ପ୍ରଧାବିତ ହେଲା । ତାର ଗତିରୋଧ କରି ରାଜାରାଣୀଙ୍କୁ ଉଦ୍ଧାର କରିବାରେ ସୈନ୍ୟ ସାମନ୍ତ କେହି ସକ୍ଷମ ହେଲେ ନାହିଁ । ରାଜା ମଧ୍ୟ ପ୍ରାଣରକ୍ଷାର ଅନ୍ୟ ଉପାୟ ନ ପାଇ ସମ୍ମୁଖରେ ଥିବା ବଟବୃକ୍ଷର ଶାଖା ଧରି ଓହ୍ଲାଇବା ପାଇଁ ରାଣୀଙ୍କୁ କହିଲେ । ବଟବୃକ୍ଷ ନିକଟବର୍ତ୍ତୀ ହୁଅନ୍ତେ ଡାଳଟିଏ ଧରି ରାଜା ନିଜର ପ୍ରାଣ ରକ୍ଷା କଲେ ସତ୍ୟ, କିନ୍ତୁ ଗର୍ଭବତୀ ରାଣୀ ଭୟରେ ବୃକ୍ଷଶାଖା ଧରି ପାରିଲେ ନାହିଁ ।

ହାତୀ ପଦ୍ମାବତୀଙ୍କୁ ପୃଷ୍ଠରେ ଘେନି ନିବିଡ଼ ଅରଣ୍ୟର ଆଭ୍ୟନ୍ତରୀଣ ପ୍ରଦେଶକୁ ପ୍ରବେଶ କଲା । ତଦ୍‌ବାହନ ଅନାଗତ ଓ ଅନିଶ୍ଚିତ ବିପଦରୁ ରାଣୀଙ୍କୁ ଉଦ୍ଧାର କରିବାର ଅନ୍ୟ ଉପାୟ ନ ପାଇ ଶୋକାକୁଳ ହୃଦୟରେ ସୈନ୍ୟସାମନ୍ତଙ୍କ ସହ ଚମ୍ପା ନଗରକୁ ପ୍ରତ୍ୟାବର୍ତ୍ତନ କଲେ ।

ଏଣେ ରାଣୀଙ୍କୁ ନେଇ ଦଉଡ଼ି ଦଉଡ଼ି କ୍ଳାନ୍ତ ଓ ତୃଷ୍ଣାର୍ତ୍ତ ହେବାରୁ ପୋଖରୀଟିଏ ଦେଖି ଗାଧୋଇବା ଓ ଜଳ ପିଇବା ଆଶାରେ ହାତୀ ଜଳରେ ପ୍ରବେଶ କରନ୍ତେ ରାଣୀ ତା ପୃଷ୍ଠରୁ ଓହ୍ଲାଇପଡ଼ିଲେ ଓ ପୋଖରୀ କୂଳରେ ନିର୍ବିଘ୍ନରେ ପହଞ୍ଚିଲେ । ନିଜ ଚତୁଃପାର୍ଶ୍ୱରେ ନିବିଡ଼ ଅରଣ୍ୟସଙ୍କୁଳ ବୃକ୍ଷବୃନ୍ଦର ପର୍ବତମାଳା ଦେଖି ଭୟବିହ୍ୱଳ ହୋଇ ପଦ୍ମାବତୀ ତାଙ୍କର ଗର୍ଭାବିନାଶ ପାଇଁ ଅନୁତାପ କଲେ । ଅନେକ ସମୟ ପରେ ନିଜକୁ ସାନ୍ତ୍ୱନା ଦେଇ ଭଗବାନ୍‌ଙ୍କୁ ପ୍ରଣିପାତ କରି ଯାଉ ଯାଉ ଜଣେ ତାପସଙ୍କୁ ଭେଟିଲେ । ତାଙ୍କୁ ପ୍ରଣାମ କରନ୍ତେ ରାଣୀଙ୍କୁ ଅଭୟଦାନ କରି ତପସ୍ୱୀ ପଦ୍ମାବତୀଙ୍କର ପରିଚୟ ଜିଜ୍ଞାସା କଲେ । ରାଣୀ ମଧ୍ୟ ତପସ୍ୱୀଙ୍କୁ ନିର୍ବିକାର ବୋଲି ଅନୁମାନ କରି ସମସ୍ତ ବୃତ୍ତାନ୍ତ ଜଣାଇଲେ ଓ ତପସ୍ୱୀ ମଧ୍ୟ ଚେଟକ ରାଜା (ପଦ୍ମାବତୀଙ୍କ ପିତା)ଙ୍କର ମିତ୍ର ବୋଲି ନିଜକୁ ଉଲ୍ଲେଖ କଲେ । ତପସ୍ୱୀ ଉପଦେଶ ଦେଇ କହିଲେ, ବତ୍ସେ ! ସମସ୍ତ ସଂସାର ବିପଦର ସ୍ଥାନ ଏବଂ ଅନିତ୍ୟ । ଏଣୁ ସଂସାରସମ୍ଭୂତ ସବୁ ପଦାର୍ଥର ଅନିତ୍ୟତା ଉପଲବ୍‌ଧି କରି ବିହ୍ୱଳ ହୃଦରେ ଆଶା ବଢ଼ାଇବା ଅନୁଚିତ । ବର୍ତ୍ତମାନ ଆଶ୍ରମକୁ ଯାଇ କ୍ଳାନ୍ତି ଦୂର କରିବା ଆବଶ୍ୟକ । ପଦ୍ମାବତୀ ଆଶ୍ରମରେ ଫଳାହାର କରି ସୁସ୍ଥ ହେବା ପରେ ଆଶ୍ରମ ସୀମାନ୍ତରେ ତପସ୍ୱୀ ତାଙ୍କୁ ବିଦାୟ ଦେଇଥିଲେ । ମୁନିଙ୍କ ନିର୍ଦ୍ଦେଶ-ମତେ ଦନ୍ତପୁର ଅଭିମୁଖରେ ଯାଉଁ ଯାଉଁ ରାଣୀ ଏକ ଜୈନ ସନ୍ନ୍ୟାସିନୀଙ୍କୁ ଭେଟି-ଥିଲେ । ତପସ୍ୱିନୀ ପଦ୍ମାବତୀଙ୍କୁ ଦନ୍ତବକ୍ର ରାଜାଙ୍କ ଅନ୍ତଃପୁରକୁ ନେଇ ତାଙ୍କ ପରିଚୟ ପଚାରନ୍ତେ ରାଣୀ ସମସ୍ତ ଆତ୍ମଚରିତ କହିଥିଲେ ମଧ୍ୟ ଗର୍ଭଧାରଣ ବୃତ୍ତାନ୍ତ ପ୍ରକାଶ କରି ନ ଥିଲେ । ସନ୍ନ୍ୟାସିନୀ ରାଣୀଙ୍କ ଶୋକାକୁଳ ଚିତ୍ତରେ ସାନ୍ତ୍ୱନା ଦେବା ନିମନ୍ତେ କହିଲେ, ସଂସାରଜନିତ ସୁଖ ଯଥାର୍ଥ ସୁଖ ନୁହେଁ, ତାହା ସୁଖାଭାସ ମାତ୍ର । ଏଣୁ ପ୍ରତ୍ୟେକେ ସଂସାର କ୍ଳେଶରୁ ନିସ୍ତାର ପାଇବା ପାଇଁ ତ୍ୟାଗବ୍ରତ ଅବଲମ୍ବନ ପୂର୍ବକ ଆଧ୍ୟାତ୍ମିକତା ଚିନ୍ତା କରିବା ଉଚିତ ।

ସାଧ୍ୱୀଙ୍କର ସଦୁପଦେଶରେ ବୈରାଗ୍ୟ ଭାବାପନ୍ନ ହୋଇ ପଦ୍ମାବତୀ ସେତେବେଳେ ତାଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ବ୍ରତଭଙ୍ଗ ଭୟରେ ସେ କିନ୍ତୁ ନିଜର ଗର୍ଭବିଷୟ ପ୍ରକାଶ କରି ନ ଥିଲେ । ମାସ ପରେ ଗର୍ଭବୃଦ୍ଧି ଲକ୍ଷ କରନ୍ତେ ଜୈନ ସନ୍ନ୍ୟାସିନୀ ତାହା କଅଣ ବୋଲି ପ୍ରଶ୍ନ କଲେ । ପଦ୍ମାବତୀ କହିଲେ ମୋର ଏହି ଗର୍ଭ ପୂର୍ବରୁ ରହିଅଛି । ମୁଁ କିନ୍ତୁ ବ୍ରତଭଙ୍ଗ ଭୟରେ କହି ନ ଥିଲି ।

ତା'ପରେ ଲୋକାପବାଦ ଭୟରେ ସେ ପଦ୍ମାବତୀଙ୍କୁ ଏକାନ୍ତ ସ୍ଥାନରେ ରଖାଇଲେ । ଯଥାସମୟରେ ପୁତ୍ରସନ୍ତାନ ଜନ୍ମ ହେବାରୁ ରାଣୀ ଶିଶୁଟିକୁ

କମ୍ବଳରେ ଆଚ୍ଛାଦନ କରି ପିତାଙ୍କର ନାମ ମୁଦ୍ରାଙ୍କିତ କରି ଶ୍ମଶାନରେ ତ୍ୟାଗ କରିଥିଲେ । ଶ୍ମଶାନର ମାଲିକ ଜନଙ୍ଗମ (ଚଣ୍ଡାଳ) ଶିଶୁଟିକୁ ସେପରି ଅବସ୍ଥାରେ ଦେଖି ତାକୁ ଘେନିଯାଇ ଅପତ୍ୟଶୂନ୍ୟା ନିଜର ପତ୍ନୀକୁ ସମର୍ପଣ କଲା ।

ପ୍ରକୃତ କଥା ଜାଣି ମଧ୍ୟ ପଦ୍ମାବତୀ ଜୈନ ସନ୍ନ୍ୟାସିନୀଙ୍କୁ ମୃତ ପୁତ୍ର ଜାତ ହୋଇଥିବା ସମ୍ବାଦ ପ୍ରଦାନ କରିଥିଲେ ।

ତା'ପରେ ଅଲୌକିକ ତେଜସ୍ୱୀ ଦନ୍ତପକର୍ଣ୍ଣିକ ନାମଧାରୀ ସେହି ବାଳକ ଜନଙ୍ଗମ ଗୃହରେ ବଢ଼ିବାକୁ ଲାଗିଲା । ଜନମାତ୍ରାଣରେ ଆବେଶ ନେଇ ପ୍ରତିଦିନ ପଦ୍ମାବତୀ ଅଳକ୍ଷ୍ୟରେ ଉକ୍ତ ବାଳକର ଗତିବିଧି ଲକ୍ଷ୍ୟ କରନ୍ତି ଓ ସୁନ୍ଦର ଆକାରରେ ଚଣ୍ଡାଳକୁଣ୍ଡୀ ସହିତ ସମସ୍ତ ସମୟରେ ବ୍ୟସ୍ତ ରହନ୍ତି । ଦନ୍ତପକର୍ଣ୍ଣିକ ଦିନୁଦିନ ମହାତେଜରେ ଶୋଭା ପାଇଲା । ପ୍ରତିଦିନ ସେ ପଡ଼ୋଶୀ ବାଳକମାନଙ୍କ ସହିତ ଖେଳେ ।

ଗର୍ଭରେ ଥିବା ଦିନଠାରୁ ବହୁତ ଶାକ ପ୍ରସ୍ତୁତ ଭୋଜନ କରିଥିବା ହେତୁ ସେହି ବାଳକର କଣ୍ଡୁମନତା ଦୋଷ ଥିଲା । ନିଜ ଚେଷ୍ଟା ଓ ସାହାଯ୍ୟକାରୀ ମିତ୍ରସଙ୍ଗୀମାନଙ୍କଦ୍ୱାରା ଶରୀରକଣ୍ଡୁ ଦୂର କରାଏ ବୋଲି ଲୋକେ ତାକୁ 'କରକଣ୍ଡୁ' ବୋଲି ନାମ ଦେଇଥିଲେ । ପୁତ୍ରମୁଖ ଅବଲୋକନ କରିବା ଆଶାରେ ପଦ୍ମାବତୀ ପ୍ରତିଦିନ ଚଣ୍ଡାଳଗୃହକୁ ଯାଆନ୍ତି ଓ ଭିକ୍ଷାଲବ୍ଧ ମିଷ୍ଟାନ୍ନ ଆଦି ପୁତ୍ର ଦନ୍ତପକର୍ଣ୍ଣିକ ବା କରକଣ୍ଡୁକୁ ପ୍ରଦାନ କରନ୍ତି ।

୫ ବର୍ଷ ବୟସରେ ପିତାଙ୍କ ଆଦେଶରେ କରକଣ୍ଡୁ ଶ୍ମଶାନକାର୍ଯ୍ୟରେ ନିଯୁକ୍ତ ହୋଇଥିଲା । ଦିନେ ସେ ଶ୍ମଶାନର ରକ୍ଷାକାର୍ଯ୍ୟରେ ନିଯୁକ୍ତ ଥିବା ସମୟରେ କୌଣସି ଏକ ସାଧୁ ସେହି ଶ୍ମଶାନରେ ଥିବା ଶୁଭ ଲକ୍ଷଣଯୁକ୍ତ ଗୋଟିଏ ବାଉଁଶ ଦେଖାଇ କହିଲେ ମୂଳରୁ, ଚାରି ଅଙ୍ଗୁଳି ପରିମାଣରେ ଏହି ବାଉଁଶକୁ ଆଣି ଯେ ନିକଟରେ ଥୋଇବ, ସେ ନିଶ୍ଚୟ ରାଜ୍ୟ ଲାଭ କରିବ । ସାଧୁଙ୍କର ଏହି କଥା କରକଣ୍ଡୁ ଓ ଜଣେ ବ୍ରାହ୍ମଣ କେବଳ ଶୁଣିଥିବାରୁ ଦୁହେଁ ଉକ୍ତ ବାଉଁଶ ନେବା ପାଇଁ କଳହ ଆରମ୍ଭ କଲେ । କଳହର ନିଷ୍ପତ୍ତି ପାଇଁ କରକଣ୍ଡୁ ଓ ବ୍ରାହ୍ମଣ ନଗର ଅଧ୍ୟକ୍ଷଙ୍କ ନିକଟକୁ ଗଲେ । ନଗରାଧ୍ୟକ୍ଷ କହିଲେ, ହେ ବାଳକ କରକଣ୍ଡୁ, ଏ ବାଉଁଶ ତୁମ୍ଭେ କଅଣ କରିବ ? ବାଉଁଶର ମହିମା ଶୁଣି ନଗରାଧ୍ୟକ୍ଷ ହସି ହସି କହିଲେ, ଯେତେବେଳେ ତୁମ୍ଭେ ରାଜା ହେବ ସେତେବେଳେ ଏହି ବ୍ରାହ୍ମଣଙ୍କୁ ଖଣ୍ଡିଏ ଗ୍ରାମ ଦେବ । ଅନାଗତ ଭବିଷ୍ୟତକୁ ଅପେକ୍ଷା ନ କରି ଶିଶୁ କରକଣ୍ଡୁ ଶ୍ମଶାନକୁ ଫେରିବା ପରେ କ୍ରୋଧୀ ବ୍ରାହ୍ମଣ ତାଙ୍କୁ ହତ୍ୟା କରିବାର ଉଦ୍ୟମ କରି ବିଫଳ ହୋଇଥିଲେ । ଏହି ବୃତ୍ତାନ୍ତ ବିଷୟ ଜାଣିପାରି ଜନଙ୍ଗମ ନିଜ ସ୍ତ୍ରୀ ଓ କରକଣ୍ଡୁକୁ ସଙ୍ଗରେ ନେଇ ଅନ୍ୟତ୍ର ଯିବାକୁ ଇଚ୍ଛା କଲେ । ସେମାନେ ଏକତ୍ର ହୋଇ କାଞ୍ଚନପୁରରେ ପହଞ୍ଚିଲେ ।

କାଞ୍ଚନପୁରରେ ପୁତ୍ରହୀନ ରାଜାଙ୍କ ମୃତ୍ୟୁ ପରେ ମନ୍ତ୍ରୀମାନଙ୍କ ଦ୍ୱାରା ଶୁଭ-କର୍ମରେ ନିଯୁକ୍ତ ଥିବା ଅଶ୍ୱଟି କରକଣ୍ଡୁକୁ ଅବଲୋକନ କରି ହ୍ରେଷାରବ କଲା । ସେହି ଶୁଭଲକ୍ଷଣସମ୍ପନ୍ନ କରକଣ୍ଡୁକୁ

ଦେଖି ନାଗରିକମାନେ ଜୟ ଜୟ ଧ୍ୱନି କରିଥିଲେ । ବାଜି ନ ଥିବା ବାଦ୍ୟଗୁଡ଼ିକ ଆପେ ଆପେ ବାଜାଇତ ହେଲେ । ସୂର୍ଯ୍ୟ-ଛତ୍ର ଆପେ ଆପେ ମସ୍ତକ ଉପରେ ଧରା ହେଲା । ତତ୍ପରେ ମନ୍ତ୍ରୀମାନେ ତାଙ୍କୁ ରାଜ-ପରିଚ୍ଛଦ ପିନ୍ଧାଇ ସମ୍ମାନ ପ୍ରଦର୍ଶନ କରନ୍ତେ ବ୍ରାହ୍ମଣମାନେ କରକଣ୍ଡୁକୁ ଚଣ୍ଡାଳ ଓ ମ୍ଳେଚ୍ଛ ବୋଲି କହି ଧିକ୍‌ଧିକ୍ କରୁଥିଲେ । ଏହା ଦେଖି ବାଳକ କରକଣ୍ଡୁ ତହୁଁ ତୁଳି ଉକ୍ତ ବଂଶଦଣ୍ଡକୁ ହସ୍ତରେ ଧାରଣ କରିଥିଲେ । ସେତେବେଳେ ସେହି ସ୍ଥାନରେ ଦେବତାମାନେ ମଧ୍ୟ କରକଣ୍ଡୁଙ୍କୁ ରାଜା ବୋଲି ଘୋଷଣା କରନ୍ତେ ତାଙ୍କ ମସ୍ତକରେ ପୁଷ୍ପ ବୃଷ୍ଟି ହେଲା ଏବଂ ବ୍ରାହ୍ମଣମାନେ ତାଙ୍କୁ ଆଶୀର୍ବାଦ କଲେ । କରକଣ୍ଡୁ ମଧ୍ୟ କହିଲେ, ହେ ବ୍ରାହ୍ମଣମାନେ ! ଚଣ୍ଡାଳମାନେ ଆପଣଙ୍କ ଦ୍ୱାରା ସର୍ବଦା ନିନ୍ଦିତ । ଏଣୁ ବାଟଧାନ ଗ୍ରାମରେ ବାସ କରୁଥିବା ଏହି ଚଣ୍ଡାଳମାନଙ୍କୁ ସଦାଚାର କାର୍ଯ୍ୟଦ୍ୱାରା ବ୍ରାହ୍ମଣ କରିବା ଉଚିତ । ସଦାଚାରଦ୍ୱାରା ବ୍ରାହ୍ମଣ ବ୍ରାହ୍ମଣତ୍ୱ ଲାଭ କରେ, ଜାତିଦ୍ୱାରା ନୁହେଁ । ଏହାପରେ ସେହି ବ୍ରାହ୍ମଣମାନେ ଅତ୍ୟନ୍ତ ଖୁସି ହୋଇ ବାଟଧାନ ଗ୍ରାମରେ ଚଣ୍ଡାଳମାନଙ୍କୁ ବ୍ରାହ୍ମଣ କରିଥିଲେ । ଏହି ଭଳିଭାବରେ କାଞ୍ଚନପୁରରେ ପ୍ରବେଶ କରିଥିବା କରକଣ୍ଡୁଙ୍କୁ ମନ୍ତ୍ରୀମାନେ ରାଜପଦରେ ଦୃଢ଼ ଅଭିଷିକ୍ତ କଲେ ଏବଂ ସେ କ୍ରମେ ମହାପ୍ରତାପୀ ହୋଇଥିଲେ ।

ଏହାପରେ ଅନ୍ୟ ଏକଦିନ ପୂର୍ବୋକ୍ତ ବଂଶଦଣ୍ଡ ପ୍ରତିବାଦୀ ବ୍ରାହ୍ମଣ କରକଣ୍ଡୁଙ୍କୁ ରାଜା ହୋଇଥିବାର ଶୁଣି ଗ୍ରାମଟିଏ ଆଶାରେ କାଞ୍ଚନପୁରରେ ପହଞ୍ଚିଲା । କରକଣ୍ଡୁ ସେହି ବିପ୍ରଙ୍କୁ ତାର ଅଭିଳାଷ ଜଣାଇବାକୁ କହନ୍ତେ ବ୍ରାହ୍ମଣ କହିଲା, ମୋର ଘର ଚମ୍ପାନଗରୀରେ । ତେଣୁ ମୁଁ ସେଠାରେ ଏକ ଗ୍ରାମ ପାଇବାକୁ ଇଚ୍ଛା କରେ ।

ଏହା ଶୁଣି କରକଣ୍ଡୁ ଚମ୍ପାପୁରର ରାଜା ଦଧିବାହନଙ୍କ ନିକଟକୁ ଏକ ଗ୍ରାମଦାନ କରିବା ପାଇଁ ଉପରଦସ୍ତରେ ପତ୍ର ପ୍ରେରଣ କରିଥିଲେ । ଉକ୍ତ ଦୂତକୁ ଦେଖି ଏବଂ ପତ୍ର ପାଠ କରି ଦଧିବାହନ କ୍ରୋଧରେ କରକଣ୍ଡୁଙ୍କୁ ତିରସ୍କାର କଲେ—"ଆରେ ମୃଗ ତୁଲ୍ୟ ସେହି ମ୍ଳେଚ୍ଛ କରକଣ୍ଡୁ ସିଂହ ତୁଲ୍ୟ ଦଧିବାହନର ଅନୁଷ୍ଠାଚରଣ କରୁଛି । ମୋର ଖଡ୍ଗ ରୂପକ ତୀର୍ଥସ୍ଥାନ ତୁମ୍ଭ ରାଜାଙ୍କର ଅନ୍ତୁଷ୍ଟତା ସମ୍ପାଦନ କରିବ ।"

ଦଧିବାହନ କର୍ତ୍ତୃକ ତିରସ୍କୃତ ହୋଇ ସେହି ଦୂତ କରକଣ୍ଡୁଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇବାରୁ କରକଣ୍ଡୁ ସୈନ୍ୟ ସାମନ୍ତ ସହ ଚମ୍ପାପୁରକୁ ଆସିଲେ । ଦଧିବାହନ ମଧ୍ୟ ସଂଗ୍ରାମ ପାଇଁ ପ୍ରସ୍ତୁତ ହେଲେ । ଦୁଇ ପକ୍ଷରେ ସୈନ୍ୟମାନେ ସଜ୍ଜିତ ହୋଇ ଯେତେବେଳେ ଯୁଦ୍ଧ କରିବାକୁ ଲାଗିଲେ, ସେତେବେଳେ ସାଧ୍ୱୀ ପଦ୍ମାବତୀ କରକଣ୍ଡୁଙ୍କ ନିକଟକୁ ଆସି କହିଲେ, ବତ୍ସ ! ତୁମେ ତୁମର ପିତାଙ୍କ ସହିତ ଯୁଦ୍ଧ କରିବା ଅନୁଚିତ । ଦଧିବାହନ କପଛ ତାଙ୍କର ପିତା ହେଲେ ବୋଲି କରକଣ୍ଡୁ ପ୍ରଶ୍ନ କରନ୍ତେ, ପଦ୍ମାବତୀ ତାଙ୍କର ଜନ୍ମବୃତ୍ତାନ୍ତ ପ୍ରକାଶ କଲେ । ସେହି ସାଧ୍ୱୀଙ୍କୁ ନିଜ ମାତା ଓ ରାଜା ଦଧିବାହନଙ୍କୁ ପିତା ବୋଲି ଜାଣିପାରି କରକଣ୍ଡୁ ଅତ୍ୟନ୍ତ ଆନନ୍ଦିତ ହୋଇ-

ଥିଲେ, କିନ୍ତୁ ଅଭିମାନବଶତଃ ସେ ପିତା ଦଧିବାହନଙ୍କୁ ନମସ୍କାର କରିବାରେ କୁଣ୍ଠା ପ୍ରକାଶ କରୁଥିଲେ ।

ତତ୍ପରେ ପଦ୍ମାବତୀ ଦଧିବାହନଙ୍କ ସନ୍ନିକଟକୁ ଯାଇ ଗର୍ଭାବସ୍ଥାର ଅବଶିଷ୍ଟ ଇତିହାସ ପ୍ରକାଶ କରିଥିଲେ ଏବଂ କରକଣ୍ଡୁ ନିଜର ପୁତ୍ର ବୋଲି ଶୁଣି ରାଜା ସ୍ଥିର ହୋଇ ବସି ନ ପାରି କରକଣ୍ଡୁଙ୍କ ନିକଟକୁ ଯାଇ ତାଙ୍କୁ ଆଲିଙ୍ଗନ କଲେ ଓ ତାଙ୍କର ମସ୍ତକ ଆଘ୍ରାଣ କରିଥିଲେ ।

ଦଧିବାହନ ନିଜର ଆନନ୍ଦାଶ୍ରୁଜଳ ସମ୍ବଳିତ ତୀର୍ଥଜଳ ଦ୍ୱାରା ସେହି ପୁତ୍ରକୁ ଅଭୟ ରାଜ୍ୟରେ ଅଭିଷିକ୍ତ କଲେ । ତତ୍ପରେ ସେ ବୃଦ୍ଧ ହେତୁ କର୍ମଫଳ ବିନାଶ ନିମନ୍ତେ ସ୍ୱୟଂ ଦୀକ୍ଷା ଗ୍ରହଣ କଲେ । କରକଣ୍ଡୁ ରାଜା ରାଜ୍ୟଦ୍ୱୟ ପାଳନ କଲେ ଓ ଚମ୍ପାନଗରୀରେ ନିଜର ବସତି ସ୍ଥାପନ କଲେ ।

ଗୋକୁଳ ( ଗୋରୁପଲ ) ତାଙ୍କର ଇଷ୍ଟ ଥିଲେ । ସୁନ୍ଦର ଆକୃତିବିଶିଷ୍ଟ ନାନା ବର୍ଣ୍ଣର ବହୁ ସଂଖ୍ୟକ ମିଳିତ ଗୋକୁଳକୁ ନିରନ୍ତର ସନ୍ଦର୍ଶନ କରି ସେ ଅତ୍ୟନ୍ତ ଆନନ୍ଦଲାଭ କରୁଥିଲେ । ଦିନେ ସେ ସ୍ଫଟିକ ତୁଲ୍ୟ ଗୋଟିଏ ବାଛୁରି ଧେନୁଦଳ ମଧ୍ୟରେ ଦେଖିଥିଲେ । ସେହି ବାଛୁରିକୁ ଆକଣ୍ଠ ଦୁଗ୍ଧ ପାନ କରାଇ ପାଳନ କରିବାକୁ ଗୋପାଳମାନଙ୍କୁ ଆଦେଶ ପ୍ରଦାନ କରିଥିଲେ ।

ଏହା ପରେ ଦିନେ ଚନ୍ଦ୍ରସ୍ପୃଷ୍ଟ, ବଳଶାଳୀ ସେହି ବୃଷଭ ମେଘଗର୍ଜନ ଶବ୍ଦରେ ଅନ୍ୟ ବୃଷଭମାନଙ୍କୁ ଭୟଭୀତ କରାଉଥିବାର ସେହି ରାଜା ଦେଖିଲେ । ତଥାପି ତାଙ୍କର ଶ୍ରଦ୍ଧା ସେହି ବୃଷଭ ପ୍ରତି ପୂର୍ବପରି ଅକ୍ଷୁଣ୍ଣ ରହିଥିଲା । ରାଜକାର୍ଯ୍ୟରେ ବ୍ୟସ୍ତ ଥିବା ହେତୁ ରାଜା କରକଣ୍ଡୁ କେତେକ ବର୍ଷ ପର୍ଯ୍ୟନ୍ତ ସେହି ଗୋରୁପଲ ଦେଖିବାକୁ ଆସି ନ ଥିଲେ । ଏହାପରେ କିଛିଦିନ ଅନ୍ତେ ସେ ଗୋକୁଳ ଦର୍ଶନାଭିଳାଷୀ ହୋଇ ସେଠାକୁ ଆସିଲେ ଏବଂ ତାଙ୍କର ପ୍ରିୟ ବୃଷଭଟି କାହିଁ ବୋଲି ଗୋପାଳମାନଙ୍କୁ ପଚାରିଲେ । ଗୋପାଳମାନେ ଜରାଜୀର୍ଣ୍ଣ ଶରୀର, ଦନ୍ତଶୂନ୍ୟ, ହୀନବଳ, ଶୋଚନୀୟ, ଲୋଳଚର୍ମ, କୃଶାଙ୍ଗ ପୂର୍ବୋକ୍ତ ବୃଷଭଟିକୁ ଦେଖାଇଥିଲେ ।

ତାକୁ ଦେଖି କରକଣ୍ଡୁ ଆଶ୍ଚର୍ଯ୍ୟ ହେଲେ । ସଂସାରଦଶା ( ଭବଦଶା ) ବଡ଼ ବିଷମ, ଏହା ସେ ଉପଲବ୍ଧି କରି ପାରିଲେ, ମନେ ମନେ ଚିନ୍ତା କଲେ “ଏହି ବୃଷଭ ପୂର୍ବର ମନୋହର ଓ ବଳିଷ୍ଠ ଅବସ୍ଥାକୁ ପରିତ୍ୟାଗ କରି ଏପରି ବୃଦ୍ଧାବସ୍ଥା ଲାଭ କଲାଣି । ସେହିପରି ସମସ୍ତ ମାନବ ସଂସାରରେ ନବ ନବ ଅବସ୍ଥା ଲାଭ କରୁଅଛନ୍ତି । ସଂସାର ନିତ୍ୟ ପରିବର୍ତ୍ତନଶୀଳ । ଏହି ପରିବର୍ତ୍ତନଶୀଳ ଜଗତରୁ ମୋକ୍ଷଲାଭ କରିବାହିଁ ସମସ୍ତଙ୍କର ମୁଖ୍ୟ ଉଦ୍ଦେଶ୍ୟ ହେବା ବିଧେୟ । ପରନ୍ତୁ ମୋକ୍ଷ ଜୈନଧର୍ମରୁ ହିଁ ଲାଭ କରଯାଏ । ଏଣୁ ମୁଁ ସମ୍ୟକ୍ ଭାବରେ ଜୈନଧର୍ମ ଅବଲମ୍ବନ କରିବି ।

ତତ୍ପରେ ରାଜା କରକଣ୍ଡୁ ଜୈନଧର୍ମ ଗ୍ରହଣ କରିଥିଲେ । ପୂର୍ବଜନ୍ମ ସଂସ୍କାରୋଦୟ ହେତୁ ଜ୍ଞାନଲାଭ କରି ଶାସନଦେବତାଙ୍କ ଠାରେ ଆତ୍ମସମର୍ପଣ ପୂର୍ବକ ସେ ରାଜ୍ୟ ପରିତ୍ୟାଗ କରି ସନ୍ନ୍ୟାସବ୍ରତ ଅବଲମ୍ବନ କଲେ । କଥିତ ଅଛି—

ଶ୍ରେଣ୍ୟଃ ପ୍ରଜାନାଂ ପୁରବଲ୍ଗୁଶୃଙ୍ଗଂ
ଗୋପ୍ତୁଂ ଜନେ ସାକ୍ଷ୍ୟ ବୃତଂ ଜଗତ୍ୟାଂ ।
ବୃଦ୍ଧିଂ ଚ ବୃଦ୍ଧିଂ ଚ ସମୀକ୍ଷ୍ୟ ବୋଧାନ୍
କଳିଙ୍ଗ ରାଜର୍ଷିରବାପ ଧର୍ମମ୍ ।।
—ଇତି କରକଣ୍ଡୁଚରିତମ୍

## ଖାରବେଳଙ୍କ କାଳନିର୍ଣ୍ଣୟ

ଖାରବେଳ କଳିଙ୍ଗ ଇତିହାସ ତଥା ଭାରତ ଇତିହାସର ଏକ ଅବିସ୍ମରଣୀୟ ବ୍ୟକ୍ତି । ତାହାଙ୍କ ଜୀବନର ମୁଖ୍ୟ ଘଟଣାମାନ ହାତୀଗୁମ୍ଫା ଶିଳାଲିପିରେ ପ୍ରଶସ୍ତି ରୂପେ ଲିପିବଦ୍ଧ ହୋଇ ରହିଛି, କିନ୍ତୁ ଖାରବେଳଙ୍କ ସମୟ ନିର୍ଦ୍ଧାରଣ ବର୍ତ୍ତମାନ ଭାରତ ଇତିହାସର ଏକ ଅସମାହିତ ସମସ୍ୟା ରୂପେ ଐତିହାସିକମାନଙ୍କର ପ୍ରଧାନ ଚିନ୍ତା ଓ ଆଲୋଚନାର ବିଷୟବସ୍ତୁ ହୋଇଛି । ଭାରତ ଇତିହାସରେ ଏହି ସମୟ ନିର୍ଦ୍ଧାରଣ ଅନେକ ସମୟରେ ନାନା ପ୍ରକାର ବିଭ୍ରାଟ ସୃଷ୍ଟି କରିଥାଏ । ଏଥିପାଇଁ ସାହିତ୍ୟ ତଥା କିମ୍ବଦନ୍ତୀମାନଙ୍କରୁ ସମସ୍ୟା ସମାଧାନ ନିମନ୍ତେ ଉପାଦେୟ ତଥ୍ୟ ସଂଗ୍ରହ କରିବା ଧୃଷ୍ଟତା ମାତ୍ର; କାରଣ ତାହା ଆମକୁ ଅଧିକ ଜଟିଳତାର ସମ୍ମୁଖୀନ କରିବ । ତଥାପି ସାବଧାନତା ସହକାରେ ସାହିତ୍ୟ ଓ କିମ୍ବଦନ୍ତୀ ଇତ୍ୟାଦିରୁ ଆବଶ୍ୟକୀୟ ପଦାର୍ଥ ଆହରଣ କରିଯାଇପାରେ ।

ଖାରବେଳଙ୍କ ପ୍ରକୃତ ସମୟ ନିର୍ଦ୍ଧାରଣ ସକାଶେ ଅନେକ ବର୍ଷ ପୂର୍ବରୁ ଐତିହାସିକମାନଙ୍କ ମଧ୍ୟରେ ଚେଷ୍ଟା ସୃଷ୍ଟି ହୋଇଅଛି । ଉଦୟଗିରି ପୂର୍ବ କଥିତ କୁମାରୀଗିରିର ହାତୀଗୁମ୍ଫା ଶିଳାଲିପିରୁ କେବଳ ଆମେ ସମ୍ରାଟ୍ ଖାରବେଳଙ୍କ ପରିଚୟ ପାଉଁ । ସେହି ଶିଳାଲିପିରେ କ୍ରମାନୁଯାୟୀ ଭାବରେ ତାଙ୍କର ତେର ବର୍ଷ ଶାସନ କାଳର ଇତିହାସ ବର୍ଣ୍ଣିତ ହୋଇଅଛି । ସେଥିରେ ତାଙ୍କୁ 'ଅଧିପତି' ଏବଂ ତାଙ୍କର ପ୍ରଧାନ ରାଣୀଙ୍କୁ 'ଅଗ୍ରମହିଷୀ' ରୂପେ ଅଭିହିତ କରାଯାଇଛି । ଏହି ଅଗ୍ରମହିଷୀଙ୍କ ଦ୍ୱାରା ନିର୍ମିତ 'ସ୍ୱର୍ଗପୁର' ନାମକ ଗୁମ୍ଫାରେ ଖାରବେଳଙ୍କୁ 'ଚକ୍ରବର୍ତ୍ତୀ' ବୋଲି ସମ୍ବୋଧନ କରାଯାଇଛି କିନ୍ତୁ ଖାରବେଳଙ୍କ ପୂର୍ବପୁରୁଷଙ୍କ ଇତିହାସ ସମ୍ପର୍କରେ ଆମେ କୌଣସି ପ୍ରକାର ସୂଚନା କେଉଁଠାରୁ ହେଲେ ପ୍ରାପ୍ତ ହୋଇନାହୁଁ । ତାଙ୍କ ବଂଶ ପରିଚୟ, ତାଙ୍କ ପିତାମାତାଙ୍କର ନାମୋଲ୍ଲେଖ କେଉଁଠାରେ ହେଲେ ନାହିଁ । ଫଳତଃ ଏହା ତାଙ୍କର ସମୟ ନିରୂପଣରେ ଏକ ପ୍ରଧାନ ଅନ୍ତରାୟ ସୃଷ୍ଟି କରିଛି । ଶିଳାଲିପିମାନଙ୍କରେ ଏପରି କୌଣସି ସମ୍ବତ୍ସରର ଉଲ୍ଲେଖ ନାହିଁ ଯାହା କି ଆମକୁ ସାହାଯ୍ୟ କରି ପାରନ୍ତା, ତେଣୁ ଖାରବେଳଙ୍କ ସମୟ ସ୍ଥିର କରିବା ସକାଶେ ଆମକୁ ହାତୀଗୁମ୍ଫା ଶିଳାଲିପିରେ ବର୍ଣ୍ଣିତ ଉପାଖ୍ୟାନର ପର୍ଯ୍ୟାଲୋଚନା କରିବାକୁ ପଡ଼ିବ ।

ପୂର୍ବତନ ଐତିହାସିକମାନଙ୍କ ମଧ୍ୟରେ ପଣ୍ଡିତ ଭଗବାନଲାଲ ଇନ୍ଦ୍ରଜୀ ପ୍ରଥମେ ସ୍ଥିର କରିଥିଲେ ଯେ ହାତୀଗୁମ୍ଫାର ଶିଳାଲେଖ ଖାରବେଳଙ୍କ ଶାସନର ତ୍ରୟୋଦଶ ବର୍ଷରେ ଲିଖିତ ହୋଇଥିଲା । ହାତୀଗୁମ୍ଫା ଶିଳାଲେଖରେ ଏକ 'ମୌର୍ଯ୍ୟ-କାଳ'ର ଉଲ୍ଲେଖ ଅଛି ବୋଲି ସ୍ଥିର କରି ସେ ଖାରବେଳଙ୍କ ଶାସନକାଳର ଏହି

ତ୍ରୟୋଦଶ ବର୍ଷକୁ ମୌର୍ଯ୍ୟକାଳର ୧୬୫ ବର୍ଷ ବୋଲି ମତପୋଷଣ କରିଛନ୍ତି । (୧) ତାହା ଯଦି ସତ୍ୟ ହୁଏ ତେବେ ମୌର୍ଯ୍ୟକାଳର ଏହି ୧୬୫ ବର୍ଷ ଖ୍ରୀ. ପୂ. ୯୦ ସହିତ ସମାନ ହେବ । କାରଣ ପୂର୍ବୋକ୍ତ ଇନ୍ଦ୍ରଜୀ ଖ୍ରୀ. ପୂ. ୨୬୫କୁ ଅଶୋକଙ୍କର କଳିଙ୍ଗ ବିଜୟର ସମୟ ବୋଲି ଧରି ତାକୁ ମୌର୍ଯ୍ୟକାଳର ପ୍ରଥମ ବର୍ଷରୂପେ ଗ୍ରହଣ କରିଛନ୍ତି । ତା'ଫଳରେ ଖାରବେଳଙ୍କ ସିଂହାସନ ଆରୋହଣ ଖ୍ରୀ. ପୂ. ୧୦୩ ରେ (ଖ୍ରୀ. ପୂ. ୨୬୫—୧୬୫+୧୩ = ଖ୍ରୀ. ପୂ. ୧୦୩)ହୋଇଥିବ ବୋଲି ସେ ବିଶ୍ୱାସ କରନ୍ତି । (୨)

କିନ୍ତୁ ଡ. ଫିଲ୍‌ଟ (୩) ପ୍ରଫେସର ଲୁଡାରସ୍ (୪) ଙ୍କର ମତର ଅନୁଧ୍ୟାନ କଲେ ମୌର୍ଯ୍ୟକାଳର ଅବସ୍ଥିତି ସମ୍ପର୍କରେ ବିରୁଦ୍ଧ ମତ ପ୍ରକାଶ କରିଛନ୍ତି । ସେ କହନ୍ତି ଯେ ହାତୀଗୁମ୍ଫା ଶିଳାଲେଖରେ ବା ଭାରତ ଇତିହାସରେ ମୌର୍ଯ୍ୟକାଳର ପ୍ରଚଳନ ସମ୍ବନ୍ଧରେ କୌଣସି ସତ୍ୟତା ନାହିଁ । କିନ୍ତୁ ଶିଳାଲେଖର ୧୬ଶ ଧାଡ଼ିରେ ଥିବା 'ତନସ-ସତ'କୁ ସେ ୧୦୩ ବର୍ଷ ବୋଲି ଧରି ଏବଂ ଶେଷ ନନ୍ଦରାଜାଙ୍କର ଶେଷ ରାଜତ୍ୱକାଳ ଖ୍ରୀ. ପୂ. ୩୨୨ ବୋଲି ମାନି ସେ ଖାରବେଳଙ୍କୁ ଖ୍ରୀ. ପୂ. ୨୨୪ରେ (ଖ୍ରୀ. ପୂ. ୩୨୨—୧୦୩+୫ = ଖ୍ରୀ. ପୂ. ୨୨୪) କଳିଙ୍ଗ ସିଂହାସନରେ ଅଧିଷ୍ଠିତ କରାଅନ୍ତି ।

ପୂର୍ବୋକ୍ତ ଇନ୍ଦ୍ରଜୀଙ୍କର 'ମୌର୍ଯ୍ୟକାଳ' ପଦ୍ଧତିକୁ ଡ. ଷ୍ଟେନ୍‌କୋନୋ, (୫) ଡ. ଜୟସ୍ୱାଲ୍ ଓ ପ୍ରଫେସର ରାଖାଲଦାସ ବାନାର୍ଜି (୬) ପ୍ରଥମେ ସ୍ୱୀକାର କରିଥିଲେ । ପରେ କିନ୍ତୁ ଶିଳାଲେଖର ବସ୍ତୁତ ଏବଂ ଆମୂଳଚୂଳ ଅନୁଧ୍ୟାନର ଅଧ୍ୟୟନ ଫଳରେ ସେମାନେ ମତ ପରିବର୍ତ୍ତନ କରି 'ମୌର୍ଯ୍ୟକାଳ'ର ଉଲ୍ଲେଖକୁ ଅସ୍ୱୀକାର କଲେ ।

ପ୍ରଫେସର ବାନାର୍ଜି (୭) ଖାରବେଳଙ୍କ ଜୀବନର କେତେକ ଘଟଣା ଉପରେ ଆଶ୍ରୟ କରି ତାଙ୍କୁ ଖ୍ରୀ. ପୂ. ଦ୍ୱିତୀୟ ଶତକର ପ୍ରଥମାର୍ଦ୍ଧର ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିଥିଲେ । ଏ ସମ୍ପର୍କରେ ଡ. ଜୟସ୍ୱାଲ୍ ଖାରବେଳ ଓ ଗ୍ରୀକ୍ ରାଜା ଡେମେଟ୍ରିୟସଙ୍କୁ ପରସ୍ପରର ସମସାମୟିକ ବୋଲି ପ୍ରମାଣିତ କରିବାର ଯେଉଁ ପ୍ରୟାସ କରିଥିଲେ, ତାହା ମନେ ରଖିବା ଉଚିତ । (୮) ତାଙ୍କ ମତରେ ଶୁଙ୍ଗ-ବଂଶର ପ୍ରଥମ ରାଜା (ପୁଷ୍ୟମିତ୍ର) (ବୃହସ୍ପତି ମିତ୍ର) ମଧ୍ୟ ଖାରବେଳ ଓ ଡେମେଟ୍ରିୟସଙ୍କର ସମସାମୟିକ । ପୂର୍ବୋକ୍ତ

---

(୧) Proceedings of the International Congress of Orientalists—Leyde, 1884

(୨) Ibid.

(୩) J. R. A.S. 1910, 242 ff, 824 ff.

(୪) Ep. Indica, Vol. X, App. pp. 160-1, No. 1345.

(୫) Ibid.

(୬) Acta Orientalia No. 1., 1923, page 12 ff.

(୭) Ep. Indica, Vol. XX, page 83 ff.

(୮) J. B. O. R. S. XIV, 1928

ବାନାର୍ଜି ଡ. ଜୟସ୍ୱାଲଙ୍କୁ ଏଥିରେ ପୂର୍ଣ୍ଣ ଭାବରେ ସମର୍ଥନ କରିଛନ୍ତି ମାତ୍ର ।

ଏହିପରି ଭାବରେ ଆମେ ଦେଖୁଛୁ ଯେ ଐତିହାସିକମାନେ ଖାରବେଳଙ୍କ ସମୟ ନିରୂପଣରେ ଦୁଇ ପ୍ରକାର ମତ ପୋଷଣ କରୁଛନ୍ତି । 'ମୌର୍ଯ୍ୟକାଳ' ଉପରେ ଭିତ୍ତି ସ୍ଥାପନ କରି ଇନ୍ଦ୍ରଜୀ ଏବଂ 'ମୌର୍ଯ୍ୟକାଳ'କୁ ଅସ୍ୱୀକାର କରି ଡ. ଜୟସ୍ୱାଲ୍ ଓ ପ୍ରଫେସର ବାନାର୍ଜି ଆଦି ସେମାନଙ୍କର ମତ ପ୍ରତିଷ୍ଠାପନ କରୁଛନ୍ତି ।

ଏବେ ଉକ୍ତ ଶିଳାଲେଖର ବସ୍ତୁତ ଅନୁଧ୍ୟାନ ଫଳରେ 'ମୌର୍ଯ୍ୟକାଳ'ର ଅବସ୍ଥିତି ସମ୍ପର୍କରେ ସମସ୍ତେ ନିଃସନ୍ଦେହ । ଶିଳାଲେଖର ସେହି ଅଂଶକୁ 'ମୁଖ୍ୟକଳା' ବୋଲି ପାଠ କରିବା ଅଧିକ ଯୁକ୍ତିଯୁକ୍ତ । 'ମୁଖ୍ୟକଳା'ର ଅର୍ଥ ଉଲ୍ଲେଖ କରିବାକୁ ଯାଇଁ ଡ. ଦୀନେଶଚନ୍ଦ୍ର ସରକାର 'ପ୍ରଧାନ କଳା' ବୋଲି ପ୍ରକାଶ କରିଛନ୍ତି । (୯)

କିନ୍ତୁ ପ୍ରକୃତରେ ବିଚାର କଲେ ଆମେ ଖାରବେଳଙ୍କୁ ଖ୍ରୀ. ପୂ. ଦ୍ୱିତୀୟ ଶତକର ପ୍ରଥମାର୍ଦ୍ଧରେ କଳିଙ୍ଗର ସମ୍ରାଟ୍ ଥିଲେ ବୋଲି ଗ୍ରହଣ କରିବା ଅପ୍ରାସଙ୍ଗିକ ବୋଧ ହେବ । ସେହି ଦୃଷ୍ଟିରୁ ଡ. ହେମଚନ୍ଦ୍ର ରାୟଚୌଧୁରୀ (୧୦), ଡ. ଦୀନେଶ ଚନ୍ଦ୍ର ସରକାର (୧୧), ଡଃ ବରୁଆ (୧୨), ପ୍ରଫେସର ନରେନ୍ଦ୍ର ନାଥ ଘୋଷ (୧୩) ଇତ୍ୟାଦି ଖ୍ରୀ. ପୂ. ପ୍ରଥମ ଶତାବ୍ଦୀର ଶେଷାର୍ଦ୍ଧ ହିଁ ଖାରବେଳଙ୍କର ପ୍ରକୃତ ସମୟ ବୋଲି ସ୍ଥିର କରିଅଛନ୍ତି ।

ହାତୀଗୁମ୍ଫା ଶିଳାଲିପିରେ ଆମେ କେତେକ ଶାସକମାନଙ୍କର ନାମୋଲ୍ଲେଖ ଥିବାର ଦେଖୁଁ । ସେମାନଙ୍କର ସମୟ ନିରୂପଣ କରିପାରିଲେ ଆମର ସମସ୍ୟା ଅନେକାଂଶରେ ସହଜ ହୋଇ ପାରନ୍ତା । ତେଣୁ ପ୍ରଥମେ ଆମେ ଏଠାରେ ଖାରବେଳଙ୍କ କେତେକ ସମସାମୟିକ ରାଜାମାନଙ୍କର ସମୟ ନିରୂପଣ କରୁଛୁ ।

ରାଜତ୍ୱକାଳର ଦ୍ୱିତୀୟ ବର୍ଷରେ ଖାରବେଳ ରାଜା ସାତକର୍ଣ୍ଣୀଙ୍କ ପ୍ରତି ଭ୍ରୂକ୍ଷେପ ନ କରି ପଶ୍ଚିମ ଦିଗକୁ ସୈନ୍ୟ ପ୍ରେରଣ କରିଥିଲେ । ଏହି ସାତକର୍ଣ୍ଣୀ ନିଶ୍ଚୟ ଅନ୍ଧ୍ର ସାତବାହନ ବଂଶର ରାଜା । ନାନାଘାଟ ଶିଳାଲେଖରୁ ଆମେ ଦେଖୁଁ ସାତକର୍ଣ୍ଣୀଙ୍କର ସନ୍ଧାନ ପାଉଁ, ସେ ରାଣୀ ନାୟନିକାଙ୍କର ସ୍ୱାମୀ ଥିଲେ ।

ପୌରାଣିକ ବର୍ଣ୍ଣନା ଓ ଡ. ରାୟ-ଚୌଧୁରୀ (୧୪) ଙ୍କ ମତାନୁସାରେ ଶୁଙ୍ଗ-ରାଜାମାନେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କର ସିଂହାସନାରୋହଣର ୧୩୭ ବର୍ଷ ପରେ ୧୧୨ ବର୍ଷ ରାଜତ୍ୱ କରିଥିଲେ । ଶୁଙ୍ଗ-ବଂଶର ଶେଷ ରାଜା ଦେବଭୂତିଙ୍କୁ ତାଙ୍କର ଅମାତ୍ୟ ବାସୁଦେବ ହତ୍ୟା କରି କାଣ୍ୱାୟନ

(୯) Selicko Inscriptions I. D. D. C. Sircar.

(୧୦) P. H. A. I. 1950 Edition, page 874 ff

(୧୧) Age of Imperial Unity, 215 ff

(୧୨) Old Brahmi Inscription, 1917, 253 ff

(୧୩) Early History of India, 1948, 189-199

(୧୪) Indian Antiquary Vol. XLVII, (1916), 408 ff

ବଂଶର ପ୍ରତିଷ୍ଠାତା ରୂପେ ମଗଧ ଅଧିକାର କଲେ । ପର୍ଶ ପଞ୍ଚଚାଳିଶ ବର୍ଷ ପରେ ଏହି କାଣ୍ୱାୟନ ବଂଶର ଶେଷ ରାଜା ସୁଶର୍ମଣଙ୍କୁ ବହିଷ୍କାର କଲେ ସିମୁକ । ସିମୁକଙ୍କ ଠାରୁ ଆନ୍ଧ୍ର ସାତବାହନ ବଂଶର ମୂଳଭିତ୍ତି ସ୍ଥାପିତ ହେଲା । ଏହି ସବୁ ପୌରାଣିକ କମ୍ବଦନ୍ତୀ ଗ୍ରହଣ କରି ଡ· ରାୟଚୌଧୁରୀ କହିଛନ୍ତି ଯେ ଖ୍ରୀ. ପୂ. ୩୦ ସମୟକୁ (ଖ୍ରୀ. ପୂ. ୩୨୪—୧୩୭—୧୧୨—୪୫ = ଖ୍ରୀ. ପୂ. ୩୦ ) ( ୧୫ ) ସିମୁକ ମଗଧ ଅଧିକାର କରି ସାରିଥିଲେ । ସିମୁକଙ୍କ ପରେ କୃଷ୍ଣ ଅଠର ବର୍ଷ ରାଜତ୍ୱ କରିବା ପରେ ସାତକର୍ଣ୍ଣୀ ସିଂହାସନାରୋହଣ କରିଥିଲେ । ଖ୍ରୀ. ପୂ. ୩୦ କୁ ଯଦି ଆମେ ସିମୁକଙ୍କର ଶେଷ ବର୍ଷ ବୋଲି ଗ୍ରହଣ କରୁଁ ତାହା ହେଲେ ସାତକର୍ଣ୍ଣୀଙ୍କ ସିଂହାସନ କାଳ ଖ୍ରୀ. ପୂ. ୧୨ ବୋଲି ପ୍ରମାଣିତ ହେଉଛି । ( ଖ୍ରୀ ପୂ. ୩୦-୧୮ = ଖ୍ରୀ ପୂ. ୧୨ ) ଏହା ଯଦି ସତ୍ୟ ହୁଏ ତେବେ ଖାରବେଳଙ୍କର ରାଜତ୍ୱ କାଳର ତାହା ଦ୍ୱିତୀୟ ବର୍ଷ ଅର୍ଥାତ୍ ଖ୍ରୀ. ପୂ. ୧୪ ରେ ଖାରବେଳ କଳିଙ୍ଗର ସମ୍ରାଟ୍ ହୋଇଥିଲେ । (୧୬)

ବୃହସ୍ପତି ମିତ୍ର—ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରୁ ଜଣାଯାଏ ଯେ ରାଜତ୍ୱ କାଳର ଦ୍ୱାଦଶ ବର୍ଷରେ ସେ ମଗଧାଧିପତି ବୃହସ୍ପତି ମିତ୍ରଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ ।

'ମଗଧଂ ଚ ରାଜାନଂ ବୃହସ୍ପତି ମିତଂ ପାଦେ ବନ୍ଦାପୟତି ।' (୧୭)

ହାତୀଗୁମ୍ଫା ବ୍ୟତୀତ ଅନ୍ୟାନ୍ୟ ଶିଳାଲିପିରେ ମଧ୍ୟ ଆମେ ପାଞ୍ଚ ଜଣ ବୃହସ୍ପତିଙ୍କର ନାମୋଲ୍ଲେଖ ଥିବାର ଦେଖୁଁ ।

୧—ମଥୁରା ନିକଟସ୍ଥ ମୋରା ନାମକ ଗ୍ରାମରେ ଏକ ଶିଳାଲିପିରେ ବୃହସ୍ପତିମିତ୍ର ନାମୋଲ୍ଲେଖ ହୋଇଛି । ଏହି ବୃହସ୍ପତି ମିତ୍ରଙ୍କର କନ୍ୟାଙ୍କର ନାମ ଥିଲା ଯଶମିତା । (୧୮)

୨—ଏଲାହାବାଦ ନିକଟସ୍ଥ ପାଭୋସା ଶିଳାଲିପିରୁ ଆମେ ଯେଉଁ ବୃହସ୍ପତିମିତ୍ରଙ୍କର ସନ୍ଧାନ ପାଉଁ ତାଙ୍କର ମାତୁଳ ଥିଲେ ଆଷାଢ଼ ସେନ । (୧୯)

୩—କୌଶାମ୍ବିରୁ ମିଳିଥିବା ମୁଦ୍ରାମାନଙ୍କର ଆକାର ପ୍ରକାରରୁ ମଧ୍ୟ ଆମେ ଅନ୍ତତଃ ଦୁଇଜଣ ବୃହସ୍ପତି ମିତ୍ର ଥିବାର ଅନୁମାନ କରିପାରୁଁ । (୨୦)

୪—ଦିବ୍ୟାବଦାନ ନାମକ ବୌଦ୍ଧଗ୍ରନ୍ଥର ଏକ ଉପାଖ୍ୟାନରୁ ଜଣାଯାଏ ଯେ ବୃହସ୍ପତି ନାମକ ଜଣେ ମୌର୍ଯ୍ୟଶାସକ ଥିଲେ ଏବଂ ସେ ଅଶୋକଙ୍କର ପୌତ୍ର ସମ୍ପ୍ରତିଙ୍କର ଉତ୍ତରାଧିକାରୀମାନଙ୍କ ମଧ୍ୟରୁ ଅନ୍ୟତମ । (୨୧)

---

(୧୫) Age of Imperial Unity, page 195 ff

(୧୬) O. H. R. I., Vol. III, No. 2, page 86

(୧୭) Hathigumpha Inscriptions, Line-12

(୧୮) Vogel. J R. A. S. 1912 Part II, page 120

(୧୯) Ep. Indica, Vol II, page 241.

(୨୦) C. C. A. I. London — page XCVI ( Kosambi coin )

୫ — ଡ. ରାୟଚୌଧୁରୀ କହନ୍ତି ଯେ କାଣ୍ୱ ବଂଶ ପରେ ବୋଧହୁଏ କୌଣସି ଏକ ମିତ୍ର ବଂଶରେ ( Neo-Mitra Dynasty ) ବୃହସ୍ପତି ମିତ୍ର ବୋଲି ଜଣେ ରାଜା ଥିଲେ ।

ଶୁଙ୍ଗବଂଶର ପ୍ରତିଷ୍ଠାତା ପୁଷ୍ୟମିତ୍ର ଶୁଙ୍ଗଙ୍କୁ ଖାରବେଳଙ୍କର ସମସାମୟିକ ବୋଲି ଧରି ଡ. ଜୟସ୍ୱାଲ ଖାରବେଳଙ୍କ ସିଂହାସନାରୋହଣର ସମୟ ଖ୍ରୀ. ପୂ. ୧୮୨ ବୋଲି ସ୍ଥିର କରିଛନ୍ତି । (୨୩)

ପୁଷ୍ୟମିତ୍ର ଶୁଙ୍ଗଙ୍କୁ ହାତୀଗୁମ୍ଫାର ବୃହସ୍ପତି ମିତ୍ର ବୋଲି ପ୍ରମାଣ କରିବା ଉପରେ ଏହାର ସତ୍ୟତା ସମ୍ପୂର୍ଣ୍ଣ ନିର୍ଭର କରେ ।

ଡ. ଷ୍ଟେରେଲ (୨୪), ଡ. ଜୟସ୍ୱାଲ (୨୫) ଓ ରେପ୍‌ସନ୍ (୨୬) ମତପ୍ରକାଶ କରିଥିଲେ ଯେ ମୋରା ଏବଂ ପାଭୋସା ଶିଳାଲେଖମାନଙ୍କରେ ଯେଉଁ ଦୁଇ ବୃହସ୍ପତି ମିତ୍ରଙ୍କୁ ଉଲ୍ଲେଖ କରାଯାଇଛି ସେମାନେ ଏକ ଓ ଅଭିନ୍ନ, କାରଣ ଉକ୍ତ ଶିଳାଲେଖ ମିଳିଥିବା ଅଞ୍ଚଳମାନଙ୍କରେ ଶୁଙ୍ଗବଂଶର ଅଖଣ୍ଡ କର୍ତ୍ତୃତ୍ୱ ରହିଥିଲା ।

ଏହାକୁ କିନ୍ତୁ ଡ. ଆଲାନ ଗ୍ରହଣ କରି ନାହାନ୍ତି । ସେ ପରୀକ୍ଷା କରି ଦେଖିଲେ ଯେ ମୋରା ଶିଳାଲେଖର ଲିପି ପାଭୋସାର ଲିପି ଅପେକ୍ଷା ନିଶ୍ଚୟ ଖୁବ୍ ପ୍ରାଚୀନ । ତେଣୁ ଦୁଇ ବୃହସ୍ପତି ମିତ୍ରଙ୍କ ମଧ୍ୟରେ ପାର୍ଥକ୍ୟ ଥିବା ଖୁବ୍ ସ୍ୱାଭାବିକ ।

ପୁନଶ୍ଚ ଏହି ବୃହସ୍ପତି ମିତ୍ରମାନଙ୍କ ସହିତ ଆମେ ଦିବ୍ୟାବଦାନରେ ଥିବା ବୃହସ୍ପତିଙ୍କର କୌଣସି ସାଦୃଶ୍ୟ ଥିବାର ଅନୁମାନ କରି ପାରୁନା; କାରଣ ଦିବ୍ୟାବଦାନର ବୃହସ୍ପତି ମୌର୍ଯ୍ୟବଂଶର ରାଜା ବୋଲି କଥିତ ହୋଇଛନ୍ତି । ଡ. ଜୟସ୍ୱାଲ ମଧ୍ୟ ଏଥିରେ ପୂର୍ଣ୍ଣ ଏକମତ । ସେ କହିଛନ୍ତି—

This Bribaspati cannot be identified with the Bribaspati Mitra of the inscription for two reasons. Mitra is not the member of the name of the Maurya king. Nor would the letters of the inscription warrant on going back to B. C. 203 further. In that case, the inscription would not be dated in the year of the founder of the family of the vanquished rival. (୨୭)

---

(୨୧) J. B. O. R. S. II. 96, III. 480 Dr. B. M. Barua O. B. I., page 243 ff

(୨୨) P. H. A. I. page 401

(୨୩) J. B. O. R. S. III, page 236-245

(୨୪) J. R. A. S., 1912, page 120

(୨୫) J. B. O. R. S., 1919, page 473-80

(୨୬) Cambridge History of India, Vol I, page 524-26

(୨୭) J. B O. R. S. III, page 490 ff.

ହାତୀଗୁମ୍ଫା ଶିଳାଲିପିର ବୃହସ୍ପତି ମିତ୍ରଙ୍କୁ ତେଣୁ ଡ. ରାୟଚୌଧୁରୀ ଏବଂ ଡ. ବରୁଆ ଅନ୍ୟ ଏକ ବଂଶର ବୋଲି ଗ୍ରହଣ କଲେ—ଯେଉଁ ବଂଶର ସଂଜ୍ଞା ଥିଲା ମିତ୍ର ଏବଂ ଏହି ମିତ୍ରବଂଶର ରାଜାମାନେ ଖ୍ରୀଷ୍ଟପୂର୍ବର ଠିକ୍ ଅବ୍ୟବହିତ ପୂର୍ବରୁ ମଗଧରେ ରାଜତ୍ୱ କରୁଥିଲେ । ଡ. ରାୟଚୌଧୁରୀଙ୍କୁ ସମର୍ଥନ କରି ଡ. ବରୁଆ ଲେଖିଛନ୍ତି ଯେ,

"We must still hold to Dr. H. C. Raychowdhury's theory of a neo-Mitra dynasty reigning in Magadha from the termination of the rule of the Kanwas in the middle of the first century B. C. and regard Indragni Mitra and Brihaspati Mitra as the immediate predecessor of king Brihaspati Mitra who was the weaker rival and contemporary of Kharavela." (୨୮)

ଏହା ଯଦି ହୁଏ ତେବେ ଖାରବେଳଙ୍କୁ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଶେଷଭାଗର ବୋଲି କହିବା ଆଦୌ ଭ୍ରମାତ୍ମକ ନୁହେଁ ।

**ଯବନରାଜ ଡମିତ**

ଶିଳାଲେଖର ଅଷ୍ଟମ ଧାଡ଼ିରେ ‘ଯବନରାଜ ଡମିତ’ ବୋଲି ଲେଖାଥିବାର ଅନୁମାନ ପ୍ରଥମେ କରିଥିଲେ ଡ. ଜୟସ୍ୱାଲ । (୨୯) ଏହି ଅନୁମାନକୁ ପ୍ରଫେସର ବାନାର୍ଜି (୩୦) ଏବଂ ଷ୍ଟେନକୋନାଓ (୩୧) ଗ୍ରହଣ କରିଥିଲେ । ପରେ କିନ୍ତୁ ଏ ବିଷୟରେ ଐତିହାସିକମାନଙ୍କ ମଧ୍ୟରେ ସନ୍ଦେହର ବାହୁଲ୍ୟ ସୃଷ୍ଟି ହୋଇଥିଲା ଏବଂ ଏହା ସମ୍ପୂର୍ଣ୍ଣ କାଳ୍ପନିକ ବୋଲି ଡ. ଟାର୍ଣ୍ଣ ମତପ୍ରକାଶ କରିଥିଲେ ।

ଡ. ବରୁଆ ମଧ୍ୟ ଏହାକୁ ସମ୍ପୂର୍ଣ୍ଣ ଅସ୍ୱୀକାର କରିଛନ୍ତି । (୩୩) ସେ କହନ୍ତି ଯେ ଶିଳାଲେଖର ଯେଉଁ ଅଂଶକୁ ‘ଯବନରାଜ’ ବୋଲି ପାଠ କରାଯାଇଛି, ସେହି ଅଂଶର ପଞ୍ଚମ ଅକ୍ଷର କେବେ ହେଁ ‘ଜ’ ନୁହେଁ, ତାହା ‘ତ’ । ଡ. ଦିନେଶ ଚନ୍ଦ୍ର ସରକାର କହନ୍ତି ଯେ, ସେ ଅଂଶରେ ‘ଯବନରାଜ’ ଶବ୍ଦ ପରିଷ୍କାର-ଭାବେ ଲିଖିତ ହୋଇଅଛି; କିନ୍ତୁ ‘ଡମିତ’ର ଉଲ୍ଲେଖ ସମ୍ପର୍କରେ ସେ ସନ୍ଦିହାନ । (୩୪)

ତେଣୁ ଯବନରାଜ ଡମିତ ବା ଦିମିତ ସମ୍ପର୍କରେ ଏଠାରେ ଆଲୋଚନା କରିବା ଉଚିତ ହେବ ନାହିଁ ।

ହାତୀଗୁମ୍ଫା ଶିଳାଲେଖର ଚତୁର୍ଥ ଧାଡ଼ିରେ ‘ରଚିସ-ସତ’ ବୋଲି ଏକ ଶବ୍ଦ ଅଛି ।

---

(୨୮) Gaya & Bodhgaya Vol. II, pp 1984-74.

(୨୯) J. B. O. R. S. XIII, pp. 221 & 228.

(୩୦) A. S. of India. 1914-15

(୩୧) Acto Orientalia, 1923, page 27.

(୩୨) Greeks in Bactria and India. 457 ff.

(୩୩) Old Brahmi Inscriptions, page 18.

(୩୪) Select Inscriptions, Vol. I, page 208.

"ପଞ୍ଚମେ ଚ ଦାନି ବସେ ନନ୍ଦରାଜ-ତିବସ-ସତ ଓଘାଟିତଂ ।

ତନସୁଲିୟ ବାଟା ପଣାଡିମ୍ ନଗରଂ ପବେସୟ୍ତି ।"

ଏହି ତିବସ ସତକୁ ନେଇ କେତେ ପ୍ରତ୍ନତାତ୍ତ୍ୱିକମାନେ ନାନା ପ୍ରକାର ଆଲୋଚନାର ପର୍ଯ୍ୟାୟ ସୃଷ୍ଟି କରିଛନ୍ତି । ସେମାନେ ପୁଣି ଏହି ପଦର ଅର୍ଥକୁ ଭିନ୍ନ ଭିନ୍ନ ରୂପରେ ଗ୍ରହଣ କରିଛନ୍ତି । ପଣ୍ଡିତ ଭଗବାନ୍ ଲାଲ ଇନ୍ଦ୍ରଜୀ 'ସତ' କୁ 'ସତର' ରୂପେ ପାଠ କରି ତାକୁ 'ସତ୍ର' ବୋଲି ଗ୍ରହଣ କରିଥିଲେ । He opened the three yearly alms house of Nandaraj. (୩୫)

ପ୍ରଫେସର ଲୁଡର୍ସ କିନ୍ତୁ ତାହା ପାଠ କରି ସମ୍ପୂର୍ଣ୍ଣ ଏକ ଭିନ୍ନ ଦିଗରେ ତାର ଆଲୋଚନାର ପଥ ସୁଗମ କରିଦେଲେ । (୩୬) ତାଙ୍କ ମତରେ 'ତିବସ-ସତ'ର ଅର୍ଥ ୧୦୩ ବର୍ଷ । ତିବସ-ସତକୁ ଡ. ଜୟସ୍ୱାଲ ଓ ବାନାର୍ଜି ପ୍ରଥମେ ତେଶତ ବର୍ଷ ବୋଲି ସ୍ୱୀକାର କରି (୩୭) ପରେ ପୁଣି ଅର୍ଥାନ୍ତର କଲେ ଏବଂ ପ୍ରଫେସର ଲୁଡର୍ସଙ୍କର ଅଭିମତକୁ ଗ୍ରହଣ କଲେ । (୩୮)

ଜୟସ୍ୱାଲ ପ୍ରଥମେ ଭାବିଥିଲେ ଯେ ଆଲବରୁଣି ତାଙ୍କର 'ତରିକ୍-ଇ-ହିନ୍ଦ୍' ପୁସ୍ତକରେ ଯେଉଁ ନନ୍ଦସମ୍ବତ୍ସର କଥା ଉଲ୍ଲେଖ କରିଛନ୍ତି, ହାତୀଗୁମ୍ଫା ଶିଳାଲେଖର 'ତିବସ-ସତ' ସେହି ଅନୁସାରେ ଲିଖିତ । (୩୯) ପାର୍ଜିଟରଙ୍କର ଗଣନାନୁସାରେ ପ୍ରଥମ ନନ୍ଦ ଖ୍ରୀ. ପୂ. ୪୦୨ରେ ସିଂହାସନାରୋହଣ କରିଥିଲେ । ତାହା ହେଲେ ଖ୍ରୀ. ପୂ. ୨୯୯ରେ {ଖ୍ରୀ. ପୂ. ୪୦୨-୧୦୩ (ତିବସ ସତ) = ୨୯୯ ଖ୍ରୀ. ପୂ. } ନନ୍ଦରାଜା କଳିଙ୍ଗରେ ଯେଉଁ କେନାଲ ନିର୍ମାଣ କରିଥିଲେ ତାର ପୁନରୁଦ୍ଧାର ହୋଇଥିବ ବୋଲି ବୁଝିବାକୁ ହେବ । କିନ୍ତୁ ଏହା ସମ୍ପୂର୍ଣ୍ଣ ଅସମ୍ଭବ, କାରଣ ଖ୍ରୀ. ପୂ. ୩୨୨ରୁ ଖ୍ରୀ. ପୂ. ୧୮୯ ପର୍ଯ୍ୟନ୍ତ ମୌର୍ଯ୍ୟମାନେ ଭାରତର ଅପ୍ରତିଦ୍ୱନ୍ଦ୍ୱୀ ଶାସକ ଥିଲେ ।

ପ୍ରଫେସର ରାଖାଲ ଦାସ ବାନାର୍ଜି ମଧ୍ୟ ଏକ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ଭାବିଥିଲେ ଯେ ନନ୍ଦବଂଶର ପ୍ରଥମ ରାଜା ଖାରବେଳଙ୍କ ସିଂହାସନାରୋହଣର ଶହେ ଅଠବର୍ଷ ପୂର୍ବରୁ (୧୦୩+୫) କଳିଙ୍ଗରେ କେନାଲ ନିର୍ମାଣ କରିଥିଲେ । ତାଙ୍କ ମତରେ ନନ୍ଦସମ୍ବତ୍ସର ଆରମ୍ଭ ହୋଇଥିବ ଖ୍ରୀ. ପୂ. ୪୫୮ରେ ଏବଂ କେନାଲ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥିଲା ଖ୍ରୀଷ୍ଟପୂର୍ବ ୩୫୫ରେ (୪୫୮-୧୦୩) । କିନ୍ତୁ ଅଧ୍ୟାପକ ବାନାର୍ଜି ଏଠାରେ ଶହେ ବର୍ଷକୁ ନନ୍ଦରାଜା ଓ ଖାରବେଳଙ୍କ ମଧ୍ୟରେ ଥିବା ସମୟର ଦୂରତା ରୂପେ ଗ୍ରହଣ ନ କରି ନନ୍ଦବଂଶର

---

(୩୫) International Oriental Congress Proceedings–Leyder, 1884.

(୩୬) Ep. Ind , Vol. X App. No. 1345, page 161

(୩୭) J. B. O. R. S. III, 1916, 425 ff.

(୩୮) Ep. Ind. XX, 71 ff.

(୩୯) J. B. O. R. S. XIII, 238

ରାଜତ୍ୱକାଳ ମଧ୍ୟରେ ଏକ ସମୟର ବ୍ୟବଧାନ ବୋଲି ଧରନ୍ତି ।

କିନ୍ତୁ ପ୍ରକୃତରେ ବିଚାର କଲେ ଅଧ୍ୟାପକ ବାନାର୍ଜିଙ୍କର ଗଣନା ସମ୍ପୂର୍ଣ୍ଣ ଅମୂଳକ ବୋଲି ପ୍ରମାଣିତ ହୁଏ । ବିଶେଷତଃ ନନ୍ଦସମ୍ବତ୍ସର ସମ୍ବନ୍ଧରେ ଅନ୍ୟ କୌଣସି ସୁଦୃଢ଼ ପ୍ରମାଣ ଆମେ ପ୍ରାପ୍ତ ନ ଥିବାରୁ ଡ. ଜୟସ୍ୱାଲ ବା ବାନାର୍ଜିଙ୍କର ମତାମତ କେବେ ଗ୍ରହଣ କରି ପାରିବାରେ ନା ।

'ତିବସ-ସତ' କୁ ତେଣୁ ତିନିଶହ ବୋଲି ସ୍ୱୀକାର କରିବା ଅଧିକ ଯୁକ୍ତିଯୁକ୍ତ । ପୌରାଣିକ କିମ୍ବଦନ୍ତୀ ଅନୁସାରେ ଖାରବେଳଙ୍କ ସମସାମୟିକ ସାତକର୍ଣ୍ଣୀ ମଧ୍ୟ ନନ୍ଦରାଜତ୍ୱର ପ୍ରାୟ ତିନିଶହ ବର୍ଷ ପରେ ରାଜତ୍ୱ କରିଥିବାର ଜଣାଯାଏ । (ମୌର୍ଯ୍ୟମାନଙ୍କର ଶହେ ସଇଁତିରିଶ ବର୍ଷ + ଶୁଙ୍ଗମାନଙ୍କର ଶହେ ବାର ବର୍ଷ + କାଣ୍ୱମାନଙ୍କର ପଇଁଚାଳିଶ ବର୍ଷ = ଦୁଇଶହ ଚୌରାନବେ ବର୍ଷ ) । ( ୪୦ ) ନନ୍ଦବଂଶର ପତନର ଦୁଇଶହଚୌରାନବେ ବର୍ଷ ପରେ ଆନ୍ଧ୍ର ସାତବାହନ ବଂଶର ଅଭ୍ୟୁଦୟ ହୋଇଥିଲା ବୋଲି ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ । ଡ. ରାୟଚୌଧୁରୀ ଏଥିରେ ସମ୍ପୂର୍ଣ୍ଣ ଏକମତ । ( ୪୧ ) କିନ୍ତୁ 'ତିବସ-ସତ' କୁ ଯଦି ଶହେ ତିନି ବର୍ଷ ବୋଲି ଗ୍ରହଣ କରାଯାଏ ତାହାହେଲେ ଖାରବେଳ ନନ୍ଦରାଜାଙ୍କର ଅଠାନବେ ବର୍ଷ ପରେ ସିଂହାସନ ଆରୋହଣ କରିଥିଲେ ବୋଲି ଗ୍ରହଣ କରିବା ଉଚିତ । ( ୧୦୩ – ୫ = ୯୮ ) । ଏତାଦୃଶ ଗଣନା ପୁଣି ନାନା ପ୍ରକାର ବିଭ୍ରାଟ ସୃଷ୍ଟି କରିବ, କାରଣ ନନ୍ଦବଂଶର ଯେ କୌଣସି ବର୍ଷରୁ 'ତିବସ ସତ' କୁ ଶହେ ତିନି ବର୍ଷ ବୋଲି ଧରି ଗଣନା ଆରମ୍ଭ କଲେ ଆମେ ଯେଉଁ ସମୟରେ ଉପନୀତ ହେବା ସେତେବେଳେ କଳିଙ୍ଗ ମଗଧ ସାମ୍ରାଜ୍ୟର ଅଧୀନରେ ଥିଲା ବୋଲି ସ୍ୱୀକାର କରିବାକୁ ପଡ଼ିବ । ଅଶୋକଙ୍କର ଶିଳାଲିପିରୁ ଏହା ପ୍ରମାଣିତ ହେବ ଯେ ସେତେବେଳେ ତୋଷାଳି ଏବଂ ସୋମପାରେ ମୌର୍ଯ୍ୟକୁମାରମାନେ ଶାସନକାର୍ଯ୍ୟ ପରିଚାଳନା କରୁଥିଲେ । ସେତେବେଳେ କଳିଙ୍ଗାଧିପତି କୌଣସି ଚକ୍ରବର୍ତ୍ତୀ ସମ୍ରାଟଙ୍କର ଅଭ୍ୟୁଦୟ ହୋଇ ନ ଥିଲା । (୪୨) ତେଣୁ 'ତିବସ-ସତ'କୁ ୩୦୦ ବର୍ଷ ବୋଲି ଗ୍ରହଣ କରିବା ବିଧେୟ । ଡ. ଦିନେଶ ଚନ୍ଦ୍ର ସରକାର ମଧ୍ୟ କହନ୍ତି ଯେ ଏଠାରେ 'ତିବସ ସତ'କୁ ୩୦୦ ବର୍ଷ ଅର୍ଥରେ ପ୍ରକାଶ କରାଯାଇଛି । (୪୩) ଡ. ଜୟସ୍ୱାଲ ପ୍ରଥମେ ଏହାକୁ ୩୦୦ ବର୍ଷ ବୋଲି ଗ୍ରହଣ କରିଥିଲେ; (୪୪) କିନ୍ତୁ ସେ ପୁଷ୍ୟମିତ୍ର ଶୁଙ୍ଗଙ୍କୁ ଖାରବେଳଙ୍କର ସମସାମୟିକ କରିବାକୁ ଯାଇ ନନ୍ଦରାଜାଙ୍କୁ ଶିଶୁନାଗବଂଶର ରାଜା ନନ୍ଦିବର୍ଦ୍ଧନ ରୂପେ ପ୍ରମାଣ କରିଥିଲେ । କିନ୍ତୁ ଶିଶୁନାଗବଂଶର

(୪୦) Age of Imperial Unity—Chapter on the Satababanas by Dr. D. C. Sircar.

(୪୧) P. H. A. I. 229 ff.

(୪୨) O. H. R. J., Vol. III, No. 2, page 92

(୪୩) Age of Imperial Unity—Ch. XIII, 216 ff

(୪୪) J. B. O. R. S. XIII, 239 ff

ରାଜା ନନ୍ଦବର୍ଦ୍ଧନ କେବେହେଲେ କଳିଙ୍ଗ ସମ୍ପର୍କରେ ଆସିଥିଲେ ବୋଲି ଆମେ ଜାଣୁନା । ତା ଛଡ଼ା ଶିଳାଲେଖରେ ପରିଷ୍କାର ଭାବରେ 'ନନ୍ଦରାଜ' ବୋଲି ଲେଖାଥିବାର ଆମେ ଦେଖୁଁ । ତେଣୁ ଉଗ୍ରସେନ ମହାପଦ୍ମ ନନ୍ଦବଂଶର ପ୍ରତିଷ୍ଠାତାରୂପେ 'ସର୍ବକ୍ଷତ୍ରାନ୍ତକ' ଓ 'ଏକରାଟ୍' ଉପାଧି ଗ୍ରହଣ କରିଥିବାରୁ (୭୫) ତାଙ୍କୁ କଳିଙ୍ଗବିଜୟୀ ବୋଲି କହିବା ଅଧିକ ସଙ୍ଗତ । ଏହି ଉଗ୍ରସେନ ମହାପଦ୍ମଙ୍କର ରାଜତ୍ୱକାଳ ନିଶ୍ଚୟ ଖ୍ରୀ. ପୂ. ୩୨୪ ପୂର୍ବରୁ କିମ୍ବା ୩୨୪ ସୁଦ୍ଧା ସମ୍ପୂର୍ଣ୍ଣ ହୋଇଥିବ, କାରଣ ସେହି ବର୍ଷ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ମଗଧ ଅଧିକାର କରିଥିବାର ଆମକୁ ଜଣା ଅଛି । (୭୬) ତେଣୁ ଖ୍ରୀଷ୍ଟପୂର୍ବ ୩୨୪ରୁ ଗଣନା କଲେ ମଧ୍ୟ ଆମେ ଖାରବେଳଙ୍କୁ ଖ୍ରୀ. ପୂ. ପ୍ରଥମ ଶତାବ୍ଦୀର ଶେଷାର୍ଦ୍ଧରେ କଳିଙ୍ଗର ଏକଚ୍ଛତ୍ର ଶାସକରୂପେ ସିଂହାସନରେ ଅଧିଷ୍ଠିତ ଥିବାର ଦେଖୁଁ । କାବ୍ୟରସ-ସୌନ୍ଦର୍ଯ୍ୟ ଦୃଷ୍ଟିରୁ ନନ୍ଦରାଜା ଓ ଖାରବେଳଙ୍କ ମଧ୍ୟରେ ଥିବା ସମୟର ବ୍ୟବଧାନକୁ 'ତିବସ-ସତ' ଅର୍ଥାତ୍ ୩୦୦ ବର୍ଷ ବୋଲି ପ୍ରକାଶ କରାଯାଇଛି ।

ତା'ହେଲେ ଖାରବେଳ ଯେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଶେଷାର୍ଦ୍ଧରେ କଳିଙ୍ଗର ରାଜଚକ୍ରବର୍ତ୍ତୀ ଥିଲେ, ଏହା ନିଃସନ୍ଦେହ ।

ଏହି ସିଦ୍ଧାନ୍ତକୁ ଉପେକ୍ଷା କରି ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ 'ତିବସ-ସତ'କୁ ୧୦୩ ବର୍ଷ ବୋଲି ଗ୍ରହଣ କରି ମତ-ପ୍ରକାଶ କରିଛନ୍ତି ଯେ, ଖାରବେଳଙ୍କ ଶିଳାଲିପିରେ 'ନନ୍ଦରାଜ' ଅଶୋକଙ୍କୁ ଉଦ୍ଦେଶ୍ୟ କରି ଲିଖିତ ହୋଇଅଛି । (୭୭) ତାଙ୍କର ଯୁକ୍ତି ଅନୁସାରେ—ନନ୍ଦବଂଶର ରାଜାମାନେ ଅତ୍ୟାଚାରୀ ଓ କୃପଣ ଥିବାରୁ କଳିଙ୍ଗରେ କେନାଲ ଖନନ କାର୍ଯ୍ୟ ପାଇଁ ଅର୍ଥବ୍ୟୟ କରିବା ଅସମ୍ଭବ ବୋଧ ହେଉଛି ଏବଂ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ପ୍ରତିଷ୍ଠିତ ରାଜବଂଶ ସେତେବେଳେ ମୌର୍ଯ୍ୟବଂଶ ନାମରେ ଖ୍ୟାତିଲାଭ କରି ନ ଥିଲା । ବରଂ ମୌର୍ଯ୍ୟମାନଙ୍କୁ "ପୂର୍ବନନ୍ଦସୂତ" ବୋଲି ପୁରାଣକାର-ମାନେ ଅଭିହିତ କରିଥିବାରୁ ଅଶୋକଙ୍କୁ ହାତୀଗୁମ୍ଫା ଶିଳାଲିପିରେ 'ନନ୍ଦରାଜା' ବୋଲି ଉଲ୍ଲେଖ କରାଯାଇଛି ।

ଡ. ପାଣିଗ୍ରାହୀଙ୍କର ତୃତୀୟ ଯୁକ୍ତି ହେଉଛି ଯେ ଅଶୋକ ତାଙ୍କର ତ୍ରୟୋଦଶ ଶିଳାଲିପି (R. E. XIII) ରେ କହିଛନ୍ତି ଯେ, ତାଙ୍କ ବିଜୟ ପୂର୍ବରୁ କଳିଙ୍ଗ ରାଜ୍ୟ କେବେହେଁ ଅନ୍ୟ କାହାଦ୍ୱାରା ବିଜିତ ହୋଇ ନ ଥିଲା । ତେଣୁ ଅଶୋକ ପ୍ରଥମେ କଳିଙ୍ଗ ଜୟ କରିଥିବାରୁ ତାଙ୍କୁ 'ନନ୍ଦରାଜା' ବୋଲି ଗ୍ରହଣ କରିବା ଉଚିତ ।

ଡ. ପାଣିଗ୍ରାହୀଙ୍କର ପ୍ରଥମ ଯୁକ୍ତି ସମ୍ପର୍କରେ ଆମେ ଏତିକି ମାତ୍ର କହିପାରୁଁ ଯେ ଗ୍ରୀକ୍ ଲେଖକମାନେ ନନ୍ଦବଂଶର

---

(୭୫) P. H. A. I., 5th Ed., page 220 ff

(୭୬) P. H. A. I., page 233 ff C. H. India—N. N. Ghosh 114 ff

(୭୭) J. R. A. S. XIX, No. 1, 25 ff

ଶେଷ ରାଜାଙ୍କୁ ହିଁ କେବଳ ଅତ୍ୟାଚାରୀ ଓ କୃପଣ ବୋଲି ମତପ୍ରକାଶ କରିଛନ୍ତି । 'ସର୍ବକ୍ଷତ୍ରାନ୍ତକ' ଓ 'ଏକରାଟ୍' ମହାପଦ୍ମ ଉଗ୍ରସେନ କୌଣସିଠାରେ କିନ୍ତୁ ଅତ୍ୟାଚାରୀ ବା କୃପଣ ବୋଲି ସମାଲୋଚିତ ହୋଇ ନାହାନ୍ତି । ଆମର ପୂର୍ବ ଆଲୋଚନା ଅନୁସାରେ ଯଦି ମହାପଦ୍ମନନ୍ଦ ପ୍ରକୃତରେ କଳିଙ୍ଗବିଜୟୀ ହୋଇଥାନ୍ତି, ତାହେଲେ କଳିଙ୍ଗର ଶ୍ରୀବୃଦ୍ଧି ଓ କୃଷିର ଉତ୍କର୍ଷ ସାଧନ ନିମନ୍ତେ ଏକ କେନାଲ ଖନନ ପାଇଁ ବ୍ୟୟସଙ୍କୋଚ କରିଥିବେ ବା ବ୍ୟୟ କରିବାକୁ କୁଣ୍ଠାପ୍ରକାଶ କରିଥିବେ ବୋଲି ଭାବିବା ଅତି ସମୀଚୀନ ନୁହେଁ । ବରଂ ବିଶାଖାଦତ୍ତଙ୍କର 'ମୁଦ୍ରାରାକ୍ଷସ' ନାଟକରୁ ଏହା ପ୍ରମାଣିତ ହୁଏ ଯେ ନନ୍ଦରାଜାମାନେ ଦାନଧର୍ମରେ ଅଧିକାଂଶ ସମୟ ବ୍ୟାପୃତ ରହୁଥିଲେ । ତେଣୁ ଏହି ଧନଶାଳୀ ନନ୍ଦ ରାଜାମାନଙ୍କୁ କୃପଣ କହିବା ଅଯୌକ୍ତିକ । ବିଶେଷତଃ ମହାପଦ୍ମ ନନ୍ଦଙ୍କୁ କୃପଣ କୁହାଯାଇ ନ ପାରେ, କାରଣ ସେ ବିଷୟରେ ଐତିହାସିକ ସତ୍ୟତା ନାହିଁ ।

ଡ ପାଣିଗ୍ରାହୀଙ୍କର ଦ୍ୱିତୀୟ ଯୁକ୍ତି ମଧ୍ୟ ସେହିପରି ଭ୍ରମାତ୍ମକ । ଚନ୍ଦ୍ରଗୁପ୍ତ ମୌର୍ଯ୍ୟସାମ୍ରାଜ୍ୟର ପ୍ରତିଷ୍ଠାତା ଓ ପିପ୍ପଳି ବନର ମୌର୍ଯ୍ୟବଂଶଧର । ଏଥିରେ ସନ୍ଦେହର ଅବକାଶ ଥାଇ ନ ପାରେ । ପୁରାଣମାନଙ୍କରେ ଚନ୍ଦ୍ରଗୁପ୍ତଙ୍କୁ କ୍ଷତ୍ରିୟ ବୋଲି ଅସ୍ୱୀକାର କରି 'ଶୂଦ୍ରନନ୍ଦସୁତ' ବୋଲି ବର୍ଣ୍ଣିତ ହୋଇଥିବାର ପଶ୍ଚାଦ୍ଦେଶରେ ଅନେକ ଗୂଢ଼ ରହସ୍ୟ ଅଛି । ବ୍ରାହ୍ମଣ କୌଟିଲ୍ୟଙ୍କର ସାହଚର୍ଯ୍ୟରେ ଚନ୍ଦ୍ରଗୁପ୍ତ ମଗଧ ସାମ୍ରାଜ୍ୟ ଅଧିକାର କରିଥିଲେ । ମଗଧର ଅଧୀଶ୍ୱର ହେବା ପରେ ସେ ବ୍ରାହ୍ମଣ୍ୟ ଧର୍ମ ପ୍ରତି ଅନୁରକ୍ତ ନ ହୋଇ ଜୈନଧର୍ମ ଗ୍ରହଣ କରିଥିବା ହେତୁ ବ୍ରାହ୍ମଣମାନେ କ୍ଷୁବ୍ଧ ହୋଇଥିବା ସ୍ୱାଭାବିକ । ମୌର୍ଯ୍ୟମାନଙ୍କୁ ଶୂଦ୍ରନନ୍ଦସୁତ ଓ ଶୂଦ୍ର ବୋଲି ବର୍ଣ୍ଣନା କରିବା କାରଣ Indian Historical Quarterly ରେ ଶ୍ରୀ ହରିତ୍‌କୃଷ୍ଣ ଦେବ ଅତି ପ୍ରାଞ୍ଜଳ ଭାବରେ ଆଲୋଚନା କରିଛନ୍ତି । (୪୮)

ମୌର୍ଯ୍ୟମାନଙ୍କର ନନ୍ଦବଂଶ ସହିତ କୌଣସି ପ୍ରକାର ସଂପର୍କ ନ ଥିଲା । ଖ୍ରୀଷ୍ଟପୂର୍ବ ୭ମ ଶତାବ୍ଦୀ ସମୟରୁ ମୌର୍ଯ୍ୟମାନେ ପିପ୍ପଳି ବନରେ ସ୍ୱାଧୀନ ଭାବରେ ବାସ କରୁଥିଲେ ବୋଲି ବୌଦ୍ଧ ଗ୍ରନ୍ଥମାନଙ୍କରେ ଉଲ୍ଲେଖ ଅଛି । 'ମହାପରିନିର୍ବାଣ ସୂତ୍ର'ରୁ (୪୯) ଆମେ ଜାଣୁ ଯେ ମୌର୍ଯ୍ୟମାନେ କ୍ଷତ୍ରିୟ ବଂଶଜ ଥିଲେ ଓ ଦିବ୍ୟାବଦାନ (୫୦, ୫୧) ମଧ୍ୟ ଏହାର ସମର୍ଥନ କରିଛି ।

ବ୍ରାହ୍ମଣ୍ୟ ଧର୍ମର ଗ୍ରନ୍ଥମାନଙ୍କରେ ଚନ୍ଦ୍ରଗୁପ୍ତ ଓ ଅଶୋକାଦିଙ୍କୁ ମୌର୍ଯ୍ୟ ବୋଲି ପ୍ରକାଶ କରି ନ ଦିବା ଅର୍ଥ ନୁହେଁ ଯେ ସେମାନେ ନନ୍ଦବଂଶର ରାଜା ଥିଲେ ।

---

(୪୮) I. H. Q. 1932, Vol. VIII, No. 3, page 466 ff.

(୪୯) ଅଥଖୋ ପିପ୍ପଲିବନିୟା ମୋରିୟା କୋସିନାରକାନଂ, ମଲ୍ଲାନଂ ଦୂତଂ ପାହେସୁଂ— ଭଗବାପି ଖତ୍ତିୟୋ ମୟମ୍ପି ଖତ୍ତିୟା ।

(୫୦) ତ୍ୱଂ ନାପିତ୍ତୀ ଅହଂ ରାଜା, କ୍ଷତ୍ରିୟା-ମୂର୍ଦ୍ଧାଭିଷିକ୍ତା କଥଂ ମୟା ସାର୍ଦ୍ଧଂ ସମାଗମୋ ଭବିଷ୍ୟତି ।

(୫୧) ଦେବ ଅହଂ କ୍ଷତ୍ରିୟା, କଥଂ ପଲାଣ୍ଡୁଂ ପରିଭକ୍ଷୟାମି ?

ବୌଦ୍ଧ ଧର୍ମଗ୍ରନ୍ଥରେ ସଂସ୍କାର ଭାବରେ ସେମାନଙ୍କୁ ମୌର୍ଯ୍ୟ ବୋଲି ବର୍ଣ୍ଣନା କରାଯାଇଥିବାରୁ ଆମେ ଡ. ପାଣିଗ୍ରାହୀଙ୍କର ମତକୁ ଗ୍ରହଣ କରି ନ ପାରୁ; ଏପରିକି ରୁଦ୍ରଦମନଙ୍କର ଗିର୍ଣ୍ଣାର ଶିଳାଲିପିରେ ମଧ୍ୟ ଚନ୍ଦ୍ରଗୁପ୍ତ ଓ ଅଶୋକଙ୍କୁ ମୌର୍ଯ୍ୟ ବୋଲି କୁହାଯାଇଅଛି । ଅଶୋକଙ୍କୁ 'ନନ୍ଦରାଜ' ବୋଲି ସ୍ୱୀକାର କରିବାରେ ଅଯୌକ୍ତିକତା ପ୍ରତ୍ୟକ୍ଷମାନ ହୋଇରହିଛି ।

ଅଶୋକ ତାଙ୍କ (R. E. XIII) ଶିଳାଲେଖରେ କହିଛନ୍ତି ଯେ ସେ ତାଙ୍କ ରାଜ୍ୟାଭିଷେକର ଅଷ୍ଟମ ବର୍ଷରେ କଳିଙ୍ଗ ଅଧିକାର କରିଥିଲେ ଏବଂ କଳିଙ୍ଗ ତାଙ୍କ ବିଜୟ ପୂର୍ବରୁ 'ଅବିଜିତ' ଥିଲା (Previously unconquered).

କଳିଙ୍ଗ କିନ୍ତୁ ନନ୍ଦରାଜାଙ୍କ ଦ୍ୱାରା ପୂର୍ବରୁ ଅଧିକୃତ ହୋଇଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ । ତା'ହେଲେ ଆମର ପ୍ରଶ୍ନ କରିବା ଉଚିତ ଯେ ଅଶୋକ କାହିଁକି କଳିଙ୍ଗକୁ 'ଅବିଜିତ' ରାଜ୍ୟ ବୋଲି ପ୍ରକାଶ କରିଛନ୍ତି ? ଆମର ଏ ପ୍ରଶ୍ନର ଉତ୍ତର ଦୁଇ ପ୍ରକାର ହୋଇପାରେ । ପ୍ରଥମତଃ ବୋଧହୁଏ ତାହା କହିବାଦ୍ୱାରା ଅଶୋକ ପ୍ରକାଶ କରିଛନ୍ତି ଯେ ତାଙ୍କ ପୂର୍ବରୁ ମୌର୍ଯ୍ୟବଂଶର କୌଣସି ରାଜା କଳିଙ୍ଗ ଅଧିକାର କରି ନ ଥିଲେ । ନନ୍ଦବଂଶ ରାଜତ୍ୱର ଶେଷ ସମୟକୁ କଳିଙ୍ଗ ନିଜର ସ୍ୱାଧୀନତା ଲାଭ କରିଥିଲା ଅପେ ଅପେ । ଏହି ସ୍ୱାଧୀନ କଳିଙ୍ଗକୁ ଅଧିକାର କଲେ ଅଶୋକ ଖ୍ରୀ. ପୂ. ୨୬୧ରେ । କଳିଙ୍ଗ ଅଧିକାର କରିବା କିନ୍ତୁ ସହଜସାଧ୍ୟ ବ୍ୟାପାର ନ ଥିଲା । ଏହି କଳିଙ୍ଗ ଯୁଦ୍ଧର ଭୟାବହ ଓ ମର୍ମନ୍ତୁଦ ବର୍ଣ୍ଣନା ତ୍ରୟୋଦଶ ଶିଳାଲିପିରେ ଅଶୋକ ନିଜେ କହିଛନ୍ତି । (୫୨) ସ୍ୱାଧୀନଚେତା କଳିଙ୍ଗବାସୀଙ୍କୁ ନିଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରି ଅଶୋକ ନିଶ୍ଚୟ ଶାନ୍ତି ଓ ତୃପ୍ତିରେ ଆତ୍ମପ୍ରସାଦ ଲାଭ କରିଥିବେ । ଅବିଜିତ କଳିଙ୍ଗକୁ ବିଜୟ କରିବାର ଅଭିଯାନର ପୃଷ୍ଠ-ଭୂମିରେ ଅଶୋକଙ୍କର ସାମ୍ରାଜ୍ୟବାଦୀ ମନୋଧାରାର ଅଭିମିଳା ବିଦ୍ୟମାନ । ଏହି ଅଭିମିଳାର ଉଚିତ ପରିପ୍ରକାଶ ଘଟିଛି ତାଙ୍କର ତ୍ରୟୋଦଶ ଶିଳାଲିପିରେ । ନନ୍ଦରାଜାଙ୍କ ଦ୍ୱାରା ପୂର୍ବେ କଳିଙ୍ଗ ଅଧିକୃତ ହୋଇଥିଲା ବୋଲି ଅଶୋକ ଢୁଏତ ଜାଣିଥିବେ । ଜାଣି ମଧ୍ୟ 'ଅଜେୟ' କଳିଙ୍ଗ ବୋଲି ବର୍ଣ୍ଣନା କରିବାରେ ଅଶୋକଙ୍କର ଅଭିମିଳା ଓ ପରାକ୍ରମ ଏବଂ ଆତ୍ମ-ଗୌରବର ପରିଚୟ ମିଳିଯାଇଛି କେବଳ ।

ଡ. ପାଣିଗ୍ରାହୀଙ୍କ ଏହା ଉପରେ ଏତେ ମୂଲ୍ୟ ଦେବା ଉଚିତ ହୋଇନାହିଁ । 'ତିବସ-ସତ'କୁ ୧୦୩ ବର୍ଷ ବୋଲି ପ୍ରମାଣ କରିବା ନିମନ୍ତେ ସେ ଅଶୋକଙ୍କୁ 'ନନ୍ଦରାଜା' ବୋଲି ଗ୍ରହଣ କରିଛନ୍ତି; କିନ୍ତୁ ଏ ଧାରଣା ଭୁଲ !

ଡ. ଦୀନେଶ ଚନ୍ଦ୍ର ସରକାର କହିଛନ୍ତି ଯେ ହାତୀଗୁମ୍ଫାର ଶିଳାଲିପି ପ୍ରାଚୀନତା ଦୃଷ୍ଟିରୁ ବୋଧହୁଏ ନାନାଘାଟ ଶିଳା-ଲେଖର ପରବର୍ତ୍ତୀ ଏବଂ ନିଶ୍ଚୟ ବେସନଗରର ଶିଳାଲେଖର ପରବର୍ତ୍ତୀ ଏଥିରେ ସନ୍ଦେହର ଅବକାଶ ନାହିଁ । (୫୩) ରମାପ୍ରସାଦ ଚନ୍ଦ ମଧ୍ୟ

---

(୫୨) Corpus Inscriptionum Indicarum I

(୫୩) Select Insc. I, page 13

ବ୍ରାହ୍ମୀଲିପିର କ୍ରମିକ ଅଗ୍ରଗତିର ଗବେଷଣା କରି କହିଛନ୍ତି ଯେ ଅଶୋକଙ୍କର ଶିଳାଲିପି ପରେ ବ୍ରାହ୍ମୀ ଅକ୍ଷରର ପ୍ରଥମ ପର୍ଯ୍ୟାୟ ହୁଏ, ତେବେ ବେସନଗରର ଲିପି ପଞ୍ଚମ ପର୍ଯ୍ୟାୟ ଏବଂ ହାତୀଗୁମ୍ଫାର ଲିପି ଷଷ୍ଠ ପର୍ଯ୍ୟାୟ ବୋଲି ସ୍ୱୀକୃତ ହେବା ଉଚିତ। (୫୪) ଏହି ସମୟରେ ନାନାଘାଟ ଓ ବରହୁର ସ୍ତୂପର ପୂର୍ବ ପାର୍ଶ୍ୱସ୍ଥ ତୋରଣରେ ଯଥାକ୍ରମେ ନାୟନିକା ଓ ଧନଭୂତଙ୍କର ଲିପି ଲକ୍ଷିତ ହୋଇଥିଲା। ଏହି ଲିପିମାନଙ୍କରେ ଥିବା ଅକ୍ଷରମାନ ପର୍ଯ୍ୟାଲୋଚନା କଲେ ଅଶୋକଙ୍କ ଶିଳା-ଲିପିର ଅକ୍ଷରମାନଙ୍କ ସହିତ କ୍ୱଚିତ୍ ସାଦୃଶ୍ୟ ଦୃଷ୍ଟିଗୋଚର ହୁଏ । ତେଣୁ ହାତୀଗୁମ୍ଫାର ଶିଳାଲିପିକୁ ଆମେ ଖ୍ରୀ. ପୂ. ପ୍ରଥମ ଶତାବ୍ଦୀର ବୋଲି କହିବା ଭ୍ରମାତ୍ମକ ନୁହେ । ଡ. ସରକାର ପରିଷ୍କାର ନାନାଘାଟ ଶିଳାଲିପିକୁ ଖ୍ରୀଷ୍ଟପୂର୍ବ ପ୍ରଥମ ଶତକର ଶେଷାର୍ଦ୍ଧର ବୋଲି ମତପ୍ରକାଶ କରିଛନ୍ତି । (୫୫)

ଫର୍ଗୁସନ ଓ ବାର୍ଗେସ୍ (୫୬) ନାସିକର ଗୁମ୍ଫାମାନଙ୍କୁ ଖ୍ରୀ. ପୂ. ପ୍ରଥମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ବୋଲି କହିଛନ୍ତି । ସାର୍ ଜନ୍ ମାର୍ଶାଲ୍ ମଧ୍ୟ ଏହା ସ୍ୱୀକାର କରିଛନ୍ତି । (୫୭) ସେ କହନ୍ତି ଯେ ଏହି ସମୟରେ ନାସିକର ଏକ କ୍ଷୁଦ୍ର ବିହାର ଅନ୍ଧ୍ରସାତବାହନ ବଂଶର ଦ୍ୱିତୀୟ ରାଜା କୃଷ୍ଣଙ୍କ କାଳରେ ଚୈତ୍ୟରୂପେ ପୁନର୍ଗଠିତ ହୋଇଥିଲା । ତାହା ପରେ ହୋଇଥାଏ ତାହେଲେ କୃଷ୍ଣ ଖ୍ରୀ. ପୂ. ପ୍ରଥମ ଶତାବ୍ଦୀର ଶେଷଭାଗରେ ରାଜତ୍ୱ କରିଥିଲେ । ସୁତରାଂ ତାଙ୍କର ଉତ୍ତରାଧିକାରୀ ସାତକର୍ଣ୍ଣୀ ଓ ସାତକର୍ଣ୍ଣୀଙ୍କର ରାଣୀ ନାୟନିକାଙ୍କର ନାନାଘାଟ ଶିଳାଲିପି ଆହୁରି ପରବର୍ତ୍ତୀ କାଳର । ଏହା ଡ. ରାୟ ଚୌଧୁରୀଙ୍କ ମତ ସହିତ ସମ୍ପୂର୍ଣ୍ଣ ମିଳିଯାଉଛି ଏବଂ ଡ. ପାଣିଗ୍ରାହୀ ସାତକର୍ଣ୍ଣୀଙ୍କୁ ଖ୍ରୀ. ପୂ. ଦ୍ୱିତୀୟ ଶତକର ବୋଲି ପ୍ରମାଣ କରିବାର ଯେଉଁ ପ୍ରୟାସ କରିଥିଲେ, ତାହା ଠିକ୍ ନୁହେଁ । ତେଣୁ ଖାରବେଳ କେବେହେଁ ଖ୍ରୀ. ପୂ. ଦ୍ୱିତୀୟ ଶତାବ୍ଦୀର ନ ହୋଇ ଖ୍ରୀ. ପୂ. ପ୍ରଥମ ଶତକର ଶେଷାର୍ଦ୍ଧର ବୋଲି ପ୍ରମାଣିତ ।

‘ଏକରାଟ୍’ ଓ ‘ସର୍ବକ୍ଷତ୍ରାନ୍ତକ’ ଉପାଧିଧାରୀ ଉଗ୍ରସେନ ମହାପଦ୍ମ ନନ୍ଦ-ବଂଶର ପ୍ରତିଷ୍ଠାତା; କୁଇପ ଅସ୍ମକ, ବୀତିହୋତ୍ର, କୁରୁ, ପାଞ୍ଚାଳ ଆଦି ରାଜ୍ୟ ଅଧିକାର କରିବା କାଳରେ କଳିଙ୍ଗ ଅଧିକାର କରିଥିଲେ । ତାଙ୍କର ବିରାଟ ସୈନ୍ୟ ବାହିନୀର ଉଦ୍ଦେଶ୍ୟ ସମଗ୍ର ଭାରତବର୍ଷରେ ଆତଙ୍କ ସୃଷ୍ଟି କରିଥିଲା । ତା ନ ହୋଇଥିଲେ ପୁରାଣକାରମାନେ ତାଙ୍କୁ ‘ସର୍ବକ୍ଷତ୍ରାନ୍ତକ’ ଉପାଧି ଦେଇ ନ ଥାନ୍ତେ । ତେଣୁ ହାତୀଗୁମ୍ଫାର ନନ୍ଦରାଜାଙ୍କୁ ଆମେ ମହାପଦ୍ମ ନନ୍ଦ ବୋଲି ଗ୍ରହଣ କରୁଛୁ ।

‘ତିବସ-ସତ’କୁ ୩୦୦ ବର୍ଷ ଧରି ମହାପଦ୍ମ ନନ୍ଦଙ୍କ ଠାରୁ ଗଣନା ଆରମ୍ଭ କଲେ ଆମେ ଖ୍ରୀ. ପୂ. ପ୍ରଥମ ଶତାବ୍ଦୀରେ

---

(୫୪) M. A. S. I. No. 1

(୫୫) Select Inscriptions.

(୫୬) Cave Temples of India by Messrs Fergusson and Burgess.

(୫୭) C. H. India, Vol. I, 636 ff.

ଜଡ଼ିତ ହେଉଛି । ତା'ହାହିଁ ଖାରବେଳଙ୍କର ଚରିତ୍ର ସମ୍ପଦ ।

## ଖାରବେଳଙ୍କ ସାମ୍ରାଜ୍ୟ

ହାତୀଗୁମ୍ଫା ଶିଳାଲିପିରେ ଖାରବେଳଙ୍କ ବାଲ୍ୟକାଳର ଇତିହାସ ସଙ୍ଗେ ସଙ୍ଗେ ସାମ୍ରାଜ୍ୟ ଗଠନର ବର୍ଣ୍ଣନା ମଧ୍ୟ ପ୍ରଦତ୍ତ ହୋଇଅଛି । ତହିଁରେ ଖାରବେଳଙ୍କ ଅମାନୁଷିକ ଶକ୍ତି ଓ ପରାକ୍ରମର ଭୂୟସୀ ପ୍ରଶଂସା କରାଯାଇଛି । ସବୁ ଶୁଭଲକ୍ଷଣ ସମ୍ପନ୍ନ ଏହି କଳିଙ୍ଗାଧିପତିଙ୍କର ରାଜତ୍ୱ କାଳର ଉପାଖ୍ୟାନ ଅତି ସୁନ୍ଦର ଭାବରେ ପରିବର୍ଣ୍ଣିତ ହୋଇଛି ।

ଖାରବେଳ 'ଚେଦି' ନାମକ ରାଜବଂଶରେ ଜନ୍ମଗ୍ରହଣ କରିଥିଲେ । (୧) ଏହି ବଂଶର ସେ ଥିଲେ ତୃତୀୟ ରାଜା (୨) ପ୍ରଫେସର ଷ୍ଟେନ୍‌କୋନାଓ, ଡ. ଜୟସ୍ୱାଲ୍ ଓ ଡ. ବରୁଆ ତାଙ୍କୁ 'ଚେତ' ବା 'ଚେଦ' ବଂଶର ବୋଲି ଅଭିହିତ କରିଛନ୍ତି । (୩)

କୈଶୋର ଅବସ୍ଥାରେ ଖାରବେଳଙ୍କୁ ଶାସନକାର୍ଯ୍ୟର ସୁପରିଚାଳନା ସକାଶେ ଆବଶ୍ୟକୀୟ ଶିକ୍ଷା ପ୍ରଦାନ କରାଯାଇଥିଲା । ସାମରିକ ଶିକ୍ଷା ସଙ୍ଗେ ସଙ୍ଗେ ସେ ଲେଖ, ରୂପ, ଗଣନା ବ୍ୟବହାର ଆଦି ବିଦ୍ୟା ଲାଭ କରିଥିଲେ (୪)

ଷୋଡ଼ଶ ବର୍ଷ ବୟସରେ ସେ 'ଯୁବରାଜ' ପଦରେ ଅଭିଷିକ୍ତ ହୋଇଥିଲେ । ସେତେବେଳେ ତାଙ୍କର ବିଦ୍ୟାଲାଭ ସମାପ୍ତ ହୋଇଥିଲା ।

ଖାରବେଳଙ୍କ ସ୍ୱରଭିବ୍ୟଞ୍ଜକ ନିର୍ଦ୍ଦିଷ୍ଟକାଳର ଆଭାସ ମିଳୁଥିଲା ତାଙ୍କର ଅଙ୍ଗସୌଷ୍ଠବ ଓ ଶାରୀରିକ ଗଠନରୁ । ଯୁବରାଜ ଥିବା ସମୟରେ ସେ ନିଶ୍ଚୟ ସଂଗ୍ରାମ ଓ ଆତ୍ମସାଧନାର ଅଧ୍ୟବସାୟରେ ନିଜକୁ ନିୟୋଜିତ କରିଥିବେ । ଆତ୍ମସଂଯମ ଓ ସ୍ଥିର ଏବଂ ବିନୟ ଭାବ ହିଁ ସେ ସମୟରେ ରାଜାମାନଙ୍କର ପ୍ରଧାନ ଲକ୍ଷଣ ରୂପେ ବିବେଚିତ ହେଉଥିଲା, ଚାଣକ୍ୟଙ୍କ 'ଅର୍ଥଶାସ୍ତ୍ର'ର ଅନୁସରଣ କରି । (୫)

ଖାରବେଳ ଚତୁର୍ବିଂଶତ ବର୍ଷ ବୟସରେ କଳିଙ୍ଗର ସିଂହାସନ ଆରୋହଣ କରି ତେର ବର୍ଷ ମାତ୍ର ରାଜତ୍ୱ କରିଥିଲେ । (୬) ଏହି ସ୍ୱଳ୍ପ ସମୟ ମଧ୍ୟରେ ସେ କଳିଙ୍ଗର ଉତ୍ତର ଓ ଦକ୍ଷିଣରେ ଥିବା ସମସ୍ତ ରାଜ୍ୟ ଜୟ କରିଥିଲେ । (୭) ଅଶୋକଙ୍କ ଆକ୍ରମଣପରେ କଳିଙ୍ଗ ଧ୍ୱସ୍ତବିଧ୍ୱସ୍ତ

(୧) 'ଚେତିରାଜବଂଶ ବଧନ'

(୨) ତତିୟେ କଲିଙ୍ଗରାଜବଂଶେ ପୁରୁଷ ଯୁଗେ ମହାରାଜାଭିସେଚନଂ ପାପୁନାତି ।

(୩) Old Brahmi Inscriptions, page 233.

(୪) ହାତୀଗୁମ୍ଫା Inscriptions—Line 1

(୫) ଉଦ୍ୟୋଗବତୋ ରଜାସ୍ତ୍ୱଂ ପ୍ରଜାନାଂ ବଦନ୍ତେ ବଶ୍ୟ । ଅନର୍ଥଂ ଦୃଷ୍ଟ୍ୱା ସଂଚ୍ଚେ ସଂଚୁର୍ଣ୍ଣିତେ ରଣଃ । K. A.

(୬) History of Orissa— Dr. H. K. Mahatab and Early History of India—N. N. Ghosh.

(୭) Glimpses of Kalinga History—M. N. Das, page 60

ହୋଇଥିଲେ ସୁଦ୍ଧା କଳିଙ୍ଗର ସ୍ୱାଧୀନ ମନୋଭାବର ମୃତ୍ୟୁ ଘଟି ନ ଥିଲା । ଅଶୋକଙ୍କ ମୃତ୍ୟୁର କ୍ଷଣକାଳ ପରେ କଳିଙ୍ଗ ନିଶ୍ଚୟ ତାର ସ୍ୱାଧୀନତା ଘୋଷଣା କରିଥିବ । ସ୍ୱାଧୀନତା ଘୋଷଣା ଦ୍ୱାରା ଦୁଇଶତ ବର୍ଷ ମଧ୍ୟରେ ପୁଣି କଳିଙ୍ଗ ଏକ ଶକ୍ତିଶାଳୀ ରାଷ୍ଟ୍ର ହୋଇ ପାରିଥିଲା ବିଗତ ବିପର୍ଯ୍ୟୟର ପ୍ରତିଶୋଧ ନେବା ପାଇଁ । ଖାରବେଳଙ୍କ ଆବିର୍ଭାବ ସମୟକୁ କଳିଙ୍ଗରେ ତାଙ୍କ ଦିଗ୍‌ବିଜୟ ନିମନ୍ତେ ସବୁ ପ୍ରକାର କ୍ଷେତ୍ର ପ୍ରସ୍ତୁତ ହୋଇ ସାରିଥିଲା । ଏତେ ଅଳ୍ପକାଳ ମଧ୍ୟରେ ସେ ଯେ ଭଚର ସମଗ୍ର ଉତ୍ତର ଭାରତ ଓ ଦକ୍ଷିଣ ଭାରତରେ ନିଜର ବିଜୟକେତନ ଉଡ଼ାଇ ପାରିଲେ, ତାହା ହିଁ ଆଶ୍ଚର୍ଯ୍ୟର ବିଷୟ । ଖାରବେଳଙ୍କ ସମୟରେ କଳିଙ୍ଗର ସୈନ୍ୟସଂଖ୍ୟା କେତେ ଥିଲା ଜାଣିବାର ବର୍ତ୍ତମାନ କିଛି ଉପାୟ ନାହିଁ । ହାତୀଗୁମ୍ଫା ଶିଳାଲିପି ମଧ୍ୟ ସେ ସମ୍ବନ୍ଧରେ ସମ୍ପୂର୍ଣ୍ଣ ନୀରବ ।

ହାତୀଗୁମ୍ଫା ଶିଳାଲିପିର ଚତୁର୍ଥ ଧାଡ଼ିରୁ ଆମେ ଜାଣୁ ଯେ ଖାରବେଳ ତାଙ୍କ ରାଜତ୍ୱର ଦ୍ୱିତୀୟ ବର୍ଷରେ କଳିଙ୍ଗର ପଶ୍ଚିମ ଦିଗକୁ ସୈନ୍ୟ ପ୍ରେରଣ କରିଥିଲେ । ଏହି ବର୍ଷରୁ ତାଙ୍କ ସାମ୍ରାଜ୍ୟ ସ୍ଥାପନର ପ୍ରଚେଷ୍ଟା ଆରମ୍ଭ ହେଲା । ପଶ୍ଚିମ ଦିଗକୁ ସୈନ୍ୟପ୍ରେରଣ କରିବା ପୂର୍ବରୁ ଚକ୍ରବର୍ତ୍ତୀ ଖାରବେଳ ନିଶ୍ଚୟ ସୈନ୍ୟବାହିନୀର ଶକ୍ତିବୃଦ୍ଧି ଉନ୍ନତ ସାଧନ କରି ତାକୁ ଅଜେୟ କରିଥିଲେ ।(୮) ଏହି ଦୁର୍ଜୟ କଳିଙ୍ଗସେନାର ଶକ୍ତି ପ୍ରଥମେ ନିୟୋଜିତ ହୋଇଥିଲା ଆନ୍ଧ୍ର ସାତବାହନବଂଶର ତୃତୀୟ ରାଜା ସାତକର୍ଣ୍ଣୀଙ୍କ ବିରୁଦ୍ଧରେ ।(୯) ସାତକର୍ଣ୍ଣୀଙ୍କ ସହିତ ଖାରବେଳଙ୍କ ଯୁଦ୍ଧର କାରଣ ଇତିହାସର ଅତଳ ଗର୍ଭରେ ଅଜ୍ଞାତ ହୋଇ ରହିଛି । ହୁଏତ କଳିଙ୍ଗାଧିପତିଙ୍କର ସାମ୍ରାଜ୍ୟ ବିସ୍ତାର ଉଚ୍ଚାକାଂକ୍ଷାରେ ପ୍ରତିବେଶୀ ସାତକର୍ଣ୍ଣୀ କୌଣସି ପ୍ରକାର ଅନ୍ତରାୟ ସୃଷ୍ଟି କରିଥିବେ । ଏହି ଆକସ୍ମିକ ଆକ୍ରମଣର ପ୍ରତିରୋଧ କରିବା ସାତକର୍ଣ୍ଣୀଙ୍କ ପକ୍ଷରେ ସମ୍ଭବପର ନ ଥିଲା । ଅଗତ୍ୟା ବାଧ୍ୟ ହୋଇ ସେ ପରାଜୟ ସ୍ୱୀକାର କରିଥିଲେ ।

ତତ୍ପରେ କଳିଙ୍ଗବାହିନୀ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ ନ କରି କୃଷ୍ଣାନଦୀର ତୀରସ୍ଥ ଅସିକ ନଗର (୧୦) ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ । ପୁରାଣମାନଙ୍କର ବର୍ଣ୍ଣନାରୁ ପ୍ରକାଶ ହୁଏ ଯେ ଏହି କୃଷ୍ଣାନଦୀ ତୀରର ରାଜ୍ୟମାନେ ଅତି ପରାକ୍ରମୀ ଥିଲେ । କିନ୍ତୁ ଖାରବେଳଙ୍କ ଅଗ୍ରଗତିକୁ ପ୍ରତିରୋଧ କରିବାର ଦୁଃସାହସ ସେମାନଙ୍କର ନ ଥିଲା । ଅସିକନଗରବାସୀଙ୍କୁ ଆତଙ୍କିତ କରି ସର୍ବେ ଏକବର୍ଷର ବିଜୟଯାତ୍ରା ପରେ ଖାରବେଳ କଳିଙ୍ଗ ନଗରକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

---

(୮) 'ଅପ୍ରତିହତଚକ୍ର ବାହନବଳୋ'

(୯) History of Orissa, Vol. II Ed. by Dr. N. K. Sahu, page 327.

(୧୦) ଅସିକନଗରକୁ ଡ. ଜୟସ୍ୱାଲ ଓ ପ୍ରଫେସର ବରୁଆ ଆଦି ଏହାକୁ 'ମୂଷିକନଗର' ବୋଲି ପାଠ କରିଅଛନ୍ତି ।

ରାଜତ୍ୱର ତୃତୀୟ ବର୍ଷରେ ଖାରବେଳ କେଉଁଠାକୁ ସୈନ୍ୟଯାତ୍ରା କରିଥିବାର ପ୍ରମାଣ ଆଦୌ ମିଳିନାହିଁ । ବରଂ ସେହି ବର୍ଷ ସେ ଆନନ୍ଦରେ ଉତ୍ଫୁଲ୍ଲ ହୋଇ ଆମୋଦ-ପ୍ରମୋଦରେ ସମୟ ଅତିବାହିତ କରିଥିଲେ ବୋଲି ହାତୀଗୁମ୍ଫା ଶିଳା-ଲିପିରେ ବର୍ଣ୍ଣିତ ହୋଇଛି ।

କିନ୍ତୁ ଚତୁର୍ଥ ବର୍ଷରେ ପୁଣି କଳିଙ୍ଗ ସୈନ୍ୟବାହିନୀର ରଣ ଦୁନ୍ଦୁଭିରେ ବିନ୍ଧ୍ୟାଚଳ କମ୍ପାୟିତ ହୋଇଉଠିଥିଲା । ଅରକଡ଼ପୁରର ବିଦ୍ୟାଧରମାନଙ୍କୁ ଅଧିକାର କରି ଖାରବେଳ ରଥିକ ଓ ଭୋଜକମାନଙ୍କୁ ଆକ୍ରମଣ କରିଥିଲେ । ଯୁଦ୍ଧରେ ପରାସ୍ତ ହୋଇ ସେମାନେ କଳିଙ୍ଗ ସମ୍ରାଟଙ୍କର ଅଧୀନତା ସ୍ୱୀକାର କରି-ଥିଲେ । (୧୧)

ଖାରବେଳଙ୍କ ରାଜତ୍ୱର ଅଷ୍ଟମବର୍ଷ କେବଳ କଳିଙ୍ଗ ଇତିହାସରେ କାହିଁକି ଭାରତ ଇତିହାସରେ ମଧ୍ୟ ଏକ ଯୁଗାନ୍ତ-କାରୀ ସମୟ । ସେହି ବର୍ଷ ଦକ୍ଷିଣ ଭାରତ ପ୍ରତି ଦୃଷ୍ଟି ପାତ ନ କରି ମହାମେଘବାହନ କଳିଙ୍ଗ ସମ୍ରାଟ ଉତ୍ତର ଭାରତ ଅଧିକାର କରିବାରେ ଆକାଂକ୍ଷା ପ୍ରକାଶ କରିଥିଲେ । ମହାପଦ୍ମନନ୍ଦ ଓ ଅଶୋକଙ୍କ ଦ୍ୱାରା ଦୁଇଥର ପରାଜିତ ହେବା ଦ୍ୱାରା କଳିଙ୍ଗ-ବାସୀଙ୍କ ମନ ମଧ୍ୟରେ ପ୍ରତିଶୋଧ ବହ୍ନି ଅଧିକତର ପ୍ରଜ୍ୱଳିତ ହୋଇଥିବା ସ୍ୱାଭାବିକ । ମଗଧ ସାମ୍ରାଜ୍ୟର ଜନ୍ମ ଓ ବର୍ଦ୍ଧିଷ୍ଣୁ ବକ୍ଷ ଉପରେ ପଦାଘାତ କରିବାକୁ ଥିଲା ସେମାନଙ୍କର ଏକମାତ୍ର ଓ ପ୍ରଧାନ ଅଭିଳାଷ । ଖ୍ରୀ ପୂ. ୨୬୧ ରେ ଘଟିଥିବା ରଣ ତାଣ୍ଡବର ମର୍ମନ୍ତୁଦ ପରିଣାମ ସେମାନଙ୍କ ସ୍ମୃତିପଥରୁ ଲିଭି ଯାଇ ନ ଥିଲା । ସେମାନେ କେବଳ ସୁଯୋଗ ଓ ସମୟର ପ୍ରତୀକ୍ଷାରେ ଥିଲେ । ଚେତ ରାଜବଂଶର ଅଭ୍ୟୁଦୟ ଫଳରେ ଏହି ଅଭିଳାଷ ପରିପୂରଣର ପଥ ସୁଗମ ହୋଇଗଲା ।

କଳିଙ୍ଗରେ ଚେତ ରାଜବଂଶର ଆବିର୍ଭାବ ବେଳକୁ ମଗଧର ରାଜନୈତିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇ ପଡିଥିଲା । ଗ୍ରୀକମାନଙ୍କ ଦ୍ୱାରା ବାରମ୍ବାର ଆକ୍ରମିତ ହୋଇ ମଧ୍ୟ ମଗଧ ସାମ୍ରାଜ୍ୟର ଅସ୍ତିତ୍ୱ କିଛି ଅବଶିଷ୍ଟ ରହିଥିଲା ମାତ୍ର । ଏହି ସମୟରେ ମଗଧ ଆକ୍ରମଣ କରି କାଣ୍ୱବଂଶର ଶେଷ ରାଜା ସୁଶର୍ମଙ୍କୁ ହତ୍ୟା କରିଥିଲେ ଅନ୍ଧ୍ର ସାତବାହନ ବଂଶର ପ୍ରତିଷ୍ଠାତା ସିମୁକ । ସିମୁକଙ୍କର ଅଳ୍ପକାଳ ପରେ କଳିଙ୍ଗ ସୈନ୍ୟବାହିନୀ ଅଗ୍ରସର ହୋଇଥିଲେ ପାଟଳିପୁତ୍ର ଅଭି-ମୁଖରେ ଏବଂ ଖାରବେଳ ଗ୍ରହଣ କରିଥିଲେ ଏହାର ନେତୃତ୍ୱ । ଦକ୍ଷିଣ ଭାରତର ଅପ୍ରତିଦ୍ୱନ୍ଦ୍ୱୀ ଶାସକ ହିସାବରେ ତାଙ୍କର ଶକ୍ତି ଓ ସୈନ୍ୟସଂଖ୍ୟା ଅନେକ ପରି-ମାଣରେ ନିଶ୍ଚୟ ବୃଦ୍ଧି ପାଇଥିବ । ଏହି ଅପରିମେୟ ଶକ୍ତି ସମକ୍ଷରେ ଉତ୍ତର ଭାରତ ରାଜନୈତିକ ବିପର୍ଯ୍ୟୟ କୌଣସି ଅନ୍ତରାୟ ସୃଷ୍ଟି କରିବା ପରିବର୍ତ୍ତେ ପ୍ରତ୍ୟକ୍ଷ ଓ ପରୋକ୍ଷରେ ଦିଗ୍‌ବିଜୟର କ୍ଷେତ୍ର ଓ ପଥ ସୁଗମ କରିଥିବ । ମଗଧର ରାଜଧାନୀ ପାଟଳିପୁତ୍ର ଅଧିକାର କରିବା ପୂର୍ବରୁ ଗୋରଥଗିରିର ଧ୍ୱଂସ ସାଧିତ ହୋଇଥିବ । ପାଟଳିପୁତ୍ରର ପ୍ରବେଶ

(୧୧) ରଥିକ (ରଷ୍ଟ୍ରିକ) ଓ ଭୋଜକ-ମାନଙ୍କୁ ଅଶୋକଙ୍କ ଶିଳାଲିପିରେ ମଧ୍ୟ ଉଲ୍ଲେଖ କରାଯାଇଛି ।

ଦ୍ୱାରରେ ଛିଡ଼ା ହୋଇଥିଲା ଗୋରଥ-ଗିରିର ଅଭେଦ୍ୟ ଦୁର୍ଗ ଯାହାର ଧ୍ୱଂସରେ ପାଟଳିପୁତ୍ରର ଧ୍ୱଂସ ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା । ଗୋରଥଗିରି ଅଧିକାର ପରେ ରାଜଗୃହ ମଧ୍ୟ ଖାରବେଳ ଅଧିକାର କରିଥିଲେ (୧୨) ।

ପାଟଳିପୁତ୍ରରେ ଖାରବେଳଙ୍କୁ ପ୍ରତିରୋଧ କରିବାର ସାହସ ବୋଧହୁଏ କେହି କରି ନ ଥିଲେ । ଯଦି ବା ପ୍ରତିବନ୍ଧକ ସୃଷ୍ଟି ହୋଇଥିବ, ତେବେ ତାହା ଅତି ସାଧାରଣ ଧରଣର ଯାହାକୁ ଖାରବେଳ ଅନାୟାସରେ ଅତିକ୍ରମ କରିଥିବେ ।

ପାଟଳିପୁତ୍ର ଅଧିକୃତ ହେବାର ଠିକ୍ ଅବ୍ୟବହିତ ପୂର୍ବରୁ ଖାରବେଳ ଆଉ ଏକ ଶତ୍ରୁର ସମ୍ମୁଖୀନ ହୋଇଥିଲେ । ହାତୀଗୁମ୍ଫା ଶିଳାଲେଖର ଅଷ୍ଟମ ଧାଡ଼ିରେ ଏହି ଶତ୍ରୁଙ୍କୁ 'ଯବନରାଜ' ବୋଲି ଅଭିହିତ କରାଯାଇଛି । ଡ. ଜୟସ୍ୱାଲ କହନ୍ତି ଯେ ଉକ୍ତ ଧାଡ଼ିରେ ଯବନରାଜ ଡିମିତ ବୋଲି ଉଲ୍ଲେଖ ଅଛି; (୧୩) କିନ୍ତୁ ଡ. ବେଣୀମାଧବ ବଡ଼ୁଆ (୧୪) ଓ ଡ. ଦିନେଶଚନ୍ଦ୍ର ସରକାର (୧୫) ତାହା ଅସ୍ୱୀକାର କରନ୍ତି । ଏହି 'ଯବନରାଜ' ବୋଧହୁଏ କୌଣସି ଗ୍ରୀକ୍ ବା ତାଙ୍କ ଆକ୍ରମଣକାରୀଙ୍କୁ ଉଦ୍ଦେଶ୍ୟ କରି ଲେଖା-ଯାଇଛି । ଉକ୍ତ 'ଯବନରାଜ' ମଗଧ ଆକ୍ରମଣ କରିବା ସମୟରେ ଖାରବେଳ ମଧ୍ୟ ଆକ୍ରମଣ କରିଥିଲେ । ତେଣୁ ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେବା ଅବଶ୍ୟମ୍ଭାବୀ ହୋଇଥିଲା । ଖାରବେଳଙ୍କ ଆଗମନରେ ଅସ୍ଥିର ହୋଇ ଯବନରାଜ ଯୁଦ୍ଧର ସମ୍ମୁଖୀନ ହେବା ପରିବର୍ତ୍ତେ ମଥୁରାକୁ ପଳାୟନ କରିଥିଲେ । ସେତେବେଳେ କଳିଙ୍ଗ ସମ୍ରାଟ୍ ଦୂରଦର୍ଶୀ ରାଜନୀତିଜ୍ଞ ହିସାବରେ ଯବନରାଜଙ୍କୁ ଭାରତରୁ ବହିଷ୍କାର କରିବାରେ ପରାଙ୍ମୁଖ ହୋଇ ନ ଥିଲେ । (୧୬) ଫଳତଃ କଳିଙ୍ଗସେନା ମଥୁରା ଅଭିମୁଖରେ ଯାତ୍ରା କରିଥିଲେ । କିନ୍ତୁ ଯବନରାଜ ଆତ୍ମରକ୍ଷା କରିଥିଲେ ଚିରଦିନ ପାଇଁ ଭାରତରୁ ପଳାୟନ କରି ।

ଉତ୍ତର ଭାରତର ବିଜୟ ପରେ ଖାରବେଳଙ୍କର ଯୁଦ୍ଧ-ଜନିତ ସ୍ପୃହା ସମ୍ଭବତଃ ଅଧିକ ପରିତୃପ୍ତ ହୋଇଥିଲା; କିନ୍ତୁ ବିଜୟର ସୁଯୋଗ ନେଇ କଳିଙ୍ଗ ସମ୍ରାଟ୍ ଲୁଣ୍ଠନର ପରିସ୍ଥିତି ସୃଷ୍ଟି କରି ନ ଥିଲେ । ମଥୁରାବାସୀଙ୍କୁ ଆମୋଦପ୍ରମୋଦରେ ଆପ୍ୟାୟିତ କରି ସେ ବୃନ୍ଦାବନମୁଖେ ଯାତ୍ରା କରିଥିଲେ । (୧୭)

---

(୧୨) ଅଂମେ ଚ ଦସେ ମହତ ସେନାୟ ମଧୁରଂ ଅନୁପତୋ!

ଗୋରଧଗିରିଂ ଘାତାପୟିତା ରାଜଗହଂ ଉପପୀଡାପୟତ ।

(୧୩) J. B. O. R. S. XIII 1929, page 221 and 228.

(୧୪) O. B. Inscriptions, page 18.

(୧୫) Selected Inscriptions —Dr. D. C. Sarcar, page 208

(୧୬) History of Orissa, Vol. II, Ed. by Dr. N. K. Sahu, page 328.

(୧୭) Hathingumpha Inscriptions—Line 9 (7)

ତା ପରେ ଦଶବର୍ଷ ପର୍ଯ୍ୟନ୍ତ ଖାରବେଳ ପୁନର୍ବାର ଉତ୍ତର ଭାରତ ଆକ୍ରମଣ କରି ନ ଥିଲେ । ଏହି ସମୟ ମଧ୍ୟରେ ଦକ୍ଷିଣ ଭାରତ ପ୍ରତି ତାଙ୍କର ଦୂର ଦୃଷ୍ଟି ଆକର୍ଷଣ କରିଥିଲା । ରାଜତ୍ୱର ନବମ ବର୍ଷରେ ବିଜୟର ଚିହ୍ନ ସ୍ୱରୂପ ସେ ବହୁ ଅର୍ଥବ୍ୟୟରେ ଏକ ବିରାଟ ପ୍ରାସାଦ ନିର୍ମାଣ କରାଇଥିଲେ । (୧୮) ରାଜତ୍ୱର ଏକାଦଶ ବର୍ଷରେ ଦାକ୍ଷିଣାତ୍ୟର ମୂସଲମାନଙ୍କ ବିରୁଦ୍ଧରେ ସେ ଯୁଦ୍ଧଯାତ୍ରା କରିଥିଲେ । କଳିଙ୍ଗରେ ଖାରବେଳଙ୍କର ଅନୁପସ୍ଥିତିର ସୁଯୋଗ ନେଇ ଦାକ୍ଷିଣାତ୍ୟର ଅଧିକୃତ ରାଜ୍ୟମାନଙ୍କରେ ବୋଧହୁଏ ବିଦ୍ରୋହର ଆୟୋଜନ ହୋଇଥିଲା ସ୍ୱାଧୀନତା ସକାଶେ । କାରଣ ତାମିଲ ରାଷ୍ଟ୍ରମାନେ ଏକତ୍ର ହୋଇ ଖାରବେଳଙ୍କ ବିରୁଦ୍ଧରେ ସଂଗ୍ରାମ କରିବାର ବାର୍ତ୍ତା ଆମେ ହାତୀଗୁମ୍ଫା ଶିଳାଲିପିରୁ ପାଉଁ । ଯୋଧାନ୍ୱିତ ସମ୍ରାଟ୍ ପ୍ରଥମେ ମୂସଲମାନଙ୍କ ଧ୍ୱଂସ ସାଧନ କରି ତାମିଲ ରାଷ୍ଟ୍ରମାନଙ୍କୁ ଅତି ବିଚକ୍ଷଣତା ସହକାରେ ପରାସ୍ତ କରି-ଥିଲେ । ତାମିଲ ରାଷ୍ଟ୍ରମାନଙ୍କ ସଂଘ ତେର ଶହ ବର୍ଷ ପୂର୍ବରୁ ଗଠିତ ହୋଇଥିଲା ବୋଲି ଶିଳାଲିପିରେ ଉଲ୍ଲେଖ କରାଯାଇଛି । (୧୯) ସାତକର୍ଣ୍ଣୀଙ୍କର ପରାଜୟ ପରେ ପୁଣି ଏହି ତାମିଲସଂଘ ଖାରବେଳଙ୍କ ପ୍ରତ୍ୟେ ଶତ୍ରୁତାଚରଣ କରିଥିଲା । ଉତ୍ତର ଭାରତରେ ଥିବା ସମୟରେ ଖାରବେଳ ନିଶ୍ଚୟ ତାମିଲ ରାଷ୍ଟ୍ରମାନଙ୍କର ଶକ୍ତିବୃଦ୍ଧିକୁ ଏକ ଅନାଗତ ଭବିଷ୍ୟତର ବିପଦ ସଙ୍କେତ ବୋଧ କରି ସେମାନଙ୍କର ଉଚ୍ଛେଦ ସାଧନରେ ବାଧ୍ୟ ହୋଇଥିଲେ । ରାଜତ୍ୱର ଏକାଦଶ ବର୍ଷରେ ତାଙ୍କର ଦାକ୍ଷିଣାତ୍ୟ ବିଜୟ ତାଙ୍କୁ ଅଧିକ ମହୀୟାନ୍ କରି ଅପ୍ରତିଦ୍ୱନ୍ଦ୍ୱୀ ବୋଲି ପ୍ରମାଣିତ କଲା । ରାଜତ୍ୱର ଅବଶିଷ୍ଟ କାଳରେ ସେ ଦକ୍ଷିଣ ଭାରତରୁ କୌଣସି ପ୍ରକାର ବିପଦର ଆଶଙ୍କା କରି ନ ଥିଲେ ।

ଖାରବେଳଙ୍କ ସଂଗ୍ରାମ ଏତିକରେ ଶେଷ ହୋଇ ନ ଥିଲା । ନିର୍ବାଣୋନ୍ମୁଖ ପ୍ରଦୀପର ଶେଷ ପ୍ରକାଶ ସଦୃଶ ଖାରବେଳ ପୁଣି ସୈନ୍ୟଚାଳନା କରି-ଥିଲେ ଉତ୍ତର ଭାରତ ଅଭିମୁଖରେ । ପ୍ରଥମ ଥର ଉତ୍ତର ଭାରତ ଆକ୍ରମଣରେ ବୋଧହୁଏ ସାମ୍ରାଜ୍ୟବାଦୀ ଖାରବେଳଙ୍କର ମନତୋଷ ହୋଇ ନ ଥିଲା । ମଗଧ ସାମ୍ରାଜ୍ୟର ରାଜଧାନୀ ପାଟଳୀପୁତ୍ର ଅଧିକାର ପାଇଁ ବୋଧହୁଏ ସେ ସମୟ ପାଇ ନ ଥିଲେ । କାରଣ ଅଧିକାରର ଅବ୍ୟବହିତ ପୂର୍ବରୁ ତାଙ୍କର ଅନ୍ତର୍ଗତରେ ପ୍ରତିବନ୍ଧକ ସୃଷ୍ଟି କରିଥିଲେ ଯବନରାଜ । କଳିଙ୍ଗବାସୀଙ୍କ ଅନ୍ତର ଦୃଢମୂଳରୁ ବୋଧହୁଏ ପ୍ରତିଶୋଧର ଦାବାଗ୍ନି ପୂର୍ଣ୍ଣ ନିର୍ବାପିତ ହୋଇ ନ ଥିଲା । କଳିଙ୍ଗର ଇଷ୍ଟଦେବତା ଯେ ପର୍ଯ୍ୟନ୍ତ ରହିଥିଲେ ସୁଦୂର ପାଟଳୀ-ପୁତ୍ରରେ ମୂକ ଶତ୍ରୁର କବଳରେ ହୋଇ । ସେହି କଳିଙ୍ଗ ଜିନଙ୍କର ପୁନରୁଦ୍ଧାର ବୋଧହୁଏ ଖାରବେଳଙ୍କର ଦ୍ୱିତୀୟ ଥର ଉତ୍ତର ଭାରତ ଆକ୍ରମଣର ପ୍ରଧାନ କାରଣ ।

---

(୧୮) ଦଶମ ବର୍ଷର ଘଟଣାବଳୀ ଶିଳା-ଲେଖରୁ ଅସ୍ପଷ୍ଟ ହୋଇଯାଇଛି । ତାହା ପାଠ କରିବା ସମ୍ଭବ ନୁହେଁ ।

(୧୯) 'ତେରସ-ବସ-ସତ-କଂ ଭିଦତି ତମିର-ଦହ-ସଘାତଂ ।'

ଏହି ଦ୍ୱିତୀୟ ବାର ଆକ୍ରମଣରେ ଉତ୍ତର ଭାରତର ସମସ୍ତ ରାଜା ଓ ମଗଧର ଅଧିବାସୀମାନଙ୍କୁ ଖାରବେଳ ସନ୍ତ୍ରସ୍ତ କରି ପକାଇଥିଲେ । (୨୦) ଅଙ୍ଗ ଓ ମଗଧ ଅଧିବାସୀଙ୍କ ମନରେ ଆତଙ୍କ ସୃଷ୍ଟି କରି ଖାରବେଳ ତାଙ୍କର ଅଶ୍ୱ ଓ ଗଜମାନଙ୍କୁ ଭାଗୀରଥୀରେ ଜଳପାନ କରାଇଥିଲେ । ଉତ୍ତର ଭାରତର ରାଜାମାନେ ତାଙ୍କର ବଶ୍ୟତା ସ୍ୱୀକାର କରିବା ପରେ ମଗଧର ରାଜା ବୃହସ୍ପତି ମିତ୍ରଙ୍କୁ (୨୧) ପାଦ-ବନ୍ଦନା କରିବା ପାଇଁ ବାଧ୍ୟ କରିଥିଲେ ।

ତତ୍ପରେ ଖାରବେଳ କଳିଙ୍ଗଜିନଙ୍କୁ ଉଦ୍ଧାର କରିଥିଲେ ପାଟଳୀପୁତ୍ରର ରାଜପ୍ରାସାଦରୁ । ଏହି କଳିଙ୍ଗଜିନଙ୍କୁ ତିନିଶହ ବର୍ଷ ପୂର୍ବେ କଳିଙ୍ଗବିଜେତା ନନ୍ଦରାଜ ତାଙ୍କ ରାଜପୁର ପାଟଳି ପୁତ୍ର ଏଠାରୁ ନେଇ ଯାଇଥିଲେ । ସେ ସମୟରେ କଳିଙ୍ଗ ଜୈନଧର୍ମର କେନ୍ଦ୍ରସ୍ଥଳୀ ହେତୁ ଜିନ ଥିଲେ ତାଙ୍କ ଇଷ୍ଟଦେବ । ଜୈନ-ସମ୍ରାଟ୍ ଖାରବେଳ କେଉଁ କଳିଙ୍ଗଜିନଙ୍କୁ ଅବହେଳା କରିପାରନ୍ତେ କିପରି ? ତିନିଶହ ବର୍ଷର ଅନ୍ତରାଳ ପରେ କଳିଙ୍ଗ-ଜିନ ସ୍ୱସ୍ଥାନକୁ ଆଗତ ହୋଇଥିବାରୁ ଏକ ବିରାଟ ଶୋଭାଯାତ୍ରାର ଆୟୋଜନ କରି-ଥିଲେ । କଳିଙ୍ଗଜିନ ଶୋଭାଯାତ୍ରା ଶୁଭ ଅଭିଷେକ ମଧ୍ୟରେ ନଗର ପୂର୍ବ ସ୍ଥାନକୁ ଫେରି ଆସିଥିଲେ ।

ଖାରବେଳ ମଗଧରୁ କେବଳ କଳିଙ୍ଗଜିନଙ୍କୁ ଆଣିଲେ ନାହିଁ, ସଙ୍ଗେ ବହୁ ପରିମାଣରେ ଧନରତ୍ନ ମଧ୍ୟ ମଗଧ ଓ ଅଙ୍ଗର ଅଧିବାସୀମାନଙ୍କ ଠାରୁ ଆଣିଥିଲେ । (୨୨) ଏହି ଅର୍ଥ କଳିଙ୍ଗ ନଗରର ଶ୍ରୀବୃଦ୍ଧି ସାଧନ ନିମନ୍ତେ ବ୍ୟୟିତ ହୋଇଥିବ । କଳିଙ୍ଗ ଓ ମଗଧ ଉଭୟରେ ଥିବା ଉଭୟଙ୍କ ଶତ୍ରୁତାର ପରିସମାପ୍ତି ଘଟିଥିଲା ଏହିପରି ଭାବରେ ।

ସ୍ୱଦେଶାଗତ ତେଜସ୍ୱୀ ଖାରବେଳ ତଥାପି ସ୍ଥିର ହୋଇ ରହି ପାରିଲେ ନାହିଁ । ସେହି ବର୍ଷ ସେ ଦକ୍ଷିଣାପଥ ଅଭିଯାନ କରି ପାଣ୍ଡ୍ୟରାଜ୍ୟକୁ ଆକ୍ରମଣ କଲେ । ହାତୀଗୁମ୍ଫା ଶିଳାଲିପିରେ ପାଣ୍ଡ୍ୟରାଜାଙ୍କ ନାମୋଲ୍ଲେଖ ନାହିଁ । ପାଣ୍ଡ୍ୟରାଜା ବାଧ୍ୟ ହୋଇଥିଲେ ଖାରବେଳଙ୍କ ବଶ୍ୟତା ସ୍ୱୀକାର କରିବାକୁ । ଫଳତଃ ତାଙ୍କୁ ବହୁପରିମାଣରେ ମୁକ୍ତା, ହୀରା ଆଦି ମୂଲ୍ୟବାନ୍ ପଦାର୍ଥ ଭେଟି ଦେବାକୁ ପଡ଼ିଥିଲା । (୨୩)

ପାଣ୍ଡ୍ୟରାଜାଙ୍କୁ ଜୟ କରିବା ବେଳକୁ କଳିଙ୍ଗ ସାମ୍ରାଜ୍ୟ ଉତ୍ତରରେ ପାଟଳୀପୁତ୍ର-ଠାରୁ ଦକ୍ଷିଣରେ ପାଣ୍ଡ୍ୟ ପର୍ଯ୍ୟନ୍ତ ଏବଂ ପୂର୍ବରେ ବଙ୍ଗୋପସାଗରଠାରୁ ପଶ୍ଚିମରେ ବିନ୍ଧ୍ୟାଞ୍ଚଳର ବସ୍ତି ଓ ସୋନ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । ଡ଼. ବେଣୀମାଧବ ବରୁଆ ଗୋଦାବରୀ ନଦୀକୁ ଖାରବେଳଙ୍କ ସାମ୍ରାଜ୍ୟର ଦକ୍ଷିଣ ପ୍ରାନ୍ତ ବୋଲି ଗ୍ରହଣ କରିଥାନ୍ତି । ଅନ୍ୟ କେତକ ଐତିହ

(୨୦) 'ଉତରାପଧରାଜାନୋ ମଗଧାନଂ ଚ ବିପୁଲଂ ଭୟଂ ଜନେତୋ ।

(୨୧) 'ବହସତି ମିତଂ ପଦେ ବନ୍ଦାପୟତି'

(୨୨) ଓଡ଼ିଶା ଇତିହାସ, Dr. H. K. Mahatab, page 29

(୨୩) Hathigumpba Inscription—Line 18, Old Brahmi Inscription, page 22.

ହୋଇ ଗୋଦାବରୀ ମୁହାଣରେ ସ୍ଥିତ କଳିଙ୍ଗ ସାମ୍ରାଜ୍ୟର ଦକ୍ଷିଣସୀମାରେ ପ୍ରତିଷ୍ଠିତ ହୋଇଥିବ । କିନ୍ତୁ ଖାରବେଳଙ୍କ ରାଜତ୍ୱର ଦ୍ୱାଦଶବର୍ଷରେ ପାଣ୍ଡ୍ୟରାଜା କଳିଙ୍ଗ ସମ୍ରାଟଙ୍କର ଅଧୀନତା ସ୍ୱୀକାର କରିଥିବାରୁ ଆମେ ଗୋଦାବରୀ ନଦୀକୁ ଦକ୍ଷିଣ ସୀମା ରୂପେ ଗ୍ରହଣ କରି ନ ପାରୁ । ହାତୀଗୁମ୍ଫା ଶିଳାଲେଖରୁ ଆମେ ଜାଣୁଛୁ ଯେ ପଶ୍ଚିମଦିଗରେ ଖାରବେଳ ସାତକର୍ଣ୍ଣୀଙ୍କୁ ଜୟ କରି ଅସିକ ନଗର ପର୍ଯ୍ୟନ୍ତ ଅଧିକାର କରିବା ହେତୁ କୋଶଳ ତଥା ଦକ୍ଷିଣକୋଶଳ ( ୨୪ ) ନିଶ୍ଚୟ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିବ । ଡ. ଷ୍ଟେନକୋନାଓ ଓ ଡ. ଜୟସ୍ୱାଲ କହନ୍ତି ଯେ ଅଶୋକ କଳିଙ୍ଗବିଜୟ ପରେ ଏହି କୋଶଳ ଅଞ୍ଚଳକୁ ଜୟ କରି ନ ପାରି 'ଅନ୍ତା ଅବିଜିତା' ନାମରେ ଅଭିହିତ କରିଥିଲେ । (୨୫) କୋଶଳର ଅଭେଦ୍ୟ ଅରଣ୍ୟ ମଧ୍ୟରେ ସେତେବେଳେ ବାସ କରୁଥିଲେ ଆଟବିକମାନେ । ଖାରବେଳଙ୍କ ପଶ୍ଚିମ ଦିଗକୁ ସୈନ୍ୟ-ପ୍ରେରଣ ଫଳରେ ସେହି ଅଂଚଳ କଳିଙ୍ଗର ଅନ୍ତର୍ଭୁକ୍ତ ହୋଇଥିଲା ।

ଏହି ବିସ୍ତୀର୍ଣ୍ଣ ସାମ୍ରାଜ୍ୟର ଅଧୀଶ୍ୱର ହୋଇ ଖାରବେଳ ପୁନର୍ବାର ଯୁଦ୍ଧ କରିବାର ଇଚ୍ଛା ପ୍ରକାଶ କରି ନ ଥିଲେ । ରାଜତ୍ୱର ତ୍ରୟୋଦଶ ବର୍ଷ ସେ ଅତିବାହିତ କରିଥିଲେ ଧର୍ମକାର୍ଯ୍ୟରେ । ତା ପରେ ମହା ମେଘବାହନଙ୍କର ଇତିହାସ ସମ୍ପର୍କରେ ହାତୀଗୁମ୍ଫା ଶିଳାଲିପି ସମ୍ପୂର୍ଣ୍ଣ ନୀରବ । ବୋଧହୁଏ ସ୍ୱଇଚ୍ଛାରେ ରାଜପଦ ତ୍ୟାଗ କରି ଖାରବେଳ ଜୈନ ସନ୍ନ୍ୟାସୀର ପରିଚ୍ଛଦ ଗ୍ରହଣ କରିଥିଲେ, ମୌର୍ଯ୍ୟ ସାମ୍ରାଜ୍ୟର ପ୍ରତିଷ୍ଠାତା ଚନ୍ଦ୍ରଗୁପ୍ତଙ୍କ ସଦୃଶ ।

## ଖାରବେଳ ଓ ଜୈନଧର୍ମ

ଖାରବେଳଙ୍କ ରାଜତ୍ୱର ବହୁ ଶତବର୍ଷ ପୂର୍ବରୁ କଳିଙ୍ଗ ଦକ୍ଷିଣ ଭାରତରେ ଜୈନଧର୍ମର କେନ୍ଦ୍ରସ୍ଥଳୀ ଥିଲା । କଳିଙ୍ଗରେ ଥିବା ବ୍ରାହ୍ମଣ୍ୟଧର୍ମ ସହିତ ସମତାଳରେ ଗତି କରୁଥିଲା କି ନିଜର ପ୍ରାଧାନ୍ୟ ପ୍ରତିଷ୍ଠା କରିଥିଲା, ସେ ବିଷୟରେ ଆମର ଇତିହାସ ନୀରବ । ତେବେ ଏଠାରେ ଜୈନଧର୍ମାବଲମ୍ବୀମାନଙ୍କର ଇଷ୍ଟଦେବଙ୍କୁ କଳିଙ୍ଗ ଜିନ ବୋଲି ସ୍ୱୀକାର କରାଯାଉଥିଲା । ଏ ସମ୍ପର୍କରେ ଇତିହାସ ନୀରବ ନୁହେଁ । ଖ୍ରୀ. ପୂ. ଚତୁର୍ଥ ଶତାବ୍ଦୀରେ ମହାପଦ୍ମନନ୍ଦ (ନନ୍ଦରାଜ) କଳିଙ୍ଗ ଆକ୍ରମଣ କରିଥିଲେ ବୋଲି ହାତୀଗୁମ୍ଫା ଶିଳାଲେଖରେ ବର୍ଣ୍ଣିତ ହୋଇଅଛି । ମହାପଦ୍ମନନ୍ଦ କଳିଙ୍ଗ ଅଧିକାର କରିବା ପରେ ବିଜୟର ପ୍ରତୀକ ସ୍ୱରୂପ କଳିଙ୍ଗ ଜିନଙ୍କୁ ପାଟଳୀପୁତ୍ରକୁ ନେଇ ଯାଇଥିଲେ ବୋଲି ଶିଳାଲେଖରେ ଉଲ୍ଲେଖ ଅଛି । କଳିଙ୍ଗ ବିଜୟ ପରେ ଧନରତ୍ନ ଆଦି ମୂଲ୍ୟବାନ୍ ପଦାର୍ଥ ସଙ୍ଗରେ ନ ନେଇ ଜିନ ମୂର୍ତ୍ତିକୁ ନେବାର କଅଣ ଆବଶ୍ୟକତା ଥିଲା ବୋଲି ମନରେ

(୨୪) ଦକ୍ଷିଣ କୋଶଳ କହିଲେ ବିଳାସପୁର, ସମ୍ବଲପୁର ଓ ରାୟପୁର ଅଞ୍ଚଳକୁ ବୁଝାଏ ।

(୨୫) Separate Kalinga Edicts of Asoka at Jaugarh and Dhauli C. I. I. Vol I

ସମସ୍ତଙ୍କର ତୃଷ୍ଣା ଉଠିପାରେ । ବିଜୟୀ ମହାପଦ୍ମ ବିଜୟ ଗର୍ବରେ ଉତ୍ଫୁଲ୍ଲ ହୋଇ କଳିଙ୍ଗ ଜିନ ପ୍ରତି ଆକୃଷ୍ଟ ହେବା ଅତି ସ୍ୱାଭାବିକ ହୋଇଥିଲା; କାରଣ ଏହି ଜିନ ମୂର୍ତ୍ତିହିଁ କଳିଙ୍ଗ ଅଧିବାସୀଙ୍କର ଆରାଧ୍ୟ ଦେବତା । ଜୈନଧର୍ମ କଳିଙ୍ଗରେ ପ୍ରାଧାନ୍ୟ ବିସ୍ତାର କରିଥିବା ହେତୁ ଜିନମୂର୍ତ୍ତିଙ୍କର ପ୍ରଭାବ ପ୍ରତି ସ୍ୱତରେ ଜଣା ଅଧିକ ପରିମାଣରେ ପଡ଼ିଥିବ । ଅଧିକନ୍ତୁ ମହାପଦ୍ମ ନିଜେ ଜୈନଧର୍ମର ଉପାସକ ଥିଲେ । ନଚେତ୍ କଳିଙ୍ଗ ଅଧିକୃତ ହେବା ପରେ ସେ ସମଗ୍ର ଜାତି ଓ ଦେଶ ତଥା ନଗର ଇଷ୍ଟଦେବଙ୍କୁ ସୁଦୂର ପାଟଳୀପୁତ୍ରକୁ ନେବାର ପ୍ରୟାସ କରି ନ ଥାନ୍ତେ କିମ୍ବା ଉତ୍କ୍ରାନ୍ତ ମଧ୍ୟ ହୋଇ ନ ଥାନ୍ତେ । ଜୈନଧର୍ମାବଲମ୍ବୀ ହୋଇ ନ ଥିଲେ ସେ ହୁଏତ ଜିନମୂର୍ତ୍ତିକୁ ନଷ୍ଟ କରି ଦେଇଥାନ୍ତେ । କିନ୍ତୁ ହାତୀଗୁମ୍ଫା ଶିଳାଲେଖରୁ ସ୍ପଷ୍ଟ ଜଣାଯାଏ ଯେ ଖାରବେଳଙ୍କ ମଗଧ ଅଧିକାର ପର୍ଯ୍ୟନ୍ତ ସର୍ବ ତିନିଶହ ବର୍ଷ ଧରି ସେହି ପ୍ରତିମୂର୍ତ୍ତି ପାଟଳିପୁତ୍ରରେ ସୁରକ୍ଷିତ ହୋଇଥିଲା ।

ନନ୍ଦରାଜାଙ୍କର କଳିଙ୍ଗ ଅଧିକାର ପରେ ମଧ୍ୟ ଜୈନଧର୍ମ ଉତ୍କଳରୁ ଅନ୍ତର୍ହିତ ହୋଇ ନ ଥିଲା; କିମ୍ବା ଉତ୍କଳୀୟଙ୍କ ଦ୍ୱାରା ଅବହେଳିତ ହୋଇ ନ ଥିଲା । ପରନ୍ତୁ ନନ୍ଦ ରାଜବଂଶର ପୃଷ୍ଠପୋଷକତା ଫଳରେ ମହାବୀର ଜୈନଙ୍କର ଶାନ୍ତି ଓ ମୈତ୍ରୀ ବାଣୀ କଳିଙ୍ଗର ପ୍ରାନ୍ତେ ପ୍ରାନ୍ତେ ପ୍ରସାରିତ ହୋଇଥିଲା । ଅଶୋକଙ୍କ ସମୟରେ ଓ ତାଙ୍କ ପରେ ମଧ୍ୟ କଳିଙ୍ଗ ଜୈନଧର୍ମର କେନ୍ଦ୍ରସ୍ଥଳୀ ଥିବାର ଅନୁମିତ ହୁଏ । "ଚେତ" ରାଜବଂଶର ସାହାଯ୍ୟ ଓ ସହାନୁଭୂତି ଏହି ଧର୍ମର ସମ୍ପ୍ରସାରଣରେ ବିଶେଷ ସାହାଯ୍ୟ କରିଥିଲା । ଯେତେବେଳେ ଉତ୍କଳ ଇତିହାସରେ ମହାମେଘବାହନ କଳିଙ୍ଗାଧିପତି ଖାରବେଳଙ୍କର ଆବିର୍ଭାବ ହେଲା, ସେତେବେଳେ ଜୈନଧର୍ମର କ୍ଷିପ୍ର ଅଗ୍ରଗତିରେ ପ୍ରତିରୋଧ ସୃଷ୍ଟି କରିବା ସମ୍ଭବ ନ ଥିଲା ।

ଖାରବେଳ ନିଜେ ଥିଲେ ଜୈନଧର୍ମର ଉପାସକ ଓ ପ୍ରଧାନ ପୃଷ୍ଠପୋଷକ । ହାତୀଗୁମ୍ଫା ଶିଳାଲିପିରୁ ପ୍ରମାଣିତ ହୁଏ ଯେ ନନ୍ଦରାଜା କଳିଙ୍ଗ ଜୟ କରି ଯେଉଁ କଳିଙ୍ଗ ଜିନଙ୍କୁ ଏଠାରୁ ନେଇ ଯାଇଥିଲେ ଖାରବେଳ ତାଙ୍କ ରାଜତ୍ୱର ଦ୍ୱାଦଶ ବର୍ଷରେ ସେହି ଜିନ ପ୍ରତିମୂର୍ତ୍ତିଙ୍କୁ ଅଙ୍ଗ ଓ ମଗଧ ଅଧିକାର କରି ସ୍ୱଦେଶକୁ ଆଣିଥିଲେ । ଏଥିପାଇଁ ଏକ ବିରାଟ ଶୋଭାଯାତ୍ରା ଓ ମହୋତ୍ସବର ଆୟୋଜନ ହୋଇଥିଲା । ଖାରବେଳଙ୍କର ବିରାଟ ସୈନ୍ୟବାହିନୀ ଓ କଳିଙ୍ଗର ଅସଂଖ୍ୟ ନାଗରିକ ସେହି ମହୋତ୍ସବରେ ଯୋଗଦାନ କରିଥିଲେ । ସମଗ୍ର କଳିଙ୍ଗ ସାମ୍ରାଜ୍ୟ ସମ୍ରାଟଙ୍କର କାର୍ଯ୍ୟକୁ ସମର୍ଥନ କରି ଏହି ଉତ୍ସବ ସଫଳ କରିବାରେ ଯତ୍ନବାନ୍ ହୋଇଥିଲା । ସଙ୍ଗୀତ ଓ ବାଦ୍ୟର ମହାର୍ଘ ସଂକୀର୍ତ୍ତନ ମଧ୍ୟରେ କଳିଙ୍ଗ ଜିନ ତାଙ୍କର ପୂର୍ବାଧିଷ୍ଠିତ ସ୍ଥାନରେ ପୁନଃ ସ୍ଥାପିତ ହୋଇଥିଲେ । ଖାରବେଳ ଓ ତାଙ୍କର ପରିବାରବର୍ଗ ସମସ୍ତେ ଜୈନଧର୍ମାବଲମ୍ବୀ ଥିଲେ ବୋଲି ହାତୀଗୁମ୍ଫା ଶିଳାଲିପିରୁ ପରିଷ୍କାର ବୁଝାପଡ଼େ । ସେମାନଙ୍କର ଭକ୍ତି ଓ ସ୍ନେହ କଳିଙ୍ଗ ଜିନ ପ୍ରତି ଉତ୍କଟ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଜୈନଧର୍ମ କଳିଙ୍ଗ ରାଜ୍ୟର ଏକମାତ୍ର ଧର୍ମ ନ ଥିଲା । ଖ୍ରୀ. ପୂ. ଷଷ୍ଠ ଶତାବ୍ଦୀଠାରୁ ଭାରତବର୍ଷର ପୂର୍ବ ପ୍ରଦେଶରେ ହିନ୍ଦୁ, ଜୈନ ଓ ବୌଦ୍ଧମାନଙ୍କର ସଂଖ୍ୟା ଊଣାଅଧିକ ଥିଲା । ହାତୀଗୁମ୍ଫା ଶିଳାଲିପିରୁ ପ୍ରମାଣିତ ହୁଏ ଯେ, ଅନ୍ୟାନ୍ୟ ଭାରତୀୟ ଧର୍ମ ଓ ବିଭିନ୍ନ ଧର୍ମର ଦେବଦେବୀମାନେ କଳିଙ୍ଗ ଅଧିବାସୀଙ୍କ ମନରେ ପ୍ରଭୁତ କ୍ଷମତା ବିସ୍ତାର କରିଥିଲେ । ପ୍ରକୃତ ଉପାସନା ଆଦି ହିନ୍ଦୁ ଧର୍ମର ନାନାବିଧ ପ୍ରଭାବରତ ଜୈନଧର୍ମ ସହିତ ସେମାନଙ୍କ ଦ୍ୱାରା ଅନୁସୃତ ହେଉଥିଲା । ଜୈନଧର୍ମର ଶୃଙ୍ଖଳା, କଠୋର ନିୟମ ପାଳନ ଓ ଚତୁର୍ବିଂଶ ତୀର୍ଥଙ୍କରଙ୍କ ମହନୀୟ ଆଦର୍ଶ, ଜ୍ଞାନ ତପସ୍ୟା, ଆତ୍ମସଂଯମ, ଆଧ୍ୟାତ୍ମିକ ଅନୁଚିନ୍ତା ଆଦି ନାନା ବିଷୟ କଳିଙ୍ଗବାସୀଙ୍କୁ ବିଶେଷ ଭାବେ ଅନୁପ୍ରାଣିତ କରିଥିଲା । ଏଥିରେ ଆଶ୍ଚର୍ଯ୍ୟାନ୍ୱିତ ହେବାର କୌଣସି କାରଣ ନାହିଁ । ଏହା ଆମର ବ୍ୟକ୍ତିଗତ ବୈଶିଷ୍ଟ୍ୟ ଓ ଦେଶଗତ ଆଦର । ତୀର୍ଥଙ୍କର ମାନଙ୍କର ଉଦାତ୍ତ ବ୍ୟକ୍ତିତ୍ୱ ଓ ତ୍ୟାଗ ପକ୍ଷରେ ତେଣୁ କଳିଙ୍ଗବାସୀ ସ୍ୱତଃ ପ୍ରଣତ ହେବା ଅତି ସ୍ୱାଭାବିକ ଥିଲା ।

ଖାରବେଳଙ୍କ ସମୟରେ ଖଣ୍ଡଗିରି ଓ ଉଦୟଗିରିରେ ଜୈନ ସାଧୁମାନଙ୍କ ପାଇଁ ଶତାଧିକ ଗୁମ୍ଫା ନିର୍ମିତ ହୋଇଥିଲା । ଏତେ ଜୈନଗୁମ୍ଫାତ ଥିବାରୁ ଜୈନ ସାଧୁମାନଙ୍କ ପ୍ରତି ଖାରବେଳ ବ୍ୟକ୍ତିଗତ ଭାବେ ଅନୁରକ୍ତ ଥିଲେ । ହାତୀଗୁମ୍ଫା ଶିଳାଲେଖର ପ୍ରାରମ୍ଭରେ ଚକ୍ରବର୍ତ୍ତୀ ସମ୍ରାଟ୍ ଖାରବେଳ ଜୈନଧର୍ମର ଜନସ୍ତ-ମାନଙ୍କୁ ଉଦ୍ଦେଶ୍ୟ କରି ଅନ୍ତର ଭକ୍ତି ନୈବେଦ୍ୟ ବାଢ଼ିଛନ୍ତି ।

ନମୋ ଅରହନ୍ତାନଂ "ନମୋ ସବସିଧାନଂ" ବୋଲି ଶିଳାଲିପିର ପ୍ରଥମ ଧାଡ଼ିରେ ଲେଖା ଯାଇଛି । (୧)

ଜୈନ ଶାସ୍ତ୍ରାନୁସାରେ ପାଞ୍ଚ ପର ନମସ୍କାର କରାଯାଏ ବୋଲି ସ୍ୱର୍ଗତ ପଣ୍ଡିତ ଭଗବାନ୍‌ଲାଲ ଇନ୍ଦ୍ରଜୀ ଓ ସ୍ୱର୍ଗତ ରାଜେନ୍ଦ୍ରଲାଲ ମିତ୍ରଙ୍କର ମତ । ଜୈନ ଶାସ୍ତ୍ରାନୁମୋଦିତ ପନ୍ଥା ଅନୁସରଣ କରି ଜୈନ ସମ୍ରାଟ ଖାରବେଳ ତାଙ୍କ ପ୍ରଶସ୍ତିର ପ୍ରାରମ୍ଭରେ ଅର୍ହତ ଓ ସିଦ୍ଧ-ମାନଙ୍କୁ ଉଦ୍ଦେଶ୍ୟ କରି ପ୍ରଣାମ ଜଣାଇଛନ୍ତି । (୨)

ଶିଳାଲିପିରେ ଅନେକଗୁଡ଼ିଏ ଚିହ୍ନ ଅଛି । (୩) ଶିଳାଲିପିର ମୂଳ ପଟରେ ଏହି ଚାରିଟି ଚିହ୍ନ ଅଛି । ବାମ ପାର୍ଶ୍ୱରେ ଦୁଇଟି ଏବଂ ଦକ୍ଷିଣ ପାର୍ଶ୍ୱରେ ଦୁଇଟି ।

ପ୍ରଥମ ଚିହ୍ନଟି ଶିଳାଲିପିର ଦ୍ୱିତୀୟ ଧାଡ଼ିର ବାମ ପାର୍ଶ୍ୱରେ ଅଛି । ଚତୁର୍ଥ ଚିହ୍ନଟି ସପ୍ତମ ଧାଡ଼ିର ଦକ୍ଷିଣ ପାର୍ଶ୍ୱରେ ଅଛି । ଶିଳାଲିପିର ପ୍ରାରମ୍ଭ ଓ ସମାପ୍ତି ନିର୍ଦ୍ଦେଶ କରିବା ପାଇଁ ଏ ଦୁଇ ଚିହ୍ନ ଦିଆଯାଇଛି । ଦ୍ୱିତୀୟ ଚିହ୍ନ ପ୍ରଥମ ଚିହ୍ନର ନିମ୍ନ ଦେଶରେ ଏବଂ ତୃତୀୟ ଚିହ୍ନ ପ୍ରଥମ

---

(୧) "Let the head bend low in obeisance to arhats the Exalted Ones.

Let the head bend low (also) in obeisance to all Siddhas, the perfect Saints."

(୨) ନମୋ ଅରହନ୍ତାନଂ "ଣମୋ ଅରିହନ୍ତାଣଂ" ନମୋ ସବସିଧାନଂ "ଣମୋ ସବ୍ବସିଦ୍ଧାଣଂ" ଣମୋ ଲୋଏ ସବ—ସାହୁଣଂ ।

ଓ ଦ୍ୱିତୀୟ ଧାଡ଼ିର ଦକ୍ଷିଣ ପାର୍ଶ୍ୱରେ ଅଛି । ଡ. ଜୟସ୍ୱାଲ କହନ୍ତି ଯେ ତୃତୀୟ ଚିହ୍ନ ଠିକ୍ ଖାରବେଳଙ୍କ ନାମ ପରେ ଅଛି । କିନ୍ତୁ ତାହା ଠିକ୍ ନୁହେଁ ।

ଏ ଚିହ୍ନଗୁଡ଼ିକ କଅଣ ?—

ପ୍ରଥମ ଚିହ୍ନକୁ ଜୈନମାନେ "ବର୍ଦ୍ଧମାନ" କହନ୍ତି । (୪) ଦ୍ୱିତୀୟ ଚିହ୍ନକୁ ସ୍ୱସ୍ତିକ କୁହାଯାଏ । ତୃତୀୟ ଚିହ୍ନର ନାମ "ନନ୍ଦିପଦ" । ଭାରହୁତ ସ୍ତୂପ ତୋରଣ ସ୍ତମ୍ଭରେ ଥିବା ଏକ ଶିଳାଲିପିରେ ଏପରି ଚିହ୍ନକୁ "ନନ୍ଦିପଦ" ବୋଲି କୁହାଯାଇଛି । (୫) ହାତୀଗୁମ୍ଫାର ଚତୁର୍ଥ ଚିହ୍ନକୁ "ସ୍ଥଳଚୈତ୍ୟ" ବା "ବୃକ୍ଷଚୈତ୍ୟ" ନାମରେ ଅଭିହିତ କରାଯାଏ ।

ବର୍ଦ୍ଧମାନ ଏକ ମାଙ୍ଗଳିକ ଚିହ୍ନରୂପେ ଜୁନାଗଡ଼ର ଜୈନ ଗୁମ୍ଫାର ଦ୍ୱାରଦେଶରେ ଖୋଦିତ ହୋଇଛି । ସାଞ୍ଚି ସ୍ତୂପର ତୋରଣ ଦେହରେ ମଧ୍ୟ ଏହି ଚିହ୍ନ ଅଛି । ପଶ୍ଚିମ ଭାରତର ବୌଦ୍ଧ ଗୁମ୍ଫାମାନଙ୍କରେ ଥିବା କୌଣସି କୌଣସି ଶିଳାଲିପିରେ ମଧ୍ୟ ଏହି 'ବର୍ଦ୍ଧମାନ' ଚିହ୍ନ ଦେଖାଯାଏ । (୬) ଜୈନମାନଙ୍କର ଅଷ୍ଟମଙ୍ଗଳ ଚିହ୍ନ ମଧ୍ୟରୁ 'ବର୍ଦ୍ଧମାନ' ଅନ୍ୟତମ । ଜୁନାଗଡ଼ରେ ଅଷ୍ଟମଙ୍ଗଳ ଚିହ୍ନ ସବୁ ଖୋଦିତ ହୋଇଅଛି । ବୁର୍ଗେସ ଉଲ୍ଲେଖ କରନ୍ତି ଯେ, ସ୍ୱସ୍ତିକ, ଦର୍ପଣ, କଳସ, ଭଦ୍ରାସନ, ମତ୍ସ୍ୟ, ପୁଷ୍ପମାଳା, ଅଙ୍କୁଶ ଏବଂ ବର୍ଦ୍ଧମାନ ଆଦି ଜୈନମାନଙ୍କର ଅଷ୍ଟମଙ୍ଗଳ ଚିହ୍ନ । ଆଜିକାଲି ଜୈନଭକ୍ତମାନଙ୍କର ଭଣ୍ଡାରାଦି ଠିକ୍ "ବର୍ଦ୍ଧମାନ" ଚିହ୍ନର ଆକାର ଭଳି । ହାତୀଗୁମ୍ଫାରେ ବର୍ଦ୍ଧମାନର ଆବଶ୍ୟକତା କଅଣ ଥିଲା କହିବା ଅସମ୍ଭବ । ଐତିହାସିକମାନେ ଏହାକୁ ତ୍ରିଶୂଳ, ତ୍ରିରତ୍ନ ବା ବର୍ମ୍ମରୂପେ ଆଲୋଚନା କରିଥାନ୍ତି । ପ୍ରାଚୀନ ଭାରତର ମୁଦ୍ରାମାନଙ୍କରେ ଯେଉଁ ଚିହ୍ନ ସବୁ ଦେଖାଯାଏ ସେଥିରୁ ବର୍ଦ୍ଧମାନ ଅନ୍ୟତମ । ହାତୀଗୁମ୍ଫା ଶିଳାଲେଖରେ ଥିବା ଅନ୍ୟ ଦୁଇଟି ଚିହ୍ନ ମଧ୍ୟ ପ୍ରାଚୀନ ମୁଦ୍ରାମାନଙ୍କରେ ଦେଖିବାକୁ ମିଳେ ।

ତେବେ ହାତୀଗୁମ୍ଫା ଶିଳାଲିପିର ଆଦ୍ୟପ୍ରାନ୍ତ ନିର୍ଣ୍ଣୟ କରିବାର୍ଥେ ପ୍ରଥମ ଓ ଚତୁର୍ଥ ଚିହ୍ନର ଉଦ୍ଦେଶ୍ୟ ବୋଲି କହିବା ଅସଂଗତ ନୁହେଁ ।

୨ୟ ଏବଂ ୩ୟ ଚିହ୍ନ ସ୍ୱସ୍ତିକ ଓ ନନ୍ଦିପଦର ଲକ୍ଷ୍ୟ ଯାହା ହେଉନା କାହିଁକି ହାତୀଗୁମ୍ଫା ଶିଳାଲେଖରେ ସେମାନେ ଯଥାକ୍ରମେ ସ୍ୱସ୍ତି ଓ ମଙ୍ଗଳର ପ୍ରତୀକରୂପେ ବ୍ୟବହୃତ ହୋଇଛନ୍ତି । ବୌଦ୍ଧମାନେ ମଧ୍ୟ ସ୍ୱସ୍ତିକ ଓ ନନ୍ଦିପଦକୁ ସ୍ୱସ୍ତି ଓ ମଙ୍ଗଳସୂଚକ ବୋଲି ବ୍ୟବହାର କରିଥାନ୍ତି । "ମଙ୍ଗଳ ସୂତ୍ର" ନାମକ ପାଲିଗ୍ରନ୍ଥରେ ଏହାର ପ୍ରମାଣ ଅଛି । ଶ୍ରୀଯୁକ୍ତ ଦେବଦତ୍ତ ଦେବ କହନ୍ତି ଯେ ବୈଦିକ ଶାସ୍ତ୍ରମାନଙ୍କରେ "ଓଁ" ରେଖର ରୂପକ ରୂପେ ସ୍ୱସ୍ତିକ ଓ ନନ୍ଦିପଦକୁ ଆର୍ଯ୍ୟମାନେ ବ୍ୟବହାର କରିଛନ୍ତି ।

---

(୪) Dr. A. K. Coomaraswamy ଏହାକୁ 'Powder' box ବୋଲି କହନ୍ତି ।

(୫) J. B. B. R. A. S., XV, page 320.

(୬) Acta du Sixieme Congris III, 137.

ସେହି ସମୟରୁ ବୌଦ୍ଧ ଏବଂ ଜୈନମାନେ ଗ୍ରହଣ କରିଥିବା ସମ୍ଭବ । ବେଦମାନଙ୍କରେ "ଓଁ" ମଙ୍ଗଳସୂଚକ । ସେହି ମଙ୍ଗଳ ସୂଚନା ପାଇଁ ଜୈନ ଓ ବୌଦ୍ଧମାନେ "ଓଁ"କୁ ଗ୍ରହଣ ନ କରି "ସ୍ୱସ୍ତିକ" ଏବଂ "ନନ୍ଦପଦକୁ" ଗ୍ରହଣ କରିଛନ୍ତି ।

ହାତୀଗୁମ୍ଫାର ଶିଳାଲିପି ଜୈନଧର୍ମାବଲମ୍ବୀ ଚକ୍ରବର୍ତ୍ତୀ ସମ୍ରାଟ ଖାରବେଳଙ୍କ ନିର୍ଦ୍ଦେଶରେ ଲିଖିତ ହୋଇଥିଲା । ତେଣୁ ଶିଳାଲିପିରେ ଜୈନଶାସ୍ତ୍ରର ମାଙ୍ଗଳିକ ଚିହ୍ନମାନ ରହିବା ଆଦୌ ଅସ୍ୱାଭାବିକ ନୁହେଁ, ବରଂ ଆବଶ୍ୟକୀୟ । ଖାରବେଳ ଜୈନ ଥିଲେ ବୋଲି ପ୍ରମାଣ କରିବାକୁ ହେଲେ ଏହି ଚିହ୍ନମାନଙ୍କୁ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇ ପାରେ ।

ଶିଳାଲେଖର ଚତୁର୍ଦ୍ଦଶ ଧାଡ଼ିରେ ଉଲ୍ଲେଖ ଅଛି ଯେ—

"ତେରସମେ ଚ ବସେ ସୁପବତବିଜୟଚକେ କୁମାରୀ ପବତେ ଅରହତେପରିନବାସେ କାୟନିସୀଦୀୟାୟ ଯାପଞାବକେହି, ରାଜଭିତିନି, ରାଜଘଟନି, ରାଜପୁତେହି ରାଜମହିଷି ଖାରବେଳ ସିରିନା ସତଦସଲେଣଂସତଂ କାରପିତଂ । (୨)

ଜୈନମାନଙ୍କର ସୁବିଧା ପାଇଁ ଖାରବେଳ ଓ ପରିବାରବର୍ଗ ଆଦିଙ୍କ ଚେଷ୍ଟା ଫଳରେ ୧୧୭ଟି ଗୁମ୍ଫା ନିର୍ମିତ ହୋଇଥିଲା ।

ଖାରବେଳ ଜୈନ ଥିଲେହେଁ ତାଙ୍କର ଉଦାରନୀତି କେବଳ ଜୈନମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ନ ଥିଲା । ସେ ହିନ୍ଦୁ ଦେବଦେବୀଙ୍କ ସକାଶେ ମଧ୍ୟ ଏକାଧିକ ଦେବାଳୟ ନିର୍ମାଣ କରିଥିବା ନିଃସନ୍ଦେହରୂପେ ଜଣାଯାଏ । "ସୁକତି-ସମଣ ସୁବିହିତାନ, ଚ ସତଦସାନଂ ସତବଂ, ତାପସ ଇସିନଂ ଲେଣଂ କାରୟତ, ଅରହତ ନସୀଦୟ ସମୀପେ ପଭରେ ଵରକାର ସମୁଥାପିଣହି ଅନେକ ଯୋଜନା ହତାହ ପନତି-ସାହି—ସତସରସାଣି ସିଲାହି ଥମ୍ଭାନିଚ ଚେତୟାନି ଚ କାରୟତି । ପଟଳକ ରତନରେ ଚ ବେଡ଼ୁରିୟ ଗଭେ ଥମ୍ଭେ ପତିଥାପୟତି ।"

"ପନତରସୟ ମଠସ ହରେହି ଦେଭୁରିୟ ମଳମୋଖ—

ତେ ତୟତ—ଅଧ ସତକଂ ଗେଛିୟଂ ଉପତୟତି ।"

( ହାତୀଗୁମ୍ଫା ଶିଳାଲିପି-ପଞ୍ଚଦଶ ଧାଡ଼ି )

ଏହା ପାଠ କଲେ ଜଣାଯାଏ ଯେ ରାଜତ୍ୱର ତ୍ରୟୋଦଶ ବର୍ଷରେ ଖାରବେଳ ଜୈନ ସନ୍ନ୍ୟାସୀମାନଙ୍କ ପାଇଁ କୁମାରୀଗିରିରେ ଷଠେସତରଟି ଗୁମ୍ଫା ଖୋଳାଇବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ପ୍ରଖ୍ୟାତ ଧର୍ମର ସାଧୁ ଓ ସନ୍ଥମାନଙ୍କ ବସବାସ ନିମନ୍ତେ

---

(୨) And in the 13th year on the Kumari hill, in the well known realm of victory, 117 caves were caused to be made by his Graceful Majesty Kharavela, by his relatives, by his brothers, by the royal servants, for the residing Arhats desiring to rest their bodies.

( ସକଳ-ସମଣ-ସୁବିହିତା ) ଅଲଗା ଏକ ଗୁମ୍ଫା ନିର୍ମାଣ କରାଇଥିଲେ । ପୁନଶ୍ଚ ଅନ୍ୟାନ୍ୟ ଋଷି, ମୁନି, ଶ୍ରମଣମାନଙ୍କୁ ଆଶ୍ରୟ ପ୍ରଦାନ କରିବା ଉଦ୍ଦେଶ୍ୟରେ ମଧ୍ୟ ସମସ୍ତ ପ୍ରକାର ବନ୍ଦୋବସ୍ତ ହୋଇଥିଲା ବୋଲି ଶିଳାଲିପିରେ ବର୍ଣ୍ଣିତ ହୋଇଛି । ( ଶତ ଜଧାକମ୍ ଯତକମ୍ ତାପସ ଋଷୀକମ୍ ଲେଣେଣ-କାରୟିତ ) ଏଠାରେ ଯତି, ଋଷି ଓ ସାଧୁଙ୍କୁ ଉଲ୍ଲେଖ କରିବା ଦ୍ୱାରା ହିନ୍ଦୁମାନଙ୍କର ବର୍ଣ୍ଣାଶ୍ରମ ଧର୍ମର ବାନପ୍ରସ୍ଥ ଅବସ୍ଥାର ସୂଚନା ବୋଧହୁଏ ପ୍ରଦତ୍ତ ହୋଇଛି । ଅଶୋକଙ୍କ ଶିଳାଲିପି ଅନୁସାରେ ଜୈନ, ଆଜୀବକ ଓ ବୌଦ୍ଧମାନଙ୍କୁ ଶ୍ରମଣ ନାମରେ ଅଭିହିତ କରାଯାଇଛି ବ୍ରାହ୍ମଣ୍ୟ ଧର୍ମର ଯୋଗୀ ଓ ଋଷିଙ୍କ ଠାରୁ ପୃଥକ୍ କରିବା ପାଇଁ । କିନ୍ତୁ ଖାରବେଳ ଯତି, ଋଷି, ତାପସ ବୋଲି ବ୍ରାହ୍ମଣ ସନ୍ନ୍ୟାସୀଙ୍କୁ ନାମିତ କରିଛନ୍ତି । ବୌଦ୍ଧ ଓ ଆଜୀବକମାନେ ହାତୀଗୁମ୍ଫା ଶିଳାଲେଖର ବର୍ଣ୍ଣନାରେ ସ୍ଥାନ ପାଇ ପାରିନାହାନ୍ତି । କିନ୍ତୁ ଏହାର କାରଣ ନିର୍ଣ୍ଣୟ କରିବା ସମ୍ଭବପର ନୁହେଁ ।

ଶିଳାଲେଖର ସପ୍ତଦଶ ଧାଡ଼ିରେ ଖାରବେଳଙ୍କର ଧର୍ମମତ ବର୍ଣ୍ଣିତ ହୋଇଛି । ଏହି ଧର୍ମମତର ପୁଙ୍ଖାନୁପୁଙ୍ଖ ଆଲୋଚନା ନିମନ୍ତେ ଶିଳାଲେଖର ପ୍ରୋକ୍ତ ଅଂଶକୁ ବିଶେଷ ଅନୁଧ୍ୟାନ ସହକାରେ ପାଠ କରିବା ଆବଶ୍ୟକ ।

"ଖେମରା ଜାସ ବଧରାଜ ଜାସ ଭିଖର ଜାସ ଧମରା ଜାସ ପସଂତେ ସୁନଂତୋ ଅନୁଭବଂତୋ କଲାଣାନି ଗୁଣବିସେସ କୁସଲୋ ସବପାସଣ୍ଡ ପୂଜକୋ ସବ-ଦେବାୟତନ-ସଂକାର-କାରକୋ ଅପତିହତ ଚକବାହନବଲୋ ଚକଧରୋ ଗୁତ ଚକୋ ପବତ ଚକୋ ରାଜସି ବସୁ କୁଲ ବିନିସିତୋ ମହାବିଜୟୋ ରାଜା ଖାରବେଳ ସିରି ।"

(ହାତୀଗୁମ୍ଫା ଶିଳାଲେଖ, ୧୭ଶ ଧାଡ଼ି)

ସମାଲୋଚନା ପାଇଁ ଏହାକୁ ନିମ୍ନୋକ୍ତ ଭାବେ ସଂସ୍କୃତରେ ଅନୁବାଦ କରାଯାଇ ପାରେ ।

"କ୍ଷେମରାଜଃ ସଃ ବର୍ଦ୍ଧରାଜଃ ସଃ ଭିକ୍ଷୁରାଜଃ ସଃ ଧର୍ମରାଜଃ ପଶ୍ୟନ୍ ଶୃଣ୍ୱନ୍ନନୁଭବନ୍ କଲ୍ୟାଣାନି ଗୁଣବିଶେଷ-କୁଶଳଃ ସର୍ବପାଷଣ୍ଡପୂଜକ ସର୍ବ-ଦେବାୟତନସଂସ୍କାରକାରକ ଅପ୍ରତିହତ ଚକ୍ରବାହନବଳଃ ଚକ୍ରଧରଃ ଗୁପ୍ତଚକ୍ରଃ ପ୍ରବର୍ତ୍ତିତଚକ୍ରଃ ରାଜର୍ଷି ବସୁକୁଳ ବିନିର୍ଗତୋ ମହାବିଜୟୋ ରାଜା ଖାରବେଳ ଶ୍ରୀଃ ।"

ଏଠାରେ ଖାରବେଳଙ୍କ ନୈତିକ ମତବାଦର ପରିଚୟ ମଧ୍ୟ ଦିଆଯାଇଛି । ସେ ଥିଲେ ପ୍ରମାଣିକ, ଉଚ୍ଚବର୍ଗର ଆଧାର, ଭିକ୍ଷୁଙ୍କ ପରି ଶକ୍ତିଶାଳୀ ଓ ଧର୍ମରାଜାଙ୍କ ପରି ନ୍ୟାୟପରାୟଣ । ଧାର୍ମିକ ଖାରବେଳ ଆଧ୍ୟାତ୍ମିକତାର ବିକାଶ ପାଇଁ ସର୍ବଦା ଶୁଭ କାର୍ଯ୍ୟ ଓ କଲ୍ୟାଣ ସାଧନାରେ ବ୍ୟାପୃତ ଥିଲେ । ତାଙ୍କୁ "ସର୍ବପାଷଣ୍ଡପୂଜକ" ବୋଲି ଅଭିହିତ କରାଯାଏ । ଏଠାରେ ଅଶୋକଙ୍କର ଧର୍ମନୀତିର ପ୍ରଭାବ ପ୍ରତିଫଳିତ ହୋଇଥିବା ଭଳି ମନେ ହୁଏ । ଅଶୋକ ଯେପରି ତାଙ୍କ ସାମ୍ରାଜ୍ୟର ସବୁ ଧର୍ମ ମଧ୍ୟରେ ଐକ୍ୟଭାବର ପରିଚୟ ଦେଇଥିଲେ, ଖାରବେଳ ସେପରି ସବୁ ପ୍ରକାର ଧର୍ମକୁ ସମାନ ଚକ୍ଷୁରେ ଦେଖୁଥିଲେ । କେବଳ ସେତିକି

ନୁହେଁ, ଜୈନ ହେଲେହେଁ ସେ ଅନ୍ୟ ଧର୍ମ ପ୍ରତି ବିରକ୍ତି ପ୍ରକାଶ ନ କରି ସମ୍ମାନ ପ୍ରଦର୍ଶନ କରୁଥିଲେ । ଶିଳାଲିପିର ସେହି ସ୍ଥାନରେ "ସବ୍ବ-ଦେବାୟତନ-ସଙ୍କାର-କାରକ" ଲେଖା ଥିବାରୁ ଆମର ମତକୁ ପ୍ରତ୍ୟକ୍ଷରେ ପ୍ରମାଣିତ କରୁଅଛି । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ହିନ୍ଦୁଧର୍ମର ବିଭିନ୍ନ ଦେବଦେବୀଙ୍କ ପାଇଁ ଦେବାଳୟ ନିର୍ମିତ ହୋଇଥିଲା ଏବଂ ସମ୍ରାଟ ଖାରବେଳ ଧର୍ମ-ଗୋଷ୍ଠୀ-ନିର୍ବିଶେଷରେ ପୁରାତନ ମନ୍ଦିରର ପୁନର୍ନିର୍ମାଣ ଓ ନୂତନ ମନ୍ଦିରର ସୁପରିକଳ୍ପନା ପଛାରେ ଦ୍ୱିଧାବୋଧ ନ କରି ଅର୍ଥବ୍ୟୟ କରୁଥିଲେ । ଅଳ୍ପ ଦିନ ରାଜତ୍ୱ ମଧ୍ୟରେ ଖାରବେଳ ବାରମ୍ବାର କଳିଙ୍ଗ ନଗରର ଶ୍ରୀବୃଦ୍ଧି ସାଧନରେ ମୁକ୍ତହସ୍ତ ହୋଇ ଅର୍ଥ ବ୍ୟୟ କରିଥିବା ହାତୀଗୁମ୍ଫା ଶିଳାଲିପିରେ ବର୍ଣ୍ଣିତ ହୋଇଅଛି । ସେ କେବେହେଁ କେବଳ ଜୈନମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ନିମନ୍ତେ ଆତ୍ମନିୟୋଗ କରି ନ ଥିଲେ । ସାମ୍ରାଜ୍ୟର ସବୁ ଲୋକଙ୍କ ସାଂସାରିକ ସୁଖ ସଙ୍ଗେ ସଙ୍ଗେ ଆଧ୍ୟାତ୍ମିକ ଓ ମାନସିକ ଶାନ୍ତି ପ୍ରଦାନ କରିବା ହିଁ ତାଙ୍କର ମୁଖ୍ୟ କାର୍ଯ୍ୟ ଥିଲା । ଏଥିପାଇଁ ସମସ୍ତେ ପୂର୍ଣ୍ଣ ସ୍ୱାଧୀନତା ଲାଭ କରିଥିଲେ । ତାଙ୍କ ଅମଳର ଶାସନରେ କୌଣସି ପ୍ରକାର କଟକଣା ଜାରି ହୋଇ ନ ଥିଲା ।

ଦୁର୍ଭାଗ୍ୟବଶତଃ ହିନ୍ଦୁ ଦେବାଳୟ ଓ ଅନ୍ୟାନ୍ୟ କୀର୍ତ୍ତିମାନ ସମୟର ଦୁରନ୍ତ ଓ ଝଡ଼ଝଞ୍ଜାର ପ୍ରତିକୂଳତାରେ ରକ୍ଷା-ପାଇନାହିଁ । ନଚେତ୍ ଖାରବେଳଙ୍କର ଉଦାର ହୃଦୟର ପରିଚୟ ଆମେ ସହଜରେ ପାଇ ପାରିଥାନ୍ତୁ ।

ପ୍ରକୃତରେ ଖାରବେଳ ଥିଲେ ଜୈନଧର୍ମର ଉଜ୍ଜ୍ୱଳ ଆଲୋକସ୍ତମ୍ଭ । ତାଙ୍କର ପୃଷ୍ଠପୋଷକତା ଜୈନ ଧର୍ମକୁ ଜନପ୍ରିୟ ନ କରି ଅଧିକ ଆଦରଣୀୟ କରିଥିବା ହେତୁ ଶିଳାଲିପିରେ ତାଙ୍କୁ "ଚକଧରେ" (ଚକ୍ରଧର) ବୋଲି କୁହା-ଯାଇଛି । ଜୈନଶାସ୍ତ୍ର ଓ ବୌଦ୍ଧଗ୍ରନ୍ଥ ଆଦିରେ "ଚକ୍ର"କୁ "ଧର୍ମ" ଅର୍ଥରେ ବ୍ୟବହାର କରାଯାଇଥାଏ । ତେଣୁ ଏଠାରେ ମଧ୍ୟ 'ଚକ୍ର' ଅର୍ଥ 'ଧର୍ମ' ଏବଂ ଖାରବେଳଙ୍କୁ "ଚକ୍ରଧର" କହିବାଦ୍ୱାରା ଜୈନ ଧର୍ମରେ ତାଙ୍କର ଉଚ୍ଚ ସ୍ଥାନକୁ ହିଁ ବର୍ଣ୍ଣନା କରାହୋଇଛି । କେବଳ ସେତିକି ନୁହେଁ । ଖାରବେଳଙ୍କୁ "ଗୃ ପ୍ରଚକ୍ର" ପଦବୀ ମଧ୍ୟ ଦିଆଯାଇଛି ।

ଖାରବେଳଙ୍କୁ ଜୈନ ବୋଲି ପ୍ରମାଣ କରିବାକୁ ହେଲେ ହାତୀଗୁମ୍ଫା ଶିଳାଲିପିରୁ ଆହୁରି ଅନେକ ଦୃଷ୍ଟାନ୍ତ ମିଳିବ । ରାଜତ୍ୱର ଅଷ୍ଟମ ବର୍ଷରେ ସେ "ଯବନ ରାଜ"ଙ୍କୁ ଯୁଦ୍ଧରେ ପରାସ୍ତ କରିବା ପାଇଁ ମଥୁରା ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ ବୋଲି ଶିଳାଲିପିରୁ ଜଣାଯାଏ । ମଥୁରାରେ ଥିବାକାଳରେ ସେ ସେଠାକାର ଅଧିବାସୀ, ନଗରବାସୀ, ରାଜଭୃତ୍ୟ, ବ୍ରାହ୍ମଣ, ଜୈନ ଶ୍ରମଣ (ଅରହତ-ସମଣା) ମାନଙ୍କୁ ଆମୋଦ ପ୍ରମୋଦ ଏବଂ ଭୋଜିରେ ଆପ୍ୟାୟିତ କରିଥିଲେ । ମଥୁରାରୁ ଫେରିବା ପରେ କଳିଙ୍ଗରେ ମଧ୍ୟ ସେହିପରି ଏକ ଭୋଜିର ଆୟୋଜନ ହୋଇଥିଲା ।

ଏହି ବର୍ଣ୍ଣନାରେ ବୌଦ୍ଧ ଓ ଆଜୀବକମାନଙ୍କୁ ସମ୍ପୃକ୍ତ କରାଯାଇନାହିଁ । ବୋଧହୁଏ କଳିଙ୍ଗ ପରି ମଥୁରାରେ ମଧ୍ୟ

କେବଳ ଜୈନ ଓ ହିନ୍ଦୁ ଧର୍ମର ପ୍ରାଧାନ୍ୟ ଥିବା ହେତୁ ବୌଦ୍ଧ ଧର୍ମର ଅସ୍ତିତ୍ୱ ସେଠାରେ ନ ଥିଲା । ଯଦି ବା ଥିଲା, ତେବେ ତାହା ଅତି ଅବହେଳିତ ଅବସ୍ଥାରେ; କାରଣ ବୌଦ୍ଧଧର୍ମର ପ୍ରତିଷ୍ଠା ନିମନ୍ତେ ସେଠାରେ ଅନୁକୂଳ ପରିସ୍ଥିତି ଆଦୌ ନ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଉତ୍ତର ଭାରତରେ ଜୈନ ଧର୍ମର କେନ୍ଦ୍ରସ୍ଥଳୀ ଥିଲା ମଥୁରା । ଜୈନ ଉପାସକ ଖାରବେଳଙ୍କ ପକ୍ଷରେ ତେଣୁ ମଥୁରାରେ 'ଯବନରାଜ'ର ଉପସ୍ଥିତି ଓ ଆଧିପତ୍ୟ ଅସହନୀୟ ହୋଇଥିଲା । ଫଳରେ ସ୍ୱଧର୍ମର ନିରାପତ୍ତା ପାଇଁ ମଥୁରା ପର୍ଯ୍ୟନ୍ତ ସେ ଅଭିଯାନକ୍ରମରେ ଅଗ୍ରସର ହୋଇଥିଲେ । ଖାରବେଳଙ୍କ ଆକ୍ରମଣ ମଥୁରାବାସୀଙ୍କ ମନରେ ଆତଙ୍କ ସୃଷ୍ଟି କରି ନ ଥିଲା କିମ୍ବା ଅଙ୍ଗ ଓ ମଗଧର ଅଧିବାସୀଙ୍କ ପରି ସେମାନେ ପ୍ରାଣଭୟରେ ଖାରବେଳଙ୍କୁ ଧନରତ୍ନ ଉପହାର ଦେଇ ନ ଥିଲେ । ଅଧିକନ୍ତୁ ଜୈନଧର୍ମାବଲମ୍ବୀ ମଥୁରାବାସୀଙ୍କ ମନରେ ସନ୍ତୋଷ ବିଧାନ ପାଇଁ ଖାରବେଳ ଯେଉଁ ଆମୋଦର ବ୍ୟବସ୍ଥା କରିଥିଲେ, ତାହା ହିଁ ପ୍ରଣିଧାନର ବିଷୟ ।

ମଥୁରାରୁ ଫେରିବା ସମୟରେ ଖାରବେଳ ଶୂନ୍ୟ ହସ୍ତରେ ଫେରି ନ ଥିଲେ । ଫୁଲ୍ ଓ ଲତାକୀର୍ଣ୍ଣ କଳ୍ପବୃକ୍ଷ ମଧ୍ୟ ତାଙ୍କଦ୍ୱାରା କଳିଙ୍ଗକୁ ଆନୀତ ହୋଇଥିଲା । ଜୈନଶାସ୍ତ୍ରରେ ଲିଖିତ ଅଛି ଯେ କେବଳ ଚକ୍ରବର୍ତ୍ତୀ ସମ୍ରାଟମାନେ ହିଁ କଳ୍ପବୃକ୍ଷ ସେବନ କରିବାର ଯୋଗ୍ୟ । କଳ୍ପବୃକ୍ଷକୁ କଳିଙ୍ଗ ଆଣିବାରେ ଜୈନ ସମ୍ରାଟ୍ ଖାରବେଳ ସର୍ବଥା ଯୋଗ୍ୟ ଥିଲେ ବୋଲି ଏଥିରୁ ବେଶ୍ ବୁଝାପଡ଼େ । ରାଜତ୍ୱର ଅଧିକାଂଶ ସମୟ ଖାରବେଳ ଯୁଦ୍ଧଯାତ୍ରା ଓ ରାଜ୍ୟଜୟରେ ଅତିବାହିତ କରିଥିଲେ । ଜୈନଧର୍ମର ଉପାସକ ହୋଇ ମଧ୍ୟ ସେ ଏପରି ଧ୍ୱଂସାତ୍ମକ ପନ୍ଥା ଅବଲମ୍ବନ କଲେ, ତାହା ବିଚାର କରିବା ଉଚିତ । ଜୈନଧର୍ମର ମୂଳମନ୍ତ୍ର ଅହିଂସା ଓ ଜୀବେଦୟା ତାଙ୍କର ରାଜନୈତିକ ଓ ସାମ୍ରାଜ୍ୟବାଦୀ ଜୀବନରେ କୌଣସି ପ୍ରକାର ପ୍ରଭାବ ପକାଇବାରେ ସକ୍ଷମ ହୋଇନାହିଁ । ଏହା ଖାରବେଳଙ୍କ ବ୍ୟକ୍ତିଗତ ଜୀବନର ଏକ ପ୍ରଧାନ ବିଶେଷତ୍ୱ । ପ୍ରକୃତରେ ଦେଖିବାକୁ ଗଲେ ଭାରତର ଜୈନ ସମ୍ରାଟମାନେ ଅହିଂସାକୁ ଜୈନଧର୍ମର ମୂଳମନ୍ତ୍ର ବୋଲି ସ୍ୱୀକାର କରିଥିଲେ ସୁଦ୍ଧା ତଦ୍ଦ୍ୱାରା ନିଜକୁ ଅନୁପ୍ରାଣିତ କରି ନାହାନ୍ତି ।

ଜୈନ ସମ୍ରାଟ ମହାପଦ୍ମ ଉଗ୍ରସେନ ଓ ମୌର୍ଯ୍ୟ ସାମ୍ରାଜ୍ୟର ପ୍ରତିଷ୍ଠାତା ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଆଦି ଦୀର୍ଘ ଜୀବନ ସଂଗ୍ରାମର ଆବେଷ୍ଟନୀ ମଧ୍ୟରେ କାଳାତିପାତ କରିଥିବାରେ ପ୍ରମାଣ ଅଛି । ବୋଧହୁଏ ଅହିଂସା ଆଦର୍ଶର ପ୍ରଭାବ ରାଜନୀତି କ୍ଷେତ୍ରରେ ପଡ଼ି ନ ଥିଲା । ବରଂ ଜୈନ ସମ୍ରାଟମାନେ ଦିଗ୍‌ବିଜୟୀ ବୀର ବୋଲି ନିଜକୁ ପ୍ରତିଷ୍ଠିତ କରିବାରେ ଅଧିକ ଆକାଂକ୍ଷୀ ଥିଲେ ବୋଲି ବିଶ୍ୱାସ କରିବା ଉଚିତ । ଖାରବେଳ ସେମାନଙ୍କର ପନ୍ଥା ଅନୁସରଣ କରିଥିଲେ ।

ଅଧିକନ୍ତୁ ସେ ଜୈନରୂପେ ଭୂମିଷ୍ଠ ହୋଇଥିଲେ । ସେ ଯେଉଁ ବଂଶରେ ଜନ୍ମଗ୍ରହଣ କରିଥିଲେ ସେହି "ଚେତ" ବଂଶ ଜୈନଧର୍ମର ପୃଷ୍ଠପୋଷକ ଥିଲା ।

ମୌର୍ଯ୍ୟ ସମ୍ରାଟ୍ ଅଶୋକଙ୍କ ପରି ସେ ଜୀବନର ମଧ୍ୟାହ୍ନରେ ଗୋଟିଏ ଧର୍ମ ତ୍ୟାଗ କରି ଅନ୍ୟ ଏକ ନୂତନ ଧର୍ମ ଗ୍ରହଣ କରି ନ ଥିଲେ । ଖ୍ରୀ. ପୂ. ୨୬୧ର କଳିଙ୍ଗ ଯୁଦ୍ଧ ଅଶୋକଙ୍କର ବ୍ୟକ୍ତିଗତ ଜୀବନରେ ଏକ ବିରାଟ ପରିବର୍ତ୍ତନର ପଥ ଉନ୍ମୁକ୍ତ କରି ପାରିଥିଲା । କଳିଙ୍ଗ ଯୁଦ୍ଧ-ପରେ ସମ୍ରାଟ୍ ଅଶୋକଙ୍କର ରାଜନୈତିକ ଜୀବନ ଗୌଣ ହେବା ସଙ୍ଗେ ସଙ୍ଗେ ଧର୍ମ ମନୋଭାବ ମୁଖ୍ୟ ହୋଇଥିଲା । ଅଶୋକଙ୍କ ଅବଶିଷ୍ଟ ଜୀବନ ଅତିବାହିତ ହୋଇଥିଲା ପ୍ରଜାମାନଙ୍କର ଆଧ୍ୟାତ୍ମିକ ଚିନ୍ତାର ଉତ୍କର୍ଷ ସାଧନ ନିମନ୍ତେ । କିନ୍ତୁ କୌଣସି ଯୁଦ୍ଧର ଭୟାବହତା ଓ ରକ୍ତ-ତାଣ୍ଡବ ଖାରବେଳଙ୍କର ଅବିଚଳିତ ମନରେ ପରିବର୍ତ୍ତନ ସୃଷ୍ଟି କରିପାରି ନ ଥିଲା । ରାଜନୀତି ଓ ଧର୍ମନୀତିକୁ ସେ ଭିନ୍ନ ଭିନ୍ନ ଚକ୍ଷୁରେ ଦେଖୁଥିଲେ । ସେ ଅଶୋକଙ୍କ ପରି ଧର୍ମକୁ ଏତେ ଗମ୍ଭୀର ଓ ତନ୍ମୟତା ସହକାରେ ଗ୍ରହଣ କରିଥିବା ଅନୁମିତ ହୁଏ ନାହିଁ ।

ଖାରବେଳ ଜୈନ ଥିଲେ, ଏହା ନିଃସନ୍ଦେହ । କିନ୍ତୁ ତାଙ୍କ ଜୈନଧର୍ମର ପରିବେଶ ଆଲୋଚନା କଲେ ଆମକୁ ନାନା ପ୍ରକାର ଜଟିଳତାର ସମ୍ମୁଖୀନ ହେବାକୁ ପଡ଼େ । ବାଲ୍ୟ କାଳରେ ସେ ଯେଉଁ ବିଦ୍ୟା ଶିକ୍ଷା କରିଥିଲେ, ତାହା ଅତି ବାସ୍ତବ ଧରଣର ଥିଲା । ସେଥିରେ ଆଧ୍ୟାତ୍ମିକ ଶିକ୍ଷାର ଗନ୍ଧ ମଧ୍ୟ ନ ଥିଲା । ତାଙ୍କର ଅଭିଷେକ ଉତ୍ସବ ବୋଧହୁଏ ସମାହିତ ହୋଇଥିଲା ବ୍ରାହ୍ମଣ୍ୟ ଧର୍ମର ନିୟମାନୁସାରେ । ତାଙ୍କର ଶାସନପ୍ରଣାଳୀ ମଧ୍ୟ ହିନ୍ଦୁ ଆଦର୍ଶାନୁସାରେ ପରିଗଠିତ ହୋଇଥିଲା । ଶାସନପ୍ରଣାଳୀରେ ଅର୍ଥ-ଶାସ୍ତ୍ରର ବିଶେଷ ପ୍ରଭାବ ପଡ଼ିଥିବାର ଅନୁମିତ ହୁଏ । ଯୁବରାଜ ଅବସ୍ଥାରେ କୌଟିଲ୍ୟ ମତର ଅନୁସରଣ କରି ନିଜକୁ ପ୍ରଜାବତ୍ସଳ ବିଜୟୀ ରାଜା ରୂପେ ଗଠନ କରିବାର ପ୍ରଚେଷ୍ଟା ସେ କରିଥିଲେ ।

ଖ୍ରୀ. ପୂ. ୨୬୧ର ବିଜୟ ପରେ ଅଶୋକ କଳିଙ୍ଗରୁ ଧନରତ୍ନ ଆଦାୟ କରିଥିବାର ପ୍ରମାଣ ଆମେ କେଉଁଠାରୁ ପାଇନାହୁଁ । ତାଙ୍କର ବିଜୟ ଓ ବିଜୟ-ପରବର୍ତ୍ତୀ ସମୟର ବ୍ୟବହାର ଖାରବେଳଙ୍କ ବିଜୟଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ଖାରବେଳ ଅଶୋକଙ୍କ ଅପେକ୍ଷା ଅଧିକ ରାଜ୍ୟ ଜୟ କରିଥିଲେ । ରାଜ୍ୟ-ଜୟ କେବଳ ତାଙ୍କର ଉଦ୍ଦେଶ୍ୟ ନ ଥିଲା । ବିଜିତ ରାଜ୍ୟରୁ କର ଆଦାୟ କରି ସେହି ଅର୍ଥ ଜୈନମାନଙ୍କ ପାଇଁ ଓ କଳିଙ୍ଗ ନଗରର ଉନ୍ନତିସାଧନ ପାଇଁ ସେ ବ୍ୟୟ କରୁଥିବାର ପ୍ରମାଣ ଆମେ ହାତୀଗୁମ୍ଫା ଶିଳାଲେଖରୁ ପାଉଛୁଁ । ଦିଗ୍‌ବିଜୟୀରୂପେ ସେ ଅଙ୍ଗ, ମଗଧ ଏବଂ ପାଣ୍ଡ୍ୟ ରାଜାଙ୍କୁ କର ଦେବା ସକାଶେ ବାଧ୍ୟ କରିଥିଲେ । ଜୈନଧର୍ମରେ ସାଧନା ନିମନ୍ତେ "ଦାରିଦ୍ର୍ୟ" ହିଁ ସାଧକମାନଙ୍କର ପ୍ରଥମ ଅବଲମ୍ବନ ଓ ସୋପାନ । ସଂସାରର ସବୁପ୍ରକାର ମୋହ ଏବଂ ମାୟା ପରିତ୍ୟାଗ କରି ନିଃସ୍ୱରୂପେ ଜୈନମାନେ ସାଧନାରେ ରତ ହୋଇଥାନ୍ତି । ଜୈନ ସମ୍ରାଟ ଖାରବେଳଙ୍କ ଜୀବନର ଉପାଦାନ କିନ୍ତୁ ଅନ୍ୟ ପ୍ରକାରେ ଗଠିତ ହୋଇଥିଲା । ଧନରତ୍ନକୁ ସେ ପରିତ୍ୟାଗ କରି ପାରି ନ ଥିଲେ । ଅଧିକନ୍ତୁ ଅନ୍ୟମାନଙ୍କର ଅର୍ଥ ଅପହରଣ କରି ନିଜ ସାମ୍ରାଜ୍ୟର

ଉନ୍ନତି ବିଧାନ କରୁଥିଲେ । ବୋଧହୁଏ ଦାକ୍ଷିଣାତ୍ୟକୁ ଧନରତ୍ନର ଭଣ୍ଡାର ବୋଲି ଜାଣି ସେ ପ୍ରଥମେ ଉତ୍ତର ଭାରତ ପରିବର୍ତ୍ତେ ଦକ୍ଷିଣ ଭାରତ ଆକ୍ରମଣ କରିଥିଲେ । ହାତୀଗୁମ୍ଫା ଶିଳାଲିପିରେ ବର୍ଣ୍ଣିତ ହୋଇଛି ଯେ—ଖାରବେଳଙ୍କ ଉତ୍ତର ଭାରତ ବିଜୟ ଖବର ଶୁଣି ପାଣ୍ଡ୍ୟ ରାଜା ତାଙ୍କୁ ବହୁପରିମାଣରେ ମୁକ୍ତା, ହୀରା ଓ ନାନା ପ୍ରକାର ଅମୂଲ୍ୟ ରତ୍ନ ଉପହାର ଦେଇଥିଲେ । ବିଦ୍ୟାଧର-ମାନଙ୍କୁ ପରାସ୍ତ କରି ସେମାନଙ୍କର ରାଜ-କୋଷ ଲୁଣ୍ଠନ କରିଥିବାର ବର୍ଣ୍ଣନା ମଧ୍ୟ ଶିଳାଲିପିରେ ଆମେ ପାଉଁ ।

ଏହି ସବୁ ଦୃଷ୍ଟିରୁ ବିଚାର କଲେ ଅଶୋକ ଓ ଖାରବେଳଙ୍କ ମଧ୍ୟରେ ଯେଉଁ ପାର୍ଥକ୍ୟ ଥିଲା, ତାହା ସହଜରେ ଆମେ ଅବଧାରଣ କରିପାରୁଁ । ଅଶୋକ କଳିଙ୍ଗ ବିଜୟ ପରେ ଚିରଦିନ ସକାଶେ ରାଜ୍ୟଜୟ ପ୍ରଥା ପରିତ୍ୟାଗ କରିଥିଲେ । କେବଳ ସେତିକି ନୁହେଁ ତାଙ୍କର ସମ-ସାମୟିକ ରାଜା ଓ ବଂଶଧରମାନଙ୍କୁ ଦିଗ୍‌ବିଜୟ ପ୍ରଥା ବନ୍ଦ ରଖିବାକୁ ଅନୁରୋଧ କରିଥିଲେ । ତେବେ ଅଶୋକ ଯେଉଁ ସାମାଜିକ ଉତ୍ସବ ଆଦିର ଉଚ୍ଛେଦ ସାଧନ କରିଥିଲେ, ଖାରବେଳ ତାହା କରି ନ ଥିଲେ । ସେ ପ୍ରଜାଙ୍କ ସହିତ ଅତି ସାଧାରଣ ଭାବରେ ନାନାପ୍ରକାର ଉତ୍ସବ ଓ ଆମୋଦପ୍ରମୋଦର ବ୍ୟବସ୍ଥା କରି-ଥିଲେ ବୋଲି ଜଣାଯାଏ ।

ପ୍ରଜାମାନଙ୍କର ଧର୍ମାନୁଚିନ୍ତା ଓ ପୂଜାପଦ୍ଧତିରେ ସେ କୌଣସି ପ୍ରକାର ହଳବଳ ସୃଷ୍ଟି କରି ନ ଥିଲେ । ସାମାଜିକ ଉତ୍ସବାଦି ପାଇଁ ସେ ଅଜସ୍ର ମୁଦ୍ରା ଅକାତରରେ ବ୍ୟୟ କରିଥିଲେ । ଏହି ଉତ୍ସବ ପାଇଁ ପ୍ରତିବର୍ଷ ଏକାଧିକବାର ବିରାଟ ଶୋଭାଯାତ୍ରା ଆୟୋଜିତ ହେଉଥିଲା ଏବଂ ଖାରବେଳ ନିଜେ ସେଥିରେ ଅଂଶ-ଗ୍ରହଣ କରୁଥିଲେ । ଏହି ଶୋଭାଯାତ୍ରାରେ ସମ୍ରାଟଙ୍କର ଅଶ୍ୱ, ହସ୍ତୀ, ରାଜଛତ୍ର, କେତନ, ରଥମାନ ଅତି ଆଡ଼ମ୍ବର ସହକାରେ ପ୍ରଦର୍ଶିତ ହେଉଥିଲା । ଧର୍ମ-ନିରପେକ୍ଷ ଖାରବେଳ କୌଣସି ଗୁଣରେ ଅଶୋକଙ୍କ ଅପେକ୍ଷା ନ୍ୟୂନ ନ ଥିଲେ । ବରଂ ସହିଷ୍ଣୁତା ଗୁଣ ଖାରବେଳଙ୍କର ଅଧିକ ଥିଲା । କଳିଙ୍ଗ ସାମ୍ରାଜ୍ୟର ସବୁ ଧର୍ମର ଅଭିବୃଦ୍ଧିରେ ସେ ସାହାଯ୍ୟ କରିଥିଲେ । କୌଣସି ଧର୍ମସମ୍ପ୍ରଦାୟର ସମସ୍ୟା ଓ କଳରୋଳରେ ସେ କେବେ ନିଜକୁ ସଂପୃକ୍ତ କରୁ ନ ଥିଲେ । ଧର୍ମ-ସଂକ୍ରାନ୍ତ କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ସେ କେବେ ଇଚ୍ଛାନ୍ୱିତ ହୋଇ ନ ଥିଲେ; ବରଂ ସବୁ ଧର୍ମର ସେବା ପରିଚର୍ଯ୍ୟା କରିବା ହିଁ ତାଙ୍କ ଜୀବନର ଲକ୍ଷ୍ୟ ଥିଲା ।

ଏସବୁ ବିଚାର ସତ୍ତ୍ୱେ ଜୈନଧର୍ମ ପ୍ରତି ଖାରବେଳଙ୍କର ବିଶେଷ ଅନୁରକ୍ତି ଥିଲା ବୋଲି ସ୍ୱୀକାର କରିବାକୁ ସମସ୍ତେ ବାଧ୍ୟ । ଜୈନଧର୍ମକୁ ସୁପ୍ରତିଷ୍ଠିତ କରିବା ଉଦ୍ଦେଶ୍ୟରେ ତାଙ୍କର କର୍ମତତ୍ପରତା, ପ୍ରଯତ୍ନ ଓ ଦାନ ଇତିହାସ ବକ୍ଷରେ ଚିରଦିନ ଲିପିବଦ୍ଧ ହୋଇ ରହିଛି ଏବଂ ରହିବ ମଧ୍ୟ । ତାଙ୍କ ଶାସନକାଳରେ ଜୈନଧର୍ମ କଳିଙ୍ଗରେ ଉନ୍ନତିର ଶୀର୍ଷ-ବିନ୍ଦୁରେ ପହଞ୍ଚି ପାରିଥିଲା । ମଗଧରୁ କଳିଙ୍ଗ ଜିନଙ୍କୁ ଉଦ୍ଧାର କରିବା ଦ୍ୱାରା ସେ ଜାତୀୟ ଦେବତାର ପୁନଃ ସଂସ୍ଥାପନା କରିଥିଲେ । ରାଜତ୍ୱକାଳର ଶେଷବେଳକୁ

ଖାରବେଳଙ୍କ ଜୀବନରେ ପରିବର୍ତ୍ତନର ଅଧ୍ୟାୟ ଆରମ୍ଭ ହୋଇଥିଲା । କ୍ରମେ କ୍ରମେ ଜୈନଧର୍ମର ଆଦର୍ଶ ତାଙ୍କୁ ଅଭିଭୂତ କରି ପକାଇଲା । ରାଜତ୍ୱର ଚତୁର୍ଦ୍ଦଶ ବର୍ଷ ପରେ ଏହି ମହାମେଘବାହନ ସମ୍ରାଟ୍ ଚେଦିରାଜ ସନାତନ କଳିଙ୍ଗ ଇତିହାସରୁ ବିଦାୟ ନେଇ ଅନନ୍ତ ଅଜ୍ଞାତ ଗର୍ଭରେ ଲୀନ ହୋଇଗଲେ ।

ଖାରବେଳ ମାତ୍ର ସପ୍ତତ୍ରିଂଶ ବର୍ଷ ବୟସରେ କଳିଙ୍ଗର ରାଜମଞ୍ଚରୁ ହଠାତ୍ ଅନ୍ତର୍ହିତ ହୋଇଛନ୍ତି । ହାତୀଗୁମ୍ଫା ଶିଳାଲିପିର ଲେଖକ ଏଠାରେ ପୂର୍ଣ୍ଣଚ୍ଛେଦ ଦେଇ ଇତିହାସପୃଷ୍ଠାରେ ଏକ ବିରାଟ ଶୂନ୍ୟ ସୃଷ୍ଟି କରନ୍ତି । ଖାରବେଳଙ୍କ ପରବର୍ତ୍ତୀ ଜୀବନ ସମ୍ପର୍କରେ ଆମେ କେଉଁଠାରୁ କିଛି ଜାଣିବାକୁ ପାଉନା । ବୋଧହୁଏ ରାଜୈଶ୍ୱର୍ଯ୍ୟର ତିକ୍ତତାରେ ବ୍ୟସ୍ତ ହୋଇ ଖାରବେଳ ମୌର୍ଯ୍ୟ ସମ୍ରାଟ୍ ଚନ୍ଦ୍ରଗୁପ୍ତଙ୍କ ପରି ଶାନ୍ତିର ଅନ୍ୱେଷଣରେ ସଂସାର ତ୍ୟାଗ କରିଥିଲେ ଏବଂ ବୋଧହୁଏ ଜୈନ ସନ୍ନ୍ୟାସୀରୂପେ ତାଙ୍କର ଅବଶିଷ୍ଟ ଜୀବନ କଠୋର ସାଧନା ଏବଂ ଅଧ୍ୟବସାୟ ମଧ୍ୟରେ ଗତ କରି ଉଦୟଗିରି ବା ଖଣ୍ଡଗିରିର କୌଣସି ନିର୍ଜନ ଗୁମ୍ଫା ମଧ୍ୟରେ ସମାପ୍ତ ହୋଇଥିଲା । ତାହାହିଁ ବାସ୍ତବରେ ଜୈନ ଉପାସକର ଆଦର୍ଶ ଏବଂ ଜୈନ ଜୀବନର ଚରମ ପରିଣତି ।

## ଖଣ୍ଡଗିରି ଓ ଉଦୟଗିରିର ବ୍ରାହ୍ମୀଲିପି

ଖାରବେଳଙ୍କ ହାତୀଗୁମ୍ଫା ଶିଳାଲିପି—

ନମୋ ଅରହଂତାନଂ (୩) ନମୋ ସବସିଧାନଂ (୪) ଏରେଣ (୫) ମହାରାଜେନ ମହାମେଘବାହନେନ ଚେତ (୬) ରାଜବଂଶ ବଧନେନ ପସଥସୁଭ ଲଖନେନ ଚତୁରଂତ (ରଖଣ) (୭) ଗୁଣଉପେତେନ (୮) କଲିଂଗାଧି-ପତିନା ସିରି ଖାରବେଳେନ ପଂଦରସ ବସାନି ସିରି କଡ଼ାର ସରିରବତା କିଡ଼ିତାକୁମାର କିଡ଼ିକା ତତୋ ଲେଖ ରୂପ-ଗଣନା-ବବହାର ବିଧି ବିସାରଦେନ ସବବିଜାବଦାତେନ ନବବସାନି ଯୋବ ରଜମ୍ ବ (୯) ସାସିତମ୍ ସପୁଣ ଚତୁବୀସତିବସେ ତଦାନି ବଧମାନ ସେସସୋ ଜନାଭିଜୟୋ ତତିୟେ କଲିଙ୍ଗ ରାଜବଂସେ (୧୦) ପୁରିସଯୁଗେ ମହାରଜା ଅଭିସେଚନମ୍ (୧୧) ପାପୁନାତି ।

---

(୧) ବଧମଙ୍ଗଳ

(୨) ସ୍ୱସ୍ତିକ

(୩) ଓ (୪) ଜୈନ ଶାସ୍ତ୍ରର ପଞ୍ଚନମସ୍କାର ମଧ୍ୟରୁ ଏହି ଦୁଇଟି ଅନ୍ୟତମ ।

(୫) Dr. B. M. Barua—'ଐରେଣ'

(୬) Dr. D. C. Sircar—'ଚେତ'

(୭) Dr. D. C. Sircar—'ଲୁଠଣ' ।

(୮) Dr. D. C. Sircar & K. P. Jayaswal—'ଉପିତେନ'

(୯) D. C. Sircar—'ପ'

(୧୦) Dr. B. M. Barua—'ରାଜବଂଶେ'

(୧୧) K. P. Jayaswal—'ମାପ୍ନ'...

(୧୨) 'ଦଦପତ'

ଅଭିସିତ ମତୋ ଚ (୧୩) ପଧମେ (୧୪) ବସେ ବାତ-ବିହତ-ଗୋପୁର-ପାକାର-ନିବେସନଂ ପଟି ସଂଖାରୟତି କଳିଙ୍ଗ ନଗରୀ ଖିବିରେ (୧୫) ସିତଳ ତଡାଗ-ପାଡ଼ିୟୋ ଚ ବଂଧାପୟତି ସବୁୟାନ ପଟିସଂଠପନଂ ଚ କାରୟତି ପନତିସାହି (୧୬) ସତ ସହସେହି ପକତିୟୋ ରଂଜୟତି (୧୭) ଦୁତିୟେ ଚ ବସେ ଅଚିତୟିତା ସାତକଂନିଂ (୧୮) ପଛିମ ଦିସଂ ହୟ-ଗଜ-ନର-ରଧ-ବହୁଲଂ ଦଂଡଂ ପଠାପୟତି କଳିଙ୍ଗ (୧୯) ଗତାୟଚ ସେନାୟ ବିତାସେତି ଅସିକ ନଗରମ୍ (୨୦) ତତିୟେ (୨୧) ପୁନବସେ ଗଂଧବ-ବେଦ-ବୁଧୋ ଦଂପ ନତ-ଗୀତ-ବାଦିତ-ସଂଦସନାହି ଉସବ ସମାଜ-କାରପନାହି ଚ କୀଡାପୟତି ନଗରିମ୍ ।

ତଥା (୨୨) ଚବୁଥେ ବସେ ବିଜାଧରାଧିବାସଂ ଅହତପୁବମ୍ (୨୩) କଳିଙ୍ଗ ପୁବ-ରାଜାନମ୍ (୨୪) ଧମେନ ବ ନିତ ନା ବ ଭସାସତ ସବତ ଧମକୁଟେନ (୨୫) ଖିତ-ଛସିରେ ଚ ନିଖିତ ଛତ-ଭିଙ୍ଗାରେ ହିତ-ରତନ-ସାପତେୟେ (୨୬) ସବ-ରଠିକ-ଭୋଜକେ ପାଦେ ବଂଦାପୟତି ପଂଚମେଚ ଦାନି ବସେ ନଂଦରାଜ ତିବସସତ (୨୭) ଓଘାଟିତମ୍ ତନସୁଳିୟ ବାଟା ପଣାଡିଂ ନଗରଂ ପବେସୟତି ସତସହସେହିଚ ଖନାପୟତି ଅଭିସିତୋଚ ଅଠେବସେ ରାଜସିରିଂ (୨୮) ସଂଦଂସୟଂତୋ ସବ-କର ବଣଅନୁଗହ ଅନେକାନି ସତସହସାନି ବିସଜତି ପୋର-ଜାନପଦଂ ସତମେଚ (୨୯) ବସ (୩୦) ଅପି-ଛତ-ଧଜ-ରଧ - ରକ୍ଷି - ତୁରଂଗ-ସତ-ସଂଥାନି ସଦତ ସଂଦଂ ସନଂ ସଦ-ମଙ୍ଗଳାନି କାରୟତି ସତସଦ ସେହି (୩୧)

---

(୧୩) Prinsep—'ମତେ'

(୧୪) B. Lal, Indraji—'ପଧମ'

(୧୫) Dr. B. M. Barua—'ଖିବରେ'

(୧୬) Dr. K. P. Jayaswal—'ପନେଖ ସାହି'

(୧୭) Indraji—ଭୁଲରେ 'ରଞ୍ଜୟତ' ପଢ଼ିଥିଲେ ।

(୧୮) K. P. Jayaswal ଓ Barua—'ସତକଣିମ୍'

(୧୯) K. P. Jayaswal—କନ୍ହବେନାମ୍ ଓ Dr. D. C. Sircar—'କହ୍ନବେଣା'

(୨୦) D. C. Sircar—'ଅସିକ ନଗରଂ'

(୨୧) Indraji—'ତତେୟେ'

(୨୨) Indraji—'ରଥ', Barua, Jayaswal ଓ Sircar—'ତଥା'

(୨୩) D. C. Sircar—'ଅହତପୁବ'

(୨୪) D. C. Sircar—'କଳିଙ୍ଗ ପୁବ-ରାଜ'

(୨୫) Indraji—'ଧମକୁଟସ', K.P. Jayaswal—'ଦଢଧମକୁଟ'

(୨୬) D. C. Sircar—'ସପତେୟେ'

(୨୭) Indraji ଓ Jayaswal—'ତିବସସତମ୍', Barua ଓ Sircar—'ତିବସସତ'

(୨୮) D. C. Sircar—'ରାଜସେୟଂ'

(୨୯) D. C Sircar—'ସତମଂ'

(୩୦) B. M Barua—'ବସେ'

(୩୧) D. C. Sircar—ଏହି ଧାଡ଼ିକୁ ଭିନ୍ନଭାବେ ପାଠ କରନ୍ତି ଏବଂ ତାଙ୍କର ପାଠ ସଂପୂର୍ଣ୍ଣ ନୁହେଁ ।

ଅଠମେଚ ( ୩୨ ) ବସେ ମହତା (୩୩) ସେନାୟ ମଧୁରଂ ଅନୁପତେ । ଗୋରଧଗିରିଂ ଘାତାପୟିତା ରାଜଗହାନ ଉପୀଡ଼ା ପୟତି (୩୪) ଏତିନଂ ଚ କଂମ ପଦାନ (୩୫) ପନାଦେନ-ସଂଖିତ-ସେନ-ବାହନେ ବିପମୁ ଚିତୁଂ ମଧୁରଂ ଅପୟାତୋ ଯବନରାଜ ( ୩୬ ) ପବଘର ( ୩୭ ) ବାପିନଂ ଚ ପତଗହତଣଂ ଚ ସ ଘାନ ଭୋଜନଂ ଚ ସଦସ୍ୱଜ ଭକାନଂ ଚ । ସଙଗହ ଘରକାନଂ ଚ ଶବ ବ୍ରହ୍ମଣାନଂ ଚ ପାନ ଭୋଜନଂ ଦଦାଶ । କଳଙ୍ଗ ଜନଂ (୩୮) ଫଲବଖର କପରୁଖ (୩୯) ହୟ-ଗଜ-ନର-ରଧ-ସହ ଯାତି ସବ ଘର-ବାସିନଂ ଚ ସବରାଜଭତକାନଂ ଚ ମବପତ ମତକାନଂ ଚ ସବ ବ୍ରହ୍ମଣାନଂ ଚ ପାନ-ଭୋଜନଂ ( ୪୦ ) ଦଦାତି ଅରହତାନମ୍ ସମଣାନଂ ଚ ଦଦାତି ସତ ସହ ସେହ୍ନ ।

ନବମେଚବସେ ବେଡୁରିୟ କଳଙ୍ଗ ରାଜ ନବାସ ବଡା ଉଜପ୍ରଘାସାଦଂ କାରୟତି ଅଠତସାୟ ଶତ ସହ ସେହି ଦସ ମେଚ ବସେ କଳଙ୍ଗରାଜ ବଂଶାନଂ ଚତସ୍ର ଯୁଗ ସଗାବଦାନେ କଳଙ୍ଗ ପୁବରଜାନଂ ମସ-ସଭାରଂ (୪୧) କାରୟତି ସତସହ ସେହ୍ନ । ଏକା ଦସମେଚ ବସେ ମଣିରତନାଣ ସହ ଚାତ (୪୨) କଳଙ୍ଗ ପୁବରାଜ ନିବେସିତ ( ୪୩ ) ପିଥୁଣ୍ଡ-ଦଭଂ ନଗଲେ ନେକା ସୟତି (୪୪) ଜନୁପଦ ଭବନଂ ଚ ତେରସ-ବସ-ସତ କତଂ ଭିଦତ ତମିର ଦହ (୪୫) ସଘାତଂ ବାର ସମେଚ (୪୬)

---

(୩୨) Prinsep—"ଚ" ପଢ଼ିନାହାନ୍ତି

(୩୩) Barua—'ମହ୍ନତ ସେନାୟ'

(୩୪) Prinsep—'ରାଜ ଗହମ୍ ଉପ ପୀଡ଼ାପୟତି'

Indraji—'ରାଜଗହ-ନତାନ୍ ପୀଡା-ପୟତି'

Sircar—'ରାଜଗହଂ ଉପପୀଡାପୟତି'

(୩୫) Jayaswal— 'କଂମାପଦାନ'

(୩୬) B. M. Barua—"ଯ୍ବେନନ ଉଦୋ"

Jayaswal—'ଯବନ ରାଜ'

(୩୭) Jayaswal— "ଡମିତ" ବା "କମିତ"

(୩୮) Barua—'କଳଙ୍ଗଂ ଯାତ'

(୩୯) Cunningham— "କପନ୍ ଭୂଖ"

Indraji—'କପରୁଖୋ'

Jayaswal — 'କଲ୍ପରୁଖେ' ବା 'କପରୁଖେ'

(୪୦) D. C. Sircar—'ସବ-ଗହଣଂଚ କାରୟିତୁଂ ବ୍ରହ୍ମଣାନାଂ ଜତୁ ପରିହାର'

(୪୧) D. C. Sircar.—'ଦଂଡ ସଧୀ ସାମମୟୋ ଭରଧବସ ପଠାନଂ ମହ ଜୟନଂ । ଦଶମ ବର୍ଷର ବର୍ଣ୍ଣନା ସେ ପାଠ କରିଥାନ୍ତି ।

(୪୨) Prinsep—'ଉପଦ୍ଧ', Indraji—'ଉପଲଭତା', Jayaswal—'ଉପଲଭତ', Sircar 'ଉପଲଭତେ'

(୪୩) D. C. Sircar—'ପୁବ ରାଜ ନିବେସିତଂ'

(୪୪) D. C. Sircar—'ପୀଥୁଡଂ ଗଦଭନଂ ନଂଗଲେ ନାସୟତି'

(୪୫) D. C. Sircar—'ଜନପଦ ଭାବନଂ ଚ ତେରସ ବସସ ସତଂ କତଂ ଭିଦତି ତମିର ଦହ'

(୪୬) Indraji—'ବାରସମ'

ବସେ ସତସହ ସେହି ବିତାସୟତି ଉତ୍ତର ପଧସ ରାଜନୋ । ମାଗ ଧାନଂ ଚ ବିପୁଳଂ ଭୟଂ ଜନେତୋ ହଥୀସଂ ଗଙ୍ଗାୟ (୪୭) ପାୟୟତି ମଗଧାନଂଚ ରାଜାନଂ ବହସତି ମିତଂ ପାଦେ ବଂଦାପୟତି ନଂଦରାଜନୀତଂ (୪୮) କଳିଙ୍ଗଜନଂ ସନିବେସ ଅଙ୍ଗ ମଗଧତୋ । କଳଙ୍ଗ ଆନେତି ହୟଗଜ-ସେନ- ବାହନ-ସହ ସେହି ଅଙ୍ଗ-ମଗଧ ବାସିନଂ (୪୯) ଚ ପାଦେ ବଂଦାପୟତି । ଗାଥ-ତତର-ପଲଖାଣ ଗୋପୁରାଣ ସିହରାଣ ଣବେସୟତି । ସୁତଭାସୁକୋ (୫୧) ରତନଂ ପେସୟଂତି (୫୨) ଅଭୂତ ମଚ୍ଛରିୟଂ ଚ ହଥୀ ଣବାସ (୫୩) ପରିହରଂତି (୫୪) ମିଗ-ହୟ-ହଥୀ ଉପନାମୟଂତି (୫୫) ପଂଡ଼ ରାଜା ଚବଧାଭରଣାନମୁତା-ମଣି ରତନାନ ଆହରାପୟତି ଇଧ ସତସହାସାନ ସିନୋ ବସୋ କାରେତି ତେର ସମେଚ ବସେ ସୁପବତ ବିଜୟଚକେ କୁମାରୀପବତେ ଅରହତେ ପରିଣବସତୋ ହି କାୟନିସୀ ଦିୟାୟ ରାଜଭତି ଚେନ୍ନ ରାଜଭିତିନ୍ନ ରାଜସାତିନ୍ନ ରାଜ ପୁତେନ୍ନ ରାଜମହିସି ଖାରବେଳ ସିରିନା ସତ ବସ ଲେଣସହିତ ଯ ପିଚମ୍ (୫୬)

ସକତ ସମଣା (୫୭) ସୁଵିହିତାନଂ ଚ ସବଦିସାନଂ (୫୮) ଅନନଂ ତାପସଇସିନଂ ସଂଘିୟନଂ (୫୯) ଅରହତ ନିସୀ ଦିୟା (୬୦) ସମୀପେ ପଭାରେ ବରାକର ସମୁଥାପିତାହି ଅନେକ ଯୋଜନାହି ତାହି ପନତି ସାହି ସତ ସହ ସେହି ସିଳାହି ସିନଥଂଭାନ ଚ ଚେତିୟା ନିଚ କାରାପୟତି ପଟଲକ ଚତରେ ଚ ବେଡୁରିୟ-ଗଭେ ଥଂଭେ ପତିଠାପୟତି ପନତରିୟ ସତସହ ସେହି ମୁରିୟ-କାଳ ବୋଛିନଂ (୬୧) ଚୋୟଠି ଅଧ ସତିକଂ ତୁରିୟଂ (୬୨) ଉପାଦୟତି ଖେମରାଜସ ବଢ଼ରାଜସ (୬୩) ଭିଖରାଜସ (୬୪)

(୪୭) Prinsep—'ହଥସଂ ଗଂଗସ, Jayaswal ହଥୀସୁଗଂଗୀୟମ୍'

(୪୮) Barua – ନଂଦରାଜନୀତଂ-କାଳିଙ୍ଗ ଜିନାସନମ୍

(୪୯) Sircar—ଅଂଗ ମଗଧ ବସୁଂ

(୫୦) K. P. Jayaswal— 'ଜ ଠରଲଖିଲବରାନ'

D. C. Sircar— 'ଜଠରଲଖିଲ'

(୫୧) D. C. Sircar— 'ସତବି-ସିକନଂ'

(୫୨) D. C. Sircar—'ପରିହାରେହି'

(୫୩) Barua—'ହଥୀସ ପସଦମ୍'

(୫୪) D. C. Sircar—'ପରିହର'

(୫୫) D. C. Sircar—'ରତନ-ମାଣିକଂ'

(୫୬) D. C. Sircar—[ ଏହାକୁ ଭିନ୍ନଭାବେ ପାଠ କରିଛନ୍ତି ]— 'ତେରସମେଚ ବସେ ସୁପବତ ବିଜୟ ଚକେ ଅରହତେହି ପଖିନ ସଂସିତେହି କାୟନିସି ଦିୟାୟ ଯାପଜ୍ଞାବକେହି ରାଜଭିତିନି ଚିନବତାନି ବାସାସିତାନି ପୂଜାନୁ ରତ-ଉବାସଗ-ଖାରବେଳ ସିରିନା ଜିବଦେହ ସୟିକା ପରିଖାତା ।

(୫୭) Jayaswal—'ସୁକତ'

(୫୮) Barua—'ସବଦସାନଂ'

(୫୯) Barua –'ଘତନଂ ତାପସଇସିନଂ ଲେଣଂକାରସୁତ'

(୬୦) Indraji—'ନିସିଦୟ'

(୬୧) D. C. Sircar – 'ମୁରିୟକାଳ'

(୬୨) D. C. Sircar—'ଅଙ୍ଗତକ ତୁରିୟଂ'

(୬୩) Barua – 'ବଧରାଜସ'

ଧମରାଜ ପସଂତୋ ସୁଣଂତୋ ଅନୁଭବଂତୋ କଲାଣାନି ଗୁଣ ବିସେସ କୁସଲୋ ସବପାସଂଡ ପୂଜକୋ ସବ ଦେବାୟତନ ସଂକାର କାରକୋ ଅପତିହତ ଚକୋ ବାହନବଲୋ ଚକଧରୋ ଗୁତଚକୋ ପବତଚକୋ ରାଜସିବସୁକୁଲ ବିନିସିତୋ (୬୫) ମହାବିଜୟୋ ରାଜା ଖାରବେଳ ସିରି ।

ଖଣ୍ଡଗିରି ଓ ଉଦୟଗିରିର ଅନ୍ୟାନ୍ୟ ଶିଳାଲେଖ

୧ । ବୈକୁଣ୍ଠପୁର ଗୁମ୍ଫା—

ଅରହନ୍ତ ପସାଦାୟନଂ (୬୭) କାଲିଂଗାନଂ (୬୮) ସମନାନଂ ଲେଣଂ କାରିତଂ ରାଜିନୋ ଲାଲାକସ ହଥିସିହସ ପପୋତସ (୬୯) ଧୁତୁନା କଲିଙ୍ଗ ଚକବତିନୋ ସିରି ଖାରବେଳସ ଅଗମହିସିନା କାରିତଂ ।

୨ । ମଞ୍ଚପୁର ଗୁମ୍ଫା—

ଏରସ (୭୦) ମହାରାଜସ କଲିଙ୍ଗାଧି-ପତିନୋ ମହାମେଘବାହନସ କଦଂପ ସିରିନୋ (୭୧) ଲେଣଂ ।

୩ । କୁମାର ବଦୁକସ ଲେଣଂ (୭୨)

୪ । ଚ୍ଛୋଟ ହାତୀଗୁମ୍ଫା—

ଅଗି···ଖ···ପଲେଣଂ (୭୩)

୫ । ସର୍ପ ଗୁମ୍ଫା—

ଚୂଳକମସ କୋଠାଜେୟା ଚ

୬ । କଂ ମସ ହଲଖିଣାୟ ଚ ପସାଦୋ

୭ । ହରିଦାସ ଗୁମ୍ଫା—

ଚୂଳକମସ ପସାଦୋ କୋଠାଜେୟା ଚ

୮ । ବ୍ୟାଘ୍ର ଗୁମ୍ଫା—

ନଗର ଅଖଦଂସ (୭୪)

ସଭୁତିନୋ ଲେଣଂ (୭୫)

୯ । ଜମ୍ବେଶ୍ୱର ଗୁମ୍ଫା—

ମହାମଦାସ ବାରିୟାୟ ନାକିୟାସ ଲେଣଂ

୧୦ । ତତ୍ତ୍ୱ ଗୁମ୍ଫା —

ପାଦମୁ ଲିକସ କୁସୁମାସ ଲେଣଂ ପି (୭୬)

୧୧ । ଅନନ୍ତ ଗୁମ୍ଫା—

ଦୋହଦ ସମାଣାନଂ ଲେଣଂ (୭୭)

୧୨ । ···କୋଠାଜେୟା···

୧୩ । ତତ୍ତ୍ୱ ଗୁମ୍ଫା । (୧)

···ସପ୍ରତସକାୟା···

---

(୬୪) Sircar—'ଭିକୁ ରାଜସ'

(୬୫) Barua—'ରାଜସି-ବଶ-କୁଲ-ଭିନିସିତୋ'

(୬୬) ବୃଷଚୈତ୍ୟ ।

(୬୭) Barua—'ପସାଦାନଂ'
Sircar—'ପସାଦାୟ'

(୬୮) Cunningham-'କଲିଂଗାନଂ

(୬୯) Barua—'ହଥିସାହସ ପନାତୁ'

(୭୦) R. D. Banerjee—'ଏରସ'
D. C. Sircar—'ଏରସ'

(୭୧) Sircar—'ବକଦେଵ ସିରିନୋ' R. D. Banerjee—'କୁଦେପସିରି'

(୭୨) Rajendra L. Mitra—'ଲେଣଂ'

(୭୩) R. D. Banerjeeଙ୍କର ଏହି ପାଠକୁ B. M. Barua ସମ୍ପୂର୍ଣ୍ଣ କାଳ୍ପନିକ ବୋଲି ଅଭିହିତ କରିଛନ୍ତି ।

(୭୪) B M. Barua—'ନଗର'-ଅଖଦଂସସ୍ କୁଠକୋଲେଣଂ'

(୭୫) Prinsep ଓ R. L. Mitra ଭୁଲକ୍ରମେ 'ଲେଣଂ' ବୋଲି ପାଠ କରିଥିଲେ ।

(୭୬) B. M. Barua-'ପାଦମୁଳିକସ କୁସୁମସ ଲେଣଂ'

(୭୭) Barua—'ସମାଣାନଂ ଲେଣଂ'

ଖଣ୍ଡଗିରି ଓ ଉଦୟଗିରିର ଏହି ଶିଳାଲେଖମାନ ପ୍ରାଚୀନ ବ୍ରାହ୍ମୀଲିପିରେ ଲିଖିତ ହୋଇଛି । ଏଗୁଡିକ ଖ୍ରୀ. ପୂ. ପ୍ରଥମ ଶତାବ୍ଦୀର ଶେଷ ଭାଗରେ ବା ପରେ ପରେ ଲେଖା ହୋଇଥିଲା; କାରଣ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲିପି ଓ ନାୟନିକାଙ୍କର ନାନାଘାଟ ଶିଳାଲିପିକୁ ତୁଳନା କରି ହାତୀଗୁମ୍ଫା ଶିଳାଲିପି ନାନାଘାଟର ପରବର୍ତ୍ତୀ ଯୁଗର ବୋଲି ଐତିହାସିକମାନେ ମତବ୍ୟକ୍ତ କରିଅଛନ୍ତି ।

ନାନାଘାଟ ଶିଳାଲିପି ଖ୍ରୀ. ପୂ. ପ୍ରଥମ ଶତାବ୍ଦୀର ମଧ୍ୟଭାଗରେ ଲିଖିତ ହୋଇଥିଲା ବୋଲି ଡ. ଦିନେଶ ଚନ୍ଦ୍ର ସରକାରଙ୍କର ମତ । ସୁତରାଂ ହାତୀଗୁମ୍ଫା ଓ ଖଣ୍ଡଗିରି ଏବଂ ଉଦୟଗିରିର ଶିଳାଲିପିମାନ ଖ୍ରୀ ପୂ. ପ୍ରଥମ ଶତାବ୍ଦୀର ଶେଷଭାଗ ଏବଂ ଖ୍ରୀଷ୍ଟାବ୍ଦ ପ୍ରଥମ ଶତାବ୍ଦୀରେ ଲେଖା ହୋଇଥିଲା ବୋଲି ଆମର ବିଶ୍ୱାସ କରିବା ଉଚିତ ।

ଶିଳାଲିପିମାନଙ୍କର ଭାଷା ଅନେକ ଅଂଶରେ ପାଲିଭାଷା ପରି । ପ୍ରାକୃତରେ କେତେକ ଶବ୍ଦକୁ ଛାଡ଼ିଦେଲେ ଅବଶିଷ୍ଟ ସବୁ ଶବ୍ଦ ପାଲିଭାଷାର । ସାଧାରଣତଃ ଅର୍ଦ୍ଧମାଗଧୀର ପ୍ରଭାବ ଅପ୍ରତିହତ ଭାବେ ଏହି ଶିଳାଲେଖର ଭାଷା ଉପରେ ମଧ୍ୟ ପଡ଼ିଛି । ଅଶୋକଙ୍କର ଗିର୍ଣାର ଶିଳାଲେଖ ପାଠ କଲେ ସ୍ପଷ୍ଟ ଅନୁମିତ ହୁଏ ଯେ ତାହା ପାଲି ଓ ପଶ୍ଚିମ ଭାରତୀୟ କୌଣସି ପ୍ରାକୃତ ଭାଷାର ଏକତ୍ର ସମ୍ମିଶ୍ରଣ ମାତ୍ର । ସେହିପରି ପାଲି ସହିତ ହାତୀଗୁମ୍ଫା ଶିଳାଲେଖରେ ବ୍ୟବହୃତ ଭାଷାର ସାମ୍ୟ ବିଚାର କରି ଏହାକୁ ମଧ୍ୟ କଳିଙ୍ଗରେ ବ୍ୟବହୃତ ପ୍ରାକୃତ ଭାଷା ବୋଲି କହିବା ଅଯୌକ୍ତିକ ନୁହେଁ । ଏଠାରେ ଗୋଟିଏ ପ୍ରଶ୍ନ ଉଠିପାରେ ଯେ, ପାଲି ସାଧାରଣତଃ ବୌଦ୍ଧମାନଙ୍କର ଭାଷା । ଖଣ୍ଡଗିରି ଓ ଉଦୟଗିରିର ଜୈନ ଶିଳାଲିପିମାନଙ୍କରେ ପାଲିଭାଷାର ପ୍ରଭାବ ପଡ଼ିଲା କିପରି ? ଏହି ପ୍ରଶ୍ନର ଉତ୍ତର ଦେବା ନିମନ୍ତେ ଐତିହାସିକ ପ୍ରମାଣ କିଛି ନାହିଁ । ତେବେ ଏହା ଖୁବ୍ ସ୍ୱାଭାବିକ ଯେ ପଶ୍ଚିମ ଭାରତୀୟ କୌଣସି ଜୈନ ଉପାସକ ବା ବୌଦ୍ଧଧର୍ମ ତ୍ୟାଗ କରି ଜୈନଧର୍ମ ଗ୍ରହଣ କରିଥିବା କୌଣସି ସନ୍ନ୍ୟାସୀଙ୍କ ଦ୍ୱାରା ଖଣ୍ଡଗିରି ଓ ଉଦୟଗିରିର ଶିଳାଲେଖମାନ ରଚିତ ହୋଇଥିବାରୁ ପାଲିଭାଷା ସହିତ ଏତେ ସାଦୃଶ୍ୟ ରହିଲା କିମ୍ବା ପାଲି ଭାଷାରେ ରଚିତ ହୋଇଥିବା ପ୍ରଶସ୍ତି ଗୁମ୍ଫାମାନଙ୍କରେ ଲିଖିତ ହେବା ପାଇଁ କୌଣସି ଜୈନ ସନ୍ନ୍ୟାସୀଙ୍କୁ ଦାୟିତ୍ୱ ଦିଆଯାଇଥିବାରୁ, ଲେଖିବା ସମୟରେ ଅର୍ଦ୍ଧମାଗଧୀର ବ୍ୟବହାର ଉକ୍ତ ଜୈନ ଲେଖକଙ୍କୁ ପ୍ରଭାବିତ କରିଛି ।

ସେ ସମୟରେ କଳିଙ୍ଗର କଥିତ ଭାଷା କ'ଣ ଥିଲା, ତାହା କହିବା ସମ୍ଭବପର ନୁହେଁ ।

ହାତୀଗୁମ୍ଫା ଓ ଅନ୍ୟାନ୍ୟ ଶିଳାଲିପିମାନ ଗଦ୍ୟରେ ଲିଖିତ ହୋଇଥିଲେ ହେଁ ସେମାନଙ୍କର ଭଙ୍ଗୀ ସାବଲୀଳ ଏବଂ ଏଥିରେ କାବ୍ୟିକ ଉପାଦାନ ଯଥେଷ୍ଟ ପରିମାଣରେ ଅଛି । ତଦବର୍ତ୍ତୀ ଖାରବେଳ ଓ ତାଙ୍କର ମହାରାଣୀଙ୍କ ଶିଳାଲିପିର ଅନେକାଂଶ କାବ୍ୟଶୈଳୀରେ ଲେଖା

ହୋଇଛି । ଏହି କାବ୍ୟଗ୍ରନ୍ଥର ସଂଯୋଜନା ଖଣ୍ଡଗିରି ଏବଂ ଉଦୟଗିରିର ଶିଳାଲେଖ-ମାନଙ୍କୁ ଏତେ ମନୋମୁଗ୍ଧକର କରି ପାରିଛି ।

## କଳିଙ୍ଗରେ ଖାରବେଳଙ୍କ ପରବର୍ତ୍ତୀ ଯୁଗରେ ଜୈନଧର୍ମର ଅବସ୍ଥା

ପୂର୍ବ ପରିଚ୍ଛେଦରେ ବର୍ଣ୍ଣିତ ଅଛି ଯେ ସମ୍ରାଟ୍ ଖାରବେଳଙ୍କ ପରେ ବୀର ମହାରାଜ ମହାମେଘବାହନ କୁଦେପସିରି ବା କଦର୍ପଶ୍ରୀ କଳିଙ୍ଗ ସିଂହାସନ ଆରୋହଣ କରିଥିଲେ । ତାଙ୍କ ପରେ ଚେତବଂଶର ଅବସ୍ଥା କଣ ହେଲା, ତାହା ଜାଣିବା ସମ୍ଭବ ନୁହେଁ । ମଞ୍ଚପୁରୀ ଗୁମ୍ଫାରେ ଯେଉଁ କୁମାରବଡୁଖଙ୍କ ନାମୋଲ୍ଲେଖ ଅଛି, ସେ କଦର୍ପଶ୍ରୀଙ୍କର ଉତ୍ତରାଧିକାରୀ ରୂପେ ରାଜ୍ୟ ଶାସନ କରିଥିବେ ବୋଲି ଅନୁମାନ କରାଯାଇପାରେ । କିନ୍ତୁ ସେତେବେଳକୁ ଚେତ ବଂଶର ପୂର୍ବ ସମୃଦ୍ଧି ଓ ଶକ୍ତି ଲୁପ୍ତପ୍ରାୟ । ଡ. କୃଷ୍ଣସ୍ୱାମୀ ଆୟାଙ୍ଗାର ଦୁଇଟି ତାମିଲ ଗ୍ରନ୍ଥ, ଯଥା— 'ଶିଳପ୍ପଦିକାରମ୍' ଓ 'ମଣିମେଖଳାଇ'ରେ ବର୍ଣ୍ଣିତ କେତେକ ବିବରଣୀରୁ ତତ୍କାଳୀନ କଳିଙ୍ଗର ପରିଚୟ ପ୍ରଦାନ କରିଛନ୍ତି । (୧) ଉକ୍ତ ଗ୍ରନ୍ଥଦ୍ୱୟରେ କଳିଙ୍ଗ ରାଜବଂଶର ଏକ ଭ୍ରାତୃବିବାଦର ବର୍ଣ୍ଣନା ସନ୍ନିବେଶିତ ହୋଇଛି । ଏଥିରୁ ଜଣାଯାଏ ଯେ କଳିଙ୍ଗ ରାଜ୍ୟ ସେତେବେଳେ ଦୁଇଭାଗରେ ବିଭକ୍ତ ହୋଇଥିଲା । କୋଟିକଠ ରାଜଧାନୀ ଥିଲା 'କପିଳପୁର' ଓ ଅନ୍ୟଟିର ରାଜଧାନୀ 'ସିଂହପୁର' । ଏ ଦୁଇ ରାଜ୍ୟରେ ଯେଉଁ ଦୁଇଭାଇ ରାଜତ୍ୱ କରୁଥିଲେ ସେମାନେ ବୋଧହୁଏ ଚେତବଂଶ ସମ୍ଭୂତ ଓ ଖାରବେଳଙ୍କର ବଂଶଧର । ଏ ଦୁଇଭାଇଙ୍କ ମଧ୍ୟରେ ଭୂମୁକ ଯୁଦ୍ଧ ହେବା ଫଳରେ କଳିଙ୍ଗ ଛାରଖାର ହୋଇଯାଇଥିଲା ଓ ପରିଶେଷରେ ଏକ ବୈଦେଶିକ ଆକ୍ରମଣ କବଳରେ ପଡ଼ିଥିଲା ।

ଏହି ବୈଦେଶିକ ଆକ୍ରମଣକାରୀମାନେ କିଏ ଓ ଏମାନଙ୍କ ରାଜତ୍ୱ ସମୟରେ କଳିଙ୍ଗରେ ଜୈନଧର୍ମର ଅବସ୍ଥା କିପରି ଥିଲା, ତାହା ନିମ୍ନରେ ବିଚାର କରାଯାଉଛି ।

ମାଦଳା ପାଞ୍ଜିରେ ଅଛି ଯେ କଳିଯୁଗ ଆରମ୍ଭରେ ଧର୍ମପୁତ୍ର ଯୁଧିଷ୍ଠିରଙ୍କୁ ମିଶାଇ ଅଠର ଜଣ ରାଜା ପାରମ୍ପରିକ କ୍ରମେ କଳିଙ୍ଗରେ ୩୭୮୧ ବର୍ଷ ଧରି ରାଜତ୍ୱ କରିଥିଲେ । ଏହି ରାଜପରମ୍ପରାର ରାଜା ହେଉଛନ୍ତି ଶୋଭନ ଦେବ । ଏହାଙ୍କ ସମୟରେ ଦିଲ୍ଲୀର ମୋଗଲ ପତିଶା (ବାଦଶାହା)ଙ୍କର ସେନାପତି ରକ୍ତବାହୁ ଚଳକା ବାଟେ ଓଡ଼ିଶା ଆକ୍ରମଣ କରିଥିଲେ । ପରିଶେଷରେ ଅଷ୍ଟାଦଶ ରାଜାଙ୍କ ସମୟରେ ଓଡ଼ିଶା ଏହି ମୋଗଲ-ମାନଙ୍କର ସମ୍ପୂର୍ଣ୍ଣ ହସ୍ତଗତ ହୋଇଥିଲା । ମୋଗଲମାନେ ଓଡ଼ିଶାରେ ୫୬୮ ଖ୍ରୀ. ଅ. ପର୍ଯ୍ୟନ୍ତ ୧୪୫ ବର୍ଷ ରାଜତ୍ୱ କରିଥିଲେ ଓ ଯଯାତିକେଶରୀଙ୍କ ଦ୍ୱାରା ସେମାନେ ପରାସ୍ତ ହୋଇ ବିତାଡ଼ିତ ହୋଇଥିଲେ । ଏହା ହେଲା ମାଦଳାପାଞ୍ଜିରେ ବର୍ଣ୍ଣିତ ଉପାଖ୍ୟାନ ।

---

(୧) Ancient India and South Indian History and Culture, Vol. I, page 401-402.

ଏଥିରେ କେବଳ ଜାଲ୍ମନଙ୍କ ବକ୍ତବ୍ୟ ସନ୍ନିବେଶିତ ହୋଇଥିଲେ ହେଁ ମୂଳତଃ ଏହା ଏକ ଐତିହାସିକ ସତ୍ୟ ଉପରେ ପ୍ରତିଷ୍ଠିତ ହୋଇଥିବା ଜଣାପଡ଼େ; କାରଣ ପ୍ରାଚୀନ ଓଡ଼ିଶାରେ ଏକ ବିଦେଶୀ ରାଜବଂଶଦ୍ୱାରା ପ୍ରଚଳିତ ହୋଇଥିବା ଅସଂଖ୍ୟ ମୁଦ୍ରା ଏବେ ମିଳୁଛି । ଏ ମୁଦ୍ରା ସବୁ କୁଶାଣ ମୁଦ୍ରାର ଅନୁକରଣରେ ତିଆରି ହୋଇଥିବା ହେତୁ ପ୍ରତ୍ନତାତ୍ତ୍ୱିକମାନେ ତାକୁ କହନ୍ତି 'କୁଶାଣ ମୁଦ୍ରା' । ପ୍ରଥମରେ ଏ ମୁଦ୍ରାଗୁଡ଼ିକ ମିଳୁଥିଲା ପୁରୀ ନିକଟରେ । ଊନବିଂଶ ଶତାବ୍ଦୀର ମୁଦ୍ରାବିତମାନେ, ଯଥା—ହର୍ଣ୍ଣଲେ ଓ ରେପ୍‌ସନ୍ ଏ ମୁଦ୍ରାଗୁଡ଼ିକୁ କହୁଥିଲେ 'ପୁରୀ-କୁଶାଣମୁଦ୍ରା' । (୨) ସେମାନଙ୍କ ମତରେ ଏ ମୁଦ୍ରାଗୁଡ଼ିକ ଏଠାରେ କୌଣସି ରାଜବଂଶଦ୍ୱାରା ପ୍ରଚଳିତ ହୋଇ ନ ଥିଲା । ସେ ସବୁଡ଼ିକ ପୁରୀ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ ନିମନ୍ତେ ଆସୁଥିବା ଅସଂଖ୍ୟ ତୀର୍ଥଯାତ୍ରୀଙ୍କ ଦ୍ୱାରା ଏଠାକୁ ଅଣା ହୋଇଥିଲା । ମୁଦ୍ରାଗୁଡ଼ିକ ଯେତେବେଳେ ପୁରୀ ନିକଟବର୍ତ୍ତୀ ସ୍ଥାନମାନଙ୍କରୁ ଅଳ୍ପ ସଂଖ୍ୟାରେ ମିଳୁଥିଲା, ସେତେବେଳେ ଏହି ଉକ୍ତିମାନଙ୍କର ଯୁକ୍ତି ଗ୍ରହଣଯୋଗ୍ୟ ହୋଇ ପାରୁଥିଲା । କିନ୍ତୁ ପରେ ପରେ ଓଡ଼ିଶାର ସମସ୍ତ ଉପକୂଳ ଅଞ୍ଚଳରେ ଗଞ୍ଜାମ ଜିଲ୍ଲାରୁ ଆରମ୍ଭ କରି ମୟୂରଭଞ୍ଜ ଜିଲ୍ଲା ପର୍ଯ୍ୟନ୍ତ ଓ ଏପରି କି ଛୋଟନାଗପୁର ଯାଏଁ ଏ ମୁଦ୍ରାମାନ ହଜାର ହଜାର ସଂଖ୍ୟାରେ ମିଳିଲା । (୩) ତେଣୁ ଏଗୁଡ଼ିକ ଯେ ଜଗନ୍ନାଥ ଯାତ୍ରୀମାନଙ୍କଦ୍ୱାରା ଓଡ଼ିଶାକୁ ଆସିଛି, ଏ ଯୁକ୍ତି ଅତି ଦୁର୍ବଳ ହୋଇପଡ଼ିଥିଲା ଏବଂ ଏସବୁ ଯେ ଏଠାକାର କୌଣସି ବୈଦେଶିକ ଶାସକଙ୍କ ଦ୍ୱାରା ପ୍ରଚଳିତ, ଏହା ଅବିସମ୍ବାଦିତ ରୂପେ ପ୍ରତିପାଦିତ ହେଲା ।

ଓଡ଼ିଶାରେ ଏ ମୁଦ୍ରା ପ୍ରଚଳନ କରିଥିବା ବୈଦେଶିକ ଶାସକମାନେ କିଏ ? ସେମାନେ କେଉଁ ବଂଶର ଓ ସେମାନେ ଆସିଥିଲେ କେଉଁଠାରୁ ଓ କେବେ ?

ଏ ସବୁ ପ୍ରଶ୍ନର ସମାଧାନ ସହଜସାଧ୍ୟ ନୁହେଁ । ସ୍ୱର୍ଗତ ରାଖାଲ ଦାସ ବାନାର୍ଜି କହନ୍ତି ଯେ, ଏହି ବୈଦେଶିକ ଶାସକ ହେଉଛନ୍ତି 'କୁଶାଣ', ( ୪ ) କାରଣ ଏ ମୁଦ୍ରାଗୁଡ଼ିକ ମଧ୍ୟରୁ ଅନେକ ମୁଦ୍ରା ଠିକ୍ କୁଶାଣ ପ୍ରଚଳିତ ମୁଦ୍ରା ପରି । କୁଶାଣ ମୁଦ୍ରାମାନଙ୍କରେ ଯେପରି ଗୋଟିଏ ପଟରେ କନିଷ୍କ ଓ ହୁବିଷ୍କ ଓ ରାଜା ବାସୁଦେବଙ୍କର ପ୍ରତିଛବି ଓ ଅନ୍ୟ ପଟରେ ମାଓ (ଚନ୍ଦ୍ର), ଅଗ୍ର (ଅଗ୍ନି) ଓ ଆଡ୍ରୋ (ବାୟୁ) ଆଦି ଦେବତାଙ୍କର ପ୍ରତିମୂର୍ତ୍ତି ଥାଏ, ସେହିପରି ଓଡ଼ିଶାରେ ମିଳୁଥିବା ବୈଦେଶିକ ମୁଦ୍ରାଗୁଡ଼ିକ ମଧ୍ୟରୁ କେତେକଟିରେ ଏହି ସବୁ ପ୍ରତିଛବି ଓ ପ୍ରତିମୂର୍ତ୍ତି ଦେଖାଯାଏ, ଉକ୍ତର ଆର୍କିଓଲୋଜିଷ୍ଟ ମହାଶୟ ରାଖାଲ ଦାସ ବାନାର୍ଜୀଙ୍କ ଯୁକ୍ତିକୁ ଗ୍ରହଣ କରି ନେଇଛନ୍ତି । (୫) ଐତିହାସିକ ଏସ୍. ଜେ. ବୋଷ କହନ୍ତି ଯେ କୁଶାଣମାନେ ଉକ୍ତ

(୨) Proceedings of Asiatic Society, Bengal, 1895, page 63.

(୩) O. H. R. J., Vol. II, page 84.

(୪) History of Orissa, Vol. I, page 113.

(୫) ମାଦଳା ପାଞ୍ଜି ।

ଦେଶ ପର୍ଯ୍ୟନ୍ତ ସେମାନଙ୍କ ସାମ୍ରାଜ୍ୟ ବିସ୍ତାର କରିପାରିଥିଲେ । ( ୬ ) କିନ୍ତୁ କୁଶାଣ ସାମ୍ରାଜ୍ୟ ବନାରସ ଅତିକ୍ରମ କରି ପୂର୍ବାଞ୍ଚଳକୁ ଆସିଥିବାର କୌଣସି ପ୍ରତ୍ନତାତ୍ତ୍ୱିକ ପ୍ରମାଣ ଏ ପର୍ଯ୍ୟନ୍ତ ମିଳି ନାହିଁ । ତେଣୁ କୁଶାଣ ସାମ୍ରାଜ୍ୟ ପୂର୍ବରେ ବଙ୍ଗଦେଶ ପର୍ଯ୍ୟନ୍ତ ବ୍ୟାପିଥିବା ଯୁକ୍ତି ଅମୂଳକ ମନେ ହୁଏ । କୁଶାଣ ସାମ୍ରାଜ୍ୟ ଯଦି ବଙ୍ଗଦେଶ ଯାଏଁ ପରିବ୍ୟାପ୍ତ ହୋଇ ନ ଥିଲା, ତେବେ ତାହା ଓଡ଼ିଶା ପର୍ଯ୍ୟନ୍ତ ମାଡ଼ିଥିବା କଥା ସମ୍ପୂର୍ଣ୍ଣ ଅଳୀକ ବୋଲି ପ୍ରତୀୟମାନ ହୁଏ । ତାହା ହେଲେ ମାଦଳାପାଞ୍ଜି ବର୍ଣ୍ଣିତ ମୋଗଲ ଆକ୍ରମଣ କୁଶାଣ ଆକ୍ରମଣ ହୋଇ ନ ପାରେ । ତାହା କୁଶାଣ ଭିନ୍ନ ଅନ୍ୟ ଏକ ବୈଦେଶିକ ଆକ୍ରମଣ ହୋଇଥିବା ନିଶ୍ଚିତ ।

ଏବେ ଡ. ନବୀନ କୁମାର ସାହୁ ପ୍ରମାଣ କରିଛନ୍ତି ଯେ ମାଦଳାପାଞ୍ଜି-ବର୍ଣ୍ଣିତ ଓଡ଼ିଶାରେ ମୋଗଲ ଆକ୍ରମଣ ଓ ରାଜତ୍ୱ ହେଉଛି ମୁରୁଣ୍ଡ ଆକ୍ରମଣ ଓ ଆଧିପତ୍ୟ । (୭) ଏହି ମୁରୁଣ୍ଡମାନଙ୍କ କଥା ପୁରାଣ, ଜୈନଶାସ୍ତ୍ର ଓ ଗ୍ରୀକ୍ ଏବଂ ଚୈନିକ ଲେଖକମାନଙ୍କ ବିବରଣୀରୁ ମିଳିଛି । ପୁରାଣ ମତରେ ତୁଖାର (କୁଶାଣ) ଙ୍କ ପରେ ତେରଜଣ ମୁରୁଣ୍ଡ ରାଜା ଦୁଇ ଶହ ବର୍ଷକାଳ ରାଜପଣ କରିଥିଲେ । (୮) ମୁରୁଣ୍ଡଙ୍କ ବର୍ଣ୍ଣନାରେ ଜୈନଶାସ୍ତ୍ର ମଧ୍ୟ ଭରପୂର, କାରଣ ମୁରୁଣ୍ଡମାନେ ଥିଲେ ଜୈନ ଓ ଜୈନଧର୍ମର ପୃଷ୍ଠପୋଷକ ।

'ସିଂହାସନ ଦ୍ୱାତ୍ରିଂଶିକା' (୯) ନାମକ ଏକ ଜୈନଗ୍ରନ୍ଥରୁ ମିଳେ ଯେ ମୁରୁଣ୍ଡ ରାଜାଙ୍କ ରାଜଧାନୀ ଥିଲା କାନ୍ୟକୁବ୍ଜ; କିନ୍ତୁ ଏହି କାନ୍ୟକୁବ୍ଜଠାରେ ମୁରୁଣ୍ଡମାନେ ବହୁକାଳ ରାଜତ୍ୱ କରିଥିବା ମନେ ହୁଏ ନାହିଁ । ସିଂହାସନ ଦ୍ୱାତ୍ରିଂଶିକା ପୁସ୍ତକର ମୁରୁଣ୍ଡରାଜ କୁଶାଣଙ୍କର ଅଧୀନସ୍ଥ ଏକ ସାମନ୍ତରାଜା ହୋଇଥିବା ନିଶ୍ଚିତ । 'ବୃହତ୍ କଳ୍ପବୃତ୍ତି' ନାମକ ଅନ୍ୟ ଏକ ଜୈନ-ଗ୍ରନ୍ଥରୁ ଜଣାଯାଏ ଯେ ମୁରୁଣ୍ଡମାନଙ୍କର ରାଜଧାନୀ ଥିଲା ପାଟଳିପୁତ୍ର ( ୧୦ ) ଓ ଏହି ପୁସ୍ତକରେ ବର୍ଣ୍ଣିତ ମୁରୁଣ୍ଡ ରାଜାଙ୍କର ବିଧବା ଭଗ୍ନୀ ଜୈନଦୀକ୍ଷା ଅବଲମ୍ବନ କରି ଏହି ଧର୍ମର ଅଭିବୃଦ୍ଧି ସାଧନ ନିମନ୍ତେ ଜୀବନ ଉତ୍ସର୍ଗ କରିଥିଲେ । ଜୈନପୁରାଣ-ମାନଙ୍କରୁ ଆହୁରି ମଧ୍ୟ ଜଣାପଡ଼େ ଯେ ପାଦଲିପ୍ତ ନାମକ ଏକ ଜୈନ ସାଧୁ ପାଟଳିପୁତ୍ରର ମୁରୁଣ୍ଡ ରାଜାଙ୍କର ମସ୍ତିଷ୍କ-ବ୍ୟାଧି ଆରୋଗ୍ୟ କରିପାରି ଥିଲେ ।(୧୧)

---

(୬) Indian Culture, Vol. III, 729 ff.

(୭) A History of Orissa, Vol. Edited by Dr. N. K. Sahu, pages 331-335.

(୮) Dynastic History, Kalinga Age by Pargiter, page 46.

(୯) Dr. Probodh Chandra Bagchi ଙ୍କର Indian History Congressର ଷଷ୍ଠ ଅଧିବେଶନରେ ପ୍ରଦତ୍ତ ସଭାପତି ଅଭିଭାଷଣ ଦ୍ରଷ୍ଟବ୍ୟ ।

(୧୦) Abhidhan Rajendra, Vol II, page 776.

(୧୧) Indian Culture, Vol. III, page 49.

ଏହି ପ୍ରାଚୀନତମ ଉଜ୍ଜୟିନୀର ବିକ୍ରମାଦିତ୍ୟଙ୍କ-ଜୈନ ଗୁରୁ ସିଦ୍ଧସେନଙ୍କର ବୋଧହୁଏ ସମସାମୟିକ ଥିଲେ ।

ଗ୍ରୀକ୍ ଭୌଗୋଳିକ ଟଲେମି (୧୨) ପୂର୍ବ ଭାରତରେ ମୁରୁଣ୍ଡ ରାଜ୍ୟର ଭୌଗୋଳିକ ସୀମାରେଖା ନିର୍ଣ୍ଣୟ କରିଯାଇଛନ୍ତି । ତାଙ୍କ ଲେଖାରୁ ଜଣାପଡ଼େ ଯେ ଖ୍ରୀଷ୍ଟୀୟ ୨ୟ ଶତାବ୍ଦୀରେ ମୁରୁଣ୍ଡ-ରାଜ୍ୟ ବ୍ୟାପିଥିଲା ତିରହୁତଠାରୁ ଗଙ୍ଗାନଦୀ ମୁହାଣ ପର୍ଯ୍ୟନ୍ତ । ଚୀନ ଦେଶର ଉ (Woo) ରାଜବଂଶର ବିବରଣୀରୁ (୧୩) ମଧ୍ୟ ଜଣାପଡ଼େ ଯେ ଖ୍ରୀଷ୍ଟୀୟ ୩ୟ ଶତାବ୍ଦୀରେ ମୁରୁଣ୍ଡମାନେ ପୂର୍ବଭାରତରେ ରାଜତ୍ୱ କରୁଥିଲେ । ଏ କଥା ଫରାସୀ ପଣ୍ଡିତ ସିଲ୍‌ଭାଁ ଲେଭି ପ୍ରତିପାଦନ କରିଯାଇଛନ୍ତି ।

ଓଡ଼ିଶାରେ ରକ୍ତବାହୁ ଆକ୍ରମଣ ଏହି ପୂର୍ବଭାରତୀୟ ମୁରୁଣ୍ଡଙ୍କ ଆକ୍ରମଣ ଏବଂ ଏଠାରେ ମିଳିଥିବା ଅସଂଖ୍ୟ ତଥାକଥିତ କୁଶାଣ ମୁଦ୍ରା ଏହି ମୁରୁଣ୍ଡଙ୍କ ଦ୍ୱାରା ପ୍ରଚଳିତ । ୧୯୪୮ ସାଲରେ ଶିଶୁପାଳଗଡ଼ଠାରେ ଯେଉଁ ପ୍ରତ୍ନତାତ୍ତ୍ୱିକ ଭୂଖୋଦନ ହୋଇଥିଲା, ତହିଁରୁ ଓଡ଼ିଶାରେ ଜୈନ-ମୁରୁଣ୍ଡ ରାଜତ୍ୱର ସୁସ୍ପଷ୍ଟ ପ୍ରମାଣ ମିଳିପାରିଛି । ଏହି ଭୂଖୋଦନରୁ ମିଳିଥିବା ଗୋଟିଏ ସ୍ୱର୍ଣ୍ଣମୁଦ୍ରା ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଡ. ଅନନ୍ତ ସଦାଶିବ ଅଲ୍‌ଟେକାର କହନ୍ତି ଯେ, ତାହା 'ମହାରାଜାଧିରାଜା ଧର୍ମଦାମଧର' ନାମଧେୟ କୌଣସି ଏକ ମୁରୁଣ୍ଡରାଜାଙ୍କ ପ୍ରଚଳିତ ମୁଦ୍ରା । ଡ. ଅଲ୍‌ଟେକାର୍ ଆହୁରି ମଧ୍ୟ କହନ୍ତି ଯେ ଏହି ମୁରୁଣ୍ଡ-ରାଜା ଓଡ଼ିଶାରେ ଖ୍ରୀଷ୍ଟୀୟ ୩ୟ ଶତାବ୍ଦୀରେ ଶାସନ କରୁଥିଲେ ଓ ସେ ଥିଲେ ଜୈନ । (୧୪)

ଶିଶୁପାଳଗଡ଼ରୁ ଗୋଟିଏ କ୍ଷୁଦ୍ର ମୃଣ୍ମୟ ଫଳକ ମିଳିଅଛି । ତାହା ବୋଧହୁଏ ଏକ ସିଲ୍ ମୋହର । ସେଥିରେ ଲେଖାଅଛି—

'ଅମଚସ ପସନକସ' ଅର୍ଥାତ୍ ଅମାତ୍ୟସ୍ୟ ପ୍ରସନ୍ନକସ୍ୟ । ଏହି ଫଳକଟି ବୋଧହୁଏ ଅମାତ୍ୟ ପ୍ରସନ୍ନକଙ୍କର ସିଲ୍-ମୋହର ହୋଇଥିବା ଅନୁମାନ କରାଯାଇ ପାରେ । ଏହି ଫଳକରେ ଅଙ୍କିତ ଅକ୍ଷର ଓ ଉପରୋକ୍ତ ସ୍ୱର୍ଣ୍ଣମୁଦ୍ରାରେ ବ୍ୟବହୃତ ହୋଇଥିବା ଅକ୍ଷର ଏକକାଳୀନ ବୋଲି ମନେ ହୁଏ । ଏହା ଯଦି ଠିକ୍, ତେବେ ପ୍ରସନ୍ନକଙ୍କୁ ମହାରାଜ ଧର୍ମଦାମଧରଙ୍କର ଅମାତ୍ୟ ବୋଲି ଗ୍ରହଣ କରାଯାଇ ପାରେ । (୧୫)

ଡ. ନବୀନ କୁମାର ସାହୁ ପ୍ରମାଣ କରନ୍ତି ଯେ ଓଡ଼ିଶାରେ ମୁରୁଣ୍ଡ ରାଜତ୍ୱ ଖ୍ରୀଷ୍ଟୀୟ ୨ୟ ଶତାବ୍ଦୀର ଶେଷ ଭାଗଠାରୁ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ମଧ୍ୟଭାଗ

---

(୧୨) Indian Antiquary, Vol XIII, 337.

(୧୩) Sylvain Levi, Melanges Charles De Harlez, pages 176-186.

(୧୪) Ancient India, No. 5, Sisupalagarh Excavation Report.

(୧୫) ଏ ପ୍ରସଙ୍ଗରେ O. H. R. J, Vol. II, No. 2 ରେ S. C. Deଙ୍କର ପ୍ରକାଶିତ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

ପର୍ଯ୍ୟନ୍ତ ପ୍ରଚଳିତ ଥିଲା (୧୬), କିନ୍ତୁ ମାଦଳାପାଞ୍ଜି ଅନୁସାରେ ମୋଗଲ ରାଜତ୍ୱ ଚାଲିଥିଲା ଖ୍ରୀ. ଅ. ୩୨୮ ରୁ ୪୭୪ ଖ୍ରୀ ଅ. ପର୍ଯ୍ୟନ୍ତ । ମାଦଳ ପାଞ୍ଜିର ଏହି ମୋଗଲ ରାଜତ୍ୱକୁ ଡ. ନବୀନ କୁମାର ସାହୁ ମୁରୁଣ୍ଡ ରାଜତ୍ୱ ବୋଲି ଗ୍ରହଣ କରିଅଛନ୍ତି ଏବଂ ଏହି ରାଜତ୍ୱର କାଳନିର୍ଣ୍ଣୟରେ ମାଦଳାପାଞ୍ଜିକାର ଯେଉଁ ବିଭ୍ରମ ପ୍ରକାଶ କରିଛନ୍ତି ତାହା ଐତିହାସିକ ପ୍ରମାଣଭିତ୍ତିରେ ସଂଶୋଧିତ କରିଛନ୍ତି ।

ଏ ପ୍ରସଙ୍ଗରେ ବୌଦ୍ଧଗ୍ରନ୍ଥ ଦାଠାଧାତୁବଂଶରେ ଉଲ୍ଲେଖ ଥିବା ବୁଦ୍ଧଦନ୍ତର ଉପାଖ୍ୟାନ ମଧ୍ୟ ଆଲୋଚନାଯୋଗ୍ୟ । ଏ ପୁସ୍ତକରୁ ମିଳେ ଯେ ଚତୁର୍ଥ ଶତାବ୍ଦୀ ଆରମ୍ଭବେଳେ କଳିଙ୍ଗର ରାଜା ଥିଲେ ଗୁହଶିବ । ଏହି ଗୁହଶିବ ବୋଧହୁଏ ମୁରୁଣ୍ଡ ରାଜା । ସେ ପ୍ରଥମେ ଥିଲେ ଜୈନ ଓ ପରେ ତାଙ୍କର ରାଜଧାନୀ ଦନ୍ତପୁରରେ ବୁଦ୍ଧଦନ୍ତଙ୍କ ମହିମାରେ ମୁଗ୍ଧ ହୋଇ ସେ ହୋଇଥିଲେ ବୌଦ୍ଧ । ଏଥିରେ ପାଟଳିପୁତ୍ରର ଜୈନରାଜା ପାଣ୍ଡୁ ବିକ୍ଷୁବ୍ଧ ହୋଇଥିଲେ । ଏହି ପାଣ୍ଡୁଙ୍କୁ ମଧ୍ୟ ଡ. ନବୀନ କୁମାର ସାହୁ ଏକ ମୁରୁଣ୍ଡରାଜା ବୋଲି ଗ୍ରହଣ କରିଅଛନ୍ତି । କଳିଙ୍ଗର ଗୁହଶିବ ପାଣ୍ଡୁରାଜାଙ୍କର ସାମନ୍ତରାଜା ରୂପେ ଦାଠାଧାତୁବଂଶରେ ବର୍ଣ୍ଣିତ ହୋଇଅଛନ୍ତି ।

ଗୁହଶିବଙ୍କର ଧର୍ମାନ୍ତର ଗ୍ରହଣରେ ବିଚଳିତ ହୋଇ ପାଣ୍ଡୁରାଜା ତାଙ୍କୁ ନିଜ ରାଜଧାନୀ ପାଟଳିପୁତ୍ରକୁ ବୁଦ୍ଧଦନ୍ତ ସଙ୍ଗରେ ନେଇ ଆସିବା ପାଇଁ ଆଦେଶ ଦେଇଥିଲେ । ପାଟଳିପୁତ୍ରଠାରେ ସେ ଦନ୍ତଧାତୁକୁ ନଷ୍ଟ କରିବା ନିମନ୍ତେ ନାନା ଚେଷ୍ଟା କରି ସୁଦ୍ଧା ସଫଳ ହୋଇ ନ ଥିଲେ ଓ ପରିଶେଷରେ ଦନ୍ତର ଅଦ୍ଭୁତ ଶକ୍ତି ଦେଖି ନିଜେ ମଧ୍ୟ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ପରେ ଏହି ଦନ୍ତ ଅଧିକାର କରିବା ନିମନ୍ତେ କଳିଙ୍ଗର ପଡ଼ୋଶୀ ରାଜାମାନେ କଳିଙ୍ଗ ଆକ୍ରମଣ କରିଥିଲେ । ଏହି ଆକ୍ରମଣକାରୀମାନଙ୍କ ମଧ୍ୟରେ ପ୍ରଧାନ ହେଉଛନ୍ତି କ୍ଷୀରଧାର । ଏହି କ୍ଷୀରଧାରଙ୍କୁ ଶ୍ରୀଯୁକ୍ତ ସୁଶୀଲ ଚନ୍ଦ୍ର ଦେ ଭକାଟକ ରାଜା ଓ ପ୍ରବରସେନ ଏକ ବୋଲି ଅନୁମାନ କରିଛନ୍ତି । (୧୭)

ଯୁଦ୍ଧରେ ଗୁହଶିବ ପ୍ରାଣତ୍ୟାଗ କଲେ; କିନ୍ତୁ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ତାଙ୍କ କନ୍ୟା ହେମମାଳା ଓ ଜାମାତା ଦନ୍ତକୁମାରଙ୍କ ହାତରେ ବୁଦ୍ଧଦନ୍ତ ସିଂହଳକୁ ପଠାଇ ଦେଇଥିଲେ । ହେମମାଳା ଓ ଦନ୍ତକୁମାର ସିଂହଳରେ ପହଞ୍ଚିବାବେଳେ ସେଠାରେ ରାଜା ଥିଲେ ମହାସେନ । ଏହାଙ୍କ ରାଜତ୍ୱକାଳର ସମୟ ହେଉଛି ଖ୍ରୀ. ଅ. ୨୭୭ ରୁ ୩୦୪ ପର୍ଯ୍ୟନ୍ତ । (୧୮)

---

(୧୬) A History of Orissa— Edited by Dr. Sahu, Vol. II. page 334.

(୧୭) O. H. R. J. Vol. III, No 2, page 108.

(୧୮) Vakataka and Gupta Age, by Dr. A. S. Altekar and Dr. R. C. Majumdar, vide Chapter on 'Ceylon', pages 331-261.

ସୁତରାଂ କଳିଙ୍ଗରେ ସୁଦଶିବ ଖ୍ରୀଷ୍ଟୀୟ ୩ୟ ଶତାବ୍ଦୀରେ ରାଜତ୍ୱ କରୁଥିବା ସୁନିଶ୍ଚିତ ।

## ମଧ୍ୟଯୁଗ

ଏ ତ ଗଲା ପ୍ରାଚୀନ ଯୁଗର ବିବରଣୀ । ବର୍ତ୍ତମାନ ଦେଖାଯାଉ ମଧ୍ୟଯୁଗୀୟ ଓଡ଼ିଶାରେ ଜୈନଧର୍ମର ଅବସ୍ଥା କପରି ଥିଲା । କଳିଙ୍ଗରେ ମୁରୁଣ୍ଡ ଶାସନର ଅବସାନ ପରେ ଗୁପ୍ତବଂଶର ଆଧିପତ୍ୟ ପ୍ରସାରିତ ହୋଇଥିବା କେତେକ ଐତିହାସିକ ପ୍ରକାଶ କରନ୍ତି । ଗୁପ୍ତ-ରାଜବଂଶର ରାଜନୈତିକ ପ୍ରଭାବ ସମୁଦ୍ର-ଗୁପ୍ତଙ୍କ ଦିଗ୍‌ବିଜୟ ପରଠାରୁ କଳିଙ୍ଗରେ ପଡ଼ିଥିବା ସୁନିଶ୍ଚିତ । ଏହି ରାଜନୈତିକ ପ୍ରଭାବ ସଙ୍ଗେ ସାଂସ୍କୃତିକ ପ୍ରଭାବ ମଧ୍ୟ ଅନ୍ତର୍ନିହିତ ଭାବେ ପଡ଼ିଥିଲା; କିନ୍ତୁ ଏ ସବୁର ଗବେଷଣା ଏ ପର୍ଯ୍ୟନ୍ତ ଧାରା-ବାହିକ ଭାବେ ହୋଇ ପାରିନାହିଁ ।

ଗୁପ୍ତୋତ୍ତର ଯୁଗ ହେଉଛି ମଧ୍ୟଯୁଗ । ଏ ଯୁଗରେ ଯେଉଁ ସୁପ୍ରଖ୍ୟାତ ରାଜବଂଶ ଓଡ଼ିଶାର ଭିନ୍ନ ଅଞ୍ଚଳରେ ରାଜତ୍ୱ କରିଥିଲେ, ସେମାନଙ୍କ ମଧ୍ୟରେ ଉଲ୍ଲେଖ-ଯୋଗ୍ୟ ହେଉଛନ୍ତି କଳିଙ୍ଗ ଅଞ୍ଚଳର ଗଙ୍ଗବଂଶ, କଙ୍ଗୋଦର ଶୈଳୋଦ୍ଭବ ବଂଶ, ତୋଷଳିର ଭୌମ ବଂଶ, ଖିଞ୍ଜଳି-ମଣ୍ଡଳର ଭଞ୍ଜବଂଶ ଓ କୋଶଳୋତ୍କଳର ସୋମବଂଶ । (୧୯) ଏହି ସୋମବଂଶୀୟ ରାଜାମାନଙ୍କୁ ମାଦଳାପାଞ୍ଜିକାର କେଶରୀବଂଶୀୟ ବୋଲି କହିଛନ୍ତି । ଏହି ସବୁ ରାଜବଂଶର ରାଜତ୍ୱକାଳରେ ବ୍ରାହ୍ମଣ୍ୟଧର୍ମ ଓ ବିଶେଷତଃ ଶାକ୍ତ, ଶୈବ ବୈଷ୍ଣବଧର୍ମର ପ୍ରାଧାନ୍ୟ ସର୍ବତ୍ର ଦେଖାଯାଏ । ଏ ଯୁଗ ହେଉଛି ଓଡ଼ିଶାରେ ବୌଦ୍ଧ ଓ ଜୈନମାନଙ୍କର ଅଧଃପତନର କାଳ ।

ଓଡ଼ିଶାରେ ବୌଦ୍ଧଧର୍ମ ସ୍ୱୀୟ ଅସ୍ତିତ୍ୱ ରକ୍ଷା କରିବା ନିମନ୍ତେ ତାନ୍ତ୍ରିକତାର ଆଶ୍ରୟ ନେଇ ବଜ୍ରଯାନ ଓ ସହଜଯାନ ଆଦି ପନ୍ଥାରେ ପରିଣତ ହୋଇଥିଲା । କିନ୍ତୁ ଜୈନଧର୍ମ ତାନ୍ତ୍ରିକତାର ଆଶ୍ରୟ ନେଇଥିବାର ସୁସ୍ପଷ୍ଟ ପ୍ରମାଣ ମିଳିନାହିଁ । ପ୍ରାଚୀନ ପରମ୍ପରା ରକ୍ଷା କରି ଜୈନଧର୍ମ ମଧ୍ୟଯୁଗରେ ଗତି କରି ଆସିଥିବା ଦେଖାଯାଏ । ପ୍ରାଚୀନ କାଳ ପରି ଖଣ୍ଡଗିରି ଥିଲା ସେତେବେଳେ ଓଡ଼ିଶାରେ ଜୈନ-ଧର୍ମର ପୀଠଭୂମି । ଖଣ୍ଡଗିରିର କେତେକ ଗୁମ୍ଫା; ଯଥା—ନବମୁନି ଗୁମ୍ଫା, ବାରଭୁଜୀ ଗୁମ୍ଫା ଓ ଲଲାଟେନ୍ଦୁ କେଶରୀ ଗୁମ୍ଫା ଏହି ମଧ୍ୟଯୁଗରେ ହିଁ ନିର୍ମିତ । ଓଡ଼ିଶାର ଅନ୍ୟତ୍ର ବିଶେଷତଃ କେନ୍ଦୁଝରର ଆନନ୍ଦପୁର ଅଞ୍ଚଳ, କଟକ ଜିଲ୍ଲାର ଚୌଦ୍ୱାର ଅଞ୍ଚଳ, ପୁରୀଜିଲ୍ଲାର ପ୍ରାଚୀ-ଉପତ୍ୟକା, ଗଞ୍ଜାମର ସମୁଦ୍ରର ଅଞ୍ଚଳ ଓ କୋରାପୁଟର ନବରଙ୍ଗପୁର ଅଞ୍ଚଳରେ ଜୈନଧର୍ମର ପ୍ରତ୍ନତାତ୍ତ୍ୱିକ ଅବଶେଷ ବହୁ ପରିମାଣରେ ଏବେ ମିଳି ପାରୁଛି । ସେ ସବୁ ମଧ୍ୟଯୁଗର କୀର୍ତ୍ତି । ଆଜି ସେସବୁକୁ ଦେଖିଲେ ଦୃଢ଼ ଧାରଣା ଆସେ ଯେ ମଧ୍ୟଯୁଗରେ ଜୈନଧର୍ମର

(୧୯) ଏହି ରାଜବଂଶମାନଙ୍କର ପୂର୍ଣ୍ଣ ବିବରଣୀ ନିମନ୍ତେ ଡ. ମହତାବଙ୍କ ଲିଖିତ ଓ ଡ. ନବୀନକୁମାର ସାହୁଙ୍କ ସମ୍ପାଦିତ 'ଓଡ଼ିଆ ଇତିହାସ'ମାନ ଦ୍ରଷ୍ଟବ୍ୟ ।

ପ୍ରଭାବ ଓଡ଼ିଶାର ଧର୍ମ ଜୀବନରେ ଅପ୍ରତିହତ ଥିଲା ।

ଉତ୍କଳରେ ରାଜତ୍ୱ କରିଥିବା ସୋମବଂଶୀ ରାଜାମାନଙ୍କ ମଧ୍ୟରେ ଉଦ୍ୟୋତକେଶରୀ ହେଉଛନ୍ତି ସର୍ବାପେକ୍ଷା ପ୍ରସିଦ୍ଧ ନରପତି । କେତେକ ଏହାଙ୍କୁ ମଧ୍ୟ ଲଲାଟେନ୍ଦୁ କେଶରୀ ବୋଲି କହିଥାନ୍ତି । ଉଦ୍ୟୋତ କେଶରୀ ଶୈବଧର୍ମର ପୃଷ୍ଠପୋଷକ ରୂପେ ଇତିହାସରେ ବିଖ୍ୟାତ । ତାହାଙ୍କ ପିତା ଯଯାତି ମହାଶିବଗୁପ୍ତ ଭୁବନେଶ୍ୱରଠାରେ ସୁପ୍ରସିଦ୍ଧ ଲିଙ୍ଗରାଜ ମନ୍ଦିର ନିର୍ମାଣକାର୍ଯ୍ୟ ଆରମ୍ଭ କରିଥିଲେ । ଏହି ମନ୍ଦିରର ପରିସମାପ୍ତି କରିଥିଲେ ରାଜା ଉଦ୍ୟୋତ-କେଶରୀ । ଉଦ୍ୟୋତକେଶରୀଙ୍କର ଜନନୀ କୋଳାବତୀ ଦେବୀ ଭୁବନେଶ୍ୱରଠାରେ ସୁନ୍ଦରକଳା ଖଚିତ ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ । ଉଦ୍ୟୋତ ଶିବଭକ୍ତ ଥିଲେ ସତ, କିନ୍ତୁ ଜୈନଧର୍ମ ପ୍ରତି ମଧ୍ୟ ତାଙ୍କର ପ୍ରଗାଢ଼ ଶ୍ରଦ୍ଧା ଓ ଅନୁରାଗ ଥିଲା । ଖଣ୍ଡଗିରିର ଲଲାଟେନ୍ଦୁକେଶରୀ ଗୁମ୍ଫା ଯେ ତାଙ୍କର କୀର୍ତ୍ତି ଏଥିରେ ସନ୍ଦେହ ନାହିଁ । ଜୈନ ଅରହତ ଓ ସାଧୁମାନଙ୍କର ଆଶ୍ରୟସ୍ଥଳ ରୂପେ ସମ୍ରାଟ ଖାରବେଳ ଯେପରି ଅତୀତରେ ଅନେକ ଗୁମ୍ଫା ଖୋଦନ କରି ଯାଇଥିଲେ, ଠିକ୍ ସେହିପରି ଜୈନସମ୍ରାଟଙ୍କର ପଦାଙ୍କ ଅନୁସରଣ କରି ଉଦ୍ୟୋତକେଶରୀ ଜୈନମାନଙ୍କର ବିଶ୍ରାମ-ସ୍ଥଳୀ ତଥା ଆରାଧନା ମନ୍ଦିର ନିମନ୍ତେ ଖଣ୍ଡଗିରିଠାରେ ଗୁମ୍ଫାମାନ ନିର୍ମାଣ କରିଥିଲେ । କେବଳ ଲଲାଟେନ୍ଦୁକେଶରୀ ଗୁମ୍ଫା ନୁହେଁ, ନବମୁନି ଓ ବାରଭୁଜୀ ଗୁମ୍ଫା ମଧ୍ୟ ଏହି ତାଙ୍କର କୀର୍ତ୍ତି ବୋଲି ଐତିହାସିକମାନେ କହନ୍ତି । ନବମୁନି ଗୁମ୍ଫାରେ ଉଦ୍ୟୋତକେଶରୀଙ୍କ ରାଜତ୍ୱ-କାଳର ଏକ ଶିଳାଲେଖ ଏବେ ସୁଦ୍ଧା ରହିଛି । ଏହି ଶିଳାଲେଖ ଉତ୍କୀର୍ଣ୍ଣ ହୋଇଥିଲା ଉଦ୍ୟୋତଙ୍କର ଅଷ୍ଟାଦଶ ବର୍ଷ ରାଜତ୍ୱକାଳରେ । ମନେ ରଖିବାକୁ ହେବ ଠିକ୍ ଏହି ବର୍ଷ ଉଦ୍ୟୋତଙ୍କର ଜନନୀ କୋଳାବତୀ ଦେବୀ ଭୁବନେଶ୍ୱରଠାରେ ବ୍ରହ୍ମେଶ୍ୱରଙ୍କର ମନ୍ଦିର ନିର୍ମାଣ ଶେଷ କରାଇଥିଲେ । ଏଥିରୁ ଜଣାଯାଏ ଯେ ଶୈବ ଓ ଜୈନଧର୍ମ ସମାନ୍ତରାଳଭାବେ ସେତେବେଳେ ଓଡ଼ିଶାରେ ପ୍ରଚଳିତ ଥିଲା ଏବଂ ରାଜା ଉଦ୍ୟୋତକେଶରୀ ଉଭୟ ଧର୍ମକୁ ସମଦୃଷ୍ଟିରେ ଦେଖୁଥିଲେ ।

ନବମୁନି ଗୁମ୍ଫାର ଶିଳାଲେଖରୁ (୨୦) ଜଣାଯାଏ ଯେ ଉଦ୍ୟୋତକେଶରୀଙ୍କ ୧୮ଶ ବର୍ଷ ରାଜତ୍ୱକାଳରେ ସୁବିଖ୍ୟାତ ଜୈନ ସାଧୁ କୁଳଚନ୍ଦ୍ରଙ୍କର ଶିଷ୍ୟ ଆଚାର୍ଯ୍ୟ ଶୁଭଚନ୍ଦ୍ର ତୀର୍ଥଯାତ୍ରା ନିମନ୍ତେ ଖଣ୍ଡଗିରିକୁ ଆସିଥିଲେ ଏବଂ ସେଠାରେ ସେ କେତେକ କୀର୍ତ୍ତି ସ୍ଥାପନ କରିଥିଲେ । ଏହି ଶୁଭଚନ୍ଦ୍ରଙ୍କୁ ଉଦ୍ୟୋତକେଶରୀ ଯଥୋପଯୁକ୍ତ ସମ୍ମାନ ପ୍ରଦର୍ଶନ କରିଥିବା ଶିଳାଲିପିରୁ ଜଣାପଡ଼େ । ଉପରଲିଖିତ ଆଲୋଚନାରୁ ସ୍ପଷ୍ଟ ଜଣାପଡ଼େ ଯେ ମଧ୍ୟଯୁଗୀୟ ଓଡ଼ିଶାରେ ବେଳେ ବେଳେ ଜୈନଧର୍ମ ରାଜାମାନଙ୍କର ପୃଷ୍ଠପୋଷକତା ଲାଭ କରି ସମୃଦ୍ଧ ହୋଇ ପାରିଥିଲା । ଓଡ଼ିଶାର ନାନାଧର୍ମରେ ଜୈନଧର୍ମର ପ୍ରଭାବ ଅତି-ମାତ୍ରାରେ ପଡ଼ିଯାଇଛି । ଜୈନଧର୍ମର ସମୃଦ୍ଧିସାଧନ ବିଶେଷ ଭାବରେ ହୋଇ ନ

(୨୦) Ep. Ind., XIII. 165-66

ଥିଲେ ଏତାଦୃଶ ପ୍ରଭାବ ପଡ଼ିବା ସମ୍ଭବପର ହୋଇ ନ ଥାନ୍ତା । ପରବର୍ତ୍ତୀ ଯୁଗର ଅରକ୍ଷିତ ଦାସ ଚନ୍ଦ୍ରା ଓ ମହିମା ଚନ୍ଦ୍ରା ଆଦି ଧର୍ମପନ୍ଥାରେ ଏହି ଜୈନଧର୍ମର ବହୁ ଆଚାର, ତତ୍ତ୍ୱ ଓ ଦର୍ଶନର ଅଭିବ୍ୟକ୍ତି ମଧ୍ୟ ଦେଖିବାକୁ ମିଳେ । ତାହା ସୂଚାଇଦିଏ ଯେ, ଜୈନଧର୍ମର ସମୃଦ୍ଧି ଓଡ଼ିଶାରେ ପ୍ରାଚୀନ କାଳଠାରୁ ଆରମ୍ଭ କରି ମଧ୍ୟଯୁଗ ପର୍ଯ୍ୟନ୍ତ ଅବ୍ୟାହତ ଭାବେ ଚାଲିଥିଲା । ଓଡ଼ିଶାର ସାଂସ୍କୃତିକ ଜୀବନରେ ଜୈନଧର୍ମ କି ପ୍ରଭାବ ବିସ୍ତାର କରିଛି, ତାହାର ବିସ୍ତୃତ ଆଲୋଚନା ଅନ୍ୟତ୍ର କରାଯାଇଛି ।

ଏବେ ଆଧୁନିକ ଯୁଗରେ ମଧ୍ୟ ଓଡ଼ିଶାର ଧର୍ମ ଜୀବନରେ ଜୈନଧର୍ମ ଯେଉଁ ପ୍ରଭାବ ବିସ୍ତାର କରି ରହିଛି, ତାହା ଅନୁଧ୍ୟାନର ବିଷୟ । ଆଜି ମଧ୍ୟ ଖଣ୍ଡଗିରି କେବଳ ଜୈନଙ୍କର ନୁହେଁ, ହିନ୍ଦୁଙ୍କର ମଧ୍ୟ ଏକ ପରମ ପବିତ୍ର ତୀର୍ଥଭୂମି । ମାଘ ଶୁକ୍ଳ ସପ୍ତମୀ ଦିନ ପ୍ରତିବର୍ଷ ଏଠାରେ ଯେଉଁ ମେଳା ହୁଏ, ସହସ୍ର ସହସ୍ର ଯାତ୍ରୀ ତହିଁରେ ସମବେତ ହୋଇ କେବଳ ଯେ ସାଧୁ ଅରକ୍ଷିତ ଦାସଙ୍କର ମୂର୍ତ୍ତି ପୂଜା କରନ୍ତି ତା' ନୁହେଁ, ଜୈନତୀର୍ଥଙ୍କରମାନଙ୍କ ପ୍ରତିମୂର୍ତ୍ତି ଓ ସେମାନଙ୍କ ଶାସନ ଦେବତାଙ୍କ ଉଦ୍ଦେଶ୍ୟରେ ମଧ୍ୟ ସେବାପୂଜା କରିଥାନ୍ତି ।

## ଓଡ଼ିଶାର ସଂସ୍କୃତିରେ ଜୈନଧର୍ମର ପ୍ରଭାବ

କଳିଙ୍ଗରେ ଅତି ପ୍ରାଚୀନ କାଳରୁ ଜୈନଧର୍ମ ଏକ ପ୍ରଧାନ ଧର୍ମ ରୂପେ ପ୍ରଚଳିତ ହୋଇ ଆସିଥିବା କଥା ପୂର୍ବ ପରିଚ୍ଛେଦମାନଙ୍କରେ ସୂଚିତ ହୋଇଯାଇଛି । ଏହି ପ୍ରାଚୀନ ଧର୍ମର ପ୍ରଭାବ ଓଡ଼ିଶାର ସାଂସ୍କୃତିକ ଜୀବନରେ ନାନା ଭାବରେ ପରିଦୃଷ୍ଟ ହୋଇଥାଏ । ମଧ୍ୟଯୁଗରେ ଭଞ୍ଜବଂଶ ଓଡ଼ିଶାର ବହୁଳ ଅଞ୍ଚଳରେ ରାଜତ୍ୱ ବିସ୍ତାର କରିଥିବା ଇତିହାସରୁ ମିଳେ । ଏହି ଭଞ୍ଜମାନେ କେହି କେହି ଶୈବ, କେହି କେହି ବୈଷ୍ଣବ ଥିଲେ । କିନ୍ତୁ ସେମାନଙ୍କ ମଧ୍ୟରେ ଜୈନ ସଂସ୍କୃତିର ପ୍ରଭାବ ଅକ୍ଷୁଣ୍ଣ ଥିବା ଜଣାପଡ଼େ । ଏହି ବଂଶର ଏକ ତାମ୍ରଶାସନ କେନ୍ଦୁଝର ଜିଲ୍ଲାର ଭଞ୍ଜଖଣ୍ଡା ଗ୍ରାମରୁ ମିଳିଥିଲା । ତହିଁରେ ଭଞ୍ଜବଂଶର ଆଦିପୁରୁଷଙ୍କର ଉତ୍ପତ୍ତି କୋଟ୍ୟାଶ୍ରମ ନାମକ ସ୍ଥାନରେ ମୟୂର ଅଣ୍ଡାରୁ ହୋଇଥିବାର ଉଲ୍ଲେଖ ଅଛି । ଏହି କୋଟ୍ୟାଶ୍ରମ ଜୈନ ହରିବଂଶବର୍ଣ୍ଣିତ ଅପରାଜିତା ମୁନିଜନାଧ୍ୟସିତ 'କୋଟିଶିଳା' ରୂପେ ଚିହ୍ନିତ ହେବା ସମ୍ଭବପର । ମୟୂର ଡିମ୍ବରୁ ଭଞ୍ଜି (ମୟୂରାଣ୍ଡଂ ଭଙ୍କ୍ତ୍ୱା) ବୀରଭଦ୍ର ଆଦିଭଞ୍ଜ ରୂପେ ଜନ୍ମଲାଭ କରିଥିବା କଥା ସେଠାରେ ଅଛି । ଏହି ମୟୂର ସାଧାରଣ ମୟୂର ନୁହେଁ । ପରନ୍ତୁ ଜୈନମାନଙ୍କର ପୁରାଣାଦିରେ ବର୍ଣ୍ଣିତ ଶ୍ରୁତଦେବୀଙ୍କର ବାହନାଭୂତ ମୟୂର । ତାହା ନ ହୋଇଥିଲେ ସାଧାରଣ ମୟୂରଡିମ୍ବ ମାନବର ଉତ୍ପାଦକ ହେବା ଅସମ୍ଭବ ବୋଲି ଅଗ୍ରହଣୀୟ ହୁଅନ୍ତା । ତେଣୁ ଷୋଡ଼ଶ ଶତାବ୍ଦୀରେ ବିଦ୍ୟମାନ କନକା ରାଜାଙ୍କର ବଂଶୀୟ ହରିଚନ୍ଦନ ପ୍ରଣୀତ 'ସଙ୍ଗୀତ ମୁକ୍ତାବଳୀ'ରେ ଆତ୍ମବଂଶର ପରିଚୟ ପ୍ରସଙ୍ଗରେ ନିଜ ବଂଶ ଶ୍ରୁତମୟୂରକାରୁ

ଉତ୍ପନ୍ନ ବୋଲି ଲେଖିଅଛନ୍ତି । ଏହି ଦ୍ୱିଜ—ଶ୍ରୁତଦେବୀ ବା ସରସ୍ୱତୀ । ଜୈନମତରେ ଏହାଙ୍କ ବାହନ ମୟୂର । ଏହା ଉତ୍କୀର୍ଣ୍ଣନରେ ଜୈନଧର୍ମ ପ୍ରଭାବର ନିଦର୍ଶନ ।

ଆହୁରି ମଧ୍ୟ ପ୍ରୋକ୍ତ ଉଖୁଣ୍ଡା ତାମ୍ରଶାସନରେ ସଂଲଗ୍ନ 'ଗଣଦଣ୍ଡ' ଥିବାର ଲେଖା ଅଛି । ଏହି ଗଣଦଣ୍ଡ ଜୈନ ପୁରାଣୋକ୍ତ 'ଗଣଧର', ଗଣୀ, ଗଣେନ୍ଦ୍ର ପ୍ରଭୃତି ଶବ୍ଦର ଏକ ପର୍ଯ୍ୟାୟ ମାତ୍ର ।

ଉତ୍କଳର ଉତ୍ତର ଅଂଶ ସମସ୍ତ-ଷଟଶତରେ ଭୋଷାଳୀ ନାମରେ ଅଭିହିତ ହେଉଥିଲା । ଏହି ଭୋଷାଳୀରେ ଶୈଳପୁର ନାମରେ ଗୋଟିଏ ଜୈନ ତୀର୍ଥସ୍ଥାନ ଥିଲା । ଭରୁକଚ୍ଛରେ ବାଣବ୍ୟନ୍ତର ଯାହା ଓ ଅର୍ବୁଦ ପର୍ବତର ପ୍ରଭାସ ତୀର୍ଥ ପରି ଏହା ଜୈନମାନଙ୍କ ନିକଟରେ ପ୍ରସିଦ୍ଧିଲାଭ କରିଥିଲା । ଶୈଳପୁର ରାଜଗୃହ (ରାଜଗିର)ର ନାମାନ୍ତର । ବିପୁଳାନାମ ପର୍ବତଦ୍ୱାରା ଏହା ପରିବେଷ୍ଟିତ ହୋଇଥିବାରୁ ଏହାର ଏ ପ୍ରକାର ନାମକରଣ ହୋଇଅଛି । ମହାବୀରଙ୍କର ଧର୍ମପ୍ରଚାରର ପ୍ରଧାନ ପୀଠ ରାଜଗିର ବା ଶୈଳପୁର ଅନୁକରଣରେ ପରବର୍ତ୍ତୀ କାଳରେ ଅନ୍ୟତ୍ର ସେହି ନାମରେ ଜୈନପୀଠମାନ ସ୍ଥାପିତ ହୋଇଅଛି । ଭୋଷାଳୀ ବିଷୟରେ ଶୈଳପୁର ନାମରେ ଏକ ତୀର୍ଥସ୍ଥାନ ଥିବା କଥା ଜୈନ ଗ୍ରନ୍ଥରୁ ମିଳୁଛି । ଏଠାରେ ଛୁଟି ଚଡ଼ାଇଟିଏ ଥିଲା । ଶରତ୍‌କାଳରେ ଏହି ସ୍ଥାନରେ ଅଠଦିନ ବ୍ୟାପୀ ମହୋତ୍ସବ କରାଯାଉଥିଲା ।

ଏହି ସ୍ଥାନଟିର ବର୍ତ୍ତମାନ ନାମ କଣ ଓ ତାହା କେଉଁଠାରେ ଅବସ୍ଥିତ—ଏ ବିଷୟରେ ଐତିହାସିକମାନଙ୍କର ଗବେଷଣା କରିବା ଉଚିତ, କିନ୍ତୁ ତାହା ଏ ପର୍ଯ୍ୟନ୍ତ ହୋଇ ନାହିଁ ।

କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ସବ୍‌ଡିଭିଜନରେ ପୋଡ଼ାସିଙ୍ଗିଡ଼ି ବୋଲି ଗୋଟିଏ ଗ୍ରାମ ଅଛି । ଏହା ଆନନ୍ଦପୁର-ଠାରୁ ନ' ମାଇଲ । ଏଠାରେ ପ୍ରାୟ ଏକ ମାଇଲ ପରିମିତ ଏକ ବର୍ଗ କ୍ଷେତ୍ରାକାର ଭୂମିକୁ ବଉଳା ପର୍ବତଶ୍ରେଣୀ ବେଢ଼ି ରହିଛି । ଅନ୍ୟ ପାଖଟି ଧ୍ୱସ୍ତ ପ୍ରାଚୀରର ଅବଶେଷ ଦ୍ୱାରା ଚିହ୍ନିତ ହୋଇ ରହିଛି । ଏଠାରେ ଶତାଧିକ ତୀର୍ଥଙ୍କର, ଯକ୍ଷ, ଯକ୍ଷିଣୀ ପ୍ରଭୃତିଙ୍କର ମୂର୍ତ୍ତି ଇତସ୍ତତଃ ବିକ୍ଷିପ୍ତ ହୋଇ ରହିଛି । ତହିଁ ମଧ୍ୟରୁ କେତେକ ଅର୍ଦ୍ଧପ୍ରୋଥିତ, କେତେକ ତିର୍ଯ୍ୟକ୍ ଭାବେ ଦଣ୍ଡାୟମାନ, ଆଉ କେତେକ ଛିନ୍ନନାସୀ ଓ କେତେକ ଅର୍ଦ୍ଧଭଗ୍ନ ଅବସ୍ଥାରେ ଅଛି । ପର୍ବତ ଗାତ୍ରରେ କୃତ ସୋପାନଦ୍ୱାରା ପର୍ବତର ଅଧିତ୍ୟକାକୁ ଗଲେ ଏକ ବିଶାଳ ତୀର୍ଥଙ୍କର ମୂର୍ତ୍ତି ପରିଦୃଷ୍ଟ ହୁଏ, ତାହା ମହାବୀରଙ୍କର । ଏହି ସ୍ଥାନଟି ପୂର୍ବେ ଭୋଷାଳୀର ଅନ୍ତର୍ଭୁକ୍ତ ଥିଲା । ତେଣୁ ନିଃସନ୍ଦେହରେ ଏହାକୁ ଭୋଷାଳୀର ଶୈଳପୁର ବୋଲି କୁହାଯାଇପାରେ । ଶୈଳଦ୍ୱାରା ବେଷ୍ଟିତ ନଗରକୁ ଶୈଳପୁର କୁହାଯିବା ହିଁ ଯୁକ୍ତିଯୁକ୍ତ । ରାଜଗିରର ଅବସ୍ଥିତି ଶୈଳ-ବଳୟ ମଧ୍ୟରେ ହୋଇଥିବାରୁ ତାହାକୁ ଶୈଳପୁର କୁହାଯାଉଥିଲା । ଏହି ସ୍ଥାନ ମଧ୍ୟ ସେହିପରି ଶୈଳବଳୟିତ । ଆହୁରି ରାଜଗିରର ଚତୁର୍ଦ୍ଦିଗରେ ବେଢ଼ିଥିବା ପର୍ବତର ନାମ 'ବିପୁଳା' । ଏଠାକାର ପର୍ବତର ନାମ ବଇଳା । ଏହି ସାଦୃଶ୍ୟ

ଲକ୍ଷ୍ୟ କରିବାର କଥା । ପୁଣି ଖଣ୍ଡଗିରିର ଦ୍ୱାରଦେଶରେ ଥିବା ପର୍ବତ ଖୋଦିତ ଚକ୍ର ଗୋଲାକାର । ଏଠାରେ ମଧ୍ୟ ତାହାହିଁ ପରିଦୃଷ୍ଟ ହୁଏ । ଏ ସବୁ ଚିନ୍ତା କଲେ ଓଡ଼ିଶାରେ ଜୈନଧର୍ମର ପ୍ରାଚୀନତ୍ୱ ସହଜେ ପ୍ରମାଣିତ ହୁଏ ।

ଐତିହାସିକ ତଥ୍ୟ ଛଡ଼ା ସାହିତ୍ୟିକ ତଥ୍ୟ ମଧ୍ୟ ଉତ୍କଳରେ ଜୈନ ପ୍ରଭାବର ଘୋଷଣା କରୁଅଛି । ଏ ପର୍ଯ୍ୟନ୍ତ ଓଡ଼ିଆ କେଳାଙ୍କ ପଦ୍ମତୋଳା ଗୀତରେ (୧) ଅଛି ଯେ କଂସର ସ୍ତ୍ରୀ ପଦ୍ମାବତୀ ଧନଶ୍ରୀ ଓଷା କରିଅଛନ୍ତି । ତେଣୁ କଂସ କୃଷ୍ଣଙ୍କୁ ଶଙ୍କରର ପଦ୍ମ ଦେବାକୁ ଆଜ୍ଞା ଦେଇଛି । ତେଣୁ କୃଷ୍ଣ କାଳନ୍ଦୀ ହ୍ରଦରେ ପଶି ପଦ୍ମ ତୋଳିଲେ । କାଳିୟ ଦଂଶନ କରିବାରୁ ତାହାକୁ ମର୍ଦ୍ଦନ କଲେ ।(୨) କିନ୍ତୁ ହିନ୍ଦୁମାନଙ୍କର ଶାସ୍ତ୍ର ପୁରାଣ, ହରିବଂଶ ପୁରାଣ ଓ ଅନ୍ୟାନ୍ୟ ଶାସ୍ତ୍ର-ଗ୍ରନ୍ଥାତ୍ମକ ପୁରାଣରେ କୃଷ୍ଣ ଯଦୃଚ୍ଛାକ୍ରମେ କାଳନ୍ଦୀ ହ୍ରଦରେ ପ୍ରବେଶ କରିବାର ଉଲ୍ଲେଖ ଅଛି; କିନ୍ତୁ ପୂର୍ବବର୍ଣ୍ଣିତ କଂସକୁ ଫୁଲ ଯୋଗାଇବା ପାଇଁ କାଳନ୍ଦୀରେ ପ୍ରବେଶ କରିବା କଥା ଓ କଂସର ସ୍ତ୍ରୀର ନାମ ଯେ ପଦ୍ମାବତୀ ଏ କଥା ଦେଖାଯାଏ । ତେଣୁ ଜୈନ ହରିବଂଶର ପ୍ରଭାବ ଓଡ଼ିଶାର ଲୋକ ସାହିତ୍ୟରେ ଏ ପର୍ଯ୍ୟନ୍ତ ବିଦ୍ୟମାନ । ପୁନଶ୍ଚ ଓଡ଼ିଆର ଅତି ପ୍ରାଚୀନ ମୁଦ୍ରିତ ସାରଳା ମହାଭାରତରେ ରାଧାଚକ୍ର ଶବ୍ଦର ବ୍ୟବହାର ଅଛି । (୩) ଦ୍ରୌପଦୀଙ୍କ ସ୍ୱୟମ୍ବରରେ ଅର୍ଜ୍ଜୁନ ଲକ୍ଷ୍ୟ ବିନ୍ଧିବାବେଳେ ଘୂର୍ଣ୍ଣମାନ ଚକ୍ରର ସନ୍ଧିରେ ରାଧା ଅର୍ଥାତ୍ ଲକ୍ଷ୍ୟକୁ ଭେଦ କରିଥିବା କଥା—ଜୈନ ହରିବଂଶରେ ଉଲ୍ଲେଖ ଅଛି । ସାରଳା ମହାଭାରତରେ ଏହି ରାଧାଚକ୍ର ଶବ୍ଦର ପ୍ରୟୋଗ ଥିଲେହେଁ ସଂସ୍କୃତ ମହାଭାରତରେ ରାଧା ଶବ୍ଦର ଆଦୌ ଉଲ୍ଲେଖ ନାହିଁ । ତେଣୁ ଏହା ଯେ ଜୈନ ହରିବଂଶରୁ ସାରଳା ଦାସଙ୍କ ଦ୍ୱାରା ଗୃହୀତ ହୋଇଛି ଏଥିରେ ସନ୍ଦେହ ହୋଇ ନ ପାରେ ।

ପ୍ରାଚୀ ମାହାତ୍ମ୍ୟ ପ୍ରଣେତାଙ୍କ କେତେକ କାବ୍ୟକାର ତାଙ୍କର ଅଷ୍ଟପୁଷ୍ପ ଟୀକାକୁ ପଦ୍ମପୁରାଣରୁ ଗୃହୀତ ବୋଲି ଉଲ୍ଲେଖ କରିଥିଲେ ମଧ୍ୟ ମୂଳ ପଦ୍ମପୁରାଣରେ ତାହା

(୧) "କଂସର ଘରଣୀ ପଦ୍ମାବତୀ ରାଣୀ
କରନ୍ତି ଧନଶ୍ରୀ ଓଷା,
ଶଙ୍କରର ପଦ୍ମ ଦେବୁ ରେ କହ୍ନାଇ
ନ ଥିବ ପାଟମହିଷୀ ।"

(୨) ରସକଲ୍ଲୋଳକାର ଦୀନକୃଷ୍ଣ ଏହି ଜୈନପ୍ରଭାବିତ ଲୋକସାହିତ୍ୟର ଅବଲମ୍ବନରେ ତାଙ୍କର ପ୍ରସିଦ୍ଧ କାବ୍ୟରେ ଲେଖିଛନ୍ତି—

କୃଷ୍ଣବଧାର୍ଥେ କହୁଥିଲେ ଗୋପନରେ,
କଂସ ପାଶ ଅଛି ଲାଗିଲା ନନ୍ଦକୁ ଦେବ
କମଳ ଶତେକର ।
କଲେ ନନ୍ଦ ଲବ୍ଧ ନ ହଜେ ହୃଦାପ୍ୟ ନେ
ଦେବ ପଦ୍ମଫୁଲ ତୋଳି,
କର୍ଣ୍ଣେ ଶୁଣିକରି ଲବ୍ଧ ପରିହରି ଯାଇ
ହୋଇଲେ ବନମାଳୀ ।
କାଳୀ ହ୍ରଦରେ ଲେହୁ ନ ପଶେ କାଳନ୍ଦୀରେ
କୃଷ୍ଣ ଆନନ୍ଦରେ ପ୍ରବେଶ ହୋଇଲେ ନଟ
ଲେଉଟ ନାଟମଣ୍ଡରେ ।
( ୯ମ ଛାନ୍ଦ )

(୩) ରାଧାଚକ୍ର ବୁଲୁଅଛି ସାତତାଳ ଉଚ୍ଚେ
ତାଳେ ଉପରେ ପଟାଏ ଅଛି ଯେ ପୁତଳୀ
ଲକ୍ଷେ ବଳ ଧନୁ ଧରି ସେ ପଟାରେ ଉଠି
( ସାରଳା ମହାଭାରତ )

ଦେଖିବାକୁ ମିଳେ ନାହିଁ । ପୂର୍ବ ବର୍ଣ୍ଣିତ କାଳୀୟ ଦଳନ ଓ ସ୍ୱଧାଚଙ୍ଗ ଭଳି ଯେ ସବୁ ଉପାଖ୍ୟାନ ଜୈନ ପଦ୍ମପୁରାଣରୁ ଗୃହୀତ ହୋଇଥିବା ଖୁବ୍ ସମ୍ଭବପର ।

ଓଡ଼ିଆ ସାହିତ୍ୟରେ ଜୈନଧର୍ମର ପ୍ରଭାବ ସଂକ୍ଷିପ୍ତ ଭାବରେ ରହିଛି । ଜଗନ୍ନାଥ ଦାସଙ୍କ ଭାଗବତରେ ମୂଳ ଭାଗବତକୁ ଅନୁସରଣ କରି ଜୈନ ତତ୍ତ୍ୱକଥା ପ୍ରତିପାଦନ କରାଯାଇଛି । ଭାଗବତ ପଞ୍ଚମ ସ୍କନ୍ଧ, ପଞ୍ଚମ ଅଧ୍ୟାୟରେ ଋଷଭଦେବ ତାଙ୍କର ଶତ ପୁତ୍ରଙ୍କୁ ଯେଉଁ ଉପଦେଶ ପ୍ରଦାନ କରୁଅଛନ୍ତି ତାହା ଜୈନଧର୍ମର ତତ୍ତ୍ୱ ଦ୍ୱାରା ପୂର୍ଣ୍ଣ ଭାବରେ ପ୍ରକାଶିତ । ନିମ୍ନରେ ଏଥିରୁ କେତେ ପଦ ଉଦ୍ଧାର କରାଗଲା ।

### ଋଷଭଙ୍କ ଶିକ୍ଷା

(ଭାଗବତ ପଞ୍ଚମ ସ୍କନ୍ଧ, ପଞ୍ଚମ ଅଧ୍ୟାୟ, ଦୁର୍ଗାଚରଣ ଚନ୍ଦ୍ରମଣି ଅପୂର୍ବ୍ୟ ପ୍ରକାଶନ, ୩୭ ପୃଷ୍ଠା)

ଶ୍ରୀ ଋଷଭ ଉବାଚ—

ହେ ପୁତ୍ରମାନେ ସାବଧାନ ।
ଶୁଣ ହେ ଆମ୍ଭର ବଚନ ॥
ଯେ ପ୍ରାଣୀ ଯେ କାର୍ଯ୍ୟ ମାନ ।
କରନ୍ତେ କରେ ଆଚରଣ ॥
ଯେ ପ୍ରାଣୀ ବ୍ୟର୍ଥ ଏ ସଂସାରେ ।
ପଡ଼ନ୍ତି ନରକ ମହାଘୋରେ ॥
ଯେ ତୁଚ୍ଛ କର୍ମ ସମ୍ପୂର୍ଣ୍ଣ ।
କଲେ ଅନନ୍ତ ଅସାଧନ ॥
ନର୍କର ମାର୍ଗେ ଏ ଦୁସ୍ତର ।
ଶୁଣ କହିବା ପୁଣି ତତ୍ତ୍ୱ ॥

ସ୍ତ୍ରୀ ସଙ୍ଗମ ଆଦି ଯେତେ ।
ଯେ ତମ ଦ୍ୱାରଟି ଜଗତେ ॥
ଏ ସର୍ବ ଦ୍ୱାର ପରିହରି ।
ମହତ ଜନ ସେବା କରି ॥
ମହନ୍ତ ପ୍ରାଣୀ ଅଟେ ଯେହୁ ।
ପ୍ରଶାନ୍ତ ସାଧୁ ଯେ ବୋଲାଇ ॥
ଯେ ଜନ କ୍ରୋଧ ବିବର୍ଜିତ ।
ଯାହାର ସୁହୃଦ ଜଗତ ॥
ଯେ ପ୍ରାଣୀ ମୋର ପଦ୍ମପାଦେ ।
ମନ ଅର୍ପିଲ ଅପ୍ରମାଦେ ॥
ଯେ ଜନ ଜାୟା ଗୃହ ଧନ ।
ତନୟ କ୍ଳେଶ ନାନା କର୍ମ ॥
କରଇ ନାନା ଭ୍ରମ ହୋଇ ।
ଯାବତ ମୋତେ ନ ଭଜଇ ॥
ଅନିତ୍ୟ ଦେହ ନିତ୍ୟ କରେ ।
ସେ ସାଧୁ ବୁଡ଼ଇ ସଂସାରେ ॥
ତାବତ ପସ୍ୱନ୍ତ ପାଇ ।
ଯାବତ ଆତ୍ମା ନ ଚିହ୍ନଇ ॥
ଯାବତ ନାନା କର୍ମ କରେ ।
ମନ ବୁଡ଼ଇ ନିରନ୍ତରେ ॥
ତାବତ କର୍ମ ବଶ ହୋଇ ।
ନାନାଦି ଶରୀର ବହଇ ॥

ଅବଶ୍ୟ ବାସୁଦେବ ମୂର୍ତ୍ତି ।
ମୋରେ ଯାହାର ପ୍ରୀତି ନାହିଁ ॥
ସେ ନୋହେ ଦେହବନ୍ଧ ପାର ।
ଯେଣୁ ସେ ନ ଛାଡ଼େ ସଂସାର ॥
ମୈଥୁନ ପ୍ରାପ୍ତେ ଦେହେ ନର ।
କରଇ ନାନା ଅହଂକାର ॥
ନିଦ୍ରାରେ ଯେତେକ ସୁଖ ଭୋଗ ।
ଜାଗ୍ରତେ ନ ପାଇ ତା ଲବ ॥
ଗୃହ ବନ୍ଧନେ ଏ କାରଣ ।
ନାସ୍ତି ସଙ୍ଗତେ ଅନୁଦିନ ॥

ହିଂସା ପ୍ରଭୃତି ସବୁ ବନ୍ଧ ।
ଚର୍ମରେ ମନକୁ ବାନ୍ଧଇ ॥
ମୋହର ସ୍ନେହ ମୋର ଧନ ।
ବୋଲି ମାୟାରେ ହୋଇ ଛନ୍ନ ॥
ତାହାର ଜର୍ମ ବନ୍ଧମାନ ।
ନୁହଇ ତାହାର ଖଣ୍ଡନ ॥
× ×
ଅଖିଳ ସୃଷ୍ଟି ମୂର୍ତ୍ତି ହରି ।
ମୋତେ ଭଜିବ ଦେହ ଧରି ॥
ନିବୃତ୍ତି ଚିତ୍ତ ହୋଇ ନର ।
ଭକ୍ତି କରିବ ମୋ ଚପର ॥
ବ୍ୟସନ ସଂସାରୁ ଛାଡ଼ିବ ।
ତା ପରେ ମୋତେ ଆରାଧିବ ॥
ମୋହର ଗୁଣ କର୍ମ ମାନ ।
ନିରତେ କରିବ କୀର୍ତ୍ତନ ॥
ଏକାନ୍ତ ସ୍ଥଳ ମୋହଠାରେ ।
ସ୍ନେହ ପୂର୍ଣ କରନ୍ତି ଯେ ନରେ ॥
ଇନ୍ଦ୍ରିୟଗଣଙ୍କୁ ଜିଣି ।
ଅଧ୍ୟାତ୍ମ୍ୟ ବିଦ୍ୟାକୁ ଆଚରି ॥
ଶ୍ରଦ୍ଧାରେ ବ୍ରହ୍ମଚର୍ଯ୍ୟା କରେ ।
ପ୍ରଶାନ୍ତ ସତ୍ୟ ବଚନରେ ॥
ଭବ ଜନମୁ ସେ ତରଇ ।
ସ୍ନେହବନ୍ଧନ ତାର ନାହିଁ ॥
ତାହାର କର୍ମ ବନ୍ଧ ମୁକ୍ତି ।
ଅକ୍ଷେଣେ ନିଶ୍ଚୟ ହେତଇ ॥
ଆତ୍ମାର ଶ୍ରେଷ୍ଠ କର୍ମ ଠାରେ ।
ଶ୍ରଦ୍ଧା ନ କରନ୍ତି ଜ୍ଞାନରେ ॥
ଅଳପ ସୁଖ ହେତୁ କରି ।
ଅନ୍ୟାନ୍ୟ ହିଂସାକୁ ଆଚରି ॥
ଅଶେଷ ଦୁଃଖର କାରଣ ।
କରନ୍ତି ହୋଇ ମତିଭ୍ରମ ॥
ଦୁଷ୍ଟି ତାହାର ନଷ୍ଟ ହୋଇ ।
ଅବିଦ୍ୟା ସମ୍ଭବେ ଭ୍ରମଇ ॥

ଚୈତନ୍ୟ ଦାସ ବିରଚିତ ବିଷ୍ଣୁଗର୍ଭପୁରାଣ ନବମ ଅଧ୍ୟାୟରେ ମଧ୍ୟ ଋଷଭ ଓ ଭରତଙ୍କ ଚରିତ ବର୍ଣ୍ଣିତ ହୋଇଛି । ଏହି ପୁସ୍ତକ ଅଲେଖ ଧର୍ମର ଏକ ପ୍ରଧାନ ଗ୍ରନ୍ଥ ଏବଂ ଏଠାରେ ଏହି ଧର୍ମର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାର ଚେଷ୍ଟା କରାଯାଇଛି । ତେଣୁ ଭରତ ଆଦି ୧୯ ପୁତ୍ର ଋଷଭ ଦେବଙ୍କଠାରୁ ଅଲେଖ ଧର୍ମ ଦୀକ୍ଷା ଗ୍ରହଣ କରିଥିବା ବିଷୟ ଚୈତନ୍ୟ ଦାସ ପ୍ରକାଶ କରିଅଛନ୍ତି । ଏଠାରେ ସୂଚାଇ ଦେବାକୁ ହେବ ଯେ ଓଡ଼ିଶାର ଏହି ଅଲେଖ ଧର୍ମ ଜୈନଧର୍ମର ଏକ ପରିଣତ ସ୍ୱରୂପ ଓଡ଼ିଶାରେ ଅଭିବ୍ୟକ୍ତି ଲାଭ କରିଥିଲା । ବିଷ୍ଣୁଗର୍ଭପୁରାଣର ୭ମ ଅଧ୍ୟାୟରେ ଦେଖିବାକୁ ମିଳେ ଯେ ଋଷଭ ବିଷ୍ଣୁଗର୍ଭକୁ ନ ଯାଇ ବୈକୁଣ୍ଠକୁ ଗମନ କରିଅଛନ୍ତି । ଏଥିରେ ଋଷଭଙ୍କର ମହତ୍ତ୍ୱ ବିଶେଷ ପରିମାଣରେ ପ୍ରତିପାଦନ କରାଯାଇଛି । ଭାଗବତରୁ ଉଦ୍ଧୃତ ଋଷଭଙ୍କର ଉପଦେଶବାଣୀରେ ଯେପରି ଜୈନ ତତ୍ତ୍ୱର ପ୍ରଭାବ ପ୍ରସ୍ଫୁଟିତ ବିଷ୍ଣୁଗର୍ଭପୁରାଣର ପ୍ରଦତ୍ତ ହିତବାଣୀରେ ସେହିପରି ପ୍ରଭାବ ସ୍ପଷ୍ଟ; ଯଥା—

ଇନ୍ଦ୍ରିୟମାନଙ୍କୁ ଦୃଢ଼ ଥିବ ଛନ୍ଦ,
ଦୋଷୀ ଲୋକଙ୍କୁ ରଜା ଯେସନ୍ତେ କରିଥାଇ
ବନ୍ଦୀ ।
ମାୟା ମିଥ୍ୟା କଥାମାନ ମୁଖେ ନ ଭଣିବ,
ଜାଣିଥିଲେ ନ ଜାଣିଲି ପ୍ରାୟେକ ହୋଇବ ।
ସତ୍ୟ ଭାଷା କହି ସତ୍ୟବ୍ରତେ ଥିବ ନିତ୍ୟେ,
ଅମାର୍ଗ କୁପଥମାନ ନ ଲଙ୍ଘିବ ଚିତ୍ତେ ।
ସ୍ନେହ ଥିଲେ ନୋହିବ ଅତି ବିଷୟଭଣ୍ଡାରୀ,
ପୁଣ୍ୟ କର୍ମ ପ୍ରସାଦ ଉକର୍ମରେ ନ ଚଳ ।

ଧ୍ୟାନରେ ହରଷ ନାହିଁ ଲଭରେ ନାହିଁ
ହରଷ,
ପର ଜୀବକୁ ମଣିଥିବ ଆପଣା ସଦୃଶ ।
ସକଳ ଭୂତରେ ହୋଇଥିବ ଦୟାପର,
ତନୁ ଉପରକୁ ନ କରିବ ଅହଂକାର ।
ବସ୍ତୁ ଭକ୍ତ ଲୋକେ ଯେତେ କଥାରେ
ପ୍ରବର୍ତ୍ତି,
ବସ୍ତୁରସେ ଜରଜେ ଥିବ ମାତି ।
ତୁମଙ୍କ ପରିତ୍ୟାଗି ସୁସଙ୍ଗମାନ କରି,
ଅନୁକ୍ଷଣେ ଥିବ ଭକତ ସଙ୍ଗ ଆବୋରି ।
ଏମନ୍ତ ସଜ୍ଜନେ ବସ୍ତୁ ଭକତରେ ପଶି,
ସେ ଲୋକେ ଭଗନ୍ତ ଦର୍ଶନ ବାନା
ତଣି ।
ଯେତେ ଲୋକ ସଙ୍ଗତରେ ରସି ବସିଥିବ,
ସେ ଲୋକମାନଙ୍କୁ ପଛେ ଚେତନା ନ
କରିବ । ୧୮୫ ।

ଏହିପରି ନବୃତ୍ତି ମାର୍ଗର କଥା ସବୁ ବୁଝାଯାଇଛି ।

ସାଧନାର ବଧି ଯେ ନଶ୍ଚଳ ଧ୍ୟାନ ତତ୍ତ୍ୱ,
ତହିଁ ଚଳତନ ଜଗାଇ ଲଗାଇ
ମନକୁ । ୧୯୧ ।
ମନର ସଙ୍ଗତେ ନାନା ଚିନ୍ତା ଥାଏ ଜଡ଼ି,
ପର୍ବତକୁ ଯେସନେ ବୃକ୍ଷ ଥାନ୍ତି ବେଢ଼ି ।
ଋଷିଙ୍କ ବୋଲରେ ବାବୁ କସ ମୋର
ଭୋଳେ,
ଅଲେଖ ଦୀକ୍ଷା ତୁମ୍ଭେ ନେଇ ହୋ
ସୁନନ୍ଦନେ । ୨୬୬ ।
ପିତାକୁ ନମସ୍କାର କରି ଦଣ୍ଡଗୋଟି ଘାଲି,
ଦୀକ୍ଷା ନେବାକୁ ଭୋକେ ବସିଲେକ
ଯାଇ । ୨୬୭ ।
ପୁତ୍ରମାନଙ୍କୁ ଋଷିଙ୍କ ଅଲେଖ ଦୀକ୍ଷା ଦେଲେ
ଧ୍ୟାନ ଭେଦ ମୁଦ୍ରାମାନ ସକଳ
କହିଲେ । ୨୬୮ ।

ଓଡ଼ିଶାରେ ବଉଳା ଗାଈର ଉପାଖ୍ୟାନ ଅତି ପରିଚିତ ଓ ଲୋକପ୍ରିୟ । ଏହି ଉପାଖ୍ୟାନରୁ ଦେଖିବାକୁ ମିଳେ ଯେ ବଉଳା ନାମରେ ଏକ ଗାଈ ତାହାର ବାଛୁରୀକୁ ଛାଡ଼ି ଜଙ୍ଗଲକୁ ଚରି ଯାଇଥିଲା । ସେଠାରେ ଏକ କ୍ଷୁଧିତ ବ୍ୟାଘ୍ର ତାକୁ ଦେଖି ଖାଇବାକୁ ଉଦ୍ୟତ ହେଲା । ବଉଳା ଗାଈ ତାକୁ କହିଲା, ମୁଁ ପିଲା ଜନ୍ମ କରିଛି—ତାକୁ ଟିକିଏ ଦୁଧ ଦେଇ ଆସେ ! ତା ପରେ ମୋତେ ଖାଇବ । ବ୍ୟାଘ୍ର ରାଜି ହେଲା । ତା ପରେ ବଉଳା ଗାଈ ପିଲାକୁ ଦୁଧ ଦେଇସାରି ବାଘ ପାଖକୁ ଆସିଲା । ସେତେବେଳକୁ ବାଘ ମର୍ମାହତ ହୋଇଯାଇଛି । ସତ୍ୟର ଏପରି ପ୍ରଭାବ ହିଂସ୍ର ବ୍ୟାଘ୍ରକୁ ମଧ୍ୟ ଅହିଂସ କରିପକାଇଲା । ଜୈନଧର୍ମର ଅହିଂସାର କଥା ଏଠାରେ ଅତି ସୁନ୍ଦର ଭାବରେ ଫୁଟାଇ ଦିଆଯାଇଛି ।

ବର୍ତ୍ତମାନ ଦେଖାଯାଉ ଓଡ଼ିଶାର ଲୋକାଚାର ଉପରେ ଉକ୍ତ ଧର୍ମର ପ୍ରଭାବ କେତେ ଦୂର ପଡ଼ିଅଛି । ଏହି ପ୍ରସଙ୍ଗ ଆଲୋଚନା କଲେ ପ୍ରଥମରୁ ଜୈନଧର୍ମର କେତେଗୁଡ଼ିଏ ମୂଳ ଲକ୍ଷଣ ଖୋଜିବାକୁ ହେବ । ସେହି ଲକ୍ଷଣ ଭିତରେ କଳ୍ପବଟ ଏକ ବଶିଷ୍ଟ ସ୍ଥାନ ପାଇଥିଲା ଯେହେତୁ ମାନବସଭ୍ୟତାର ଆଦିଯୁଗରେ ଗୃହବାସ ଆଦି ନ ଥିଲା ଏବଂ କଳ୍ପବୃକ୍ଷରୁ ଲୋକେ ସମସ୍ତ ଆବଶ୍ୟକୀୟ ଅଭାବ ପୂରଣ କରିପାରୁଥିଲେ । ଏହି କଳ୍ପବଟ ଅନ୍ତର୍ହିତ ହେବାରୁ ଲୋକେ ଖାଦ୍ୟ ପାଇଲେ ନାହିଁ ବୋଲି ଆଦି ତୀର୍ଥଙ୍କର ଗୃହବାସ ଓ ପଶୁପାଳନ ବୃତ୍ତି ତଥା ଅନ୍ୟ ଅନେକ

ଶିଳ୍ପ ଆଦର୍ଶର କଳ୍ପ ଶିକ୍ଷା ଦେଇଥିଲେ । (୮) ଏତେ ଜଳେ ମଧ୍ୟ ଜୈନମାନଙ୍କର କଳ୍ପବଟ ପୂଜା ଗୋଟିଏ ବଡ଼ ଅନୁଷ୍ଠାନ । ଏହାର ଅନୁକରଣରେ ହିନ୍ଦୁମାନେ ପୌରାଣିକ ଯୁଗରେ କାମଧେନୁର କଳ୍ପନା କରିଥିଲେ ଏବଂ ଏହି କାମଧେନୁ ବା ସୁରଭି ଗାଈ ନିମିତ୍ତ ବିଶ୍ୱାମିତ୍ର ବଶିଷ୍ଠ ଆଶ୍ରମ ଆକ୍ରମଣ କରି ଶେଷକୁ ରାଜ୍ୟ ଗୃହ ତ୍ୟାଗ ପାଲଟିଥିଲେ । ଜୈନଙ୍କର ଏହି ଅନୁଷ୍ଠାନଟି ହିନ୍ଦୁଙ୍କ ପ୍ରୟାଗସ୍ଥିତ କଳ୍ପବଟର ପ୍ରେରଣା ଦେଇଥିଲା, ସନ୍ଦେହ ନାହିଁ । ଖାଲି ସେତିକି ନୁହେଁ, କଳ୍ପବଟରୁ ଡେଇଁ ପ୍ରାଣତ୍ୟାଗ କରିବା ପ୍ରଥା ଜୈନଙ୍କର ପ୍ରାୟୋପବେଶନରେ ପ୍ରାଣତ୍ୟାଗ କରିବା ସଙ୍ଗେ ସମାନ । ପ୍ରାଚୀନ ହିନ୍ଦୁ ପୁରାଣମାନଙ୍କରେ ଏହି କଳ୍ପବଟର ବହୁ ମାହାତ୍ମ୍ୟ ଲିପିବଦ୍ଧ ହୋଇ ରହିଅଛି ।

ଜୈନଧର୍ମର କଳ୍ପବଟ ଧାରଣା ହିନ୍ଦୁଧର୍ମରେ ଯେ ଖୁବ୍ ବେଶୀ ପ୍ରଭାବ ପକାଇଥିଲା, ଏ କଥା ମାନିବାକୁ ହୁଏ ପ୍ରୟାଗର କଳ୍ପବଟ କାହାଣୀରୁ । ଏହି କଳ୍ପବଟ ପାଖରେ କାମନା କରି ଲୋକେ ଅସାଧ୍ୟ ସାଧନ କରୁଥିଲେ । କଳ୍ପବଟର କାହାଣୀ ନେଇ ହିନ୍ଦୁ ପୁରାଣରେ ବିବିଧ ଆଖ୍ୟାନ ରହିଛି । ଆମ ଓଡ଼ିଶାରେ ଏହି କଳ୍ପବଟର ମହତ୍ତ୍ୱ ଅତ୍ୟନ୍ତ ବେଶୀ । ଏଠାରେ ଲୋକେ ବଟବୃକ୍ଷକୁ ପୂଜା କରନ୍ତି । ବଟଗଛର ଓହଳକୁ ଶିବଙ୍କ ଜଟା ବୋଲି କହିଥାନ୍ତି ଏବଂ ଋଷଭଦେବ ଯେ ଶିବଙ୍କ ଅବତାର, ତାହା ମଧ୍ୟ ଶିବପୁରାଣରେ ଲିଖିତ ଅଛି । ଜୈନଙ୍କର କଳ୍ପବଟ ପ୍ରଭାବରେ ପଡ଼ି ଓଡ଼ିଶାର ପୁରୀ, ଭୁବନେଶ୍ୱର ପ୍ରଭୃତି ମନ୍ଦିରରେ କଳ୍ପବଟ ରୋପିତ ହୋଇଅଛି । କେତେକ ମନ୍ଦିର ମଧ୍ୟରେ ବଟବୃକ୍ଷ ସ୍ଥାପନର ଅନ୍ୟ କୌଣସି ଆଧ୍ୟାତ୍ମିକ ପାରବଶ୍ୟ ନାହିଁ ।

ଆଦି ତୀର୍ଥଙ୍କର ଋଷଭଦେବ ହିନ୍ଦୁ ପୁରାଣରେ ବିଷ୍ଣୁ ଓ ଶିବଙ୍କ ଅବତାର ବୋଲି ଗଣ୍ୟ । ସେ ମୁକ୍ତିର ପଥରୁ ଚ୍ୟୁତ ହୋଇ ଶେଷ ଜୀବନ କୈଳାସ ଶିଖରରେ ରହିଥିଲେ ଏବଂ ସେଠାରେ ବଂଶବନରେ ଦାବାଗ୍ନି ଲାଗିବାରୁ ସେ ସେହି ଦାବାଗ୍ନିରେ ଦଗ୍ଧ ହୋଇଥିଲେ । ଏ ଘଟଣା ଫାଲ୍‌ଗୁନ କୃଷ୍ଣ ଚତୁର୍ଦ୍ଦଶୀ ଦିନ ଘଟିଥିଲା । ଜୈନମାନେ ଏଥିପାଇଁ ଏହାକୁ ପାଳନ କରିଥାନ୍ତି । କାଳକ୍ରମେ ହିନ୍ଦୁମାନେ ମଧ୍ୟ ଏହି [illegible] ଦିନକୁ ଏକ ବ୍ରତ-ଉତ୍ସବରେ ପରିଣତ କରିଅଛନ୍ତି । ଏହା ଶିବ ଚତୁର୍ଦ୍ଦଶୀ ବା ଜାଗର ବୋଲି ଭାରତପ୍ରସିଦ୍ଧ । ଋଷଭଦେବଙ୍କର ଶିବ ଅଂଶୀଭୂତ ହେବାର ଏହା ଗୋଟିଏ ପ୍ରମାଣ । ଆମର ମାଙ୍କଡ଼ ଜାଗରବ୍ରତର ଆଧୁନିକ ପ୍ରକୃତ ଯାହା ହେଉ ନା କାହିଁକି, ତାହା ଏକ ଜୈନ ପର୍ବ ଏବଂ ତାହା ଓତପ୍ରୋତ ଭାବେ ହିନ୍ଦୁ ଆସ୍ଥାରଞ୍ଜିତ ହୋଇପାରିଅଛି ।

ଓଡ଼ିଶା ଜୈନଧର୍ମର ଏକ ପ୍ରଧାନ ପୀଠ । ଏଠାରେ ପ୍ରତି ପୁରପଲ୍ଲୀରେ ଶିବାଳୟମାନ ସ୍ଥାପିତ । ଏ ସବୁ ମନ୍ଦିରରେ ବ୍ରାହ୍ମଣେତର ଜାତି ପୂଜା କରିଥାନ୍ତି । ଶିବ ଚତୁର୍ଦ୍ଦଶୀ ଓଡ଼ିଶାର ଶୈବଙ୍କର ଏକ ପ୍ରଧାନ ପର୍ବ । ସୁଦୂର ଅତୀତରୁ ଏହା ଜୈନଧର୍ମ ପ୍ରଭାବକୁ ନିଜସ୍ୱ ସଂସ୍କୃତିରେ ପରିଣତ କରିଛି ।

(୮) ଆଦିପୁରାଣ ୩ୟ ଅଧ୍ୟାୟ, ୩୦ ପୃଷ୍ଠା ।

ପୂର୍ବରେ ଯେଉଁ ବଟବୃକ୍ଷ କଥା କୁହାଗଲା, ତହିଁର ପୂଜା ମଧ୍ୟ ଆଜିକାଲି ପ୍ରଚଳିତ ବୋଲି ଦେଖିବାକୁ ମିଳେ । ଓଡ଼ିଆରେ 'ରତନ ସମାପୁଣ' ଖଣ୍ଡିଏ ପକ୍ଷୀ କାବ୍ୟ ଏବଂ ଲୋକପ୍ରିୟ ପୁସ୍ତକ । ଏଥିରେ ମଧ୍ୟ କବି ଅଲଙ୍କାରରେ 'ବଟ ଜଣାଣ' ନାମ ଦେଇ ଗୋଟିଏ ଜଣାଣ ଧୀରାଙ୍କ କୁଣ୍ଡରେ ଦିଆଯାଇଅଛନ୍ତି । (୫)

ଏହି ଜଣାଣଟି ଓଡ଼ିଆ କବିଙ୍କର ଖାଣ୍ଟି କଳ୍ପନା ହେଲେ ମଧ୍ୟ ଏଥିରେ ଜୈନ ପ୍ରଭାବର ଏକ ପ୍ରାଚୀନ ତତ୍ତ୍ୱ ସୂଚିତ ।

ଓଡ଼ିଶାର ପ୍ରତି ଶିବମନ୍ଦିରରେ ତ୍ରିଶୂଳ ଚିହ୍ନ ଦିଆଯାଇଥାଏ । ତ୍ରିଶୂଳ ଓ ବୃଷଭ ଶିବଙ୍କର ଅସ୍ତ୍ର ପତାକା । ଏହା ମଧ୍ୟ ଜୈନ ଆଦି ତୀର୍ଥଙ୍କର ଋଷଭଙ୍କର ଚିହ୍ନ । ଋଷଭ ଜାଣନ୍ତି ମଧ୍ୟ ବୃଷଭର ପ୍ରତିପାଦ ମାତ୍ର ।

ପୁଣି ଜଗନ୍ନାଥ ମନ୍ଦିରବେଢ଼ାରେ କୋଇଲି ବୈକୁଣ୍ଠ ରହିଅଛି । ଏହି କୋଇଲି ଶବ୍ଦ ତାମିଲ "କୋଏଲ" ଶବ୍ଦ ବା ସଂସ୍କୃତ "କୈବଲ୍ୟ" ଶବ୍ଦ, ତାହା ଅନୁଧ୍ୟାନର ବିଷୟ । ହିନ୍ଦୁଧର୍ମରେ ମୁକ୍ତି, ମୋକ୍ଷ ଯେଉଁ ଅର୍ଥବାଚକ, ଜୈନଧର୍ମର କୈବଲ୍ୟ ସେମିତିକା ଅର୍ଥଦ । (୬) ବସ୍ତୁତଃ ଆମ ଓଡ଼ିଆରେ ଏହି କୈବଲ୍ୟ ପଦଟି ହିଁ ଜୈନଧର୍ମରୁ ଆସିଅଛି ବୋଲି କୁହାଯିବ; କାରଣ ପ୍ରାଚୀନ ହିନ୍ଦୁ ପୁରାଣରେ ମୋକ୍ଷ ଅର୍ଥରେ କୈବଲ୍ୟ ଉପଯୋଗ କରାଯାଇ ନ ଥାଏ ।

ତୀର୍ଥଙ୍କରମାନଙ୍କର ଗର୍ଭାବସ୍ଥାନ, ଜନ୍ମ, ତପସ୍ୟା, ଜ୍ଞାନପ୍ରାପ୍ତି ଓ ମୋକ୍ଷପ୍ରାପ୍ତି ଯେଉଁ ଯେଉଁ ତିଥିରେ ହୁଏ, ସେହି ଦିନମାନଙ୍କରେ ଇନ୍ଦ୍ରାଦି ଦେବବର୍ଗ

---

(୫) "ବାଞ୍ଛାବଟ, ଦେବ ଦେବ
ମୋ ନିକଟେ ବଟବୃକ୍ଷ—
ବଦନ ହୋଇବ ବଟମୂଳେ,
ଶିରେ କର ଯୋଡ଼ି ବୀଣା ବୋଲେ ।
ତତ୍କ୍ଷଣ ଲେଖେ ସ୍ୟନ୍ଦ ହୋଇଥିବ
ପର ଉପକାରେ ଏ ସଂସାରେ ॥
ଶାସ୍ତ୍ରଶାସ୍ତ୍ର ମୋ ଦକ୍ଷିଣରେ,
ସବେ ଶୁଭେ ଅଳ୍ପ ଅଯୋଧ୍ୟାରେ ।
ଭକ୍ତଙ୍କର ଦୁଃଖେ ସଙ୍ଗ୍ୟ ପାଳୁଅଛୁ
ନେତ୍ରୁ ନୀର ଦେଇ ସଙ୍ଗତରେ ॥
ଅଯୋଧ୍ୟାରେ ଯେତେ ନରନାରୀ,
ଅନ୍ତରରେ ଥାଳ୍ପ ଦେବ ଧରି ।
ଶାନ୍ତି ଉପଦ୍ରବ ତାଙ୍କୁ ନ ହେଉ ଇବ,
ମାଗୁଅଛୁ କର ଯୋଡ଼ି କରି ॥
ବୋଧବା ରଣିତା ମୁଁ ନୋହିବ,
ଯୁଗେ ଯୁଗେ ଦେହ ବହିଥିବ ।
ଦିଆ ମୋ ପରମକ୍ଷୁ ଭେଟ ପାଇ,
ଅବ ମୁଁ ସ୍ୱାମୀଙ୍କୁ କି ମାଗିବ ॥
(ରତନ ସମାପୁଣ)

---

(୬) କୈବଲ୍ୟ କାହାକୁ କହନ୍ତି—

ପୁରୁଷାର୍ଥଶୂନ୍ୟାନାଂ ଗୁଣାନାଂ ପ୍ରତିପ୍ରସବଃ ।
କୈବଲ୍ୟଂ ସ୍ୱରୂପପ୍ରତିଷ୍ଠା ବା ଚିତିଶକ୍ତି ଇତି ॥

ଚିତ୍ ସ୍ୱରୂପ ପୁରୁଷଠାରେ ପ୍ରକୃତିର ସାରୂପ୍ୟ ନିବୃତ୍ତି ହିଁ କୈବଲ୍ୟ । ପ୍ରକୃତି ସହିତ ପୁରୁଷର ଅସମ୍ବନ୍ଧ ହିଁ କୈବଲ୍ୟ । ତାହା ହିଁ ପୁରୁଷର ସ୍ୱରୂପ ଲକ୍ଷଣ । ପ୍ରକୃତିଠାରେ ପୁରୁଷର ଅବ୍ୟବହିତ ସମ୍ପୃକ୍ତ ଅସାଧାରଣ ଔଦାସୀନ୍ୟବଶତଃ ସେହି ପ୍ରକୃତି ପୁରୁଷାର୍ଥ ଶୂନ୍ୟ ହେଲେ ବା ପ୍ରକୃତିର ସଂସ୍ପର୍ଶୋନ୍ମୁଖ ପରିସମାପ୍ତି ହେଲେ ପୁରୁଷ ସଙ୍ଗେ ତାହାର ଯେଉଁ ବିଯୋଗ ହୁଏ, ସେହି ବିଯୋଗକୁ କୈବଲ୍ୟ କୁହାଯାଏ ।

'ପରମାର୍ଥ ପଥେ ଧ୍ୟେ'—ବୈଷ୍ଣବ, ତପଟି-ଋଷି ରାଜେନ୍ଦ୍ର ଦେବ, ୨୫୯ ପୃଷ୍ଠା ।

ଉତ୍ସବ କରିଥାନ୍ତି । ପୂର୍ବକାଳରେ ମଧ୍ୟ ଜୈନ ଧର୍ମାବଲମ୍ବୀମାନେ ଏହି ତିଥିମାନଙ୍କରେ "ଚୈତ୍ୟଯାତ୍ରା" କରନ୍ତି । ଚୈତ୍ୟଯାତ୍ରା କହିଲେ ରଥଯାତ୍ରା ବୁଝାଏ । ଚୈତ୍ୟ ନିର୍ମିତ ରଥ ଉପରେ ଜିନଙ୍କର ପ୍ରତିମା ସ୍ଥାପନ କରି ନଗରରେ ପରିକ୍ରମା କରିବା ଏହି ଉତ୍ସବର ବିଧି । ସୁମଜ୍ଜିତ ହସ୍ତୀ, ଅଶ୍ୱ, ନୃତ୍ୟ, ଗୀତ ଓ ବାଦ୍ୟ ସହକାରେ ଏହି ଯାତ୍ରା ଅନୁଷ୍ଠିତ ହୁଏ ।

ଅବଧାନ ଶତକମ୍ ପୁସ୍ତକରେ ଅନୁଯାନ ଶବ୍ଦ ବିବରଣରେ ଏହା ବିସ୍ତୃତ ଭାବେ ବର୍ଣ୍ଣିତ ହୋଇଅଛି ।

ଆଜି ଓଡ଼ିଶାରେ ପୁରୀ ଓ ଭୁବନେଶ୍ୱରଠାରେ ଆଷାଢ଼ ଶୁକ୍ଳ ୨ୟା ଓ ଚୈତ୍ରଶୁକ୍ଳ ଅଷ୍ଟମୀଦିନ ରଥଯାତ୍ରା ହୋଇଥାଏ । ଏହି ତିଥିଦ୍ୱୟ ପୁଣ୍ୟତିଥି ବୋଲି ସ୍ୱୀକୃତ ହୋଇଥାଏ । ବିଶେଷତଃ ରଥଯାତ୍ରା ତିଥିଟି ସର୍ବଶ୍ରେଷ୍ଠ । ଏପରି କି ଏହି ତିଥିରେ ବାର, ନକ୍ଷତ୍ର ବିଚାର ନ କରି ସବୁବିଧ ଶୁଭ କାର୍ଯ୍ୟ କରାଯାଇଥାଏ । ତେଣୁ ଏହାକୁ କଲ୍ୟାଣକ ଦିବସ କୁହାଯାଇ ପାରେ । ସ୍ମୃତିଶାସ୍ତ୍ରରେ କେବଳ ପୁଷ୍ୟା ନକ୍ଷତ୍ରଯୁକ୍ତ ଦ୍ୱିତୀୟା ତିଥିରେ ରଥରେ ରାମ ଓ ସୁଭଦ୍ରାଙ୍କ ସହ ଜଗନ୍ନାଥଙ୍କୁ ସ୍ଥାପନ କରି ଯାତ୍ରୋତ୍ସବ କରିବା ବିଧି ଅଛି । କିନ୍ତୁ ବାରନକ୍ଷତ୍ର ବିଚାର ନ କରି ଶୁଭକାର୍ଯ୍ୟର ଅନୁଷ୍ଠାନ କୌଣସିଠାରେ ବିହିତ ହୋଇନାହିଁ । ଏହି ହେତୁ ସ୍ମୃତିଶାସ୍ତ୍ର ଏହାକୁ କଲ୍ୟାଣକ ଦିବସ ରୂପେ ଗ୍ରହଣ କରି ନ ଥିବା ଜଣାଯାଏ । ଯାହା ସ୍ମୃତିସମ୍ମତ ନ ହୋଇ ମଧ୍ୟ ଦେଶରେ ଚଳୁଛି, ତାହା କେବଳ ସମାଜ ବା ଲୋକ-ବ୍ୟବହାରମୂଳକ । ଏହି ଲୋକ ବ୍ୟବହାରର ମୂଳ ଅନ୍ୱେଷଣ କରିଗଲେ ଆମ୍ଭେମାନେ ଜୈନ ପୁରାଣରେ ଏହାକୁ ଦେଖୁଁ । ଜୈନମାନଙ୍କ ମତରେ ଆଷାଢ଼ ଶୁକ୍ଳ ଦ୍ୱିତୀୟା ପ୍ରଥମ ତୀର୍ଥଙ୍କର ଋଷଭଙ୍କର ଗର୍ଭକଲ୍ୟାଣକ ଉତ୍ସବ, ଅର୍ଥାତ୍ ଏହି ତିଥିରେ ଋଷଭ ଦେବ ଗର୍ଭଗତ ହୋଇଥିଲେ । ପ୍ରତି କଲ୍ୟାଣକ ଦିବସରେ ଚୈତ୍ୟଯାତ୍ରା ବା ରଥଯାତ୍ରାର ବିଧାନ ଅଛି । ଜଗନ୍ନାଥ ଋଷଭଙ୍କର ପ୍ରତୀକ ବୋଲି ଅନେକ ମନେ କରନ୍ତି । ତେଣୁ ସେହି ଦିନ ଜଗନ୍ନାଥଙ୍କର ରଥଯାତ୍ରା ଉତ୍ସବ ଅନୁଷ୍ଠିତ ହେଉଥିବା ଅନୁମିତ ହେଉଛି ।

କେତେକ ଜୈନପୁରାଣରେ ଋଷଭଙ୍କ ଗର୍ଭଦିବସ ଆଷାଢ଼ ଶୁକ୍ଳ ୪ର୍ଥୀ ବୋଲି ଲେଖାଅଛି । ଜୈନ ପୁରାଣ ମତରେ ଋଷଭ ନ'ମାସ ଷୋଳଦିନ ଗର୍ଭସ୍ଥ ହୋଇଥିଲେ । ତାଙ୍କର ଜନ୍ମ ଚୈତ୍ର ଶୁକ୍ଳ ଅଷ୍ଟମୀ ତିଥିରେ ହେବ । ସେହି ଦିନ ଜନ୍ମ-କଲ୍ୟାଣକ ଦିବସ ଓ ସେହି ତିଥିରେ ଭୁବନେଶ୍ୱରଠାରେ ରଥଯାତ୍ରା ହୁଏ । ସ୍ମୃତି ଶାସ୍ତ୍ରରେ ଅଶୋକାଷ୍ଟମୀରେ ରଥଯାତ୍ରା କରିବାର ଉଲ୍ଲେଖ ନାହିଁ । କେବଳ ଶୋକ ରହିତ ହେବା ଉଦ୍ଦେଶ୍ୟରେ ଯେଉଁଦିନ ପୁନର୍ବସୁ ନକ୍ଷତ୍ରରେ ଆଠଗୋଟି ଅଶୋକ କଳି ଜଳ ସହ ପାନ କରିବାର ବିଧି ଅଛି । ତେଣୁ ଏହାକୁ ଋଷଭଙ୍କ ଜନ୍ମଦିନ ରୂପେ ଗ୍ରହଣ କଲେ ଜୈନପନ୍ଥୀ ରଥଯାତ୍ରାରେ ସଙ୍ଗତ ଜଣାପଡ଼େ । (୭)

(୭) ଭୁବନେଶ୍ୱରରେ ଲିଙ୍ଗରାଜ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମା ଚନ୍ଦ୍ରଶେଖରଙ୍କ

ଶ୍ରୀଜଗନ୍ନାଥଙ୍କର ସ୍ନାନ ଯାତ୍ରା ପରି ଜୈନ ପ୍ରତିମାମାନଙ୍କର ଅଭିଷେକ ସ୍ନାନ ଯାତ୍ରା ଅନୁଷ୍ଠିତ ହୁଏ । ଛତ୍ର, ଚାମର, ଘଣ୍ଟାଳି ଓ ବାଦ୍ୟ ସହକାରେ ଅଷ୍ଟ-କୁମ୍ଭଦ୍ୱାରା ଜିନ ପ୍ରତିମାମାନଙ୍କର ଅଭିଷେକ କରାଯାଏ । ବିଶେଷତଃ ଜିନ ପ୍ରତିମାର ଚକ୍ଷୁକୁ ତୁଳିଦ୍ୱାରା ଆଙ୍କି ଥରେ ଉଠାଇବାର ଯେଉଁ ବିଧି ଜୈନଶାସ୍ତ୍ରରେ ପରିଦୃଷ୍ଟ ହୁଏ, ତାହା ଜଗନ୍ନାଥାଦି ମୂର୍ତ୍ତିମାନଙ୍କର ସ୍ନାନଯାତ୍ରା ପରେ ବନକ ଲାଗି ଓ ନବ ଯୌବନ ପ୍ରକୃତିକୁ ସ୍ମରଣ କରାଇଦିଏ । ବିଶେଷତଃ ଚକ୍ଷୁର ନବକରଣ ଅନୁଧାନ ଯୋଗ୍ୟ । ଜଗନ୍ନାଥଙ୍କର ଚକାଡୋଳା ବ୍ୟତୀତ ଅପର କିଛି ରଙ୍ଗ କରିବାର ନାହିଁ । ଜଗନ୍ନାଥଙ୍କର ମୂର୍ତ୍ତି ଚକ୍ଷୁପ୍ରଧାନ । ଜଗନ୍ନାଥ ଶବ୍ଦ ମୂଳତଃ ଜୈନ ଏବଂ ଏହା ଜିନେଶ୍ୱର ଅର୍ଥାତ୍ ଆଦିନାଥ ଋଷଭଙ୍କର ନାମାନ୍ତର ବୋଲି ଜୈନ ଅଭିଧାନ ରାଜେନ୍ଦ୍ରରୁ ସ୍ପଷ୍ଟ ହୁଏ । (୮) ଜଗନ୍ନାଥଙ୍କର ରଥଯାତ୍ରା ଯେ ଋଷଭ ଦେବଙ୍କର ରଥୋତ୍ସବର ପରିଣତି ଏହାର ଆଲୋଚନା ଇତିପୂର୍ବେ ହୋଇସାରିଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏହି ରଥଯାତ୍ରା ଶ୍ରୀକୃଷ୍ଣଙ୍କର ଘୋଷ ଯାତ୍ରା ନୁହେଁ; କାରଣ ଘୋଷଯାତ୍ରାରେ ବାହୁଡ଼ା ବିଜେ ନାହିଁ । ପୁଣି ଋଷଭଙ୍କର କେବଳ ବୃକ୍ଷ ହେଉଛି କଳ୍ପବଟ । ଜଗନ୍ନାଥ ଧାମର କଳ୍ପବଟ ଋଷଭ ଦେବଙ୍କର କେବଳ ବୃକ୍ଷର ସ୍ମାରକ ପରି ମନେ ହୁଏ । ଏହି କଳ୍ପବଟ ବିଷୟ ମଧ୍ୟ ପୂର୍ବରୁ ଆଲୋଚିତ ହୋଇଛି । ଆଉ ମଧ୍ୟ ଜଗନ୍ନାଥଙ୍କର ନୀଳଚକ୍ର ଋଷଭଙ୍କର ଲାଞ୍ଛନ, ଧର୍ମଚକ୍ରର ସଙ୍କେତ ରୂପେ ଗ୍ରହଣ କରାଯାଇ ପାରେ । ଋଷଭଙ୍କର ପୂଜା ସର୍ବତ୍ର ଯେଉଁଠାରେ ହୁଏ, ତାହା ଚକ୍ରକ୍ଷେତ୍ର ରୂପେ ଖ୍ୟାତ । ଆବୁ ପାହାଡ଼ ଅଞ୍ଚଳକୁ ସେଥିପାଇଁ କୁହାଯାଏ ଚକ୍ରକ୍ଷେତ୍ର । ଏପରି କି କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ସବ୍‌ଡିଭିଜନରେ ଯେଉଁଠି ଆଗେ ଋଷଭଙ୍କର ପୂଜାପୀଠ ଥିଲା, ତାକୁ କୁହାଯାଏ ଚକ୍ରକ୍ଷେତ୍ର । ତେଣୁ ପୁରୀକୁ ଚକ୍ରକ୍ଷେତ୍ର ରୂପେ ନାମିତ କରିବାରେ ବୈଷ୍ଣବଧର୍ମ ପ୍ରଭାବର ପରିସର ଯାହା ହେଉନା କାହିଁକି ତାହା ଯେ ଜୈନ ଋଷଭଙ୍କର ପୂଜାପୀଠ ହେତୁ ସେହି ନାମରେ ନାମିତ, ଏହା ସର୍ବାଗ୍ରେ ସ୍ୱୀକାର୍ଯ୍ୟ । ଏ ସବୁ ତଥ୍ୟର ବଳେ ଜଗନ୍ନାଥ ଯେ ଆଦିନାଥଙ୍କ ରୂପେ ଜୈନ ଏହା ବେଶ ଉପଲବ୍ଧ ହୁଏ । (୯)

---

ଅଶୋକାଷ୍ଟମୀ ଦିନ ଗୋଟିଏ ରଥରେ ବସାଇ ଏକ ମାଇଲ ଦୂରବର୍ତ୍ତୀ ରାମେଶ୍ୱର ମନ୍ଦିରକୁ ନିଆଯାଇ କିଛିଦିନ ସେଠାରେ ଅବସ୍ଥିତ କରି ପୁଣି ବଡ଼ଦେଉଳକୁ ବାହୁଡ଼ାଇ ଅଣାଯାଏ । ଏହି ରଥ ଏକଚକ୍ରବିଶିଷ୍ଟ । ତା'ର ନାମ ରୁକ୍ମିଣୀ ବା ରୁକୁଣାରଥ । ଏହା ଯେଉଁ ଅଙ୍ଗକୁ ମୁହଁ କରିଥାଏ ସେହି ଅଙ୍ଗରୁ ଆଉ ମୁହଁ ଫେରାଏ ନାହିଁ । ବାହୁଡ଼ା ଦିନ ରଥରେ ଆଉ ପାଟର ସାରଥିକୁ ଆଣି ପଛ ପଟେ ଲଗାଇ ରଥର ପଛପଟକୁ ସମ୍ମୁଖ କରି ଠାକୁରଙ୍କୁ ବାହୁଡ଼ାଇ ଅଣାଯାଏ ।

(୮) Abhidhan Rajendra, Vol. IV, p. 1885.

(୯) ଏ ପ୍ରବନ୍ଧରେ 'ନବକଳେବର', ମାର୍ଚ୍ଚ ୧୯୭୧ ଦ୍ରଷ୍ଟବ୍ୟ ।

## ଓଡ଼ିଶାରେ ଜୈନକଳା

"Of the early caves along the East coast, the only ones that merit attention here are the two neighbouring and intimately connected groups of the hills of Udaigiri and Khandagiri in Orissa."

—Sir John Marshall

ଭୁବନେଶ୍ୱର ଦକ୍ଷିଣ ପଶ୍ଚିମ ଦିଗରେ ଖଣ୍ଡଗିରି ଓ ଉଦୟଗିରି ନାମକ ଦୁଇଟି ଛୋଟ ଛୋଟ ପାହାଡ଼ ଅଛି । ସେମାନଙ୍କର ଉଚ୍ଚତା ଯଥାକ୍ରମେ ୧୨୩ ଫୁଟ ଓ ୧୧୦ ଫୁଟ । ଉଦୟଗିରିର ପାଦଦେଶରେ ଏକ ବୈଷ୍ଣବ ମଠ ଅଛି । ଏହି ପାହାଡ଼ ଗୁଡ଼ିକ କ୍ଷୁଦ୍ର କ୍ଷୁଦ୍ର ଗୁମ୍ଫାଦ୍ୱାରା ପରିପୂର୍ଣ୍ଣ । ଉଦୟଗିରିରେ ଚୌରାଳିଶି, ଖଣ୍ଡଗିରିରେ ଊଣେଇଶି ଏବଂ ନିକଟବର୍ତ୍ତୀ ନୀଳଗିରି ନାମକ ପାହାଡ଼ରେ ତିନୋଟି ଗୁମ୍ଫା ଦେଖିବାକୁ ମିଳେ । ବିଂଶ ଶତାବ୍ଦୀର ପ୍ରାୟ ଊଣେଇଶି ଶହ ବର୍ଷ ପୂର୍ବରୁ ଅଧିକାଂଶ ଗୁମ୍ଫା ଜୈନ ସମ୍ରାଟ୍ ଖାରବେଳ ଓ ତାଙ୍କର ପରିବାରବର୍ଗଙ୍କ ଦ୍ୱାରା ନିର୍ମିତ ହୋଇ-ଥିଲା । ଶୈବ୍ୟ ଧର୍ମର କେନ୍ଦ୍ରସ୍ଥଳୀ ଭୁବନେଶ୍ୱରର ଏତେ ସନ୍ନିକଟରେ ଜୈନଧର୍ମ ଯେ ନିଜର ଆସ୍ଥାନ ଜମାଇ ପାରିଲା, ଏହି ପ୍ରଶ୍ନ ସମସ୍ତଙ୍କ ମନରେ ଉଦୟ ହେବା ଖୁବ୍ ସ୍ୱାଭାବିକ । ଖ୍ରୀଷ୍ଟପୂର୍ବର ଶେଷ ଶତାବ୍ଦୀମାନଙ୍କରେ ଭୁବନେଶ୍ୱର ଶୈବଧର୍ମ କେନ୍ଦ୍ରକୁ ପ୍ରବେଶ କରି ନ ଥିଲା ଏବଂ ବୋଧହୁଏ ଜୈନଧର୍ମର ଅଭିବୃଦ୍ଧିରେ ପୂର୍ଣ୍ଣଚ୍ଛେଦ ପକାଇବା ପାଇଁ ବ୍ରାହ୍ମଣ୍ୟ ଧର୍ମର ପୃଷ୍ଠପୋଷକମାନେ ଭୁବନେଶ୍ୱରକୁ ପରେ ସ୍ୱଧର୍ମର ଉପଯୁକ୍ତ ସ୍ଥାନ ରୂପେ ଗ୍ରହଣ କରି ନେଇଥିଲେ ।

ଖଣ୍ଡଗିରି ଏବଂ ଉଦୟଗିରି ଅନ୍ତର ଗୁମ୍ଫାମାନଙ୍କର ସ୍ଥାପତ୍ୟ ପୂର୍ବ ଭାରତରେ ବାସ୍ତବିକ ଏକ ପ୍ରଧାନ ଦର୍ଶନୀୟ ବସ୍ତୁ । ଏହି ସ୍ଥାପତ୍ୟ ପ୍ରତିବର୍ଷ ଭାରତର ଶତ ଶତ ଐତିହାସିକ ଓ ପରିବ୍ରାଜକମାନଙ୍କୁ ଆକର୍ଷଣ କରିଥାଏ ।

ଉଦୟଗିରିର ଗୁମ୍ଫାମାନଙ୍କ ମଧ୍ୟରେ ରାଣୀହଂସପୁର ହିଁ ସବୁଠାରୁ ବୃହତ୍ । ଏହାର ଭାସ୍କର୍ଯ୍ୟ ମଧ୍ୟ ଅତି ସୁନ୍ଦର । ଏହାକୁ ରାଣୀଗୁମ୍ଫା ମଧ୍ୟ କୁହାଯାଏ । ଏହାର ପ୍ରକୋଷ୍ଠଗୁଡ଼ିକ ଦୁଇଟି ପଂକ୍ତିରେ ସଜ୍ଜିତ ହୋଇଛି । ଗୁମ୍ଫା ଦକ୍ଷିଣପୂର୍ବପାର୍ଶ୍ୱ ଉନ୍ମୁକ୍ତ । ନିମ୍ନ ପଂକ୍ତିରେ ୮ଟି ଏବଂ ଉପର ପଂକ୍ତିରେ ୬ଟି ପ୍ରକୋଷ୍ଠ ଅଛି । ଏହାର ଉପର ମହଲାରେ ଥିବା ବିସ୍ତୀର୍ଣ୍ଣ ବାରଣ୍ଡା ବାସ୍ତବିକ ରାଣୀଗୁମ୍ଫାର ଏକ ପ୍ରଧାନ ବିଶେଷତ୍ୱ । ଏହା କୋଡ଼ିଏ ଫୁଟ ଲମ୍ବ ଏବଂ ତଳମହଲାର ବାରଣ୍ଡା ୪୩ ଫୁଟ ଲମ୍ବ । ଏହି ବାରଣ୍ଡାର ଉଭୟ ପାର୍ଶ୍ୱରେ ଦ୍ୱାରପାଳମାନଙ୍କର ପ୍ରତିମୂର୍ତ୍ତି ଅତି ସୂକ୍ଷ୍ମ ଭାବରେ ଖୋଦିତ ହୋଇଛି । ତଳମହଲାରେ ଥିବା ପ୍ରବେଶ ଏକ ସୁସଜ୍ଜିତ ସୈନିକ ଚର ଦେଖାଯାଏ । ବାରଣ୍ଡାର ଏକ ବିଶେଷତ୍ୱ ହେଉଛି ଯେ ସେଠାରେ ବସିବା ପାଇଁ ଅନେକ ଛୋଟ ଛୋଟ ଉଚ୍ଚାସନ ନିର୍ମିତ ହୋଇଛି । ପଶ୍ଚିମ ଭାରତର ପ୍ରାଚୀନ ଗୁମ୍ଫାମାନଙ୍କରେ ମଧ୍ୟ ଏହିପରି ଆସନ ନିର୍ଦ୍ଦିଷ୍ଟ ହୋଇଥିବାର ଦେଖିବାକୁ ମିଳେ । ବାରଣ୍ଡାର ଉପର ଛାତକୁ ଧରି ରଖିବା ପାଇଁ ପଥରର ସ୍ତମ୍ଭ ବହୁ ସଂଖ୍ୟାରେ ତିଆରି ହୋଇଥିଲା ।

କିନ୍ତୁ ଦୁର୍ଭାଗ୍ୟବଶତଃ ସେଥିରୁ ଅଧିକାଂଶ ସ୍ତମ୍ଭ ଭାଙ୍ଗି ଯାଇଛି । ରାଣୀଗୁମ୍ଫାର କେତୋଟି ମାତ୍ର ପ୍ରାଚୀନ ସ୍ତମ୍ଭ ସମୂହର ଗତିଚକ୍ର ବନ୍ଧନରେ ସଂଗ୍ରାମ କରି ସଂଘର୍ଷ କ୍ଷତବିକ୍ଷତ ହୋଇ ଏବେ ସୁଦ୍ଧା ତିଷ୍ଠି ପାରିଛନ୍ତି ।

ପ୍ରକୋଷ୍ଠ ମଧ୍ୟକୁ ପ୍ରବେଶ କରିବା ନିମନ୍ତେ ନିର୍ଦ୍ଦିଷ୍ଟ ଦ୍ୱାରମାନ ଅଛି । ବଡ଼ ବଡ଼ ପ୍ରକୋଷ୍ଠ ମଧ୍ୟରେ ଏକାଧିକ ଦ୍ୱାର ନିର୍ମିତ ହୋଇଥିବାର ଆମେ ଦେଖିବାକୁ ପାଉ । ଏହି ଦ୍ୱାରମାନଙ୍କର ଉପର ଭାଗରେ ଜୈନଧର୍ମର ନାନା ପ୍ରକାର ଉପାଖ୍ୟାନମାନ ଖୋଦିତ ହୋଇଛି । ପ୍ରସ୍ତରଖୋଦିତ ଏହି ଉପାଖ୍ୟାନମାନ ଅତି ପ୍ରାଞ୍ଜଳ ଭାବେ ବର୍ଣ୍ଣିତ ହୋଇଥିଲେ ହେଁ ସେ ସମ୍ବନ୍ଧରେ ଗବେଷଣା କରି ପ୍ରତ୍ୟେକର ତଥ୍ୟ ସଂଗ୍ରହ କରିବା ସହଜସାଧ୍ୟ ନୁହେଁ । ମୂର୍ତ୍ତିଗୁଡ଼ିକ ଅତି ସାଧାରଣ ଭାବେ ଖୋଦିତ ହୋଇଥିବା ଯୋଗୁଁ ପ୍ରତ୍ୟେକ ଦୃଶ୍ୟ ମଧ୍ୟରେ ଏକ ସାମଞ୍ଜସ୍ୟ ଅଛି ବୋଲି ମନେ ହୁଏ । କିନ୍ତୁ ଉପର ମହଲାରେ ଶିଳ୍ପୀ ଯେଉଁ ଭାବରେ, ଯେଉଁ ସ୍ତରରେ ଦୃଶ୍ୟ ନୃତ୍ୟ ବର୍ଣ୍ଣନା କରିଛି, ତଳ ମହଲାରେ ସେହି ଢଙ୍ଗ ଅନୁସୃତ ହୋଇନାହିଁ । ଉଭୟ ମହଲାର ଚିତ୍ରକୌଶଳ ମଧ୍ୟରେ ଏକ ସ୍ପଷ୍ଟ ପାର୍ଥକ୍ୟ ଅଛି ବୋଲି ସ୍ପଷ୍ଟ ଜଣାପଡ଼େ । ଉପର ମହଲାର ଦୃଶ୍ୟମାନଙ୍କ ମଧ୍ୟରେ ଏକତ୍ୱ ଅଛି । ଖୋଦିତ ମୂର୍ତ୍ତିମାନଙ୍କ ମଧ୍ୟରେ ଥିବା ପରସ୍ପର ସମ୍ବନ୍ଧ ମଧ୍ୟ ଅତି ନିବିଡ଼ । ମୂର୍ତ୍ତିଗୁଡ଼ିକ ଅତି ସଜୀବ ଏବଂ ଅତି ସ୍ୱାଭାବିକ ଦେଖାଯାନ୍ତି ।

ତଳ ମହଲାର ମୂର୍ତ୍ତିମାନ ଏତେ ଉନ୍ନତ ଧରଣର ନୁହେଁ । ସେଥିରେ ଅସ୍ୱାଭାବିକତା ଓ ଅପରିପକ୍ୱତା ପୂର୍ଣ୍ଣମାତ୍ରାରେ ଥିବାର ଉପଲବ୍ଧି କରାଯାଏ । ରାଣୀଗୁମ୍ଫାର ସ୍ଥାପତ୍ୟମାନଙ୍କ ମଧ୍ୟରେ ସେଗୁଡ଼ିକ ନିଶ୍ଚୟ ପ୍ରାଚୀନ । କିନ୍ତୁ ସ୍ଥାନବିଶେଷରେ ଆମେ ଖୁବ୍ ଉଚ୍ଚ କୋଟୀର ସ୍ଥାପତ୍ୟ ମଧ୍ୟ ଦେଖିବାକୁ ପାଉ । ତେଣୁ ତଳ ମହଲାର କଳାକୁ ଉପର ମହଲାର ପୂର୍ବବର୍ତ୍ତୀ ବୋଲି କହିବା ସମୀଚୀନ ନୁହେଁ । ରାଣୀଗୁମ୍ଫାର ଦୁଇ ମହଲାରେ ଥିବା କଳା ମଧ୍ୟରେ ଆମେ ଯେଉଁ ପାର୍ଥକ୍ୟ ଦେଖୁ, ସେ ପାର୍ଥକ୍ୟ ସମୟର ଦୂରତା ପାଇଁ ନୁହେଁ । ବୋଧହୁଏ ଭିନ୍ନ ଭିନ୍ନ ଶିଳ୍ପୀଙ୍କୁ ନିଯୁକ୍ତ କରିବା ଦ୍ୱାରା ଏହି ପାର୍ଥକ୍ୟ ସୃଷ୍ଟି ହୋଇଛି । ତଳ ମହଲା ପାଇଁ ଯେଉଁ ଶିଳ୍ପୀ ନିଯୁକ୍ତ ହୋଇଥିଲେ, ସେ ବୋଧହୁଏ ନିକୃଷ୍ଟ ଧରଣର । ଏ ବିଷୟରେ ଅବଶ୍ୟ ପ୍ରତ୍ୟକ୍ଷ ପ୍ରମାଣ କେଉଁଠାରୁ ପାଇବା ସମ୍ଭବ ନୁହେଁ ।

ଏ ସମ୍ପର୍କରେ ସାର୍ ଜନ୍ ମାର୍ଶାଲ ମତପ୍ରକାଶ କରିଛନ୍ତି ଯେ ଠିକ୍ ମଞ୍ଚପୁରୀ ଗୁମ୍ଫାପରି ଏଠାରେ ମଧ୍ୟ ଉପର ମହଲାଟି ପ୍ରଥମେ ନିର୍ମିତ ହୋଇଥିଲା; କିନ୍ତୁ ତଳ ମହଲା ଓ ଉପର ମହଲା ନିର୍ମାଣ କରିବାରେ ସମୟର ବ୍ୟବଧାନ ଖୁବ୍ ଅଳ୍ପ ଥିଲା ପରି ଜଣାଯାଏ । ଗୁମ୍ଫାର କଳା ଓ ସ୍ଥାପତ୍ୟ ଉପରେ ମଧ୍ୟ-ଭାରତୀୟ ଏବଂ ପଶ୍ଚିମ-ଭାରତୀୟ ପ୍ରଭାବ ପଡ଼ିଥିବା ସମ୍ଭବ ଓ ସ୍ୱାଭାବିକ । ଏହି ପ୍ରଭାବର ଆମେ ଦୁଇଟି ପ୍ରତ୍ୟକ୍ଷ ପ୍ରମାଣ ପାଉ । ଉପର ମହଲାରେ ଥିବା ଏକ ଦ୍ୱାରରକ୍ଷକ

ଗ୍ରୀକ୍ ବା ଯବନ ଚରିତ୍ରରେ ଭୂଷିତ ହୋଇଛି । ନିକଟବର୍ତ୍ତୀ ଗୋଟିଏ ସିଂହ ଏବଂ ତାର ଆରୋହୀ ଗଠନରେ ମଧ୍ୟ ପଶ୍ଚିମ ଏସିଆବୃନ୍ଦର କେତୋଟି ଚିହ୍ନ ଦୃଷ୍ଟିଗୋଚର ହୁଏ । କିନ୍ତୁ ତଳ ମହଲରେ ଥିବା ପ୍ରହରୀର ରୂପ ପରିପାଟୀ ଅବିକଳ ଭାରତୀୟ ଢଙ୍ଗରେ ହୋଇଛି; କାରଣ ଏଠାରେ ଶିଳ୍ପୀର ଶିଳ୍ପନୈପୁଣ୍ୟ ଅପରିପକ୍ୱ । ତାହା ଭାରତୀୟ କଳ୍ପନାନୁସାରେ ସୀମାବଦ୍ଧ ।

ମଥୁରା ଓ ଗାନ୍ଧାର କଳାର ପ୍ରଭାବ ରାଣୀଗୁମ୍ଫାରେ ଟିକ୍ ନଗଣ୍ୟ । ଉଦୟଗିରିର ପାଦଦେଶରେ ଥିବା ବୈଷ୍ଣବ ମଠ ପାଖରୁ ଜୟବିଜୟ ଗୁମ୍ଫାକୁ ଯିବା ପଥରେ କେତୋଟି ଛୋଟ ଛୋଟ ଗୁମ୍ଫା ଦେଖିବାକୁ ମିଳେ । ଏମାନଙ୍କ ମଧ୍ୟରେ ବାଜାଘର ଗୁମ୍ଫା ଅନ୍ୟତମ । ବାଜାଘର ଗୁମ୍ଫାରେ ଦୁଇଟି ଅତି କ୍ଷୁଦ୍ର ପ୍ରକୋଷ୍ଠ ଅଛି । ପ୍ରକୋଷ୍ଠ ସମ୍ମୁଖରେ ବାରଣ୍ଡା ମଧ୍ୟ ଅଛି । ଛୋଟ ହାତୀଗୁମ୍ଫା ଓ ଅଳକାପୁରୀ ନାମରେ ଆଉ ଦୁଇଟି ଗୁମ୍ଫା ଖୁବ୍ ନିକଟରେ ଦେଖାଯାଏ । ଛୋଟ ହାତୀଗୁମ୍ଫାରେ ଗୋଟିଏ ପ୍ରକୋଷ୍ଠ ଅଛି ଏବଂ ଏହାର ଦ୍ୱାରଦେଶରେ ଦୁଇଟି ହାତୀର ଚିତ୍ର ଖୋଦିତ ହୋଇଛି ।

ଅଳକାପୁରୀକୁ ରାଜେନ୍ଦ୍ରଲାଲ ମିତ୍ର ଏବଂ ଫର୍ଗୁସନ ସ୍ୱର୍ଗପୁରୀ ବୋଲି ନାମ ଦେଇଛନ୍ତି । ଏହି ଗୁମ୍ଫାର ଉପର ମହଲରେ ଦୁଇଟି କୋଠରୀ ଏବଂ ତଳ ମହଲରେ ଗୋଟିଏ ବଡ଼ କୋଠରୀ ଅଛି । ଏମାନଙ୍କର ସ୍ତମ୍ଭ ଓ ବାରଣ୍ଡା ଖୁବ୍ ସୁନ୍ଦର ଭାବେ ନିର୍ମିତ । ସ୍ତମ୍ଭମାନଙ୍କର ମସ୍ତକରେ ପକ୍ଷ-ଯୁକ୍ତ ସିଂହ ମୂର୍ତ୍ତି ଓ ନରମୁଣ୍ଡର ମୂର୍ତ୍ତି ଆଦି ଖୋଦିତ ହୋଇଛି ।

ଜୟ ବିଜୟ ଗୁମ୍ଫାର ଦୁଇଟି ପ୍ରକୋଷ୍ଠ ଏବଂ ସମ୍ମୁଖରେ ଗୋଟିଏ ବାରଣ୍ଡା ମଧ୍ୟ ଅଛି । ବାରଣ୍ଡାର ଦକ୍ଷିଣ ପାର୍ଶ୍ୱରେ ଏକ ସ୍ତ୍ରୀ ପ୍ରହରୀ ଏବଂ ବାମ ପାର୍ଶ୍ୱରେ ଏକ ପୁରୁଷ ପ୍ରହରୀର ମୂର୍ତ୍ତି ଅଛି । ଦୁଇ ଦ୍ୱାରଦେଶର ଉପର ଭାଗରେ ଯକ୍ଷ ମୂର୍ତ୍ତିମାନ ଖୋଦିତ ହୋଇଛି । ଦୁଇ ଯକ୍ଷଙ୍କ ମଧ୍ୟଭାଗରେ ପବିତ୍ର ପିପଳୀ ବୃକ୍ଷକୁ ଦୁଇଟି ପୁରୁଷ ଏବଂ ଦୁଇଟି ସ୍ତ୍ରୀ ପୂଜା କରୁଥିବାର ଦେଖାଯାଏ । ସ୍ତ୍ରୀମାନେ ସମସ୍ତ ପୂଜା ସାମଗ୍ରୀମାନ ଗୋଟିଏ ଗୋଟିଏ ପାତ୍ରରେ ଧରିଛନ୍ତି । ପୁରୁଷମାନଙ୍କ ମଧ୍ୟରୁ ଜଣେ ଯୋଡ଼ହସ୍ତ ହୋଇ ଛିଡ଼ା ହୋଇଛନ୍ତି ଏବଂ ଅନ୍ୟ ଜଣେ ପିପ୍ପଳୀ ବୃକ୍ଷର ଏକ ଶାଖାରେ ପୁଷ୍ପମାଳା ଅର୍ପଣ କରୁଛନ୍ତି ।

ଜୟବିଜୟ ଏବଂ ମଞ୍ଚପୁରୀ ମଧ୍ୟରେ ଏକ ଅର୍ଦ୍ଧବୃତ୍ତାକାରରେ ଠାକୁରାଣୀ ଗୁମ୍ଫା, ପଣସ ଗୁମ୍ଫା ଏବଂ ପାତାଳପୁରୀ ଗୁମ୍ଫା ଅବସ୍ଥିତ । ପଣସ ଗୁମ୍ଫାକୁ ରାଜେନ୍ଦ୍ରଲାଲ ମିତ୍ର ଗୋପାଳପୁର ବୋଲି ନାମ ଦେଇଛନ୍ତି । ଏହାର ସମ୍ମୁଖ ବାରଣ୍ଡାରେ ଥିବା ସ୍ତମ୍ଭଚୂଡ଼ାର ଉପର ଭାଗରେ ପଶୁମାନଙ୍କର ମୂର୍ତ୍ତି ଖୋଦିତ ହୋଇଛି । ମିତ୍ର ପାତାଳପୁରୀକୁ ମଞ୍ଚପୁର ବୋଲି ନାମ ଦେଇଛନ୍ତି । ଅର୍ଦ୍ଧବୃତ୍ତରେ ଶେଷ ପ୍ରାନ୍ତରେ ମଞ୍ଚପୁରୀ ଏବଂ ସ୍ୱର୍ଗପୁରୀ ବା ବୈକୁଣ୍ଠପୁରୀ ନାମରେ ଦୁଇଟି ଗୁମ୍ଫା ଅଛି । ଏହି ଗୁମ୍ଫାମାନଙ୍କରେ ଯେଉଁ ଶିଳାଲିପି ଅଛି, ତାହାର ଐତିହାସିକ ମୂଲ୍ୟ ଅପରିମେୟ; କାରଣ ଚକ୍ରବର୍ତ୍ତୀ

ସମ୍ରାଟ୍ ଖାରବେଳଙ୍କର ହାତୀଗୁମ୍ଫା ଶିଳାଲିପି ସହିତ ସେମାନଙ୍କର ସମ୍ପର୍କ ଅଛି ।

ମଞ୍ଚପୁରୀ ଗୁମ୍ଫା ସମ୍ମୁଖରେ ଏକ ସୁନ୍ଦର ପ୍ରାଙ୍ଗଣ ଅଛି । ସମ୍ମୁଖସ୍ଥ ବାରଣ୍ଡା ଏବଂ ଦକ୍ଷିଣ ପାର୍ଶ୍ୱସ୍ଥ ବାରଣ୍ଡାରେ ଦୁଇଟି ଲେଖାଏଁ ପ୍ରହରୀ ମୂର୍ତ୍ତି ଅଛି । ପ୍ରଧାନ ବାରଣ୍ଡା ଗୁହାର ସମ୍ମୁଖ ସ୍ତମ୍ଭରେ ନାନା ପ୍ରକାର ମୂର୍ତ୍ତି ଖୋଦିତ ହୋଇଛି । ସେଗୁଡ଼ିକ ବର୍ତ୍ତମାନ ଅସ୍ପଷ୍ଟ ହୋଇଗଲାଣି । ପ୍ରକୋଷ୍ଠ ମଧ୍ୟକୁ ପ୍ରବେଶ କରିବା ପାଇଁ ଯେଉଁ ଚାରୋଟି ଦ୍ୱାର ନିର୍ମିତ ଅଛି, ସେହି ଦ୍ୱାର ଏବଂ ପାର୍ଶ୍ୱସ୍ତମ୍ଭମାନଙ୍କରେ ପତ୍ର, ବୃକ୍ଷ, ଲତା ଏବଂ ପୁଷ୍ପାଦିର ଚିତ୍ର ଅତି ସୁନ୍ଦର ଭାବେ ଅଙ୍କିତ ହୋଇଅଛି ।

ଏଠାରେ ଥିବା ଶିଳାଲେଖରୁ ଜଣାଯାଏ ଯେ ଏହି ଗୁମ୍ଫାଗୁଡ଼ିକ ଐର ମହାରାଜ ମହାମେଘବାହନ କଦପ ବା କୁଦେପଙ୍କ ଦ୍ୱାରା ନିର୍ମିତ ହୋଇଥିଲା । (୧) ସେ ନିଶ୍ଚୟ ଖାରବେଳଙ୍କ ବଂଶଧର ଥିଲେ ।

ପର୍ଯ୍ୟଟକ ମଧ୍ୟ ଏହି ଗୁମ୍ଫାକୁ ପାତାଳପୁରୀ ନାମ ଦେଇଛନ୍ତି । ମଞ୍ଚପୁରୀ ବା ପାତାଳପୁରୀର ଊର୍ଦ୍ଧ୍ୱ ଦେଶରେ ଥିବା ଉପାନ୍ତରେ ସ୍ୱର୍ଗପୁରୀ ଗୁମ୍ଫା ନିର୍ମିତ ହୋଇଛି । ଶିଳ୍ପ ଏବଂ ପର୍ଯ୍ୟଟକଙ୍କ ଅନୁଯାୟୀ ଏହାକୁ ବୈକୁଣ୍ଠପୁରୀ ମଧ୍ୟ କୁହାଯାଇ ପାରେ । ଏହାର ତିନିଟି ପ୍ରକୋଷ୍ଠ (୨) ସମ୍ମୁଖରେ ଏକ ବାରଣ୍ଡା ଅଛି । ଦକ୍ଷିଣ ପାର୍ଶ୍ୱରେ ଗୋଟିଏ ଶ୍ରେଷ୍ଠ ପ୍ରକୋଷ୍ଠ ମଧ୍ୟ ରହିଛି । ବାରଣ୍ଡାର ଉପର ଛାତ ଅନେକାଂଶରେ ଭାଙ୍ଗି ନଷ୍ଟ ହୋଇ ଗଲାଣି । ତେଣୁ ସ୍ତମ୍ଭ ବା ପ୍ରହରୀର ମୂର୍ତ୍ତି ଆଦି ଯାହା କିଛି ଥିଲା, ତାହା ମଧ୍ୟ ନଷ୍ଟ ହୋଇ ଯାଇଅଛି । ବଡ଼ ପ୍ରକୋଷ୍ଠକୁ ପ୍ରବେଶ କରିବା ପାଇଁ ତିନୋଟି ଦ୍ୱାର ଅଛି । ସେଥିରେ ଥିବା ଶିଳାଲିପିରୁ ଜଣାଯାଏ ଯେ ତାହା କଳିଙ୍ଗର ଜୈନ-ସନ୍ନ୍ୟାସୀ ଏବଂ ଅର୍ହତମାନଙ୍କ ପାଇଁ ରାଜା ଲଲକଙ୍କ ଦୁହିତା ହାଥିସାହସଙ୍କ ପୌତ୍ରୀଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ସେ ଥିଲେ ଖାରବେଳଙ୍କ ଅଗ୍ରମହିଷୀ ।

ଗଣେଶ ଗୁମ୍ଫାର ଉତ୍ତର ପାଖ କାନ୍ଥରେ ଗଣେଶଙ୍କର ଚିତ୍ରମୂର୍ତ୍ତି ଖୋଦିତ ହୋଇଅଛି । ଏହି ଗୁମ୍ଫାର ଦୁଇଟି ପ୍ରକୋଷ୍ଠ ଏବଂ ଏକ ବାରଣ୍ଡା ଅଛି । ଗୁମ୍ଫାକୁ ପ୍ରବେଶ କରିବା ପଥର ଉଭୟ ପାର୍ଶ୍ୱରେ ଦୁଇଟି ହସ୍ତୀମୂର୍ତ୍ତି ନିର୍ମିତ ହୋଇଛି । ହସ୍ତୀଗୁଡ଼ିକ ପଦ୍ମମୃଣାଳ ଧରି ପ୍ରସ୍ଫୁଟିତ ପଦ୍ମ ଉପରେ ଛିଡ଼ା ହୋଇଛନ୍ତି । ବାରଣ୍ଡା ଛାତକୁ ଟେକି ଧରିବା ପାଇଁ ଯେଉଁ ସ୍ତମ୍ଭଗୁଡ଼ିକ ଥିଲା, ସେଥିରୁ ଅନେକ ଭାଙ୍ଗି ଯାଇଛି । ବାମ ପାର୍ଶ୍ୱର ସ୍ତମ୍ଭରେ ୪½ ଫୁଟ ଉଚ୍ଚ ଏକ ପ୍ରହରୀର ମୂର୍ତ୍ତି ଖୋଦିତ ହୋଇଅଛି । ପ୍ରହରୀପାଦଦେଶ ବସ୍ତ୍ରାଚ୍ଛାଦିତ ନୁହେଁ । ଦକ୍ଷିଣ ହସ୍ତରେ ପ୍ରହରୀ ଗୋଟିଏ ବର୍ଚ୍ଛା ଧରି ଛିଡ଼ା ହୋଇଛି । ତାର ମସ୍ତକ ଉପରେ ଗୋଟିଏ ବୃକ୍ଷର ମୂର୍ତ୍ତି ଅଛି । ଗୁମ୍ଫାର ଦୁଇ ପ୍ରକୋଷ୍ଠକୁ ଅଲଗା କରିବା ପାଇଁ ମଧ୍ୟଭାଗରେ ପ୍ରାଚୀର ଅଛି । ପ୍ରତ୍ୟେକ ପ୍ରକୋଷ୍ଠର ଦୁଇଟି ଲେଖାଏଁ ପ୍ରବେଶଦ୍ୱାର । ଦ୍ୱାର-

(୧) ଐରସ ମହାରାଜସ କଲିଙ୍ଗାଧିପତିନୋ ମହାମେଘବାହନସ କଦେପ ସିରିନୋ ଲେଣଂ ।

(୨) ୧୧½ ଫୁଟ ଦୀର୍ଘ, ୭½ ଫୁଟ ପ୍ରସ୍ଥ ଏବଂ ୩½ ଉଚ୍ଚ ।

ମାନଙ୍କର ଉପର ଭାଗରେ ରେଲିଂମାନ ଅଛି । ରାଣୀଗୁମ୍ଫାରେ ଯେପରି ଚିତ୍ରମାନ ଖୋଦିତ ହୋଇଛି, ଏଠାରେ ମଧ୍ୟ ଏହି ରେଲିଂମାନଙ୍କରେ ଅତି ସୁନ୍ଦର ଦୃଶ୍ୟ ଓ ଚିତ୍ର ଅଙ୍କନ କରାଯାଇଛି ।

ପ୍ରଥମ ଦୃଶ୍ୟରେ ଆମେ ଗୋଟିଏ ବୃକ୍ଷ ଏବଂ ଜଣେ ପୁରୁଷ ଶଯ୍ୟା ଉପରେ ଶୋଇଥିବାର ଦେଖୁଁ । ନିକଟରେ ଜଣେ ସ୍ତ୍ରୀ ପୁରୁଷର ପାଦମର୍ଦ୍ଦନ କରୁଥିବା ଅବସ୍ଥାରେ ପ୍ରଦର୍ଶିତ ହୋଇଛି । ଦ୍ୱିତୀୟ ଦୃଶ୍ୟ କିନ୍ତୁ ଭିନ୍ନ ପ୍ରକାରର ।

ସେଠାରେ ଯୁଦ୍ଧର ବର୍ଣ୍ଣନା ହୋଇଛି । ଶେଷ ଦୃଶ୍ୟରେ ପୁଣି ଜଣେ ପୁରୁଷ, ଜଣେ ସ୍ତ୍ରୀ ସହିତ କଥାବାର୍ତ୍ତା କରୁଥିବାର ଦେଖୁଁ । ଏହି ଉପାଖ୍ୟାନ ରାଣୀଗୁମ୍ଫାର ଉପର ଦୃଶ୍ୟ ସହିତ ପ୍ରାୟ ସମାନ । ଏଠାରେ ବୋଧହୁଏ କୌଣସି ଅପହୃତା ନାରୀକୁ ଉଦ୍ଧାର କରିବା ଘଟଣା ପ୍ରଦର୍ଶିତ ହୋଇଛି । ସୈନିକମାନେ ବୈଦେଶିକ ପରି ଦେଖାଯାନ୍ତି । ଭକ୍ତଦେବ ସୂରିଙ୍କର ପାର୍ଶ୍ୱନାଥ ଚରିତରେ ବର୍ଣ୍ଣିତ ହୋଇଛି ଯେ ତୀର୍ଥଙ୍କର ପାର୍ଶ୍ୱନାଥ କୌଣସି ରାଜକନ୍ୟାକୁ କଳିଙ୍ଗର ଯବନ-ରାଜା ହସ୍ତରୁ ଉଦ୍ଧାର କରିଥିଲେ । ଏହି ଗଳ୍ପର ଯଦି କିଛି ଐତିହାସିକ ସତ୍ୟତା ଥାଏ ତେବେ ତାହା ନିଶ୍ଚୟ ଗଣେଶ ଗୁମ୍ଫାର କଠିନ ପ୍ରସ୍ତର ଉପରେ ରୂପ-ରେଖ ପାଇଥିବ; କାରଣ ଗଣେଶ ଗୁମ୍ଫା ଜୈନମାନଙ୍କର କୀର୍ତ୍ତି ହୋଇଥିବା ଯୋଗୁଁ ଜୈନଧର୍ମର ଯେ କୌଣସି ତୀର୍ଥଙ୍କରଙ୍କ ଜୀବନ ସେଠାରେ ଚିତ୍ର ଆକାରରେ ଉପାସକମାନଙ୍କୁ ପ୍ରଦର୍ଶିତ ହେବା ଅତି ସ୍ୱାଭାବିକ ।



ଉଦୟଗିରିର ମଧ୍ୟଭାଗରେ, ଧ୍ୟାନଘର ଗୁମ୍ଫା, ହାତୀ ଗୁମ୍ଫା, ବ୍ୟାଘ୍ର ଗୁମ୍ଫା ଓ ଜମେଶ୍ୱର ଗୁମ୍ଫା ବିଦ୍ୟମାନ । ପାହାଡ଼ର ପୃଷ୍ଠଭାଗକୁ କାଟି ସମତଳ କରାଯାଇଛି । ସମତଳ ସ୍ଥାନର କେନ୍ଦ୍ରସ୍ଥଳରେ ଗୋଟିଏ କ୍ଷୁଦ୍ର ମଣ୍ଡପ ଅଛି । ଏହି ମଣ୍ଡପଟି ଅନେକ ସମୟରେ ପ୍ରେତ ମନ୍ଦିରର ଭଗ୍ନାବଶେଷ ପରି ମନେହୁଏ । ଧ୍ୟାନଘର ଗୁମ୍ଫା ୧୯½ ଫୁଟ ଲମ୍ବ ଏବଂ ସେଥିପାଇଁ ତିନୋଟି ପ୍ରବେଶଦ୍ୱାର ଅଛି । ବାରଣ୍ଡାରେ ବସିବା ପାଇଁ ବନ୍ଦୋବସ୍ତ କରାଯାଇଛି । ବାମ ପାର୍ଶ୍ୱରେ ଥିବା ସ୍ତମ୍ଭଦେହରେ ସୈନିକର ମୂର୍ତ୍ତି ଖୋଦିତ ହୋଇଅଛି । ସୈନିକର ମସ୍ତକର ଉପରେ ଏକ ହସ୍ତୀର ମୂର୍ତ୍ତି ମଧ୍ୟ ଦେଖାଯାଏ ।

ହାତୀ ଗୁମ୍ଫାର ଗଠନ ଅତି ଅସାଧାରଣ । ଏହାର କୌଣସି ନିର୍ଦ୍ଦିଷ୍ଟ ଆକାର ନାହିଁ । ସମ୍ମୁଖ ଭାଗ ସମ୍ପୂର୍ଣ୍ଣ ଉନ୍ମୁକ୍ତ । ପ୍ରଥମେ ବୋଧହୁଏ ହାତୀ ଗୁମ୍ଫାର ଗୋଟିଏ ପ୍ରକୋଷ୍ଠ ଏବଂ ସ୍ୱତନ୍ତ୍ର ବାରଣ୍ଡା ମଧ୍ୟ ଥିଲା । ଗୁମ୍ଫାର ଅନ୍ତର୍ଦ୍ଦେଶ ୫୭ ଫୁଟ ଲମ୍ବ ଏବଂ ୨୮ ଫୁଟ ଓସାର । ଦ୍ୱାରଦେଶର ଉଚ୍ଚତା ୧୧½ ଫୁଟ । ଏଥିରେ ଖାରବେଳଙ୍କର ବିଖ୍ୟାତ ଶିଳାଲିପି ଅଛି । ଏହି ଶିଳାଲିପିରେ ତାଙ୍କର ଜୀବନ ଚରିତ ଲିପିବଦ୍ଧ ହୋଇଛି । ସମସ୍ତ ସମୟରେ ଏହି ଶିଳାଲିପି ଅସମ୍ପୂର୍ଣ୍ଣ ପରି ମନେହୁଏ ।

ହାତୀଗୁମ୍ଫାର ପଶ୍ଚିମ ଦିଗକୁ ଆଠଟି ଗୁମ୍ଫା ଅଛି । ଏହାର ଠିକ୍ ଅପରପାର୍ଶ୍ୱରେ ସର୍ପଗୁମ୍ଫା ଅବସ୍ଥିତ । ଏହି ଗୁମ୍ଫା ସର୍ପର ଫଣାପରି ଦେଖାଯାଏ । ସର୍ପଫଣା ନିମ୍ନ

ତୀର୍ଥଙ୍କର ପାର୍ଶ୍ୱନାଥଙ୍କର ପ୍ରତୀକ । ଗୁମ୍ଫାଟି ଅତି ଛୋଟ; ଏହାର ଉଚ୍ଚତା କେବଳ ତିନି ଫୁଟ । ଯେଉଁଠାରେ ଦୁଇଟି ଶିଳାଲେଖ ଅଛି । ସେଗୁଡ଼ିକ ନିର୍ଭୁଲ ପାଠ କରିବା ସମ୍ଭବ ନୁହେଁ । କାରଣ ଅନେକ ଅକ୍ଷର ନଷ୍ଟ ହୋଇଯାଇଛି । ସର୍ପଗୁମ୍ଫାର ଉତ୍ତର ପଶ୍ଚିମ ଦିଗକୁ ବ୍ୟାଘ୍ର ଗୁମ୍ଫା ଅବସ୍ଥିତ । ଏହାର ଅଗ୍ରଭାଗ ଶାର୍ଦ୍ଦୁଳର ମୁଖାକୃତି ପରି ଦେଖାଯାଏ । ବ୍ୟାଘ୍ର ଗୁମ୍ଫା ମାତ୍ର ୩', ୩ ଫୁଟ ଉଚ୍ଚ ଏବଂ ଦ୍ୱାରଦେଶରେ ଥିବା ଶିଳାଲିପିରୁ ଜଣାଯାଏ ଯେ ତାହା ଜନୈକ ଋଷି ସୁଭୂତିଙ୍କର ଗୁମ୍ଫା ଥିଲା ।

ଜମ୍ଭେଶ୍ୱର ଗୁମ୍ଫାର ଉଚ୍ଚତା ତିନି ଫୁଟ ଆଠ ଇଞ୍ଚ । ଏହି ଗୁମ୍ଫା ପାଇଁ ଦୁଇଟି ଦ୍ୱାର ଅଛି । ଦ୍ୱାର ଉପରେ ବ୍ରାହ୍ମୀ ଲିପିର ଶିଳାଲେଖ ଅଛି । ସେଥିରୁ ଜଣାଯାଏ ଯେ ଏହା ମହାମଦରନାକସ୍ ଓ ତାଙ୍କ ସ୍ତ୍ରୀଙ୍କ ପାଇଁ ନିର୍ମିତ ହୋଇଥିଲା ।

ବ୍ୟାଘ୍ର ଗୁମ୍ଫାର ଅଳ୍ପ ଦୂରରେ ଏବଂ ଉଦୟଗିରିର ପଶ୍ଚିମପୃଷ୍ଠ ଉଚ୍ଚରେ ଯେଉଁ ତିନୋଟି ଗୁମ୍ଫା ଅଛି, ସେଗୁଡ଼ିକ ହରିଦାସ ଗୁମ୍ଫା, ଜଗନ୍ନାଥ ଗୁମ୍ଫା ଓ ରୋଷେଇ ଗୁମ୍ଫା ନାମରେ ପରିଚିତ । ହରିଦାସ ଗୁମ୍ଫାର ଏକମାତ୍ର ପ୍ରକୋଷ୍ଠ ପ୍ରାୟ କୋଡ଼ିଏ ଫୁଟ ଲମ୍ବ । ତନ୍ତୁ ଏଥିପାଇଁ ତିନୋଟି ପ୍ରବେଶ ଦ୍ୱାର ଅଛି । ଏଥିରେ ଥିବା ଶିଳାଲିପିରୁ ଜଣାଯାଏ ଯେ ଏହା କୋଠା-ଜପୁର କ୍ଷୁଦ୍ରକର୍ମଙ୍କ ପାଇଁ ନିର୍ମିତ ହୋଇଥିଲା । ଜଗନ୍ନାଥ ଗୁମ୍ଫାର ଅଳିନ୍ଦରେ ଜଗନ୍ନାଥଙ୍କ ଚିତ୍ର ଉତ୍କୀର୍ଣ୍ଣ ହୋଇଥିବା ଯୋଗୁଁ ତାଙ୍କର ନାମାନୁସାରେ ଗୁମ୍ଫାର ନାମକରଣ ହୋଇଅଛି । ଏହାର ବିସ୍ତୀର୍ଣ୍ଣ ପ୍ରକୋଷ୍ଠ ସମ୍ମୁଖରେ ବାରଣ୍ଡା ଓ ତିନୋଟି ଦ୍ୱାର ଅଛି । ଦ୍ୱାରଗୁଡ଼ିକ କୌଣସି ଚିତ୍ରଦ୍ୱାରା ଅଳଙ୍କୃତ ନୁହେଁ । ଏହା ଅତି ସରଳ ଏବଂ ଅନାଡ଼ମ୍ବର । ଏହା ପାର୍ଶ୍ୱରେ ଥିବା ଗୁମ୍ଫାକୁ ରୋଷେଇ ଗୁମ୍ଫା କୁହାଯାଏ । ଏହାର କେବଳ ଗୋଟିଏ ମାତ୍ର ପ୍ରବେଶ ଦ୍ୱାର ଅଛି । ଖଣ୍ଡଗିରିର ଗୁମ୍ଫାଗୁଡ଼ିକ ଉତ୍ତର ଦିଗରୁ ଆରମ୍ଭ ହୋଇଛି ।

ଉତ୍ତରରେ ତାତ୍ୱାଗୁମ୍ଫା ଅବସ୍ଥିତ । ଗୁମ୍ଫାର ଗୋଟିଏ ସ୍ଥାନରେ ତାତ୍ୱା ପକ୍ଷୀର ଚିତ୍ର ଖୋଦିତ ହୋଇଥିବା ଯୋଗୁ ଏହାର ନାମ ହୋଇଛି ତାତ୍ୱାଗୁମ୍ଫା । ଏହାର ପ୍ରକୋଷ୍ଠ ଷୋଳଫୁଟ ଚାରି ଇଞ୍ଚ ଲମ୍ବ ଏବଂ ପାଞ୍ଚଫୁଟ ନଅ ଇଞ୍ଚ ଉଚ୍ଚ । ପ୍ରବେଶ କରିବାପାଇଁ ତିନୋଟି ଦ୍ୱାର ଅଛି । କାନ୍ଥ ଦେହରେ ଏକ ଶିଳାଲିପି ଲକ୍ଷିତ ହୋଇଛି । ଏହାର ଅଗ୍ର ଦେଶରେ ଆଉ ଏକ ଲିପି ପାଞ୍ଚ ଧାଡ଼ିରେ ଲେଖା ଯାଇଛି । ତାତ୍ୱା-୧ର ଛଅ ଫୁଟ ତଳେ ଯେଉଁ ଗୁମ୍ଫା ଅଛି ସେଥିରେ ମଧ୍ୟ 'ତାତ୍ୱା' ପକ୍ଷୀର ଚିତ୍ର ଅଛି । ତେଣୁ ଏହାକୁ ମଧ୍ୟ ତାତ୍ୱାଗୁମ୍ଫା-୨ କୁହାଯାଏ । ବାରଣ୍ଡାର ଦୁଇ ପ୍ରାନ୍ତରେ ସୈନିକର ପ୍ରତିମୂର୍ତ୍ତି ଅଛି । ପ୍ରକୋଷ୍ଠଟି ଦଶ ଫୁଟ ଆଠ ଇଞ୍ଚ ଲମ୍ବ ଏବଂ ଛଅଫୁଟ ଛଅ ଇଞ୍ଚ ଚଉଡ଼ା । ଏଥିପାଇଁ ଦୁଇଟି ପ୍ରବେଶ ଦ୍ୱାର ଅଛି । ଏହି ଦ୍ୱାରମାନଙ୍କର ମଧ୍ୟଭାଗରେ ଯେଉଁ ଶିଳାଲେଖ ଅଛି, ସେଥିରୁ ଜଣାଯାଏ ଯେ ପ୍ରୋକ୍ତ ଗୁମ୍ଫାରେ କୁସୁମ ନାମକ ଜଣେ ସେବକ ବାସ କରୁଥିଲେ ।

ତାତ୍ୱା-୧ର ଠିକ୍ ତଳରେ ଖଣ୍ଡଗିରି ଗୁମ୍ଫା ଅବସ୍ଥିତ । ଖଣ୍ଡଗିରିର ପାଦଦେଶରୁ ଉପରକୁ ଉଠିଲେ ପ୍ରଥମେ

ଖଣ୍ଡଗିରି ଗୁମ୍ଫାରେ ଉପଗତ ହେବାକୁ ପଡ଼େ । ଗୁମ୍ଫାର ତଳ ମହଲାର ପ୍ରକୋଷ୍ଠର ଉଚ୍ଚତା ଛଅଫୁଟ ଦୁଇଇଞ୍ଚ ଏବଂ ଉପର ମହଲାର ପ୍ରକୋଷ୍ଠର ଉଚ୍ଚତା ଚାରିଫୁଟ ଆଠ ଇଞ୍ଚ ମାତ୍ର । ଏହା ବ୍ୟତୀତ ତଳ ମହଲାରେ ଗୋଟିଏ ଛୋଟ ଭଙ୍ଗା ଗୁମ୍ଫା ଅଛି । ଉପର ମହଲାର ପ୍ରକୋଷ୍ଠ ନିକଟରେ ଅତି ଛୋଟ କୋଠରି ଗୋଟିଏ ଥିବାର ଦେଖାଯାଏ । ଏହି କ୍ଷୁଦ୍ର କୋଠରିରେ ପତିତପାବନଙ୍କର ମୂର୍ତ୍ତି ମଧ୍ୟ ଉତ୍କୀର୍ଣ୍ଣ ହୋଇଛି । ଖଣ୍ଡଗିରି ଗୁମ୍ଫାର ଦକ୍ଷିଣରେ ଧ୍ୟାନଘର ନାମରେ ଅନ୍ୟ ଏକ ଗୁମ୍ଫା ଅଛି । ଏହି ଗୁମ୍ଫାରେ ଥିବା ଶିଳାଲିପି ଆଜି ପର୍ଯ୍ୟନ୍ତ ପଠିତ ହୋଇ ପାରି ନାହିଁ । ତାହା ଖ୍ରୀଷ୍ଟାବ୍ଦ ୮ମ କିମ୍ବା ୯ମ ଶତାବ୍ଦୀର ବୋଲି ଅନୁମାନ କରାଯାଏ ।

ଏହାର ଦକ୍ଷିଣ ଦିଗକୁ ନବମୁନି ଗୁମ୍ଫା, ବାରଭୁଜୀ ଗୁମ୍ଫା, ତ୍ରିଶୂଳ ଗୁମ୍ଫାମାନ ଅବସ୍ଥିତ ।

ନବମୁନି ଗୁମ୍ଫାର ଦୁଇଟି ମାତ୍ର ପ୍ରକୋଷ୍ଠ ଅଛି । ଏହି ଗୁମ୍ଫାରେ ଖ୍ରୀଷ୍ଟାବ୍ଦ ୧୦ମ ଶତାବ୍ଦୀର ଏକ ଶିଳାଲେଖ ଅଛି । ଏଥିରେ ଜୈନ ମୁନି ଶୁଭଚନ୍ଦ୍ରଙ୍କର ନାମୋଲ୍ଲେଖ ଅଛି । ଗୁମ୍ଫାର ଦକ୍ଷିଣ ପାର୍ଶ୍ୱସ୍ଥ ପ୍ରକୋଷ୍ଠରେ ଚତୁର୍ବିଂଶ ଜୈନ ତୀର୍ଥଙ୍କରଙ୍କର ପ୍ରତିମୂର୍ତ୍ତି ଖୋଦିତ ହୋଇଛି । ଏହାହିଁ ନବମୁନି ଗୁମ୍ଫାର ସର୍ବପ୍ରଧାନ ବୈଶିଷ୍ଟ୍ୟ ।

ଜୈନଧର୍ମରେ ଆମେ ସାଧାରଣତଃ ଯେଉଁ ଚତୁର୍ବିଂଶ ତୀର୍ଥଙ୍କରଙ୍କର ସନ୍ଧାନ ପାଉଁ ସେମାନଙ୍କୁ ନବମୁନି ଗୁମ୍ଫାରେ ରୂପଦାନ କରାଯାଇଛି । ସମସ୍ତଙ୍କର ଐତିହାସିକ ସ୍ଥିତି ପ୍ରମାଣ କରିବା ସମ୍ଭବପର ନୁହେଁ । ସେମାନଙ୍କର ଜୀବନୀ ଅନେକ ସମୟରେ କାଳ୍ପନିକ ଓ ରହସ୍ୟଜନକ ବୋଲି ଜୈନଶାସ୍ତ୍ରମାନଙ୍କରୁ ପ୍ରତୀତ ହୁଏ । ବହୁ ଯୁଗ ଧରି ଏହି ତୀର୍ଥଙ୍କରମାନେ ସଂସାରରେ ଜନ୍ମ ଲଭି ଜୈନଧର୍ମର ଅହିଂସାବାଣୀ ପ୍ରଚାର କରୁଥିଲେ । ଏହି ଚବିଶ ଜଣଙ୍କର ଜୀବନ କାଳ ଏକତ୍ର ମିଶ୍ରିତ ହେଲେ, ତାହା ଭାରତର ପ୍ରାଗଐତିହାସିକ ଓ ଐତିହାସିକ ଯୁଗଠାରୁ ମଧ୍ୟ ବଳିଯିବ । ତେଣୁ କେତେକ ତୀର୍ଥଙ୍କର ପରସ୍ପର ସମସାମୟିକ ଥିଲେ ବୋଲି କେତେକ ଧାରଣା କରି ପାରନ୍ତି ।

ଜୈନଧର୍ମରେ ଏହି ତୀର୍ଥଙ୍କରମାନେ ସର୍ବଥା ପୂଜନୀୟ । ଜୈନ ତୀର୍ଥଯାତ୍ରୀମାନଙ୍କର ଯେଉଁ ଚବିଶ ତୀର୍ଥଙ୍କରଙ୍କର ଉପସ୍ଥାପନା ହୋଇଛି ସେମାନଙ୍କୁ ଏକ ପ୍ରକାର ସମ୍ମାନ ପ୍ରଦର୍ଶନ କରାଯାଏ; କିନ୍ତୁ ମନ୍ଦିରରେ ସେମାନଙ୍କ ମଧ୍ୟରୁ ଜଣଙ୍କୁ 'ମୂଳନାୟକ' ବୋଲି ସ୍ୱୀକାର କରାଯାଇଥାଏ । ଅନ୍ୟ ଜିନମାନଙ୍କଦ୍ୱାରା ସେହି ମୂଳନାୟକ ପରିବେଷ୍ଟିତ ହୋଇ ପୂଜା ପାଆନ୍ତି । ସେହି ମୂଳନାୟକ ହିଁ ଉକ୍ତ ମନ୍ଦିରର ପ୍ରଧାନ ଦେବତା । ମନ୍ଦିରର ଅଧିଷ୍ଠିତ ଜିନଙ୍କୁ ଉପାସନା ଦେବାହିଁ ଜୈନଧର୍ମର ପରଂପରାଗତ ନ୍ୟାୟ । ନବମୁନି ଗୁମ୍ଫାରେ ପାର୍ଶ୍ୱନାଥଙ୍କୁ ମୂଳନାୟକ ରୂପେ ପୂଜା କରାଯାଏ ।

ଏହି ଚତୁର୍ବିଂଶ ଜିନ ସେମାନଙ୍କର ମାନସିକ ବିକାର ଓ ରିପୁମାନଙ୍କୁ ଜୟ କରିଥିବାରୁ ଜୈନଧର୍ମାବଲମ୍ବୀ-

ମାନଙ୍କର ନମସ୍ୟ ହୋଇଛନ୍ତି । ସେମାନେ ସନ୍ନ୍ୟାସବୃତ୍ତିକୁ ଶାନ୍ତିମୟ ଜୀବନର ପ୍ରଧାନ ପଥ ବୋଲି ଗ୍ରହଣ କରିଥିଲେ । ଜିନମାନେ ପଦ୍ମାସନ ବା କାୟୋତ୍ସର୍ଗ ମୁଦ୍ରାରେ ସ୍ଥିତ ହୋଇ ଶିବଙ୍କର ଦକ୍ଷିଣ ମୂର୍ତ୍ତି ସଦୃଶ ଦୃଷ୍ଟ ହୁଅନ୍ତି । ଏହି ସାଦୃଶ୍ୟ ଅହେତୁକ ନୁହେଁ । ବରଂ ଏହି ସାଦୃଶ୍ୟକୁ ଦେଖି କରି ଆମେ କହି ପାରିବା ଯେ ଜିନଙ୍କର ଯୌଗିକ ଆଲମ୍ବନକୁ ଅବଲମ୍ବନ କରି ଶିବ ପ୍ରତିମୂର୍ତ୍ତି ଗଠିତ ହୋଇଛି ।

ଏହି ଜିନମାନଙ୍କର ଭିନ୍ନ ଭିନ୍ନ ଚିହ୍ନ ବା ଲାଞ୍ଛନ ଅଛି । ପ୍ରତ୍ୟେକଙ୍କର ଯକ୍ଷ ଓ ଯକ୍ଷିଣୀ ବା ଶାସନ ଦେବତା ଏବଂ କେବଳ ବୃକ୍ଷ ମଧ୍ୟ ଭିନ୍ନ । କେତେକ ଜିନ ସେମାନଙ୍କର ବଂଶର ପ୍ରତୀକକୁ ନିଜ ନିଜର ଲାଞ୍ଛନ ରୂପେ ଗ୍ରହଣ କରିଥିବାର ଅନୁମିତ ହୁଏ । ଦୃଷ୍ଟାନ୍ତ ସ୍ୱରୂପ— ଅଯୋଧ୍ୟାର ଇକ୍ଷ୍ୱାକୁ ବଂଶ ବୃଷଭକୁ ପ୍ରତୀକ ରୂପେ ବ୍ୟବହାର କରୁଥିଲେ ।

ଋଷଭନାଥ ଏହି ଇକ୍ଷ୍ୱାକୁ ବଂଶରେ ଜନ୍ମଗ୍ରହଣ କରିଥିବା ହେତୁ 'ବୃଷଭ' ତାଙ୍କର ଲାଞ୍ଛନ ହେଲା । ସେହିପରି ମୁନିସୁବ୍ରତ ଓ ନେମିନାଥଙ୍କର ଲାଞ୍ଛନ ଯଥାକ୍ରମେ କୂର୍ମ ଓ ଶଙ୍ଖ ।

ପ୍ରଥମ ତୀର୍ଥଙ୍କର ଏବଂ ଆଦିଜିନ ଋଷଭନାଥଙ୍କ ସମ୍ପର୍କରେ ଏତେ କିମ୍ବଦନ୍ତୀ ଓ ଆଖ୍ୟାୟିକା ଅଛି ଯେ ତନ୍ମଧ୍ୟରୁ ସତ୍ୟାସତ୍ୟ ଜାଣିବାର ଉପାୟ ନାହିଁ । ଜୈନ ଇତିହାସରେ ଏହି ଋଷଭନାଥ ବା ବୃଷଭନାଥଙ୍କୁ ହିଁ ଜୈନଧର୍ମର ପ୍ରତିଷ୍ଠାତା ବୋଲି ବର୍ଣ୍ଣନା କରାଯାଇଛି । ଦିଗମ୍ବରମାନଙ୍କର ଆଦି ପୁରାଣ ଓ ହେମଚନ୍ଦ୍ରଙ୍କ ପ୍ରଣୀତ 'ତ୍ରିଷଷ୍ଟିଶଳାକା ପୁରୁଷଚରିତ'ରେ ଏହି ବର୍ଣ୍ଣନା ଅଛି । ଭାଗବତ ପୁରାଣ ଓ ଅଗ୍ନି ପୁରାଣ ଆଦିରେ ଋଷଭନାଥଙ୍କୁ ବିଷ୍ଣୁଙ୍କର ଅବତାର ବୋଲି କୁହାଯାଇଛି । କିନ୍ତୁ ଭୁବନେଶ୍ୱରରେ ଦେଖିବାକୁ ଗଲେ ଶିବଙ୍କ ସଙ୍ଗେ ହିଁ ଋଷଭନାଥଙ୍କର କେତେକ ସାଦୃଶ୍ୟ ଥିବାର ଜଣାଯାଏ । କିନ୍ତୁ ଋଷଭନାଥ ଯେ ଜୈନଧର୍ମର ପ୍ରବର୍ତ୍ତକ, ଏଥିରେ ମତଭେଦର ଅବକାଶ ନାହିଁ । ତେବେ ବୃଷଭକୁ ତାଙ୍କର ଲାଞ୍ଛନ କରି ଏବଂ ଗୋମୁଖ ଯକ୍ଷକୁ ବୃଷଭର ମୁଖାକୃତି କରି ଓ ଯକ୍ଷିଣୀ ଚକ୍ରେଶ୍ୱରୀଙ୍କୁ ବୈଷ୍ଣବୀ ସଦୃଶ ଦର୍ଶାଇବାର ଚେଷ୍ଟା ପଛରେ ଶିଳ୍ପୀ ବୋଧହୁଏ କଳ୍ପନା କରିଛି ଯେ ଋଷଭନାଥ ଶିବ ଓ ବିଷ୍ଣୁ ଅପେକ୍ଷା ବଡ଼ । ଋଷଭନାଥଙ୍କର ପ୍ରତିମା ସମ୍ପର୍କରେ ଜୈନ ପୁରାଣ ବା ଜୈନ ଶିଳ୍ପଶାସ୍ତ୍ରମାନଙ୍କରେ ବିଶେଷ କିଛି ବର୍ଣ୍ଣନା ନାହିଁ । ତେବେ "ପ୍ରବଚନ ସାରୋଦ୍ଧାର"ରୁ ଜଣାଯାଏ ଯେ ବୃଷଭହିଁ ପ୍ରଥମ ଜିନଙ୍କର ପ୍ରତୀକ ଥିଲା । ଧର୍ମଚକ୍ର ତାଙ୍କର ଅନ୍ୟତମ ପ୍ରତୀକ । ସେ ନ୍ୟଗ୍ରୋଧ ବା ବଟବୃକ୍ଷ ମୂଳରେ କୈବଲ୍ୟ ଲାଭ କରିଥିଲେ । ତାଙ୍କ ପ୍ରତିମୂର୍ତ୍ତିର ଉଭୟ ପାର୍ଶ୍ୱରେ ଯଥାକ୍ରମେ ଭରତ ଓ ବାହୁବଳୀ ନାମରେ ଦୁଇଜଣ ପୁତ୍ର ଥାନ୍ତି ।

ଦ୍ୱିତୀୟ ତୀର୍ଥଙ୍କର ଅଜିତନାଥଙ୍କର ପ୍ରତୀକ 'ହସ୍ତୀ' । ତାଙ୍କ ନିକଟରେ ମହାଯକ୍ଷ ଓ ଅଜିତବାଳା ନାମରେ ଯକ୍ଷ ଓ ଯକ୍ଷିଣୀ ସର୍ବଦା ଉପସ୍ଥିତ ଥାନ୍ତି । ସପ୍ତପର୍ଣ୍ଣ ବୃକ୍ଷ ମୂଳରେ ଅଜିତନାଥ ଜ୍ଞାନଲାଭ କରିଥିଲେ । ତାଙ୍କୁ ଖଡ୍ଗାସନରେ ଧ୍ୟାନରତ ଥିବାର ଦେଖାଯାଏ ।

ସଗର ଚକ୍ରୀ ତାଙ୍କର ସମସାମୟିକ । ସେ ଅଜେୟ ଓ ବିଜୟୀ ବୋଲି "ଅଜିତ-ନାଥ' ରୂପେ ଅଭିହିତ ହୁଅନ୍ତି । ସେ ଜନ୍ମ ହେବା ମାତ୍ରେ ତାଙ୍କ ପିତାଙ୍କର ଶତ୍ରୁମାନେ ପରାଜୟ ସ୍ୱୀକାର କରିଥିଲେ ।

ତୃତୀୟ ତୀର୍ଥଙ୍କର ସମ୍ଭବନାଥଙ୍କର ପ୍ରତିମୂର୍ତ୍ତି ଗଢ଼ିବା ପାଇଁ ଜୈନ ଶାସ୍ତ୍ରରେ ଯଥେଷ୍ଟ ନିର୍ଦ୍ଦେଶ ଅଛି । ତାଙ୍କ ସହିତ ଆମେ ଅଶ୍ୱର ଚିହ୍ନ ଦେଖିବାକୁ ପାଉଁ, କାରଣ ଅଶ୍ୱହିଁ ତାଙ୍କର ଲାଞ୍ଛନ । ତାଙ୍କର ଯକ୍ଷଙ୍କୁ ତ୍ରିମୁଖ ଓ ଯକ୍ଷିଣୀଙ୍କୁ ଦୁରିତାରି ଦେବୀ ବୋଲି କୁହାଯାଏ, ଶାଳବୃକ୍ଷ ମୂଳରେ ସମ୍ଭବନାଥ ଜ୍ଞାନଲାଭ କରିଥିଲେ ବୋଲି ଉତ୍ତରପୁରାଣରେ ଉଲ୍ଲେଖ ଅଛି । ସତ୍ୟବୀର୍ଯ୍ୟ ତାଙ୍କର ସମସାମୟିକ ।

ଅଭିନନ୍ଦନ ନାଥ ଚତୁର୍ଥ ତୀର୍ଥଙ୍କର । ତାଙ୍କର ଯକ୍ଷର ନାମ ଈଶ୍ୱର ଏବଂ ଯକ୍ଷିଣୀର ନାମ କାଳୀ । ମର୍କଟ ତାଙ୍କର ପ୍ରତୀକ । ଭାରତବର୍ଷରେ ଅଭିନନ୍ଦନ-ନାଥଙ୍କର ମୂର୍ତ୍ତି କ୍ୱଚିତ୍ ଦେଖିବାକୁ ମିଳେ । ସେ ହଜାର ଭିକ୍ଷୁଙ୍କ ସହ ମୋକ୍ଷ-ଲାଭ କରିଥିଲେ ।

ପଞ୍ଚମ ତୀର୍ଥଙ୍କର ସୁମତିନାଥଙ୍କର ପ୍ରତୀକ କ୍ରୌଞ୍ଚ ଏବଂ କେବଳବୃକ୍ଷ ପ୍ରିୟଙ୍ଗୁ । ଯକ୍ଷ ଓ ଯକ୍ଷିଣୀ ଯଥାକ୍ରମେ ତୁମ୍ବୁରୁ ଏବଂ ମହାକାଳୀ । ମିତ୍ରବୀର୍ଯ୍ୟ ତାଙ୍କର ସମସାମୟିକ ।

ପଦ୍ମପ୍ରଭଙ୍କର ଲାଞ୍ଛନ ରକ୍ତପଦ୍ମ । ସେ ଛତ୍ରାଭ ବୃକ୍ଷ ମୂଳରେ କେବଳୀତ୍ୱ ଲାଭ କରିଥିଲେ । କୁସୁମ ଓ ଶ୍ୟାମା ଯଥାକ୍ରମେ ତାଙ୍କର ସେବକ ଓ ସେବିକା । ରାଜା ଦମଦ୍ୟୁତ ତାଙ୍କର ସମସାମୟିକ ।

ସ୍ୱସ୍ତିକ ସପ୍ତମ ତୀର୍ଥଙ୍କର ସୁପାର୍ଶ୍ୱ-ନାଥଙ୍କର ପ୍ରତୀକ ଅଟେ । ତାଙ୍କୁ ଆମେ ସର୍ପ ବେଷ୍ଟିତ ହୋଇ ଥିବାର ଦେଖୁଁ । ଏହି ସର୍ପ ସଂଖ୍ୟା ଜୈନ ଶାସ୍ତ୍ରମାନଙ୍କ ଦ୍ୱାରା ୧ ବା ୫ ବା ୯ ବୋଲି ନିର୍ଦ୍ଦିଷ୍ଟ ହୋଇଛି । ଶିରୀଷ ତାଙ୍କର କେବଳ ବୃକ୍ଷ । ମାତଙ୍ଗ ଓ ଶାନ୍ତା ସେବକ ସେବିକା । ରାଜା ଧର୍ମବୀର୍ଯ୍ୟ ସମସାମୟିକ । ସେ ପାଞ୍ଚଶହ ସଙ୍ଗୀଙ୍କ ସହ ମୋକ୍ଷଲାଭ କରିଥିଲେ ।

ଅଷ୍ଟମ ଜିନ ଚନ୍ଦ୍ରପ୍ରଭଙ୍କର ଲାଞ୍ଛନ 'ଚନ୍ଦ୍ର' । ନାଗକେଶର ତାଙ୍କର କେବଳ ବୃକ୍ଷ । ବିଜୟ ଓ ଭୃକୁଟୀ ବା ଜ୍ୱାଳା ମାଳିନୀ ତାଙ୍କର ପାର୍ଶ୍ୱଚର ଏବଂ ଦାନବୀର୍ଯ୍ୟ ସମସାମୟିକ ।

ନବମ ତୀର୍ଥଙ୍କର ସୁବିଧିନାଥଙ୍କୁ ପୁଷ୍ପଦନ୍ତ ମଧ୍ୟ କୁହାଯାଏ । ତାଙ୍କର ଲାଞ୍ଛନ ସମ୍ପର୍କରେ ନାନା ମତଭେଦ ଅଛି । କେତେକ କହନ୍ତି ମକର ଓ ଆଉ କେତେକ କହନ୍ତି କର୍କଟ । ଅଜିତ ଓ ସୁତାରା ସୁବିଧିନାଥଙ୍କର ଯକ୍ଷ ଓ ଯକ୍ଷିଣୀ । ମଘବଶେଖର ତାଙ୍କର ସମସାମୟିକ । କେତେକଙ୍କ ମତରେ ନାଗ ଏବଂ କେତେକଙ୍କ ମତରେ ମଲ୍ଲୀ ତାଙ୍କର କେବଳ ବୃକ୍ଷ । ସେ ସମ୍ମେତ ଶିଖରରେ ମୋକ୍ଷପ୍ରାପ୍ତ ହୋଇଥିଲେ ।

ଶୀତଳନାଥ ମଧ୍ୟ ଅନ୍ୟ ତୀର୍ଥଙ୍କରଙ୍କ ପରି କ୍ଷତ୍ରିୟ କୁଳରେ ଜନ୍ମ ହୋଇଥିଲେ । ପିତାଙ୍କର ନାମ ଥିଲା ଦୃଢ଼ରଥ ଓ ମାତାଙ୍କର ନାମ ସୁନନ୍ଦା । ରାଜା ସିମନ୍ଧର ତାଙ୍କର ସମସାମୟିକ । ବିଲ୍ୱ ବୃକ୍ଷ ମୂଳେ ସେ ଜ୍ଞାନଲାଭ କରିଥିଲେ । ଯକ୍ଷ ଓ ଯକ୍ଷିଣୀର ନାମ ଯଥାକ୍ରମେ ବ୍ରହ୍ମା ଓ

ଅଶୋକା । ଦିଗମ୍ବରମାନେ ଅଶ୍ୱତ୍ଥକୁ ତାଙ୍କର ପ୍ରତୀକ ରୂପେ ଗ୍ରହଣ କରନ୍ତି ।

କିନ୍ତୁ ଶ୍ୱେତାମ୍ବରମାନଙ୍କ ମତରେ 'ଶ୍ରୀବତ୍ସ' ଶୀତଳନାଥଙ୍କର ପ୍ରତୀକ ।

ଏକାଦଶ ତୀର୍ଥଙ୍କର ଶ୍ରେୟାଂଶ ନାଥଙ୍କର ଲାଞ୍ଛନ ଗଣ୍ଡା । ଯକ୍ଷ ଓ ଯକ୍ଷିଣୀ ଯଥାକ୍ରମେ ଯକ୍ଷେତ ଓ ମାନବୀ । ରାଜା ତ୍ରିପିଷ୍ଟ ବାସୁଦେବ ତାଙ୍କର ଚାମରଧାରକ ରୂପେ କାର୍ଯ୍ୟ କରନ୍ତି । ତାଙ୍କର ପିତା ବିଷ୍ଣୁ ଇକ୍ଷ୍ୱାକୁ ବଂଶର ରାଜା ଥିଲେ । ସିଂହପୁରୀ ବା ସାରନାଥରେ ସେ ମାତା ବିଷ୍ଣୁଶ୍ରୀଙ୍କ ଗର୍ଭରୁ ଜାତ ହୋଇଥିଲେ ।

ବାସୁପୂଜ୍ୟ ମହିଷକୁ ନିଜର ଲାଞ୍ଛନ ରୂପେ ଗ୍ରହଣ କରିଛନ୍ତି । ତାଙ୍କର ଶାସନଦେବ ଓ ଶାସନ ଦେବୀଙ୍କର ନାମ କୁମାର ଏବଂ ଚଣ୍ଡା । କେବଳ ବୃକ୍ଷ ପାଟଳିକ; ଦ୍ୱିପିଷ୍ଟ ବାସୁଦେବ ତାଙ୍କର ଚାମର ଧାରକ ।

ତ୍ରୟୋଦଶ ଜିନ ବିମଳନାଥଙ୍କର ଲାଞ୍ଛନ ହେଉଛି 'ବରାହ' । ପାର୍ଶ୍ୱଚର ହେଉଛି ସନ୍ମୁଖ ଏବଂ ବୈରୋଟୀ । ରାଜା ସ୍ୱୟମ୍ଭୂ ବାସୁଦେବ ଚାମରଧାରୀ । ଜମ୍ବୁ ତାଙ୍କର କେବଳ ବୃକ୍ଷ ।

ଶ୍ୱେତାମ୍ବରମାନଙ୍କର ନିୟମାନୁସାରେ 'ବାଜପକ୍ଷୀ' ଓ ଦିଗମ୍ବର ମାନଙ୍କର ଶାସ୍ତ୍ର ଅନୁସାରେ 'ଭଲ୍ଲୁକ' ଅନନ୍ତ ନାଥଙ୍କର ପ୍ରତୀକ । ପାତାଳ ଓ ଅନନ୍ତ-ମତୀ ତାଙ୍କର ଯକ୍ଷ ଏବଂ ଯକ୍ଷିଣୀ । ସେ ଅଶ୍ୱତ୍ଥ ବୃକ୍ଷ ମୂଳରେ ଜ୍ଞାନ ଲାଭ କରିଥିଲେ । (୩)

ଭଲ୍ଲୁକକୁ ଧର୍ମନାଥଙ୍କର ଲାଞ୍ଛନ ରୂପେ ମଧ୍ୟ ସ୍ୱୀକାର କରାଯାଏ । କିନ୍ତୁ ପ୍ରକୃତରେ 'ବଜ୍ରଦଣ୍ଡ' ହିଁ ତାଙ୍କର ପ୍ରତୀକ । ତାଂକର ପାର୍ଶ୍ୱଚରମାନଂଙ୍କର ନାମ କିନ୍ନର ଓ କନ୍ଦର୍ପା । ମନୁଷ୍ୟମାନଙ୍କୁ ଦୁଃଖ ଓ କ୍ଳେଶରୁ ଉଦ୍ଧାର କରିଥିଲେ ବୋଲି ତାଂକର ନାମ ଧର୍ମନାଥ ।

'ମୃଗହିଁ' ଶାନ୍ତିନାଥଙ୍କର ପ୍ରତୀକ । କିଂପୁରୁଷ ଓ ମହାମାନସୀ ତାଙ୍କର ଯକ୍ଷ ଯକ୍ଷିଣୀ । ରାଜା ପୁରୁଷଦତ୍ତ ଚାମରଧାରକ । ନନ୍ଦବୃକ୍ଷ ମୂଳେ ସେ ଜ୍ଞାନଲାଭ କରିଥିଲେ ବୋଲି ନନ୍ଦୀକୁ ତାଙ୍କର କେବଳ ବୃକ୍ଷ ବୋଲି ଗ୍ରହଣ କରାଯାଏ ।

ସପ୍ତଦଶ ତୀର୍ଥଙ୍କର କୁନ୍ଥନାଥଙ୍କର ପ୍ରତୀକ 'ଛାଗ'; ଯକ୍ଷର ନାମ ଗନ୍ଧର୍ବ ଓ ଯକ୍ଷିଣୀର ନାମ ବଳା, ରାଜା କୁନାଳ ଚାମର ଧାରକ । ତିଳକତରୁ ତାଙ୍କର କେବଳ ବୃକ୍ଷ ।

ନନ୍ଦ୍ୟାବର୍ତ୍ତ ନାମକ ସ୍ୱସ୍ତିକ ବା ମତ୍ସ୍ୟ ଜିନ ଅରନାଥଙ୍କର ପ୍ରତୀକ । ଯକ୍ଷେନ୍ଦ୍ର ଓ ଧାରିଣୀଦେବୀ ତାଙ୍କର ପାର୍ଶ୍ୱଚର । ଚ୍ୟୁତ ତାଙ୍କର କେବଳ ବୃକ୍ଷ (୪); ଅରନାଥଙ୍କ ପିତା ସୁଦର୍ଶନ ଚନ୍ଦ୍ରବଂଶର ରାଜା ଥିଲେ । ମାତାଙ୍କର ନାମ ଥିଲା ଜନସେନା । ସେ ସ୍ୱପ୍ନରେ ରତ୍ନଚକ୍ର ସଂଦର୍ଶନ କରିଥିଲେ ବୋଲି ଅରନାଥଙ୍କୁ ପ୍ରଥମେ 'ଅର' ନାମରେ ଅଭିହିତ କରାହୋଇଥିଲା ।

---

(୩) ଅଶ୍ୱତ୍ଥ ପାଦପୋପାନ୍ତେ କୈବଲ୍ୟ ମୁଦପାପଦଦ୍ଧ—ଉତ୍ତର ପୁରାଣ, ୧୬୭ ପୃଷ୍ଠା

(୪) ରେବତ୍ୟା ଶୁକ୍ଳପକ୍ଷେଽପରାହ୍ଣେ ଚ୍ୟୁତତରେ ରଧଃ, ଉତ୍ତର ପୁରାଣ—୨୧୬ ପୃଷ୍ଠା

ଜୈନ ଶାସ୍ତ୍ରାନୁସାରେ ମଲ୍ଲୀନାଥଙ୍କର ପ୍ରତୀକ 'ଉଦକ ପାତ୍ର' । କୁବେର ଓ ଧରଣୀପ୍ରିୟା ତାଙ୍କର ଶାସନ ଦେବ ଓ ଶାସନ ଦେବୀ । ରାଜା ସୂଲ୍ମ ଗ୍ଚମରଗ୍ରାହକ । ଅଶୋକ ଏହାଙ୍କର କେବଳ ବୃକ୍ଷ ।

ମୁନି ସୁବ୍ରତଙ୍କର ପ୍ରତୀକ କୂର୍ମ । ବରୁଣ ଏବଂ ନରଦତ୍ତା ତାଙ୍କର ପାର୍ଶ୍ୱଚର । ରାଜା ଅଜିତ ଗ୍ଚମରଗ୍ରାହକ । ଚମ୍ପକ ତାଙ୍କର କେବଳ ବୃକ୍ଷ । ପିତା ସୁମିତ୍ର ମଗଧରେ ହରିବଂଶୀୟ ରାଜା ଥିଲେ ।

ଏକବିଂଶ ତୀର୍ଥଙ୍କର ନମିନାଥଙ୍କର ପ୍ରତୀକ ନୀଳପଦ୍ମ ଅଥବା ଅଶୋକ ବୃକ୍ଷ । ଭ୍ରୂକୁଟୀ ଏବଂ ଗାନ୍ଧାରୀ ତାଙ୍କର ଯକ୍ଷ ଓ ଯକ୍ଷିଣୀ । ବିଜୟ ରାଜା ଗ୍ଚମରଗ୍ରାହକ । ବକୁଳ କେବଳ ବୃକ୍ଷ । (୫)

ଶଙ୍ଖ ନେମିନାଥଙ୍କର ପ୍ରତୀକ । ଗୋମେଧ ଓ ଅମ୍ବିକା ତାଙ୍କର ପାର୍ଶ୍ୱଚର । ରାଜା ଉଗ୍ରସେନ ଗ୍ଚମରଧାରୀ; ମହାବେଣୁ ବା ବେତସ ତାଙ୍କର କେବଳ ବୃକ୍ଷ । ପିତା ସମୁଦ୍ରବିଜୟ ଦ୍ୱାରକାର ରାଜା ଥିଲେ ।

ବିଖ୍ୟାତ ତୀର୍ଥଙ୍କରଙ୍କ ମଧ୍ୟରେ ପାର୍ଶ୍ୱନାଥ ଅନ୍ୟତମ । କେତେକ ତାଙ୍କୁ ଜୈନ ଧର୍ମର ପ୍ରଥମ ପ୍ରବର୍ତ୍ତକ ବୋଲି ମଧ୍ୟ କହନ୍ତି । Dr. Rhys Davids ଙ୍କ ମତରେ ସେ ଜୈନଧର୍ମର ପ୍ରତିଷ୍ଠାତା । ତାଙ୍କର ଜୀବନୀ ସମ୍ପର୍କରେ ଐତିହାସିକ ସତ୍ୟତା ଯଥେଷ୍ଟ ଅଛି । ସର୍ପ ତାଙ୍କର ଲାଞ୍ଛନ । ତାଙ୍କର ଯକ୍ଷକୁ ପାର୍ଶ୍ୱ ବା ବାମନ ବା ଧରଣେନ୍ଦ୍ର ଓ ଯକ୍ଷିଣୀକୁ ପଦ୍ମାବତୀ କହନ୍ତି । ଅଜିତ ରାଜା ଗ୍ଚମରଗ୍ରାହକ । ଦେବଦାରୁ ବା ଧାତୁକ ମୂଳରେ ସେ ଜ୍ଞାନଲାଭ କରିଥିଲେ । ପାର୍ଶ୍ୱନାଥଙ୍କର ଯକ୍ଷ ମଧ୍ୟ ସର୍ପଫଣା ଦ୍ୱାରା ବିମଣ୍ଡିତ । ଯକ୍ଷିଣୀ ପଦ୍ମାବତୀ ଗୋଖୁର-ସାପକୁ ନିଜର ବାହନ କରିଥିବାର ଜଣାଯାଏ ।

ଖୁବ୍ ସମ୍ଭବ ପାର୍ଶ୍ୱନାଥ ୮୧୭ ଖ୍ରୀ. ପୂ. ରେ ଜନ୍ମଗ୍ରହଣ କରି ଖ୍ରୀ. ପୂ. ୭୧୭ରେ ଦେହତ୍ୟାଗ କରିଥିଲେ ।

ତାଙ୍କର ପିତା ଅଶ୍ୱସେନ ବାରାଣସୀର ରାଜା ଥିଲେ ।

ପାର୍ଶ୍ୱନାଥ ଦୀର୍ଘ ସତୁରୀ ବର୍ଷ କାଳ ପ୍ରେମ ଓ ମୈତ୍ରୀର ବାଣୀ ସଂସାରରେ ପ୍ରଗ୍ଚର କରିଥିଲେ ।

ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫାମାନଙ୍କରେ ଏହି ପାର୍ଶ୍ୱନାଥଙ୍କୁ ସର୍ବଥା ମହାର୍ଘ ଆସନ ପ୍ରଦାନ କରାଯାଇଛି । କାରଣ ଏହି ଜୈନସ୍ଥଳୀରେ ପାର୍ଶ୍ୱନାଥଙ୍କୁ ଇଷ୍ଟଦେବ ବା ମୂଳଦେବତା ରୂପେ ସ୍ୱୀକାର କରାଯାଇଥିଲା ।

ଚତୁର୍ବିଂଶ ତୀର୍ଥଙ୍କର ମହାବୀରଙ୍କର ସ୍ଥାନ ଜୈନଧର୍ମରେ ଅପ୍ରତିଦ୍ୱନ୍ଦ୍ୱୀ । ସେ ଜୈନ ପ୍ରଗ୍ଚରକମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ବୋଲି ବିବେଚିତ ହୁଅନ୍ତି । ତେଣୁ ସିଂହ ତାଙ୍କର ପ୍ରତୀକ, ମାତଙ୍ଗ ଏବଂ ସିଦ୍ଧାୟିକା ତାଙ୍କର ଯକ୍ଷ ଓ ଯକ୍ଷିଣୀ ମଗଧର ରାଜା ବିମ୍ବିସାର ଗ୍ଚମରଗ୍ରାହକ, ଶାଳବୃକ୍ଷ ତଳରେ ସେ କେବଳ-ଜ୍ଞାନ ଲାଭ କରିଥିଲେ । ଖଣ୍ଡଗିରିର ଗୁମ୍ଫାମାନଙ୍କରେ ଚତୁର୍ବିଂଶ ତୀର୍ଥଙ୍କର ପ୍ରତିମୂର୍ତ୍ତି

(୫) ନିଜଭାଷା ଦନେରମ୍ୟେ ମୂଳ ବକୁଳ ଭୂବୃହଃ, ହରିହର ପୁରାଣ—୪୩୭ ପୃଷ୍ଠା

ଉତ୍କୀର୍ଣ୍ଣ ହୋଇଥିବାର ଦେଖାଯାଏ ଏହାହିଁ ସେମାନଙ୍କର ସୃଷ୍ଟ ପରିଚୟ ।

ବାରଭୁଜା ଗୁମ୍ଫାରେ ଯେଉଁ ସ୍ତ୍ରୀ ମୂର୍ତ୍ତିର ଚିତ୍ର ଖୋଦିତ ହୋଇଛି ତାହା ଦ୍ୱାଦଶ ହସ୍ତସଂଯୁକ୍ତା । ଜୈନଧର୍ମରେ ଏତାଦୃଶ ମୂର୍ତ୍ତିର ସ୍ଥାନ ନିରୂପଣ କରିବା ସମ୍ଭବ ନୁହେଁ । ସମ୍ମୁଖସ୍ଥ ବାରଣ୍ଡାରେ ଅଗ୍ରସର ହେଲେ ଯେଉଁ ଭଗ୍ନ ଗୁମ୍ଫା ଦେଖାଯାଏ ସେଥିରେ ସୁଦ୍ଧା ତୀର୍ଥଙ୍କର-ମାନଙ୍କର ମୂର୍ତ୍ତି ଖୋଦିତ ହୋଇଛି । ତୀର୍ଥଙ୍କରଙ୍କ ସହିତ ସେମାନଙ୍କର ଶାସନ-ଦେବତା ଓ ଶାସନଦେବୀମାନଙ୍କୁ ମଧ୍ୟ ରୂପଦାନ କରାଯାଇଛି । କଙ୍କରମୟ ପ୍ରସ୍ତରରେ ତ୍ରିଶୂଳଗୁମ୍ଫା ବାଇଶି ଫୁଟ ଲମ୍ବ, ସାତ ଫୁଟ ଓସାର ଏବଂ ଆଠ ଫୁଟ ଉଚ୍ଚ ବାରଣ୍ଡା କାନ୍ଥରେ ତ୍ରିଶୂଳ ଚିହ୍ନ ଅଛି । ଭିତର ପାର୍ଶ୍ୱରେ ଚତୁର୍ବିଂଶ ଜୈନତୀର୍ଥଙ୍କରଙ୍କ ମୂର୍ତ୍ତି ଅତି ସ୍ପଷ୍ଟଭାବରେ ଖୋଦିତ ହୋଇଛି । ଏଠାରେ ପାର୍ଶ୍ୱନାଥ ସର୍ପର ସପ୍ତଫଣା ତଳେ ଛିଡ଼ା ହୋଇ-ଥିବାର ଦେଖାଯାନ୍ତି । ପାର୍ଶ୍ୱନାଥ ତ୍ରୟୋବିଂଶ ତୀର୍ଥଙ୍କର ହିସାବରେ ମହାବୀରଙ୍କର ନିକଟରେ ଥିବା ଦେଖା-ଯାଏ । କିନ୍ତୁ ତାଙ୍କୁ ଅପେକ୍ଷାକୃତ ଉଚ୍ଚ ସ୍ଥାନ ଦିଆ ଯାଇଛି । ତାଙ୍କର ପ୍ରତିମୂର୍ତ୍ତି ତୀର୍ଥଙ୍କରମାନଙ୍କର ମଧ୍ୟସ୍ଥଳରେ ଅଛି । ଏଠାରେ ଆମେ ଆଦିନାଥଙ୍କର ତିନୋଟି ପ୍ରତିମୂର୍ତ୍ତି ଦେଖିବାକୁ ପାଉଁ । ଅନ୍ୟାନ୍ୟ ଗୁମ୍ଫା ଅପେକ୍ଷା ଏଠାରେ ତୀର୍ଥଙ୍କରମାନେ ଅତି ସ୍ପଷ୍ଟ ଏବଂ ଆକର୍ଷଣୀୟ ।

ତ୍ରିଶୂଳ ଗୁମ୍ଫାର ପଶ୍ଚିମ ଦିଗରେ ଲଲାଟେନ୍ଦୁ ଗୁମ୍ଫା ଅବସ୍ଥିତ । ଏହାର ଉପର ମହଲା ଭାଙ୍ଗିଗଲାଣି, ତଳମହଲା ପ୍ରକୋଷ୍ଠ ଗୁଡ଼ିକରେ କେତେକ ଜୈନ ସାଧୁଙ୍କର ମୂର୍ତ୍ତି ଅଛି । ସେଥିମଧ୍ୟରେ ପାର୍ଶ୍ୱନାଥଙ୍କ ମୂର୍ତ୍ତି ପାଇଁ ଅପେକ୍ଷାକୃତ ଅଧିକ ଯତ୍ନ କରାଯାଇଛି । ପାର୍ଶ୍ୱନାଥ ସେଠାକାର ପ୍ରଧାନ ତୀର୍ଥଙ୍କର ।

ଜୈନ ମନ୍ଦିରରେ ଉତ୍ତର ଦିଗକୁ ତାତୋ୍ୱା-୧ ଓ ତାତୋ୍ୱା-୨ ନିକଟରେ ଅନନ୍ତ ଗୁମ୍ଫା ଅବସ୍ଥିତ । ସେଠାରେ ପାହାଡ଼ର ପୃଷ୍ଠଭାଗକୁ ସମତଳ କରି ଅନନ୍ତ ଗୁମ୍ଫାର ପ୍ରାଙ୍ଗଣ ପ୍ରସ୍ତୁତ କରା-ଯାଇଛି । ଅନନ୍ତ ଗୁମ୍ଫାର ଲମ୍ବ ପ୍ରାୟ ତେହିଶ ଫୁଟ । ପ୍ରକୋଷ୍ଠକୁ ପ୍ରବେଶ କରିବା ପାଇଁ ଚାରୋଟି ଦ୍ୱାର ଅଛି । ପ୍ରଥମ ଓ ଦ୍ୱିତୀୟ ଦ୍ୱାର ମଧ୍ୟରେ ଥିବା କାନ୍ଥ ନଷ୍ଟ ହୋଇ ଯାଇଅଛି । ଭିତର ପଟ କାନ୍ଥରେ ସ୍ୱସ୍ତିକ, ତ୍ରିଶୂଳ ଆଦି ଜୈନଧର୍ମର ସାତଗୋଟି ପବିତ୍ର ଚିହ୍ନ ଅଛି । ପ୍ରଥମ ସ୍ୱସ୍ତିକ ଚିହ୍ନର ନିମ୍ନଦେଶରେ ବୋଧହୁଏ ପାର୍ଶ୍ୱନାଥଙ୍କର ମୂର୍ତ୍ତି ଥିଲା । କିନ୍ତୁ ଏବେ ତାହା ପ୍ରାୟ ଅସ୍ପଷ୍ଟ ହୋଇଗଲାଣି ।

ଅନନ୍ତ ଗୁମ୍ଫାର ବାହାର ପାଖ କାନ୍ଥର ଉପରଭାଗରେ ନାନାପ୍ରକାର ଚିତ୍ର ଖୋଦିତ ହୋଇଛି । ସେଠାରେ ଆମେ ଲକ୍ଷ୍ମୀଙ୍କର ହସ୍ତ ଶତଦଳ ଦ୍ୱାରା ପରି-ଶୋଭିତ ହୋଇଥିବାର ଦେଖୁ । ଅନ୍ୟ ଏକ ସ୍ଥାନରେ ସୂର୍ଯ୍ୟଦେବ ତାଙ୍କର ରଥ ଓ ଚାରୋଟି ଅଶ୍ୱ ସହିତ ପ୍ରଦର୍ଶିତ ହୋଇଛନ୍ତି । ଚନ୍ଦ୍ର ଏବଂ ନକ୍ଷତ୍ରଖଚିତ ଆକାଶ ମଧ୍ୟ ସ୍ପଷ୍ଟଭାବେ ଦେଖାଯାଏ । ପଶୁ, ପକ୍ଷୀ, ମିଥୁନ ଆଦି ଚିତ୍ର ଉପରେ ସର୍ପମାନେ ଫଣା ଟେକି ରହିଛନ୍ତି ।

ସ୍ଥାନେ ସ୍ଥାନେ ଗନ୍ଧର୍ବମାନେ ପକ୍ଷଯୁକ୍ତ-ହୋଇ ଆକାଶମାର୍ଗରେ ବିଚରଣ କରୁଥିବାର ଦେଖାଯାଏ ।

ଉଦୟଗିରି ଓ ଖଣ୍ଡଗିରିରେ ଥିବା ଗୁମ୍ଫାଗୁଡ଼ିକ ଏକ ପ୍ରକାରର ନୁହେଁ । ଉଦୟଗିରିର ଜୈନଗୁମ୍ଫାଗୁଡ଼ିକ ବାସୋପ-ଯୋଗୀ । ସେଥିରେ ଜୈନ ଶ୍ରମଣ ଓ ମୁନିମାନେ ଜୀବନର ଅନ୍ତିମ କାଳ ଅତିବାହିତ କରୁଥିଲେ । ତାହାହିଁ ଥିଲା ଜୈନଧର୍ମର ଆଦର୍ଶ । ଖାରବେଳ ବୋଧହୁଏ ତାଙ୍କର ଶେଷ ଜୀବନ ସେହି ଭାବରେ କଟାଇଥିଲେ । କିନ୍ତୁ ଖଣ୍ଡଗିରିର ଗୁମ୍ଫା ଗୁଡ଼ିକ ଜୈନ ମନ୍ଦିର ରୂପେ ବ୍ୟବହୃତ ହେଉଥିଲା । ସେଥିପାଇଁ ନାନା ପ୍ରକାର ଦେବଦେବୀ ଏବଂ ଚତୁର୍ବିଂଶ ତୀର୍ଥଙ୍କରଙ୍କର ପ୍ରତିମୂର୍ତ୍ତି ସେଥିରେ ଖୋଦିତ ହୋଇଅଛି । ଖଣ୍ଡଗିରିର ପ୍ରତ୍ୟେକ ଗୁମ୍ଫା ଆଧ୍ୟାତ୍ମିକତାର ଚରମ ଉତ୍କର୍ଷ ସାଧନ ନିମିତ୍ତ ଉଦ୍ଦିଷ୍ଟ ହୋଇ-ଥିଲା । ଶାନ୍ତିନିର୍ଦ୍ଦିଷ୍ଟ ପବିତ୍ର ବାୟୁମଣ୍ଡଳ ମଧ୍ୟରେ ଜୈନ ସାଧକମାନେ ସାଧନାରେ ଚିତ୍ତ ନିବିଷ୍ଟ କରୁଥିଲେ ।

ଏହିପରି ଦୁଇ ପାହାଡ଼ରେ ବିଭିନ୍ନ ଉଦ୍ଦେଶ୍ୟ ନେଇ ଗୁମ୍ଫାମାନ ନିର୍ମିତ ହୋଇଥିଲା । ଆକାର ପ୍ରକାରରେ ମଧ୍ୟ ଗୁମ୍ଫାଗୁଡ଼ିକ ଉନ୍ମୁକ୍ତ ଗହ୍ୱର ପରି ନିର୍ମିତ ହୋଇଥିଲେ । ଆଉ କେତେକ ଗୁମ୍ଫା ଦ୍ୱିତଳପ୍ରାସାଦ ପରି ନିର୍ମିତ ହୋଇଛି । ସ୍ଥାନେ ସ୍ଥାନେ ସର୍ପଗୁମ୍ଫା ଏବଂ ବ୍ୟାଘ୍ର ଗୁମ୍ଫା ପରି ଅତି କ୍ଷୁଦ୍ର ଗୁମ୍ଫା ମଧ୍ୟ ନିର୍ମିତ ହୋଇଥିଲା । ଅଧିକାଂଶ ଗୁମ୍ଫାର ଛାତ ସମତଳ । କିନ୍ତୁ ଉଦୟଗିରିର ହାତୀଦାସ ଗୁମ୍ଫା, ଜଗନ୍ନାଥ ଓ ପାତାଳପୁରୀ ଗୁମ୍ଫା ଏବଂ ଖଣ୍ଡଗିରିର ତାତ୍ୱା-୨ ଓ ଅନନ୍ତ ଗୁମ୍ଫାର ଉପର ଛାତ ସମତଳ ନୁହେଁ । ଏହା ବକ୍ରାକୃତି ବା କୁବ୍ଜ ପୃଷ୍ଠ ପରି ।

ପ୍ରତ୍ୟେକ ଗୁମ୍ଫାକୁ ପ୍ରବେଶ କରିବା ପାଇଁ ବିଭିନ୍ନ ପ୍ରବେଶଦ୍ୱାରମାନ ଥିଲା । ପ୍ରକୋଷ୍ଠର ପ୍ରବେଶଦ୍ୱାରକୁ ବୋଧହୁଏ ସନ୍ଧିରେ ବାଂଶ ନିର୍ମିତ କବାଟଦ୍ୱାରା ବନ୍ଦ କରାଯାଉଥିଲା; କାରଣ ଏପରି କବାଟ ଲଗାଇବା ପାଇଁ ଦ୍ୱାରଦେଶର ପ୍ରସ୍ତରକୁ କଟା ଯାଇଛି । ବାରଣ୍ଡା ନ ଥିବା ଗୁମ୍ଫାର ଦ୍ୱାରମାନଙ୍କର ଉପରେ ଯେଉଁ ଗୋଟି ଛଅ ଇଞ୍ଚ ବିଶିଷ୍ଟ ଛିଦ୍ର ଅଛି, ତାର ଉଦ୍ଦେଶ୍ୟ ଜାଣିବା ଅସମ୍ଭବ । ପ୍ରକୋଷ୍ଠର ଆକାର ଅନୁଯାୟୀ ସମ୍ମୁଖସ୍ଥ ବାରଣ୍ଡା ନିର୍ମିତ ହୋଇଥାଏ । ସ୍ଥାନେ ସ୍ଥାନେ ଏହି ବାରଣ୍ଡା ବ୍ୟତୀତ ଗୁମ୍ଫାର ଅଗ୍ରଭାଗ ସମ୍ମୁଖ ଭାଗକୁ ବାହାରିପଡି ନିମ୍ନ ସ୍ଥାନକୁ ଆବୃତ କରିଥାଏ ଏବଂ ଏହି ଆବୃତ ସ୍ଥାନ ବାରଣ୍ଡାର ଅଭାବ ପୂରଣ କରେ । ବାରଣ୍ଡାର ପ୍ରାନ୍ତଭାଗ ନିର୍ଣ୍ଣୟ କରିବା ପାଇଁ ପ୍ରହରୀ ବା ସୈନିକର ମୂର୍ତ୍ତି ସ୍ଥାପନ କରାଯାଇଥାଏ । ଏହି ସୈନିକ-ମାନଙ୍କର ଉଚ୍ଚତା ସାଧାରଣତଃ ୪½ ଫୁଟ । ସେମାନଙ୍କର ପାଦଦେଶ ଅନାଚ୍ଛାଦିତ ଏବଂ ବର୍ଚ୍ଛା ସେମାନଙ୍କର ପ୍ରଧାନ ଅସ୍ତ୍ର । କିନ୍ତୁ ରାଣୀହଂସପୁରର ଉପର ବାରଣ୍ଡାରେ ଆମେ କୌଣସି ଏକ ଦେବୀଙ୍କୁ ସିଂହ ସହିତ ଏବଂ ଅନ୍ୟ ଏକ ଦେବତାଙ୍କୁ ବୃଷ ବା ହସ୍ତୀ ସହିତ ପ୍ରଦର୍ଶିତ ହୋଇଥିବାର ଦେଖୁ । ଜୟ-ବିଜୟ ଗୁମ୍ଫାର ବାରଣ୍ଡାରେ କୌଣସି ସ୍ତ୍ରୀ ସହିତ ଏକ ପୁରୁଷର ମୂର୍ତ୍ତି ଦେଖାଯାଏ । ପୁନଶ୍ଚ ଅନ୍ୟ କେଉଁଠାରେ

ବସିବା ବା ଶୋଇବାର ସୁବିଧା ପାଇଁ ବଡ ବଡ ଗୁମ୍ଫା ମଧ୍ୟରେ ଆସନ ଓ ଶଯ୍ୟାର ନିମନ୍ତେ ଭଲ ବନ୍ଦୋବସ୍ତ ହୋଇଥିଲା । ଜୈନ ସନ୍ନ୍ୟାସୀମାନଙ୍କର ସମ୍ମିଳିତ ବା ଉତ୍ସବ ନିମନ୍ତେ ଗୁମ୍ଫା ସମ୍ମୁଖରେ ବିସ୍ତୃତ ପ୍ରାଙ୍ଗଣ ମଧ୍ୟ ପ୍ରସ୍ତୁତ ହୋଇଥିଲା । ରାଣୀଗୁମ୍ଫା, ଗଣେଶ ଗୁମ୍ଫା, ମଞ୍ଚପୁରୀ, ଅନନ୍ତ ଗୁମ୍ଫା, ବାରଭୂଜୀ ଗୁମ୍ଫା ଏବଂ ତ୍ରିଶୂଳ ଗୁମ୍ଫାର ସମ୍ମୁଖରେ ଏହିପରି ପ୍ରାଙ୍ଗଣ ପ୍ରସ୍ତୁତ କରାଯାଇଛି । ଦର୍ଶକମାନଙ୍କର ଦୃଷ୍ଟି ସହଜେ ଆକର୍ଷିତ ହେବ ବୋଲି ଗୁମ୍ଫାର ସାମନା କାନ୍ଥରେ ସାଧାରଣତଃ ଚିତ୍ରମାନ ଖୋଦିତ ହୋଇଥିଲା ।

## ଗୁମ୍ଫାମାନଙ୍କର କାର୍ଯ୍ୟ ଏବଂ ସ୍ଥାପତ୍ୟ

ଉଦୟଗିରି ଓ ଖଣ୍ଡଗିରି ଗୁମ୍ଫାର କାରୁକାର୍ଯ୍ୟ ଏବଂ ସ୍ଥାପତ୍ୟ ବିଶେଷ ଉନ୍ନତ ଧରଣର ନୁହେଁ । ଏହା ସ୍ଥାନେ ସ୍ଥାନେ ବର୍ଣ୍ଣନ ହେଲେହେଁ ବଳିଷ୍ଠ । ସ୍ତ୍ରୀ-ପୁରୁଷର ବନ୍ଦନା, ବିରହ ଏବଂ କାମାବସ୍ଥା, କଷ୍ଟ, ଆକାଂକ୍ଷା, ନୈରାଶ୍ୟ, ଆନନ୍ଦ ଓ ଭକ୍ତି ଆଦିର ଭାବ ପ୍ରକାଶ ଅତି ନୈପୁଣ୍ୟ ସହ ସାଧିତ ହୋଇଛି । କଳିଙ୍ଗ-ଶିଳ୍ପୀର ପ୍ରଚେଷ୍ଟା ଏବଂ ଅଧ୍ୟବସାୟ ଭାରତୀୟ କଳାର ଉନ୍ନତି ସାଧନରେ ବିଶେଷ ସାହାଯ୍ୟ କରିଥିଲା । ଏହି ଗୁମ୍ଫା-ମାନଙ୍କରେ ପ୍ରାଚୀନ ଭାରତୀୟ ମୂର୍ତ୍ତି କଳାର ଦ୍ୱିତୀୟ ଅଧ୍ୟାୟ ଆରମ୍ଭ ହୋଇଥିଲା । ସାଞ୍ଚି, ବାରହୁତ ଏବଂ ବୋଧଗୟା ପଣ୍ଡିତ ସମଭାବ ଦେଇ ପଶ୍ଚିମ ଭାରତରେ ନାସିକ, ଭଜା, କୋଣ୍ଡାନ୍, କାନେରୀ ଆଦି ସ୍ଥାନରେ ବୌଦ୍ଧମାନଙ୍କର ଗୁମ୍ଫା ନିର୍ମିତ ହୋଇଥିଲା । କିନ୍ତୁ ଖଣ୍ଡଗିରି, ଉଦୟଗିରିର ଗୁମ୍ଫାମାନ ଜୈନମାନଙ୍କର କୀର୍ତ୍ତି ।

ଉଦୟଗିରି ଏବଂ ଖଣ୍ଡଗିରିରେ ଯେଉଁ ସବୁ ପଶୁପକ୍ଷୀମାନଙ୍କର ଚିତ୍ର ଖୋଦିତ ହୋଇଛି, ସେଥିରେ ହସ୍ତୀର ଚିତ୍ର ଅତି ସୁନ୍ଦର ଏବଂ ଅଶ୍ୱ, ମୃଗ, ମର୍କଟମାନଙ୍କର ଚିତ୍ର ଅତି ସ୍ପଷ୍ଟ । ପୁଷ୍ପ ଏବଂ ଲତା ପ୍ରଭୃତି ଅଙ୍କନରେ ଶିଳ୍ପୀମାନେ ପାରଦର୍ଶିତା ଲାଭ କରିଥିବା ପରି ମନେ ହୁଏ ନାହିଁ । ତେବେ ଉଦ୍ଭିଦ ଜଗତକୁ ଅତି ସାବଧାନତା ସହକାରେ ଅଙ୍କନ କରାଯାଇଛି । ରାଣୀଗୁମ୍ଫା ଏବଂ ଗଣେଶ ଗୁମ୍ଫାରେ ଯେଉଁ ପର୍ବତ ଦୃଶ୍ୟ ଅଛି, ତାହା ଓଡ଼ିଶାର ଅନ୍ୟତ୍ର ବିରଳ । ପର୍ବତର ଚୂଡ଼ାମାନ ତ୍ରିକୋଣାକାର ଦେଖାଯାଏ । ଅଜନ୍ତାରେ ମଧ୍ୟ ପର୍ବତଗୁଡ଼ିକ ଏହିପରି ଭାବେ ଅଙ୍କିତ ହୋଇଛି । ପାରିବାରିକ ଓ ସାମାଜିକ ଜୀବନର ରୂପାୟନ ମଧ୍ୟ ଅତି ଚମତ୍କାର । ପୁରୁଷ-ମାନେ ଅଧୁନିକ ମଣିଷମାନଙ୍କ ପରି ବସ୍ତ୍ର ବ୍ୟବହାର କରୁଥିଲେ । ଉଚ୍ଚ ସମ୍ପ୍ରଦାୟର ସ୍ତ୍ରୀଲୋକମାନେ ମୂଲ୍ୟବାନ୍ ବସ୍ତ୍ର ପରିଧାନ କରୁଥିଲେ । ସମ୍ଭ୍ରାନ୍ତ ପରିବାରର ସ୍ତ୍ରୀ ଓ ସାମନ୍ତମାନଙ୍କୁ ନାନାବିଧ ଅଳଙ୍କାରରେ ଭୂଷିତ କରାଯାଇଛି । ଅଳଙ୍କାରର ସଂଯୋଜନାରେ କଳିଙ୍ଗଶିଳ୍ପୀ ଅମରାବତୀ ଶିଳ୍ପୀର ସମକକ୍ଷ ହୋଇଥିବା ପରି ମନେ ହୁଏ । ଆସନ, ବନ୍ଧନୀ, ପ୍ଲେଟ୍, ପାତ୍ର, ଯୁଦ୍ଧସଜ୍ଜାର ବାଦ୍ୟଯନ୍ତ୍ର, ଛତ୍ର, ତରବାରି

ଏବଂ ନାନାଦି ଆସବାବପତ୍ର ଅତି ସୁନ୍ଦର ଭାବେ ଖୋଦିତ ହୋଇଛି । ସମ-ସାମୟିକ ଧର୍ମଜୀବନର ପ୍ରତିଫଳନ ମଧ୍ୟ ଆମେ ଦେଖିବାକୁ ପାଉଁ । ନାନା ଧରଣର ଚନ୍ଦନ ଚିତ୍ର ସଙ୍ଗେ ଲକ୍ଷ୍ମୀ ଓ ସୂର୍ଯ୍ୟଙ୍କୁ ବିଶେଷ ଅଧିକଯାଏ ପଦ୍ଧକାରରେ ଚିତ୍ରିତ କରାଯାଇଛି । ଖଣ୍ଡଗିରିର ଯେଉଁ ଗୁମ୍ଫା-ମାନଙ୍କରେ ତୀର୍ଥଙ୍କର ମୂର୍ତ୍ତି ଦେଖିବାକୁ ମିଳେ ତାହା ଆମେ ବର୍ଣ୍ଣନା କରି ସାରିଛୁ । ଗୁମ୍ଫା ନିର୍ମାଣ କାଳରେ ସେମାନଙ୍କର ପ୍ରତିମୂର୍ତ୍ତି ନିର୍ମିତ ହୋଇଥିଲା କି ପରବର୍ତ୍ତୀ କାଳରେ ହୋଇଥିଲା କହିବା ସହଜ ନୁହେଁ । କିନ୍ତୁ ଜୈନ ମୂର୍ତ୍ତିକଳାର ଜୀବନ୍ତ ଦୃଷ୍ଟାନ୍ତ ରୂପେ ସେମାନଙ୍କର ଅବସ୍ଥିତି ଅମୂଲ୍ୟ । ଯଦି ଗୁମ୍ଫା ନିର୍ମାଣ ସଙ୍ଗେ ସଙ୍ଗେ ଗୁମ୍ଫାର ପ୍ରସ୍ତର କାନ୍ଥ ଦେହରେ ସେମାନଙ୍କର ରୂପାୟନ ହୋଇଥିଲା, ତେବେ ପ୍ରାଚୀନ ଜୈନମୂର୍ତ୍ତି ରୂପେ ସେମାନଙ୍କର ସ୍ଥାନ ସମଗ୍ର ଭାରତରେ ପ୍ରଥମ । ଏଠାରେ ପାର୍ଶ୍ୱନାଥଙ୍କୁ କାହିଁକି ଯେ ଅତ୍ୟଧିକ ପ୍ରାଧାନ୍ୟ ଦିଆଯାଇଛି, ତାହା ସଠିକ୍ ରୂପେ କୁହାଯାଇ ପାରିବ ନାହିଁ । ଏହା ବାସ୍ତବିକ ଏକ ଆଶ୍ଚର୍ଯ୍ୟ ବିଷୟ, କାରଣ ଅନ୍ୟ ସ୍ଥାନ-ମାନଙ୍କରେ ମହାବୀରଙ୍କୁ ପ୍ରଧାନ କରି ପ୍ରତିଷ୍ଠା କରାଯାଇଛି; କିନ୍ତୁ ଖଣ୍ଡଗିରିରେ କେବଳ ପାର୍ଶ୍ୱନାଥ କାହିଁକି, ତାଙ୍କର ପ୍ରତୀକ ସର୍ପ ମଧ୍ୟ ବହୁପରିମାଣରେ ଗୁମ୍ଫାର ବିଭିନ୍ନ ସ୍ଥାନରେ ଖୋଦିତ ହୋଇଛି । ପାର୍ଶ୍ୱନାଥଙ୍କ ପ୍ରାଧାନ୍ୟ ସ୍ୱୀକାର କରିବା ଦ୍ୱାରା ଖଣ୍ଡଗିରିରେ ଜୈନକୀର୍ତ୍ତିର ପ୍ରାଚୀନତ୍ୱ ମଧ୍ୟ ପ୍ରମାଣିତ ହେଉଛି । ଜୈନ ଶାସ୍ତ୍ର ଅନୁସାରେ ପାର୍ଶ୍ୱନାଥ ମହାବୀରଙ୍କ ଦୁଇଶହ ପଚାଶ ବର୍ଷ ପୂର୍ବରୁ ଜନ୍ମଗ୍ରହଣ କରିଥିଲେ । କିନ୍ତୁ ଖଣ୍ଡଗିରିରେ ପାର୍ଶ୍ୱନାଥଙ୍କର ଯେଉଁ କେତେକ ଜୀବନ ଚରିତର ବର୍ଣ୍ଣନା ଅଛି ସେଥିରେ ସମୟର ବିରାଟ ଦୂରତା ଓ ରହସ୍ୟ ଭେଦ କରି ଐତିହାସିକ ଖ୍ରୀ. ପୂ. ୭୫୦ର ଇତିହାସ ବା ପାର୍ଶ୍ୱନାଥଙ୍କର ବ୍ୟକ୍ତିଗତ ଇତିହାସ ସମ୍ପୂର୍ଣ୍ଣ ରୂପେ ଜାଣିବାରେ କ୍ଷମ ହୁଏ ନାହିଁ ।

ଖଣ୍ଡଗିରି ଓ ଉଦୟଗିରିର ଜୈନ ଗୁମ୍ଫାମାନ କେବେ ନିର୍ମିତ ହୋଇଥିଲା ବୋଲି ମନରେ ପ୍ରଶ୍ନ ହେବା ସ୍ୱାଭାବିକ । ହାତୀଗୁମ୍ଫା ଶିଳାଲେଖରୁ ଜଣାଯାଏ ଯେ ଖାରବେଳ ଖ୍ରୀ. ପୂ. ୧ମ ଶତାବ୍ଦୀର ଶେଷଭାଗରେ କଳିଙ୍ଗର ସମ୍ରାଟ ଥିଲେ ଏବଂ ସେ ତାଙ୍କର ପରିବାରବର୍ଗ ଜୈନ ଥିବା ହେତୁ ଜୈନମାନଙ୍କର ସୁଖ, ସ୍ୱାଚ୍ଛନ୍ଦ୍ୟ ପାଇଁ ଶତାଧିକ ଗୁମ୍ଫା ନିର୍ମାଣ କରିଥିଲେ । ଉଦୟଗିରିର ସ୍ୱର୍ଗପୁରୀ, ମଞ୍ଚପୁରୀ, ସର୍ପଗୁମ୍ଫା, ବ୍ୟାଘ୍ର ଗୁମ୍ଫା ଓ ଯମେଶ୍ୱର ଗୁମ୍ଫା ଏବଂ ଖଣ୍ଡଗିରିର ତାତୁଆ-୧, ତତୁଆ-୨ ଓ ଅନନ୍ତ ଗୁମ୍ଫାରେ ଯେଉଁ ଶିଳାଲିପିମାନ ଅଛି, ସେ ସବୁ ବ୍ରାହ୍ମୀ ଅକ୍ଷରରେ ଲିଖିତ । ଏହି ବ୍ରାହ୍ମୀ ଅକ୍ଷର ହାତୀଗୁମ୍ଫା ଶିଳାଲିପିରେ ବ୍ୟବହୃତ ହୋଇଥିବା ବ୍ରାହ୍ମୀ ଅକ୍ଷର ପରି । ତେଣୁ ହାତୀଗୁମ୍ଫା ଶିଳାଲିପି ଓ ପ୍ରୋକ୍ତ ଗୁମ୍ଫାମାନଙ୍କର ଶିଳାଲିପି ପ୍ରାୟ ସମସାମୟିକ ବା ସେମାନଙ୍କ ମଧ୍ୟରେ ସମୟର ବ୍ୟବଧାନ ଅତି ଅଳ୍ପ । ଖାରବେଳଙ୍କ ପୂର୍ବରୁ ସେଠାରେ ଗୁମ୍ଫା ନିର୍ମିତ ହୋଇଥିବାର କୌଣସି ପ୍ରମାଣ ନାହିଁ । ତେଣୁ ହାତୀଗୁମ୍ଫା ଶିଳାଲିପି ଲିଖିତ ହେବା ପରେ ପରେ ବା ସେହି

ସମୟରେ ଖାରବେଳ ଏବଂ ତାର କିଛି ବର୍ଷ ପରେ ତାଙ୍କର ବଂଶଧରମାନେ ଗୁମ୍ଫା ନିର୍ମାଣ କରିଥିବେ । ତେଣୁ ଖ୍ରୀ. ପୂ. ୫୦ ରୁ ଖ୍ରୀଷ୍ଟାବ୍ଦ ୧୦୦ ମଧ୍ୟରେ ଉଦୟଗିରି ଓ ଖଣ୍ଡଗିରିର ଅଧିକାଂଶ ଗୁମ୍ଫା ନିର୍ମିତ ହୋଇଥିବା ଯୁକ୍ତିସଙ୍ଗତ ।

ଖାରବେଳଙ୍କ ପୂର୍ବରୁ ଖଣ୍ଡଗିରି ଜୈନଧର୍ମର ତୀର୍ଥସ୍ଥଳୀ ରୂପେ ସ୍ୱୀକୃତ ହୋଇଥିବ । ତେଣୁ ତାଙ୍କ ପୂର୍ବରୁ କେତେକ ଗୁମ୍ଫା ବୋଧହୁଏ ନିର୍ମିତ ହୋଇଥିବ । ତେବେ ଅନ୍ତତଃ ଖଣ୍ଡଗିରିର ଜୈନ ମନ୍ଦିରମାନଙ୍କ ମଧ୍ୟରୁ କେତେକ ଅତି ପ୍ରାଚୀନ ପରି ମନେ ହୁଏ । ଏହି ଅତି ପ୍ରାଚୀନ ପରି ମନେ ହେଉଥିବା ଗୁମ୍ଫାକୁ ଆମେ ଖାରବେଳଙ୍କ ପୂର୍ବବର୍ତ୍ତୀ କାଳର ବୋଲି କହିଲେ ସୁଦ୍ଧା ସେଥିପାଇଁ କିଛି ପ୍ରତ୍ୟକ୍ଷ ପ୍ରମାଣ ନାହିଁ ।

ଖ୍ରୀଷ୍ଟାବ୍ଦ ୨ୟ ଶତାବ୍ଦୀରେ ନାଗାର୍ଜୁନ ନାମରେ ଜଣେ ବୌଦ୍ଧ ସନ୍ନ୍ୟାସୀ ଓଡ଼ିଶା (Otisha) ର ରାଜାଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରିଥିବାର ପ୍ରମାଣ ଅଛି । ଏହି ରାଜା ବୋଧହୁଏ ଜୈନ ଥିଲେ । ତାଙ୍କ ପରେ ପରେ କଳିଙ୍ଗରେ ଜୈନଧର୍ମର ଅବନତି ପାଇଁ ପଥ ସୁଗମ ହୋଇଥିଲା ଏବଂ ମହାଯାନ ବୌଦ୍ଧଧର୍ମର ପ୍ରବେଶ ପରେ ପରେ କଳିଙ୍ଗରେ ଜୈନଧର୍ମର ପ୍ରତିଷ୍ଠା ପାଇଁ କୌଣସି ରାଜା ପ୍ରଚେଷ୍ଟା କରିଥିବା ମନେ ହୁଏନା । ତେଣୁ ଖ୍ରୀଷ୍ଟପୂର୍ବ ୨ୟ ଶତାବ୍ଦୀ ସୁଦ୍ଧା ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫାଗୁଡ଼ିକର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିବ ।

କିନ୍ତୁ ଉଦୟଗିରି ଓ ଖଣ୍ଡଗିରିକୁ ଜୈନ ଉପାସକମାନେ ପରିତ୍ୟାଗ କରି ପାରି ନ ଥିଲେ । ବହୁତ ବର୍ଷ ପରେ ମଧ୍ୟ ସେଠାକାର ଗୁମ୍ଫାମାନଙ୍କରେ ସାଧକମାନେ ବାସ କରୁଥିବାର ପ୍ରମାଣ ମିଳୁଛି । ଅଷ୍ଟମ ଶତାବ୍ଦୀଠାରୁ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଜୈନମାନେ ଦାକ୍ଷିଣାତ୍ୟରେ ଅତି ପ୍ରଭାବଶାଳୀ ଥିଲେ । (୭) ସେହି ସମୟରେ ଖଣ୍ଡଗିରି ଗୁମ୍ଫା ଏବଂ ନବମୁନି ଗୁମ୍ଫାର ଶିଳାଲିପି ଲିଖିତ ହୋଇଥିଲା । ଦାକ୍ଷିଣାତ୍ୟରେ ବୈଷ୍ଣବ ଧର୍ମର ଅଭ୍ୟୁତ୍ଥାନ ଫଳରେ ଜୈନ ଧର୍ମର ବିଲୋପ ସାଧନ ଅବଶ୍ୟମ୍ଭାବୀ ହୋଇଥିଲା ।

ଓଡ଼ିଶାରେ ଖଣ୍ଡଗିରି ଜୈନଧର୍ମର ସର୍ବପ୍ରଧାନ ପୀଠସ୍ଥଳୀ ରୂପେ ପ୍ରତିଷ୍ଠା ଲାଭ କରିଥିଲା ଏବଂ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଏହି ଧର୍ମର ପରିବ୍ୟାପ୍ତି ନିମନ୍ତେ ପ୍ରେରଣା ଯୋଗାଇଥିଲା । ମଧ୍ୟଯୁଗରେ ଓଡ଼ିଶାର ବହୁ ଅଞ୍ଚଳରେ ଜୈନ କଳାକୌଶଳର ଅଭିନବ ପ୍ରକାଶ ଦୃଷ୍ଟିଗୋଚର ହୁଏ । ସେସବୁର ବ୍ୟାପକ ଆଲୋଚନା ଏଠାରେ ସମ୍ଭବ ନୁହେଁ । ତେବେ ମଧ୍ୟଯୁଗୀୟ ଜୈନ କଳାର ଉପଯୁକ୍ତ ଆଲୋଚନା ନ କଲେ, ଏହି ପ୍ରବନ୍ଧର ସୌଷ୍ଠବରେ ବାଧା ଆସିବ । ସେଥିପାଇଁ ଉକ୍ତ କାଳର ଶତ ଶତ ସଂଖ୍ୟାରେ ମିଳିଥିବା ଜୈନ ପ୍ରତିମାର ପର୍ଯ୍ୟବେକ୍ଷଣ କରି ତନ୍ମଧ୍ୟରୁ ଅନ୍ୟ କେତେଟି କଳାର ପରିଚୟ ଏଠାରେ ଦେଉଛୁ ମାତ୍ର ।

---

(୭) Prof. R. G. Bhandarkar's 'Early History of Deccan', page 59 ff, 1896.

ଭୁବନେଶ୍ୱର ମ୍ୟୁଜିୟମ୍‌ରେ ବାଲେଶ୍ୱର ଜିଲ୍ଲାର ଚରମ୍ପା ଗ୍ରାମରୁ ଆନୀତ ତିନୋଟି ମଧ୍ୟଯୁଗୀୟ ଜୈନ ତୀର୍ଥଙ୍କର ମୂର୍ତ୍ତି ଦେଖିବାକୁ ମିଳେ । ଏହି ଚରମ୍ପା ଗ୍ରାମ ଚମ୍ପା ନଗରୀର ଅପଭ୍ରଂଶ ବୋଲି ମନେହୁଏ ଓ ଏହି ଗ୍ରାମରୁ ଆନୀତ ଜୈନ ମୂର୍ତ୍ତିମାନ ମ୍ୟୁଜିୟମ୍‌ରେ ସୁରକ୍ଷିତ । ଏଥିମଧ୍ୟରୁ ତୀର୍ଥଙ୍କର ଅଜିତ ନାଥ ଓ ତୀର୍ଥଙ୍କର ଶାନ୍ତିନାଥଙ୍କର ପ୍ରତିମୂର୍ତ୍ତିଦ୍ୱୟ ନୀଳ ମୁଗୁନି ପଥରରେ ଗଢ଼ା ଓ ମୂର୍ତ୍ତି ତତ୍ତ୍ୱ-ବିଶାରଦମାନଙ୍କ ମତରେ ତାହା ସପ୍ତମ ବା ଅଷ୍ଟମ ଶତାବ୍ଦୀର । ତୃତୀୟ ତୀର୍ଥଙ୍କର ମୂର୍ତ୍ତି କୃଷ୍ଣପଥରରେ ନିର୍ମିତ । ଏହା ହେଉଛି ତୀର୍ଥଙ୍କର ଚନ୍ଦ୍ରପ୍ରଭଙ୍କର ପ୍ରତିମା । କଳାଦୃଷ୍ଟିରୁ ଏହା ପୂର୍ବୋକ୍ତ ଦୁଇ ମୂର୍ତ୍ତି ଅପେକ୍ଷା ନିକୃଷ୍ଟତର ଏବଂ ମୂର୍ତ୍ତିବିଦମାନେ ଏହାକୁ ଦଶମ ଶତାବ୍ଦୀର କଳା ବୋଲି ପ୍ରକାଶ କରିଅଛନ୍ତି ।

ମୟୂରଭଞ୍ଜ ଜିଲ୍ଲାର ଖିଚିଂ, ବାରିପଦା ଓ ବାଲେଶ୍ୱର ଜିଲ୍ଲାର ଗୁଣ୍ଡାଲ୍ ଏବଂ କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଅଞ୍ଚଳରେ ବହୁ ସଂଖ୍ୟକ ଜୈନ ମୂର୍ତ୍ତି ଅଛି । ଖିଚିଂ ମ୍ୟୁଜିୟମ୍‌ରେ ଋଷଭ, ପାର୍ଶ୍ୱନାଥ ଓ ମହାବୀରଙ୍କର କାୟୋତ୍ସର୍ଗ ମୁଦ୍ରାରେ ଦଣ୍ଡାୟମାନ ମୂର୍ତ୍ତିମାନ ସୁରକ୍ଷିତ ହୋଇଛନ୍ତି । ଯେଉଁଥିରୁ ଜଣାପଡ଼େ ଯେ ଖିଚିଂ ଶୈବ କ୍ଷେତ୍ର ହେବା ଅଗରୁ ସେଠାରେ ଜୈନ ଧର୍ମର ପ୍ରାଧାନ୍ୟ ପ୍ରତିଷ୍ଠିତ ହୋଇଥିଲା । ବାରିପଦାର ଜଗନ୍ନାଥ ମନ୍ଦିରରେ ଅତ୍ୟନ୍ତ ସୁନ୍ଦର ଜୈନମୂର୍ତ୍ତି ଦେଖିବାକୁ ମିଳେ । ମନ୍ଦିରର ଅନ୍ତର୍ଦ୍ୱାରରେ କଳା ମୁଗୁନି ପଥରର ଋଷଭନାଥ, ନେମିନାଥ, ପାର୍ଶ୍ୱନାଥ ଓ ମହାବୀରଙ୍କର କାୟୋତ୍ସର୍ଗ ମୁଦ୍ରାବିଶିଷ୍ଟ ପ୍ରତିମୂର୍ତ୍ତିମାନ ଚୂନସିମେଣ୍ଟରେ ଖଞ୍ଜା ହୋଇଛି । ସେ ସବୁ ଖିଚିଂର ଜୈନ ମୂର୍ତ୍ତି ସହିତ କଳାକୁଶଳତାରେ ସମାନ ଜଣାପଡ଼େ । କିନ୍ତୁ ମନ୍ଦିର ବେଢ଼ାରେ ଏକ କ୍ଷୁଦ୍ର ମନ୍ଦିରରେ ସୁରକ୍ଷିତ ମାର୍ବଲ ପଥରରେ ନିର୍ମିତ ପାର୍ଶ୍ୱନାଥଙ୍କର ମୂର୍ତ୍ତି ଦୁଇଟି ଯେ ବହୁ ପରବର୍ତ୍ତୀ ଯୁଗର କଳା, ଏଥିରେ ସନ୍ଦେହ ନାହିଁ । ମୟୂରଭଞ୍ଜର ବଡସାହି ନିକଟସ୍ଥ କୋସାଳ ଗ୍ରାମରେ ପାର୍ଶ୍ୱନାଥଙ୍କର ଏକ ସୁନ୍ଦର ମୂର୍ତ୍ତି ମିଳିଛି । ତା'ଠାରୁ ଆହୁରି ସୁନ୍ଦର ମୂର୍ତ୍ତି ଦେଖିବାକୁ ମିଳେ ବାଲେଶ୍ୱର ଜିଲ୍ଲାର ଗୁଣ୍ଡାଲ୍ ନାମକ ଗ୍ରାମରେ । ଏହି ମୂର୍ତ୍ତିଟି ନିକଟସ୍ଥ ସୋତା ନଦୀଗର୍ଭରୁ ଉଦ୍ଧାର ହୋଇଥିବା କଥା ଲୋକ ମୁଖରୁ ଶୁଣାଯାଏ । ମୂର୍ତ୍ତିଟି ପଦ୍ମପୀଠ ଉପରେ କାୟୋତ୍ସର୍ଗ ମୁଦ୍ରାରେ ଦଣ୍ଡାୟମାନ ଓ ସପ୍ତଫଣା ସର୍ପଦ୍ୱାରା ପରିବେଷ୍ଟିତ । ମୂର୍ତ୍ତିର ଚତୁର୍ଦ୍ଦିଗରେ ଆଠଟି ଗ୍ରହର ମୂର୍ତ୍ତି ଧ୍ୟାନମୁଦ୍ରାରେ ଅଙ୍କିତ ହୋଇଛି । ନବମ ଗ୍ରହ କେତୁ ଏଠାରେ ପରିଦୃଷ୍ଟ ହୁଏ ନାହିଁ; ତଥାପି ମୂର୍ତ୍ତିକୁ ନବଗ୍ରହାଙ୍କିତ ପାର୍ଶ୍ୱନାଥ ବୋଲି ନାମିତ କରାଯାଇପାରେ । ମୂର୍ତ୍ତିର ଉପରିଭାଗରେ ଗନ୍ଧର୍ବ ଓ ବିଦ୍ୟାଧରମାନଙ୍କର ଚିତ୍ର ମଧ୍ୟ ସ୍ପଷ୍ଟରୂପେ ଖୋଦିତ ହୋଇଛି । ପାର୍ଶ୍ୱନାଥଙ୍କର ଡାହାଣ ପାଖରେ ଯକ୍ଷ ଧରଣେନ୍ଦ୍ର ଓ ବାମ ପାଖରେ ଯକ୍ଷିଣୀ ପଦ୍ମାବତୀ ତ୍ରିଭଙ୍ଗୀଠାଣିରେ ଛିଡ଼ା ହୋଇଛନ୍ତି । କୋସାଳର ପାର୍ଶ୍ୱନାଥଙ୍କ

ଅପେକ୍ଷା ଗୁଣ୍ଡାଲ୍‌ର ଏହି ପାର୍ଶ୍ୱନାଥ ମୂର୍ତ୍ତି କଳାଦୃଷ୍ଟିରୁ ସୁନ୍ଦରତର, କିନ୍ତୁ କାଳଦୃଷ୍ଟିରୁ ପରବର୍ତ୍ତୀ ବୋଲି ଅନୁମିତ ହୋଇଥାଏ ।

ମୟୂରଭଞ୍ଜରେ ଖମପୁର ଗ୍ରାମରେ ମହାବୀରଙ୍କର ଯେଉଁ ମୂର୍ତ୍ତିଟି ମିଳିଛି, ତାହା ଅତି ସୁନ୍ଦର ଭାବେ ମୁଗୁନି ପଥରରେ କାୟୋତ୍ସର୍ଗ ମୁଦ୍ରାରେ ଗଢ଼ା ହୋଇଛି । ମହାବୀର ସ୍ୱାମୀଙ୍କ ଉଭୟ ପାର୍ଶ୍ୱରେ ତାଙ୍କର ଯକ୍ଷ ଯକ୍ଷିଣୀଙ୍କ ପ୍ରତିମା ସିଂହପିଠାଣରେ ଅଙ୍କିତ ହୋଇଛି ଓ ସେମାନଙ୍କ ଉପରେ ପ୍ରଭୃତି ତୀର୍ଥଙ୍କରଙ୍କ ଛୋଟ ଛୋଟ ମୂର୍ତ୍ତିମାନ ଖୋଦିତ ହୋଇଛି । କଟକ ସହରର ଚୌଧୁରୀ ବଜାରରେ ଦୁଇଟି ଜୈନ ମନ୍ଦିର ଅଛି । ସେଥିରୁ ଗୋଟିଏ ମନ୍ଦିର ଶିଳ୍ପ ଅନୁସାରେ ନିର୍ମିତ ଓ ଅନ୍ୟଟି ଅଧୁନିକ ଏକ ପ୍ରାସାଦ ରୂପେ ଗଢ଼ା । ଉଭୟ ମନ୍ଦିର ଜୈନ କଳା ଗୌରବରେ ପରିପୂର୍ଣ୍ଣ । ଚବିଶ ତୀର୍ଥଙ୍କର ଏବଂ ଜୈନ ଗଣଧର ଓ ଯକ୍ଷଯକ୍ଷିଣୀମାନଙ୍କର ବିଭିନ୍ନ ଯୁଗର ନାନାବିଧ ମୂର୍ତ୍ତି ଶତ ଶତ ସଂଖ୍ୟାରେ ଏ ମନ୍ଦିର ଦୁଇଟିରେ ସୁରକ୍ଷିତ ଓ ପୂଜିତ । ଏମାନଙ୍କ ମଧ୍ୟରୁ ଅଧିକାଂଶ ଓଡ଼ିଶାରୁ ହିଁ ପ୍ରାପ୍ତ । ପ୍ରଥମୋକ୍ତ ମନ୍ଦିରରେ ଥିବା ମୂର୍ତ୍ତିମାନଙ୍କ ମଧ୍ୟରୁ ସମସ୍ତ ମୂର୍ତ୍ତି ମୁଗୁନି ପଥରରେ ନିର୍ମିତ । ସେମାନଙ୍କ ମଧ୍ୟରୁ ଋଷଭ ନାଥ, ପଦ୍ମପ୍ରଭ, ଶାନ୍ତିନାଥ, ପାର୍ଶ୍ୱନାଥ ଓ ମହାବୀରଂକର ମୂର୍ତ୍ତିମାନ ଅତି ଉତ୍କୃଷ୍ଟ ଭାବରେ ସେଠାରେ ସ୍ଥାନ ପାଇଛନ୍ତି । ଆଦି ତୀର୍ଥଂକର ଋଷଭ ନାଥ ଓ ଶେଷ ତୀର୍ଥଂକର ମହାବୀର ଗୋଟିଏ ପଥରରେ ଅତି ସୁନ୍ଦର ଭାବେ ନିର୍ମିତ ହୋଇଥିବାର ସେଠାରେ ଦେଖାଯାଏ । ଋଷଭଂକ ଲାଞ୍ଛନ ବୃଷଭ ଓ ମହାବୀରଙ୍କର ସିଂହ ଅତି ଜୀବନ୍ତ ରୂପେ ପାଦପୀଠ ତଳେ ଉତ୍କୀର୍ଣ୍ଣ ହୋଇଛନ୍ତି ଓ ଚାମରଧାରୀମାନେ ସେମାନଙ୍କର କର୍ତ୍ତବ୍ୟରେ ବ୍ୟାପୃତ ଅଛନ୍ତି । ଏଠାକାର ପାର୍ଶ୍ୱନାଥ ମୂର୍ତ୍ତିରେ ବହୁ ବୈଶିଷ୍ଟ୍ୟ ଲକ୍ଷ୍ୟ କରାଯାଏ । ସପ୍ତ ଫଣା ସର୍ପ ତାଙ୍କ ଉପରେ ଛତ୍ରାକାରରେ ପରିଶୋଭିତ । ତୀର୍ଥଙ୍କରଙ୍କର ପାଦପୀଠ ଠାରୁ ମସ୍ତକ ପର୍ଯ୍ୟନ୍ତ ତାଙ୍କର ସମସ୍ତ ଶରୀର ସର୍ପଦ୍ୱାରା ପରିବେଷ୍ଟିତ, ଏବଂ ସେ ପାଦପୀଠ ତଳେ ଉଭୟ ପାର୍ଶ୍ୱରେ ଦୁଇ ଜଣ ନାଗୁଣୀଙ୍କଦ୍ୱାରା ଅର୍ଚ୍ଚିତ । ତୀର୍ଥଙ୍କର ଶାନ୍ତିନାଥଙ୍କର ମୂର୍ତ୍ତି କଳା ମୁଗୁନି ପଥରରେ ଅତି ସୁନ୍ଦର ଗଢ଼ା । ତାଂକ ପାଦପୀଠ ତଳେ ଲାଞ୍ଛନ ମୃଗ ଅତି ସୁନ୍ଦର ଭାବେ ଅଙ୍କିତ; ମୂର୍ତ୍ତି କ୍ଷୁଦ୍ରାକାର ହେଲେ ମଧ୍ୟ କଳାକାର ତାର ସୌଷ୍ଠବ ପରିସ୍ଫୁଟ କରିବା ନିମନ୍ତେ ହେଳା ପ୍ରକାଶ କରିନାହାନ୍ତି । ତାହା ଅତି ଜୀବନ୍ତ ଓ ସତେଜ ପରି ମନେହୁଏ । ତୀର୍ଥଂକରଙ୍କର ଚାମରଗ୍ରାହକ ଦୁହେଁ ଉଭୟ ପାର୍ଶ୍ୱରେ ହସ୍ତୀ ଉପରେ ଦଣ୍ଡାୟମାନ ହୋଇ ଚାମର ଚାଳନରେ ବ୍ୟସ୍ତ ।

ତୀର୍ଥଙ୍କରଙ୍କ ପ୍ରଭାମଣ୍ଡଳ ନାନା କାରୁକାର୍ଯ୍ୟ ଖଚିତ, ଓ ମସ୍ତକୋପରି ପ୍ରଦର୍ଶିତ ଛତ୍ର ପୁଷ୍ପ କଳାଦ୍ୱାରା ସମନ୍ୱିତ । ତୀର୍ଥଂକର ପଦ୍ମପ୍ରଭଙ୍କର ମୂର୍ତ୍ତି ଉପରବର୍ଣ୍ଣିତ ପାର୍ଶ୍ୱନାଥ, ଶାନ୍ତିନାଥ ମୂର୍ତ୍ତି ଅପେକ୍ଷା ପ୍ରାଚୀନତର ମନେ ହୁଏ; କାରଣ ସେ ଦୁଇ ମୂର୍ତ୍ତିଙ୍କ ଭଳି ଏହା

ଜୈନ ଦେବଦେବୀଙ୍କ ଦ୍ୱାରା ପରିବେଷ୍ଟିତ ନୁହେଁ ଓ ଏହାର ପ୍ରଭାମଣ୍ଡଳ ଓ ଛତ୍ର ବିଶେଷ କାରୁକାର୍ଯ୍ୟ ବିଶିଷ୍ଟ ହୋଇନାହିଁ । ପାର୍ଶ୍ୱନାଥ ଓ ଶାନ୍ତିନାଥଙ୍କର ପାଦପୀଠ ସହିତ ଏହି ମୂର୍ତ୍ତିର ପାଦପୀଠ ତୁଳନା କରି ଦେଖିଲେ ଏହା ଯେ ସେ ଦୁହିଁଙ୍କ ଠାରୁ ପ୍ରାଚୀନତର ଏଥିରେ ସନ୍ଦେହର ଅବକାଶ ରହେ ନାହିଁ । ଏହି ମୂର୍ତ୍ତିଟିରେ ଅନୁମାନକତାର ଅବକାଶ ରହେ ନାହିଁ । ଏହି ମୂର୍ତ୍ତିଟି ଆନୁମାନିକ ଅଷ୍ଟମ ଶତାବ୍ଦୀର ହେଲେ ପ୍ରୋକ୍ତ ମୂର୍ତ୍ତି ଦୁଇଟି ଦଶମ ଶତାବ୍ଦୀରେ ଆରୋପ କରାଯାଇ ପାରିବ ।

ଏହି ମନ୍ଦିର ଦୁଇଟିରେ କ୍ଷୁଦ୍ରାକୃତି ବିଶିଷ୍ଟ ଚୈତ୍ୟ ଅଛି । ଏମାନଙ୍କ ଚାରି ଦିଗରେ ତୀର୍ଥଙ୍କର ପ୍ରତିମୂର୍ତ୍ତି ଖୁବ୍ ସୁନ୍ଦର ରୂପେ ଅଙ୍କିତ ହୋଇଛି । ଠିକ୍ ଏହିପରି ଚୈତ୍ୟ ମୟୂରଭଞ୍ଜର ବଡ଼ସାହି ଗ୍ରାମରେ ଥିବା ନଗେନ୍ଦ୍ରନାଥ ବସୁ ଉଲ୍ଲେଖ କରିଛନ୍ତି । (୭) ସ୍ଥାନୀୟ ଲୋକେ ସେହି ଚୈତ୍ୟକୁ ଚନ୍ଦ୍ରସେନା କହନ୍ତି । ଏହି ଚୈତ୍ୟଗୁଡ଼ିକ ଯେ ଓଡ଼ିଶାର ଶିଳ୍ପ-କଳାର ନିଦର୍ଶନ, ତାହା ସ୍ପଷ୍ଟ ଜଣାଯାଏ । ସେଗୁଡ଼ିକର ଚୂଡ଼ାରେ ଥିବା ଆମଳକ ଶିଳାରୁ ଜଣାଯାଏ ଯେ ତାହା ଠିକ୍ ଓଡ଼ିଶାର ମନ୍ଦିରମାନଙ୍କର ବେକି, ଆମଳକ ଶିଳା ଓ ଖପୁରି ଅନୁକରଣରେ ଗଢ଼ା ।

ଏହି ମନ୍ଦିରରେ ଉନ୍ନତ ଶିଳାଫଳକ ପ୍ରକଟ ହୋଇଥିବା ଦେଖାଯାଏ । ଏହି ଫଳକର ଉପର ଭାଗରେ ଭରତ ଓ ବାହୁବଳୀଙ୍କ ଦ୍ୱାରା ସେବିତ ଋଷଭ ଦେବଙ୍କର ପଦ୍ମାସନ ମୂର୍ତ୍ତି ଅଛି ଓ ତଦ୍-ନିମ୍ନ ଚବିଶଟି ଦଣ୍ଡାୟମାନ ମୂର୍ତ୍ତି ଅଙ୍କିତ ହୋଇଛି । ଅବିକଳ ଏହିପରି ଫଳକ ଖଣ୍ଡିଏ ମୟୂରଭଞ୍ଜର ଝାଡ଼େଶ୍ୱର ଗ୍ରାମରେ ଥିବା ବସୁମହାଶୟଙ୍କ ପୁସ୍ତକରୁ ଜଣାପଡ଼େ । ଦଣ୍ଡାୟମାନ ମୂର୍ତ୍ତିଗୁଡ଼ିକ ଯେ ଗଣଧର, ପୂର୍ବଧର, ଶ୍ରାବକ ଓ ଶ୍ରାବିକାମାନଙ୍କର ମୂର୍ତ୍ତି, ତାହା ବସୁ ମହାଶୟ ପ୍ରକାଶ କରିଛନ୍ତି । (୮)

କଟକର ବିଭିନ୍ନ ଜୈନ ମନ୍ଦିରରେ ବ୍ରୋଞ୍ଜ ନିର୍ମିତ ତୀର୍ଥଙ୍କର ମୂର୍ତ୍ତି ପୂଜିତ ହୁଏ । ସେମାନଙ୍କ ମଧ୍ୟରୁ ଋଷଭନାଥ, ପାର୍ଶ୍ୱନାଥ ଓ ମହାବୀରଙ୍କର ମୂର୍ତ୍ତି ବିଶିଷ୍ଟ ସ୍ଥାନ ଅଧିକାର କରିଥିବା ଦେଖାଯାଏ । ମୂର୍ତ୍ତିଗୁଡ଼ିକରୁ ଅଧିକାଂଶ ମଧ୍ୟଯୁଗୀୟ, କିନ୍ତୁ କେତେକ ମୂର୍ତ୍ତି ପନ୍ଦରଶ ଓ ଅଠରଶ ଶତାବ୍ଦୀରେ ନିର୍ମିତ ହୋଇଥିବା ବିଷୟ ସେମାନଙ୍କ ପାଦପୀଠସ୍ଥ ଲିପିରୁ ଜଣାପଡ଼େ । ଏହି ମନ୍ଦିରର ଏକ ଉଲ୍ଲେଖଯୋଗ୍ୟ ମୂର୍ତ୍ତି ହେଉଛି ଏକ ଅଦୃଶ୍ୟ ତୀର୍ଥଙ୍କର ମୂର୍ତ୍ତି । ଏହା ଚୈତ୍ୟାକାର ବିଶିଷ୍ଟ ଏକ ଧାତୁ-ଫଳକରେ ଅତି କୌଶଳରେ ଅଙ୍କିତ । ତୀର୍ଥଙ୍କର ଦଣ୍ଡାୟମାନ ହୋଇଥିବା ଅଂଶରେ ଖୋଳ କରାଯାଇଥିବା ଯୋଗୁଁ ସେଥିରେ ବାସ୍ତବ ମୂର୍ତ୍ତିବଦଳରେ ଅଦୃଶ୍ୟ ମୂର୍ତ୍ତି ପ୍ରତୀୟମାନ ହୁଏ ।

ଚୌଦ୍ୱାରରେ ମଧ୍ୟ ବହୁ ତୀର୍ଥଙ୍କରଙ୍କ ମୂର୍ତ୍ତି ମିଳିଛି । ମୋର ଦୁର୍ଗୀୟ ଜନନୀ

(୭) Archaelogical Survey of Mayurbhanj, N. N. Vasu, page XCVII.

(୮) Ibid—page XLVI

ମୂର୍ତ୍ତି ଗଢ଼ନ କରିବାରେ ବହୁ ଆଗ୍ରହଣୀ ଥିଲେ । ସେ ଅନ୍ତ ଦୂରର ଜୈନତୀର୍ଥଙ୍କର ମୂର୍ତ୍ତିମାନ ସଂଗ୍ରହ କରି ଆମ୍ଭର ଚୌଦ୍ୱାରସ୍ଥ କୁଠିରେ ସଂରକ୍ଷିତ କରୁଥିଲେ । ପରେ କୁଠିର ନିକଟରେ ଏକ କ୍ଷୁଦ୍ର ମନ୍ଦିର ନିର୍ମାଣ କରି ତହିଁରେ ଏହି ମୂର୍ତ୍ତିମାନଙ୍କର ପ୍ରତିଷ୍ଠା କରାଯାଇଥିଲା; କିନ୍ତୁ ମୋର ଜନସ ଏହି ମନ୍ଦିରର ପ୍ରଧାନ ଦେବତା ଋଷଭ ଦେବଙ୍କୁ ଶିବ ରୂପେ ପୂଜିତ କରି ଦେଉଅଛନ୍ତି । ତାଙ୍କ ଜଟାଜୂଟ ଯୁକ୍ତ ମସ୍ତକ ଶୋଭିତ ଓ ଧ୍ୟାନତତ୍ପର ଜଡ଼ିତ କରାଇ ଶିବଙ୍କ ପ୍ରତିମୂର୍ତ୍ତି ସ୍ୱରୂପ ପ୍ରକଟ କରିଥିଲେ ମଧ୍ୟ, ତାଙ୍କର ଜୈନ ସଂକେତ ଚିହ୍ନ ଭାବେ ପରିଲକ୍ଷିତ ହୁଏ । ତାଙ୍କର ପାଦପୀଠ ତଳେ ବୃଷଭ ଲାଞ୍ଛନ ପରିଦୃଷ୍ଟ ହୁଏ ଓ କ୍ରମବର୍ଦ୍ଧନ ଭରତ ଓ ବାହୁବଳୀ ମଧ୍ୟ ଉଭୟ ପାର୍ଶ୍ୱରେ ଦଣ୍ଡାୟମାନ ।

ପ୍ରାଚୀନତମ ଅବଶେଷମାନଙ୍କରେ ମଧ୍ୟ-ଯୁଗରେ ଯେଉଁ ସଭ୍ୟତାର ବିକାଶ ଘଟିଥିଲା ତହିଁରେ ଜୈନଧର୍ମର ଅଭ୍ୟୁଦୟ ଘଟିଥିବା ବିଷୟ ଜଣାପଡ଼େ । ଜୈନ ତୀର୍ଥଙ୍କର ଯକ୍ଷ ଓ ଯକ୍ଷିଣୀମାନଙ୍କର ସୁନ୍ଦରକଳା ଚିତ୍ରିତ ପ୍ରତିମୂର୍ତ୍ତି ପ୍ରାଚୀ ଉପତ୍ୟକାର ନାନା ସ୍ଥାନରେ ପରିଦୃଷ୍ଟ ହୋଇଥାଏ । ଅତାପୁର ଗ୍ରାମର ଦ୍ୱାରଦେଶର ଠିକ ମନ୍ଦିରରେ ଋଷଭ-ନାଥଙ୍କର ଯେ ଦୁଇଟି ପ୍ରତିମା ସଂରକ୍ଷିତ ହୋଇଅଛି । ପ୍ରତିମାଟି ସୂକ୍ଷ୍ମ ସୂକ୍ଷ୍ମ ତୀର୍ଥଙ୍କରମାନଙ୍କର ମୂର୍ତ୍ତିଦ୍ୱାରା ପରି-ଶୋଭିତ । ମୂର୍ତ୍ତିର ପ୍ରଭାମଣ୍ଡଳ ନାନା ପରିପାଟିରେ ସଜା ହୋଇଛି । ତୀର୍ଥଙ୍କର କାଉସ୍ସର୍ଗ ମୁଦ୍ରାରେ ନଗ୍ନ ଭାବରେ ଦଣ୍ଡାୟମାନ ହୋଇଥିଲେ ମଧ୍ୟ ସେ ଦୁଇ କାନରେ କୁଣ୍ଡଳ ଓ ମସ୍ତକରେ ନାନା ରତ୍ନ ବିଭୂଷିତ କିରୀଟ ଧାରଣ କରିଛନ୍ତି । ମନୋହର ଅଙ୍କିତ ହୋଇଛି ଛତ୍ର ଓ ଛତ୍ର ଉପରେ ତାଙ୍କର କେବଳ ବୃକ୍ଷର ଶାଖା । ବୃଷଭ ଲାଞ୍ଛନ ପାଦପୀଠ ତଳେ ଦେଖାଯାଏ ଓ ବୃକ୍ଷଟିର ଦୁଇ ପାର୍ଶ୍ୱରେ ଗୋଟିଏ ଗୋଟିଏ ଉପାସିକା ଓ ସିଂହ ମୂର୍ତ୍ତି ଅଙ୍କିତ ସିଂହ ଥିବା ହେତୁ, ତାଙ୍କୁ ସିଂହାସନ କୁହାଯାଇପାରେ ।

ଅତାପୁର ଠାରେ ଆଉ ଏକ ତୀର୍ଥଙ୍କର ମୂର୍ତ୍ତି ପରିଦୃଷ୍ଟ ହୁଏ । ଦୁଃଖର ବିଷୟ ଏହାର ମୁଖ ଅଂଶ ଭାଙ୍ଗିଯାଇଛି, ତେଣୁ ମୂର୍ତ୍ତିଟିର ଲାଞ୍ଛନ ଦେଖିବାକୁ ମିଳେ ନାହିଁ । ମୂର୍ତ୍ତିଟିର ପ୍ରଭାମଣ୍ଡଳ ଉଭୟଙ୍କ ମୂର୍ତ୍ତି ଚକ୍ର ନାନା ପରିପାଟୀରେ ଶୋଭିତ ଏହା କପାଟଶୋଭିତ ନ ହେଲେ ମଧ୍ୟ ମସ୍ତକୋପରି ତ୍ରିଛତ୍ରାକାର ଛତ୍ର ପରିଦୃଷ୍ଟ ହୁଏ । କଳାଦୃଷ୍ଟିରୁ ଉକ୍ତ ମୂର୍ତ୍ତି ଏକାର୍ଣ୍ଣ ନ ହେବେ । ଜୈନ ଧର୍ମର ଏହି ଉଭୟ ମୂର୍ତ୍ତି ପୂର୍ବେ ଏଠାରେ ସନ୍ନିବେଶିତ ହୋଇ ପୂଜିତ ହେଉଥିଲେ ।

ଆଦିନାଥ ଋଷଭ ଓ ଶେଷ ତୀର୍ଥଙ୍କର ମହାବୀରଙ୍କୁ ଏକତ୍ର ପୂଜା କରିବା ପଦ୍ଧତି ମଧ୍ୟଯୁଗରେ ପ୍ରଚଳିତ ଥିଲା । ଏ ଦୁହିଁଙ୍କ ପ୍ରତିମୂର୍ତ୍ତି ଗୋଟିଏ ଫଳକରେ ଅଙ୍କିତ ହୋଇ କଟକସ୍ଥ ଜୈନ ମନ୍ଦିରରେ ପୂଜିତ ହେଉଥିବା ପୂର୍ବେ କୁହାଯାଇଛି । ଏହିପରି ଯେ ଫଳକ ଉତ୍କଳରୁ ବିଲାତକୁ ନିଆଯାଇ ସେଠାରେ Victoria Albert Museum ରେ ସଂରକ୍ଷିତ ହୋଇଛି । ଏହି ଦୃଷ୍ଟିରୁ ଅତାପୁରର

ଭଗ୍ନ ତୀର୍ଥଙ୍କର ବିଗ୍ରହ ଯେ ମହାବୀରଙ୍କର, ଏଥିରେ ସନ୍ଦେହ ନାହିଁ । (୯)

ଜୈନ କଳାକ୍ଷେତ୍ରରେ ଯକ୍ଷ ଓ ଯକ୍ଷିଣୀମାନଙ୍କର ଅତି ବିଶିଷ୍ଟ ସ୍ଥାନ ଥିବା ଇତିପୂର୍ବେ ସୂଚାଇ ଦିଆଯାଇଛି । ଖଣ୍ଡଗିରିର ନବମୁନି ଓ ବାରଭୁଜୀ ଗୁମ୍ଫାରେ ତୀର୍ଥଙ୍କରମାନଙ୍କ ସହିତ ଯକ୍ଷ ଓ ବିଶେଷତଃ ଯକ୍ଷିଣୀଙ୍କର ଚିତ୍ର ସନ୍ନିବେଶିତ ହୋଇଛି । ଜୈନମାନେ ସେମାନଙ୍କୁ ଶାସନ ଦେବତା ଓ ଜୈନ ଧର୍ମର ସଂରକ୍ଷକ ରୂପେ ସମ୍ମାନ ପ୍ରଦାନ କରିଥାନ୍ତି । ଜୈନଶାସ୍ତ୍ର ପ୍ରତିଷ୍ଠାକଳ୍ପରେ ଉଲ୍ଲେଖ ଅଛି ଯେ, ଶାସନଦେବତାମାନେ ଜୈନଧର୍ମର ରକ୍ଷଣ ତଥା ଅଭିବୃଦ୍ଧି ସାଧନରେ ସର୍ବଦା ସଚେଷ୍ଟ ଥାନ୍ତି । (୧୦)

ଗ୍ରାଚୀ ଅବବାହିକାର ଲତାହରଣ ଗ୍ରାମରେ ଗୋଟିଏ ଫଳକରେ ଅଙ୍କା ଯକ୍ଷ ଓ ଯକ୍ଷିଣୀଙ୍କର ଏକ ଯୁଗଳ ମୂର୍ତ୍ତି ଅଛି । ଫଳକଟି ନୀଳ ମୁଗୁନି ପଥରର । ଏହି ଯୁଗଳ ମୂର୍ତ୍ତି ଅର୍ଦ୍ଧପର୍ଯ୍ୟଙ୍କାସନ ହୋଇ ପଦ୍ମପୀଠ ଉପରେ ଉପବେଶନ କରି ଅଛନ୍ତି ଓ ଉଭୟେ ଡାହାଣ ହାତରେ ଫଳଟିଏ ଧାରଣ କରିଛନ୍ତି । ଉଭୟଙ୍କର ବେଶଭୂଷା ପ୍ରାୟ ଏକ ଧରଣର । ଯଥା—କାନରେ କୁଣ୍ଡଳ, ବେକରେ

(୯) R. P. Chandra's Mediaeval Indian Sculptures in the British museum, Plate XXII.

(୧୦) ଯଥାଽ ଶାସନଂ ଜୈନଂ ସଦୈଃ ପ୍ରତ୍ୟୂହନାଶିନଃ ଅଭିପ୍ରେତ ସମୃଦ୍ଧ୍ୟର୍ଥ ଭୂୟସ୍ତୁ ଶାସନଦେବତାଃ, Pratistha Kalpa, page 30.

ମୁକ୍ତାହାର, ସ୍କନ୍ଧରେ ଉପବୀତ, ବାହୁରେ ବାହୁଟି; ଏପରି କି ଦୁହିଁଙ୍କର ପରିଚ୍ଛଦ ମଧ୍ୟ ଏକ ପ୍ରକାରର । କିନ୍ତୁ ପାର୍ଥକ୍ୟ ଦେଖାଯାଏ ଶିରୋଭୂଷଣରେ । ଯକ୍ଷ ପ୍ରତିମାଙ୍କର ମସ୍ତକରେ ପିରାମିଡ଼ ଆକୃତି ଉଚ୍ଚ କିରୀଟ ଅଛି ଓ ଯକ୍ଷିଣୀଙ୍କର ମସ୍ତକରେ ସୁସଜ୍ଜିତ କବରୀ ଶୋଭା ପାଉଛି । ଉଭୟେ ଆମ୍ର ବୃକ୍ଷ ତଳେ ଉପବେଶନ କରି ଧ୍ୟାନମଗ୍ନ ଅଛନ୍ତି । ସେମାନଙ୍କର ଅର୍ଦ୍ଧନିମୀଳିତ ଚକ୍ଷୁର ଦୃଷ୍ଟି ନାସାଗ୍ର ଉପରେ କେନ୍ଦ୍ରୀଭୂତ । ଧ୍ୟାନମଗ୍ନ ହୋଇଥିଲେହେଁ, ଉଭୟଙ୍କର ଓଠରେ ଫୁଟିଛି ପ୍ରଶାନ୍ତ ହସରେଖା । ଉଭୟଙ୍କ ମଧ୍ୟରେ ବୃକ୍ଷ ଦେବତା ହୋଇରେ ଝୁଲୁଛନ୍ତି । ସର୍ବୋପରି ଅଙ୍କିତ ହୋଇଛି ତୀର୍ଥଙ୍କରଙ୍କ ମୂର୍ତ୍ତି । ଦୁଇ ଜଣ ଚାମରଧାରୀ ଭକ୍ତ ତୀର୍ଥଙ୍କରଙ୍କ ସେବାରେ ବ୍ୟାପୃତ । ଯକ୍ଷ ଯୁଗଳଙ୍କର ପଦ୍ମପୀଠ ତଳେ ସାତୋଟି ଛୋଟ ଛୋଟ ମୂର୍ତ୍ତି ଅତି ସୁନ୍ଦରରେ ଅଙ୍କିତ ହୋଇଛି । ଏହି ଯକ୍ଷ ଓ ଯକ୍ଷୀ ହେଉଛନ୍ତି ଗୋମେଧ ଓ ଅମ୍ବିକା । ଡ. ନବୀନ-କୁମାର ସାହୁ ସେମାନଙ୍କୁ କହନ୍ତି କୁଷ୍ମାଣ୍ଡ ଓ କୁଷ୍ମାଣ୍ଡୀ । ଏହିପରି ଆଉ ଏକ ଯକ୍ଷ ଯୁଗଳଙ୍କର ମୂର୍ତ୍ତି ଓଡ଼ିଶାରୁ ନିଆଯାଇ ଲଣ୍ଡନ Victoria Albert Museum ରେ ସଂରକ୍ଷିତ ହୋଇଛି । ସେମାନଙ୍କ ତଳେ ଗୁପ୍ତୋତ୍ତର ଯୁଗର ଅକ୍ଷରରେ ଲେଖା ହୋଇଛି ଅନନ୍ତ-ବୀର୍ଯ୍ୟ । ତେଣୁ ତାହା ଯକ୍ଷ ଅନନ୍ତବୀର୍ଯ୍ୟ ଓ ତାଙ୍କ ଯକ୍ଷୀଙ୍କ ପ୍ରତିମୂର୍ତ୍ତି ।

ବର୍ତ୍ତମାନ ଓଡ଼ିଶାରେ ଥିବା ତିନୋଟି ଜୈନ ମନ୍ଦିରର ବର୍ଣ୍ଣନା କରିବା ବିଧେୟ । ଏ ମନ୍ଦିରଗୁଡ଼ିକ ଅତି

ଆଧୁନିକ । ଖଣ୍ଡଗିରି ଚୂଡ଼ାରେ ଯେଉଁ ମନ୍ଦିରଟି ଅଛି, ତାହା ଅଠରଶ ଶତାବ୍ଦୀର ଶେଷ ବେଳକୁ ନିର୍ମିତ ହୋଇଥିଲା । ଏହି ମନ୍ଦିରଟି ଯେଉଁ ଶୈଳୀରେ ତିଆରି ତାହାକୁ ଓଡ଼ିଶାର ଶିଳ୍ପ ଶାସ୍ତ୍ରରେ କୁହାଯାଏ ଭଦ୍ର । କଟକ ନିବାସୀ ଦିଗମ୍ବର ପନ୍ଥୀ ମଞ୍ଜୁ ଚୌଧୁରୀ ଓ ତାଙ୍କ ପୁତୁରା ଶ୍ରୀ ଭବାନୀବାବୁ ହେଉଛନ୍ତି ଏହି ମନ୍ଦିର ନିର୍ମାଣକର୍ତ୍ତା । (୧୧) ରାଜେନ୍ଦ୍ରଲାଲ ମିତ୍ରଙ୍କ ସମୟରେ ଏ ମନ୍ଦିର ଭିତରେ ପୂଜିତ ହେଉଥିଲେ କାୟୋତ୍ସର୍ଗ ଉପରେ ବସ୍ତ୍ରାବୃତ ମହାବୀରଙ୍କର କଳା ମୁଗୁନି ପଥରର ବିଗ୍ରହ । କିନ୍ତୁ ଯେତେବେଳେ Puri District Gazetteer ଲେଖା ହେଲା ସେତେବେଳେ ୫ ଗୋଟି ଜୈନ ତୀର୍ଥଙ୍କରଙ୍କର ମୂର୍ତ୍ତି ସେଠାରେ ପୂଜିତ ହେଉଥିବାର ଦେଖାଯାଏ । (୧୨) କିନ୍ତୁ ଏବେ ଉକ୍ତ ମନ୍ଦିରର ପ୍ରଧାନ ଦେବତା ହେଉଛନ୍ତି ଋଷଭଦେବ ଓ ତାହାଙ୍କର ଧଳା ମାର୍ବଲ ପଥରରେ ନିର୍ମିତ ଯୋଗାସନ ମୂର୍ତ୍ତି ମନ୍ଦିରର ଗର୍ଭଗୃହ ମଧ୍ୟସ୍ଥଳୀରେ ପ୍ରତିଷ୍ଠା କରାଯାଇଛି । ମନ୍ଦିରର ଡାହାଣ ପାର୍ଶ୍ୱରେ ତୀର୍ଥଙ୍କର ପାର୍ଶ୍ୱନାଥଙ୍କର ଏକ ବିରାଟ କୃଷ୍ଣମର୍ମର ମୂର୍ତ୍ତି ଅଳ୍ପ କେତେବର୍ଷ ହେଲା ସ୍ଥାପନ କରାଯାଇଛି । ମନ୍ଦିରର ବାମପାର୍ଶ୍ୱର ଏକ କୋଣରେ ଯେଉଁ ନୂଆ ମନ୍ଦିର ଅଛି ସେଥିରେ ରକ୍ଷିତ ହୋଇଥିବା ବିଗ୍ରହକୁ ଲୋକେ କହନ୍ତି କାଳଙ୍ଗ ଜିନ ।

କଟକର ଚୌଧୁରୀ ବଜାରରେ ଯେଉଁ ଜୈନ ମନ୍ଦିର ପରିଦୃଷ୍ଟ ହୁଏ, ତାହା ନାଗର ଶୈଳୀରେ ନିର୍ମିତ । ଏହାକୁ ଓଡ଼ିଶାର ଶିଳ୍ପଶାସ୍ତ୍ରରେ କହନ୍ତି ରେଖା ଶୈଳୀ । ସମାନଙ୍କୁ ଲଗି ଯେଉଁ ଜଗମୋହନଟି ନିର୍ମିତ, ତା'ର ଶୈଳୀ ହେଉଛି ଭଦ୍ର । ମନ୍ଦିରଟି ବହୁ କାରୁକାର୍ଯ୍ୟ ଖଚିତ ଓ ଅତି ସୂକ୍ଷ୍ମ ଭାବରେ ପରିଶୋଭିତ । ଓଡ଼ିଶାର ଆଧୁନିକ ଶିଳ୍ପକଳାର ଏହା ଏକ ବିଶିଷ୍ଟ ନିଦର୍ଶନ । ଏ ମନ୍ଦିରର ନିର୍ମାତା ହେଉଛନ୍ତି କଟକର ସରଓ୍ୱାର ପରିବାର । ଏହି ପରିବାର ଆଜି ପର୍ଯ୍ୟନ୍ତ ଏହି ମନ୍ଦିରର ରକ୍ଷଣାବେକ୍ଷଣରେ ବ୍ୟାପୃତ ।

ମନ୍ଦିର ମଧ୍ୟରେ ମୁଗୁନି ପଥରରେ ନିର୍ମିତ ଅସଂଖ୍ୟ ଜୈନ ବିଗ୍ରହ ରଖା ହୋଇଛି । କିନ୍ତୁ ମୁଖ୍ୟ ବିଗ୍ରହ ହେଉଛନ୍ତି ଋଷଭଦେବ ।

ପରିଶେଷରେ ମୋର ମାଆ ନିର୍ମାଣ କରିଥିବା ଚୌଦ୍ୱାରସ୍ଥ ଜୈନ ମନ୍ଦିରର ଉଲ୍ଲେଖ ଏଠାରେ କରୁଛି ।

ମନ୍ଦିରଟି ଅତି ଆଧୁନିକ ଏବଂ ଅତି କ୍ଷୁଦ୍ର । ଏହାର ସ୍ଥାନ ନିର୍ଦ୍ଦିଷ୍ଟ କରିବା ସମ୍ଭବ ନୁହେଁ । କାରଣ ଏହା 'ରେଖା' ଓ 'ଭଦ୍ର' ଉଭୟର ସମ୍ମିଶ୍ରଣ । ଏହି ମନ୍ଦିରର ଉପାସ୍ୟ ଦେବତାଙ୍କ କଥା ଆଗରୁ କୁହାଯାଇଛି । ସେ ହେଉଛନ୍ତି ଋଷଭଦେବ । ଏହି ଜୟପୁର ଋଷଭଦେବଙ୍କୁ ମୋର ମାଆ ମୁଣ୍ଡରେ ସାପଫଣା ଦେଇ ଶିବରୂପେ ରଥ କରିଦେଇ ଅଛନ୍ତି ।

---

(୧୧) Antiquities of Orissa. R. L. Mitra. page—35

(୧୨) Bengal District Gazetteer, Puri, page—264

ଜୈନ ଆଦିନାଥ ଋଷଭଦେବ ଅଙ୍କ ଦେଉଳଚନ୍ଦ୍ର ହିନ୍ଦୁଙ୍କର 'ମାଙ୍କଣ୍ଡ' ।

## ଚବିଶ ତୀର୍ଥଙ୍କରଙ୍କର ବିଶଦ ବର୍ଣ୍ଣନା

୧ । ତୀର୍ଥଙ୍କର ଋଷଭଦେବ ବା ଆଦିନାଥ—ଜନ୍ମସ୍ଥାନ ବିନୀତନଗରୀ, ପିତା ନାଭିରାଜା, ମାତା ମରୁଦେବୀ, ବିମାନ ସର୍ବାର୍ଥସିଦ୍ଧ, ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ବଟ ବା ନ୍ୟଗ୍ରୋଧ, ଲାଞ୍ଛନ ବୃଷ ବା ଧର୍ମଚକ୍ର, ଯକ୍ଷ ଗୋମୁଖ, ଯକ୍ଷୀ ଚକ୍ରେଶ୍ୱରୀ ଅପ୍ରତିଚକ୍ର, ଚଉଁରଧାରକ ଭରତ ଏବଂ ବାହୁବଳୀ ।

୨ । ତୀର୍ଥଙ୍କର ଅଜିତନାଥ—ଜନ୍ମସ୍ଥାନ ଅଯୋଧ୍ୟା, ପିତା ଜିତଶତ୍ରୁ, ମାତା ବିଜୟମାତା, ବିମାନ ବିଜୟ, ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ଶାଳ, ଲାଞ୍ଛନ ଗଜ, ଯକ୍ଷ ମହାଯକ୍ଷ, ଯକ୍ଷୀ ଅଜିତବାଳା (ଶ୍ୱେ) ରୋହିଣୀ (ଦି), ଚଉଁରଧାରକ ସଗରଚକ୍ରୀ ।

୩ । ତୀର୍ଥଙ୍କର ସମ୍ଭବନାଥ—ଜନ୍ମସ୍ଥାନ ଶ୍ରାବସ୍ତୀ, ପିତା ଜିତାରି, ମାତା ସେନମାତା, ବିମାନ ଉପରିମଗ୍ରୈବେୟକ, ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ପ୍ରୟାଳ, ଲାଞ୍ଛନ ତୁର୍ଯ୍ୟ ବା ଅଶ୍ୱ, ଯକ୍ଷ ତ୍ରିମୁଖ, ଯକ୍ଷୀ ଦୁରିତାରି (ଶ୍ୱେ), ପ୍ରଜ୍ଞପ୍ତି (ଦି) ଚଉଁରଧାରକ ସତ୍ୟବୀର୍ଯ୍ୟ ।

୪ । ତୀର୍ଥଙ୍କର ଅଭିନନ୍ଦନନାଥ—ଜନ୍ମସ୍ଥାନ ଅଯୋଧ୍ୟା, ପିତା ସମ୍ବରରାଜ, ମାତା ସିଦ୍ଧାର୍ଥା, ବିମାନ ଜୟନ୍ତ, ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ପ୍ରିୟଙ୍ଗୁ, ଲାଞ୍ଛନ କପି, ଯକ୍ଷ ନାୟକ (ଶ୍ୱେ), ଯକ୍ଷେଶ୍ୱର (ଦି), ଯକ୍ଷୀ କାଳିକା (ଶ୍ୱେ) ବଜ୍ରଶୃଙ୍ଖଳା (ଦି) ଚଉଁରଧାରକ···।

୫ । ତୀର୍ଥଙ୍କର ସୁମତିନାଥ—ଜନ୍ମସ୍ଥାନ ଅଯୋଧ୍ୟା, ପିତା ମେଘରାଜ, ମାତା ମଙ୍ଗଳା, ବିମାନ ଜୟନ୍ତ, ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ଶାଳ, ଲାଞ୍ଛନ କ୍ରୌଞ୍ଚ, ଯକ୍ଷ ତୁମ୍ବୁରୁ, ଯକ୍ଷୀ ମହାକାଳୀ (ଶ୍ୱେ) ପୁରୁଷଦତ୍ତା (ଦି), ଚଉଁରଧାରକ ମିତ୍ରବୀର୍ଯ୍ୟ ।

୬ । ତୀର୍ଥଙ୍କର ପଦ୍ମପ୍ରଭ—ଜନ୍ମସ୍ଥାନ କୌଶାମ୍ବି, ପିତା ଶ୍ରୀଧର, ମାତା ସୁସୀମା, ବିମାନ ଉପରିମଗ୍ରୈବେୟକ, ବର୍ଣ୍ଣ ରକ୍ତାଭ, କେବଳବୃକ୍ଷ ଛତ୍ରାଭ, ଲାଞ୍ଛନ ରକ୍ତକମଳ, ଯକ୍ଷ କୁସୁମ, ଯକ୍ଷୀ ଅଚ୍ୟୁତା (ଶ୍ୱେ) ଶ୍ୟାମା (ଶ୍ୱେ) ମନୋବେଗା (ଦି), ଚଉଁରଧାରକ ଦମଦ୍ୟୁତି ।

୭ । ତୀର୍ଥଙ୍କର ସୁପାର୍ଶ୍ୱନାଥ—ଜନ୍ମସ୍ଥାନ ବାରାଣସୀ, ପିତା ପ୍ରତିଷ୍ଠରାଜ, ମାତା ପୃଥ୍ୱୀ, ବିମାନ ମଧ୍ୟମଗ୍ରୈବେୟକ, ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ଶିରୀଷ, ଲାଞ୍ଛନ ସ୍ୱସ୍ତିକ ଓ ସର୍ପ, ଯକ୍ଷ ମାତଙ୍ଗ (ଶ୍ୱେ) ବାରନନ୍ଦୀ (ଦି), ଯକ୍ଷୀ ଶାନ୍ତା (ଶ୍ୱେ) କାଳୀ (ଦି), ଚଉଁରଧାରକ ଧର୍ମବୀର୍ଯ୍ୟ ।

୮ । ତୀର୍ଥଙ୍କର ଚନ୍ଦ୍ରପ୍ରଭ—ଜନ୍ମସ୍ଥାନ ଚନ୍ଦ୍ରପୁରୀ, ପିତା ମହାସେନରାଜ, ମାତା ଲକ୍ଷଣା, ବିମାନ ବୈଜୟନ୍ତ, ବର୍ଣ୍ଣ ଶ୍ୱେତାଭ, କେବଳବୃକ୍ଷ ନାଗକେଶର, ଲାଞ୍ଛନ ଚନ୍ଦ୍ର, ଯକ୍ଷ ବିଜୟ (ଶ୍ୱେ) ଶ୍ୟାମ (ଦି), ଯକ୍ଷୀ ଭୃକୁଟୀ (ଶ୍ୱେ) ଜ୍ୱାଳାମାଳିନୀ (ଦି), ଚଉଁରଧାରକ ଧନବୀର୍ଯ୍ୟ ।

୯ । ତୀର୍ଥଙ୍କର ସୁବିଧିନାଥ ବା ପୁଷ୍ପଦନ୍ତ—ଜନ୍ମସ୍ଥାନ କାକନ୍ଦୀନଗର ବା କିଷ୍କିନ୍ଧ୍ୟାନଗର, ପିତା ସୁଗ୍ରୀବରାଜ, ମାତା ରାମରାଣୀ, ବିମାନ ଆନନ୍ତ ଦେବ-

ଲୋକ, ବର୍ଣ୍ଣ ଶ୍ୱେତାଭ, କେବଳବୃକ୍ଷ ମଲ୍ଲୀ ବା ଶାଳ, ଲାଞ୍ଛନ ମକର (ଶ୍ୱେ) କଙ୍କଡ଼ା (ଦି), ଯକ୍ଷ ଅଜିତ, ଯକ୍ଷୀ ସୁତାରକା (ଶ୍ୱେ) ମହାକାଳୀ (ଦି), ଚଉଁରଧାରକ ମାଘବଟରାଜ ।

୧୦ । ତୀର୍ଥଙ୍କର ଶୀତଳନାଥ— ଜନ୍ମସ୍ଥାନ ଭଦ୍ରିକପୁର ବା ଭଦଲପୁର ବା ମଲୟପୁର, ପିତା ଦୃଢ଼ରଥରାଜ, ମାତା ନନ୍ଦା, ବିମାନ ଅଚ୍ୟୁତ ଦେବଲୋକ, ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ବିଲ୍ୱ ବା ପ୍ରିୟଙ୍ଗୁ, ଲାଞ୍ଛନ ଅଶ୍ୱତ୍ଥ ଶ୍ରୀବତ୍ସ ଚିହ୍ନକ, ଯକ୍ଷ ବ୍ରହ୍ମା, ଯକ୍ଷୀ ଅଶୋକା (ଶ୍ୱେ) ମାନବୀ (ଦି), ଚଉଁରଧାରକ ସିମଙ୍କରାଜ ।

୧୧ । ତୀର୍ଥଙ୍କର ଶ୍ରେୟାଂଶନାଥ— ଜନ୍ମସ୍ଥାନ ସିଂହପୁରୀ, ପିତା ବିଷ୍ଣୁରାଜ, ମାତା ବିଷ୍ଣା, ବିମାନ ଅଚ୍ୟୁତ ଦେବଲୋକ, ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ତୁମ୍ବୁର ବା ତିନ୍ଦୁକ, ଲାଞ୍ଛନ ଗଣ୍ଡକ, ଯକ୍ଷ ଯକ୍ଷେତ (ଶ୍ୱେ) ଈଶ୍ୱର (ଦି), ଯକ୍ଷୀ ଶ୍ରୀବତ୍ସାଦେବୀ (ଶ୍ୱେ) ମାନବୀ (ଶ୍ୱେ) ଗୌରୀ (ଦି), ଚଉଁରଧାରକ ତ୍ରିପୃଷ୍ଠରାଜ ।

୧୨ । ତୀର୍ଥଙ୍କର ବସୁପୂଜ୍ୟ— ଜନ୍ମସ୍ଥାନ ଚମ୍ପାପୁରୀ, ପିତା ବସୁପୂଜ୍ୟ, ମାତା ଜୟା, ବିମାନ ପ୍ରାଣତ ଦେବଲୋକ, ବର୍ଣ୍ଣ ରକ୍ତାଭ, କେବଳବୃକ୍ଷ ପାଟଳ ବା କଦମ୍ବ, ଲାଞ୍ଛନ ମହିଷୀ, ଯକ୍ଷ କୁମାର, ଯକ୍ଷୀ ପ୍ରଚଣ୍ଡ (ଶ୍ୱେ) ଚଣ୍ଡ (ଶ୍ୱେ) ଗାନ୍ଧାରୀ (ଦି), ଚଉଁରଧାରକ ଦ୍ୱିପୃଷ୍ଠ ବାସୁଦେବ ।

୧୩ । ତୀର୍ଥଙ୍କର ବିମଳନାଥ— ଜନ୍ମସ୍ଥାନ କାମ୍ପିଲ୍ୟପୁର (ଫରାକାବାଦ), ପିତା କୃତବର୍ମରାଜ, ମାତା ଶ୍ୟାମା, ବିମାନ ମହାଶର ଦେବଲୋକ, ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ଜମ୍ବୁ, ଲାଞ୍ଛନ ବରାହ, ଯକ୍ଷ ଷଣ୍ମୁଖ (ଶ୍ୱେ) ଶ୍ୱେତମ୍ (ଦି), ଯକ୍ଷୀ ବିଜୟା (ଶ୍ୱେ) ବିଦିତା (ଶ୍ୱେ) ବୈରୋଟୀ (ଦି), ଚଉଁରଧାରକ ସ୍ୱୟମ୍ଭୂ ବାସୁଦେବ ।

୧୪ । ତୀର୍ଥଙ୍କର ଅନନ୍ତଜିତ ବା ଅନାଥନାଥ— ଜନ୍ମସ୍ଥାନ ଅଯୋଧ୍ୟା, ପିତା ସିଂହସେନ, ମାତା ସୁଯଶା, ବିମାନ ପ୍ରାଣତ ଦେବଲୋକ, ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ଅଶୋକ ବା ଅଶ୍ୱତ୍ଥ, ଲାଞ୍ଛନ ଶ୍ୟେନ (ଶ୍ୱେ) ଭଲ୍ଲୁକ (ଦି), ଯକ୍ଷ ପାତାଳ, ଯକ୍ଷୀ ଅଙ୍କୁଶା (ଶ୍ୱେ) ଅନନ୍ତମତି (ଦି), ଚଉଁରଧାରକ ପୁରୁଷୋତ୍ତମ ବାସୁଦେବ ।

୧୫ । ତୀର୍ଥଙ୍କର ଧର୍ମନାଥ— ଜନ୍ମସ୍ଥାନ ରତ୍ନପୁରୀ, ପିତା ଭାନୁରାଜ, ମାତା ସୁବ୍ରତା, ବିମାନ ବିଜୟ, ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ଦଧିପର୍ଣ୍ଣ ବା ସପ୍ତଚ୍ଛଦ, ଲାଞ୍ଛନ ବଜ୍ରଦଣ୍ଡ, ଯକ୍ଷ କିନ୍ନର, ଯକ୍ଷୀ ପନ୍ନଗାଦେବୀ (ଶ୍ୱେ) କନ୍ଦର୍ପା (ଶ୍ୱେ) ମାନସୀ (ଦି), ଚଉଁରଧାରକ ପୁଣ୍ଡରୀକ ବାସୁଦେବ ।

୧୬ । ତୀର୍ଥଙ୍କର ଶାନ୍ତିନାଥ— ଜନ୍ମସ୍ଥାନ ହସ୍ତିନାପୁର, ପିତା ବିଶ୍ୱସେନ, ମାତା ଅଚିରା, ବିମାନ ସର୍ବାର୍ଥସିଦ୍ଧ, ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ନନ୍ଦୀ, ଲାଞ୍ଛନ ମୃଗ, ଯକ୍ଷ ଗରୁଡ଼ (ଶ୍ୱେ) କିଂପୁରୁଷ (ଦି), ଯକ୍ଷୀ ନିର୍ବାଣୀ (ଶ୍ୱେ) ମହାମାନସୀ (ଦି), ଚଉଁରଧାରକ ପୁରୁଷଦତ୍ତରାଜ ।

୧୭ । ତୀର୍ଥଙ୍କର କୁନ୍ଥୁନାଥ— ଜନ୍ମସ୍ଥାନ ଗଜପୁର, ପିତା ଶୂରରାଜ, ମାତା ଶ୍ରୀଦେବୀ, ବିମାନ ସର୍ବାର୍ଥସିଦ୍ଧ,

ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ତିଳକ ତରୁ ବା ନନ୍ଦୀକ, ଲାଂଛନ ଅଜ, ଯକ୍ଷ ଗନ୍ଧର୍ବ, ଯକ୍ଷୀ ଅଚ୍ୟୁତା (ଶ୍ୱେ) ବଳା (ଶ୍ୱେ) ବିଜୟା (ଦି), ଚଉଁରଧାରକ କୁନାଳ ।

୧୮ । ତୀର୍ଥଙ୍କର ଅରନାଥ— ଜନ୍ମସ୍ଥାନ ଗଜପୁର, ପିତା ସୁଦର୍ଶନ, ମାତା ଦେବୀରାଣୀ, ବିମାନ ସର୍ବାର୍ଥସିଦ୍ଧ, ବର୍ଣ୍ଣ ସ୍ୱର୍ଣ୍ଣାଭ, କେବଳବୃକ୍ଷ ଆମ୍ର, ଲାଞ୍ଛନ ନନ୍ଦ୍ୟାବର୍ତ୍ତ (ଶ୍ୱେ) ମୀନ (ଦି), ଯକ୍ଷ ଯକ୍ଷେନ୍ଦ୍ର (ଶ୍ୱେ) ଖେନ୍ଦ୍ର (ଦି), ଯକ୍ଷୀ ଧରଣୀ ଦେବୀ (ଶ୍ୱେ) ଅଜିତା (ଦି) ତାରା (ଦି), ଚଉଁରଧାରକ ଗୋବିନ୍ଦରାଜ ।

୧୯ । ତୀର୍ଥଙ୍କର ମଲ୍ଲୀନାଥ— ଜନ୍ମସ୍ଥାନ ମିଥିଳା ବା ମଥୁରା, ପିତା କୁମ୍ଭରାଜ, ମାତା ପ୍ରଭାବତୀ, ବିମାନ ଜୟନ୍ତ ଦେବଲୋକ, ବର୍ଣ୍ଣ ନୀଳାଭ, କେବଳବୃକ୍ଷ ଅଶୋକ, ଲାଞ୍ଛନ କଳସ, ଯକ୍ଷ କୁବେର, ଯକ୍ଷୀ ବୈରୋଟି (ଶ୍ୱେ) ଧାରଣପ୍ରିୟା (ଶ୍ୱେ) ଅପରାଜିତା (ଦି), ଚଉଁରଧାରକ ସୁଭୂମରାଜ ।

୨୦ । ତୀର୍ଥଙ୍କର ମୁନିସୁବ୍ରତ— ଜନ୍ମସ୍ଥାନ ରାଜଗୃହ, ପିତା ସୁମିତ୍ରରାଜ, ମାତା ପଦ୍ମାବତୀ, ବିମାନ ଅପରାଜିତ ଦେବଲୋକ, ବର୍ଣ୍ଣ କୃଷ୍ଣାଭ, କେବଳବୃକ୍ଷ ଚମ୍ପକ, ଲାଞ୍ଛନ କୂର୍ମ, ଯକ୍ଷ ବରୁଣ, ଯକ୍ଷୀ ନରଦତ୍ତା (ଶ୍ୱେ) ବାହୁରୂପିଣୀ (ଦି), ଚଉଁରଧାରକ ଅଜିତ ।

୨୧ । ତୀର୍ଥଙ୍କର ନମିନାଥ— ଜନ୍ମସ୍ଥାନ ମିଥିଳା ବା ମଥୁରା, ପିତା ବିଜୟରାଜ, ମାତା ବପ୍ରରାଣୀ, ବିମାନ ପ୍ରାଣତ ଦେବଲୋକ, ବର୍ଣ୍ଣ ପୀତାଭ, କେବଳବୃକ୍ଷ ବକୁଳ, ଲାଂଛନ ନୀଳୋତ୍ପଳ (ଶ୍ୱେ) ଅଶୋକବୃକ୍ଷ (ଦି), ଯକ୍ଷ ଭୃକୁଟୀ (ଶ୍ୱେ) ଗାନ୍ଧାରୀ (ଦି), ଯକ୍ଷୀ ଗାନ୍ଧାରୀ (ଶ୍ୱେ) ଚାମୁଣ୍ଡା (ଦି), ଚଉଁରଧାରକ ବିଜୟରାଜ ।

୨୨ । ତୀର୍ଥଙ୍କର ନେମିନାଥ— ଜନ୍ମସ୍ଥାନ ସୌରିପୁର ବା ଦ୍ୱାରକା, ପିତା ସମୁଦ୍ରବିଜୟ, ମାତା ଶିବାଦେବୀ, ବିମାନ ଅପରାଜିତା, ବର୍ଣ୍ଣ କୃଷ୍ଣାଭ, କେବଳବୃକ୍ଷ ମହାବେଣୁ ବା ବେତସ, ଲାଞ୍ଛନ ଶଙ୍ଖ, ଯକ୍ଷ ଗୋମେଧ (ଶ୍ୱେ) ସର୍ବାହଣ (ଦି), ପୁଷ୍ପଯାନ (ଦି), ଯକ୍ଷୀ ଅମ୍ବା (ଶ୍ୱେ) ଅମ୍ବିକା (ଶ୍ୱେ) କୁଷ୍ମାଣ୍ଡିନୀ (ଦି), ଚଉଁରଧାରକ ଉଗ୍ରସେନ ।

୨୩ । ତୀର୍ଥଙ୍କର ପାର୍ଶ୍ୱନାଥ— ଜନ୍ମସ୍ଥାନ ବାରାଣସୀ, ପିତା ଅଶ୍ୱସେନ-ରାଜ, ମାତା ବାମାଦେବୀ, ବିମାନ ପ୍ରାଣତ ଦେବଲୋକ, ବର୍ଣ୍ଣ ନୀଳାଭ, କେବଳବୃକ୍ଷ ଦେବଦାରୁ ବା ଧାତକୀ, ଲାଂଛନ ସର୍ପ, ଯକ୍ଷ ପାର୍ଶ୍ୱ (ଶ୍ୱେ) ବା ଧରଣେନ୍ଦ୍ର (ଦି), ଯକ୍ଷୀ ପଦ୍ମାବତୀ, ଚଉଁରଧାରକ ଅଜିତରାଜ ।

୨୪ । ତୀର୍ଥଙ୍କର ମହାବୀର ବା ବର୍ଦ୍ଧମାନ— ଜନ୍ମସ୍ଥାନ କୁଣ୍ଡଗ୍ରାମ ବା ଜିନକୁଣ୍ଡ, ପିତା ସିଦ୍ଧାର୍ଥରାଜ ବା ଶ୍ରେୟମାନ ବା ଯଶସ୍ୱିନ୍, ମାତା ତ୍ରିଶଳା ବିଦେହଦତ୍ତା ବା ପ୍ରିୟକାରିଣୀ, ବିମାନ ପ୍ରାଣତ ଦେବଲୋକ, ବର୍ଣ୍ଣ ପୀତାଭ, କେବଳବୃକ୍ଷ ଶାଳ, ଲାଂଛନ ସିଂହ, ଯକ୍ଷ ମାତଙ୍ଗ, ଯକ୍ଷୀ ସିଦ୍ଧାୟିକା, ଚଉଁର-ଧାରକ ଶ୍ରେଣିକ ବା ବିମ୍ବିସାର ।

## ୨୪ ଯକ୍ଷ ବା ଶାସନଦେବତା-ମାନଙ୍କର ବିଶଦ ବର୍ଣ୍ଣନା

[ ଜୈନଧର୍ମର ଅଭ୍ୟୁତ୍‌ଥାନର ବହୁପୂର୍ବରୁ ଭାରତୀୟମାନଙ୍କର ଲୋକବିଶ୍ୱାସ ଓ ସାହିତ୍ୟିକ ପରମ୍ପରାରେ ଯକ୍ଷମାନଙ୍କର ଗୋଟିଏ ଗୋଷ୍ଠୀଭାବରେ ଅସ୍ତିତ୍ୱ ଥିଲା । ଜୈନବିଶ୍ୱାସ ଅନୁଯାୟୀ ଇନ୍ଦ୍ର ଚବିଶ ତୀର୍ଥଙ୍କରଙ୍କର ସେବା ପାଇଁ ଚବିଶ ଜଣ ଯକ୍ଷଙ୍କୁ ଶାସନ ଦେବତାରୂପେ ନିଯୁକ୍ତ କରନ୍ତି । ଯକ୍ଷମୂର୍ତ୍ତି ପ୍ରତ୍ୟେକ ତୀର୍ଥଙ୍କରଙ୍କର ଡାହାଣ ପାର୍ଶ୍ୱରେ ସ୍ଥାପିତ ହୁଏ । ]

୧ । ଯକ୍ଷ ( ଶାସନଦେବତା )— ଗୋମୁଖ, ଶ୍ୱେତାମ୍ବର ସଙ୍କେତ ବରଦା ମୁଦ୍ରା, ଜପମାଳା ଓ କୁଠାର, ଦିଗମ୍ବର ସଙ୍କେତ ମସ୍ତକ ଉପରେ ଧର୍ମଚକ୍ରର ପ୍ରତିରୂପ, ବାହନ ବୃଷ (ଶ୍ୱେ) ଗଜ (ଦି), ତୀର୍ଥଙ୍କର ଋଷଭଦେବ ବା ଆଦିନାଥ ।

୨ । ଯକ୍ଷ ( ଶାସନଦେବତା ) — ମହାଯକ୍ଷ, ଶ୍ୱେତାମ୍ବର ସଙ୍କେତ ଚତୁର୍ମୁଖ ଓ ଅଷ୍ଟବାହୁ, ବରଦା, ଗଦା, ଜପମାଳା, ପାଶ, ଲେମ୍ବୁ , ଅଭୟ, ଅଙ୍କୁଶ, ଶକ୍ତି । ଦିଗମ୍ବର ସଙ୍କେତ ଚତୁର୍ମୁଖ ଓ ଅଷ୍ଟବାହୁ, ଥାଳିଆ, ତ୍ରିଶୂଳ । ବାହନ ପଦ୍ମ, ଅଙ୍କୁଶ, ଖଡ଼୍‌ଗ, ଯଷ୍ଟି, କୁଠାର ବରଦା ମୁଦ୍ରା, ଗଜ । ତୀର୍ଥଙ୍କର ଅଜିତନାଥ ।

୩ । ଯକ୍ଷ ( ଶାସନଦେବତା )— ତ୍ରିମୁଖ, ଶ୍ୱେତାମ୍ବର ସଙ୍କେତ ତ୍ରିମୁଖ, ଷଡ଼ବାହୁ, ନକୁଳ, ଗଦା, ଅଭୟମୁଦ୍ରା, ଲେମ୍ବୁ, ପୁଷ୍ପହାର ଓ ଜପମାଳା । ଦିଗମ୍ବର ସଙ୍କେତ ତ୍ରିମୁଖ, ଷଡ଼ବାହୁ, ଥାଳିଆ, ଖଡ଼୍‌ଗ, ଅଙ୍କୁଶ, ଯଷ୍ଟି, ତ୍ରିଶୂଳ ଓ କ୍ଷୁଦ୍ର ଖଡ଼୍‌ଗ, ବାହନ ମୟୂର, ତୀର୍ଥଙ୍କର ସମ୍ଭବନାଥ ।

୪ । ଯକ୍ଷ ( ଶାସନଦେବତା )— ଯକ୍ଷେଶ୍ୱର (ଦି) ନାୟକ (ଶ୍ୱେ) ଶ୍ୱେତାମ୍ବର ସଙ୍କେତ ଲେମ୍ବୁ , ଜପମାଳା, ନକୁଳ ଓ ଅଙ୍କୁଶ । ଦିଗମ୍ବର ସଙ୍କେତ ଧନୁ, ଢାଲ ଓ ଖଡ଼୍‌ଗ, ବାହନ ଗଜ, ତୀର୍ଥଙ୍କର ଅଭିନନ୍ଦନନାଥ ।

୫ । ଯକ୍ଷ ( ଶାସନଦେବତା )— ତୁମ୍ବୁରୁ, ଶ୍ୱେତାମ୍ବର ସଙ୍କେତ ବରଦା, ବର୍ଚ୍ଛା, ଗଦା ଓ ପାଶ, ଦିଗମ୍ବର ସଙ୍କେତ ଦୁଇଟି ସାପ, ଫଳ ଓ ବରଦାମୁଦ୍ରା, ବାହନ ଗରୁଡ଼, ତୀର୍ଥଙ୍କର ସୁମତିନାଥ ।

୬ । ଯକ୍ଷ ( ଶାସନଦେବତା )— କୁସୁମ (ଶ୍ୱେ), ପୁଷ୍ପଯକ୍ଷ (ଦି) ଶ୍ୱେତାମ୍ବର ସଙ୍କେତ, ଚତୁର୍ବାହୁ, ଫଳ, ଅଭୟମୁଦ୍ରା, ଜପମାଳା ଓ ନକୁଳ, ଦିଗମ୍ବର ସଙ୍କେତ ଚତୁର୍ବାହୁ, ବରଦା ମୁଦ୍ରା, ଢାଲ, ଅଭୟ-ମୁଦ୍ରା, ବର୍ଚ୍ଛା, ବାହନ କୃଷ୍ଣସାର, ତୀର୍ଥଙ୍କର ପଦ୍ମପ୍ରଭ ।

୭ । ଯକ୍ଷ ( ଶାସନଦେବତା )— ମାତଙ୍ଗ (ଶ୍ୱେ) ବା ବରନନ୍ଦୀ, ଶ୍ୱେତାମ୍ବର ସଙ୍କେତ ବିଲ୍ୱଫଳ, ପାଶ, ନେଉଳ ଓ ଅଙ୍କୁଶ, ଦିଗମ୍ବର ସଙ୍କେତ ଯଷ୍ଟି, ବର୍ଚ୍ଛା, ସ୍ୱସ୍ତିକ ଓ ବୈଜୟନ୍ତୀ, ବାହନ ଗଜ (ଶ୍ୱେ) ସିଂହ (ଦି), ତୀର୍ଥଙ୍କର ସୁପାର୍ଶ୍ୱନାଥ ।

୮ । ଯକ୍ଷ ( ଶାସନଦେବତା )— ବିଜୟ (ଶ୍ୱେ) ବା ଶ୍ୟାମ (ଦି), ଶ୍ୱେତା-ମ୍ବର ସଙ୍କେତ ତ୍ରିନେତ୍ର ଥାଳିଆ ଓ ଗଦା, ଦିଗମ୍ବର ସଙ୍କେତ ତ୍ରିନେତ୍ର, ଫଳ, ଜପମାଳା, କୁଠାର ଓ ବରମୁଦ୍ରା, ବାହନ ହଂସ, ତୀର୍ଥଙ୍କର ଚନ୍ଦ୍ରପ୍ରଭ ।

୯ । ଯକ୍ଷ ( ଶାସନଦେବତା )— ଅଜିତ, ଶ୍ୱେତାମ୍ବର ସଙ୍କେତ ଲେମ୍ବୁଫଳ, ଜପମାଳା, ନେଉଳ ଓ ବର୍ଚ୍ଛା, ଦିଗମ୍ବର ସଙ୍କେତ ଶକ୍ତି, ବରଦାମୁଦ୍ରା, ଫଳ ଓ ଜପମାଳା, ବାହନ କୂର୍ମ, ତୀର୍ଥଙ୍କର ସୁବୁଦ୍ଧିନାଥ ବା ପୁଷ୍ପଦନ୍ତ ।

୧୦ । ଯକ୍ଷ ( ଶାସନ ଦେବତା )— ବ୍ରହ୍ମା, ଶ୍ୱେତାମ୍ବର ସଙ୍କେତ ଚତୁର୍ମୁଖ, ତ୍ରିନେତ୍ର, ଅଷ୍ଟବାହୁ, ଲେମ୍ବୁଫଳ, ଗଦା, ପାଶ, ଅଭୟ, ନକୁଳ, ଐଶ୍ୱର୍ଯ୍ୟସୂଚକ, ଦଣ୍ଡ, ଅଙ୍କୁଶ ଓ ଜପମାଳା, ଦିଗମ୍ବର ସଙ୍କେତ ଚତୁର୍ମୁଖ, ତ୍ରିନେତ୍ର, ଅଷ୍ଟବାହୁ, ଧନୁ, ଯଷ୍ଟି, ଢାଲ, ଖଡ୍ଗ ଓ ବରଦା ମୁଦ୍ରା, ବାହନ ପଦ୍ମ, ତୀର୍ଥଙ୍କର ଶୀତଳ-ନାଥ ।

୧୧ । ଯକ୍ଷ ( ଶାସନଦେବତା )— ଈଶ୍ୱର (ଦି) ବା ଯକ୍ଷେତ (ଶ୍ୱେ) ଶ୍ୱେତାମ୍ବର ସଙ୍କେତ ତ୍ରିନେତ୍ର, ଚତୁର୍ବାହୁ, ନେଉଳ, ଜପମାଳା ଯଷ୍ଟି ଓ ଫଳ, ଦିଗମ୍ବର ସଙ୍କେତ ତ୍ରିନେତ୍ର, ଚତୁର୍ବାହୁ ତ୍ରିଶୂଳ, ଯଷ୍ଟି, ଜପମାଳା ଓ ଫଳ, ବାହନ ବୃଷଭ, ତୀର୍ଥଙ୍କର ଶ୍ରେୟାଂଶନାଥ ।

୧୨ । ଯକ୍ଷ ( ଶାସନଦେବତା )— କୁମାର, ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ, ଲେମ୍ବୁ, ଶର, ନେଉଳ ଓ ଧନୁ, ଦିଗମ୍ବର ସଙ୍କେତ ତ୍ରିଶିର, ଷଡ଼ହସ୍ତ, ଧନୁ, ନକୁଳ, ଫଳ, ଗଦା ଓ ବରମୁଦ୍ରା, ବାହନ ଶ୍ୱେତ-ହଂସ, ତୀର୍ଥଙ୍କର ବସୁପୂଜ୍ୟ ।

୧୩ । ଯକ୍ଷ (ଶାସନ ଦେବତା)— ସନ୍ମୁଖ ( ଶ୍ୱେ ) ବା ଶ୍ୱେତମୁ ( ଦି ) ଶ୍ୱେତାମ୍ବର ସଙ୍କେତ ଷଡ଼ାନନ, ଦ୍ୱାଦଶ-ବାହୁ, ଫଳ, ଥାଳିଆ, ଶର, ଖଡ୍ଗ, ପାଶ, ଜପମାଳା, ନକୁଳ, ଚକ୍ର, ବନ୍ଧନ, ଫଳ, ଅଙ୍କୁଶ ଓ ଅଭୟ ମୁଦ୍ରା, ଦିଗମ୍ବର ସଙ୍କେତ ଚତୁର୍ମୁଖ, ଅଷ୍ଟବାହୁ, କୁଠାର, ଚକ୍ର, ତରବାରି, ଢାଲ ଓ ଯଷ୍ଟି ଇତ୍ୟାଦି, ବାହନ ମୟୂର, ତୀର୍ଥଙ୍କର ବିମଳନାଥ ।

୧୪ । ଯକ୍ଷ ( ଶାସନଦେବତା )— ପାତାଳ, ଶ୍ୱେତାମ୍ବର ସଙ୍କେତ ତ୍ରିମୁଖ, ଷଡ଼ବାହୁ, ପଦ୍ମ, ଖଡ୍ଗ, ପାଶ, ନକୁଳ, ଫଳ ଓ ଜପମାଳା, ଦିଗମ୍ବର ସଂକେତ ତ୍ରିମୁଖ, ଷଡ଼ବାହୁ, ଅଙ୍କୁଶ, ବର୍ଚ୍ଛା, ଧନୁ, ରଜ୍ଜୁ, ଲଙ୍ଗଳ, ଫଳ ଏବଂ ତ୍ରିଫଣା ବିଶିଷ୍ଟ ସର୍ପର ଗୋଟିଏ ଚନ୍ଦ୍ରାତପ ବାହନ ସୁସୁ, ତୀର୍ଥଙ୍କର ଅନନ୍ତଜିତ ବା ଅନନ୍ତ-ନାଥ ।

୧୫ । ଯକ୍ଷ (ଶାସନଦେବତା)— କିନ୍ନର, ଶ୍ୱେତାମ୍ବର ସଙ୍କେତ ତ୍ରିମୁଖ, ଷଡ଼ବାହୁ, ଲେମ୍ବୁ, ଐଶ୍ୱର୍ଯ୍ୟସୂଚକ, ଦଣ୍ଡ, ଅଭୟ, ନକୁଳ, ପଦ୍ମ ଓ ଜପମାଳା, ଦିଗମ୍ବର ସଙ୍କେତ ତ୍ରିମୁଖ, ଷଡ଼ବାହୁ, ଥାଳିଆ, ବଜ୍ର ଅଙ୍କୁଶ, ଜପମାଳା ଓ ବରଦ ମୁଦ୍ରା, ବାହନ କୂର୍ମ (ଶ୍ୱେ) ମୀନ (ଦି) ତୀର୍ଥଙ୍କର ଧର୍ମନାଥ ।

୧୬ । ଯକ୍ଷ (ଶାସନଦେବତା)— ଗରୁଡ଼ (ଶ୍ୱେ) ବା କିଂପୁରୁଷ (ଦି) ଶ୍ୱେତାମ୍ବର ସଙ୍କେତ ଲେମ୍ବୁ, ପଦ୍ମ, ନକୁଳ ଓ ଜପମାଳା, ଦିଗମ୍ବର ସଙ୍କେତ ସର୍ପ, ପାଶ ଓ ଧନୁ, ବରାହ (ଶ୍ୱେ) ଗଜ, (ଦି) ତୀର୍ଥଙ୍କର ଶାନ୍ତିନାଥ ।

୧୭ । ଯକ୍ଷ (ଶାସନଦେବତା)— ଗନ୍ଧର୍ବ, ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ, ବରଦାମୁଦ୍ରା, ପାଶ, ଲେମ୍ବୁ, ଅଙ୍କୁଶ, ଦିଗମ୍ବର ସଙ୍କେତ ସର୍ପ, ପାଶ ଓ ଧନୁ, ବାହନ ବିହଙ୍ଗମ, (ଦି) ହଂସ, (ଶ୍ୱେ) ତୀର୍ଥଙ୍କର କୁନ୍ଥୁନାଥ ।

୧୮ । ଯକ୍ଷ (ଶାସନଦେବତା)— ଯକ୍ଷେତ (ଶ୍ୱେ) ବା ଖେନ୍ଦ୍ର (ଦ) ଶ୍ୱେତାମ୍ବର ସଙ୍କେତ ଷଡ଼ାନନ, ଦ୍ୱାଦଶବାହୁ, ଲେମ୍ବୁ, ଶର, ଖଡ୍‌ଗ, ଗଦା, ପାଶ, ଅଭୟ ମୁଦ୍ରା, ନକୁଳ, ଧନୁ, ଫଳ, ବର୍ଚ୍ଛା, ଅଙ୍କୁଶ ଓ ଜପମାଳା, ଦିଗମ୍ବର ସଙ୍କେତ ଷଡ଼ାନନ, ଦ୍ୱାଦଶ ବାହୁ, ଧନୁ, ବଜ୍ର, ପାଶ, ଗଦା, ଅଙ୍କୁଶ, ବରଦାମୁଦ୍ରା, ଫଳ, ଶର ଓ ପୁଷ୍ପହାର, ବାହନ କମ୍ବୁ (ଦ) ମୟୂର (ଶ୍ୱେ), ତୀର୍ଥଙ୍କର ଅରନାଥ ।

୧୯ । ଯକ୍ଷ (ଶାସନଦେବତା)— କୁବେର, ଶ୍ୱେତାମ୍ବର ସଙ୍କେତ ଚତୁର୍ମୁଖ, ଅଷ୍ଟବାହୁ ବରଦା, କୁଠାର, ବର୍ଚ୍ଛା, ଅଭୟ, ଲେମ୍ବୁ, ଶକ୍ତି ଗଦା ଓ ଜପମାଳା । ଦିଗମ୍ବର ସଙ୍କେତ ଚତୁର୍ମୁଖ ଅଷ୍ଟବାହୁ, ଢାଲ, ଧନୁ, ଯଷ୍ଟି, ପଦ୍ମ, ଖଡ୍‌ଗ, ଥାଳିଆ, ପାଶ ଓ ବରଦା ମୁଦ୍ରା, ବାହନ ଗଜ, ତୀର୍ଥଙ୍କର ମଲ୍ଲିନାଥ ।

୨୦ । ଯକ୍ଷ (ଶାସନଦେବତା)— ବରୁଣ, ଶ୍ୱେତାମ୍ବର ସଙ୍କେତ ତ୍ରିନେତ୍ର, ଅଷ୍ଟଶିର, ଜଟାକୃତ କେଶ, ଅଷ୍ଟବାହୁ, ଲେମ୍ବୁ, ଐଶ୍ୱର୍ଯ୍ୟସୂଚକ ଦଣ୍ଡ, ଶର, ବର୍ଚ୍ଛା, ନକୁଳ, ପଦ୍ମ, ଧନୁ, ଓ କୁଠାର, ଦିଗମ୍ବର ସଙ୍କେତ ତ୍ରିନେତ୍ର, ଅଷ୍ଟଶିର, ଜଟାବୃତ, କେଶ, ଚତୁର୍ବାହୁ, ଢାଲ, ଖଡ୍‌ଗ, ଫଳ ଓ ବରଦାମୁଦ୍ରା, ବାହନ ବୃଷଭ, ତୀର୍ଥଙ୍କର ମୁନିସୁବ୍ରତ ।

୨୧ । ଯକ୍ଷ (ଶାସନଦେବତା)— ଭ୍ରୁକୁଟୀ (ଶ୍ୱେ) ବା ନନ୍ଦଗ, (ଦ) ଶ୍ୱେତାମ୍ବର ସଙ୍କେତ ଚତୁର୍ମୁଖ, ଅଷ୍ଟବାହୁ, ଲେମ୍ବୁ, ବର୍ଚ୍ଛା ଐଶ୍ୱର୍ଯ୍ୟସୂଚକ, ଦଣ୍ଡ, ଅଭୟ, କୁଠାର, ନକୁଳ, ବଜ୍ର, ଜପମାଳା ଦିଗମ୍ବର ସଙ୍କେତ ଚତୁର୍ମୁଖ, ଅଷ୍ଟବାହୁ, ଢାଲ, ଧନୁଶର, ଅଙ୍କୁଶ, ପଦ୍ମ, ଖଡ୍‌ଗ, ଥାଳିଆ ଓ ବରଦା, ବାହନ ବୃଷଭ, ତୀର୍ଥଙ୍କର ନମିନାଥ ।

୨୨ । ଯକ୍ଷ (ଶାସନଦେବତା)— ଗୋମେଧ, (ଶ୍ୱେ) ବା ସର୍ବାହ୍ନରଣ (ଦ) ବା ପୁଷ୍ପଯାନ (ଦ), ଶ୍ୱେତାମ୍ବର ସଙ୍କେତ ତ୍ରିମୁଖ, ଷଡ୍‌ବାହୁ, କଲମ୍ବୁ, କୁଠାର, ଥାଳିଆ, ନକୁଳ, ତ୍ରିଶୂଳ ଓ ବର୍ଚ୍ଛା, ଦିଗମ୍ବର ସଙ୍କେତ ତ୍ରିମୁଖ, ଷଡ୍‌ବାହୁ, ହାତୁଡ଼ି, କୁଠାର, ଯଷ୍ଟି, ଫଳ, ବଜ୍ର ଓ ବରଦାମୁଦ୍ରା, ବାହନ ନର (ଶ୍ୱେ) ପୁଷ୍ପରଥ (ଦ), ତୀର୍ଥଙ୍କର ନେମିନାଥ ।

୨୩ । ଯକ୍ଷ (ଶାସନଦେବତା)— ପାର୍ଶ୍ୱ (ଶ୍ୱେ) ବା ଧରଣେନ୍ଦ୍ର (ଦ), ଶ୍ୱେତାମ୍ବର ସଙ୍କେତ ସର୍ପାକାର, ଚତୁର୍ବାହୁ, ନକୁଳ, ସର୍ପ, ଲେମ୍ବୁ ଓ ସର୍ପ ଦିଗମ୍ବର ସଙ୍କେତ ସର୍ପାକୃତ, ସର୍ପ,, ପାଶ ଓ ବରଦା, ବାହନ କୂର୍ମ, ତୀର୍ଥଙ୍କର ପାର୍ଶ୍ୱନାଥ ।

୨୪ । ଯକ୍ଷ (ଶାସନଦେବତା)— ମାତଙ୍ଗ, ଶ୍ୱେତାମ୍ବର ସଙ୍କେତ ଦ୍ୱିବାହୁ ନକୁଳ ଓ ଲେମ୍ବୁ ; ଦିଗମ୍ବର ସଙ୍କେତ ଦ୍ୱିବାହୁ, ବରଦା ମୁଦ୍ରା ଓ ଲେମ୍ବୁ, ମସ୍ତକୋପରି ଧର୍ମଚକ୍ର ସଙ୍କେତ, ବାହନ ଗଜ, ତୀର୍ଥଙ୍କର ମହାବୀର ବା ପାର୍ଶ୍ୱନାଥ ।

## ୨୪ ଯକ୍ଷ ବା ଶାସନଦେବୀଙ୍କର ବିଶଦ ବର୍ଣ୍ଣନା

[ଯକ୍ଷୀ ବା ଯକ୍ଷମୂର୍ତ୍ତି ପ୍ରତ୍ୟେକ ତୀର୍ଥଙ୍କରଙ୍କ ବାମପାର୍ଶ୍ୱରେ ସ୍ଥାପିତ ହୁଏ । ]

୧ । ଯକ୍ଷୀ ବା ଯକ୍ଷ—ଋଷଭଦେବ ଆଦିନାଥ, ଶ୍ୱେତାମ୍ବର ସଙ୍କେତ

ଅଷ୍ଟବାହୁ, ବରଦା ମୁଦ୍ରା, ଶର, ଥାଳଆ, ପାଶ, ଧନୁ ବଜ୍ର ଓ ଅଙ୍କୁଶ, ଦିଗମ୍ବର ସଙ୍କେତ ଦ୍ୱାଦଶ କମ୍ବା ଚତୁର୍ବାହୁ, ଆଠଟିଥାଳ, ଲେମ୍ବୁଫଳ, ବରଦା ମୁଦ୍ରା ଏବଂ ଦୁଇଟି ବଜ୍ର, ବାହନ ଗରୁଡ଼, ଯକ୍ଷୀ ବା ଯକ୍ଷ ଚକ୍ରେଶ୍ୱରୀ (ଶ୍ୱେ) ବା ଅପ୍ରତିଚକ୍ରା (ଦି ।

୨ । ଯକ୍ଷୀ ବା ଯକ୍ଷ—ଅଜିତନାଥ, ଶ୍ୱେତାମ୍ବର ସଙ୍କେତ ବରଦାମୁଦ୍ରା, ପାଶ, ଭୁରଙ୍ଗଫଳ ଓ ଅଙ୍କୁଶ, ଦିଗମ୍ବର ସଙ୍କେତ ବରଦା, ଅଭୟ ମୁଦ୍ରା, ଶଙ୍ଖ ଓ ଥାଳଆ । ବାହନ ଲୌହାସନ (ଦି) ବୃଷଭ (ଶ୍ୱେ), ଯକ୍ଷୀ ବା ଯକ୍ଷ ଅଜିତବାଳା (ଶ୍ୱେ) ବା ରୋହିଣୀ (ଦି) ।

୩ । ଯକ୍ଷୀ ବା ଯକ୍ଷ—ସମ୍ଭବନାଥ, ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ, ବରଦା, ଜପମାଳା, ଫଳ ଓ ଅଭୟ ମୁଦ୍ରା, ଦିଗମ୍ବର ସଙ୍କେତ ଷଡ଼ବାହୁ, ଚନ୍ଦ୍ରାକୃତି ବିଶିଷ୍ଟ କୁଠାର, ଫଳ, ଖଡ଼୍ଗ ଓ ବରଦା ମୁଦ୍ରା ଦ୍ୱାରା ଶୋଭିତ । ବାହନ ମେଷ (ଶ୍ୱେ), ମୟୂର (ଦି), ଯକ୍ଷୀ ବା ଯକ୍ଷ ଦୁରିତାରି (ଶ୍ୱେ) ବା ପ୍ରଜ୍ଞପ୍ତି (ଦି) ।

୪ । ଯକ୍ଷୀ ବା ଯକ୍ଷ—ଅଭିନନ୍ଦନ-ନାଥ, ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ, ବରଦା, ପାଶ, ସର୍ପ ଓ ଅଙ୍କୁଶ, ଦିଗମ୍ବର ସଙ୍କେତ ଚତୁର୍ବାହୁ, ସର୍ପ, ପାଶ, ଜପମାଳା ଓ ଫଳ, ବାହନ ହଂସ (ଦି) ପଦ୍ମ (ଶ୍ୱେ), ଯକ୍ଷୀ ବା ଯକ୍ଷ କାଳିକା (ଶ୍ୱେ) ବଜ୍ର ଶୃଙ୍ଖଳା (ଦି) ।

୫ । ଯକ୍ଷୀ ବା ଯକ୍ଷ—ସୁମତିନାଥ, ଶ୍ୱେତାମ୍ବର ସଂକେତ ଚତୁର୍ବାହୁ, ବରଦା, ପାଶ, ସର୍ପ ଓ ଅଙ୍କୁଶ, ଦିଗମ୍ବର ସଙ୍କେତ ଚତୁର୍ବାହୁ, ସର୍ପ, ପାଶ, ଜପମାଳା ଓ ଫଳ, ବାହନ ହଂସ (ଦି) ପଦ୍ମ (ଶ୍ୱେ), ଯକ୍ଷୀ ବା ଯକ୍ଷ ମହାକାଳୀ (ଶ୍ୱେ) ପୁରୁଷଦତ୍ତା (ଦି) ।

୬ । ଯକ୍ଷୀ ବା ଯକ୍ଷ—ପଦ୍ମପ୍ରଭ, ଶ୍ୱେତାମ୍ବର ସଂକେତ ଚତୁର୍ବାହୁ ଶାରଦା, ବାଣ, ଧନୁ ଓ ଅଭୟ ମୁଦ୍ରା, ଦିଗମ୍ବର ସଂକେତ ଚତୁର୍ବାହୁ, ଖଡ଼୍ଗ, ବର୍ଚ୍ଛା, ଫଳ ଓ ବରମୁଦ୍ରା, ବାହନ ନର (ଶ୍ୱେ) ଅଶ୍ୱ (ଦି), ଯକ୍ଷୀ ବା ଯକ୍ଷ ଅଚ୍ୟୁତା (ଶ୍ୱେ) ଶ୍ୟାମା (ଶ୍ୱେ) ମନବେଗା (ଦି) ।

୭ । ଯକ୍ଷୀ ବା ଯକ୍ଷ—ସୁପାର୍ଶ୍ୱନାଥ, ଶ୍ୱେତାମ୍ବର ସଂକେତ ବରଦା, ଜପମାଳା, ବର୍ଚ୍ଛା ଓ ଅଭୟ ମୁଦ୍ରା, ଦିଗମ୍ବର ସଂକେତ ତ୍ରିଶୂଳ, ଫଳ, ବରଦ ଓ ଘଣ୍ଟି, ବାହନ ଗଜ (ଶ୍ୱେ) ବୃଷଭ (ଦି), ଯକ୍ଷୀ ବା ଯକ୍ଷ ଶାନ୍ତା (ଶ୍ୱେ) କାଳୀ (ଦି) ।

୮ । ଯକ୍ଷୀ ବା ଯକ୍ଷ—ଚନ୍ଦ୍ରପ୍ରଭ, ଶ୍ୱେତାମ୍ବର ସଙ୍କେତ ଖଡ଼୍ଗ, ଧନୁ, ଗଦା, ବର୍ଚ୍ଛା ଓ କୁଠାର, ଦିଗମ୍ବର ସଂକେତ ଥାଳଆ, ଶର, ପାଶ, ଢାଲ, ତ୍ରିଶୂଳ, ଖଡ଼୍ଗ, ଧନୁ ଇତ୍ୟାଦି । ମାର୍ଜାର (ଶ୍ୱେ) ହଂସ (ଶ୍ୱେ) ମହିଷ (ଦି), ଯକ୍ଷୀ ବା ଯକ୍ଷ ଭ୍ରୁକୁଟୀ (ଶ୍ୱେ) ବା ଜ୍ୱାଳମାଳମୀ (ଦି) ।

୯ । ଯକ୍ଷୀ ବା ଯକ୍ଷ—ସୁବୁଦ୍ଧିନାଥ ବା ପୁଷ୍ପଦନ୍ତ, ଶ୍ୱେତାମ୍ବର ସଂକେତ ଚତୁର୍ବାହୁ, ବରଦା, ଜପମାଳା, କୁମ୍ଭ ଓ ଅଙ୍କୁଶ, ଦିଗମ୍ବର ସଂକେତ ଚତୁର୍ବାହୁ, ବଜ୍ର, ଗଦା, ଫଳ ଓ ବରମୁଦ୍ରା, ବାହନ ବୃଷଭ (ଶ୍ୱେ) କୂର୍ମ (ଦି), ଯକ୍ଷୀ ବା ଯକ୍ଷ ସୁତାରକା (ଶ୍ୱେ) ବା ମହାକାଳୀ (ଦି) ।

୧୦ । ଯକ୍ଷୀ ବା ଯକ୍ଷ—ଶୀତଳନାଥ, ଶ୍ୱେତାମ୍ବର ସଂକେତ ବରଦା, ପାଶ,

ଫଳ ଓ ଅଂକୁଶ, ଦିଗମ୍ବର ସଂକେତ ଫଳ, ବରମୁଦ୍ରା, ଧନୁ ଇତ୍ୟାଦି । ବାହନ ପଦ୍ମ (ଶ୍ୱେ) ଶୂକର (ଦି), ଯକ୍ଷୀ ବା ଯକ୍ଷ ଅଶୋକା (ଶ୍ୱେ) ବା ମାନବୀ (ଦି) ।

୧୧ । ଯକ୍ଷୀ ବା ଯକ୍ଷ—ଶ୍ରେୟାଂଶ-ନାଥ, ଶ୍ୱେତାମ୍ବର ସଂକେତ ବରଦା, ଗଦା, କୁମ୍ଭ ଓ ଅଙ୍କୁଶ, ଦିଗମ୍ବର ସଙ୍କେତ ଗଦା, ପଦ୍ମ, କୁମ୍ଭ ଓ ବରଦା ମୁଦ୍ରା, ବାହନ କେଶରୀ, (ଶ୍ୱେ), କୃଷ୍ଣସାର (ଦି) ଯକ୍ଷୀ ବା ଯକ୍ଷ—ଶ୍ରୀବତ୍ସାଦେବୀ (ଶ୍ୱେ) ବା ମାନବୀ, (ଶ୍ୱେ) ଗୌରୀ(ଦି) ।

୧୨ । ଯକ୍ଷୀ ବା ଯକ୍ଷ—ବସୁପୂଜ୍ୟ, ଶ୍ୱେତାମ୍ବର ସଂକେତ ଚତୁର୍ବାହୁ, ଶର, ପାଶ, ଧନୁ ଓ ସର୍ପ ଦିଗମ୍ବର ସଙ୍କେତ ଗଦା, ପଦ୍ମଯୁଗଳ ଓ ବରଦା ମୁଦ୍ରା, ବାହନ ଅଶ୍ୱ (ଶ୍ୱେ) କୁମ୍ଭୀର (ଦି), ଯକ୍ଷୀ ବା ଯକ୍ଷ ଚଣ୍ଡା (ଶ୍ୱେ) ବା ପ୍ରଚଣ୍ଡା (ଶ୍ୱେ) ବା ଗାନ୍ଧାରୀ (ଦି) ।

୧୩ । ଯକ୍ଷୀ ବା ଯକ୍ଷ—ବିମଳନାଥ, ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ, ଶର, ପାଶ, ଧନୁ ଓ ସର୍ପ । ଦିଗମ୍ବର ସଙ୍କେତ ଦୁଇଟି ସାପ, ଧନୁ ଓ ଶର, ବାହନ ପଦ୍ମ (ଶ୍ୱେ) ସର୍ପ (ଦି), ଯକ୍ଷୀ ବା ଯକ୍ଷ ବିଦିତା (ଶ୍ୱେ) ବା ବିଜୟା (ଶ୍ୱେ) ବା ବୈରୋଟି (ଦି) ।

୧୪ । ଯକ୍ଷୀ ବା ଯକ୍ଷ—ଅନନ୍ତଜିତ ବା ଅନନ୍ତନାଥ । ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ ଖଡ୍ଗ, ପାଶ ବର୍ଚ୍ଛା ଓ ଅଙ୍କୁଶ । ଦିଗମ୍ବର ସଙ୍କେତ ଚତୁର୍ବାହୁ, ଧନୁ, ଶର, ଫଳ ଓ ବର ମୁଦ୍ରା, ବାହନ ପଦ୍ମ (ଶ୍ୱେ) ହଂସ (ଦି) ଯକ୍ଷୀ ବା ଯକ୍ଷ ଅଙ୍କୁଶ (ଶ୍ୱେ) ବା ଅନନ୍ତମତି (ଦି) ।

୧୫ । ଯକ୍ଷୀ ବା ଯକ୍ଷ ସମ୍ଭବନାଥ, ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ ପଦ୍ମ, ଯୁଗଳ, ଅଙ୍କୁଶ ଓ ଅଭୟ, ଦିଗମ୍ବର ସଙ୍କେତ ଚତୁର୍ବାହୁ, ପଦ୍ମ ଯୁଗଳ, ଧନୁ, ବରଦ, ଅଙ୍କୁଶ ଓ ଶର, ବାହନ ଅଶ୍ୱ (ଶ୍ୱେ) ମୀନ (ଶ୍ୱେ) ବ୍ୟାଘ୍ର (ଦି), ଯକ୍ଷୀ ବା ଯକ୍ଷ କନ୍ଦର୍ପ (ଶ୍ୱେ) ବା ପନ୍ନଗା ଦେବୀ (ଶ୍ୱେ) ବା ମାନସୀ (ଦି) ।

୧୬ । ଯକ୍ଷୀ ବା ଯକ୍ଷ—ଶାନ୍ତିନାଥ, ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ, ପୁସ୍ତକ, ପଦ୍ମ, କମଣ୍ଡଳୁ ଓ ପଦ୍ମିନୀ, ମୁକୁଳ, ଦିଗମ୍ବର ସଙ୍କେତ ଥାଳିଆ, ଫଳ, ଖଡ୍ଗ ଓ ବରଦ, ବାହନ ପଦ୍ମ (ଶ୍ୱେ) କେକୀ (ଦି), ଯକ୍ଷୀ ବା ଯକ୍ଷ ନିର୍ବାଣୀ (ଶ୍ୱେ) ବା ମହାମାନସୀ (ଦି) ।

୧୭ । ଯକ୍ଷୀ ବା ଯକ୍ଷ—ବାଳା (ଶ୍ୱେ) ବା ଅଚ୍ୟୁତା (ଶ୍ୱେ) ବା ବିଜୟା (ଦି) । ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ, ଭୁରଞ୍ଜି ଫଳ, ବର୍ଚ୍ଛା, ମୁଷଳ, ପଦ୍ମ । ଦିଗମ୍ବର ସଙ୍କେତ ଶଙ୍ଖ, ଖଡ୍ଗ, ଥାଳ ଓ ବରଦା ମୁଦ୍ରା, ବାହନ ମୟୂର (ଶ୍ୱେ) କୃଷ୍ଣ-ଶୂକର (ଦ), ଯକ୍ଷୀ ବା ଯକ୍ଷ ବାଳା (ଶ୍ୱେ) ବା ଅଚ୍ୟୁତା (ଶ୍ୱେ) ବା ବିଜୟା (ଦି) ।

୧୮ । ଯକ୍ଷୀ ବା ଯକ୍ଷ—ଅରନାଥ, ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ, ଲେମ୍ବୁଫଳ, ପଦ୍ମଯୁଗଳ, ଜପମାଳା ଦିଗମ୍ବର ସଙ୍କେତ ସର୍ପ, ବଜ୍ର, ମୃଗ ଓ ବରଦାମୁଦ୍ରା । ବାହନ ପଦ୍ମ (ଶ୍ୱେ) ହଂସ (ଦି) । ଯକ୍ଷୀ ବା ଯକ୍ଷ ଧରଣୀ (ଶ୍ୱେ) ବା ପଦ୍ମା (ଦି) ।

୧୯ । ଯକ୍ଷୀ ବା ଯକ୍ଷ—ମଲ୍ଲିନାଥ । ଶ୍ୱେତାମ୍ବର ସଙ୍କେତ ବରଦା, ଜପମାଳା, ଲେମ୍ବୁ ଓ ଶକ୍ତି । ଦିଗମ୍ବର ସଙ୍କେତ ଲେମ୍ବୁ, ଖଡ୍ଗ, ଶଲ୍ୟ ଓ ବରଦାମୁଦ୍ରା ।

ବାହନ ପଦ୍ମ (ଶ୍ୱେ), କେଶରୀ (ଦି)। ଯକ୍ଷୀ ବା ଯକ୍ଷ ବୈରୋଟା (ଶ୍ୱେ) ଅପରା-ଜିତା (ଦି)।

୨୦। ଯକ୍ଷୀ ବା ଯକ୍ଷ – ମୁନିସୁବ୍ରତ, ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ, ବରଦା, ଜପମାଳା, ଲେମ୍ବୁ, ତ୍ରିଶୂଳ ବା କୁମ୍ଭ; ଦିଗମ୍ବର ସଙ୍କେତ ଢାଲ, ଫଳ, ଖଡ୍ଗ, ବରଦାମୁଦ୍ରା, ବାହନ ଭଦ୍ରାସନ (ଶ୍ୱେ) କୃଷ୍ଣସର୍ପ (ଦି)। ଯକ୍ଷୀ ବା ଯକ୍ଷ ନରଦତ୍ତା (ଶ୍ୱେ) ବା ବାହୁରୂପିଣୀ (ଦି)।

୨୧। ଯକ୍ଷୀ ବା ଯକ୍ଷ—ନମିନାଥ ଶ୍ୱେତାମ୍ବର ସଙ୍କେତ—ଚତୁର୍ବାହୁ, ବରଦାମୁଦ୍ରା, ଖଡ୍ଗ, ଲେମ୍ବୁଫଳ ଓ ବର୍ଚ୍ଛା। ଦିଗମ୍ବର ସଙ୍କେତ ଜପମାଳା, ଯଷ୍ଟି, ଢାଲ ଓ ଖଡ୍ଗ। ବାହନ ହଂସ (ଶ୍ୱେ) ବୃଷ (ଦି)। ଯକ୍ଷୀ ଗାନ୍ଧାରୀ (ଶ୍ୱେ) ବା ଚାମୁଣ୍ଡା (ଦି)।

୨୨। ଯକ୍ଷୀ ବା ଯକ୍ଷ – ନେମିନାଥ, ଶ୍ୱେତାମ୍ବର ସଙ୍କେତ ଆମ୍ରଚେଣ୍ଟା, ପାଶ, ଶିଶୁ ଓ ଅଙ୍କୁଶ। ଦିଗମ୍ବର ସଙ୍କେତ ଆମ୍ରପେଣ୍ଟା ଓ ଶିଶୁ। ବାହନ କେଶରୀ (ଶ୍ୱେ) (ଦି), ଯକ୍ଷୀ ବା ଯକ୍ଷ ଅମ୍ବିକା (ଶ୍ୱେ) ବା କୁଷ୍ମାଣ୍ଡୀ (ଶ୍ୱେ) ବା ଅମ୍ବା (ଦି)।

୨୩। ଯକ୍ଷୀ ବା ଯକ୍ଷ—ପାର୍ଶ୍ୱନାଥ। ଶ୍ୱେତାମ୍ବର ସଙ୍କେତ ପଦ୍ମ, ପାଶ, ଫଳ ଓ ଅଙ୍କୁଶ, ଦିଗମ୍ବର ସଙ୍କେତ (କ) ଚତୁର୍ବାହୁ ହେଲେ ଅଙ୍କୁଶ, ଜପମାଳା, ପଦ୍ମଯୁଗଳ (ଖ) ଷଡ଼ବାହୁ ହେଲେ ପାଶ, ଖଡ୍ଗ, ଚକ୍ର, ବର୍ଚ୍ଛା, ଅର୍ଦ୍ଧଚନ୍ଦ୍ର, ଗଦା ଓ ଯଷ୍ଟି (ଗ) ଅଷ୍ଟବାହୁ ହେଲେ ପାଶ ଇତ୍ୟାଦି (ଘ) ଚତୁର୍ବିଂଶବାହୁ ହେଲେ ଶଙ୍ଖ, ଖଡ୍ଗ, ଚକ୍ର, ଅର୍ଦ୍ଧଚନ୍ଦ୍ର, ପଦ୍ମ, ନୀଳକମଳ, ଧନୁ, ବର୍ଚ୍ଛା, ପାଶ, ଘଣ୍ଟି, କୁଶଘାସ, ଶର, ଯଷ୍ଟି, ଢାଲ, କୁଠାର, ତ୍ରିଶୂଳ, ବଜ୍ର, ପୁଷ୍ପହାର, ଫଳ, ଗଦା, ପତ୍ର ବୃନ୍ତ, ବରଦା ମୁଦ୍ରା ଇତ୍ୟାଦି।

୨୪। ଯକ୍ଷୀ ବା ଯକ୍ଷ—ମହାବୀର ବା ବର୍ଦ୍ଧମାନ। ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ, ପୁସ୍ତକ, ଲେମ୍ବୁଫଳ, ଅଭୟ-ମୁଦ୍ରା ଓ ପୁସ୍ତକ। ଦିଗମ୍ବର ସଙ୍କେତ ବରଦାମୁଦ୍ରା ଓ ପୁସ୍ତକ। ବାହନ କେଶରୀ (ଶ୍ୱେ) (ଦି)। ଯକ୍ଷୀ ବା ଯକ୍ଷ ସିଦ୍ଧାୟିକା।

## ନବଗ୍ରହ ବା ଜ୍ୟୋତିଷ୍କ ଦେବମାନଙ୍କର ବର୍ଣ୍ଣନା

୧। ଅଞ୍ଚଳ—ପୂର୍ବ, ଜ୍ୟୋତିଷ୍କ-ଦେବ ସୂର୍ଯ୍ୟ, ବାହନ ସପ୍ତାଶ୍ୱଯୁକ୍ତ ରଥ। ଶ୍ୱେତାମ୍ବର ସଙ୍କେତ ପଦ୍ମଯୁଗଳ। ଦିଗମ୍ବର ସଙ୍କେତ···

୨। ଅଞ୍ଚଳ ଦକ୍ଷିଣ—ପୂର୍ବ, ଜ୍ୟୋତିଷ୍କ ଶୁକ୍ର, ବାହନ ସର୍ପ (ଶ୍ୱେ), ଶ୍ୱେତାମ୍ବର ସଙ୍କେତ କୁମ୍ଭ, ଦିଗମ୍ବର ସଙ୍କେତ ତ୍ରିଭଙ୍ଗ ସୂକ୍ତ, ସର୍ପ, ପାଶ ଓ ଜପମାଳା।

୩। ଅଞ୍ଚଳ ଦକ୍ଷିଣ—ଜ୍ୟୋତିଷ୍କ-ଦେବ ମଙ୍ଗଳ, ବାହନ ପୃଥ୍ୱୀ (ଶ୍ୱେ), ଶ୍ୱେତାମ୍ବର ସଙ୍କେତ ମୃତ୍ତିକଖନନ ଯନ୍ତ୍ର, ବରଦ, ବର୍ଚ୍ଛା, ତ୍ରିଶୂଳ, ଗଦା, ଦିଗମ୍ବର ସଙ୍କେତ କେବଳ ବର୍ଚ୍ଛା।

୪। ଅଞ୍ଚଳ ଦକ୍ଷିଣ—ପଶ୍ଚିମ, ଜ୍ୟୋତିଷ୍କଦେବ ରାହୁ, ବାହନ କେଶରୀ (ଶ୍ୱେ), ଶ୍ୱେତାମ୍ବର ସଙ୍କେତ କୁଠାର, ଦିଗମ୍ବର ସଙ୍କେତ ବୈଜୟନ୍ତୀ।

୫। ଅଞ୍ଚଳ ପଶ୍ଚିମ— ଜ୍ୟୋତିଷ୍କ-ଦେବ ଶନି, ବାହନ କୂର୍ମ, ଶ୍ୱେତାମ୍ବର ସଙ୍କେତ କୁଠାର, ଦିଗମ୍ବର ସଙ୍କେତ ତ୍ରିଭଙ୍ଗ ସୂକ୍ତ।

୬ । ଅଞ୍ଚଳ ଉତ୍ତର— ପଶ୍ଚିମ, ଜ୍ୟୋତିଷ୍କଦେବ ଚନ୍ଦ୍ର, ବାହନ ଦଶ ଅଶ୍ୱଦ୍ୱାରା ଚାଳିତ ରଥ, ଶ୍ୱେତାମ୍ବର ସଙ୍କେତ ଅମୃତପୂର୍ଣ୍ଣ କୁମ୍ଭ, ଦିଗମ୍ବର ସଙ୍କେତ ଅଜ୍ଞାତ ।

୭ । ଅଞ୍ଚଳ ଉତ୍ତର—ଜ୍ୟୋତିଷ୍କ-ଦେବ ବୁଧ, ବାହନ ହଂସ (ଶ୍ୱେ) ସିଂହ (ଶ୍ୱେ), ଶ୍ୱେତାମ୍ବର ସଙ୍କେତ ପୁସ୍ତକ, ଖଡ୍‌ଗ, ଢାଲ, ଗଦା, ବରଦ । ଦିଗମ୍ବର ସଙ୍କେତ ଅଜ୍ଞାତ ।

୮ । ଅଞ୍ଚଳ ଉତ୍ତର ପୂର୍ବ—ଜ୍ୟୋତିଷ୍କଦେବ ବୃହସ୍ପତି, ବାହନ ହଂସ (ଶ୍ୱେ) ପଦ୍ମ (ଦି) । ଶ୍ୱେତାମ୍ବର ସଙ୍କେତ ପୁସ୍ତକ, ଜପମାଳା, ଯଷ୍ଟି, କମଣ୍ଡଳୁ, ବରଦ । ଦିଗମ୍ବର ସଙ୍କେତ ପୁସ୍ତକ, କମଣ୍ଡଳୁ ଓ ଜପମାଳା ।

୯ । ଅଞ୍ଚଳ—ଶାସନ ପାଇଁ ନିର୍ଦ୍ଦିଷ୍ଟ ଅଞ୍ଚଳ ନାହିଁ, ଜ୍ୟୋତିଷ୍କଦେବ କେତୁ, ବାହନ ଗୋଖର ସର୍ପ (ଶ୍ୱେ), ଶ୍ୱେତାମ୍ବର ସଙ୍କେତ ଗୋଖର ସର୍ପ, ଦିଗମ୍ବର ସଙ୍କେତ ଅଜ୍ଞାତ ।

## ଶ୍ରୁତଦେବୀ (ସରସ୍ୱତୀ) ଓ ଷୋଡ଼ଶ ବିଦ୍ୟାଦେବୀଙ୍କ ବର୍ଣ୍ଣନା

[ ଶ୍ରୁତଦେବୀ ବା ସରସ୍ୱତୀଙ୍କୁ ସମସ୍ତ ଷୋଡ଼ଶ ବିଦ୍ୟାଦେବୀଙ୍କର ଅଧିକର୍ତ୍ତ୍ରୀ ବୋଲି ବିଶ୍ୱାସ କରାଯାଏ । ତାଙ୍କର ପୂଜା ଅନ୍ୟାନ୍ୟ ଅଧସ୍ତନ ଦେବଦେବୀଙ୍କ ପୂଜା ପୂର୍ବରୁ ସମାପନ ହୋଇଥାଏ । କାର୍ତ୍ତିକ ମାସ ଶୁକ୍ଳ ପଞ୍ଚମୀ ତିଥିରେ ଜୈନମାନେ ତାଙ୍କର ଆରାଧନା ପାଇଁ ଏକ ବିଶେଷ ଉତ୍ସବର ଆୟୋଜନ କରନ୍ତି ଏବଂ ଏ ଉତ୍ସବ ସେମାନଙ୍କ ଦ୍ୱାରା 'ଜ୍ଞାନପଞ୍ଚମୀ' ରୂପେ କଥିତ ହୁଏ ]

୧ । ଦେବୀ— ଶ୍ରୁତଦେବୀ ବା ସରସ୍ୱତୀ, ବାହନ ହଂସ (ଶ୍ୱେ) କେକୀ (ଦି), ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ, ପଦ୍ମ, (ବରଦା ବା ବାଦ୍ୟଯନ୍ତ୍ର ସୀତାର) ପୁସ୍ତକ, ଜପମାଳା । ଦିଗମ୍ବର ସଙ୍କେତ ଶ୍ୱେତାମ୍ବର ସଙ୍କେତର ସଦୃଶ ।

୨ । ଦେବୀ – ରୋହିଣୀ, ବାହନ ଗାଈ (ଶ୍ୱେ) । ଶ୍ୱେତାମ୍ବର ସଙ୍କେତ ଶଙ୍ଖ, ଜପମାଳା ଧନୁ ଓ ଶର । ଦିଗମ୍ବର ସଙ୍କେତ କୁମ୍ଭ, ଶଙ୍ଖ, ପଦ୍ମ ଓ ଫଳ ।

୩ । ଦେବୀ—ପ୍ରଜ୍ଞାପତି । ବାହନ ମୟୂର (ଶ୍ୱେ) । ଶ୍ୱେତାଂବର ସଙ୍କେତ ପଦ୍ମ, ବର୍ଚ୍ଛା, ବରଦ, ଲେମ୍ବୁଫଳ । ଦିଗଂବର ସଙ୍କେତ ଖଡ୍‌ଗ ଓ ଥାଳ ।

୪ । ଦେବୀ – ବଜ୍ରାଙ୍କୁଶ । ବାହନ ଗଜ (ଶ୍ୱେ) ବିମାନ (ଦି) ଶ୍ୱେତାଂବର ସଙ୍କେତ ଖଡ୍‌ଗ, ବଜ୍ର, ଢାଲ, ବର୍ଚ୍ଛା, ବରଦ, ଲେମ୍ବୁଫଳ, ଅଙ୍କୁଶ । ଦିଗଂବର ସଙ୍କେତ ଅଙ୍କୁଶ ଓ ବାଦ୍ୟଯନ୍ତ୍ର ସୀତାର ।

୫ । ଦେବୀ—ଅପ୍ରତିଚକ୍ର (ଶ୍ୱେ) ବା ଜମ୍ବୁନଦା (ଦି) । ବାହନ ଗରୁଡ଼ (ଶ୍ୱେ) ମୟୂର (ଦି) । ଶ୍ୱେତାଂବର ସଙ୍କେତ ଚତୁର୍ବାହୁରେ ଥାଳ । ଦିଗମ୍ବର ସଙ୍କେତ ଖଡ୍‌ଗ ଓ ବର୍ଚ୍ଛା ।

୬ । ଦେବୀ—ପୁରୁଷଦତ୍ତା । ବାହନ ମହିଷ (ଶ୍ୱେ) ମୟୂର (ଦି) । ଶ୍ୱେତାଂବର ସଙ୍କେତ ଖଡ୍‌ଗ, ଢାଲ, ବରଦ ଓ ଲେମ୍ବୁଫଳ । ଦିଗଂବର ସଙ୍କେତ ବଜ୍ର ଓ ପଦ୍ମ ।

୭ । ଦେବୀ କାଳୀ—ବାହନ ମୃଗ (ଦି) ପଦ୍ମ (ଶ୍ୱେ) । ଶ୍ୱେତାଂବର ସଙ୍କେତ

ଦ୍ୱିବାହୁ ହେଲେ ବରଦ ଓ ଗଦା ଧାରଣ । ଚତୁର୍ବାହୁ ହେଲେ ଜପମାଳା, ଗଦା, ବଜ୍ର, ଅଭୟମୁଦ୍ରା । ଦିଗଂବର ସଙ୍କେତ ଖଡ୍‌ଗ ଓ ଯଷ୍ଟିଦ୍ୱାରା ହସ୍ତ ପ୍ରଶୋଭିତ ।

୮ । ଦେବୀ ମହାକାଳୀ—ବାହନ ନର (ଶ୍ୱେ), ଶବ (ଦି) ଶ୍ୱେତାଂବର ସଙ୍କେତ ଜପମାଳା, ଫଳ, ଘଣ୍ଟି ଓ ବରଦ ବା ଜପମାଳା, ବଜ୍ର, ଘଣ୍ଟି ଓ ଅଭୟ । ଦିଗଂବର ସଙ୍କେତ ପଦ୍ମ ।

୯ । ଦେବୀ—ଗୌରୀ, ବାହନ କୁମ୍ଭୀର (ଶ୍ୱେ) (ଦି) । ଶ୍ୱେତାଂବର ସଙ୍କେତ ଚତୁର୍ବାହୁ, ବରଦ, ଗଦା, ଜପମାଳା, ସ୍ଥଳପଦ୍ମ । ଦିଗଂବର ସଙ୍କେତ ପଦ୍ମ ।

୧୦ । ଦେବୀ— ଗାନ୍ଧାରୀ, ବାହନ ପଦ୍ମ (ଶ୍ୱେ) କୂର୍ମ (ଦି) । ଶ୍ୱେତାଂବର ସଙ୍କେତ ଯଷ୍ଟି, ବଜ୍ର, ବରଦ, ଅଭୟ ମୁଦ୍ରା, ଦିଗଂବର ସଙ୍କେତ ଖଡ୍‌ଗ ଓ ଥାଳ ।

୧୧ । ଦେବୀ—ମହାଜ୍ୱାଳା ବା ଜ୍ୱାଳାମାଳନୀ । ବାହନ ମାର୍ଜାର (ଶ୍ୱେ) ଶୂକର (ଶ୍ୱେ) ମହିଷ (ଦି) । ଶ୍ୱେତାଂବର ସଙ୍କେତ ବହୁ ଅସ୍ତ୍ରଧାରୀ । ଦିଂଗବର ସଙ୍କେତ ଧନୁ, ଢାଲ, ଖଡ୍‌ଗ ଓ ଥାଳଆ ।

୧୨ । ଦେବୀ—ମାନବୀ, ବାହନ ପଦ୍ମ (ଶ୍ୱେ) ଶୂକର (ଦି) ଶ୍ୱେତାଂବର ସଙ୍କେତ ଚତୁର୍ବାହୁ, ବରଦା, ଜପମାଳା ଓ ବୃକ୍ଷଶାଖା । ଦିଂଗବର ସଙ୍କେତ ତ୍ରିଶୂଳ ଧାରଣ ।

୧୩ । ଦେବୀ ବୈରୋଟୀ—ବାହନ ସର୍ପ (ଶ୍ୱେ) ସିଂହ (ଦି), ଶ୍ୱେତାମ୍ବର ସଙ୍କେତ ଖଡ୍‌ଗ, ସର୍ପ ଓ ଢାଲ । ଦିଗମ୍ବର ସଙ୍କେତ ସର୍ପ ।

୧୪ । ଦେବୀ ଅଚ୍ୟୁତା—ବାହନ ଅଶ୍ୱ (ଶ୍ୱେ) (ଦି), ଶ୍ୱେତାମ୍ବର ସଙ୍କେତ ଧନୁ, ଖଡ୍‌ଗ, ଢାଲ ଓ ଶର । ଦିଗମ୍ବର ସଙ୍କେତ ଖଡ୍‌ଗ ।

୧୫ । ଦେବୀ ମାନସୀ—ବାହନ ହଂସ (ଶ୍ୱେ) କେଶରୀ (ଶ୍ୱେ) ସର୍ପ (ଦି), ଶ୍ୱେତାମ୍ବର ସଙ୍କେତ ଚତୁର୍ବାହୁ, ବରଦ, ବଜ୍ର, ଜପମାଳା । ଦିଗମ୍ବର ସଙ୍କେତ···

୧୬ । ଦେବୀ ମହାମାନସୀ—ବାହନ ସିଂହ (ଶ୍ୱେ) ବା ହଂସ (ଦି) ଶ୍ୱେତାମ୍ବର ସଙ୍କେତ ଜପମାଳା, ବରଦ, ଖଡ୍‌ଗ, କମଣ୍ଡଳୁ ଓ ବର୍ଚ୍ଛା । ଦିଗମ୍ବର ସଙ୍କେତ ଜପମାଳା, ବରଦ, ମୁଦ୍ରା ଓ ପୁଷ୍ପହାର ।

## ଦିକ୍‌ପାଳ ବା ଲୋକପାଳ ବା ବସୁଦେବତାଙ୍କ ବର୍ଣ୍ଣନା

[ ଜୈନ ବିଶ୍ୱାସ ଅନୁଯାୟୀ ଦିକ୍‌ପାଳ ବା ବସୁ ଦେବତାମାନେ ଦିଗମାନଙ୍କରେ ପହରା ଦିଅନ୍ତି । ତୀର୍ଥଙ୍କରମାନଙ୍କର ସେମାନେ ସର୍ବଦା ବଶ୍ୟ । ଦଶଦିକ୍‌ପାଳଙ୍କର ମୂର୍ତ୍ତି କଳା, ଶ୍ୱେତାମ୍ବରମାନଙ୍କ ଦ୍ୱାରା ସ୍ୱୀକୃତ ହୁଏ । ଦିଗମ୍ବରମାନେ କେବଳ ପ୍ରଥମ ଆଠ ଜଣ ଦେବ ପ୍ରହରୀଙ୍କୁ ଗ୍ରହଣ କରନ୍ତି । ବ୍ରହ୍ମା ଓ ନାଗ ସେମାନଙ୍କର ପରିବାର ଅନ୍ତର୍ଭୁକ୍ତ ନୁହନ୍ତି । ]

୧ । ଦିକ୍ ପୂର୍ବ—ଦିକ୍‌ପାଳ ଇନ୍ଦ୍ର, ବାହନ ଗଜ (ଶ୍ୱେ) (ଦି), ଶ୍ୱେତାମ୍ବର ସଙ୍କେତ ବଜ୍ର । ଦିଗମ୍ବର ସଙ୍କେତ ବଜ୍ର ।

୨ । ଦିକ୍ ଦକ୍ଷିଣ—ଦିକ୍‌ପାଳ ଅଗ୍ନି, ବାହନ ମେଷ (ଶ୍ୱେ) (ଦି) ।

ଶ୍ୱେତାମ୍ବର ସଙ୍କେତ ବର୍ଚ୍ଛା, ସପ୍ତଶିଖା, ଧନୁ ଓ ଶର । ଦିଗମ୍ବର ସଙ୍କେତ ବର୍ଚ୍ଛା, ସପ୍ତଶିଖା ଓ ପଞ୍ଚୀସ୍ଥ କଳଶୀ ।

୩ । ଦିକ୍ ଦକ୍ଷିଣ—ଦିକ୍‌ପାଳ ଯମ, ବାହନ ମହିଷ (ଶ୍ୱେ) (ଦି), ଶ୍ୱେତାମ୍ବର ସଙ୍କେତ ଯଷ୍ଟି । ଦିଗମ୍ବର ସଙ୍କେତ ଯଷ୍ଟି ।

୪ । ଦିକ୍ ଦକ୍ଷିଣ ପଶ୍ଚିମ—ଦିକ୍‌ପାଳ ନୈଋତ, ବାହନ ପ୍ରେତ (ଶ୍ୱେ) ଭଲ୍ଲୁକ (ଦି) ଶ୍ୱେତାମ୍ବର ସଙ୍କେତ ଚର୍ମଧାନ, ବ୍ୟାଘ୍ରଚର୍ମ, ଗଦା, ଖଡ୍‌ଗ ଓ ପିନାକ । ଦିଗଂବର ସଙ୍କେତ ଗଦା ।

୫ । ଦିକ୍ ପଶ୍ଚିମ—ଦିକ୍‌ପାଳ ବରୁଣ, ବାହନ ଶିଶୁମାର (ଦି) (ଶ୍ୱେ) ମୀନ (ଶ୍ୱେ), ଶ୍ୱେତାଂବର ସଙ୍କେତ ପାଶ ଏବଂ ଛତ୍ରରୂପକ ଘଟବ ପାତର ଧାରଣ, ଦିଗଂବର ସଙ୍କେତ ମୁକ୍ତା, ଶୈବାଳଦ୍ୱାରା ଝଡିତ ଏବଂ ପାଶ ଧାରଣ ।

୬ । ଦିକ୍ ଉତ୍ତର ପଶ୍ଚିମ,—ଦିକ୍‌ପାଳ ବାୟୁ, ବାହନ ମୃଗ (ଶ୍ୱେ) (ଦି) ଶ୍ୱେତାଂବର ସଙ୍କେତ ବଜ୍ର ଓ ବୈଜୟନ୍ତୀ । ଦିଗଂବର ସଙ୍କେତ କାଷ୍ଠାସ୍ତ୍ର ।

୭ । ଦିକ୍ ଉତ୍ତର—ଦିକ୍‌ପାଳ କୁବେର, ବାହନ ନର (ଶ୍ୱେ) ରଥ (ଦି) ଶ୍ୱେତାଂବର ସଙ୍କେତ ରତ୍ନ ଓ ମୁଦ୍‌ଗର । ଦିଗଂବର ସଙ୍କେତ ଦ୍ୱିବାହୁ କିଂବା ଚତୁର୍ବାହୁ ସ୍ୱସ୍ତିକ ବିମାନରେ ଆରୋହଣ ।

୮ । ଦିକ୍ ଉତ୍ତର—ପୂର୍ବ ଦିକ୍‌ପାଳ ଈଶାନ, ବାହନ ବୃଷଭ (ଶ୍ୱେ) (ଦି) ଶ୍ୱେତାଂବର ସଙ୍କେତ ଧନୁ, ତ୍ରିଶୂଳ ଓ ସର୍ପ । ଦିଗଂବର ସଙ୍କେତ ଧନୁ, ତ୍ରିଶୂଳ, ସର୍ପ ଓ ଖର୍ପର

୯ । ଦିକ୍ ଊର୍ଦ୍ଧ୍ୱାଞ୍ଚଳ,—ଦିକ୍‌ପାଳ ବ୍ରହ୍ମା, ବାହନ ହଂସ (ଶ୍ୱେ) ଶ୍ୱେତାଂବର ସଙ୍କେତ ଚତୁର୍ବାହୁ, ପୁସ୍ତକ ଓ ପଦ୍ମ । ଦିଗଂବର ସଙ୍କେତ (ଅଜ୍ଞାତ) ।

୧୦ । ଦିକ୍ ପାତାଳ—ଦିକ୍‌ପାଳ ନାଗ, ବାହନ ପଦ୍ମ (ଶ୍ୱେ), ଶ୍ୱେତାଂବର ସଙ୍କେତ ହସ୍ତରେ ସର୍ପ ଧାରଣ । ଦିଗଂବର ସଙ୍କେତ··· ।

## କତିପୟ ବିକ୍ଷିପ୍ତ ଦେବଦେବୀଙ୍କ ବର୍ଣ୍ଣନା

୧ । ଦେବ—ହରିନୈଗମେଷୀ ବା ନୈଗମେଷ [ ସନ୍ତାନଜନ୍ମବର ପ୍ରଦାନକାରୀ । ବାହନ ଅଜ୍ଞାତ, ଶ୍ୱେତାଂବର ସଙ୍କେତ ଛାଗଳଶିର । ଦିଗଂବର ସଙ୍କେତ ଅଜ୍ଞାତ ।

୨ । ଦେବ—କ୍ଷେତ୍ରପାଳ (କ୍ଷେତ୍ର ରକ୍ଷାକାରୀ), ବାହନ ଶ୍ୱାନ (ଶ୍ୱେ) ଶ୍ୱେତାଂବର ସଙ୍କେତ ଜଟା, କେଶ, ସର୍ପ, ପବିତ୍ର ଉପବୀତ, ବଂଶବାୟୁ, ଅସ୍ତ୍ର ସଜ୍ଜିତ, ଷଡ଼୍‌ବାହୁ ହେଲେ ମୁଦ୍‌ଗର ପାଶ, ଡଂବରୁ, ଧନୁ, ଅଙ୍କୁଶ ଓ ଗେଦିକ ଧାରଣ । ଦିଗଂବର ସଙ୍କେତ (ଅଜ୍ଞାତ) ।

୩ । ଦେବ—ଗଣେଶ ଚତୁର୍ନାଥ, ବାହନ ମୂଷିକ (ଶ୍ୱେ), ଶ୍ୱେତାଂବର ସଙ୍କେତ ହସ୍ତସଂଖ୍ୟା ଦୁଇରୁ ଚାରି, ୬, ୯, ୧୮ ଓ ୧୧୮ ପର୍ଯ୍ୟନ୍ତ ପରିବର୍ତ୍ତିତ ହୁଏ; କୁଠାର, ବରଦ, ମୋଦକ ଓ ଅଭୟ । ଦିଗଂବର ସଙ୍କେତ (ଅଜ୍ଞାତ) ।

୪ । ଦେବ—ଶ୍ରୀ ବା ଲକ୍ଷ୍ମୀ (ଧନ ଦେବୀ), ବାହନ ଗଜ (ଶ୍ୱେ) ଶ୍ୱେତାଂବର ସଙ୍କେତ ନଳଣୀ, ଦିଗଂବର ସଙ୍କେତ ଚତୁର୍ବାହୁ, ପୁଷ୍ପ ଓ ପଦ୍ମ ।

୫ । ଦେବ— ଶାନ୍ତିଦେବ, ଚାଡ଼ନ ପଦ୍ମ (ଶ୍ୱେ) ଶ୍ୱେତାଂବର ସଙ୍କେତ ଚତୁର୍ବାହୁ, ବରଦା, ଜପମାଳା, କମଣ୍ଡଳୁ ଓ କଳସ । ଦିଗଂବର ସଙ୍କେତ (ଅଜ୍ଞାତ) ।

## —ଅନୁକ୍ରମଣିକା—

## ଓଡ଼ିଶାରେ ଜୈନମାନଙ୍କର ଜନଦର୍ଶନ

ବାଲେଶ୍ୱର ଜିଲ୍ଲାରେ ତନ୍ତୀମାନଙ୍କର ସଂଖ୍ୟା ୫୬,୦୦୦ । ଏମାନେ ପୂର୍ବେ ଖୁବ ଭଲ ଲୁଗା ବୁଣୁଥିଲେ; କିନ୍ତୁ ବିଳାତି ଲୁଗା ଆସିବାରୁ ଏମାନଙ୍କର ବ୍ୟବସାୟ ନଷ୍ଟ ହୋଇଗଲା । ଅନେକ ଲୁଗା ବୁଣିବା ଛାଡ଼ିଦେଲେ ଆଉ ଗୃହ ଓ ମୂଲିଆ କାମ କରିବାକୁ ଲାଗିଲେ । ଏମାନଙ୍କ ଭିତରୁ ଯେଉଁମାନଙ୍କୁ 'ଅଶ୍ୱିନୀ' ଓ 'ଗୌରିଆ' ତନ୍ତୀ କୁହାଯାଏ ସେମାନେ ପ୍ରଥମେ ବଙ୍ଗଦେଶରୁ ବାଲେଶ୍ୱରକୁ ସରୁ ସୂତାର ଲୁଗା ବୁଣିବା ଶିଖିବାକୁ ଆସିଥିଲେ । ମାନଭୂମ ଗେଜେଟିଏରରୁ ଜଣାଯାଏ ଯେ ସରାକ୍-ମାନଙ୍କ ଭିତରେ 'ଅଶ୍ୱିନୀ' ତନ୍ତୀ ମଧ୍ୟ ଅଛନ୍ତି । 'ଏଥିରୁ ଜଣାଯାଏ ଯେ ବାଲେଶ୍ୱରର ଅଶ୍ୱିନୀ ତନ୍ତୀମାନେ ପୂର୍ବ-କାଳରେ ଶ୍ରାବକ ଥିଲେ ଏବଂ ଏମାନଙ୍କର ଧର୍ମ ଜୈନ ଥିଲା ।' ବାଲେଶ୍ୱର ଜିଲ୍ଲାରେ ଅଘୋର ବୋଲି ଗୋଟାଏ ଜାତି ଅଛି ଅର୍ଥାତ୍ ସେମାନେ ଉଗ୍ର କ୍ଷତ୍ରିୟ । ସେମାନେ ବେପାର ବଣିଜ କରୁଥିଲେ । ଅନୁମାନରୁ ଜଣାଯାଏ ଯେ ହୁଏତ ସେମାନେ ଏକ ସମୟରେ ଅଗ୍ରବାଲ ଥିଲେ ।

ସୁବର୍ଣ୍ଣରେଖା ନଦୀ ଉପରେ ବାଲିଆ-ପାଳର ସାତ ମାଇଲ ପୂର୍ବକୁ 'କରଚଶାଳ ଗ୍ରାମ ଅଛି । ସେଠାରେ କରଚ ରାଜାଙ୍କ ପ୍ରାଚୀନ କିଲ୍ଲା ଅଛି ।'

## ସିଂହଭୂମ ଜିଲ୍ଲା

ବେଙ୍ଗଲ ଗେଜେଟିୟର ଖ୍ରୀ. ୧୯୧୦ Vol. No. 20—

ସିଂହଭୂମି ଗ୍ରେଟନାଗପୁରର ଦକ୍ଷିଣ-ପୂର୍ବରେ ଅବସ୍ଥିତ । କ୍ଷେତ୍ରଫଳ—୩୮୯୧ ବର୍ଗମାଇଲ । ଲୋକସଂଖ୍ୟା—୬୧୩୫୭୯ । ପୂର୍ବରେ ମେଦିନୀପୁର; ଦକ୍ଷିଣରେ ମୟୂରଭଞ୍ଜ, ପଶ୍ଚିମରେ ଗାଙ୍ଗପୁର ଓ ରାଞ୍ଚି ଏବଂ ଉତ୍ତରରେ ରାଞ୍ଚି ଓ ମାନଭୂମ ।

ବାମନଘାଟିରୁ ପ୍ରାପ୍ତ ତାମ୍ରଲେଖ (ଦ୍ୱାଦଶ ଶତାବ୍ଦୀ) ରୁ ଜଣାଯାଏ ଯେ ମୟୂରଭଞ୍ଜର ଭଞ୍ଜବଂଶୀୟ ରାଜାମାନେ ଅନେକ ଗ୍ରାମ ଶ୍ରାବକମାନଙ୍କୁ ଦେଇଥିଲେ । ଉକ୍ତ ବଂଶର ସଂସ୍ଥାପକ ବୀରଭଦ୍ର ଏକକୋଟି ସାଧୁଙ୍କର ଗୁରୁ ଥିଲେ । (ବେଙ୍ଗଲ ଜର୍ନଲ ଏସି, ଖ୍ରୀ. ୧୮୭୧, ପୃ—୧୬୧-୬୯) । ଏମାନେ ଜୈନ ଥିଲେ । ସେଠାରେ ତମ୍ବାଖଣିରେ ଏହି ସ୍ଥାନର ଶ୍ରାବକମାନେ କାମ କରୁଥିଲେ ।

ସେଠାରେ ପାହାଡ଼, ଘାଟୀ, ଘନ ଜଙ୍ଗଲ ଓ ନିକଟସ୍ଥ ଗ୍ରାମମାନଙ୍କରେ ବହୁ ପ୍ରାଚୀନ ଚିହ୍ନ ଅଦ୍ୟାପି ବିଦ୍ୟମାନ । ଏ ଅଞ୍ଚଳ ଶ୍ରାବକମାନଙ୍କ ଅଧୀନରେ ଥିଲା ।

---

ପ୍ରାଚୀନ ଜୈନ ସ୍ମାରକ (ବଙ୍ଗ, ବିହାର, ଓଡ଼ିଶା) । ଲେଖକ—ଧର୍ମ ଦିବାକର ଶୀତଳ ପ୍ରସାଦ ଜୈନ ଗ୍ରନ୍ଥରୁ ସଂଗୃହୀତ । ଜୈନ ପୁସ୍ତକାଳୟ, ଗାନ୍ଧୀ ଚଉକ, ସୁରଟ ।

ମେଜର ଟିକେଲ ଲେଖିଛନ୍ତି— (୧୮୪୦) ସିଂହଭୂମ ଶ୍ରାବକମାନଙ୍କ ହାତରେ ଥିଲା । କିନ୍ତୁ ବର୍ତ୍ତମାନ ନାହିଁ । ସେତେବେଳେ ସେମାନଙ୍କ ସଂଖ୍ୟା ଅନ୍ୟମାନଙ୍କ ଅପେକ୍ଷା ଅଧିକ ଥିଲା । ସେମାନଙ୍କର ପ୍ରକୃତ ଦେଶର ନାମ 'ଶିଖର ଭୂମି ଓ ପାଞ୍ଚେତ' । ସେମାନଙ୍କୁ ବହୁ କଷ୍ଟ ଦିଆଯାଇ ବାହାର କରି ଦିଆ ଯାଇଛି ( ଜର୍ନଲ ଏ. ଏସ୍, ବେଙ୍ଗଲ୍, ୧୮୪୦, ପୃ—୬୯୭ ) ।

କର୍ଣ୍ଣେଲ ଡାଲ୍‌ଟନ୍ ବେଙ୍ଗଲ ଏଥ୍‌ନୋଲଜୀରେ ଲେଖିଛନ୍ତି—ସିଂହଭୂମର କେତେକାଂଶ ଏପରି ଏକ ଦଳ ଲୋକଙ୍କ ହାତରେ ଥିଲା, ଯେଉଁମାନେ କି ମାନଭୂମରେ ନିଜର ପ୍ରାଚୀନ ସ୍ମାରକ ରଖି ଯାଇଛନ୍ତି । ବସ୍ତୁତଃ ସେଠାରେ ଅନେକ ଆଦିମ ଲୋକ ଥିଲେ । ସେମାନଙ୍କୁ ଶ୍ରାବକ ବା ଜୈନ କୁହା ଯାଉଥିଲା । ଏବେ ମଧ୍ୟ କୋଲହନର 'ହୋ' ଜାତିର ଲୋକେ କେତେଗୁଡ଼ିଏ ପୋଖରୀକୁ 'ସରବକ (ଶ୍ରାବକ) ସରୋବର' କହନ୍ତି ।

ଶ୍ରାବକ ବା ଗୃହସ୍ଥ ଜୈନମାନେ ଜଙ୍ଗଲ ଭିତରେ ତମ୍ବାଖଣି ଖୋଳି ସେଥିପାଇଁ ସମସ୍ତ ଶକ୍ତି ଓ ସମୟ ଲଗାଇଛନ୍ତି । ( A. S. B. 1869. p. 179-5) । ମାନଭୂମର ଜୈନମନ୍ଦିର ୧୪ଶ ବା ୧୫ଶ ଶତାବ୍ଦୀର ପରେ ନୁହେଁ । ତେଣୁ ସେହି ସମୟ ପୂର୍ବରୁ ଜୈନଧର୍ମ ସେଠାରେ ପ୍ରବେଶ କରିଥିବା ସମ୍ଭବ ।

ବେନୁସାଗରରେ କେତେକ ପ୍ରାଚୀନ (୭ମ ଶତାବ୍ଦୀ) ମନ୍ଦିର ଅଛି । ଗୋଟିଏ ବୌଦ୍ଧମୂର୍ତ୍ତି ଓ ଗୋଟିଏ ଜୈନମୂର୍ତ୍ତି ଅଛି । ବେନୁସାଗର କେଶନଗଡ଼ର ରାଜା 'କୃଷ୍ଣ'ଙ୍କ ପୁତ୍ର 'ବେନୁ'ଙ୍କ ଦ୍ୱାରା ଖୋଦିତ ।

କୋଲହନ — ଏଠାର ପ୍ରାଚୀନ ଅଧିବାସୀ ଶ୍ରାବକମାନେ ଅନେକ ପୁଷ୍କରିଣୀ ଖୋଳାଇଥିଲେ ।

ରୁଆମ—ଧଳଭୂମିର ମହୁଲିଆ ଗ୍ରାମଠାରୁ ଦକ୍ଷିଣପଶ୍ଚିମରେ ଦୁଇମାଇଲ ଦୂରରେ କେତେକ ସ୍ଥାନରେ ଶ୍ରାବକମାନଙ୍କର ବସତି ଥିବାର ପ୍ରମାଣ ମିଳେ ।

'ଶିକ୍ଷା' ( ବାଙ୍କୀପୁର ଭା ୪ । ୫ । ୧୯୨୨ ) ପତ୍ରିକାରୁ ଜଣାଯାଏ ଯେ 'ହୋ' ଏବଂ ଭୂୟାଁଙ୍କୁ ଛାଡ଼ି ଅନ୍ୟ ଜାତିର ଲୋକେ ଏ ସ୍ଥାନକୁ ( ସିଂହଭୂମ ) ଆସିବା ତିନିଶହ ବର୍ଷରୁ ଅଧିକ ନୁହେ । ଶହେ ବର୍ଷ ପୂର୍ବେ ସିଂହଭୂମିର ଅନେକ ସ୍ଥାନରେ ବିଶେଷ କରି ପୋଡ଼ାହାଟରେ ଅନେକ ଜୈନ ଲୋକ ଥିଲେ । ସେମାନଙ୍କୁ ସେଠାରେ ଆଦିମ ଅଧିବାସୀମାନେ 'ସୋରାଖ' ( ସର୍ବଶ୍ରେଷ୍ଠୀ ) କହନ୍ତି । ସେ ସମୟର ପୁରାତନ ମନ୍ଦିର, ମୂର୍ତ୍ତି, ଗୁହା, ପୁଷ୍କରିଣୀ ଆଦିର ଅବଶେଷ ଦେଖି ମନେ ହୁଏ ଯେ ସେମାନେ ଐଶ୍ୱର୍ଯ୍ୟଶାଳୀ ଓ ସ୍ୱାଧୀନ ଥିଲେ । ସେଠାରେ ମାଟିତଳୁ ଟଙ୍କା, ମୋହର, ଚିକ୍କଣ ଭଙ୍ଗା କାଚ, ମୂଲ୍ୟବାନ୍ ପଥରର ମାଳା ମିଳିଛି ।

ହାଂସୀ, ବୁଣ୍ଡୁ, ମୋତ, ହୁରୁଣ୍ଡି, ଦେଉଳଡିହ, ନୂଆଡିହ, ମୋଡି, କୌଡ଼ିହ ଆଦି ଗ୍ରାମମାନଙ୍କରେ ପ୍ରାଚୀନ ଜୈନମୂର୍ତ୍ତି ମନ୍ଦିର ଓ ସରୋବରର ଚିହ୍ନ ଅଛି । ମୂର୍ତ୍ତିମାନଙ୍କ ମଧ୍ୟରୁ ଅଧିକାଂଶ ପାର୍ଶ୍ୱନାଥଙ୍କର । ହୁରୁଣ୍ଡିରେ ଋଷଭଦେବଙ୍କର ଗୋଟିଏ ବ ମୂର୍ତ୍ତି ଅଛି ।

ବର୍ତ୍ତମାନ ସେହି ମୂର୍ତ୍ତିକୁ ବାସୁଦେବ ମୂର୍ତ୍ତି ମନେକରି ଲୋକେ ପୂଜା କରୁଥିଲେ, ତେଲ, ସିନ୍ଦୂର ଦିଆ ହୋଇଥିଲା । ନଆପଡ଼ାର ଶ୍ରାବକମାନେ ପଇତା ପିନ୍ଧନ୍ତି ଓ ପାର୍ଶ୍ୱନାଥଙ୍କ ପୂଜା କରନ୍ତି । ମହାପାତ୍ର, ପାତ୍ର, ଦତ୍ତ, ପାତ୍ରଗ, ବର୍ଦ୍ଧନ, ମହାନ୍ତ, ଅଧିକୁଧି, ସାମଗ୍ରୀ, ଦେବତା, ପ୍ରମାଣିକ, ଆଗ୍ରହୀ, ବେହେରା, ଦାସ, ସାଉ, ପୃଷ୍ଟି, ମହାନ୍ତି, ମୋହନ୍ତ, ମଣ୍ଡଳ, ବୈଶାଖ, ଗଉଡ଼, ନାୟକ, ନଶଙ୍କ, ଚୌଧୁରୀ, ସୁଆ, ସେନାପତି, ଭକ୍ତ, ନାହକ—ଏହି ସଙ୍ଖ୍ୟାରୀ ଜୈନମାନଙ୍କର ଗୋତ୍ର ଗୁଡ଼ିକଗୋଟି—ଅନନ୍ତଦେବ, କ୍ଷେମଦେବ, କଶ୍ୟପ, କୃଷ୍ଣଦେବ ।

ସରାକ ତନ୍ତୀ ଓ ରଙ୍ଗଣୀ ତନ୍ତୀମାନଙ୍କ ମଧ୍ୟରେ ବୈବାହିକ ସମ୍ବନ୍ଧ ହୁଏ ନାହିଁ; ଏମାନେ ନିଜେ କୃଷିକାର୍ଯ୍ୟ କରନ୍ତି ନାହିଁ । ଏମାନଙ୍କର ପୁରୋହିତ ନାହାନ୍ତି । ରଙ୍ଗଣୀ ତନ୍ତୀମାନେ ବ୍ରାହ୍ମଣମାନଙ୍କ ହାତରୁ ମଧ୍ୟ ପାଣି ପିଅନ୍ତି ନାହିଁ । ସରାକମାନେ ଡିମିରି ଆଦି ଫଳରେ ପୋକ ଥିବାରୁ ଖାଆନ୍ତି ନାହିଁ ଏବଂ ପିଆଜ, କୋବି ଓ ଆଳୁ ମଧ୍ୟ ଖାଆନ୍ତି ନାହିଁ । ଏମାନେ ଖଣ୍ଡଗିରି ଆସନ୍ତି । ବିବାହକାଣ୍ଡ ଓ ଶୁଦ୍ଧି ନିପ୍ରା ନାମରେ ଦୁଇଖଣ୍ଡି ଗ୍ରନ୍ଥ ଏମାନଙ୍କ ନିକଟରେ ଅଛି । ତଦ୍ବାରା ଏମାନେ ବିନା ପୁରୋହିତରେ ବୈବାହିକ ସଂସ୍କାର କରିଥାଆନ୍ତି ।

## କଟକ ଜିଲ୍ଲା

ଆସିଆ ପାହାଡ଼, ଛତିଆ ପାହାଡ଼, ଲୁହୋକ, ଯାଜପୁର, ଉଦୟଗିରି ଉଦୟଗିରି (ଯାଜପୁର) ଅଞ୍ଚଳରେ ଜୈନମୂର୍ତ୍ତି ଅଛି । ଆସିଆ ପାହାଡ଼କୁ ଚତୁର୍ଭୁଜଚୋଟ ମଧ୍ୟ କହନ୍ତି । ଯାଜପୁରରେ ଅଖଣ୍ଡେଶ୍ୱର ମନ୍ଦିରର ଅନ୍ୟ ମୂର୍ତ୍ତିମାନଙ୍କ ମଧ୍ୟରେ ଗୋଟିଏ ଶ୍ରେଷ୍ଠ ଜୈନମୂର୍ତ୍ତି ଅବସ୍ଥିତ । କଟକ ଜିଲ୍ଲାର ତିଗିରିଆ, ବଡ଼ମ୍ବା ଓ ବାଙ୍କୀ ଏବଂ ପୁରୀ ଜିଲ୍ଲାର ପିପିଲି ଥାନାରେ ସରାକ ତନ୍ତୀ ବାସ କରନ୍ତି ।

## କୋରାପୁଟ ଜିଲ୍ଲାରେ ଜୈନମୂର୍ତ୍ତି

ଭୈରବ ସିଂହପୁର—ଜୟପୁର ପଲ୍ଲୀର ଗୋଟିଏ ଗାଁ—ପାହାଡ଼ ମୂଳରେ—୨୦୦୦ ଫୁଟ ଉଚ୍ଚ । ଲୋକସଂଖ୍ୟା ୧୧୪୧ (୧୯୪୧ ଖ୍ରୀଷ୍ଟାବ୍ଦରେ) ।

ଏହି ଗ୍ରାମ ଏକ ସମୟରେ ଜୈନଧର୍ମର ଗୋଟିଏ ପ୍ରସିଦ୍ଧ କେନ୍ଦ୍ର ଥିଲା । ଏଠାରେ ଅନେକ ଜୈନ ତୀର୍ଥଙ୍କର ମୂର୍ତ୍ତି ଅଛି । କିଏ ଏକ ଫୁଟ, କିଏ ବା ପାଞ୍ଚ ଫୁଟ, କିଏ ଏକ ପାଦର ମଝିମଝିକିଆ । ଏଠାରେ ଋଷଭନାଥଙ୍କର ଗୋଟିଏ ଆସୀନ ମୂର୍ତ୍ତି ଅଛି, Steatite ପଥରରେ । ବର୍ତ୍ତମାନ ଏହାକୁ ଗ୍ରାମବାସୀମାନେ କୁରାଢ଼ି, ଟାଙ୍ଗିଆ ଘଷିବା ପାଇଁ ବ୍ୟବହାର କରୁଛନ୍ତି । ଏହିଠାରେ ଗୋଟିଏ ଶିବମନ୍ଦିର ଅଛି । ସେହି ଶିବମନ୍ଦିରରେ କାନ୍ଥ ଭିତରକୁ ଅନେକ ଜୈନମୂର୍ତ୍ତି ରହିଯାଇଅଛି । ବର୍ତ୍ତମାନ ଏଠାରେ ବ୍ରାହ୍ମଣବସତି ହୋଇଛି ।

ନନ୍ଦପୁରଠାରେ କେତେକ ଜୈନମୂର୍ତ୍ତି ଦେଖାଯାଏ । କିନ୍ତୁ ସେ ସମୟରେ କେଉଁ କେଉଁ ଜାତିର ଲୋକ ଜୈନ ଥିଲେ, ତାହାର କିଛି ପ୍ରମାଣ ନାହିଁ । (ପୃଷ୍ଠା ୬୨) (କୋରାପୁଟ ଜିଲ୍ଲା ଗେଜେଟିଅର, ୧୯୪୫) ।

---

କୋରାପୁଟ ଜିଲ୍ଲା, ଗ୍ୱାଲିଟିଅର—୧୯୫୬, ପୃଷ୍ଠା ୧୫୯ ।

*BIBLIOGRAPHY* :


Abhidhan Chihtamoni (Kosa) of Hemachandra, Part I—II.

Abhidhana Rajendra (Kosa) by Vijaya Rajendra Suri, Vol. I—VII.

Acharanga Sutra with commentary of Silanka, Agomodaya Samiti Mahasena, 1916.

Acharanga Sutra—translation by H. Jacobi.

Sacred Books of the East, Vol. XXII

Avasyaka Vritti of Haribhadra Suri.

Bhagavati Sutra, with the comm. of Abhayadeva Suri., 3 Vols.

Brhatkatha (Kosa) of Harisena—edited by A. N. Upadhye

Harivamsa of Jinasena, 2 Vols.—edited by Pandit Darbarilal.

Jambudvipaprajnapti sutra with comm. of Santichandra 2 Vols.

Jina Samhita of Indranandi.

Mahapurana (Adipurana) of Jinasena, Vols. I—II.

Pravachana Saroddhara of Nemichandra.

Mahabharata with comm. of Nilakantha.

Rigveda Samhita—edited by Max Muller.

Rigveda Samhita—edited by Vaidika Samsodhana Mandala.

The wonder that was India—By Bhasham

Archaeological Survey of India—Vols. VIII—XIII.

Ethnology of Bengal—Colonel Dalton.

Mahavira : His life and teachings— Dr. B. C. Law.

Vaisali in Indian history and culture—Dr. R. K. Mukherjee.

Jaina Tirthankar in India and their architecture—by Sarabhai N. Nawab.

Gazetteer, Singbhum, Saraikella and Kharswan, Puri—by O. Malley.

The age of Imperial unity: The classical age—Bharatiya Vidya Bhavan series. Vol. II and Vol. III.

Jainism in Northern India—by C. J. Saha

Ancient India and Indian civilisation—Stem, Masson-Oursel, Grabowsk.

Philosophies of India—Heinrich Zimmer.

Evolution of religion—2 Vols. E. Caird.

The Nativity scene of a Jaina relief form—
Mathura Jaina Antiquary, Arrah, Vol., X. V. S. Agrawala.

Vasabdatta and Sakuntala scenes in the Ranigumpha cave in Orissa—J. I. S. O. Art. XIV— V. S. Agrawala.

Age of the Imperial Guptas—R. D. Banerjee.

History of Orissa—2 Vols. R. D. Banerjee.

History of Orissa (in Oriya)—Dr. H. K. Mahatab.

A history of Orissa—Vol. II. edited by Dr. N. K. Sahu.

Old Brahmi inscription in the Udaygiri and Khandagiri caves—Dr. B. M. Barua.

Hathigumpha inscription of Kharavela I. II. Q. XI.

Jaina Iconography—Indian Antiquary. Vol. XI.

Indian Architecture Vol. I, Percy Brown.

Mediaeval Indian sculptures in British Museums—
R. P. Chanda.

Jaina Sahityano Sankhipta Itihasa (Gujrati)—Bombay 1933.

Cave temples of India, Fergusson and Burgess.

The birth of civilisation in the Near East—Henry Frankfort

Orissa and her remains—M. M. Ganguli.

Indian Sculpture—Stella Kramrisch.

A list of Brahmi inscriptions from time early to about A. D. 400, E. I. Vol. X.

Antiquities of Orissa—R. L. Mitra.

The Vedic Age—Bharatiya Vidya Bhavan.

Premi Abhinandana Grantha (M. Bharat)

The Manchapuri cave. I. H. Q. XXVII—T. N. Ramachandran.

Yaksha worship in early Jaina literature—
Journal of the Oriental Institute Vol. III No. 1.

History of Fine Art in India and Ceylon—V. A. Smith.

Cambridge history of India, Vol. I

Bengal District Gazetteer, Puri and Balasore.

Archaeological survey of Mayurbhanj—N. N. Vasu.

Political history of ancient India—
by Dr. H. C. Roy Chaudhury.

Early history of Deccan—R. G. Bhandarkar.

Imperial Gazetteer of India—Vol. II

Lectures on the origin and growth of Religion—
T. W. Rhys Davids.

Proceedings of the convention of religions in India—
S. N. Sen.

Jainism in Bihar—P. C. Rai Chaudhury,

Studies in Jaina Art—U. P. Shah.

Chitrasena Padmavati Kalpa.

Prachin Jaina Smarak (Hindi)—by Brahmachari Sitalprasadji
(1) Madras and Mysore
(2) Bengal, Bihar and Orissa

କଇଳା ଚରିତ ଓ ରାମଗାଥା—୭ ରାଜା ଗୋବିନ୍ଦଚନ୍ଦ୍ର ଭଞ୍ଜଦେଓ ପ୍ରଣୀତ
ସମ୍ପାଦକ—ପଣ୍ଡିତ ଶ୍ରୀ ବାନାମ୍ବର ଆଚାର୍ଯ୍ୟ, ୧୯୪୦

ଭଗବାନ୍ ଗୁଣଭଦ୍ରାଚାର୍ଯ୍ୟ ପ୍ରଣୀତ ମହାପୁରାଣ (ସଂସ୍କୃତ ଓ ହିନ୍ଦୀ ଅନୁବାଦ)

# হৃদয়-পুষ্প

( ১ )

লয়ে যাও, লয়ে যাও, তোমার
ওই অকূল পারাবারে
ঠাইঁ নাই, ঠাইঁ নাই, আর এই
ক্ষুদ্র সংসারে।

( ২ )

খুঁজেছি তোমারে জীবনের দুয়ারে—
প্রভু ! বার বার শত বার—
কিন্তু পাপ হস্তে চয়ন করেছিনু বলে
পূজার ফুল
লও নাই তুমি, ফেলিয়া দিয়াছ,
চলিয়া গিয়াছ
না দেখে অবস্থা মোর
এবার কেঁদে কেঁদে মরে এলেছি যখন
আমার পুণ্যের দুয়ারে
হেসে হেসে তুলে নিতে বাড়ায়েছ
হাত মোরে
এই কি তোমার কৃতি ? জানি না ভগবান্
'দয়াময়' তুমি কিসে, নিজ গুণে আমি
হই যদি পুণ্যবান্।

( ৩ )

আমি বুঝেছি, নাথ ! খেলাও তুমি,
আমার হাতে কিছু নাই
(তবুও) মাঝেমাঝে ভাবি 'আমিই খেলি',
'আমি বাহাদুর—আর কেহ নাই'
কি বলিব প্রভু এই অহংকার হয় কেন
আমার মাঝে মাঝে বুঝিতে নারি.
তোমার হাতে ত সকল ক্ষমতা,
সেই অহংকার
তুলে দিতে ত পারেন হরি।

তবে দেখিবার জন্য আমার নীতি
খেলিতে পারি কি না ঠিকমত
কখনো কিছু বলো, কখনো কিছু বলোনা
তুমি—
তাতে হই আমি ভয়ভীত।
এবার তুমি নাও আমারে
একেবারে তোমার হাতে,
করে দাও এ জীবন তব উৎসর্গিত
থাকি যেন সব সময়ই তোমাতে।
তোমাতেই যেন আমি পূর্ণ হ'য়ে যাই
থাক তুমিই
এই কথা যেন বুঝিতে পারি ভাল করে
সেই বুদ্ধি দাও হরি।
আজ প্রাতে সেই চিন্তা জেগেছে মনে
সেই চিন্তা হউক সফল—
দিন কেটে যায়, আমি বসে থাকি
কেবল হয়ে নির্বল।
তোমার সেবকে দাও শুভ বুদ্ধি চিরদিন,
হে প্রভু !
একদিন তরে ভুল করি না যেন সেই মন
দাও তুমি, না ভুলি কভু।

( ৪ )

বিনয় বলে তারেই বিনয়ের সহিত
কথা বলে গুরুজনে হ'য়ে যে বিনয়ী
ভক্তি থাকে মনে দেখায় তাহা আচরণে—
সেই জন হয় বিনয়ী।
আবার গুরুজনে হইলে অগ্রে বিনয়ী
ব্যথা পায় মনে কেন ? সে হইতে পারিল না
অগ্রে তাই।

মানুষে মানুষে এই প্রেমের সম্বন্ধ
করিয়া রাখিয়াছে মধুর জগত-ছন্দ।

( ৫ )

সকল আকাশে দেখি একটি বক্র চন্দ্র
মাথার উপরে
আকাশের কোলে মেঘের ভিতরে
উঁকি ঝুঁকি মারে—
খেলে যেমন শিশুর মতন
লুকোচুরি খেলা মেঘের যতন
এই দুইয়ের পেছনে আছেন হরি—
তিনি রয়েছেন জাগ্রত হ'য়ে
দেখেন দুইয়ের জীবন ভরি
কার জন্ম কার কোলে
তিনি ধরে রেখেছেন সকলে।
বল জয় হরি জয় শ্রীহরি।

( ৬ )

বাহিরে চলেছে কতনা খেলা
বিশাল বিশ্বে প্রকৃতির মেলা
আকাশে ফুটেছে কত না তারা
নীল আকাশে কত না ইন্দীবরা
অসংখ্য খেলার ভিতরে আমি কি শুধু
ঘরের ভেতরে
শুইয়া থাকিব, না দেখিয়া এই মুগ্ধ
বিশ্বেরে;
তাই উঠিলাম অর্দ্ধ রাত্রে
নিদ্রার গভীরতার পরে
বহিতেছিল স্নিগ্ধ পবন শুইয়া পড়িনু যবে
এখন উঠিয়া দেখি আহা! কি সুন্দর
সব এই ভবে।

( ৭ )

পাখীর মতন ঘুরে ঘুরে আমরা নাচিব
পাখীর মতন সুখের জীবন আমরা
যাপিব।

তোমরাও এস বৃদ্ধগণ এস তোমরাও
তরুণ জন
সকলে মিলি আমরা এই জগতের
মধুর তানে করিব গুঞ্জরণ।

( ৮ )

শব্দের সঙ্গীতে চ'লে যায় প্রাণ
কোন্ অলকা তীরে
কিন্তু থাকেনা সেথায়
চ'লে যায় আরো দূরে দূরে
শব্দের উপরে, তার ওপারে—

আবার সেখানে গুঞ্জরি উঠে
সঙ্গীতের মধুর মূর্চ্ছনা
তাই এই রহস্য—বুঝিতে পারি,
পারি না।

কর্ণের কুহরে পশিয়া শবদ
উঠায় যে ভাব, তাহারও ওপারে
আছেন তিনি সর্ব্বান্তর্যামী।
আবার সেই রূপে একে একে ইন্দ্রিয় যখন
যায় মুগ্ধ হ'য়ে
সেই সব ইন্দ্রিয়ানুভূতির ওপারে
হয় যেন অনুভব সকল ইন্দ্রিয়ে
সেই অতন্দ্রিত রাজ্যে সেইখানে
বিরাজেন তিনি
যাঁর এই অখিল ব্রহ্মাণ্ড,
প্রভু আমাদের তিনি।

সেইখানে যোগমগ্ন সমাধিতে
দেখা তাঁহার আমার
সেইখানে জীব পরম একই ভগবান
সেই অচল সমাধিতে আপনারে
উঠাও হে মানব
পাইবে যদি চির আনন্দ, চির আশ্রয়!

( ৯ )

(৺হেমচন্দ্র সরকার মহাশয়কে
স্মরণ করিয়া )

সেদিনের সে মমতা
আজ গেছে চলিয়া কোথায় নাই জানা
কোথায় গুরুদেব আপনি এক্ষণে !
সেই যে কর্ম্ম পারাপারে
কর্ম্মপারাবার সন্তরিয়া
গিয়াছেন চলিয়া আপনি ।
কতই যে আদর্শ দেখাইলে
যাহার বলে স্বভাব
মানুষ হইতে বীর হইল হে,
সুধু বীর নহে সাধক মহাপ্রবীর ।
তুমিই ত গুরুদেব
আমাদের শিখাইয়াছিলে মানবের সেবা,
ভুলিয়া যাই নাথ তাই আপনারে ।
সর্ব্বক্ষণ মনে হয় আপনি দাঁড়াইয়া
আমার সম্মুখে—
নাই গর্ব্ব অহংকার আপনারে
করিতে সেবক,
সকলের নীচে রাখিতে আপনারে
শীর্ষ রাখিয়া উচ্চ তারার রাজ্যে;
বসিয়া দেবতার সনে মানুষ আপনি
দেবের পরম ।
ধন্য আমার জীবন পাইয়া আপনারে
গুরুরূপে ।
আজ পৃথিবীর রাজনীতির কোলাহলে
'সেবাই পরম ধর্ম্ম' যাহা শিখাইয়াছেন
আপনি
তাহাই করিয়াছে আমার জীবন সার্থক ।
হে বরেণ্য দেবতা ! তুমি আজ আছ
কোথায় ?
সেই ত দেখিয়াছিনু আপনারে
দর্শনের পত্রিকা করিবেন বাহির
শেষ জীবনে, হইল না তাহা ।
তবুও চিন্তার রাজ্যে মৃত্যু নাই,
ফলিবে অবশ্য শুভ ফল
সাধুর চিন্তন না যায় বৃথা ।
এই শরীরের এই জীবনের এই মরতের
যতই দিন
সেবায় সেবায় যায়, যেন অনুক্ষণ চিরদিন
লভিয়া আশীর্ব্বাদ আপনারি দিন দিন
মাথার উপরে আশীর্ব্বাদের করখানি
এমনিভাবে অনুভবি তোমার স্মরণি ।

( ১০ )

এই শরীরটা আর থাকিবে
কত দিন প্রভু
মন যেন ভাবে সেই কথা
মাঝে মাঝে এখন কি হয় কভু ।
প্রকৃতির মাঝে কত কাণ্ড হয় প্রতিদিন
তার মাঝে আমি একটি জীব
অতি তুচ্ছ, অতি দীন ।
বিরাটের তনু—তার সঙ্গে আমি একজন
আমি একজন, এই ভাবনা মনে মনে হয়
অনুক্ষণ ।
কিন্তু চ'লে যায় জীবজন্তু কোথায় কোন্
মরণের গহ্বরে
আবার কি ক'রে বাহির হয়, সেই
রহস্য ঘেরে ।
ঘুরে ঘুরে জীব খায় ঘূরপাক্
দেখি চোখের সাম্‌নে,
আমারও তেম্‌নি হয় এই জীবন
এই বিশ্বাস হয়—বিশ্বাস এখন তোমার
চরণে ।

( ১১ )

তোমার আমার এই ভুবন দোলায়
দেখা কই ?
কেন এমন হয় ?
সেই আছে রবি শশী ভাই
দিনে রাতে দেখা দুবার নয়,
দেখা একবার, অদেখা আবার ।

তোমায় আমায়
কে করেছে ছিন্ন, কেউ নয়
আমি মোহাচ্ছন্ন
তবুও আছে তারা
আপনি দেবেন ধরা
দয়াল তুমি তুমিই
আপনি আপনি হবেন সারা।

( ১২ )

এবার আমি থাক্‌বো না ঘরে
সময় আমার হ'লো—
এবার আমি সন্ধানে চলিব
খুঁজিব শাশ্বতেরে ;
এবার যাবার সময় হ'লো
বিদেশের সন্ধানে চলো,
এবার সকল সময় হরি হরি বলিব।

( ১৩ )

জীবন আমার সফল করো।
এমন দিনে হোলি খেল
আনন্দে একবার হরি বোল।
আমি দিনের বেলা
কাটানু হেসে হেসে,
রাত্রি হ'লো আসি এবার,
ভাবি বসে বলি হরি বোল।

( ১৪ )

জীবনের দুদিনের আনন্দময় খেলায়
মানুষ আপনারে ভুলিতে চায়;
আর দুঃখের মেঘ
যখন ঘেরে চারিদিকে
তখন ভুলিতে চাই আপনারে
সমর্পিয়া আপনায় তাঁকে।
এম্‌নি কোরে হেসে খেলে দিন চলে যায়,
আবার মেঘ যখন উঠে

( ১৫ )

দুঃখের ঝড় কল্লোলিতে
আমি চলে যাই আপনার পথে
সেই এক পথ, তারই মুখপানে
চেয়ে থাকি অবিরতে

( ১৬ )

দুঃখের ঘোর দুর্দিন যখন কেটে যায়
আবার সূর্য্য যখন ওঠে
সকল ধরা আলোকায়
সুখের দুঃখের এই সংসার
সুখ দুঃখেই ঘর করে চিরকাল।

( ১৭ )

আমি কেন মর্ত্যে এলাম, স্বর্গে ছিলাম
মধু ছিল আমার প্রাণ
এখানে কিছু খেতে ভাল লাগেনা।
আমি কেন মর্ত্যে এলাম,
ছিলাম স্বর্গে মধুপুরে
আনন্দ ছিল চারি ধারে।

( ৭৮ )

কেমন কোরে দিন কাটালাম
কেমন কোরে এতদিন বাঁচিলাম
কেমন কোরে কে নিয়ে এল রে
সব ভীতি পার করে,
এখন যদি হাবুডুবু খাই
সেই পার করিবে রে।

( ১৯ )

তোমার আমার দেখা হলো বিবাহের
লগনে
প্রাণ যখন যায় যায় মলিন ম্লান গগনে
চিত্ত আমার ভীতি-গ্রস্ত
সহিব আমি কত মত
কত লোক হাটে বাটে
কত লোক কত মতে

সব দেখিনু সব চিনিনু
বল্‌ব তোমায় কত ?
জীবনে মরণে
সঙ্গী তুমি অনুক্ষণে
তাই ভরসা যেথায় যাই
ফিরে ফিরে চাই তোমার পানে।
কত পৃথিবী এমনি উঠে হ'য়েছে লুপ্ত
কত মানুষ জন্ম লভে হ'য়েছে সুপ্ত,
তুমি আছ চির সখা সকলের
সেই ভরসা দৃঢ়তা আনে মম অন্তরের।

( ২০ )

ওই তুমি স্বপ্ন আমার স্তূপীকৃত
পর্ব্বত তুমি, তোমায় নমস্কার অবিরত।
ধরার মাঝে সাগর স্তূপ তুমি হে মহান্‌
তুমিই ত মহামহেশ্বর বিবস্বান্‌—
তোমায় নমি আমি সকল প্রাতে
তোমায় নমি সকল রাতে,
স্বপ্ন আমার জমাট বেঁধে রয়েছে
জন্মজন্মান্তরের কত কল্পনা সুপ্ত
সেথায় আছে
সাগরের কল্লোল সেথায় গেছে থমি
শান্ত তুমি, মহান্‌ তুমি
তাই তোমার পায়ে আমি নমি।
তুমি গো উদার মহান্‌ শান্ত কত গম্ভীর,
তোমায় আমায় এক প্রাণ জনম হ'তে
মরণ তীর।

( ২১ )

তুমি আমি স্বপন-স্বামী
রহিনু সাথে সাথে
সংভ্রমে যেমন গোপনে
থাকি প্রিয়া প্রিয় আমি
মরণ তাই নাই
মরণজয়ী আমরা হই
ভোরের সন্ধ্যা—রবি থেমে যায় যবে
ভাবি আমি ভবে এবার রইনু তবে।
আবার সন্ধ্যায় আরতি আসবে যবে
আবার দেখিব মিলনের অপূর্ব্ব শংখ
বাজিবে
মরণ কই ? মরণজয়ী আমরা,
জীবন-স্বামী তুমি
কিছু ভয় তাই নাই
জীবনে মরণে তুমি আছ ওই।

( ২২ )

ধীরে ধীরে রূপের রেখা
ধীরে ধীরে শব্দের কা কা
ধীরে ধীরে পরশ কাহার
না হয় আর কারুর পরশ আপনার
ফুল ফোটে তোরা
ধীরে ধীরে মলয় পরশ পারা—
তাই আলোক আসে বেয়ে
মলয় আসে নুয়েঁ
প্রাণ আসে ধেয়ে ধেয়ে
কল্লোলিত মুখরিত আকাশ অবনী ভরা
প্রণয় বিবাহে দুই তাই হ'লো ধরা
আমি আমারি ভেতর আনন্দ মগন কারা।

( ২৩ )

একটি তারা আকাশ ঘেরা
একটু বেড়া ভেতরে তার আমি ধরা
একটু প'রে তারাহারা মেঘের আবরণে
(আবার) একটু পরে দেখতে পাই তিনি
স্বর্ণ সিংহাসনে—
সবই হারায়, আছেন জীবন-স্বামী
তাঁকে পেলে সব পাই আমি।
আবার তারার দেখা
আবার শূন্যের পানে কাকলীর রেখা
যা কিছু হারিয়েছি
হয় সব তার লেখা।

( ২৪ )

আর চাইনা কোন আলোক ধারা
তোমারি দেওয়া সূর্য্য চন্দ্র তারা
তারাই হবে আমার জীবনের সারা।
সেই আলোকে উঠিব
সেই আঁধারে শুইব
জীবন মম তোমারি হাতে
সন্তান আমি তোমার তোমা হ'তে
তোমায় ছেড়ে দূরে দূরে
ঘুরি যখন কক্ষ ছেড়ে
মনে হয় সবই হ'লো
তোমায় পাওয়া না গেল
সবই আমার হারালো;
সৃষ্টির মাঝে তোমার আমার মিলন ছাড়া
স্বস্তি কোথায় বলো।

( ২৫ )

সপন ভোলা আমি সপন পুরে থেকে
পেয়েছি যে রতন চামেলির বুকে
যেন ঘুমিয়ে পড়ে পাখী যত ঘেমে
আমি তেমনি এইখানে থেমেছি এবার
এই জীবনে।
সুধার সম মধুর ওইতো চিরকালের আশা
তবুও মাঝে মাঝে হয়ত তিক্ত হবে,
মন যেন নিরাশা
কিন্তু যে প্রজাপতি বেঁধেছেন আমার
নিজ ইচ্ছায়
তাঁরে যদি করি অপমান, আমাকেই
ভুগিতে হয় তায়।
তবে যদি এইখানে হৃদি কুঞ্জবনে
কখন রোদ্দুর কখন বারি বরষণে
শীতলিব প্রাণ আকুল হইবে বা কখন
আমি চির ধ্রুবতারা সম চেয়ে রইব
মুগ্ধমোহন।

( ২৬ )

কেমন কোরে দিন কাটালাম
কেমন কোরে এত দিন বাঁচিলাম
কেমন কোরে সে নিয়ে এল রে
সব ভীতি পার কোরে,
এখন যদি হাবুডুবু খাই
সেই পার করিবে রে।

( ২৭ )

দিতে চাই, দিতে চাই,
একেবারে আপনারে
নিঃশেষ করিয়া দিতে চাই।
তাই আমি আপনারে
চিরকাল তোমা দ্বারে
আপনারে পূর্ণ দিতে চাই।
আর আমি যাহা চাই
তাই আমি হ'য়ে যাই
আনন্দ অন্তরে ধীরে ধীরে
ভুলে যাই আপনারে—
তাই তোমার ভেতরে
থাকিতে চাই মধু অন্তরে।

( ২৮ )

ভাল মন্দ এই
দুটো দিয়ে দেখাতে চাই
সৃষ্টির রহস্য ভাই
তুমি, আমি তাই।

( ২৯ )

সাগরের মাঝে পুতুলের খেলা ওই
নাচে কে ওই ? নাচান কে ওই ?
ভাবি যতই, ভেবে না পাই
সাগরের মাঝে পুতুলের খেলা ওই।

( ৩০ )

সপনপুরের সপনভোলা
দেখিনু ত আমি জীবন ভরিয়া—
দেখিনু কবে আমি কোথায় আছি
তার মাঝে কি করিয়া !
কোথায় আমার শেষ যাত্রা,
কোথায় আমার গতি পথ—
বুঝিনু কি কিছু রতি মাত্রা ?
এখন ভাবি ফিরাইতে হবে পথ ।
কোথায় ফিরিব, কেমনে ফিরিব
ভাবনা তাই,
এখন বসে আছি আমি সই একাই ।

( ৩১ )

তরীটি ভাসমান ঐ ।
নীল সাগরের নিস্তব্ধতায়
তরীটি ভাসমান ঐ ।
সিন্ধুর অজস্র বিন্দুর কোলাহল নাই,
তরীটি ভাসমান ঐ ।
পাল তুলেছে, অনন্ত নীল পারাবারের
চাঁদের আলোয়
থিরি থিরি হিল্লোলিয়া যায় ।
আর একটু ...... আর একটু
অতল কোলাহলে মিশিয়ে যায়,
নাই পাহাড়, নাই জনমানব,
একাকী যেন অনন্তে মিলিয়ে যায় ।

( ৩২ )

সত্যই ত এই পৃথ্বী
তায় মানুষ আসে যায়
কতই কাহিনী লিখে যায় ।
কতই আকর্ষণ, বিকর্ষণ,
সারা পৃথিবীর কম্পন
মানুষ ধায় ধায় মরীচিকায়
সত্যের অন্বেষণ কি নাহি তায় ?

( ৩৩ )

চঞ্চল অঞ্চল
চঞ্চল চাহনি
চারু ভীরু সোহাগিনী,
আপনার ঘরে আপনি থাকিয়া
ভীরু ভীরু চাহনি ।
এখনো সে পতিঘরে যায়নি—
যায়নি ··· যায়নি ··· যায়নি ।
বাসনার দ্বারে বসিয়া
আছে সে অপেক্ষিয়',
কখন লইবে তারে আদর করে
নূতন ঘরে তুলিয়া ।

( ৩৪ )

এই ঘরে লইনু আশ্রয়
এই ঘর হ'তে লইনু বিদায়
কত দিনের তরে কত আলাপন,
কত প্রেম বিনিময় !
সকলে হইল সাথী আমার
সকলের সুন্দর ব্যবহার—
এবার লইনু বিদায়,
আপনার ঘরে ফিরিয়া
ভাবিব এদের কথা
কতই ভাবের হইবে উদয় ।

( ৩৫ )

চলে গেছে যারা, দূরে নয়
মনের অতি সন্নিকটে রয়,

